# ରୋମାଞ୍ଚ

ରହସ୍ୟ ଉପନ୍ୟାସ ପଞ୍ଚକ

ଲେଖକ :
ଶ୍ରୀ କଣ୍ଡୁରି ଚରଣ ଦାସ
୨୦/୩, ବାଲିଗଂଜ ପ୍ଲେସ୍, କୋଲକାତା - ୧୯

ପ୍ରକାଶକ :



କଲ୍ୟାଣୀନଗର, କଟକ - ୧୩
ପ୍ରଥମ ସଂସ୍କରଣ : ନବବର୍ଷ-୨୦୦୭
ପ୍ରଚ୍ଛଦ-ପରିକଳ୍ପନା : ମନସ୍ୱିନୀ ମହାନ୍ତି
ମୁଦ୍ରଣ : ଟେକ୍‌ନୋ ଆର୍ଟସ୍ ଅଫ୍‌ସେଟ୍
କଲ୍ୟାଣୀନଗର, କଟକ
ମୂଲ୍ୟ : ୨୫୦/- ମାତ୍ର

# ROMANCHA

a collection of five crime novels

Author :
**Kanduri Charan Das**
20/3, Ballyganj Place, Kolkata-19

Published by :
**KAHANI**
Kalyani Nagar, Cuttack-13
First Edition : **New Year-2007**
Cover concept : **Manaswini Mohanty**
Printed at : **Techno Arts Offset**
Kalyani Nagar, Cuttack
Price : **250/-** only

# ସୂଚୀପତ୍ର

ରାତି ସେତେବେଳକୁ ସାଢ଼େ ନଅ କି ଦଶ ହେବ। ଡିସେମ୍ବର ରାତି। ବେଶ୍ ଶୀତୁଆ ପବନ ଟ୍ୟାକ୍ସି ଭିତରକୁ ପଶି ଆସୁଥାଏ। ଦମ୍ ଦମ୍‌ରୁ ମୁଁ ଫେରୁଥାଏ। ଭି. ଆଇ. ପି. ରୋଡ଼ ଉପରେ ସର୍ଦ୍ଦାରଜୀର ଟ୍ୟାକ୍ସିଟା ଛୁଟି ଚାଲିଥାଏ ପ୍ରବଳ ବେଗରେ।

ଆଖିରେ ମତେ ଟିକିଏ ତନ୍ଦ୍ରା ଆସି ଯାଇଥାଏ ଏବଂ ମୁଁ ଜାଣିଥାଏ ଯେ, କାଳିଘାଟରେ ପହଞ୍ଚିବା ପୂର୍ବରୁ ମୁଁ ନିଶ୍ଚୟ ଶୋଇ ପଡ଼ିଥିବି। ସେଥିପାଇଁ ସର୍ଦ୍ଦାରଜୀକି କହି ରଖିଥିଲି, ସେ ମୋତେ ଯେପରି ଠିକ୍ କାଳିଘାଟ ଷ୍ଟପେଜ୍‌ରେ ଡାକିଦିଏ।

ସତରେ ମୁଁ ଅଳ୍ପ ସମୟ ପରେ ଶୋଇ ପଡ଼ିଥିଲି।

ଗତ ଦୁଇଦିନ ଅତ୍ୟଧିକ ପରିଶ୍ରମ ଓ ରାତି ଅନିଦ୍ରା ଯୋଗୁଁ ମୁଁ ଭୀଷଣ ଅବଶ ହୋଇ ପଡ଼ିଥିଲି।

କିନ୍ତୁ ହଠାତ୍ ଏକ ପ୍ରବଳ ଧକ୍କାରେ ମୋର ମୁଣ୍ଡଟା ପିଟି ହୋଇଗଲା ଏବଂ ନିଦଟା ଏପରି ଅତର୍କିତ ଭାବରେ ଭାଙ୍ଗିଗଲା ଯେ, ମୁଁ ଆଖି ଆଗରେ କେବଳ ଅନ୍ଧାର ଦେଖିଲି।

ସର୍ଦ୍ଦାରଜୀର କଣ୍ଠସ୍ୱର ଉଚ୍ଚକୁ ଉଠିଥିଲା ଓ ସେ କାହାକୁ ପଞ୍ଜାବୀ ଭାଷାରେ ଭୀଷଣ ଗାଳି ଦେଉଥିଲା। ମୋ ଟ୍ୟାକ୍ସିଟା ବ୍ୟାକ୍ କରିବାରୁ ଜାଣିଲି ଯେ, ସର୍ଦ୍ଦାରଜୀ ତା' ଯାନଟିକୁ ବଞ୍ଚାଇବା ପାଇଁ ଅତି ମାତ୍ରାରେ ବ୍ରେକ୍ କଷି ଦେଇଥିଲା।

ମୁଁ ଟିକିଏ ପ୍ରକୃତିସ୍ଥ ହେବା ମାତ୍ରେ, ଟ୍ୟାକ୍ସିର ଦରଜା ଖୋଲି ତଳକୁ ଓହ୍ଲାଇ ସାମାନ୍ୟ ଆଗେଇ ଯାଇ ଦେଖିଲି, ଆକ୍ସିଡ଼େଣ୍ଟ ଗୋଟାଏ ଖୁବ୍ ଜୋର୍‌ରେ ଘଟିଛି ଗୋଟିଏ ଟ୍ୟାକ୍ସି ଓ ଗୋଟାଏ ପ୍ରାଇଭେଟ୍ କାର୍ ମଧ୍ୟରେ। ଦୁଇଟିଯାକ—ଯାନ ଚଳତ୍‌ଶକ୍ତି

ହରାଇଛନ୍ତି ।

ସର୍ଦ୍ଦାରଜୀର କର୍କଶ କଣ୍ଠସ୍ୱର ମୋତେ ପଛକୁ ଫେରାଇ ଆଣିଲା । ମୁଁ ଆସି ଦେଖିଲି, ମୋ ଟ୍ୟାକସି ଭିତରେ ଗୋଟିଏ ଝିଅ ଉଠି ବସିଛି । ସେ ସର୍ଦ୍ଦାରଜୀକୁ କହୁଛି, ଦମ୍‌ଦମ୍ ଯିବା ପାଇଁ ।

ମୁଁ ଅବାକ୍ ତ ନୁହେଁ, ହତବାକ୍ ହୋଇ ଝିଅଟିକୁ ଚାହିଁଲି । ଅନ୍ଧକାର ଭିତରେ ଏକ ଅସ୍ପଷ୍ଟ ଛାୟା ଆଡ଼େ ଚାହିଁବା ଛଡ଼ା ମୋର ଅନ୍ୟକିଛି ବାଟ ନଥିଲା ।

ସର୍ଦ୍ଦାରଜୀ ଶେଷ ପର୍ଯ୍ୟନ୍ତ ଓହ୍ଲେଇ ଆସି, ତରୁଣୀଟିକୁ ବୁଝାଇବାକୁ ଚେଷ୍ଟା କଲା ଯେ, ଏଇଟା ଖାଲି ଟ୍ୟାକ୍‌ସି ନୁହେଁ ଏବଂ ମୋ ଆଡ଼େ ହାତ ଦେଖେଇ କହିଲା : ଏଇ ବାବୁ କାଳିଘାଟ ଯିବେ । ତେଣୁ ଟ୍ୟାକ୍‌ସି ଆଉ ଦମ୍‌ଦମ୍ ଫେରିଯିବା ସମ୍ଭବ ନୁହେଁ ।

ତରୁଣୀଟି ଏକାନ୍ତ ବିନୀତ ସ୍ୱରରେ ମୋତେ ହାତ ଯୋଡ଼ି କହିଲା : ପ୍ଲିଜ୍ ! ଆପଣ ଦୟା ନ୍ କଲେ ମୋର ସର୍ବନାଶ ହୋଇଯିବ । ଦଶଟା ପଇଁତିରିଶରେ ପ୍ଲେନ ଛାଡ଼ିବ । ମୋର ତା' ପୂର୍ବରୁ ପହଞ୍ଚିବା ଏକାନ୍ତ ଆବଶ୍ୟକ । ମୋ ଗାଡ଼ିଟା ଆକ୍‌ସିଡେଣ୍ଟରେ ଅଚଳ ହୋଇଗଲା । ପ୍ଲିଜ୍ । ପ୍ଲିଜ୍ ।

ତରୁଣୀଟି ଗାଡ଼ିର ଦରଜା ଖୋଲି, ମୋର ଦୁଇ ହାତକୁ ଟାଣି ନେଇ, ଗାଡ଼ି ଭିତରେ ମୋତେ ତା'ପାଖରେ ବସାଇ ଦେଇ କହିଲା : ସର୍ଦ୍ଦାରଜୀ, ଥୋଡ଼ା ମେହେର୍‌ବାନୀ କିଜିଏ !!

ମୋ ନୀରବତା ଲକ୍ଷ୍ୟ କରି ଓ ତରୁଣୀଟିର ବିପନ୍ନ ଅବସ୍ଥା କଥା ଚିନ୍ତା କରି ବୋଧହୁଏ ସର୍ଦ୍ଦାରଜୀ ଟ୍ୟାକସିଟା ବୁଲାଇଲା । ଆମେ କେତେବାଟ ଆସିଥିଲୁ କେଜାଣି, ତରୁଣୀ ତା' ହାତର ରେଡ଼ିଅମ ଡାଏଲ ଲଗା ଘଡ଼ିଟି ଆଡ଼େ ଚାହିଁ, ଉଲ୍ଲସିତ ହେଲା ପରି କହିଲା : ଆହୁରି ପନ୍ଦର ମିନିଟ ବାକି ଅଛି । ଆମେ ଯାଇ ଠିକ୍ ସମୟରେ ପହଞ୍ଚି ପାରିବା । ତା'ପରେ ମୋ ହାତ ଦୁଇଟାକୁ ଆଉ ଥରେ ଚାପି ଧରି କହିଲା: ଆପଣଙ୍କୁ ମୁଁ ଖୁବ୍ ଅସୁବିଧାରେ ପକାଇ ଦେଲି ନ କିନ୍ତୁ ମୁଁ ଜିଦିମାରି କହିପାରେ ଯେ, ଆପଣ ମୋ ଭଳି ଏକ ଜୀବନ ମରଣ ସମସ୍ୟାକୁ ହାତରେ ଧରି ଧାଉଁ ନାହାନ୍ତି ।

ସେ ମୋ ହାତ ଛାଡ଼ି ଦେଇଥିଲା ।

ଅନ୍ଧାର ଆଲୋକ ଭିତରେ ସେଇ ଝିଅଟି ଆଡ଼େ ଚାହିଁ ମୁଁ କେବଳ ନୀରବରେ ଚିନ୍ତା କରୁଥିଲି । ଆଉ ଭାବୁଥିଲି, ଭଦ୍ରମହିଳା ମୋର ଏହି ଉପକାର କଥା ହୁଏତ ଅନେକ ଦିନ ମନେ ରଖିବେ ।

ସେ କେବଳ ଘନ ଘନ ଘଡ଼ି ଦେଖୁଥିଲା ଏବଂ ସର୍ଦ୍ଦାରଜୀକୁ କହୁଥିଲା : ଥୋଡ଼ା ଜଲ୍‌ଦି ସର୍ଦ୍ଦାରଜୀ, ଆଉର୍ ଥୋଡ଼ା ଜଲ୍‌ଦି ଚଲାଇଏ ।

ପୁଣି ମୋ ଆଡ଼କୁ ଲାଗି ଆସି କହିଲା : ଆପଣ ତ କିଛି କହିଲେ ନାହିଁ । ଆପଣ ନିଶ୍ଚୟ ମୋ ଉପରେ ଭୀଷଣ ରାଗିଛନ୍ତି । କିନ୍ତୁ ଝିଅମାନଙ୍କ ପ୍ରତି ପୁଅମାନେ ବେଶି ସମୟ ରାଗି ପାରନ୍ତି ନାହିଁ । କ'ଣ ମିଷ୍ଟର ମୁଁ ଠିକ୍ କହୁଛି ନା ?

ସେ ହୋ ହୋ ହୋଇ ହସି ଉଠିଲା ।

ଝାପ୍‌ସା ଆଲୁଅ ଭିତରେ ତରୁଣୀଟିର ରୂପ ରଙ୍ଗ ମୁଁ କଳି ସାରିଥିଲି । ଆଧୁନିକା କହିଲେ ଭୁଲ୍ ହେବ, ଅତ୍ୟାଧୁନିକା, ସୁନ୍ଦରୀ ।

ମୁଁ କହିଲି : ଆପଣ କ'ଣ ଦଶଟା ପଇଁତିରିଶ ପ୍ଲେନରେ ଯିବେ ?

: ଓଃ, ନୋ, ନୋ। ମୁଁ ଆପଣଙ୍କ ସହିତ ଫେରି ଆସିବି। ଖାଲି ଗୋଟାଏ ଜରୁରୀ ଚିଠି ମୋର ଜଣେ ବାନ୍ଧବୀକୁ ଦେଇ ଆସିବି। ସେ ଏଇ ପ୍ଲେନରେ ଫ୍ଲାଇ କରୁଛି।

ତା'ପରେ ନୀରବତା ଭିତର ଦେଇ ଆମେ ଦମ୍‌ଦମ୍‌ରେ ପହଞ୍ଚି ଗଲୁ। ଟ୍ୟାକ୍‌ସି ଷ୍ଟାଣ୍ଡରେ ଠିଆ ହେବାକ୍ଷଣି, ସେ ଝଡ଼ ବେଗରେ ଓହ୍ଲେଇଗଲା। କହିଲା ଟିକିଏ ଅପେକ୍ଷା କରନ୍ତୁ, ମୁଁ ସଙ୍ଗେ ସଙ୍ଗେ ଫେରି ଆସୁଛି।

ଝିଅଟି ପ୍ରତି ମୋ ମନରେ ପ୍ରବଳ କୌତୂହଳ ଜନ୍ମିଥିଲା।

ସର୍ଦ୍ଦାରଜୀକୁ ଅପେକ୍ଷା କରିବାକୁ କହି, ମୁଁ ବି ଝିଅଟି ପଛେ ପଛେ ଏଆର୍‌ପୋର୍ଟ ଆଡ଼କୁ ଆଗେଇ ଗଲି।

ବୋଧହୁଏ ରାତି ଅଧିକ ହୋଇଥିବାରୁ ଲୋକ ଗହଳି କମି ଯାଇଥିଲା।

ମୁଁ ଅନୁସନ୍ଧାନ ଅଫିସରେ ପହଞ୍ଚି ଟିକିଏ ଏଣେ ତେଣେ ଚାହିଁ, ଗୋଟିଏ ସୋଫା ଉପରେ ବସିବାକୁ ଯାଉଚି ଦେଖିଲି ସେ ତେଣୁ ଫେରି ଆସୁଛି। ପୂର୍ଣ୍ଣ ଆଲୋକର ବନ୍ୟା ଭିତରେ ମୁଁ ତାକୁ ଦେଖି ସ୍ତବ୍ଧ ହୋଇଗଲି। ତା' ଅଙ୍ଗରେ ଏତେ ରୂପ ! ମୁଁ କେବେ ଦେଖି ନ ଥିଲି।

ସେ ମୋ ପାଖକୁ ଛୁଟି ଆସି କୃତଜ୍ଞ କଣ୍ଠରେ କହିଲା : ଆପଣ ଆଜି ମୋର ଯେଉଁ ଉପକାର କଲେ, ଜୀବନରେ କେବେ ଭୁଲି ପାରିବି ନାହିଁ।

ପ୍ଲେନ ଛାଡ଼ିବା ଶବ୍ଦ ମୋ କାନରେ ବାଜୁଥିଲା।

ସେ ସେହି ଶବ୍ଦକୁ ଲକ୍ଷ୍ୟ କରି କହିଲା : ଶୁଣୁଛନ୍ତି, ଆମେ ଯଷ୍ଟ ଟାଇମ୍‌ରେ ପହଞ୍ଚିଲେ, ଆଉ ମିନିଟିଏ ଡେରି ହୋଇଥିଲେ ବି ମୁଁ ବ୍ୟର୍ଥ ହୋଇ ଥାଆନ୍ତି। ମୋ ଜୀବନରେ ସମସ୍ତ ସମ୍ଭାବନା ଶେଷ ହୋଇ ଯାଇ ଥାଆନ୍ତା। ତେଣୁ ଆଜି ଦିନଟିରେ ଆପଣ ମୋର ଯେ କେତେବଡ଼ ଉପକାରୀ ବଂଧୁ, ମୋ ଛଡ଼ା ସେ କଥା ଆଉ କେହି ବୁଝି ପାରିବ ନାହିଁ।

ଝିଅଟିର ମୋ ଦ୍ୱାରା ଯେ ସାମାନ୍ୟ ଉପକାର ହୋଇଛି, ସେ କଥା ମୁଁ ଅନୁଭବ କରୁଥିଲେ ମଧ, ଏପରି ବିରାଟ କିଛି ଗୋଟାଏ ଘଟି ନାହିଁ, ଯାହା ପାଇଁ ବାରମ୍ବାର ସେ ମୋତେ କୃତଜ୍ଞତା ଜଣାଇବ।

ଝିଅଟି ଏରୋଡ୍ରମ୍‌ର ଅନୁସନ୍ଧାନ ଅଫିସକୁ ଯାଇ କ'ଣ ପଦେ ଦି'ପଦ କଥା କହି ଫେରି ଆସିଲା। ତା'ପାଦର ଚଞ୍ଚଳତା ମୋତେ ଆହୁରି ପ୍ରଲୁବ୍ଧ କରିଥିଲା। ତା'ର କଥାବାର୍ତ୍ତା, ଚାଲି ଚଳଣ, ରୂପ ଭେକ ସବୁଥିରେ ଯେପରି ଏକ ମାଦକତା ମୁଁ ଅନୁଭବ କରୁଥିଲି। ତେଣୁ ମନ ଚାହିଁଲେ ବି ସହଜରେ ତାକୁ ଏଡ଼େଇ ପାରୁ ନଥିଲି।

ସେ ମୋ ପାଖକୁ ଲାଗି ଆସି ଅଳ୍ପ ହସି କହିଲା : ଆପଣ ମୋର ଗୋଟିଏ ଅନୁରୋଧ ରଖିବେ ?

ମୁଁ ତାକୁ ପ୍ରଶ୍ନବାଚୀ ନୟନରେ ଅନାଇ ରହିଲି।

ସେ କହିଲା : ପ୍ଲିଜ୍। ଆପଣ ମୋ ସହିତ ଆସନ୍ତୁ।

ଝିଅଟି ମୋତେ ଯେତିକି ଚପଳ ମନେ ହେଉଥିଲା, ସେତିକି ରହସ୍ୟମୟ ବି ଜଣା

ଯାଉଥିଲା ।

ମୁଁ ତା'ପଛେ ପଛେ ଆଗେଇଲି ।

ସେ ଏରୋଡ୍ରମ୍‌ର ରେଷ୍ଟୁରେଣ୍ଟ ଭିତରକୁ ପଶୁଥିବାର ଲକ୍ଷ୍ୟ କରି ମୁଁ ପଛରୁ ଡାକିଲି । ସେ ବୁଲି ପଡ଼ି ମୋତେ ଚାହିଁଲା । ଅଳ୍ପ ହସିଲା । ମୋ ପାଖକୁ ଆଗେଇ ଆସି, ହାତଟିକୁ ଧରି ଟାଣି ନେଉ ନେଉ କହିଲା : ମାତ୍ର କେତୋଟି ମିନିଟ୍‌ର ବଂଧୁତ୍ୱ । ହୁଏତ ପ୍ରଥମ ଆଉ ଶେଷ । ସାମାନ୍ୟ ଫୂର୍ତ୍ତି, ମନ ଖୋଲା ଟିକିଏ ହସ । ଜଟିଳ ଜୀବନ ଯାତ୍ରାକୁ ମୁହୂର୍ତ୍ତକ ପାଇଁ ଉପଭୋଗ କରିବା ।

ଆମେ ରେଷ୍ଟୁରେଣ୍ଟ ଭିତରେ ପଶିଲୁ ।

ସେଠାରେ ବି ଭିଡ଼ ନ ଥିଲା । ସମଗ୍ର ହଲ୍‌ଟାରେ ମାତ୍ର କେତୋଟି ଟେବୁଲରେ ଅଳ୍ପ କୋଳାହଳ । ଯେପରି ଧୀରେ ଧୀରେ ଅବଚେତନର ଗୋଟାଏ ଥଣ୍ଡା ସୁର ଭାସି ଭାସି ଆସୁଥିଲା ।

ଝିଅଟି ମୋତେ ପଚାରିଲା : ଆପଣ କ'ଣ ପିଇବେ ?

ମୁଁ ଠିକ୍ ସେଇ ଆଶଙ୍କା କରିଥିଲିତ କିନ୍ତୁ ଭାବି ପାରି ନଥିଲି ଗୋଟିଏ ଝିଅ ମୋତେ କୌଣସି ଡ୍ରିଙ୍କ୍ ଅଫର୍ କରିବ । ତଥାପି ବୋକାଙ୍କ ପରି ଉତ୍ତର ଦେଲି : ମୋର ଗୋଟିଏ କୋକୋକୋଲା ହେଲେ ଚଳିବ ।

ସେ ହସର ତରଙ୍ଗ ଖେଳେଇ ଯେପରି ଆଉ ଥରେ ହଲ୍‌ଟାର ପ୍ରାଣ ସଞ୍ଚାର କଲା । ସମସ୍ତଙ୍କ ଆଖି ପଡ଼ିଲା ଆସି ଆମରି ଉପରେ । ମୁଁ କିପରି ଅସହାୟ ବୋଧକଲି । ସେ କିନ୍ତୁ ଉତ୍ସାହିତ ହେଲା ପରି କହିଲା: ଆପଣ ବଡ଼ ଇଏ, ମାନେ ଆଉଟ୍ ଅଫ୍ ଡେଟ୍ ।

ସେ ପୁଣି ହସିଲା ।

ମୁଁ କହିଲି : ମୁଁ କିଛି ପିଏ ନାହିଁ । ଅଭ୍ୟାସ ନାହିଁ ତା'ଛଡ଼ା...

: ସୁଯୋଗ ପାଇ ନାହାନ୍ତି, ଏଇଆତ ? ସେ ମୋ ପାଟିରୁ କଥା ଛଡ଼େଇ ନେଇ କହିଲା ।

: ନା ନା, ଠିକ୍ ତା' ନୁହେଁ । ଆପଣ ଡ୍ରିଙ୍କ୍ କରନ୍ତୁ, ମୋର ଆପତ୍ତି ନାହିଁ । କିନ୍ତୁ ମୋତେ କ୍ଷମା କରିବେ । ମୁଁ ସେଇଟାକୁ ମୋଟେ ସହିପାରେ ନାହିଁ ।

ବୟକୁ ସେ ପୁଡ଼ିଂ ଆଣିବା ପାଇଁ କହିଲା ।

ମୋ ମୁହଁକୁ ହସିଲା ଆଖିରେ ଅନାଇ ରହି, ନୀରବରେ ଯେପରି ମୋତେ ବିଶ୍ଳେଷଣ କରୁଥିଲା । ଶେଷରେ କହିଲା : ମୋତେ ଦେଖି ଆପଣଙ୍କର କ'ଣ ମନେ ହେଉଛି ?

: ମୋର ? ମୁଁ ଟିକିଏ ବିଚଳିତ ହୋଇ ପଡ଼ିଥିଲି । ଏପରି ଏକ ପ୍ରଶ୍ନର ସମ୍ମୁଖୀନ ହେବାକୁ ହେବ, ମୁଁ ଆଶା କରି ନ ଥିଲି ।

: କିଛି ନୁହେଁ, ମାନେ ଏଇ, ଆପଣ ଜଣେ ଭଦ୍ରମହିଳାତ ବେଶ୍ ଫାଇନ୍, ମନକୁ ଛୁଇଁଲା ଭଳି ।

: ତା'ହେଲେ ମୋତେ ଆପଣଙ୍କୁ ଭଲ୍ ଲାଗିଛି ? ଝିଅଟି ସେଇପରି ହସି ହସି ପଚାରିଲା ।

ମୁଁ କିଛି ଉତ୍ତ ଦେବା ପୂର୍ବରୁ ବୟ ଆସି ଦୁଇପ୍ଲେଟ୍ ପୁଡ଼ିଂ ଦେଲା ।

ଝିଅଟି ଗୋଟିଏ ପ୍ଲେଟ୍ ତା'ଆଡ଼କୁ ଟାଣିନେଇ କହିଲା : ମୋର ସବୁଠାରୁ ପ୍ରିୟ ଖାଦ୍ୟ ଏଇ ପୁଡ଼ିଂ । ଜାଣେନି ଆପଣ ପସନ୍ଦ କରନ୍ତି କି ନାହିଁ । ଆପଣଙ୍କ ପାଇଁ ଅନ୍ୟ କିଛି ଆଣିବାକୁ କହିବି ?

: ନା, ଧନ୍ୟବାଦ । ମୋର ମୋଟେ କିଛି ଖାଇବାକୁ ଇଚ୍ଛା ନଥିଲା ।

ଆମେ ନୀରବରେ ଖାଇବା ଶେଷ କଲୁ ।

ବୟଠାରୁ ବିଲ୍‌ଟା ସେ ଛଡ଼େଇ ନେଇ କହିଲା : ଆପଣଙ୍କୁ ମୁଁ ଡାକିଥିଲି, ତେଣୁ ବିଲ୍ ମେଣ୍ଟାଇବା ମୋର କର୍ତ୍ତବ୍ୟ ।

ମୁଁ ବାଧା ଦେଲି ନାହିଁ । ନୀରବରେ ଆମେ ବାହାରକୁ ବାହାରି ଆସିଲୁ ।

ଇନ୍‌କ୍ୱାରୀ କାଉଣ୍ଟର ନିକଟରେ ଠିଆ ହୋଇ ସେ କ'ଣ ଦୁଇଟା ଗୋଟାଏ ଖବର ବୁଝି ମୋ ପାଖକୁ ଫେରି ଆସିଲା ।

ମୁଁ କହିଲି : ରାତି ଅନେକ ହେଲାଣି ।

ସେ ବି ହାତ ଘଡ଼ିକୁ ଚାହିଁ ଟିକିଏ ବ୍ୟସ୍ତ ହେଲାପରି କହିଲା : ହଁ ଚାଲନ୍ତୁ, ଏଥର ଫେରିଯିବା । ତେବେ ମୁଁ ପାର୍କ ଷ୍ଟ୍ରିଟ୍ ଯାଏ ଯିବି : ଆପଣଙ୍କର ଯଦି ଆପତ୍ତି ନଥାଏ, ଏକା ସଂଗରେ...

: ନା ନା, ମୋର କିଛି ଆପତ୍ତି ନାହିଁ । ଆପଣଙ୍କୁ ପାର୍କ ଷ୍ଟ୍ରିଟ୍‌ରେ ଛାଡ଼ିଦେଇ ମୁଁ କାଳିଘାଟ ଚାଲିଯିବି ।

ଆମେ ଦୁହେଁ ଯାଇ ଟ୍ୟାକ୍‌ସିରେ ବସିଲୁ ।

ସର୍ଦ୍ଦାରଜୀ କିପରି ସନ୍ଦିଗ୍ଧ ଆଖିରେ ଆମ ଆଡ଼େ ଚାହିଁ, ଗାଡ଼ି ଷ୍ଟାର୍ଟ କଲା ।

ଝିଅଟି ନିଃସଙ୍କୋଚରେ ମୋର ଜଣେ ବହୁ ପରିଚିତା ବାନ୍ଧବୀ ପରି ମୋ ପାଖରେ ବସିଥିଲା । ମୁଁ କିନ୍ତୁ ତା'ପାଖରେ ସହଜ ହୋଇ ପାରୁ ନ ଥିଲି। ମୋ ମନ ଭିତରେ ଝିଅଟି ସମ୍ବନ୍ଧରେ ଏକ ବୁଢ଼ିଆଣୀ ଜାଲର ସର୍ଜନା ଚାଲିଥିଲା ।

ସେ ବୋଧହୁଏ ମୋର ଏହି ଗମ୍ଭୀର ଭାବ କଟାଇବା ପାଇଁ ପଚାରିଲା : ଆପଣ ବୋଧହୁଏ ମୋ'ପରି ଝିଅ ଆଗରୁ କେବେ ଦେଖି ନ ଥିଲେ ?

ମୁଁ ଏଥର ଓଲଟା ପ୍ରଶ୍ନ ପଚାରିଲି   ଆପଣଙ୍କର ସେପରି ମନେ ହେବାର କାରଣ ?

କାରଣଟା ଯଦିଓ ମୋର ଅକାରଣ ନୁହେଁ, ତେବେ ମୁଁ ଆଶ୍ଚର୍ଯ୍ୟ ହେଉଛି ଆପଣ ଅସୀମ ଧୈର୍ଯ୍ୟର ଅଧିକାରୀ । ଆପଣଙ୍କ ପରି ପୁରୁଷ ମୋ ଜୀବନରେ ମୁଁ ବହୁତ କମ୍ ଦେଖିଛି ।

ହଠାତ୍ ମୋର ପ୍ରଶଂସାର ଆଭାସ ପାଇ ମୋ ମନରେ ସାମାନ୍ୟ ଆଶଙ୍କା ଦେଖାଦେଲା । କିନ୍ତୁ ଆଗରେ ସର୍ଦ୍ଦାରଜୀର ପଗଡ଼ିଟା ଆଡ଼େ ଦୃଷ୍ଟି ପଡ଼ିବାକ୍ଷଣି ମୁଁ ପୁଣି ବଳ ଫେରି ପାଇଲି । କହିଲି : ଯଦିଓ ଆପଣଙ୍କ ଅନୁମାନ ଅନେକାଂଶରେ ସତ୍ୟ କିନ୍ତୁ ମୋ ମନର ଅନୁସନ୍ଧିତ୍ସା ଯେ ଯଥେଷ୍ଟ ନାହିଁ, ଏହା ଆପଣ କହିଲେ ବି ମୁଁ ମାନିବାକୁ ରାଜି ନୁହେଁ ।

କିନ୍ତୁ ଆପଣ ଏତେ ଉଦାର କାହିଁକି ?

ଝିଅଟିର ଏହି ପ୍ରଶ୍ନରେ ମୁଁ ଟିକିଏ ଚିନ୍ତିତ ହୋଇ ପଡ଼ିଲି ।

: ମାନେ ?

: ମୋ ପ୍ରତି ଆପଣଙ୍କ ମନରେ ଅନୁସନ୍ଧିତ୍ସା ସତ୍ତ୍ୱେ ଆପଣ ନୀରବରେ ସବୁ ହଜମ କରି ଯାଉଛନ୍ତି । ଏହା ଆପଣଙ୍କର ଉଦାରତା ଛଡ଼ା ଆଉ କ'ଣ ହୋଇପାରେ ?

ମୁଁ ସେହି ଅଧା ଅନ୍ଧାର ଅଧା ଆଲୁଅ ଭିତରେ ଝିଅଟି ମୁହଁରୁ ଅଭିମାନର ଏକ ଭଙ୍ଗୀ ଦେଖିଲି ।

ସେ ତା' ଭ୍ୟାନିଟ ବ୍ୟାଗ ଖୋଲି ରୁମାଲ ବାହାର କରି ମୁହଁ ପୋଛିଲା ।

କହିଲା : ଆପଣ ଅନ୍ତତଃ ଭଦ୍ରତା ଦୃଷ୍ଟିରୁ ମୋ ନାଁ'ଟା ତ ପଚାରି ପାରିଥାନ୍ତେ?

: ମୁଁ ଯଦି ସେ ପ୍ରଶ୍ନ ଆପଣଙ୍କୁ ପଚାରେ ?

ଏଥର ସେ ଖିଲି ଖିଲି ହୋଇ ହସି ଉଠିଲା । କହିଲା : ଆପଣ ଭାରି ଇଏ, ମାନେ ମୋଟେ ଯୁଗୋପଯୋଗୀ ନୁହନ୍ତି। ସହଜ ଭାଷାରେ କହିଲେ, ଆପଣ ଗୋଟିଏ ପୂରା ମାଇଚିଆ ।

ଝିଅଟିର ଶେଷ ଶବ୍ଦଟା ଯଦିଓ ମୋତେ ଭୀଷଣ ବାଧିଲା, ତଥାପି ମୁଁ ତା' କଥା ନ ଶୁଣିଲା ପରି ବାହାରକୁ ଅନାଇ ରହିଲି ।

ସେ ମୋ ପାଖକୁ ଘୁଞ୍ଚିଆସି ଏବଂ ମୋ ଦେହ ଉପରେ ତା'ଦେହ ଭାର ନଦିଦେଇ କାନପାଖରେ ଥିରିଥିରି କରି କହିଲା: ମୋତେ କ୍ଷମା କରିବେ ମିଷ୍ଟର, କିନ୍ତୁ ଏ ଯୁଗରେ ଏତେ ଭଲ ମଣିଷ ହେଲେ, ସମାଜ ଆପଣଙ୍କୁ ଏକଘରକିଆ କରିଦେବ ଯେ !

ତେଣିକି ଆଉ ଘୁଞ୍ଚି ବସିବାକୁ ଜାଗା ନଥିଲା । ଝିଅଟିର ଦେହ ଭାରରେ ମୁଁ ବ୍ୟସ୍ତ ବା ବିରକ୍ତ ନ ହୋଇ ତା' ଆଡ଼େ ଶାନ୍ତ ଚାହାଣି ବୁଲେଇ କହିଲି : ଗୋଟାଏ ସତ କଥା କହିବି ?

: ନିଶ୍ଚୟ କହିବେ ।

: ଆପଣମାନଙ୍କ ପରି ଝିଅମାନଙ୍କ ପ୍ରତି ମୋର ମୋଟେ ଭଲ ଧାରଣା ନାହିଁ ।

ମୋର ଏଇ କଥା ଶୁଣି ସେ ଏତେ ଜୋରରେ ହୋ ହୋ ହୋଇ ହସି ଉଠିଲା ଯେ, ହଠାତ୍ କ'ଣ ଦୁର୍ଘଟଣା ଘଟିଲା ଭାବି ସର୍ଦ୍ଦାରଜୀ ଗାଡ଼ିରେ ବ୍ରେକ୍ କସିଦେଲା । ଝିଅଟି କିନ୍ତୁ ସେହିପରି ହସି ଚାଲିଥିଲା । ଶେଷରେ ସେ ମୋତେ ଅତି ସହଜ ସ୍ୱରରେ କହିଲା : ଆପଣ ଖାଲି ମାଇଚିଆ ନୁହନ୍ତି, ଗୋଟିଏ ବୋକା ବି ।

ମୁଁ ଝିଅଟି ମୁହଁରୁ ବାରମ୍ବାର ମୋ ସମ୍ବନ୍ଧରେ ଅପମାନସୂଚକ ଶବ୍ଦ ଶୁଣୁଥିଲେ ବି ତା' ଉପରକୁ କେଜାଣି କାହିଁକି ରାଗି ପାରୁନଥିଲି ।

ସେ ପୁଣି ନୀରବତା ଭଙ୍ଗ କରି କହିଲା : ତା' ହେଲେ ଦେଖା ଯାଉଛି ଆପଣଙ୍କ କାମଟା ମୋତେହିଁ କରିବାକୁ ପଡ଼ିବ ।

ମାନେ ?

ମାନେ ଆଉ କ'ଣ। ମୋ ତରଫରୁ ଆପଣଙ୍କ ସହିତ ବଂଧୁତାର ସୂତ୍ରପାତ କରିବାକୁ ପଡ଼ିବ । ଯେଉଁଟା ସାଧାରଣତଃ ପୁଅମାନଙ୍କଆଡୁ ଆରମ୍ଭ ହୋଇଥାଏ । ସେ ବ୍ୟଙ୍ଗ ମିଶା ସ୍ୱରରେ କହିଲା ।

ମୁଁ କିନ୍ତୁ ତା'ର ଏପରି ଆଚରଣରେ ମନେ ମନେ କ୍ଷିପ୍ତ ହୋଇ ଉଠୁଥିଲି । କହିଲି

:ଆପଣଙ୍କ ସହିତ ବଂଧୁତା ସ୍ଥାପନ ନକଲେ ବି ମୋର ଚଳିଯିବ ।

: କିନ୍ତୁ ମୋର ଯେ ଚଳିବ ନାହିଁ ମିଷ୍ଟର । ଆଚ୍ଛା କହିଲେ, ଏଥର ଆପଣଙ୍କ ନାଁଟା କୁହନ୍ତୁ । ମୋ ନାଁ ରୀଟା । ମୁଁ ଜାଣେ ଆପଣ ମୋ ନାଁ ମୋତେ ପଚାରି ନ ଥାନ୍ତେ ।

: ଆପଣ ତ ଅନ୍ୟ ମନର ଅନେକ କଥା ଜାଣି ପାରୁଛନ୍ତି ?

: ପାରୁଛି, ଆପଣମାନଙ୍କ ପରି ଲୋକଙ୍କର ମନୋଭାବ ଫଲୋ କରିବା ଯେତିକି ସହଜ, ପୁଣି ମିଷ୍ଟର ବାଜୋଡ଼ିଆ, ସାର୍ ସର୍ବାଧିକାରୀ ବା ମିସେସ୍ ସ୍ମିଥ୍ଙ୍କର ମନୋଭାବ ଫଲୋ କରିବା ସେତିକି କଷ୍ଟ । ଅଥଚ ଆପଣମାନେ ସମସ୍ତେ ଏହି ପାଣି ପବନର ଜୀବ । ମୁଁ ବି । ରୀଟା ପୁଣି ହସି ଉଠିଲା । କିନ୍ତୁ ଏଥର ହସରେ ତା'ର ଛନ୍ଦ ଥିଲା । ସେ ଛନ୍ଦର ଦୁର୍ବୋଧତା ମୋ ଅବଚେତନ ମନ ଭିତରେ ଏକ ପ୍ରବଳ ଆଲୋଡ଼ନ ସୃଷ୍ଟି କଲା । ମୋ ଲଙ୍ଗରହୀନ ଜାହାଜଟା ମଝି ସମୁଦ୍ରର କୌଣସି ଏକ ଚୋରା ପାହାଡ଼ରେ ଯେପରି ହଠାତ୍ ଟକ୍କର ଖାଇଲା । ମୁଁ ସଜାଡ଼ି ହୋଇ ବସି ରୀଟା ଆଡ଼କୁ ଚାହିଁଲି ।

ହଠାତ୍ ଯେପରି ଉଚ୍ଛଳ ତରଙ୍ଗ ଶାନ୍ତ ହୋଇ ଯାଇଛି ।

ଆଖିରେ ଆଖି ମିଶିବାକ୍ଷଣି ସେ ସାମାନ୍ୟ ହସିଲା ।

ମୁଁ କହିଲି : ମିଷ୍ଟର ବାଜୋଡ଼ିଆ, ସାର୍ ସର୍ବାଧିକାରୀ, ମିସେସ୍ ସ୍ମିଥ୍ ଏମାନେ ସବୁନ୍ତ ମାନେ ଏମାନେ କିଏ ?...

ରୀଟା ବୋଧହୁଏ ମୋ ଉଦ୍ଦେଶ୍ୟ ବୁଝି ପାରିଥିଲା । ହଠାତ୍ ସେ କଥାର ମୋଡ଼ ବଦଳାଇବାକୁ ଯାଇ କହିଲା : ନା ନା, ଏପରି କୌଣସି ବ୍ୟକ୍ତି ବିଶେଷଙ୍କ ସହିତ ମୋର କିଛି ନିଗୁଢ଼ ସଂପର୍କ ନାହିଁ, ତେବେ ଏମାନେ ଗୋଟାଏ ଗୋଟାଏ ଉଦାହରଣ। ଆପଣ ମନେ କରନ୍ତୁ ନାହିଁ ଯେ...

: ଉଁ ହୁଁ, ମୁଁ କିଛି ମନେ କରୁନାହିଁ ରୀଟା ଦେବୀ । ମୁଁ ଖାଲି...

: ପ୍ଲିଜ୍ ଆପଣ ମୋ ସମ୍ବନ୍ଧରେ ଆଗକୁ ବଢ଼ନ୍ତୁ ନାହିଁ । ଏଥର ଆପଣଙ୍କ ନାଁ'ଟା କୁହନ୍ତୁ । ଆପତ୍ତି ନଥିଲେ ପ୍ରଫେସନଟା ବି ।

: ମୋ ନାଁ ! ମୋ ନାଁ ଜାଣି ଆପଣଙ୍କର କିଛି ଲାଭ ହେବନାହିଁ । ତେବେ ପ୍ରଫେସନଟା ମୁଁ ଆପଣଙ୍କୁ କହିପାରେନ୍ତ ମୁଁ ଜଣେ ଲେଖକ ।

: ଆପଣ ଜଣେ ଲେଖକ ? ବାକ୍ୟଟା ରୀଟା ଏପରି ଭାବରେ ଉଚ୍ଚାରଣ କଲା ଯେ, ମୋର ମନେ ହେଲା, ସେ ଯେପରି ହାତ ପାଖରେ ସ୍ୱର୍ଗ ପାଇଛି । ମୋ ମୁହଁକୁ ଅପଲକ ଦୃଷ୍ଟିରେ କିଛି ସମୟ ଅନାଇ ରହି, ଦୁଇ ହାତ ଯୋଡ଼ି ନମସ୍କାର କରି ଅତି ଶାନ୍ତ ସ୍ୱରରେ କହିଲା : କ୍ଷମା କରିବେ ।

ମୁଁ ତା'ଆଡ଼େ ଅର୍ଥପୂର୍ଣ୍ଣ ଦୃଷ୍ଟିରେ ଚାହିଁ ପଚାରିଲି : ମାନେ ?

ସେ ଅତ୍ୟନ୍ତ ସହଜ ଓ ସରଳ ସ୍ୱରରେ କହିଲା : ମୁଁ ଆଜିଯାଏ ଲେଖକ ଦେଖି ନ ଥିଲି ।

ମୁଁ ହାସ୍ୟ ସମ୍ବରଣ କରି ନ ପାରି ହୋ ହୋ ହୋଇ ହସି ଉଠିଲି । ସେ କେବଳ ମୋ ଆଡ଼େ ମୁଗ୍ଧ ହୋଇ ଚାହିଁଥିଲା ।

ମୁଁ କହିଲି : ଆପଣ ସତରେ ହସେଇଲେ ରୀଟାଦେବୀ । ମୁଁ ବି ଆଜି ପର୍ଯ୍ୟନ୍ତ ଆପଣଙ୍କ ପରି ବୋକା ଝିଅ ଦେଖି ନ ଥିଲି ।

ରୀଟା କ'ଣ କହିବାକୁ ଯାଉ ବୋଧିହୁଏ ନିଜକୁ ସମ୍ବରଣ କରିନେଲା।

ସମାନ୍ୟ ନୀରବତା ପରେ ସେ ଅତି ବିନୟ ସ୍ୱରରେ ପଚାରିଲା,

: ଆପଣ କ'ଣ ଲେଖନ୍ତି ?

ରୀଟାର ଆଚରଣରେ ମୁଁ ଭୀଷଣ କୌତୂହଳୀ ହୋଇ ଉଠିଥିଲି। କହିଲି : ଗଳ୍ପ, ଉପନ୍ୟାସ। ମାନେ ଜୀବନ କଥା।

ରୀଟା ଗୁମ୍‌ମାରି କିଛି ସମୟ ନୀରବରେ ବସି ହଠାତ୍ କହିଲା, : ଆପଣ ମୋ ଜୀବନ କଥା ଲେଖି ପାରିବେ ?

: ପାରିବି ମାନେ ? ସେଇଥିପାଇଁ ତ ଆପଣଙ୍କୁ ଗାଡ଼ିରେ ଉଠାଇଚି। ମୁଁ ଉତ୍ସାହିତ ହୋଇ କହିଲି।

: କିନ୍ତୁ... ରୀଟା ଟିକିଏ ଅଟକିଲା। ଥରେ ବାହାରକୁ ଚାହିଁଲା। ସେତେବେଳେ ଶ୍ୟାମବଜାର ପଞ୍ଚଛକୀ ପାର ହୋଇଥିଲୁ।

: କିନ୍ତୁ ମୋ ଜୀବନ-କଥା ଆପଣଙ୍କ ଲେଖା ପରି ଏତେ ସହଜ ନୁହେଁ।

: ମୁଁ ଜାଣିଛି ରୀଟାଦେବୀ। ଦୁନିଆରେ କିଛି ସହଜ ନୁହେଁ, ଏବଂ ମୁଁ ପ୍ରଥମ ଦର୍ଶନରେ ସ୍ଥିର କରିଛି ଆପଣଙ୍କୁ ମୋ ବହିର ନାୟିକା କରି କଲିକତାକୁ ଆବିଷ୍କାର କରିବି। ଆଉ ଜାଣନ୍ତି ରୀଟା ଦେବୀ...

ମୋତେ ସେ ଚୁପ୍ ରହିବା ପାଇଁ ଇଙ୍ଗିତ କରି କହିଲା : ତା'ହେଲେ ମୁଁ ରୀଟାଦେବୀ ନୁହେଁ, ମିସ୍ ରୀଟା।

: ମାନେ ?

: ମୋତେ ଆପଣ ମିସ୍ ରୀଟା ଡାକିବେ। ଆଉ ଏଇ ଧୋତି ପଞ୍ଜାବି ? ବଙ୍ଗଳାର ''ଜାମାଇ ବାବୁ'' ପୋଷାକରେ ଆପଣ ମିସ୍ ରୀଟାକୁ ଆବିଷ୍କାର କରି ପାରିବେ ନାହିଁ। ତା'ଛଡ଼ା ଗୋଟାଏ ସର୍ତ୍ତ ମୋର ମାନିବାକୁ ହେବ।

: ଯଥା।

: କେତେକ ସ୍ଥଳରେ ଆପଣଙ୍କୁ ମୋର ବାଧ ହେବାକୁ ପଡ଼ିବ। ତା'ହେଲେ ଆପଣ ହୁଏତ ରୀଟାର କଲିକତାକୁ ଆବିଷ୍କାର କରି ପାରିବେ। କିନ୍ତୁ ସେ କାହାଣୀ ବ୍ୟଭିଚାରର କାହାଣୀ, ହତ୍ୟା ଆଉ ବିଭୀଷିକାର କାହାଣୀ, ମୁଖୋସଧାରୀ ନର ପିଶାଚମାନଙ୍କର କାହାଣୀ। ଆପଣଙ୍କ କଲମ ମୁନ ଶୀତଳ ହୋଇଯିବ, ଆପଣ କ'ଣ ପାରିବେ ସେ କାହାଣୀକୁ ରୂପ ଦେଇ ?

ରୀଟା ମୁହଁରେ କିପରି ଏକ ବେଦନାର ଛାୟାପାତ ଦେଖି ମୁଁ ସ୍ତବ୍ଧ ହୋଇଗଲି। କ୍ଷଣକ ଆଗର ଚପଳ ଛଳ ଛଳ ରୀଟା, ହଠାତ୍ ଯେ ଏପରି କରୁଣ ହୋଇ ପାରେ...

ସେ କହିଲା: ଆମେ ପାଖେଇ ଆସଲେଣି। ମୁଁ ଭାବିଥିଲି ଆମର ବନ୍ଧୁତ୍ୱ ଏଇ ଟ୍ୟାକ୍‌ସି ଯାତ୍ରାରେ ହିଁ ଶେଷ ହେବ। କିନ୍ତୁ ଆପଣ ଜଣେ ଲେଖକ ନ ହୋଇ ଯଦି ଧନି, ମାନୀ ରାଜ ରାଜେଶ୍ୱର ବି ହୋଇ ଥାଆନ୍ତେ, ଆପଣଙ୍କ ଉପକାର ବଦଳରେ ମୁଁ ସାମାନ୍ୟ କୃତଜ୍ଞତା ଜଣାଇବା ଛଡ଼ା ଆପଣଙ୍କ ପ୍ରତି ମୋର କୌଣସି ଆକର୍ଷଣ ନଥାନ୍ତା କିନ୍ତୁ ଆପଣ ଜଣେ ଲେଖକ। ଲେଖକମାନଙ୍କ ପ୍ରତି ମୋର କିପରି ଗୋଟାଏ ଶ୍ରଦ୍ଧା ରହି ଯାଇଚି ଅତି ପିଲା ଦିନରୁ। କିନ୍ତୁ ଦୁର୍ଭାଗ୍ୟ ଆଜି ପର୍ଯ୍ୟନ୍ତ କୌଣସି ଲେଖକକୁ ମୁଁ ଦେଖି

ନ ଥିଲି । ତେଣୁ ଆଜି ମୋର ସଞ୍ଚିତ ସମସ୍ତ ଶ୍ରଦ୍ଧାର୍ଘ୍ୟ ଆପଣଙ୍କ ପାଦରେ ଅଜାଡ଼ି ଦେବାକୁ ଇଚ୍ଛା ହେଉଛି ।

ରୀଟାର ଆଖିଯୋଡ଼ାକ ସଜଳ ହୋଇ ଉଠିଥିଲା ପରି ମୋର ମନେ ହେଉଥିଲା ।

ମୁଁ ବି ଏକ ପ୍ରକାର ଆତ୍ମସନ୍ତୋଷ ଅନୁଭବ କଲି ଏଇ ଦୃଷ୍ଟିରୁ ଯେ, ମୋର କଲିକତା ଆସିବା ହୁଏତ ସାର୍ଥକ ହୋଇଛି । ମୁଁ ଏପରି ଏକ ଚରିତ୍ରର ସନ୍ଧାନ ପାଇଛି, ଯାହା ସଚରାଚର ଦେଖା ଯାଏ ନାହିଁ, ମାନେ ରେଆର୍ । ମୋ ସୃଷ୍ଟି ରୀଟାକୁ ପାଇ ହୁଏତ ଜୀବନଧର୍ମୀ ହୋଇ ଉଠିବ ।

ମୁଁ କହିଲି : ମିସ୍ ରୀଟା ! ଆପଣଙ୍କ ଶ୍ରଦ୍ଧାର୍ଘ୍ୟ ଗ୍ରହଣ କରିବା ପାଇଁ ମୁଁ ଯୋଗ୍ୟ କି ଅଯୋଗ୍ୟ କହି ପାରିବି ନାହିଁ, ଆପଣଙ୍କୁ ପାଇ ମୁଁ ଯେ ଉପକୃତ ନ ହୋଇଛି, ସେକଥା ଅସ୍ୱୀକାର କରି ହେବ ନାହିଁ । କିନ୍ତୁ ଆପଣଙ୍କ ସହିତ ମୋର ପୁଣି କେବେ ଆଉ କେଉଁଠି ଦେଖା ହେବ ?

ରୀଟା ଟିକିଏ ରହି ମୁହଁରେ ମେଞ୍ଚାଏ ହସ ଫୁଟାଇବାକୁ ଚେଷ୍ଟା କରି କହିଲା, : ବର୍ତ୍ତମାନ, ମାନେ ଏଇ ମୁହୂର୍ତ୍ତର କଥା ମୁଁ କହୁନାହିଁ ବର୍ତ୍ତମାନ ମୁଁ ଗୋଟିଏ ପ୍ରାଇଭେଟ୍ ଫାର୍ମର ଟାଇପିଷ୍ଟ । ଦରମା କିନ୍ତୁ ଆଶାତୀତ ପାଏ । ଆପଣ ଧାରଣା କରି ପାରିବେ ନାହିଁ । ତା'ପରେ ଫୁଡ଼ିଙ୍ଗ, ଲଜିଙ୍ଗ୍ ସବୁ ଫ୍ରି । ପ୍ୟାଲେସ୍ ହାଉସ୍‌ରେ ଗୋଟାଏ ସୁଇଟ ମୋ ପାଇଁ ରିଜର୍ଭ । ସବୁ ଅବଶ୍ୟ କମ୍ପାନୀ ତରଫରୁ । ମୋର ନିମନ୍ତ୍ରଣ ରହିଲା, କାଲି ଆପଣ ପ୍ୟାଲେସ ହାଉସ୍ ସୁଇଟ୍ ନମ୍ବର ୫୫ରେ ଆସି ବ୍ରେକ୍‌ଫାଷ୍ଟ କରିବେ । ମୋର କାଲି ଅଫିସ୍ ନାହିଁ । ଯଦି ମୋତେ ଆପଣଙ୍କୁ ଭଲ ଲାଗେ, ମୋ ପାଖରେ ଲଞ୍ଚ୍ ବି କରିବେ ।

ରୀଟାର ଏକା ସଙ୍ଗରେ ଏତେ ଗୁଡ଼ାଏ ମୁଖରୋଚକ କଥା ଶୁଣି ମୁଁ ଟିକିଏ ପ୍ରଲୋଭିତ ହୋଇ ପଡ଼ିଥିଲି ।

: ସର୍ଦ୍ଦାର୍‌ଜୀ, ବାଯେ କହି ରୀଟା ସଜାଡ଼ି ହୋଇ ବସିଲା । ଟ୍ୟାକ୍‌ସି ପାର୍କ ଷ୍ଟ୍ରିଟ୍ ଭିତରେ ପଶିଲା ଏବଂ ରୀଟା ତା' ଭ୍ୟାନିଟି ବ୍ୟାଗ୍ ଖୋଲି ଗୋଟିଏ ଶହେ ଟଙ୍କାର ନୋଟ୍ ବାହାର କଲା ।

ଅଳ୍ପ ସମୟ ପରେ ରୀଟା ସର୍ଦ୍ଦାରଜୀକୁ ଟ୍ୟାକ୍‌ସି ଅଟକେଇବାକୁ କହିଲା ।

ମୁଁ କିନ୍ତୁ ରୀଟାଠାରୁ ଭଡ଼ା ଟଙ୍କା ନେବାକୁ ସର୍ଦ୍ଦାରଜୀକୁ ମନାକଲି ।

ରୀଟା ହସିଲା । କହିଲା : ମୁଁ ଆଜି ଯେଉଁ କାମରେ ଯାଇଥିଲି ଏବଂ ଆପଣଙ୍କ ପାଇଁ ସଫଳ ହୋଇ ଫେରି ଆସିଲି, ତା'ର ପାରିଶ୍ରମିକ ଏହାର ଦୁଇ ଶହ ଗୁଣ । ତେଣୁ ପ୍ଲିଜ୍, ଆପଣ ଆପତ୍ତି କଲେ ମୁଁ କଷ୍ଟ ପାଇବି ।

ସର୍ଦ୍ଦାରଜୀ ହାତକୁ ନୋଟଟି ବଢ଼ାଇ ଦେଇ ରୀଟା ମୋତେ କୋଠାଟି ଦେଖାଇ କହିଲା : ତିନି ତାଲାରେ, ଲିଫ୍‌ଟରୁ ଓହ୍ଲେଇ, ଡାହାଣ ହାତି । ଦୁଇଟା ରୁମ୍ ଛଡ଼ାରେ । ମୁଁ କିନ୍ତୁ କାଲି ବ୍ରେକ୍‌ଫାଷ୍ଟ ଟେବୁଲ୍‌ରେ ଆପଣଙ୍କୁ ଅପେକ୍ଷା କରିଥିବି ।

ସର୍ଦ୍ଦାରଜୀ ଟ୍ୟାକ୍‌ସି ଛୁଟେଇ ଦେଲା ।

ସେଦିନ ରାତିରେ ସହଜରେ ମୁଁ ଶୋଇ ପାରିଲି ନାହିଁ । ରୀଟା ପରି ଏକ ରହସ୍ୟମୟୀ ଝିଅ ବାରମ୍ବାର ମୋ ଆଖି ଆଗରେ ନାଚିବାକୁ ଲାଗିଲା । ରୀଟାର କଥା-ବାର୍ତ୍ତା, ପ୍ରଫେସନ, ଚାଲି-ଚଳନ, କାହାରି ସହିତ ମେଳ ନଥିଲା । ଅଥଚ ରୀଟା ମୋ ଆଖି ଆଗରେ ଠିଆ ହୋଇଥିଲା ଏକ ରହସ୍ୟ-ନାୟିକା ରୂପେ ।

ରୀଟା ଗୋଟିଏ ଟାଇପିଷ୍ଟ । ଦରମା ପାଏ ଆଶାତୀତ । କମ୍ପାନୀ ତରଫରୁ ତା'ପାଇଁ ଫ୍ରି ଫୁଡ଼ିଙ୍ଗ୍, ଲଜିଙ୍ଗ୍‌ର ବ୍ୟବସ୍ଥା, ଖାଲି ସେତିକି ନୁହେଁ, ଗୋଟିଏ ଗୋଟିଏ ବିଶେଷ କାର୍ଯ୍ୟପାଇଁ ଦିନ ଦିନକର ପାରିଶ୍ରମିକ ତା'ର କୋଡ଼ିଏ ହଜାର ଟଙ୍କା । ମୁଁ ଭାବି ପାରୁନଥିଲି ।

ସେଦିନ ରାତିରେ ମୋ ନିଦ ବାରମ୍ବାର ଭାଙ୍ଗିଲା । ମୁଁ ଉଠିଲି, ବସିଲି । ପୁଣି ଶୋଇଲି । ରୀଟାର ନିମନ୍ତ୍ରଣ ରକ୍ଷା କରିବା ପାଇଁ ମନଟା ମୋର ଛଟ ପଟ ହୋଇ ଉଠିଥିଲା, କିନ୍ତୁ ରାତ୍ରିର ଶେଷ ପ୍ରହରକୁ ଆଖିରେ ଏପରି ନିଦ୍ରା ଘାରିଲା ଯେ, ଯେତେବେଳେ ଉଠିଲି, ସେତେବେଳକୁ ଆଠଟା ବାଜି ଯାଇଥିଲା । ମୁଁ ଧଡ଼ପଡ଼ ହୋଇ ଉଠି, କୌଣସି ପ୍ରକାର ନିତ୍ୟକର୍ମ ଶେଷ କରି ବାଛି ବାଛି ମୋର ସବୁଠାରୁ ପ୍ରିୟ ସୁଟ୍‌ଟି ପିନ୍ଧି ସଙ୍ଗେ ସଙ୍ଗେ ବାହାରି ପଡ଼ିଲି ।

ରୀଟା ହୁଏତ ତେଣେ ମୋତେ ଅପେକ୍ଷା କରିଥିବ ।

ବାରମ୍ବାର ଲିଫ୍ଟ ପାଖକୁ ଆସି ଫେରି ଯାଉଥିବ ।

ସେ ହୁଏତ ବ୍ରେକ୍ ଫାଷ୍ଟ କରି ପାରୁ ନ ଥିବ ।

କିନ୍ତୁ ମୁଁ ଯେତେବେଳେ ଯାଇ ପ୍ୟାଲେସ୍ ହାଉସ୍‌ର ୫୫ ନମ୍ବର ସୁଇଟ୍ ପାଖରେ ପହଞ୍ଚିଲି, ଦରଜା ବନ୍ଦ ଥିଲା ।

ନକ୍ କଲି ।

ଭିତରୁ ଶୁଣି ପାରିଲି, କମ୍ ଇନ୍ ।

ଦରଜା ଠେଲିଲି । ଖୋଲିଗଲା । ଆଗେଇ ଗଲି । ପ୍ରଥମ ରୁମ୍ ପରେ ଦ୍ୱିତୀୟ ରୁମ୍ !

କିନ୍ତୁ...ଏ କ'ଣ ? ଆଖି ମୋର ବୁଜି ହୋଇ ଆସୁଥିଲା । ମୁଁ ଫେରି ଆସୁଥିଲି । ସେ କିନ୍ତୁ ହସି ଉଠି ଦେହର ଲୁଗାକୁ ସାମାନ୍ୟ ସଜାଡ଼ି, ଶେଯ ଉପରେ ଆଣ୍ଠୁମାଡ଼ି ବସି ମୋତେ ହାତ ଠାରି ଡାକିଲା ।

ଆଖି ଦୁଇଟା ସେତେବେଳକୁ ମୋର କପାଳକୁ ଉଠି ଯାଇଥିଲା । ମୁଁ କ'ଣ ଦେଖୁଛି ? କାହାକୁ ଦେଖୁଛି ?

ଶେଯ ଉପରେ ରୀଟା ବସିଛି । ଖଣ୍ଡିଏ ଲାଲ ପାଡ଼ୀର ଶାଢ଼ି ତା'ଦେହ ଉପରେ ଘୋଡ଼ା ହୋଇଛି ମାତ୍ର । ସେ ଅସଂଯତ, ଅର୍ଦ୍ଧ ଉଲଗ୍ନ । ଖଟ ତଳେ ଚଟାଣ ଉପରେ ଗୋଟାଏ ଦୁଇଟା ଖାଲି ବୋତଲ ଗଡୁଛି । ଦୁଇ ତିନିଟା ଗ୍ଲାସ ଫ୍ଲୋର ଉପରେ କିଏ ଯେପରି କଚାଡ଼ି ଭାଙ୍ଗି ଚୁରମାର୍ କରିଛି ।

ରୀଟା କିନ୍ତୁ ଶେଯ ଉପରେ ସେହିପରି ବସିରହି ମୋ ଆଡ଼କୁ କିପରି ଏକ କରୁଣ ଆଖିରେ ଚାହିଁ ହସିବାକୁ ଚେଷ୍ଟା କରୁଛି ।

ମୁଁ ଆଉ ଆଗକୁ ବଢ଼ି ପାରୁ ନାହିଁ କିମ୍ବା ପଛକୁ ଫେରି ପାରୁନାହିଁ ।

ରୀଟାର ବି ବେଶବାସ ସଜାଡ଼ିବାର କୌଣସି ଲକ୍ଷଣ ଦେଖା ଯାଉନାହିଁ ।

ରୀଟା ମୋ ଆଡ଼େ କେତେବେଳଯାଏ ଚାହିଁଥିଲା ଏବଂ ମୁଁ ରୀଟାର ସେହି ନଗ୍ନ ସୌନ୍ଦର୍ଯ୍ୟ ଆଡ଼େ ନିର୍ଲଜ୍ଜ ଭାବରେ କେତେବେଳଯାଏ ଚାହିଁ ରହିଥିଲି ମୋର ମନେ ନାହିଁ । କିନ୍ତୁ ଦରଜାରେ ପୁଣି ନକ୍ ହେବାରୁ ମୁଁ ସଚେତନ ହୋଇ କୁଆଡ଼େ ଯିବି କି କ'ଣ କରିବି ଚିନ୍ତା କରୁଛି, ରୀଟା ଠିଆ ହୋଇ ପଡ଼ି ମୋ ପାଖକୁ ଆଗେଇ ଆସି ମୋର ଗୋଟିଏ ହାତକୁ ଟାଣି ନେଇ ସୋଫା ଉପରେ ବସାଇ ଦେଲା । ତା'ର ବେଶ ବାସର ଅବସ୍ଥା ଯାହା ଥିଲା ଏବଂ ସେଥିପାଇଁ ଗୋଟଏ ଝିଅର ଯେତିକି ଲଜ୍ଜା ପାଇବାର କଥା, ରୀଟାଠାରେ ସେ ଲକ୍ଷଣ ମୋଟେ ମୁଁ ଲକ୍ଷ୍ୟ କରି ନଥିଲି । ବରଂ ମନେ ହେଉଥିଲା ସେହି ଅବସ୍ଥା କଥା ତା'ର ମୋଟେ ମନେ ନାହିଁ ।

ରୀଟା କିନ୍ତୁ ପୂରା ଆୟତ୍ତରେ ଥିଲା ପରି ମୋର ମନେ ହେଉ ନଥିଲା ।

ଦୁଆରେ ପୁଣି ନକ୍ ହେଲା ।

ମୁଁ ସୋଫା ଉପରେ ବସିଥିଲି। ରୀଟା ମୋ ମୁହଁକୁ ଚାହିଁ ଆଉ ଥରେ ହସି ଦେଇ କହିଲା : କମ୍ ଇନ୍ ।

ଦରଜା ଖୋଲି ଆଗନ୍ତୁକ ଘର ଭିତରେ ପ୍ରବେଶ କରିବା ପୂର୍ବରୁ ରୀଟା ମୋ ସାମ୍ନାରୁ ଅନ୍ୟ ଘରକୁ ଚାଲିଗଲା ।

ଦୁଆର ଖୋଲି ଯିଏ ପ୍ରବେଶ କଲା, ସେ ହୋଟେଲର ବୟ ।

ମୁଁ ଅନ୍ୟ ଘର ଭିତରୁ ପାଣି ପଡ଼ିବାର ଶବ୍ଦ ଶୁଣିଲି ଏବଂ ରୀଟାର ଗୁଣୁ ଗୁଣୁ କଣ୍ଠସ୍ୱର ଶୁଣିବାକୁ ପାଇଲି । ସେ ବୋଧହୁଏ ବାଥ୍‌ରୁମ୍‌ରେ ପଶିଥିଲା ।

ହୋଟେଲ ବୟଟି ମୋ ମୁହଁକୁ ଚାହିଁ ଏବଂ ତଳେ ଗଡୁଥିବା ଖାଲି ବୋତଲ ଆଡ଼େ ଚାହିଁ, ଖୁବ୍ ଜୋର୍‌ରେ ଗୋଟାଏ ସଲାମ ଠୁକିଲା । ନଇଁପଡ଼ି କାର୍ପେଟ ଉପରୁ ଭଙ୍ଗା ଗ୍ଲାସ୍‌ର କାଚ ଖଣ୍ଡଯାକ ଗୋଟେଇବାରେ ଲାଗିଲା ।

ମୁଁ ବୟ ମୁହଁରୁ ବିସ୍ମୟର କୌଣସି ଲକ୍ଷଣ ଦେଖିଲି ନାହିଁ । ଏଠାରେ ଯେପରି ଏସବୁ ଘଟଣା ନିତ୍ୟ ନୈମିତିକ ଏବଂ ବୟଟି ବୋଧହୁଏ ପ୍ରସ୍ତୁତ ହୋଇ ଆସିଥିଲା ଭଙ୍ଗା ଗ୍ଲାସଗୁଡ଼ିକ ଗୋଟେଇ ନେବାପାଇଁ ।

ମୁଁ ଉଠି ଠିଆ ହେଲି । ଯେତେବେଳେ ୫୫ ନମ୍ବର ସୁଇଟ୍‌ର ଦରଜା ଖୋଲି ମୁଁ ଭିତରକୁ ପଶିଥିଲି, ପ୍ରଥମେ ଯେଉଁ ଛୋଟ ଘରଟି ଭିତର ଦେଇ ମୋତେ ଆଗେଇ ଆସିବାକୁ ହୋଇଥିଲା, ସେଇଟି ଥିଲା ଡ୍ରଇଂ ରୁମ୍ । ବର୍ତ୍ତମାନ ମୁଁ ଯେଉଁଠି ବସିଛି, ସେଇଟି କ'ଣ ?

ସେଇ ଆଡ଼କୁ ମୁଁ ଆଗେଇ ଯାଉଥିଲି । ଦରଜା ମୁହଁରେ ଗୋଟିଏ ପର୍ଦ୍ଦା ଝୁଲୁଥିଲା । ପର୍ଦ୍ଦାଟା ଆଡ଼େଇ ଭିତରକୁ ପଶିବି କି ନାହିଁ ଚିନ୍ତା କରୁଚି ପାଖ ବାଥରୁମ୍‌ର ଦରଜା ସାମାନ୍ୟ ଖୋଲି ପୁଣି ବନ୍ଦ ହୋଇଗଲା । ବାଥ୍‌ରୁମ୍ ଭିତରୁ ମୁଁ ରୀଟାର କଣ୍ଠସ୍ୱର ଶୁଣିଲି : ପ୍ଲିଜ୍ ! ପୂର୍ବ ସ୍ଥାନକୁ ଫେରି ଯାଆନ୍ତୁ ।

ହୁଏତ ଏଇଟା ରୀଟାର ପ୍ରାଇଭେଟ୍ ରୁମ୍ । ସେ ହୁଏତ ବାଥ୍‌ରୁମ୍‌ରୁ ସିଧା ଫେରି ଆସିବ ଏଇ ରୁମ୍‌କୁ । ମନେ ମନେ ଲଜ୍ଜିତ ହୋଇ ମୁଁ ଫେରି ଆସିଲି ପୂର୍ବ ସ୍ଥାନକୁ ନୁହେଁ, ଏକଦମ୍ ଡ୍ରଇଂ ରୁମ୍‌କୁ ।

ବୟଟି ବଡ଼ ବଡ଼ କାଚଖଣ୍ଡଗୁଡ଼ିକ ଗୋଟେଇ ନେଇ ସାରିଥିଲା ଏବଂ ଝାଡୁଦାର ପହଁରା ଧରି ସଫା କରୁଥିଲା । ମୁଁ ଡ୍ରଇଂ ରୁମ୍‌ରେ ପହଞ୍ଚି ଚିନ୍ତା କରି ପାରୁ ନଥିଲି, ରୀଟା ଫେରିବାଯାଏ ଅପେକ୍ଷା କରିବି କି ଚାଲିଯିବି ।

ଡ୍ରଇଂ ରୁମ୍‌ର ପରିବେଶଟି ବଡ଼ ଶାନ୍ତ । ଖୁବ୍ ରୁଚି ପୂର୍ଣ୍ଣ । ଗୋଟିଏ ସୋଫା ସେଟ୍ । ଚାରିଖଣ୍ଡି ତୈଳ ଚିତ୍ର । ଗୋଟିଏ ପୁସ୍ତକ ପୂର୍ଣ୍ଣ ଆଲମିରା । ଗୋଟିଏ ରେଡିଓ ସେଟ୍ । କେତୋଟି ଶିଙ୍ଗ କାମ! ବଗ, ମାଛ, ହରିଣ । ବାସ୍ ସେତିକି । ଝରକାରୁ ବାହାରର ଆକାଶ ପାରିଷ୍କାର ଦିଶୁଛି । ମୁଁ ଗୋଟିଏ ତୈଳ ଚିତ୍ର ଆଡ଼େ ଚାହିଁ ଶିଳ୍ପୀର କଳ୍ପନା କ୍ଷମତା କଥା ଚିନ୍ତା କରୁଥିଲି। ଆମ୍ଭେ ଯେଉଁ ଉର୍ବଶୀର ପରିକଳ୍ପନା କରୁ ସ୍ୱର୍ଗରେ, ଶିଳ୍ପୀ କିନ୍ତୁ ସେଇ ଉର୍ବଶୀକୁ ଓହ୍ଲେଇ ଆଣିଛନ୍ତି ମର୍ତ୍ତ୍ୟକୁ ।

ଦୂରର ପାଦଶବ୍ଦ ଆଡ଼େ ମୋ ଦୃଷ୍ଟି ଫେରିଗଲା । କିଏ ? କାହାକୁ ମୁଁ ଦେଖୁଛି ଆଖି ଆଗରେ ? ଏ ତ ଶିଳ୍ପୀର ଉର୍ବଶୀ ନୁହେଁ, ସ୍ୱର୍ଗର ଉର୍ବଶୀ ସଶରୀରେ ଓହ୍ଲେଇ ଆସୁଚି ହୁଏତ । ଧୀରେ ଧୀରେ ପାଦେ ପାଦେ କରି ସେ ଆଗେଇ ଆସୁଥିଲା । ମୁଣ୍ଡର ବାଳ ଫୁରୁ ଫୁରୁ ଉଡୁଛି । ନାଲି ପାଡ଼ୀଆ ସାଦା ସିଲ୍‌କ ଶାଢ଼ିଟିଏ ପିନ୍ଧିଛି । କପାଳରେ ବିନ୍ଦୁଏ କୁଙ୍କୁମ । ମୁହଁରେ ସ୍ମିତ ହସ ।

ଏ କ'ଣ କ୍ଷଣକ ଆଗର ସେଇ ରୀଟା ? ଯାହାକୁ ମୁଁ ପ୍ରଥମ ଦର୍ଶନରେ ଅବାକ୍ ହୋଇ ଚାହିଁଥିଲି । ଅଗଣନ ଅସଂଯତ ପ୍ରଶ୍ନ ଭିତରେ ମୁଁ ଅଣାୟତ୍ତ ହୋଇ ପଡ଼ିଥିଲି ।

କିନ୍ତୁ ଏ ରୀଟା ଶୁଭ୍ର, ସଂଯତ, ଶାନ୍ତ ।

ହାତ ଯୋଡ଼ି ନମସ୍କାର କଲା ।

ମୁଁ ପ୍ରତି ନମସ୍କାର କଲି ।

ସେ କହିଲା ଆପଣ ନିଜଆଖିକୁ ବିଶ୍ୱାସ କରିପାରୁ ନାହାନ୍ତି, ନା ? ସେ ଗୋଟାଏ ସୋଫା ଉପରେ ବସିଲା ।

ମୁଁ ତଥାପି ରୀଟା ଆଡ଼େ ନିର୍ନିମେଷ ନୟନରେ ଅନାଇ ଥିଲି । ସେ ପୁଣି କହିଲା : ଆପଣଙ୍କୁ କିନ୍ତୁ ଏପରି ପୋଷାକ ମାନୁଚି ବେଶ୍ ।

ମୋ ଅଜାଣତରେ ଆଖି ଦୁଇଟା ମୋର ବୁଲି ଆସିଲା ନିଜ ବେଶ ପୋଷାକ ଉପରେ ।

ରୀଟା ଅଭିଯୋଗ କଲାପରି କହିଲା ଆପଣ କିନ୍ତୁ ଢେର ଡେରି କଲେ । ଏତେଟା ମୁଁ ଆଶା କରୁ ନଥିଲି ।

ସତରେ ରୀଟା ମୋତେ ଜଡ଼ କରି ଦେଇଥିଲା । କାରଣ ତା'ର ଆଚରଣ ଓ ଅଭିଯୋଗର ଉତ୍ତର ଦେବାକୁ ମୋ ମୁହଁରେ ଭାଷା ନ ଥିଲା ।

ସେତିକିବେଳେ ଦୁଇଜଣ ବୟ ଦୁଇଟି ଟ୍ରେ' ଧରି ସେଠାରେ ପହଞ୍ଚିଲେ ।

ଖାଦ୍ୟ ସରଞ୍ଜାମ ଆଡ଼େ ମୁଁ ଥରେ ଚାହିଁ ଆଖି ଫେରାଇ ନେଲି । ରୀଟା ଟ୍ରେ'ମଧ୍ୟରୁ ପ୍ଲେଟଗୁଡ଼ିକ ନିଜେ ବାହାର କରି ଟେବୁଲ ଉପରେ ସଜାଉଥିଲା ।

ମୁଁ କିନ୍ତୁ ରୀଟାଆଡ଼େ ସେହିପରି ନିର୍ଲଜ୍ଜଙ୍କ ଭଳି ଚାହିଁ ରହିଥିଲି ।

ରୀଟା ଯେ ମଫସଲର ଏକ ସମ୍ଭ୍ରାନ୍ତ ଘରର କୁମାରୀ କନ୍ୟା ନୁହେଁ, ସେ କଥା ରୀଟାକୁ ଏହି ବେଶରେ ଦେଖିଲେ କେହି ବିଶ୍ୱାସ କରି ପାରିବ ନାହିଁ ।

ରୀଟା ବୋଧହୁଏ ମୋର ଚାହାଣିର ଅର୍ଥ ବୁଝିପାରି ମନେ ମନେ କହୁଥିଲା, ତୁମେ ଯଦି ମୋତେ ଦେଖି ଏପରି ମୂକ ପାଲଟି ଯାଅ, ତା'ହେଲେ ମୋର ଦୁନିଆକୁ ଦେଖି ଜଡ଼ ହୋଇଯିବ । ତେଣୁ ହେ ଲେଖକ, ହେ ସ୍ରଷ୍ଟା, ତୁମେ ସ୍ତବ୍ଧ ହୁଅନାହିଁ, ଖାଲି ଯଦି ଦେଖିଯିବା ଆଉ ଲେଖିଯିବା ତୁମର ଧର୍ମ ହୁଏ, ତା'ହେଲେ ତୁମେ ମୋ ଜଗତର ଅନ୍ତରକୁ ସ୍ପର୍ଶ କରି ପାରିବ ନାହିଁ । ତୁମକୁ ମୋର ହାତଧରି ଓହ୍ଲେଇ ଆସିବାକୁ ହେବ ମୋ ସହିତ । ନରକ ହେଉ ବା ସ୍ୱର୍ଗ ହେଉ, ଆକାଶ ହେଉ ବା ପାତାଳ ହେଉ, ଯେଉଁ ଆଡ଼େ ପକ୍ଷ ବିସ୍ତାର କରି ମୁଁ ଉଡ଼ି ବୁଲିବି, ତମେ ତମର ସମସ୍ତ ଶକ୍ତି ଖଟାଇ ଆଣ୍ଠୁଗଣ୍ଠି ଛିଡ଼ାଇ ମୋତେ ଧରିବା ପାଇଁ ମୋ ପଛେ ପଛେ ଛୁଟିବ । ତା'ହେଲେ ହୁଏତ ସୃଷ୍ଟି ତମର ସାର୍ଥକ ହେବ, ତମେ ରୀଟାର ଦୁନିଆଟାକୁ ଆବିଷ୍କାର କରି ପାରିବ ।

ରୀଟା ଟ୍ରେ'ରୁ ସମସ୍ତ ପ୍ଲେଟ ବାହାର କରି ଦୁଇ ଭାଗରେ ବିଭକ୍ତ କରି ସାରିଥିଲା । ମୁଁ ଯେପରି ସବୁ ଦେଖି କିଛି ଦେଖି ପାରୁ ନ ଥିଲି । ଚିନ୍ତା ସ୍ରୋତରେ ମୋର କିପରି ଏକ ଅବଶତା ଭରି ରହିଥିଲା ।

ରୀଟା ହୁଏତ ମୋତେ ଆଉ ସହ୍ୟ କରି ପାରିଲା ନାହିଁ । ସେ ମୋ କାନ୍ଧରେ ହାତ ଥାପି ଚେଆର ଉପରେ ବସେଇବାକୁ ଚେଷ୍ଟା କରି କହିଲା : ଲେଖକମାନେ ଭାବୁକ ହୁଅନ୍ତି ଜାଣିଥିଲି, କିନ୍ତୁ ଆପଣଙ୍କ ପରି ଆତ୍ମସତ୍ତା ହରେଇଲେ ଲେଖକଙ୍କୁ ନେଇ କୌଣସି ଝିଅ ଘର କରି ପାରିବ ନାହିଁ ।

ମୁଁ ଚମକି ଉଠିଲି । ରୀଟା ମୁହଁରୁ ଏପରି କଥା ଶୁଣିବି, ଆଶା କରି ନ ଥିଲି । ତଥାପି ମୁଁ ନୀରବ ରହିଥିଲି । କିନ୍ତୁ ରୀଟା ବୋଧହୁଏ ମୋର ମନୋଭାବ ବୁଝିପାରି ହସି ହସି ମୋତେ ପଚାରିଲା, : କାହିଁକି, ମୋ ପରି ଗୋଟିଏ ଝିଅର ଜଣେ ଲେଖକଙ୍କୁ ବିବାହ କରି ଘର ସଂସାର କରିବାର ଅଧିକାର କ'ଣ ନାହିଁ ?

ଏଥର ଯଦିଓ ମୋ ଛାତି ଭିତରେ ଏକ କମ୍ପନ ଖେଳି ଉଠିଥିଲା, ମୁଁ ତାହା ଯଥାସମ୍ଭବ ଚାପି ରଖିବାକୁ ଚେଷ୍ଟା କରି ରହିଲି : ନିଶ୍ଚୟ । ଆପଣଙ୍କର ଅଧିକାର ଅଛି ରୀଟା ଦେବୀ, ନାରୀ ଆଉ ପୁରୁଷର ଜନ୍ମଗତ ଆଧିକାର ହେଉଛି ଜଣେ ଜଣକୁ ବିବାହ କରି ଘର ସଂସାର କରିବା । କିନ୍ତୁ ଆମେ ତାହା ଶୃଙ୍ଖଳିତ ଭାବରେ ପରିଚାଳିତ କରିବା ପାଇଁ ସମାଜର ସୃଷ୍ଟି କରିଛୁ ଏବଂ କେତେକ ଆଇନ କାନୁନ ସେଥିପାଇଁ ରଚନା କରିଛୁ । ଉଦ୍ଦେଶ୍ୟ, ଆମର ରୀତିନୀତି, ଆଚରଣ ଯେପରି ମନୁଷ୍ୟତ୍ୱର ବାଡ଼ ଡେଇଁ ପଶୁତ୍ୱରେ ପରିଣତ ନ ହୁଏ ।

ରୀଟା ଡାହାଣ ହାତରେ ଛୁରୀ ଏବଂ ବାଁହାତରେ କଣ୍ଟା ଧରି ପ୍ଲେଟ ଉପରେ ମୃଦୁ ଆଘାତ କରି ଏକ ନୂତନ ମିଉଜିକ୍‌ର ଛନ୍ଦ ସୃଷ୍ଟି କରିବାକୁ ଚେଷ୍ଟା କରୁଥିଲା । ଯେଉଁଟାକି ଆମର ଏହି 'ଡାଇଲଗ୍' ସହିତ 'ବ୍ୟାକ୍ ଗ୍ରାଉଣ୍ଡ ମିଉଜିକ୍' ପାଇଁ ମୋଟେ ଖାପ ଖାଉ ନଥିଲା ।

ସେ ସେହିପରି ଶବ୍ଦ କରୁ କରୁ କହିଲା: ହିତୋପଦେଶ ମୁଁ ଜୀବନରେ ଅନେକ

ଶୁଣିଛି ଏବଂ ଆଜି ଯେଉଁମାନେ ଶୁଣାଉଛନ୍ତି ସେମାନଙ୍କୁ ଦେଖିଲେ ମୋତେ ଭୀଷଣ ଡର ମାଡ଼େ ।

ରୀଟାର କଥାରେ ମୁଁ ଟିକିଏ ସଚେତନ ହୋଇ କହିବାକୁ ଯାଉଥିଲି...

: ନା ନା ଆପଣଙ୍କ କଥା ମୁଁ କହୁନାହିଁ । ରୀଟା ମୋତେ କହିବାର ସୁଯୋଗ ଦେଲାନାହିଁ । ସେ ପୁଣି କହିଲା: ଆଉ ଡେରି କରନ୍ତୁ ନାହିଁ । ଏ ସମସ୍ତ ଆଇଟମ୍ ଆପଣଙ୍କ ପାଇଁ ବିଶେଷ ଭାବରେ ଅର୍ଡର ଦିଆଇ ପ୍ରସ୍ତୁତ କରାଇଛି । ଥଣ୍ଡା ହୋଇଗଲେ ଏହାର କୌଣସି ସ୍ୱାଦ ପାଇବେ ନାହିଁ ।

ଏଥର ମୁଁ ବି ଛୁରୀ କଣ୍ଟା ଧରିଲି ।

କିଛି ସମୟ ନୀରବତା ଭିତରେ କଣ୍ଟା ଆଉ ପାଟି ଚାଲିଲା ।

ମୁଁ କିନ୍ତୁ ସ୍ଥିର ହୋଇ ରହି ପାରୁ ନଥିଲି । ମୋ ଆଖି ଯୋଡ଼ାକ ମୋତେ ମନା ମାନୁ ନଥିଲେ । ରହି ରହି ମୁଁ ରୀଟାର ସେହି ଶାନ୍ତ, ଗମ୍ଭୀର ମୁଖ ଆଡ଼େ ଚାହିଁ ଦେଉଥିଲି । ଅଶେଷ କାହାଣୀର ଗନ୍ତାଘର ଭିତରେ କିପରି ଏକ ନମ୍ର, କମନୀୟ କାନ୍ତି ଲୁଚି ରହିଚି!! କ୍ଷଣକ ପୂର୍ବର ରୀଟା, ଆଉ କ୍ଷଣକର ରୀଟା କିପରି ଏକ ଅନ୍ୟ ରୂପ ପରିଗ୍ରହଣ କରି ପାରିଚି !!

ଚାରି ଆଖି ମିଶିଗଲା ।

ରୀଟା ଫିକ୍ କିନା ହସି ଉଠି କହିଲା : ଆପଣ ମୋତେ ଆଦୌ ବିଶ୍ୱାସ କରି ପାରୁ ନାହାନ୍ତି । ମୁଁ ଲେଖିକା ନ ହେଲେ ବି ଅନ୍ୟର ମନ ବୁଝିବା ପାଇଁ ମୋତେ ଭଗବାନ ଗୋଟାଏ ଶକ୍ତି ଦେଇଛନ୍ତି । ସେଥିରୁ ମୁଁ ଯାହା ବୁଝୁଛି ଆପଣଙ୍କ କଳ୍ପିତ ରୀଟାକୁ ଆପଣ ଏ ଟେବୁଲ୍‌ରେ ଖୋଜି ପାଉ ନାହାନ୍ତି । କିନ୍ତୁ ବିଶ୍ୱାସ କରନ୍ତୁ, ମୁଁ ସେଇ ରୀଟା, ଆପଣ ଯାହାକୁ କାଲି ଟ୍ୟାକ୍‌ସିରେ ଉଠିବାର ସୁଯୋଗ ଦେଇ ଅଶେଷ ଉପକାର କରିଥିଲେ ଏବଂ ମୁଁ ସେଇ ରୀଟା ଯିଏ ଅଗରବାଲ୍ ବ୍ରଦର୍ସର ଟାଇପିଷ୍ଟ । ମୁଁ ସେଇ ରୀଟା ଯାହାକୁ ଆପଣ ଆଜି ପ୍ୟାଲେସ୍ ହାଉସ୍‌ର ୫୫ ନମ୍ବର ସୁଇଟ୍‌ରେ ଏକ ବିଶେଷ ଅବସ୍ଥାରେ ଆବିଷ୍କାର କରିଥିଲେ ଏବଂ ମୁଁ ସେଇ ରୀଟା ଯାହାକୁ ଆପଣ...

ବାହାରୁ ଦରଜାରେ କାହାର କରାଘାତ ଶୁଣି ରୀଟା ହଠାତ୍ ନୀରବ ହୋଇଗଲା ।

ରୀଟା ଦରଜା ଆଡୁ ଦୃଷ୍ଟି ଫେରାଇ ଯେତେବେଳେ ମୋ ଆଡ଼େ ଚାହିଁଲା, ଦେଖିଲି ତା'ର ସେହି ଆରକ୍ତ ମୁଖ ମଣ୍ଡଳରେ ଯେପରି ରକ୍ତଗୋଲାପ ବଦଳରେ ଏକ ଶ୍ୱେତ ମନ୍ଦାର ଝାଉଁଳି ପଡ଼ିଚି ।

ବୋଧହୁଏ ରୀଟା ସେ କରାଘାତ ସହିତ ପରିଚିତ ।

ମୁହୂର୍ତ୍ତକ ପାଇଁ ସେ ସାମାନ୍ୟ ବିବ୍ରତ ହୋଇ ପଡ଼ି କହିଲା, : ଏକ୍‌ସକିଉଜ୍ ମି, ଦୁଇ ମିନିଟ୍ ପାଇଁ ମୁଁ ଟିକିଏ ଆସୁଛି ।

ରୀଟା ମୋର କୌଣସି ଉତ୍ତରକୁ ଅପେକ୍ଷା ନକରି ସଙ୍ଗେ ସଙ୍ଗେ ଉଠି ଚାଲିଗଲା । ଦରଜା ଖୋଲି ବାହାରେ କାହା ସହିତ କି କଥା ହେଲା କେଜାଣି, ଦୁଇ ମିନିଟ୍‌ର ଯଥେଷ୍ଟ ପୂର୍ବରୁ ଫେରି ଆସି କହିଲା, : ଜନ୍‌କୁ ମୁଁ ବିଦା କରି ଦେଇ ଆସିଲି । ଅବଶ୍ୟ ସେଭଳି ଗୋଟିଏ ଚରିତ୍ର ସହିତ ଆପଣଙ୍କର ପରିଚିତ ହେବାର ଯଥେଷ୍ଟ ଆବଶ୍ୟକ ଥିଲା, କିନ୍ତୁ ମୁଁ ସାହସ କରି ପାରିଲି ନାହିଁ ।

: କାହିଁକି ? ସେ ଆସିଥିଲେ କ'ଣ କରିଥାନ୍ତା ।

ରୀଟା ଗୋଟାଏ, ଦୀର୍ଘଶ୍ୱାସ ଛୁଟାଇ, କଣ୍ଠରେ ଏକ ବ୍ୟଥା ଫୁଟାଇ କହିଲା ।

ହତଭାଗା, ହତଭାଗା ସେଇଟା । ଯେତେ ଯେଉଁଠି ତାକୁ ଜୀବନ ଧାରଣର ଉପାୟ ଠିକ୍ କରିଦେଲି, କେଉଁଠି ହେଲେ ସେ ଜୀବନକୁ ଧରି ରଖିବାକୁ ଚେଷ୍ଟା କଲାନାହିଁ । ଛାଡ଼ନ୍ତୁ, ଆପଣ ଖାଇ ଦିଅନ୍ତୁ । ହାତ ଉଠେଇ ବସିଲେ କାହିଁକି ?

ମୋର ପେଟ ପ୍ରାୟ ଭରି ଯାଇଥିଲା । ସବୁ ପ୍ଲେଟ୍‌ଗୁଡ଼ିକ ମୁଁ ପ୍ରାୟ ଶେଷ କରି ସାରିଥିଲି । କେବଳ ବାକି ଥିଲା ପୁଡ଼ିଂ ପ୍ଲେଟ୍‌ଟି । ରୀଟାର ସେଇଟା ପ୍ରିୟ ଖାଦ୍ୟ । କିନ୍ତୁ ରୀଟା ତା' ପୁଡ଼ିଂ ପ୍ଲେଟ୍‌ରେ ଚାମଚ ବୁଡ଼ାଉ ବୁଡ଼ାଉ ବାହାରକୁ ଉଠି ଯାଇଥିଲା । ଫେରି ଆସି ସେ ଏପରି ନିଷ୍କ୍ରିୟ ହୋଇ ପଡ଼ିଲା ଯେ, ମୋର ବି ହାତ ଉଠିଲା ନାହିଁ ମୋ ପୁଡ଼ିଂ ପ୍ଲେଟ୍ ଆଡ଼େ ।

ମୁଁ କହିଲି : ଆପଣଙ୍କ ପ୍ରିୟ ଖାଦ୍ୟ ପଡ଼ି ରହିଲା ଯେ !

ସେ କହିଲା : ଆଉ ପାରିବି ନାହିଁ, ଜନ୍‌କୁ ଯେଉଁଦିନ କଟୁକଥା କହି ଫେରେଇ ଦିଏ, ସେଦିନ ମୁଁ ଆଉ କିଛି ଖାଇପାରେ ନାହିଁ ।

: କିନ୍ତୁ ଆଜି ଆପଣ ଫେରେଇ ନ ଥିଲେ ଚଳିଥାଆନ୍ତା !

ସେ ମୋ ଆଡ଼କୁ ଚାହିଁଲା ଏବଂ ହାତରେ ଗୋଟାଏ ପ୍ଲେଟ୍ ଉପରେ ଖୁବ୍ ଜୋର୍‌ରେ ଦୁଇ ତିନିଥର ଚାମଚ ବାଡ଼େଇ କହିଲା : ଆପଣ ଜନ୍‌କୁ ଚିହ୍ନି ନାହାନ୍ତି, କିନ୍ତୁ ମୁଁ ତାକୁ ଅନେକ ଦିନରୁ ଚିହ୍ନେ । କାହାରି ଦୁଃଖରେ ସମବେଦନା ଜଣାଇବା ଅର୍ଥ ସେ ଯଦି ଆପଣଙ୍କ କାନ୍ଧରେ ସବାରି ହୁଏ, ଆପଣ ସେ କ୍ଷେତ୍ରରେ କ'ଣ କରିବେ ? ଜନ୍‌ଟା ମୂର୍ଖ, ଜନଟା ନିର୍ବୋଧ, ସେ ମଣିଷ ହୋଇ ପାରିବ ନାହିଁ ।

ରୀଟା ଟାୱେଲରେ ହାତ ପୋଛୁ ପୋଛୁ କଫି ପଟ୍ ଧରି ବୟ ରୁମ୍ ମଧ୍ୟରେ ପ୍ରବେଶ କଲା ।

ମୋର ମନ ପଡ଼ି ରହିଲା ଯାଇ ସେଇ ଜନ୍ ନାମଧାରୀ ଅଜ୍ଞାତ ଲୋକଟି ପଛ ପଟରେ ।

ଜନ୍ କ'ଣ ରୀଟାର କୌଣସି ଆତ୍ମୀୟ ? ନା...

: କଫି ପିଅନ୍ତୁ । ସୁବିଧା ଦେଖି ଜନ୍‌କୁ ଦିନେ ମୁଁ ଆପଣଙ୍କ ସହିତ ପରିଚୟ କରେଇ ଦେବି ।

ରୀଟା ମନରେ ଜନ୍ ଯେ ଏକ ବିଶେଷ ସ୍ଥାନର ଅଧିକାରୀ ତା' କଥାବାର୍ତ୍ତାରୁ ମୁଁ ଅନୁମାନ କରୁଥିଲି । କଫି କପ୍‌ଟା ଟିକିଏ ପାଖକୁ ଟାଣିନେଇ କହିଲି : ଜନ୍ ଏଠାକୁ ଆସିଥିଲା କାହିଁକି ?

ରୀଟା ବୋଧହୁଏ ଜନ୍ ସମ୍ବନ୍ଧରେ ମୋତେ ଆଉ ବିଶେଷ ଧାରଣା ଦେବାକୁ ଇଚ୍ଛା କରୁ ନଥିଲା । ସେଇଥିପାଇଁ ପ୍ରସଙ୍ଗ ଏଡ଼େଇ ଯାଇ ମୋତେ ପଚାରିଲା : ଏହାପରେ ଆପଣଙ୍କ ପ୍ରୋଗ୍ରାମ କ'ଣ ?

: କିଛି ନାହିଁ ।

: ତା'ହେଲେ ଏଇଠି ଲଞ୍ଚର ବ୍ୟବସ୍ଥା କରୁଛି ।

ମୁଁ ନୀରବ ରହିଲି ।

କ୍ଷଣକ ଆଗର ସେହି ଶାନ୍ତ ସଂଯତ ରୀଟାର ମୁହଁରେ ଯେପରି ଧୀରେ ଧୀରେ ପରିବର୍ତ୍ତନ ଦେଖା ଦେଉଥିଲା । ଜ୍ୱନ୍ ଆସି ହୁଏତ ତା'ମନର ସମସ୍ତ ଶାନ୍ତି ନଷ୍ଟ କରି ଦେଇଯାଇଛି । କିନ୍ତୁ କିଏ ସେଇ ଜନ୍ ? କିଏ ବା ରୀଟା ? ଯାହାର ସାମାନ୍ୟ କେଇ ମିନିଟ୍‌ର ଆୟ ହଜାର ହଜାର ଟଙ୍କାର, ଯିଏ ସାମାନ୍ୟ ଜଣେ ଟାଇପିଷ୍ଟ୍ ହୋଇ ବି ରାଜକୁମାରୀ ପରି ଜୀବନ ଯାପନ କରୁଛି, ତା'ର ବା ଅସଲ ପରିଚୟ କ'ଣ ?

ରୀଟା ସିଟରୁ ଉଠିଯାଇ ବୋଧହୁଏ ଲଞ୍ଚର ଅର୍ଡ଼ର ଦେବାକୁ ଯାଉଥିଲା । କିନ୍ତୁ ବୟ ଦରଜା ଖୋଲି ଭିତରକୁ ପଶି ଆସି ରୀଟା ହାତକୁ ଖଣ୍ଡେ ଛିଣ୍ଡା କାଗଜ ବଢ଼ାଇ ଦେଲା ।

ରୀଟା ସ୍ତବ୍ଧ ହୋଇ ମୁହୂର୍ତ୍ତେ ଠିଆ ହୋଇପଡ଼ି ଥରେ ମୋ ଆଡ଼କୁ ଓ ଆଉଥରେ କାଗଜଟି ଆଡ଼େ ଚାହିଁ ପଛକୁ ପାଦ ଲେଉଟାଇ ଅନ୍ୟ ଘରକୁ ଚାଲିଗଲା । ତା'ପଛେ ପଛେ ଚାଲିଥିଲା ବୟଟି ।

କିଛି ସମୟ ପରେ ବୟ ଓ ରୀଟା ଫେରି ଆସିଲେ ।

ଏଥର ରୀଟା ମୁହଁରେ ହସର କ୍ଷୀଣ ଆଭାସ ପାଇ ମୁଁ ଟିକିଏ ଆଶ୍ୱସ୍ତ ହେଲି ।

ରୀଟା କହିଲା : ନିଶ୍ଚିନ୍ତରେ ମୁହୂର୍ତ୍ତେ ବସି ନିଃଶ୍ୱାସ ମାରିବାର ସୁଯୋଗ ନାହିଁ ।

ମୁଁ ରୀଟା କଥାର ଗୂଢ଼ ରହସ୍ୟ ଯଦିଓ ଉଦ୍‌ଘାଟନ କରି ପାରୁ ନଥିଲି, ତଥାପି ମୋ ମନରେ କିପରି ଏକ ଝାପ୍‌ସା ଗୋଲକଧନ୍ଦାର ସୃଷ୍ଟି ହୋଇଥିଲା ।

ମୁଁ ପଚାରିଲି : ଏହାପରେ ଆପଣ କ'ଣ କରିବେ ?

ରୀଟା କହିଲା : ଆପଣଙ୍କ ସହିତ ଦିନଟି କଟେଇବି ବୋଲି ସ୍ଥିର କରିଛି । ଆପଣଙ୍କର କୌଣସି ଆପତ୍ତି ଅଛି ?

: ନା ନା, ମୁଁ ଭାବୁଛି କାଳେ ମୁଁ ଆପଣଙ୍କର ସମୟ ନଷ୍ଟ କଲି ।

ରୀଟା ହସି ଉଠି କହିଲା : ମୋ ସୁବିଧା ଅସୁବିଧାର ଦିଗପ୍ରତି ଦୃଷ୍ଟି ଦେବାପାଇଁ ମୋର ଯଥେଷ୍ଟ ଜ୍ଞାନ ଅଛି । ସେଥିପାଇଁ ଆପଣ ଚିନ୍ତା ନ କଲେ ଚଳିବ । ତେବେ ବର୍ତ୍ତମାନ ଆପଣ ମୋ ଠାରୁ କ'ଣ ଆଶା କରୁଛନ୍ତି ?

: କିଛି ଶୁଣିବାକୁ କିମ୍ବା ଦେଖିବାକୁ ।

ରୀଟା ମୋ ସାମନା ସୋଫା ଉପରେ ବସୁ ବସୁ କହିଲା: ମୋତେ ଦେଖି ଆପଣଙ୍କର କ'ଣ ମନେ ହେଉଛି ।

: ବେଶ୍ ଭଲରେ ଅଛନ୍ତି । କିଛି ଜଞ୍ଜାଳ ନାହିଁ, ଦୁର୍ଭାବନା ମଧ ନାହିଁ । ତେଣୁ ଜୀବନଟାକୁ ଜୀବନ ପରି ଉପଭୋଗ କରି ଚାଲିଛନ୍ତି ।

ରୀଟା ହସିଲା । ହସି'ହସି ଲୋଟି ପଡ଼ିଲା ଯେମିତି । କହିଲା, ଆପଣଙ୍କର କଳ୍ପନା ଶକ୍ତି ପ୍ରଖର । ମୁଁ ଭଲରେ ଅଛି, ଆନନ୍ଦରେ ଅଛି, ଜୀବନକୁ ଜୀବନ ପରି ଉପଭୋଗ କରୁଛି, ମୋର ଏହି ଘର ଦ୍ୱାର ଆସବାବପତ୍ର ଦେଖିଲେ କିଏ ମନେ ନ କରିବ । କିନ୍ତୁ ମୁଁ ଭାବିଥିଲି ଲେଖକମାନେ ଖୁବ୍ ଦୂରଦୃଷ୍ଟି ସମ୍ପନ୍ନ ହୁଅନ୍ତି ।

ଦରଜା ଠେଲି ଭିତରକୁ ଯିଏ ପ୍ରବେଶ କଲା, ଖୁବ୍ ବେଶିହେଲେ ତା'ର ବୟସ ଅଠର ଉଣେଇଶରୁ ବେଶି ହେବ ନାହିଁ । ଚେହେରାଟି ଶାନ୍ତ, ମଧୁର । ଆଖିର ଚାହାଣିରେ କିପରି ଭୀତ ଚକିତ ଭାବ । ବୋଧହୁଏ ମୋର ଉପସ୍ଥିତି ଅନୁଭବ କରି ।

ରୀଟା ମୋ ଆଡ଼େ ଚାହିଁ କହିଲା : ମାଷ୍ଟର ଅଗରବାଲ୍। ଅଗରବାଲ୍ ବ୍ରଦର୍ସର ସର୍ବ କନିଷ୍ଠ । ତା'ଆଡ଼େ ଚାହିଁ ମୋତେ ଦେଖେଇ କହିଲା : ଏ ମୋର ବଂଧୁ ଜଣେ ଲେଖକ ।

ମାଷ୍ଟର ଅଗରବାଲ୍ ବିନୀତ ଭଙ୍ଗୀରେ ମୋତେ ନମସ୍କାର କରି ସୋଫାର ଗୋଟିଏ ଆସନ ଅଧିକାର କରି ବସିଲା ।

ରୀଟା କହିଲା : କ'ଣ କୌଣସି ଜରୁରୀ କାର୍ଯ୍ୟର ନୋଟିସ ଧରି ଆସିଛନ୍ତି ?

ମାଷ୍ଟର ଅଗରବାଲ ସ୍ମିତ ହସି କହିଲା : ନା, ପାର୍କଷ୍ଟ୍ରିଟ୍‌ରେ ମୋର ଜଣେ ବଂଧୁ ଘରକୁ ଆସିଥିଲି । ଟିକିଏ ଚାଲି ଆସିଲି ।

: ଭଲ କଲେ, ଚା'ନା କଫି କ'ଣ ଅଣେଇବି ?

କିଛି ଦରକାର ନାହିଁ । ମୁଁ ଏଇକ୍ଷଣି ପିଇ ଆସିଚି । ଆପଣଙ୍କ ସାଂଗରେ ଟିକିଏ...

ରୀଟା ଆଉ ମୁହୂର୍ତ୍ତେ ବିଳମ୍ବ ନ କରି ଅନ୍ତରାଳକୁ ଉଠିଗଲା । ପାଞ୍ଚ ସାତ ମିନିଟ୍ ପରେ ମାଷ୍ଟର ଅଗରବାଲ୍ ଓ ରୀଟା ଫେରି ଆସିଲେ । ମାଷ୍ଟର ଅଗରବାଲ୍ ମୋ ଆଡ଼େ ସାମାନ୍ୟ କଣେଇ ଚାହିଁ ଆଗ ପରି ବିନୀତ ଭଂଗୀରେ ଗୋଟିଏ ନମସ୍କାର କରି ବାହାରି ଗଲା ।

ରୀଟା ପୁଣି ମୋ ପାଖକୁ ଫେରି ଆସି, ନିଜର ଆସନ ଗ୍ରହଣ କରି କହିଲା

: ମୋର ଗୋଟିଏ କଥା ରଖିବେ?

: କୁହନ୍ତୁ ।

: ଚାଲନ୍ତୁ ଆମେ ଏଠାରୁ ଚାଲିଯିବା ।

: କୁଆଡ଼େ ?

: ଯେ କୌଣସି ହୋଟେଲରେ ଗୋଟିଏ ରୁମ୍ ନେଇ ନିଭୃତରେ ବସି ବସି ଗଳ୍ପ କରିବା । କୌଣସି ବାଧା ନଥିବ, ବନ୍ଧନ ନଥିବ ।

: କିନ୍ତୁ ହୋଟେଲବାଲା କ'ଣ କେଇ ଘଣ୍ଟା ପାଇଁ ଆମକୁ ରୁମ୍ ଦେବେ ?

: କେଇ ଘଣ୍ଟା କାହିଁକି, କେଇଦିନ ପାଇଁ ଆମେ ବୁକ୍ କରିବା । ସେଇଠି ବସି ବସି, ଗପି ଗପି ଆମର ଅବସର ସମୟଯାକ କଟାଇଦେବା ।

ମୁଁ କିନ୍ତୁ ମାଷ୍ଟର ଅଗରବାଲ କଥା ଭାବୁଥିଲି । ଅଗରବାଲ ବ୍ରଦର୍ସର ସର୍ବ କନିଷ୍ଠ ସେ । ଅଥଚ ଛୁଟି ଆସିଛି ରୀଟା ପାଖକୁ । ନୂତନ ଜୀବନର ଅୟମାରମ୍ଭ ତା'ର । ଆଖିରେ ଆଖିଏ ସ୍ୱପ୍ନ ଧରି ସେ କାହିଁକି ଆସିଥିଲା ରୀଟା ଦ୍ୱାରକୁ ?

ରୀଟା କହିଲା   ଆପଣଙ୍କର ଏହି ନୀରବତା ମୋତେ କିନ୍ତୁ ଅଶେଷ ପୀଡ଼ା ଦେଉଛି ।

ମୁଁ ପ୍ରକୃତିସ୍ଥ ହେଲି । କହିଲି : କ୍ଷମା କରିବେ । ବେଳେ ବେଳେ ମୁଁ ଏହିପରି ଆତ୍ମସତ୍ତା ହରେଇ ବସେ । କିନ୍ତୁ ଆପଣ ତ କାହା ସମ୍ବନ୍ଧରେ କିଛି କହିବାକୁ ପ୍ରସ୍ତୁତ ନୁହନ୍ତି । ତେଣୁ ଅଯଥା ଆପଣଙ୍କୁ ବିରକ୍ତ କରି ଲାଭ କ'ଣ ।

ରୀଟା ପୁଣି ହସିଲା । କହିଲା : ଆପଣ ତ କିଛି ନ ଦେଖିଶୁଣି ମୋ ସହିତ ବିଦ୍ରୋହ ଘୋଷଣା କରି ସାରିଲେଣି, ଆଉ ଯେତେବେଳେ କ୍ଲାଇମାକ୍ସରେ ପହଞ୍ଚିବେ,

ସେତେବେଳେ ମୋର ଅବସ୍ଥା କ'ଣ ହେବ। ଶୁଣନ୍ତୁ, ଅଧିକ ଯେଉଁଠି ଜାଣିବାର ଆବଶ୍ୟକ ହେବ ମୁଁ ଜଣାଇଦେବି।

ରୀଟାର ଏହିପରି ଖାପଛଡ଼ା କଥାରେ ମୁଁ ଖୁବ୍ ଗୋଟାଏ ସନ୍ତୁଷ୍ଟ ହୋଇ ପାରିଲି ନାହିଁ। ମୋର ସମୟ ଗୁଡ଼ାକ ଯେ ଏକାବେଳେ ମୂଲ୍ୟହୀନ, ତାହାବି ମୁଁ ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହେଁ। ରୀଟା କଥାର ଉତ୍ତର ଦେବାକୁ ଯାଇ କହିଲି : କିନ୍ତୁ କେଉଁଟା ଦେଖିବାକୁ, କେଉଁଟା ଶୁଣିବାକୁ, ପୁଣି କେଉଁଟା ଜାଣିବାକୁ ମନରେ ଆଗ୍ରହ ଜନ୍ମେ, ମୁଁ ଆପଣଙ୍କଠାରୁ ସ୍ୱତନ୍ତ୍ର ଲୋକ ହୋଇ ଥିବାରୁ, ସେ ସ୍ୱାଧୀନତାଟା ସଂପୂର୍ଣ୍ଣ ମୋର ନିଜସ୍ୱ। ତେଣୁ ତାହା ଆପଣଙ୍କୁ ଦେଇ ପାରିବି କିପରି ?

ରୀଟା ବୋଧହୁଏ କ'ଣ କହିବାକୁ ଯାଉଥିଲା। କିନ୍ତୁ କେଉଁଠି ଗୋଟିଏ ବେଲ୍ ବାଜି ଉଠିବା ଶବ୍ଦରେ ଆମେ ଦୁହେଁ ସଚେତନ ହୋଇ ଉଠିଲୁ।

ରୀଟା ଯନ୍ତ୍ରଚାଳିତ ପରି ସୋଫା ଉପରୁ ଉଠି ପଡ଼ି କହିଲା : ମୋର ଫୋନ୍ ଆସିଛି ମୁଁ ମ୍ୟାନେଜର ଘରୁ ଆସୁଛି।

ସେ ଚାଲିଗଲା। ଫେରିଲା ଅଳ୍ପ କେତୋଟି ମିନିଟ୍ ପରେ। କିନ୍ତୁ ଏଥର ମୁହଁ ଉପରେ ସେ ଏକ ଉଦ୍‌ବେଗର ଚିହ୍ନ ଫୁଟାଇ ଆସିଲା। ତାକୁ କିପରି ଅପ୍ରକୃତିସ୍ଥ ପରି ମନେ ହେଲା। ସେ ଆସି ମୋରି ଦେହକୁ ଲାଗି ବସି ପଡୁ ପଡୁ କହିଲା : ଗୋଟାଏ ଅଡୁଆ ହୋଇଗଲା। ମୋତେ ଏଇକ୍ଷିଣା ଟିକେ ବାହାରିବାକୁ ହେବ।

ମୁଁ ଶାନ୍ତ ସ୍ୱରରେ କହିଲି : ଅଡୁଆଟା ଆଉ କେଉଁଠି ?

: ଏଇ, ମାନେ ଆପଣଙ୍କୁ ନିମନ୍ତ୍ରଣ କରି ଆଣି...

: ଓ, ନା ନା, ସେଥିପାଇଁ ମୁଁ କିଛି ଭାବିବି ନାହିଁ।

: ମୋର ବି ଉପାୟ ନାହିଁ। ମୋତେ ବାହାରିବାକୁ ହିଁ ହେବ।

ମୁଁ ପରିହାସ ଛଳରେ କହିଲି : ଏଥର କ'ଣ ଦମ୍ ଦମ୍ ନା ସାନ୍ତାକ୍ରୁଜ ?

ମୁହୂର୍ତ୍ତକ ପାଇଁ ରୀଟାର ମୁହଁଟା ଶେତା ପଡ଼ିଗଲା। ସେ ମୋତେ କହିଲା ଆପଣ କିପରି...

ଅଟକି ଯାଇ ପୁଣି ନିଜକୁ ସଂଯତ କରି ନେଇ ଆଉ ଥରେ ପଚାରିଲା: ଆପଣଙ୍କର ଅନୁମାନ କ'ଣ ?

ଏଥର ମୁଁ କିନ୍ତୁ ହସିଲି। କହିଲି : ମୁଁ ଆପଣଙ୍କର ଶୁଭ କାମନା କରୁଛି।

ରୀଟା କହିଲା: ଆପଣ ତା'ହେଲେ ଏଉଠୁ ଲଞ୍ଚ ଖାଇ ଯିବେ ?

: ନା ନା, ଆଜି ଆପଣ ଲଞ୍ଚର ପ୍ରୋଗ୍ରାମ ବନ୍ଦ କରାଇ ଦିଅନ୍ତୁ ଆଉ ଦିନକୁ ତିଉ ରହିଲା।

ମୁଁ ଦେଖିଲି, ରୀଟା ଦେହ ମନରେ ଖୁବ୍ ଚଞ୍ଚଳ ହୋଇ ଉଠୁଥିଲା। ସେ ଏପରି ଏକ ସଂବାଦ କେଉଁଠୁ ପାଇଥିଲା, ହୁଏତ ସେଇଟା ଖୁବ୍ ଗୁରୁତ୍ୱପୂର୍ଣ୍ଣ ଅଥବା ଏପରି କେହି ନେତୃସ୍ଥାନୀୟ ଲୋକ ତାକୁ ଫୋନ୍ କରିଥିଲା, ଯାହାର ଆଦେଶ ସେଇ ମୁହୂର୍ତ୍ତରେ ପାଳନ କରିବା ଆବଶ୍ୟକ ହୋଇ ପଡ଼ିଥିଲା।

ମୁଁ ଦେଖିଲି ରୀଟା ମୋରି ପାଇଁ ଦ୍ୱିଧାଗ୍ରସ୍ତ ହୋଇ ପଡ଼ିଛି।

ଆଉ ସେଠାରେ ବସି ରହିବା ମୁଁ ଉଚିତ ମଣିଲି ନାହିଁ।

ମୁଁ ଘର ବାହାରକୁ ବାହାରି ଯିବା ପୂର୍ବରୁ ରୀଟା କହିବାର ଶୁଣିଲି : କାଲି କିନ୍ତୁ ଲଞ୍ଚ୍ ପାଇଁ ମୁଁ ଆପଣଙ୍କୁ ଅପେକ୍ଷା କରିଥିବି, ନ ଆସିଲେ ମୋର ଅନଶନ ଜାଣିବେ ।

୫୫ ନମ୍ବର ସୁଇଟ୍‌ରୁ ବାହାରି ପଡ଼ି, ଦୁଆରର କବାଟଟା ଆଉଜେଇ ଦେଲି ।

ବାହାରେ କାହାରିକୁ ଦେଖିଲି ନାହିଁ । ସବୁ ସୁଇଟ୍ ଗୁଡ଼ିକରେ ଦୁଆର ବନ୍ଦ ଥିଲା । ମୁଁ ଚାଲି ଚାଲି ଡାହାଣ ପାଖକୁ ଆଗେଇ ଗଲି । ୫୬, ୫୭ ଓ ୫୮ ନମ୍ବର ସୁଇଟ୍ ପରେ ଯେଉଁ ରୁମ୍‌ଟି ସେଇଟି ବୋଧହୁଏ ମ୍ୟାନେଜରଙ୍କ ଅଫିସ ।

ଜଣେ ଅର୍ଦ୍ଧ ବୟସ୍କ ଭଦ୍ରଲୋକ ବସି ଖାତା ଲେଉଟାଉଥିଲେ ।

ମୋର ପାଦ ଶବ୍ଦ ଶୁଣି ମୋ ଆଡ଼େ ବୁଲି ପଡ଼ି ପଚାରିଲେ : ଆପଣଙ୍କ ପାଇଁ ମୁଁ କ'ଣ କରିପାରେ ?

: ଧନ୍ୟବାଦ । ମୋର କେବଳ ଗୋଟିଏ ଫୋନ କରିବାର ଆବଶ୍ୟକ ଅଛି ।

ଭଦ୍ରଲୋକ ଟେଲିଫୋନ ଯନ୍ତ୍ରଟି ମୋତେ ଦେଖେଇ ଦେଇ, ପୁଣି ସେ ଖାତା ଲେଖିବାରେ ବସିଗଲେ । ମୁଁ ଚାହିଁଲି । ବାଙ୍ଗର ଲୋକଟି । ମୁଣ୍ଡର ବାଳ ଧଳା ହେବାକୁ ଆରମ୍ଭ କଲାଣି । ଦେହର ଗଠନ କିନ୍ତୁ ଖୁବ୍ ନିଦା । ରଙ୍ଗଟି ମୁଗୁନି ପଥର ପରି ।

ଟେଲିଫୋନର ରିସିଭର ଉଠାଇ ଅଯଥାରେ କେତୋଟି ନମ୍ବର ଡାଏଲ କରିବା ପରେ, ମନକୁ ମନ ଏନ୍‌ଗେଜଡ୍ କହି ରିସିଭରଟି ଯଥା ସ୍ଥାନରେ ରଖିଦେଲି । ଭଦ୍ରଲୋକ ଏକ ମନରେ ଖାତା ଲେଖୁଥିଲେ । ଟେବୁଲ ପାଖକୁ ଲାଗି ଆସି କହିଲି : ଏକ୍ସ୍‌କିଉଜ ମି, ଆପଣଙ୍କୁ ଡିସ୍‌ଟର୍ବ କଲି ।

ଭଦ୍ରଲୋକ ମୋ ଆଡ଼େ ଚାହିଁ ଟିକିଏ ହସିବାକୁ ଚେଷ୍ଟା କରି କହିଲେ: ନୋ ସାର୍, ଆପଣଙ୍କ ସେବା କରିବା ହିଁ ମୋର ଧର୍ମ । କିନ୍ତୁ ମୁଁ ଅତ୍ୟନ୍ତ ଦୁଃଖିତ ଯେ ପ୍ୟାଲେସ ହାଉସରେ ଗୋଟିଏ ବି ସୁଇଟ୍ ଖାଲି ନାହିଁ ।

ମୁଁ ପକେଟ୍‌ରୁ ଗୋଟିଏ ଟଙ୍କା ବାହାର କରି ଭଦ୍ରଲୋଙ୍କ ହାତକୁ ବଢ଼ାଇ ଦେଇ କହିଲି: ଫୋନ୍ ଚାର୍ଯ ବାବଦରେ ।

ସେ କିନ୍ତୁ ଅତ୍ୟନ୍ତ ବିନୀତ ଭାବରେ କହିଲେ: ଲଜ୍ଜା ଦିଅନ୍ତୁ ନାହିଁ ।

ମୁଁ ହାତଟି ଫେରେଇ ଆଣୁ ଆଣୁ କହିଲି : ଆପଣଙ୍କ ନାମଟି...

: ମିଃ ଆୟଙ୍ଗାର । ମ୍ୟାନେଜର ପ୍ୟାଲେସ ହାଉସ୍ ।

ସେଦିନ ପ୍ୟାଲେସ୍ ହାଉସରୁ ଫେରି ନାନା ଚିନ୍ତା ଭାବନା ଭିତରେ ଦିନଟି କଟାଇଲି । କିନ୍ତୁ ନିଦ ଭାଙ୍ଗିଗଲା ଭୋର ଚାରିଟାରୁ । ତା'ପରେ ସମୟ ଆଉ କଟିବାକୁ

ଚାହେଁନାହିଁ । ପ୍ରତିଟି ମୁହୂର୍ତ୍ତ ମୋତେ ଅସହ୍ୟ ବୋଧ ହେବାକୁ ଲାଗିଲା ।

ରୀଟା ସମ୍ବନ୍ଧରେ ମୁଁ ବହୁ କଥା ଚିନ୍ତା କରିଛି । ଏପରିକି ତା' ସହିତ ମୁଁ ନରକକୁ ଓହ୍ଲେଇ ଯାଇଛି, ପୁଣି ଫେରି ଆସିଛି ନନ୍ଦନକାନନକୁ । ତଥାପି ମୁଁ ରୀଟାକୁ ନିର୍ଦ୍ଦିଷ୍ଟ କୌଣସି ଏକ ଆସନରେ ବସାଇବାକୁ ସମର୍ଥ ହୋଇ ପାରିନାହିଁ । କେଜାଣି କାହିଁକି ମୋ ମନରେ ରୀଟା ପାଇଁ ବିଶେଷ ଉଦ୍‌ବେଗ ପ୍ରକାଶ ପାଇଛି । ମୁଁ ତା'ର ଅମଙ୍ଗଳ କଥା ଚିନ୍ତା କଲାବେଳେ ଅଜାଣତରେ ମୋର ହୃଦୟଟା ଥରି ଉଠିଛି । ରୀଟା ଯେ ମୋ ଠାରୁ ବିଦାୟ ନେଇ କାହାର ଏକ ବିଶେଷ ଆଦେଶ ପାଳନ କରିବାକୁ ବାହାରି ଗଲା, ତା'ର କୌଣସି ବିପଦ ଆପଦ ଘଟିଲା ନାହିଁ ତ !

ଖୁବ୍ ପ୍ରତ୍ୟୁଷରୁ ସେଦିନ ନିତ୍ୟକର୍ମ ଶେଷ କରି ପ୍ରସ୍ତୁତ ହୋଇ ପଡ଼ିଲି । କିନ୍ତୁ ଯିବି କେଉଁଆଡ଼େ ? ରୀଟା କହିଛି, ତା' ସହିତ ଖାଇବା ପାଇଁ । ସେ'ତ ଦିନ ବାରଟା ଗୋଟାଏର କଥା । ବର୍ତ୍ତମାନ ଆହୁରି ଛ' ସାତ ଘଣ୍ଟା ବାକି ।

ତଥାପି ମୁଁ ନିରୁଦ୍ଦିଷ୍ଟ ଭାବରେ ବାହାରି ପଡ଼ିଲି । ଗୋଟିଏ ଟ୍ୟାକ୍‌ସିରେ ବସି କହିଲି, ପାର୍କଷ୍ଟ୍ରିଟ୍ ଯିବା ପାଇଁ ।

କିନ୍ତୁ ରୀଟା କାଲି କ'ଣ ଫେରିଥିବ !

ସେ କ'ଣ ୫୫ ନମ୍ବର ସୁଇଟ୍‌ରେ ମୋ'ପାଇଁ ଅପେକ୍ଷା କରିଥିବ !! କାଲି ରାତିରେ ଯଦି ତା'ର କିଛି ଭଲମନ୍ଦ ଘଟିଥାଏ ? ସେ ଯଦି କୌଣସି ଦୁଷ୍ଟ ଲୋକର ଚକ୍ରାନ୍ତରେ ପଡ଼ି ଆଉ ଫେରିବାକୁ ସୁବିଧା ନ ପାଇଥାଏ !

ଟ୍ୟାକ୍‌ସି ପାର୍କ ଷ୍ଟ୍ରିଟ୍‌ରେ ପହଞ୍ଚିଲାବେଳକୁ ଘଡ଼ିରେ ମୋଟେ ସାତଟା ବାଜିଥିଲା । ପ୍ୟାଲେସ୍ ହାଉସ୍ ପାଖରେ ଓହ୍ଲେଇ ନୀରବରେ କିଛି ସମୟ ଅବାକ୍ ହେଲାପରି ଚାରିତାଲା କୋଠାଟା ଆଡ଼େ ଅନାଇ ରହିଲି । ଗୋଟିଏ ଘରର ଝରକା ବି ଖୋଲିଲା ପରି ମନେ ହେଉ ନ ଥିଲା ।

ନା, ଆଉ ଅପେକ୍ଷା କରିବା ସମ୍ଭବ ନୁହେଁ ।

ଧୀରେ ଧୀରେ ମୁଁ ପ୍ୟାଲେସ୍ ହାଉସ୍ ଲିଫ୍‌ଟ ପାଖରେ ଯାଇ ପହଞ୍ଚିଲି । ସେତେବେଳେ ଲିଫ୍‌ଟଟା ଉପରକୁ ଉଠିଯାଇଥିଲା ।

ହୁଏତ ଏଇ ଲିଫ୍‌ଟରେ ରୀଟା ଉପରକୁ ଉଠିଚି । ସାରା ରାତିର କ୍ଳାନ୍ତି ବହନ କରି ସେ ହୁଏତ ଫେରିଚି ଏଇ ମୁହୂର୍ତ୍ତରେ । ତାକୁ ଯାଇ ବିରକ୍ତ କରିବା ମୋର କ'ଣ ଉଚିତ ହେବ ?

ଲିଫ୍‌ଟର ଦରଜା ଖୋଲିଗଲା । ମୁଁ ବି ଭିତରକୁ ପ୍ରବେଶ କଲି ।

ଲିଫ୍‌ଟ ଉପରକୁ ଉଠିଲା, ବନ୍ଦ ହେଲା ବି ଯାଇ ଗୋଟାଏ ତାଲାରେ । ମୁଁ ଓହ୍ଲେଇ ଗଲି ମଧ୍ୟ ।

କିନ୍ତୁ ଆଶ୍ଚର୍ଯ୍ୟ, ଲିଫ୍‌ଟମ୍ୟାନ ମୋତେ ଠିକ୍ ସ୍ଥାନରେ ଓହ୍ଲେଇ ଦେଇଛି । ସେ କିପରି ମୋର ମନକଥା ବୁଝିଲା ! କିପରି ଜାଣିଲା ମୁଁ ସୁଇଟ୍ ନମ୍ବର ୫୫କୁ ଯିବି ବୋଲି ?

କିନ୍ତୁ ୫୫ ନମ୍ବର ଦରଜାରେ ନକ୍ କରିବାର ସାହସ ମୁଁ ସଞ୍ଚୟ କରି ପାରିଲି ନାହିଁ । ଦୁଇଥର ଉପରକୁ ଚାହିଁ ନମ୍ବର ପ୍ଲେଟଟା ପଢ଼ିଲି । ଠିକ୍ ଜାଗାରେ ଆସି ପହଞ୍ଚିଛି ।

ନକ୍ କରିବାକ୍ଷଣି ହୁଏତ ଭିତରୁ ଏକ ମଧୁରକଣ୍ଠର ଧ୍ୱନି ଭାସି ଆସିବ 'କମ୍ ଇନ୍'। କିନ୍ତୁ...

ଗୋଟିଏ ବୟକୁ ଦେଖି ତରତର ହୋଇ ମୁଁ ମ୍ୟାନେଜରଙ୍କ ରୁମ୍ ଆଡ଼େ ଆଗେଇ ଗଲି । ବୟର ଯେପରି ସନ୍ଦେହ ନହୁଏ ଯେ ମୁଁ ୫୫ ନମ୍ବର ସୁଇଟ୍‌ରେ ପ୍ରବେଶ କରିବା ପାଇଁ ଅପେକ୍ଷା କରିଛି ।

ମୋର ଦ୍ରୁତ ପଦଚାଳନା ଆଡ଼େ ଚାହିଁ ମିଷ୍ଟର ଆୟଙ୍ଗାର ସୁପ୍ରଭାତ ଜଣାଇ କହିଲେ : ଆଜି ଗୋଟାଏ ଚାନ୍‌ସ ଅଛି । ତେବେ ସେଇଟା ମୁଁ ଆପଣଙ୍କୁ ବାରଟା ଆଗରୁ କହି ପାରିବି ନାହିଁ ।

ଚାନ୍‌ସ ! ମାନେ ? ମନେ ମନେ ହଠାତ୍ ମୁଁ ଚିନ୍ତିତ ହୋଇ ପଡ଼ିଲି ।

ମିଃ ଆୟଙ୍ଗାର ମୋର ଗମ୍ଭୀର ଭାବ ଲକ୍ଷ୍ୟ କରି କହିଲେ: ଉପାୟ ନାହିଁ ସାର୍ ! ଏଇ ପ୍ୟାଲେସ୍ ହାଉସ୍ ଯେତେବେଳେ ଆରମ୍ଭ ହେଲା, ସେଇଦିନଠୁ ମୁଁ ଏଠାରେ ହେଣ୍ଡେରସନ ସାହେବଙ୍କ ପ୍ୟାଲେସ୍ ହାଉସ୍ ପାଇଁ ବୋର୍ଡର ଯୋଗାଡ଼ କରିବାକୁ ପଡୁଥିଲା । ଏପରିକି ବେଳେବେଳେ ସେ ମୋତେ ସଙ୍ଗରେ ଧରି ହାବଡ଼ା ଷ୍ଟେସନ ଓ ସିଆଲ୍‌ଦା ଷ୍ଟେସନ ପର୍ଯ୍ୟନ୍ତ ଛୁଟି ଯାଉଥିଲେ । କିନ୍ତୁ ଆଜି ! ପ୍ୟାଲେସ ହାଉସ୍‌ର ବୋର୍ଡର ହେବା ପାଇଁ ଲୋକ ଦିନ ଦିନ ଧରି କିଉରେ ରହୁଛନ୍ତି । ଅବଶ୍ୟ ଆପଣଙ୍କ ପାଇଁ ମୁଁ ଗୋଟାଏ ସ୍ପେଶାଲ ଆରେଞ୍ଜ୍‌ମେଣ୍ଟ କରିବି । ଖୁବ୍ ସମ୍ଭବ ଆପଣଙ୍କୁ ଦିନେ ଦୁଇଦିନ ପରେ ମୁଁ ୫୫ ନମ୍ବର ସୁଇଟ୍‌ଟା ଦେଇ ପାରିବି ।

ମିଷ୍ଟର ଆୟଙ୍ଗାରଙ୍କର ଅଭିଜ୍ଞତାର କାହାଣୀ ମୁଁ ବେଶ୍ ମନଯୋଗ ଦେଇ ଶୁଣିବି ବୋଲି ସ୍ଥିର କରିଥିଲି, କିନ୍ତୁ ଶେଷ ପଦଟା ଶୁଣିବାକ୍ଷଣି ମୋର ସମସ୍ତ ଶରୀରଟା ଯେପରି କମ୍ପି ଉଠିଲା । ତେବେ କ'ଣ ରୀଟା କୌଣସି ଦୁର୍ଘଟଣାର ସମ୍ମୁଖୀନ ହେଲା ! ସକାଳର ଖବର କାଗଜଟା ମୁଁ ଦେଖି ନ ଥିଲି । ହଠାତ୍ ମିଃ ଆୟଙ୍ଗାରଙ୍କୁ ମୁଁ ପଚାରିଲି : କାଲିର କ'ଣ କୌଣସି 'ଏୟାରକ୍ରସ'ର ସମ୍ବାଦ ଆଜି ପେପରରେ ବାହାରିଛି ?

: ଏୟାର କ୍ରସ ? ମିଃ ଆୟଙ୍ଗାର ମଧ୍ୟ କିପରି ଚଞ୍ଚଳ ହୋଇ ଉଠିଲେ। ଟେବୁଲ୍ ଉପରୁ ସଂବାଦ ପତ୍ରଟା ଉଠାଇ ନେଇ ହେଡ୍ ଲାଇନ୍ ଗୁଡ଼ାକ ଉପରେ ଆଖି ବୁଲେଇବାକୁ ଲାଗିଲେ । ସମସ୍ତ ପୃଷ୍ଠାଗୁଡ଼ିକ ଉପରେ ସେ କ୍ଷିପ୍ର ଦୃଷ୍ଟି ବୁଲାଇ ନେଇ ଯେତେବେଳେ ମୋ ମୁହଁ ଉପରେ ଦୃଷ୍ଟି ନିବଦ୍ଧ କଲେ, ସେତେବେଳେ ମୁଁ ଖୁବ୍ ଲଜ୍ଜିତ ହୋଇଗଲି ।

ମିଃ ଆୟଙ୍ଗାର ବୋଧହୁଏ ଟିକିଏ ରସିକ ଲୋକ । ମୋତେ କହିଲେ: ଆପଣଙ୍କର କୌଣସି ବାନ୍ଧବୀ କାଲି ପ୍ଲେନରେ ସଫରରତ ଥିଲେ କି ?

ମୁଁ ଅଳ୍ପ ହସି ଗୋଟିଏ ଚେଆର ଦଖଲ କରି ବସୁ ବସୁ କହିଲି, : ମୋ ପାଇଁ ଆପଣଙ୍କର ଦୁଶ୍ଚିନ୍ତାର କୌଣସି କାରଣ ନାହିଁ ମିଃ ଆୟଙ୍ଗାର । ହଠାତ୍ ୫୫ ନମ୍ବର ସୁଇଟ୍‌ଟା ଖାଲି ହେଉଥିବାର ସମ୍ବାଦ ଶୁଣି...

ମିଃ ଆୟଙ୍ଗାର ଏତେ ଜୋର୍‌ରେ ହୋ ହୋ ହୋଇ ହସି ଉଠିଲେ ଯେ, ମୁଁ ଆଉ କଥା ଶେଷ କରିବାର ସୁଯୋଗ ପାଇଲି ନାହିଁ ।

ସେତେବେଳେ ବୋଧହୁଏ ମିଃ ଆୟଙ୍ଗାରଙ୍କର ବିଶେଷ କିଛି କାର୍ଯ୍ୟ ନ ଥିଲା । ସେ ଅତ୍ୟନ୍ତ ଖୋଲା ହୃଦୟରେ ଆଳାପ ଆରମ୍ଭ କରିଦେଲେ । ମୋର ପରିଚୟ ଇତ୍ୟାଦି

ପଚାରି ଯେତେବେଳେ ଜାଣିଲେ ଯେ ମୁଁ ଜଣେ ଲେଖକ, ସେତେବେଳେ ସେ ଅଦମ୍ୟ ଉତ୍ସାହରେ ଯେପରି ନାଚି ଉଠିଲେ । ସଙ୍ଗେ ସଙ୍ଗେ ବୟକୁ ଡାକି କଫି ଏବଂ ବ୍ରେକ୍ ଫାଷ୍ଟର ଅର୍ଡର ଦେଇ ଅନର୍ଗଳ ଗପି ଚାଲିଲେ, : ମୋ ଜାଗାରେ ଯଦି ଆପଣ ଥାଆନ୍ତେ ମିଷ୍ଟର ଦାସ, ତା'ହେଲେ ଆପଣ ଗଣ୍ଡା ଗଣ୍ଡା ବହି ଲେଖି କାଣ୍ଡି କରି ପକାଇ ଥାଆନ୍ତେ । ଆମର ଏଇ ପ୍ୟାଲେସ ହାଉସଟା ଅବଶ୍ୟ ହୋଟେଲ ନୁହେଁ, ଗୋଟାଏ ବୋର୍ଡିଂ । କିନ୍ତୁ ଏ ବୋର୍ଡିଂର କୌଣସି ବୋର୍ଡର ଏଠାରେ ଦୁଇ ତିନିମାସରୁ ଅଧିକ ରୁହନ୍ତି ନାହିଁ । ବେଳେ ବେଳେ ଦୁଇ ତିନିଦିନ ପାଇଁ ମଧ୍ୟ ଆମେ ବୋର୍ଡରଙ୍କୁ ସ୍ଥାନ ଦେଇଥାଉଁ ।

କିନ୍ତୁ ମିଷ୍ଟର ଦାସ, ଏଠାକାର ପ୍ରତିଟି ସୁଇଟ୍ ଗୋଟିଏ ଗୋଟିଏ ରହସ୍ୟ ଉପନ୍ୟାସର ଗନ୍ତାଘର । ବେଳେ ବେଳେ ମୁଁ ମନେ ମନେ ଚନ୍ତା କରେ ବୋର୍ଡିଂର ମ୍ୟାନେଜରୀଟା ଛାଡ଼ିଦେଇ ଏଥର ରହସ୍ୟ ଉପନ୍ୟାସ ଲେଖିବା ଆରମ୍ଭ କରିଦେବି । ଥରେ ଦି'ଥର ରାତି ଅନିଦ୍ରା ହୋଇ ଲେଖିବାକୁ ଚେଷ୍ଟା ବି କରଛି, କିନ୍ତୁ ଲେଖି ପାରିନାହିଁ । ହେଲେ ଆପଣ ନିଶ୍ଚିନ୍ତ ହୁଅନ୍ତୁ, ମୁଁ ଆପଣଙ୍କୁ ପ୍ୟାଲେସ ହାଉସ୍‌ରେ ଗୋଟିଏ ସୁଇଟ୍ ନିଶ୍ଚୟ ଯୋଗାଡ଼ କରିଦେବି । ଆଉ ଆପଣଙ୍କ ଉପନ୍ୟାସ ପାଇଁ ଏତେ ମାଲମସଲା ଯୋଗାଇ ଦେବି, ଦେଖିବେ, ଆପଣ ମାସ କେଇଟାରେ ଫେମସ୍ ହୋଇଯିବେ ।

ମୁଁ ମିଃ ଆୟଙ୍ଗାରଙ୍କ ଉତ୍ସାହଦୀପ୍ତ ମୁଖମଣ୍ଡଳ ଆଡ଼େ ଚାହିଁ ଖୁବ୍ ଖୁସି ହେଲି । କହିଲି : ଆପଣଙ୍କ ସହିତ ଦେଖା ହୋଇ ମୋର ଖୁବ୍ ଲାଭ ହେଲା ମିଃ ଆୟଙ୍ଗାର । ଆପଣଙ୍କ କଥା ମୁଁ ମୋର ପ୍ରଥମ ଉପନ୍ୟାସରେ ଲେଖିବି ।

ମିଃ ଆୟଙ୍ଗାର କଲିଂବେଲ୍ ଖୁବ୍ ଜୋର୍‌ରେ ଟିପିବାରୁ ଗୋଟିଏ ବୟ ତେଣୁ ନୃତ୍ୟ ଭଙ୍ଗୀରେ ଛୁଟି ଆସି ହାଜର ହେଲା । ମିଷ୍ଟର ଆୟଙ୍ଗାର ସଙ୍ଗେ ସଙ୍ଗେ ତାଙ୍କ ରୁମ୍‌ର ଚାବିଟା ତା ହାତକୁ ବଢ଼ାଇ ଦେଇ କହିଲେ : ଟେବୁଲ ଉପରୁ ମୋ ଫଟୋ ଆଲବମ୍ ଗୁଡ଼ା ଶୀଘ୍ର ଆଣ୍ ।

ତା'ପରେ ମୋ ଆଡ଼େ ଚାହିଁ କହିଲେ : ମୁଁ ଏଇ ପ୍ୟାଲେସରେ ଯେତେବେଳେ ମିଃ ହେଣ୍ଡେରସନ୍‌ଙ୍କ ସଙ୍ଗରେ ଦେଖା କରେ ସେତେବେଳେ ମୋର ବୟସ ମାତ୍ର ସତର କି ଅଠରା ସେହି ଦିନଠାରୁ ଦୀର୍ଘ ପଚିଶ ବର୍ଷର ଅଭିଜ୍ଞତା ସଞ୍ଚୟ କରି ମୂକ ସାକ୍ଷୀ ପରି ଗୋଟିଏ ପରେ ଗୋଟିଏ ନାଟକ ଦେଖି ଆସୁଚି ପ୍ୟାଲେସର ପ୍ରତିଟି ସୁଇଟ୍‌ରେ । ଆଉ ମୋର ସେଇ ଅଠର ବର୍ଷ ବୟସରୁ ଆଜିଯାଏ ବହୁ ଫଟୋ ଉଠାଇ ସାଇତି ରଖିଛି କେତେଗୁଡ଼ିଏ ଆଲ୍‌ବମ୍‌ରେ । ସେଇ ଗୁଡ଼ିକ ମୋ ଜୀବନର ବିଶେଷ କୃତୀ । ଆପଣ ତହିଁରୁ ବାଛି ବାଛି, ମୋର ଯେଉଁ ଫଟୋଟିକୁ ପସନ୍ଦ କରିବେ ସେଇଟିକୁ ନେଇ ଛାପିବେ ଆପଣଙ୍କର ପ୍ରଥମ ଉପନ୍ୟାସରେ । ମୋ କଥା ପଢ଼ିଲାବେଳେ ଯେପରି ଆପଣଙ୍କ ବିଜ୍ଞ ପାଠକମାନେ ଚିହ୍ନିବେ ଯେ ଜଣେ ବୋର୍ଡିଂର ମ୍ୟାନେଜର ବି ସାହିତ୍ୟକୁ ପ୍ରେରଣା ଦେଇପାରେ ।

ମୁଁ ଦୂରକୁ ଚାହିଁ ଦେଖିଲି, କ୍ଷଣକ ଆଗରୁ ଯାଇଥିବା ଆଜ୍ଞାବହ ବୟଟି ଯେଉଁ ଗନ୍ଧମାର୍ଦ୍ଦନ ପର୍ବତ ବହୁ କଷ୍ଟରେ କାନ୍ଧ ଉପରେ ନଦି ଆମଆଡ଼େ ଅଗ୍ରସର ହେଉଛି, ସେ ତ ଘଣ୍ଟାଏ ଦୁଇଘଣ୍ଟାର କଥା ନୁହେଁ, ହୁଏତ ଲାଗ୍ ଲାଗ୍ କେତୋଟି ଦିନ ବସି ଆଲବମ୍‌ର ପୃଷ୍ଠା ଗୁଡ଼ିକ ଓଲଟାଇଲେ ବି ଶେଷ ହେବ ନାହିଁ ।

ମିଷ୍ଟର ଆୟଙ୍ଗାର ଆଲବମ୍‌ବାହୀ ସେଇ ଲୋକଟି ଆଡ଼େ ଚାହିଁ ଖୁବ୍ ଖୁସି ହୋଇ କ'ଣ ଯେପରି କହିବାକୁ ଯାଉଥିଲେ, କିନ୍ତୁ ଅରସିକ ଟେଲିଫୋନ୍‌ଟା ତାଙ୍କୁ ତାହା ପ୍ରକାଶ କରିବାର ସୁଯୋଗ ଦେଲାନାହିଁ ।

'ହ୍ୟାଲୋ' ସେ ଟେଲିଫୋନ୍ ରିସିଭରଟା ଉଠାଇ କହିଲେ : ଆୟଙ୍ଗାର ସ୍ପିକିଂ ।

ମୁହୂର୍ତ୍ତକେ ମିଷ୍ଟର ଆୟଙ୍ଗାରଙ୍କର ମୁଖଭଙ୍ଗୀ ପରିବର୍ତ୍ତନ ହେଲା । ସେ ଯେପରି ପୁଣି ଫେରି ଆସିଲେ ହୋଟେଲର ସେହି ବିନୟୀ ମ୍ୟାନେଜର ବା ରିସେପ୍‌ସନିଷ୍ଟ ସ୍ତରକୁ । କେତେଗୁଡ଼ିଏ ଇଏସ୍ ସାର୍ ନୋ ସାର୍ ପରେ ଯେତେବେଳେ ରିସିଭରଟା ଯଥା ସ୍ଥାନରେ ରଖି ମୋ ଆଡ଼କୁ ଚାହିଁଲେ, ସେତେବେଳକୁ ମୁଁ ବୟଟି କାନ୍ଧରୁ ଆଲବମ ଗୁଡ଼ିକ ଓହ୍ଲାଉଥିଲି ।

ମିଷ୍ଟର ଆୟଙ୍ଗାର ବାଧା ଦେଇ କହିଲେ : ନା ନା, ସେଗୁଡ଼ାକୁ ସେ ଯଥା ସ୍ଥାନରେ ରଖିଦେଇ ଆସୁ । ମୋତେ ଏଇକ୍ଷଣି ଏରୋଡ୍ରମକୁ ଛୁଟିବାକୁ ହେବ । ପ୍ୟାଲେସର ଜଣେ ମହାମାନ୍ୟ ଅତିଥି ଆସୁଛନ୍ତି । ଆପଣଙ୍କୁ ମୁଁ ଆଉ ଦିନେ ସେ ସବୁ ଆଲବମ୍ ଦେଖାଇବି । ଏକ୍‌ସକିଉଜ୍ ମି ମିଃ ଦାସ । ଅନ୍ୟ କିଛି ଭାବିବେ ନାହିଁ ।

ଘଡ଼ିକୁ ଚାହିଁ ଦେଖିଲି, ଏହା ମଧ୍ୟରେ ଘଣ୍ଟାଏ ଅତିବାହିତ ହୋଇଯାଇଥିଲା । କିନ୍ତୁ ଯେଉଁଥିପାଇଁ ମୋର ପ୍ୟାଲେସକୁ ଆଗମନ, ସେ ସମ୍ବନ୍ଧରେ କୌଣସି ତଥ୍ୟ ସଂଗ୍ରହ କରି ପାରି ନଥିଲି । ବରଂ ମିଃ ଆୟଙ୍ଗାର କହିଲେ ୫୫ ନମ୍ବର ସୁଇଟ୍‌ଟା ଦିନେ ଦୁଇଦିନରେ ଖାଲି ହେବାର ସମ୍ଭାବନା ଅଛି ।

ତା'ହେଲେ ?

ମିଃ ଆୟଙ୍ଗାର ମ୍ୟାନଜରିଆଲ ଟେବୁଲ୍ ଛାଡ଼ି ଚାଲିଯାଇଥିଲେ, ସେ ପର୍ଯ୍ୟନ୍ତ ତାଙ୍କ ସ୍ଥାନ ପୂରଣ କରିବାକୁ ଅନ୍ୟ କେହି ଆସି ନ ଥିଲେ ।

ମୁଁ ବି ଧୀରେ ଧୀରେ ଉଠିଲି ।

ପୁଣି ସେଇ ୫୫ ନମ୍ବର ସୁଇଟ୍ ।

ଏଥର ଆଉ ଚୁପ୍‌ଚାପ୍ ଠିଆ ହୋଇ ପାରିଲି ନାହିଁ । ଦରଜାରେ ନକ୍ କଲି ।

କେତୋଟି ମୁହୂର୍ତ୍ତପରେ ଦ୍ୱାର ଖୋଲିଗଲା ।

ବୟ ଟ୍ରେ'ରେ କେତେଗୁଡ଼ିଏ ଖାଲି କପ୍ ପ୍ଲେଟ୍ ଭରି ବାହାରୁଥିଲା ।

ମୋତେ ଦେଖି ବୋଧହୁଏ ମୋର ଉଦ୍ଦେଶ୍ୟ ବୁଝିପାରି କହିଲା : ଏଇ ପାଞ୍ଚ ମିନିଟ୍ ହେବ ମିସ୍ ସାହେବା ବାହାରକୁ ଗଲେ ।

: କୁଆଡ଼େ ?

: ମୁଁ କହି ପାରିବି ନାହିଁ ହଜୁର ।

: କାଲି ରାତିରେ ସେ ଏଠାରେ ଥିଲେ ?

ବୟଟି ମୋ ପ୍ରଶ୍ନରେ ବୋଧହୁଏ ସନ୍ତୁଷ୍ଟ ହୋଇ ନ ପାରି ମୁହଁକୁ ମୁହୂର୍ତ୍ତେ ଚାହିଁଲା । ଏବଂ ତା'ପରେ ବାହାରକୁ ବାହାରି, ଟ୍ରେ'ଟି ତଳେ ଥୋଇ ଦରଜାରେ ଚାବି ଲଗାଇ କହିଲା: ଚାରିଟା ପାଞ୍ଚଟା ବେଳକୁ ଆସିଲେ ଦେଖା ହୋଇପାରେ ।

ସତକଥା କହିବାକୁ ଗଲେ, ଏତେବେଳଯାଏ ଅପେକ୍ଷା କରିବାକୁ ମୋର ଧୈର୍ଯ୍ୟ ନ ଥିଲା । ଏପରିକି ରୀଟା ଆଜି ବାରଟା ଗୋଟାଏ ବେଳକୁ ଲଞ୍ଚ୍‌ରେ ନିମନ୍ତ୍ରଣ କରିଛି । ସେ ନିଶ୍ଚୟ ସେ କଥା ଭୁଲି ନ ଥିବ । କିନ୍ତୁ ସେ ଯେ ଆହୁରି ପାଞ୍ଚ ଛ' ଘଣ୍ଟା । ଏତେ ଗୁଡ଼ାଏ ସମୟ କଟିବ କିପରି !

ମନେ ମନେ ସ୍ଥିର କଲି ଅଗରବାଲ ବ୍ରଦର୍ସକୁ ଯାଇ ରୀଟାକୁ ସେଠାରେ ଖୋଜିବି । କର୍ମ ସ୍ଥାନଟା ବି ତା'ର ଦେଖି ଆସିବି । କିନ୍ତୁ ଠିକଣା ଯେ ଜଣା ନାହିଁ । ହେଲେ ମୋତେ କ'ଣ ବାଧ୍ୟ ଶିଶୁଟି ପରି ଫେରି ଯିବାକୁ ହେବ କାଳିଘାଟର ମୋର ସେହି ନ୍ୟାସନାଲ ଲଜ୍‌କୁ !

ହଠାତ୍ ମନରେ ଗୋଟିଏ ଫନ୍ଦି ଜୁଟିଲା । ମୁଁ ପୁଣି ଯାଇ ଉପସ୍ଥିତ ହେଲି ମ୍ୟାନେଜରିଆଲ ରୁମ୍‌ରେ । ଏତେବେଳଯାଏ ମିଷ୍ଟର ଆୟଙ୍ଗାର ସିଟ୍‌ଟା ଖାଲି ପଡ଼ିଚି ।

ଟେଲିଫୋନ୍ ଡିରେକ୍ଟରୀଟା ଖେଳେଇ ଅଗରବାଲ ବ୍ରଦର୍ସକୁ ଆବିଷ୍କାର କଲି ।

ଡାଲହାଉସୀ ସ୍କୋୟାରର ଷ୍ଟିଫେନ୍ ହାଉସ୍‌ରେ ଅଗରବାଲ ବ୍ରଦର୍ସର ଅଫିସ ।

ସଙ୍ଗେ ସଙ୍ଗେ ବାହାରି ପଡ଼ିଲି ।

ଷ୍ଟିଫେନ୍ ହାଉସ୍‌ର ବିରାଟ ଗର୍ଭ ଚିରି ଅଗରବାଲ ବ୍ରଦର୍ସକୁ ଖୋଜି ବାହାର କରିବାକୁ ମୋତେ ନାକେଦମ ହେବାକୁ ପଡ଼ିଲା ।

କିନ୍ତୁ ମୁଁ ଶେଷରେ ଅଗରବାଲ ବ୍ରଦର୍ସ ଆବିଷ୍କାର କଲି ।

ରୀଟା ମୋତେ ଦେଖି ଆନନ୍ଦରେ କି ବିସ୍ମୟରେ ମୁଁ ଜାଣେନା, କେଇ ମୁହୂର୍ତ୍ତଯାଏ ହତବାକ୍ ହୋଇ ମୋ ମୁହଁକୁ ଅନାଇ ରହିଲା ।

ଦରଜାରୁ ଭିତରକୁ ପଶିଲାବେଳକୁ ଡାହାଣ ହାତି ତା' ବସିବା ସ୍ଥାନ । ଗୋଟିଏ ଛୋଟ ଟେବୁଲ୍ ଉପରେ ପୁରୁଣା ଟାଇପ୍ ମେସିନ୍‌ଟି ସାମ୍ନାରେ ବସି ଚିଠି ଖଣ୍ଡେ ଟାଇପ୍ କରୁଥିଲା । ତା' ଡାହାଣ ପାଖକୁ ଆଉ ଗୋଟିଏ ଟେବୁଲ୍ । ସେଇଟି ଖାଲିଥିଲା ।

ରୀଟାର ପ୍ରଥମ ପ୍ରଶ୍ନ: ମୋ ଠିକଣା ଆପଣ ପାଇଲେ କେଉଁଠୁ ?

ସେ କଥା ପରେ ଶୁଣିଲେ ଚଳିବ । ଆପଣ ଆଗେ କହିଲେ, ପ୍ୟାଲେସ ହାଉସ୍ ୫୫ ନମ୍ବର ସୁଇଟ୍‌ଟା ଆପଣ କାହିଁକି ଛାଡ଼ି ଦେଉଛନ୍ତି ?

ରୀଟା ବୋଧହୁଏ ମୋ ମୁହଁରୁ ଏପରି ପ୍ରଶ୍ନ ଶୁଣିବାକୁ କେବେ ଆଶା କରି ନଥିଲା । ମୁଁ ତା'ର ଚିନ୍ତିତ ମୁଖମଣ୍ଡଳ ଆଡ଼େ ଚାହିଁ ପୁଣି ପ୍ରଶ୍ନ କଲି : ମୋ ପାଇଁ ଯଦି ଆପଣଙ୍କୁ ପ୍ୟାଲେସ ହାଉସ୍ ଛାଡ଼ିବାକୁ ପଡୁଥାଏ, ଦୟା କରି ସେ ଦୁର୍ବୁଦ୍ଧି କରନ୍ତୁ ନାହିଁ । ମୁଁ ଆଜି ଏଇ ମୁହୂର୍ତ୍ତଠାରୁ ଅତି ସହଜରେ ଆପଣଙ୍କ ଠାରୁ ବିଦାୟ ନେଇ ଚାଲି ଯାଇପାରେ ।

: କିନ୍ତୁ ହଠାତ୍ ଆପଣଙ୍କର ଏପରି ଧାରଣା ଜନ୍ମିଲା କାହିଁକି ? ରୀଟା ପଚାରିଲା ।

: ଅତି ସ୍ୱାଭାବିକ। କାଲି ପର୍ଯ୍ୟନ୍ତ ଆପଣଙ୍କ ଜୀବନରେ ଯାହା ବାସ୍ତବ ଥିଲା, ଆଜି ହଠାତ୍ ତାହା...

ମୋ କଥା ମଝିରୁ ରୀଟା ଆଙ୍ଗୁଳି ଗୁଡ଼ାକ ଟାଇପ୍ ରାଇଟର କି ବୋର୍ଡ ଉପରେ

ନୃତ୍ୟ କରିବାକୁ ଲାଗିଲା । ଯେପରି ସେ ମୋ କଥା ଉପରେ କୌଣସି ଗୁରୁତ୍ୱ ଆରୋପ କରିବାକୁ ଚାହେ ନାହିଁ ।

ମୁଁ ବି ନୀରବ ହୋଇଗଲି ।

ରୀଟା ଏତେବେଳଯାଏ ବି ମୋତେ ବସିବାକୁ କହି ନଥିଲା । ଅବଶ୍ୟ ତା' ସାମ୍‌ନାରେ ଆଉ ଏକ୍‌ସଟ୍ରା ଚେଆର ନ ଥିଲା । ତଥାପି ତ ଗୋଟାଏ ସମ୍ଭ୍ରମବୋଧ ଅଛି । ରୀଟା ତାହା ଅନୁଭବ କରୁଥିବା ପରି ବି ମୋର ମନେ ହେଉ ନଥିଲା ।

ଅଳ୍ପ କେଇ ମିନିଟ୍ ଭିତରେ ଟାଇପ୍ ରାଇଟରର ଖଟ୍‌ଖାଟ୍ ଶବ୍ଦ ବନ୍ଦ ହୋଇଗଲା । ରୋଲ୍‌ର୍ ଭିତରୁ କାଗଜ ଖଣ୍ଡିକ କାଢୁ କାଢୁ ରୀଟା ଠିଆ ହୋଇ ପଡ଼ିଲା । ଅଳ୍ପ ଦୂରରେ ଗୋଟିଏ ପାର୍ଟିସନ ଦିଆ ବନ୍ଦ ଘରର କବାଟ ଖୋଲି ଭିତରକୁ ପଶି, ଝଡ଼ ବେଗରେ ବାହାରି ଆସିଲା । ମୋ ସାମ୍‌ନାରେ ଠିଆ ହୋଇ ସ୍ମିତ ହସି କହିଲା,

: ଦେଖିଲେ ?

: କ'ଣ ?

: ମୋର କର୍ମସ୍ଥଳୀ । ରୀଟାର ସ୍ୱରରେ କିପରି ବିଦ୍ରୂପ ଭରି ରହିଥିଲା । ସେ ତା' ପାର୍ଶ୍ୱସ୍ଥିତ ଖାଲି ଟେବୁଲ୍‌ଟି ଆଡ଼େ ଆଙ୍ଗୁଳି ଦେଖାଇ କହିଲା, ଏ ଯେଉଁ ଆସନଟି ଖାଲି ଅଛି ଏଠି ବସନ୍ତି ଆମର ଅଫିସ ସୁପରିଣ୍ଟେଣ୍ଡେଣ୍ଟ, ଏଇଟାରେ ବସେ ମୁଁ । ଆଉ ଇଏ ଯୋଉ ଚେମ୍ବର ଦେଖୁଛନ୍ତି, ଏଇଠି ବସନ୍ତି ଅଗରବାଲ ବ୍ରଦର୍ସର ଡାଇରେକ୍ଟର, ସିନିଅର ଅଗରବାଲ । ଏଥର ଆସନ୍ତୁ । ଆଜି ଦିନଟା ପାଇଁ ମୋର ଡିଉଟି ଶେଷ ହୋଇଛି । ଆପଣଙ୍କ ସହିତ ମନ ଇଚ୍ଛା ଗପି ପାରିବି ।

ମୁଁ ରୀଟା ସହିତ ଅଗରବାଲ ବ୍ରଦର୍ସରୁ ତଳକୁ ଓହ୍ଲେଇ ଆସିଲି ।

ଆମେ ଦୁହେଁ ଗୋଟିଏ ଟ୍ୟାକ୍‌ସିରେ ବସିଲୁ । ରୀଟା କହିଲା : ଆପଣ ଆଜି ବୋଧହୁଏ ପ୍ୟାଲେସ ହାଉସ୍‌କୁ ଯାଇଥିଲେ ?

: ହଁ ।

: ଆପଣ ଠିକ୍ ଖବର ଶୁଣିଛନ୍ତି । ପ୍ୟାଲେସ୍ ହାଉସ୍‌ର ୫୫ ନମ୍ବର ସୁଇଟ୍‌ଟା ଖୁବ୍ ଶୀଘ୍ର ଛାଡ଼ିଦେବାର ଥିଲା, ତେବେ କମ୍ପାନୀ ଅନ୍ୟ କେଉଁଠି ସୁବିଧା କରି ନ ପାରି ଆପାତତଃ ନୀରବ ହେଲା ।

: ହଠାତ୍ ପ୍ୟାଲେସ୍ ହାଉସ୍ ଛାଡ଼ିବାର କାରଣ ?

ରୀଟା ହସିଲା । କହିଲା : ଆପଣ ଏତେବେଳ ଯାଏ ବି କାରଣ ଜାଣି ପାରିଲେ ନାହିଁ । ଆମ କମ୍ପାନୀର ନିୟମ ହେଉଛି କୌଣସି ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ମୋତେ ଦୁଇ ମାସରୁ ଅଧିକ ରଖାଇ ଦେବେ ନାହିଁ । ପ୍ରତି ଦୁଇ ମାସରେ ମୋର ସ୍ଥାନ ପରିବର୍ତ୍ତନ ହେଉଥିବ ।

: ଆପଣଙ୍କ ଚାକିରି କାଳରେ ଆପଣ କେତୋଟି ସ୍ଥାନ ବଦଳାଇଲେଣି ?

: ନା, ମୋ ଜୀବନରେ ଏଇ ପ୍ରଥମ । କାରଣ ଅଗରବାଲ ବ୍ରଦର୍ସରେ ମୋର ଚାକିରୀ ଦୁଇମାସ ପୂର୍ଣ୍ଣ ହୋଇନାହିଁ ।

: ତା' ପୂର୍ବରୁ ଆପଣ କ'ଣ କରୁଥିଲେ ?

ରୀଟା ମୋ ମୁହଁ ଉପରେ ଏକ ତୀର୍ଯକ ଚାହାଣି ବୁଲେଇ ନେଇ କହିଲା : ଆଜି

ଯା ପୂର୍ବ କଥା କହିଲେ, ରୀଟାକୁ ଆପଣ ହୁଏତ ଠିକ୍ ଆବିଷ୍କାର କରି ପାରିବେ ନାହିଁ । ରୀଟାକୁ ଚିହ୍ନିବାକୁ ହେଲେ ଆପଣଙ୍କୁ ତା' ପୂର୍ବରୁ ତା' ପୂର୍ବ ଏହିପରି ଅନେକ ପୂର୍ବ ଘଟଣାଯାଏ... ଆଖି ତା'ର ନିଦରେ ଢ଼ାଙ୍କି ହୋଇ ପଡୁଥିଲା ।

: କାଲି କ'ଣ ଆପଣଙ୍କର ଫେରୁ ଫେରୁ ଅନେକ ରାତି ହେଲା ?

: ନା, ମୁଁ ଫେରିଥିଲି ଠିକ୍ ସମୟରେ, କିନ୍ତୁ ଆସି ଦେଖିଲି ଜନ୍ ମୋ ପାଇଁ ଅପେକ୍ଷା କରି ଠିଆ ହୋଇଛି । ସକାଳେ ତା' ଉପରେ ଯେଉଁ ନିର୍ଦ୍ଦୟ ବ୍ୟବହାର କରିଥିଲି, ସେଥିପାଇଁ ସମଗ୍ର ଦିନଟା ମୋର କିପରି ଏକ ଅସ୍ୱସ୍ତି ଭିତରେ କଟିଥିଲା । ବାଧହୋଇ ମୋତେ ଜନ୍‌କୁ ଅଟକାଇ ତାକୁ ନାନା ଆଦର ଅଭ୍ୟର୍ଥନା ଜଣାଇ ମାନଭଞ୍ଜନ କରିବାକୁ ହେଲା । ଜନ୍‌ଟା ଏପରି ଅଭିମାନୀ ଯେ, ଆପଣ ନ ଦେଖିଲେ ବୁଝି ପାରିବେ ନାହିଁ । ଅଥଚ ସେ ମୋର କେହି ନୁହେଁ, କିନ୍ତୁ ମୋ ଉପରେ ସେ ତା'ର ଅଖଣ୍ଡ କର୍ତ୍ତୃତ୍ୱ ଜାହିର କରି ଚାଲିଛି ।

ଟ୍ୟାକ୍‌ସି ଚାଳକ ଆମକୁ ନେଇ ପାର୍କ ସାର୍କସକର ଗୋଟିଏ ହୋଟେଲ ସାମ୍‌ନାରେ ଓହ୍ଲେଇ ଦେଲା । ମୁଁ ରୀଟା ମୁହଁକୁ ଚାହିଁ କୌଣସି ସଦୁତ୍ତର ପାଇଲି ନାହିଁ, ବରଂ ସେ ଟ୍ୟାକ୍‌ସିର ଭଡ଼ା ତୁଟେଇ ଦେଇ ମୋର ବାଁ ହାତକୁ ତା'ର ଡାହାଣ ହାତରେ ଧରି ନିଃସଙ୍କୋଚରେ ଶିଡ଼ିର ପାହାଚ ଗୁଡ଼ିକ ଅତିକ୍ରମ କରିବାକୁ ଲାଗିଲା ।

ହୋଟେଲଟି ଯଦିଓ ଅପେକ୍ଷାକୃତ ଛୋଟ, କିନ୍ତୁ ଖୁବ୍ ପରିଷ୍କାର ପରିଚ୍ଛନ୍ନ ।

ରୀଟା ଦୋତାଲାକୁ ଉଠି ରିସେପ୍‌ସନ କାଉଣ୍ଟରରେ କାହାରିକୁ ନ ଦେଖି ଠିଆ ହୋଇ ପଡ଼ିଲା । ସାଦା ଚପ୍‌କନ୍ ସାଦା ପଗଡ଼ି ପିନ୍ଧା ଦୁଇ ତିନିଜଣ ବୟ ଆମକୁ ଦେଖିବାକ୍ଷଣି ରିସେପ୍‌ସନ କାଉଣ୍ଟରକୁ ଛୁଟି ଆସିଲେ । ସେମାନେ ରୀଟାର ପରିଚିତ ।

ରୀଟା ସମସ୍ତଙ୍କ ପ୍ରତି ଅଭିବାଦନ ଜଣାଇ କୁଶଳ ସମାଚାର ପଚାରିଲା ।

ମନେହେଲା ଏହି ଲୋକଗୁଡ଼ାକ ସହିତ ରୀଟାର ଯେପରି ବହୁ ଦିନର ହାର୍ଦ୍ଦିକତା ।

ସେମାନଙ୍କ ଭିତରୁ ଜଣେ କହିଲା: ଆପଣ ଛାଡ଼ି ଚାଲିଯିବା ଦିନରୁ ବାର୍ ଆଉ ଆଗପରି ଜମୁ ନାହିଁ । ଏଇ କେଇମାସ ଭିତରେ କେତେଜଣ ଆସିଗଲେଣି । କିନ୍ତୁ ସେ ଉତ୍ତେଜନା, ସେ କର୍ମପ୍ରେରଣା ଯେପରି 'ମୁନ୍‌ଲାଇଟ୍' ବାର୍‌ରୁ ଉଭାନ ହୋଇ ଯାଇଛି ।

ରୀଟା ମୁହଁରେ ମୁଁ କୌଣସି ପରିବର୍ତ୍ତନ ଲକ୍ଷ୍ୟ କରୁ ନ ଥିଲି । ସେ ବୟମାନଙ୍କ ଭିତରୁ ଜଣକୁ ଉଦ୍ଦେଶ୍ୟ କରି କହିଲା : ମିଷ୍ଟର ଗୋମେସ୍ କୁଆଡ଼େ ଯାଇଛନ୍ତି ?

ବୟଟି କୌଣସି ଉତ୍ତରଦେବା ପୂର୍ବରୁ ପଛରୁ ଏକ ଉଚ୍ଛ୍ୱସିତ କଣ୍ଠସ୍ୱର ଶୁଣିଲି : ହ୍ୟାଲୋ ରୀଟା ! ଖବର କ'ଣ ? ଏଇ ବୋଧହୁଏ ତମର ବୟ ଫ୍ରେଣ୍ଡ । ମୁଁ ତମ ରୁମ୍‌ଟି ତମ ପାଇଁ ରିଜର୍ଭ କରି ରଖିଛି ।

ଏତେ ଗୁଡ଼ିଏ କଥା ଏକା ନିଶ୍ୱାସରେ ଯେଉଁ ଭଦ୍ର ଲୋକ କହିଗଲେ, ତାଙ୍କ ଆଡ଼େ ଚାହିଁ ମୁଁ ଯାହା ଦେଖିଲି, ହୋଟେଲ୍ ମୁନ୍ ଲାଇଟ୍ ବାହାରେ କୌଣସି ରାଜରାସ୍ତା ମୋଡ଼ରେ ଦେଖିଥିଲେ ମୋର ହୁଏତ ଧାରଣା ହୋଇ ଥାଆନ୍ତା, ଭଦ୍ରଲୋକ ଜଣେ ଦୁର୍ଦ୍ଦାନ୍ତ ଗୁଣ୍ଡା ସର୍ଦ୍ଦାର । ଜୀବନରେ ନାନା ଦୁଷ୍କର୍ମ କରି ହୁଏତ ସମଗ୍ର ଶରୀରରେ ବହୁ କ୍ଷତ ଚିହ୍ନ ଧାରଣା କରି ରହିଛନ୍ତି । ମୋତେ ଅବଶ୍ୟ କେବଳ ତାଙ୍କର ମୁଖ ଓ କପାଳ ଛଡ଼ା ଶରୀରର ଅନ୍ୟ କୌଣସି ଖୋଲା ଅଂଶ ଦେଖା ଯାଉ ନଥିଲା, କିନ୍ତୁ କପାଳ ଓ

ମୁଖରେ ମୁଁ ଯେମିତି କ୍ଷତ ଚିହ୍ନ ଦେଖୁଥିଲି, ସେହି ତୁଳନାରେ ସମଗ୍ର ଶରୀର କଥା ଚିନ୍ତାକଲେ ଶିହରୀ ଉଠିବାକୁ ହେବ୍ବ ।

ରୀଟା ମୋତେ ତାଙ୍କ ସହିତ ପରିଚୟ କରାଇ ଦେବାକୁ ଯାଇ କହିଲା : ଅନାଦି ଗୋମେସ୍, ହୋଟେଲ ମୁନ୍‌ଲାଇଟ୍‌ର ରିସେପ୍‌ସନିଷ୍ଟ । ଖାଲି ରିସେପ୍‌ସନିଷ୍ଟ କହିଲେ ଭୁଲ ହେବ, ହର୍ତ୍ତା କର୍ତ୍ତା ଦୈବବିଧାତା ବି କହି ପାରନ୍ତି ।

ଅନାଦି ଗୋମେସ ହୋ ହୋ ହସି ଉଠି ମୋ ଆଡ଼କୁ ହାତ ବଢ଼ାଇଲେ, କରମର୍ଦ୍ଦନ ଉଦ୍ଦେଶ୍ୟରେ ।

ରୀଟା ମୋ ପରିଚୟ ଦେଇ କହିଲା : ସବୁଠୁ ଦୁର୍ମୂଲ୍ୟ । ଜୀବନରେ କେତେ ବନ୍ଧୁ, କେତେ ପ୍ରିୟଜନ ଆସିଛନ୍ତି, ଯାଇଛନ୍ତି । କିନ୍ତୁ କେହି ମନରେ ଗାର ଟାଣି ପାରିଲେ ନାହିଁ । ଆଉ ଆଜି ଯାହାଙ୍କୁ ମୁଁ ବନ୍ଧୁ ରୂପେ ପାଇଛି ସେ ଜଣେ ଲେଖକ । ତାଙ୍କୁ ଅନ୍ତରଙ୍ଗ କରି ପାରିଲେ, ହୁଏତ ଜୀବନରେ ବହୁ ବ୍ୟଥା ଭୁଲି ଯାଇ ପାରିବି ।

ଅନାଦି ଗୋମେସ୍‌ଙ୍କ ହାତରୁ ହାତ ମୁକୁଳେଇ ମୁଁ ଯେପରି ସ୍ୱସ୍ତି ଲାଭ କଲି ।

ରୀଟା କହିଲା   ବର୍ତ୍ତମାନ ଅଳ୍ପ କିଛି ଲାଇଟ୍ ଫୁଡ୍ ପଠାଇଦେଲେ ଚଳିବା ବାରଟା ବେଳକୁ ଆମେ ଲଞ୍ଚ୍ ଖାଇବୁ ।

ଅନାଦି ଗୋମେସ ଅତ୍ୟନ୍ତ ବିଶ୍ୱାସୀ ବନ୍ଧୁ ପରି ମୁଣ୍ଡ ହଲାଇ ସମ୍ମତି ଜଣାଇଲେ ।

ରୀଟା ପୁଣି ମୋ ହାତ ଧରି କାଠ ଶିଡ଼ିର ପାହାଚ ଗୁଡ଼ିକରେ ମୃଦୁ ଗୁଞ୍ଜନ ଉଠାଇ ମୋତେ ଟାଣି ଟାଣି ଉପରକୁ ନେଉଥିଲା ।

ଆମେ ଶେଷରେ ଯାଇ ମୁନ୍‌ଲାଇଟ୍ ହୋଟେଲର ଛାତ ଉପରେ ପହଞ୍ଚି ଗଲୁ ।

ରୀଟା କହିଲା : ଜହ୍ନ ରାତିରେ ଏଠୁ କଲିକତାର ଦୃଶ୍ୟ ଭାରି ସୁନ୍ଦର ଦିଶେ । ମୁଁ ଏହି ଛାତ ଉପରେ ବସି ବସି ଅତୀତରେ ବହୁ ରାତି କଟାଇ ଦେଇଛି ।

ଛାତ ଉପରେ ମାତ୍ର ଗୋଟିଏ  ରୁମ୍ । ରୀଟା ଯାଇ ରୁମ୍‌ର ଦରଜା ଖୋଲି କହିଲା : ଏଇ ରୁମ୍ ସହିତ ମୋ ଜୀବନର ବହୁ ସୁଖ ଦୁଃଖ ଜଡ଼ିତ । ସେଥିପାଇଁ ବେଳେବେଳେ ଏଠାକୁ ମୁଁ ଛୁଟିଆସେ ।

ଧୀରେ ଧୀରେ ମୁଁ ବି ରୁମ୍‌ଟି ମଧ୍ୟରେ ପ୍ରବେଶ କଲି । ଛୋଟଘର । ଦୁଇଟି ବେଡ୍ । ସଂକ୍ଷିପ୍ତ ଆସବାବ୍ ପତ୍ର ।

ରୀଟା ଇଜି ଚେଆରଟି ଉପରେ ତା'ର ଦେହ ଭାର ନଦିଦେଇ କହିଲା : କେବଳ ଆପଣଙ୍କ ସଙ୍ଗସୁଖ ପାଇଁ ମୋତେ ମୁନ୍‌ଲାଇଟ୍‌ରେ ବ୍ୟବସ୍ଥା କରିବାକୁ ହେଲା । ଏଠି ଖାଲି ଆପଣ ଆଉ ମୁଁ, ବାଧା ଦେବାକୁ, ବିରକ୍ତ କରିବାକୁ କେହି ଆସିବେ ନାହିଁ ।

ରୀଟାର କଣ୍ଠସ୍ୱର ଏବଂ କହିବା ଭଙ୍ଗୀରେ ଏପରି ଏକ ମାଦକତା ମିଶିଥିଲା ଯେ, ମୋର ସମଗ୍ର ଶରୀର କ୍ଷଣକ ପାଇଁ କିପରି ରୋମାଞ୍ଚିତ ହୋଇ ଉଠିଲା ।

ରୀଟା ମୋତେ ସାମ୍‌ନା ଚେଆରରେ ବସିବାକୁ ଇଙ୍ଗିତ କରି ହସି ହସି କହିଲା : ମୋ ସମ୍ବନ୍ଧରେ  ଆପଣଙ୍କ ମନରେ ହୁଏତ ଅନେକ ପ୍ରଶ୍ନ ଉଠୁଥିବା ସେଇଟା ସ୍ୱାଭାବିକ । କିନ୍ତୁ ଆପଣ ସତ କହିଲେ, ମୁଁ କ'ଣ ଦୁନିଆର ଅନ୍ୟ ପାଞ୍ଚଟା ଝିଅଙ୍କଠାରୁ ଖୁବ୍ ଗୋଟାଏ ବ୍ୟତିକ୍ରମ ?

: କିଏ କହିଲା ? ସଙ୍ଗେ ସଙ୍ଗେ ମୁଁ ଉତ୍ତର ଦେଲି ।

: କେହି ଅବଶ୍ୟ କହିନାହିଁ, କିନ୍ତୁ ବେଳେ ବେଳେ ମୁଁ ଭାବେ । ଅନ୍ୟ ପାଞ୍ଚଟା ଝିଅଙ୍କ ସହିତ ମୋର ତୁଳନା କଲେ, ଟିକିଏ ହେଲେ ସାମ୍ୟ ଖୋଜି ପାଏ ନାହିଁ । ସେମାନେ ଆଉ ଯାହା ହଅନ୍ତୁ ନ ହୁଅନ୍ତୁ, ସେମାନଙ୍କର ଅନ୍ତତଃ ସ୍ୱାଧୀନତା ଅଛି । ନିଜ ଇଚ୍ଛା ବିରୁଦ୍ଧରେ କୌଣସି କାମ କରିବାକୁ ପଡୁନାହିଁ । ତେଣୁ ମୋର ତୁଳନା ମୁଁ କୌଣସି ଝିଅ ସହିତ କରି ପାରେ ନାହିଁ ।

ରୀଟା ଜୀବନରେ ଏପରି ଏକ ସମସ୍ୟା ଲୁଚି ରହିଛି, ଯାହା ରୀଟାକୁ ପ୍ରତି ମୁହୂର୍ତ୍ତରେ ବ୍ୟଥିତ କରୁଛି । ରୀଟା ସ୍ୱାଧୀନ ନୁହେଁ, ତା'ର ବ୍ୟକ୍ତି ସ୍ୱାତନ୍ତ୍ର୍ୟ ନାହିଁ, କିପରି ? ମୁଁ ମୋଟେ ଚିନ୍ତା କରି ପାରୁ ନ ଥିଲି । କିନ୍ତୁ ତା' ଜୀବନର ସମସ୍ତ ରହସ୍ୟ ଉଦ୍‌ଘାଟନ କରିବା ପାଇଁ ଆସି ଗୋଟିକୁ ହେଲେ ଭେଦ କରିବାର ସୁଗମ ପଥ ଖୋଜି ପାଉ ନଥିଲି । ଅଥଚ ରୀଟା ଯେପରି ଗୋଟିକ ପରେ ଗୋଟିଏ କ୍ଲୁ ମୋତେ ଧରାଇ ଦେଇ ଯାଉଥିଲା । ଏଥର ମୁଁ ସମବେଦନା ଜଣାଇବା କଣ୍ଠରେ ପ୍ରଶ୍ନ କଲି : ଆପଣଙ୍କର ସ୍ୱାଧୀନତା ନାହିଁ, କିଏ କହିଲା ? ଆମର ଏହି ଭାରତ ବର୍ଷରେ କେତୋଟି ଝିଅ ଆପଣଙ୍କ ପରି ସ୍ୱାଧୀନ ଭାବରେ ବଞ୍ଚି ରହିଛନ୍ତି ? ମୁଁ ଝିଅ ନ ହୋଇ ବି ଆପଣଙ୍କ ସହିତ ମିଳା ମିଶା କରିବା ପରେ ଭଗବାନଙ୍କ ନିକଟରେ ପ୍ରାର୍ଥନା କରିବି, ହେ ଭଗବାନ ମୋତେ ଆର ଜନ୍ମକୁ ଝିଅ ଜନ୍ମ ଦିଅ ଏବଂ ରୀଟା ଭଳି ଝିଅ ।

ରୀଟା ମୋ କଥା ଶୁଣି ହୋ ହୋ ହୋଇ ହସି ଉଠିଲା । କହିଲା :

: ମୋ ବାହାରଟା ଦେଖି ଆପଣ କିଛି ବୁଝି ପାରିବେ ନାହିଁ । କିନ୍ତୁ ଆପଣ ତ ଜଣେ ଲେଖକ, ଆପଣଙ୍କର ଅନ୍ତର୍ଦୃଷ୍ଟି ନିଶ୍ଚୟ ଅଛି । ଧୀରେ ଧୀରେ ଆପଣ ଯେତେବେଳେ ମୋ ଅନ୍ତର ଭିତରେ ପ୍ରବେଶ କରିବେ, ଦେଖିବେ, କେତେ ବ୍ୟଥା, କେତେ ବେଦନାର ମୋର ଏହି ଶରୀର । ମୋର ପ୍ରତିଟି ପଦକ୍ଷେପ କିପରି ମୋତେ ମାପି ପକାଇବାକୁ ହୁଏ । ମୋର ପଛେ ପଛେ ସବୁବେଳେ କିପରି ଅନ୍ୟର ସତର୍କ ଦୃଷ୍ଟି...

ଦରଜାରେ ନକ୍ ହେବାରୁ ରୀଟା ଚଞ୍ଚଳ ହୋଇ ଇଜି ଚେଆରରୁ ଉଠି ପଡ଼ିଲା। ଅଭ୍ୟସ୍ତ କଣ୍ଠରୁ ବାହାରି ଆସିଲା : କମ୍ ଇନ୍ !

ଦରଜା ଠେଲି ଭିତରକୁ ପଶିଲା ଗୋଟିଏ ବୟ । ଟ୍ରେ'ରେ ଗୋଟିଏ ବୋତଲ ଏବଂ ଦୁଇଟି ଗ୍ଲାସ ।

ମୁଁ ଚାହିଁଥିଲି ଗ୍ଲାସ ଓ ବୋତଲଟିକୁ । ରୀଟା କିନ୍ତୁ ଚାହିଁଥିଲା ବୟର ଦର ପାଚିଲା ଦାଢ଼ିଗୁଡ଼ିକୁ ।

ବୟଟି ଟେବୁଲ ଉପରେ ଟ୍ରେ' ଓହ୍ଲେଇ ରଖିଲାବେଳକୁ ରୀଟାର ମୁଖଭଙ୍ଗୀ ପରିବର୍ତ୍ତନ ହୋଇଥିଲା । ନାକରୁ ଖରଶ୍ୱାସ ବହୁଥିଲା । ହଠାତ୍ ସେ ବୟଟିର ଦାଢ଼ିରୁ ପୁଳାଏ ଟାଣି ବାହାର କରିଦେଇ ଚିତ୍କାର କରି ଉଠିଲା : ତୁ ଭାବିଚୁ ମୁଁ ତୋତେ ଚିହ୍ନି ପାରିବି ନାହିଁ । କିନ୍ତୁ କାହିଁକି, କାହିଁକି ! ଏ ସବୁର କ'ଣ ଆବଶ୍ୟକ । ମୋତେ ଏ ପୃଥିବୀରେ ମୁହୂର୍ତ୍ତଟିଏ ବି ତମେମାନେ ଶାନ୍ତିରେ ରହିବାକୁ ଦେବନାହିଁ ?

ବୟଟି ଏକ ପାର୍ଶ୍ୱର ଦାଢ଼ି ହରାଇ କରୁଣ ଦୃଷ୍ଟିରେ ରୀଟା ଆଡ଼େ ଚାହିଁ, ବିନୀତ ସ୍ୱରରେ କହିଲା : ମୋର ଦୋଷ କ'ଣ ହଜୁର । ଆପଣ କ'ଣ ମୋତେ ଜାଣି ନାହାନ୍ତି ! ପେଟପାଇଁ ସିନା ଅନ୍ୟ କୌଣସି ଜାଗାରେ ଚାକିରିଟାର ବ୍ୟବସ୍ଥା କରିହେବ, କିନ୍ତୁ

ପୈତୃକ ପ୍ରାଣଟା ?

ରୀଟା କମ୍ପିଲା ହାତରେ ବୟଟିର ଉପାଡ଼ି ନେଇଥିବା ଦାଢ଼ି ଫାଳକ ଫେରାଇ ଦେଉ ଦେଉ କହିଲା : ନା, ତୋର ବା ଦୋଷ କ'ଣ ! ସବୁ ମୋରି ଅଦୃଷ୍ଟର । ଦୁନିଆରେ ଯିଏ ଯେଉଁଥିପାଇଁ ନିଯୁକ୍ତି ପାଇଛି, ତା'ର ସେ ଦାୟିତ୍ୱ ପାଳନ କରିବା ଅବଶ୍ୟ କର୍ତ୍ତବ୍ୟ । ତୁ ଯା ରହମାନ, ତୋ ସହିତ ଯେଉଁ ବ୍ୟବହାର କଲି, ସେଥିପାଇଁ ମୁଁ ଅତ୍ୟନ୍ତ ଦୁଃଖିତ ।

ରହମାନ ମୁହଁରୁ ଉପୁଡ଼ି ଯାଇଥିବା ନକଲି ଦାଢ଼ି ଗୁଡ଼ିକୁ ପୁଣି ଯଥା ସ୍ଥାନରେ ଲଗାଉ ଲଗାଉ, ଜିଭ କାମୁଡ଼ି କହିଲା : ସବ୍ ଖୋଦାକୀ ମେହେରବାନୀ ।

ରହମାନ ବାହାରିଗଲା !

ରୀଟା ଅଶ୍ରୁଳ ନୟନରେ ମୋ ଆଡ଼କୁ ଚାହିଁ କହିଲା । ଦେଖିଲେ ସବୁଠି ମୋ ପଛେ ପଛେ ଗୁପ୍ତଚର ବୁଲୁଛନ୍ତି । ଏପରିକି ସେମାନେ ହୁଏତ ଯମରାଜାଙ୍କ ଦରବାରରେ ମୋ ପଛରେ ଲୋକ ନିଯୁକ୍ତି କରିବା ପାଇଁ ଚିତ୍ରଗୁପ୍ତ ପାଖକୁ ଦରଖାସ୍ତ କରି ସାରିଲେଣି ।

ତା'ପରେ ରୀଟା ଟେବୁଲ୍ ଉପରୁ ବୋତଲଟା ଉଠେଇ ନେଇ ଠିପି ଖୋଲିଲା ଏବଂ ଦୁଇଟି ଗ୍ଲାସ୍‌ରେ ଅଧଗ୍ଲାସ କରି ପାନୀୟ ଢାଳି କହିଲା : ଜୀବନର ଏକ ସଙ୍କଟକ୍ଷଣରେ ଦେଖା ହୋଇଛି ଆପଣଙ୍କ ସଙ୍ଗରେ । ମୁଁ କାହା ସହିତ ସନ୍ଧି କରିବି ଯେତେବେଳେ ଭାବି ଠିକ୍ କରି ପାରୁ ନଥିଲି, ଠିକ୍ ସେତିକିବେଳେ ଆପଣ ଦେବଦୂତ ହୋଇ ଆସିଛନ୍ତି ମୋ ଜୀବନରେ ।

ଗ୍ଲାସଟିଏ ମୋ ହାତକୁ ବଢ଼ାଇ, ମୋ ଠାରୁ ଆଗ୍ରହର କୌଣସି ସୂଚନା ନ ପାଇ ସେ ଟିକିଏ ବ୍ୟସ୍ତ ହୋଇ ପଡ଼ିଲା ।

ମୁଁ କହିଲି : ଧନ୍ୟବାଦ । ଆପଣ ଭୀଷଣ ତୃଷିତ, ପିଅନ୍ତୁ । ମୋର ସାଧା ପାଣି ଗ୍ଲାସେ ହେଲେ ଚଳିବ ।

ରୀଟା ବୋଧହୁଏ ମୋ ଉପରେ ବିରକ୍ତ ହୋଇ ଉଠିଥିଲା କହିଲା : ଅଧଗ୍ଲାସେ ବିଅର ଆଉ ସାଦା ପାଣି ଗ୍ଲାସକ ମଧ୍ୟରେ ପାର୍ଥକ୍ୟ କେଉଁଠି ମୋତେ ବୁଝାଇ ପାରିବେ ?

ମୋର ଏହିସବୁ ପାନୀୟ ସମ୍ବନ୍ଧରେ କୌଣସି ଜ୍ଞାନ ନ ଥିଲା । ଲେବଲ୍ ଲଗା ବୋତଲ ଦେଖିଲେହିଁ ମୋର ହୃଦ୍‌ସ୍ପନ୍ଦନ ବଢ଼ି ଯାଏ । ଆଉ ଏଇ ନିରୋଳା ଘରେ ରୀଟା ପାଖରେ ବସି ଯେତେବେଳଠୁ ବୋତଲ ଦର୍ଶନ କଲିଣି, ସେତେବେଳଠୁ ମୁଁ ଅନୁମାନ କରି ନେଇଥିଲି ଏଇଭଳି ଗୋଟାଏ କିଛି ଅପ୍ରୀତିକର ଘଟଣା ଘଟିବ । ସେତିକିବେଳୁ ଧୀରେ ଧୀରେ ମୁଁ ମଦ ନ ପିଇ ବି ଯେପରି ମାତାଲ ହେବାକୁ ଆରମ୍ଭ କରି ଦେଇଥିଲି । ମୋ ସାମ୍ନାରେ ରହମାନକୁ କେନ୍ଦ୍ରକରି ଘଟି ଯାଇଥିବା ସମସ୍ତ ଘଟଣା ମୋତେ ଯେପରି ଚଳଚ୍ଚିତ୍ରର ଦୃଶ୍ୟ ପରି ମନେ ହୋଇଥିଲା । ତା'ପରେ ରୀଟାର ଏହି ଯୁକ୍ତିର କୌଣସି ସଦୁତ୍ତର ମୁଁ ଖୋଜି ନ ପାଇ ରୀଟା ହାତରୁ ଗ୍ଲାସଟି ନେଇ ଏକ ନିଃଶ୍ୱାସକେ ଢକ ଢକ କରି ପିଇଦେଲି ।

ହଠାତ୍ ଦେଖିଲି ରୀଟା ମୁହଁରେ ଅପୂର୍ବ ପରିବର୍ତ୍ତନର ଚିହ୍ନ । ଯେପରି ତା' ବେଦନା ବହ୍ନି ଶିଖାରେ ମୋର ସେହି ଅଧଗ୍ଲାସେ ବିଅର ହଜାର ହଜାର ବାଲ୍‌ଟି ପାଣି

ଢାଳିଲା ପରି ନାମ ଦେଇଛି ।

ରୀଟା ସ୍ମିତ ହସି ମଧୁର ଠାଣିରେ ମୋ ଆଡ଼େ ଚାହିଁ କହିଲା ଅସଂଖ୍ୟ ଧନ୍ୟବାଦ ।

ଅବଶ୍ୟ ରୀଟାର ସେହି ଧନ୍ୟବାଦର କାରଣଟା ମୁଁ ଖୋଜି ପାଇଲି ନାହିଁ । ତଥାପି ଆଶ୍ୱସ୍ତ ହେଲି ଯେ, ରୀଟା ଅନ୍ତତଃ ସନ୍ତୁଷ୍ଟ ହୋଇଛି । କିନ୍ତୁ ଯେତେବେଳେ ଅନ୍ୟ ଦିଗଟାର କଥା ଚିନ୍ତା କଲି, ମାନେ ଏହି ଅଧଗ୍ଲାସକ ମାଦକ ଦ୍ରବ୍ୟ ହଜମ କରିବାର ଶକ୍ତି ମୋ'ଠାରେ ଅଛିତ ? ସେତେବେଳେ ମୋତେ ଚାରିଆଡ଼ ଜାଲ ଜାଲୁଆ ଦିଶିଲା । ମୋର-ମନେ ହେଲା ରୀଟାର ସେହି ଶାନ୍ତ କୋମଳ ମୁହଁଟି ଯେପରି ଆଖି ସାମନାରେ ଚକ୍ରାକାରରେ ଘୂରୁଛି ।

ଧୀରେ ଧୀରେ ଚେଆରରୁ ଉଠିଯାଇ ମୁଁ ଗୋଟିଏ ବେଡ୍ ଉପରେ ବସିଲି । ଏ ପର୍ଯ୍ୟନ୍ତ ଠିକ୍ ତ ଚାଲି ଯାଇ ପାରିଥିଲି । ତା'ପରେ ବାଥ୍ରୁମ୍‌କୁ ଯାଇ ମଧ୍ୟ ଫେରିଲି । ରୀଟା ସେଇ ଆରାମ ଚେୟାର ଉପରେ ବସି ବୋତଲରୁ ଆଉଥରେ ଗ୍ଲାସକୁ ପାନୀୟ ଢାଳୁଥିବାର ମଧ୍ୟ ଦେଖିଲି । କିନ୍ତୁ କେଜାଣି କାହିଁକି ଆଖି ଯୋଡ଼ାକରେ ସବୁ ଯେପରି ଏକ ବିକୃତ ରୂପ ଗ୍ରହଣ କରି ଦେଖା ଦେଉଥିଲା । ହୁଏତ ସବୁ ମୋ ମନର ବିକାର ଥିଲା ବା ମନର ଦୁର୍ବଳତାର ପରିପ୍ରକାଶ ହେଉଥିଲା, କିନ୍ତୁ ମନକୁ ବହୁ ଦୃଢ଼ କରିବାକୁ ଚେଷ୍ଟା କରି ବି କେଜାଣି କାହିଁକି ପାରୁ ନଥିଲି ।

ରୀଟା ବୋଧହୁଏ ଗ୍ଲାସରେ ଆଉକିଛି ପାନୀୟ ଢାଳି ମୋ ପାଖକୁ ଆସିଗଲା ଏବଂ ସେତକ ପାନ କରିବା ପାଇଁ ମୋତେ ଅନୁରୋଧ କରିଥିଲା । ମୁଁ ଅତି ବିନୟ ଭାବରେ କ୍ଷମା ଚାହିଁଥିଲି ।

ସେ ଇଜି ଚେଆର ଉପରୁ ଉଠି ଆସି ମୋ ପାଖରେ ବେଡ୍ ଉପରେ ବସିବାର ମଧ୍ୟ ମୁଁ ଜାଣିଥିଲି । ମୋତେ କ'ଣ କହୁଥିବାର ଏବଂ ମୁଁ ତା'ର କଥାର ଉତ୍ତର ଦେଉଥିବାର ମୋର ମନେ ଅଛି ।

କେଜାଣି କାହିଁକି ସେତେବେଳେ ମୁଁ ଆଖିବୁଜି ଶୋଇ ପଡ଼ିବାଟାକୁ ଅଧିକ ଯୁକ୍ତିଯୁକ୍ତ ମନେ କରିଥିଲି ଏବଂ ତାହାହିଁ କରିଥିଲି ।

ମୋର ନିଦ ଭାଙ୍ଗିଲା ବେଳକୁ ମୋ ସାମ୍‌ନାରେ ରହମାନ ଚୁପ୍‌ଚାପ୍ ହୋଇ ଠିଆ ହୋଇଥିବାର ଦେଖିଲି । ରୁମ୍‌ର ଚାରିଆଡ଼େ ଆଖି ବୁଲେଇ କେଉଁଠି ହେଲେ ରୀଟାକୁ ନ ଦେଖି, ରହମାନ ଆଡ଼େ ଜିଜ୍ଞାସୁ ନୟନରେ ଚାହିଁଲି ।

ରହମାନ କହିଲା : ସେ ଏଇ ଅଳ୍ପ ସମୟ ହେବ ଟିକିଏ ବାହାରକୁ ଯାଇଛନ୍ତି । ଶୀଘ୍ର ଫେରି ଆସିବେ । ଆପଣ ଉଠିବା ମାତ୍ରେ ଖୁଆଇବା ପାଇଁ ମୋତେ ଠିଆ କରେଇ ଯାଇଛନ୍ତି ।

ହାତ ଘଡ଼ିକୁ ଚାହିଁ ଦେଖିଲି, ତିନିଟା ବାଜିବାକୁ ମାତ୍ର ସାତ ମିନିଟ୍ ବାକି । ମୁଁ ପୁଣି ରହମାନ ମୁହଁକୁ ଚାହିଁଲି ।

ସେ କହିଲା: ମିସ୍ ସାହେବା ଆପଣଙ୍କ ପାଇଁ ଦୁଇଟା ପର୍ଯ୍ୟନ୍ତ ଅପେକ୍ଷା କଲେ । ଆପଣଙ୍କ ନିଦ ଭଙ୍ଗେଇବା ପାଇଁ ମୋତେ ବାରଣ କଲେ ।

ରହମାନ ଠାରୁ ଖାଇବା କଥା ଶୁଣିବା ପରଠାରୁ ମୁଁ ଭୋକ ଅନୁଭବ କରିଥିଲି । ତା'ପରେ ତାହା ଯେପରି ଆସ୍ତେ ଆସ୍ତେ ବଢ଼ିଗଲା ।

ମୁଁ ରହମାନକୁ ଖାଦ୍ୟ ପଦାର୍ଥ ଆଣିବା ପାଇଁ କହି ବାଥ୍ରୁମ୍‌ରେ ପ୍ରବେଶ କଲି । ଏହା ଭିତରେ ଯେ ଏତେବେଳଯାଏ ମୁଁ ନିଶ୍ଚିନ୍ତରେ ଶୋଇ ଯାଇଥିଲି, ସେ କଥା ମୋର ମୋଟେ ବିଶ୍ୱାସ ହେଉ ନଥିଲା । କିନ୍ତୁ ଗତ ରାତ୍ରିର ସ୍ୱଳ୍ପ ନିଦ୍ରା ଯେ ଏହାର ଏକ କାରଣ ହୋଇପାରେ, ଏଇଆ ଭାବି ମୁଁ ଆଶ୍ୱସ୍ତ ହେଲି ।

ମୁଁ ବାଥ୍ରୁମ୍‌ରୁ ଆବଶ୍ୟକୀୟ କାର୍ଯ୍ୟ ଶେଷ କରି ଆସିଲା ବେଳକୁ ରହମାନ ଗୋଟାଏ ବିରାଟ ଟ୍ରେ'ରେ ନାନା ପ୍ରକାର ଖାଦ୍ୟ ସାମଗ୍ରୀ ଧରି ପ୍ରବେଶ କରିଥିଲା । ପ୍ଲେଟ ପରେ ପ୍ଲେଟ ଟେବୁଲ୍ ଉପରେ ସଜେଇ ଦେଇ ମୋ ହାତକୁ ଖଣ୍ଡିଏ ଟାୱେଲ ବଢ଼ାଇ ଦେଲା ।

ଟାୱେଲଟି ମୁଁ କୋଡ଼ ଉପରେ ପକାଇ ଖାଇବାକୁ ଆରମ୍ଭ କରି ଦେଲି । ପ୍ରତିଟି ପଦାର୍ଥ ମୋତେ ସୁସ୍ୱାଦୁ ଲାଗୁଥିଲା ଏବଂ ଲଘୁପାକ ପରି ମନେ ହେଉଥିଲା ।

ରହମାନ ଅତ୍ୟନ୍ତ ବିଶ୍ୱସ୍ତ ଭୃତ୍ୟ ପରି ମୋ ପାଖରେ ଠିଆହୋଇ ରହି ମୋର ପ୍ରୟୋଜନ ମେଣ୍ଟାଇବା ପାଇଁ ଆଜ୍ଞାକୁ ଅପେକ୍ଷା କରି ରହିଥିଲା ।

ମୋର ଆଉ କୌଣସି ଆବଶ୍ୟକ ଅନୁଭବ କରି ନ ପାରି କହିଲି : ତୁମେ ଏଥର ଯାଇପାର ରହମାନ, ମୋର ଆଉ କିଛି ଦରକାର ହେବନାହିଁ ।

ରହମାନ କହିଲା ସେ କଥା ହେବ ନାହିଁ ହଜୁର । ରୀଟା ବେଟୀ ମୋତେ କହିଯାଇଛି ଆପଣଙ୍କୁ ପେଟ ଭରି ଖୁଆଇବା ପାଇଁ ।

ରହମାନ ମୁହଁରୁ 'ରୀଟା ବେଟୀ' ଉଚ୍ଚାରଣ ଶୁଣି ହଠାତ୍ ମୁଁ ଚଞ୍ଚଳ ହୋଇ ଉଠିଲି । ମୋର ସମସ୍ତ ଅଙ୍ଗ ପ୍ରତ୍ୟଙ୍ଗରେ ମୁହୂର୍ତ୍ତକ ପାଇଁ ପରିବର୍ତ୍ତନ ଲକ୍ଷ୍ୟ କରି ଧୂର୍ତ୍ତ ରହମାନ ବୋଧହୁଏ ତା' ଭୁଲ୍ ବୁଝି ପାରିଥିଲା । କହିଲା: ରୀଟାର ବୟସ ଏତେ କମ୍ ଯେ, ସେ ମୋ ଝିଆରୀ ଠାରୁ ବି ସାନ । ସେଇଥିପାଇଁ ତା' ମୁହଁରେ ମିସ୍ ସାହେବା କହିବା ଛଡ଼ା ବାହାରେ କେଉଁଠି କହିବାକୁ ଇଚ୍ଛା ହୁଏ ନାହିଁ । ବେଳେ ବେଳେ 'ରୀଟା ବେଟୀ' ବି ପାଟିରୁ ବାହାରି ଯାଏ ।

ମୁଁ ରହମାନର ସଫେଇ ଶୁଣୁ ନଥିଲି, ଚିନ୍ତା କରୁଥିଲି ରୀଟା ସହିତ ରହମାନର ସମ୍ପର୍କ କଥା । ଅଥଚ ଟିକିଏ ଆଗରୁ ରୀଟା ରହମାନକୁ ଆବିଷ୍କାର କରିଥିଲା ଛଦ୍ମବେଶୀ ଗୁପ୍ତଚର ରୂପରେ ।

ମୁଁ ଗ୍ଲାସରୁ ପାଣି ଢୋକେ ପିଇ, ଚିକେନ୍ ରୋଷ୍ଟ ଉପରେ ଛୁରୀ ଚଳାଉ ଚଳାଉ ପଚାରିଲି: ରୀଟା ସହିତ ତମର ପରିଚୟ କେତେ ବର୍ଷର ?

ରହମାନ ତା' ଛଦ୍ମ ଦାଢ଼ି କେରାକୁ ସାଉଁଳେଇ ଟିକିଏ ହସିଲା । କହିଲା: ଆପଣ ହୁଏତ ରୀଟା ଆଉ ମୋ ଭିତରେ କୌଣସି ସମ୍ପର୍କର ସୂତ୍ର ଧରି ଏତେ ପ୍ରଶ୍ନ ପଚାରୁଛନ୍ତି ।

କିନ୍ତୁ ସେ ସବୁ କିଛି ନୁହେଁ । ଆମେ ଆମର କର୍ମକ୍ଷେତ୍ର ମଧ୍ୟରେ ବେଳେ ବେଳେ ଭେଟାଭେଟି ହେଉ । ସେତିକି ଯାହା ସମ୍ପର୍କ ।

: ତଥାପି ତୁମେ ରୀଟା ସମ୍ବନ୍ଧରେ ନିଶ୍ଚୟ ଅନେକ କଥା ଜାଣିଥିବ । ମୁଁ ପଚାରିଲି ।

ରହମାନ କହିଲା : ଜାଣିଲେ ବି ସବୁ କହିବା ସମ୍ଭବ ନୁହେଁ । ଆପଣ ଭଦ୍ରଲୋକ । ଏସବୁ ସମସ୍ୟା ଭିତରେ ମୁଣ୍ଡ ନ ପୂରାଇବା ହିଁ ଭଲ ।

ମୋର ଖିଆ ପ୍ରାୟ ଶେଷ ହୋଇ ଆସୁଥିଲା । ମୁଁ ରହମାନକୁ ପଚାରିଲି: ତମେ ଏହି ହୋଟେଲରେ କେତେ ବର୍ଷ ହେବ କାମ କରୁଛ ?

ସେ ମୋ ପ୍ରଶ୍ନ ଏଡ଼େଇ ଗଲା ପରି ଟେବୁଲ ଉପରୁ ପ୍ଲେଟ୍ ଗୁଡ଼ାକ ଗୋଟେଇବାରେ ଲାଗିଲା । ମୋ ମନଟା କିନ୍ତୁ ଭୀଷଣ ସଂଦେହୀ ହୋଇ ଉଠିଥିଲା ।

ମୁଁ ପୁଣି ରହମାନକୁ ପଚାରିଲି : ରୀଟାର କ'ଣ ବାପା ମା' ଘର ସଂସାର କିଛି ନାହିଁ ?

ରହମାନ ନୀରବରେ ମୋ ମୁହଁକୁ କିଛି ସମୟ ଅନାଇ ରହି କହିଲା: ସେ ଦିଗରୁ ରୀଟା ବେଟୀ ଖୁବ୍ ଦୁଃଖୀ । ମୁଁ ଶୁଣିଛି ତା'ର ବାପା ମା' ଭାଇ ସମସ୍ତେ ଥିଲେ । ଘରଦ୍ୱାର ସବୁ ଥିଲା । କିନ୍ତୁ କାଳକ୍ରମେ ସବୁ ଉଜୁଡ଼ି ଯାଇଛି ।

: ତୁମେ ରୀଟାର ବାପା ମା'ଙ୍କୁ ଦେଖିଛ ରହମାନ ?

: ନା, ମୁଁ ମୋ ଚାଚା ମୁହଁରୁ ଶୁଣିଛି । ରୀଟାର ବାପା ଥିଲେ ଜଣେ ବଂଗାଳୀ ପ୍ରଫେସର । ମା' ୟାଂଗଲୋ ଇଣ୍ଡିଆନ୍ । ଭଦ୍ରଲୋକ ତାଙ୍କ ବାପା ମା'ଙ୍କ ମତ ବିରୋଧରେ ବିବାହ କରିଥିବାରୁ, ଘର ଛାଡ଼ିବାକୁ ପଡ଼ିଥିଲା । ରୀଟାର ମା'ବି ଗୋଟିଏ ସ୍କୁଲର ମାଷ୍ଟ୍ରାଣୀ ଥିଲେ । ସେମାନଙ୍କର କୌଣସି ଅସୁବିଧା ନ ଥିଲା ।

ରହମାନ ନୀରବ ରହିବାରୁ ମୁଁ ପଚାରିଲି : ତା'ପରେ ?

ସେ କହିଲା: ରୀଟାର ଗୋଟିଏ ଭାଇ ଥିଲା । ସେମାନେ ଭାଇ ଭଉଣୀ ଦୁଇଜଣ । ରୀଟାର ଭାଇ ରୀଟାଠାରୁ ତିନି ଚାରିବର୍ଷର ବଡ଼ ଥିଲା । କିନ୍ତୁ ହଠାତ୍ ଦିନେ ଏଇ ସୁଖୀ ପରିବାରଟି ଉପରକୁ ବିପଦ ମାଡ଼ି ଆସିଲା । ସେତେବେଳକୁ ରୀଟାର ବୟସ ଦଶ ଏଗାର ହେବ। ରୀଟା ମା' ବସନ୍ତ ରୋଗରେ ପଡ଼ି ପ୍ରାଣ ହରାଇଲା । ତା' ବର୍ଷକ ପରେ ରୀଟାର ବାପା ଏକ୍ସିଡେଣ୍ଟରେ ପ୍ରାଣ ହରାଇଲେ । ତା'ପରେ ସଚରାଚର ଯାହା ହୋଇଥାଏ ତାହାହିଁ ହେଲା ।

: ରୀଟାର ଭାଇ ? ମୁଁ ପଚାରିଲି ।

ରହମାନ ମୋତେ ଉତ୍ତର ଦେବାକୁ ଯାଉଥିଲା, କିନ୍ତୁ ଘର ଭିତରେ ଅନାଦି ଗୋମେସଙ୍କର ଆବିର୍ଭାବରେ ସେ ନୀରବ ହୋଇଗଲା ।

ଅନାଦି ଗୋମେସ ମୋତେ ଉଦ୍ଦେଶ୍ୟ କରି କହିଲେ  ଆପଣଙ୍କର ଫୋନ୍ ଆସିଛି । ରୀଟା ଆପଣଙ୍କ ସହିତ କଥା କହିବାକୁ ଚାହେଁ ।

ମୁଁ ଖାଇବା ଟେବୁଲ୍‌ରୁ ଉଠି ହାତ ଧୋଇ ଅନାଦି ଗୋମେସଙ୍କ ପଛେ ପଛେ ତଳକୁ ଯିବାକୁ ଲାଗିଲି । ଫୋନ୍‌ର ରିସିଭରଟା କାନରେ ଦେଇ ରୀଟା ସହିତ କଥାବାର୍ତ୍ତା ହେଲି । ରୀଟା ପ୍ୟାଲେସ ହାଉସ୍‌ରୁ ମୋତେ ଡାକିଥିଲା । ମୁଁ ଉଠିଲିଣି କି ନାହିଁ, ଏବଂ

ଖିଆ ପିଆ ଶେଷ ହୋଇଛି କି ନାହିଁ, ସବୁକଥା ପଚାରି ସାରି କହିଲା: ଆପଣ ତ ଶୋଇ ପଡ଼ିଲେ, ଆପଣଙ୍କୁ ବହୁ ସମୟ ପ୍ରତୀକ୍ଷା କରିବା ପରେ ଯେତେବେଳେ ଦେଖିଲି, ଆପଣ ଆଉ ଘଣ୍ଟାଏ ଭିତରେ ଉଠିବାର କୌଣସି ଲକ୍ଷଣ ଦେଖାଯାଉନାହିଁ, ମୋର କେତେଗୁଡ଼ିଏ ଖୁଚୁରାକାମ ଶେଷ କରିବାକୁ ଚାଲି ଆସିଲି । ସଙ୍ଗେ ସଙ୍ଗେ ଯାଉଚି ।

ମୋର ବକ୍ତବ୍ୟ ବା ମନ୍ତବ୍ୟ କିଛି ନଥିଲା । ମୁଁ ରିସିଭରଟା ରଖିଦେଇ ଦେଖିଲି, ଗୋମେସ ମୋ ମୁହଁକୁ ଏକ ଲୟରେ ଚାହିଁଛନ୍ତି । ଚାରି ଆଖି ମିଶିବା କ୍ଷଣି ସେ ଟିକିଏ ହସିବାକୁ ଚେଷ୍ଟା କରି କହିଲେ : ମିସ୍ ରୀଟା ଆପଣଙ୍କର ବହୁତ ପ୍ରଶଂସା କରୁଥିଲେ ।

ପ୍ରଥମ ଦର୍ଶନରେ ଅନାଦି ଗୋମେସଙ୍କ ପ୍ରତି ମୋ ମନରେ କିପରି ଏକ ତିକ୍ତ ଧାରଣା ସୃଷ୍ଟି ହୋଇଥିଲା । ସେଇଥିପାଇଁ ତାଙ୍କ ସହିତ କଥାବାର୍ତ୍ତା କରିବା ପାଇଁ ମୋର ବିଶେଷ ଗୋଟାଏ ଆଗ୍ରହ ନଥିଲେ ମଧ ଭଦ୍ରତା ରକ୍ଷା କରିବାକୁ ଯାଇ କହିଲି : ମିସ୍ ରୀଟାଙ୍କର ମୋତେ ପ୍ରଶଂସା କରିବାର ତ କୌଣସି କାରଣ ନାହିଁ ।

ଅନାଦି ଗୋମେସ୍‌ଙ୍କ ଅପରିବର୍ତ୍ତିତ ମୁହଁରୁ ପୁଣି ଶୁଣିଲି : ମିସ୍ ରୀଟା ଅକାରଣରେ କାହାରି ପ୍ରଶଂସା କରେ ନାହିଁ, ତା'ଛଡ଼ା ରୀଟା ମୁହଁରୁ ମୋର ଜୀବନରେ ଏଇ ପ୍ରଥମେ ବୋଧହୁଏ ଆପଣଙ୍କର ପ୍ରଶଂସା ଶୁଣିଲି ।

: ରୀଟା ସହିତ ଆପଣଙ୍କର କେତେ ବର୍ଷର ପରିଚୟ ?

: ମନ୍ଦ ନୁହେଁ, ଚାରି ପାଞ୍ଚ ବର୍ଷ ହେବ । ପ୍ରଥମେ ରୀଟା ଆମ ମୁନ୍‌ଲାଇଟ୍ ବାରର ନର୍ତ୍ତକୀ ଥିଲା । ଆପଣ ଜାଣିଛନ୍ତି ବୋଧହୁଏ ।

ମୁଁ କହିଲି : ରୀଟାର କର୍ମମୟ ଜୀବନ କ'ଣ ପ୍ରଥମେ ଆପଣଙ୍କର ଏଇଠାରୁ ଆରମ୍ଭ ହୋଇଥିଲା ?

ଅନାଦି ଗୋମେସ୍ କହିଲେ : ସମ୍ଭବତଃ ନୁହେଁ । ତେବେ ରୀଟା ଏଠାକୁ ଆସିଲା ବେଳେ ତା' ଅବସ୍ଥା ଖୁବ୍ ଗୋଟାଏ ଭଲ ନ ଥିଲା । ମୁନ୍‌ଲାଇଟ୍ ବାର୍‌ରେ ଜଏନ୍ କରିବା ପରଠାରୁ ତା' ଜୀବନରେ ପରିବର୍ତ୍ତନ ମୁଁ ଲକ୍ଷ୍ୟ କରିଛି ।

: ରୀଟା ଆପଣଙ୍କର ବାର୍ ଛାଡ଼ିଲା କାହିଁକି ?

: ମୁଁ ତାକୁ ଛଡ଼େଇ ଦେଲି ।

: କାହିଁକି ?

: ମୋତେ ରୀଟାକୁ ଖୁବ୍ ଭଲ ଲାଗିଲା । ମୋର ତା'ପ୍ରତି ଗୋଟାଏ ହାର୍ଦ୍ଦିକତା ଗଢ଼ି ଉଠିଥିଲା । ତେଣୁ ସେ ଏଠାରେ ବାର୍‌ରେ ନାଚିଲେ ମୋ ମନରେ କିପରି ଆଘାତ ଲାଗୁଥିଲା । ଶହ ଶହ ମାତାଲଙ୍କ ମେଳରେ ସେ ନାଚିବା ସେମାନଙ୍କ ମନୋରଞ୍ଜନ କରିବା ମଦ୍ୟପମାନଙ୍କର ଅଶ୍ଳୀଳ ଇଂଗିତ ରୀଟାକୁ ଯେତେ ବିବ୍ରତ କରି ପକାଉ ନ ଥିଲା, ତହୁଁ ବଳି ମୁଁ ବିବ୍ରତ ହୋଇ ଉଠୁଥିଲି । କିନ୍ତୁ କୌଣସି ଉପାୟ ନ ଥିଲା । ବାର୍‌ରେ ନାଚିଲେ ଏହିପରି ନାନା ଅବସ୍ଥାର ସମ୍ମୁଖୀନ ହେବାକୁ ହୋଇଥାଏ । ତା'ଛଡ଼ା ବାର୍‌ର ସେଲ୍ ବଢ଼ାଇବା ପାଇଁ ଅନେକ ସମୟରେ ନର୍ତ୍ତକୀକୁ ଅର୍ଦ୍ଧ ଉଲଙ୍ଗ ଅବସ୍ଥାରେ ନୃତ୍ୟ କରି ଗ୍ରାହକମାନଙ୍କୁ ଘଣ୍ଟା ଘଣ୍ଟା ଧରି ଅଟକାଇ ପେଗ୍‌କ ଜାଗାରେ ତିନି ପେଗ୍ ପିଆଇବାର ବ୍ୟବସ୍ଥା କରିବାକୁ ହୋଇଥାଏ ।

ରୀଟା ସେ ଦିଗରୁ ବେଶ୍ ତାଲିମ ହୋଇ ଉଠିଥିଲା ।

ମାଲିକ ମଧ୍ୟ ତା'ଉପରେ ଖୁବ୍ ସନ୍ତୁଷ୍ଟ ଥିଲେ।

କିନ୍ତୁ ଦିନକର ଘଟଣା ମୁଁ ସହି ପାରିଲି ନାହିଁ।

ସେଦିନ ଆମ ବାର୍‌ରେ ଏକ ସ୍ପେଶାଲ ପ୍ରୋଗ୍ରାମ ଥାଏ। ଆମର ସିଟ୍‌ଯାକ ସବୁ ଭର୍ତ୍ତି ହୋଇ ଯାଇଥାଏ। ସମସ୍ତେ ରୀଟାର ନାଚ ଦେଖିବା ପାଇଁ ଅଧୀର ଆଗ୍ରହରେ ପ୍ରତୀକ୍ଷା କରିଥାନ୍ତି। ବାର୍‌ର କ୍ୟାସ ବାକ୍ସ ପ୍ରତି ମିନିଟରେ ସ୍ଫିତ ହୋଇ ଉଠୁଥାଏ।

ରୀଟା ଷ୍ଟେଜକୁ ଓହ୍ଲାଇଲା। ପୁଣି ଷ୍ଟେଜରୁ ବାର୍‌କୁ। ବାର୍‌ର ପ୍ରତିଟି ଆଗ୍ରହୀ ଦର୍ଶକଙ୍କ ପାଖକୁ। ଏହିପରି ବୁଲି ବୁଲି, ନାଚି ନାଚି ସେ ଯେତେବେଳେ ପୁଣି ଷ୍ଟେଜକୁ ଫେରିଯିବ, ଠିକ୍ ସେତିକିବେଳେ ଦର୍ଶକଙ୍କ ଭିତରୁ ଜଣେ ରୀଟାକୁ ଜାବୁଡ଼ି ଧରିଲା। ସେ ଆଉ ରୀଟାକୁ ଛାଡ଼ିବାକୁ ଚାହେନା। ସେ ଚାହେ ରୀଟାକୁ ରାତିକ ପାଇଁ ଶଯ୍ୟା ସଙ୍ଗିନୀ ରୂପେ। ଯେତେ ଟଙ୍କା ଆବଶ୍ୟକ, ସେତେ ଟଙ୍କା ସେ ବାର୍ କର୍ତ୍ତୃପକ୍ଷଙ୍କୁ ଦେବାକୁ ପ୍ରସ୍ତୁତ। କିନ୍ତୁ ରୀଟାକୁ ସେ ସଙ୍ଗରେ ନେବାକୁ ଚାହେଁ।

ସେଦିନ ବାର୍‌ରେ ଭୀଷଣ ଆଲୋଡ଼ନ ସୃଷ୍ଟି ହୋଇଗଲା। ଲୋକମାନଙ୍କ ମଧ୍ୟରୁ ଅନେକେ ସେହି ଲୋକଟିକୁ ସମର୍ଥନ କଲେ। ସେମାନେ କୁଆଡ଼େ ସମସ୍ତେ ଭାଇ ଭାଇ ସମସ୍ତେ ବାର୍ ଫ୍ରେଣ୍ଡ। ତେଣୁ ଭାଇ ମଧ୍ୟରେ ଜଣେ ଯେତେବେଳେ ଗୋଟାଏ କୀର୍ତ୍ତି କରିବାକୁ ଚାହୁଛି, ତାହା ଅପୂରଣ ରହିବ କାହିଁକି ? ସେ ତ ବିନିମୟରେ ମୂଲ୍ୟ ଦେବାକୁ ପ୍ରସ୍ତୁତ।

ଆମେ ମହା ସମସ୍ୟାରେ ପଡ଼ିଗଲୁ। ସେ ଲୋକଟା ରୀଟାକୁ ଏପରି ଭାବରେ ଜାବୁଡ଼ି ଧରିଥିଲା ଯେ, ଆଉ କିଛି ସମୟ ଯାଇଥିଲେ, ତା'ର ଶ୍ୱାସ ପ୍ରଶ୍ୱାସ ପ୍ରାୟ ବନ୍ଦ ହୋଇ ଯାଇଥାନ୍ତା। ସେଦିନ ମୋର ବାର୍ ଡିଉଟି ଥାଏ। ସମସ୍ତ ଦାୟିତ୍ୱ ମୋରି ଉପରେ। ତେଣେ ବାର ଅବସ୍ଥା ଅଣାୟତ୍ତ। ମୁଁ ବିବ୍ରତ ହୋଇ ପଡ଼ିଲି। ଅନ୍ୟ ଉପାୟ ନ ଦେଖି ପୋଲିସ୍‌କୁ ଫୋନ୍ କଲି। କିନ୍ତୁ ପୋଲିସ୍ ଆସିବାଯାଏ ତ ରୀଟାକୁ ରକ୍ଷା କରିବାକୁ ପଡ଼ିବ।

ମୋ ମୁଣ୍ଡରେ ଗୋଟାଏ ବୁଦ୍ଧି ଖେଳିଗଲା। ମୁଁ ବାର୍‌ର ମେନ୍ ସୁଇଚ୍‌ଟା ଅଫ୍ କରି ଦେଇ ହଲ୍‌ଟାକୁ ଅନ୍ଧାକାର କରିଦେଲି। ସେହି ଅନ୍ଧକାର ଭିତରେ ଦୁଇଜଣ ବୟଙ୍କୁ ସଙ୍ଗରେ ଧରି ଭିଡ଼ ଭିତରୁ ସେହି ଲୋକଟି ସହ ରୀଟାକୁ ଏକ ପ୍ରକାର ଉଠାଇ ଘେନି ଆସିବାକୁ ଚେଷ୍ଟା କଲୁ। କିନ୍ତୁ ଅନ୍ୟମାନେ ଆମ ସହିତ ଏପରି ସଂଘର୍ଷ କଲେ ଯେ, ଶେଷ- ପର୍ଯ୍ୟନ୍ତ ଆମକୁ ରକ୍ତାକ୍ତ ଦେହରେ ରୀଟାକୁ ରକ୍ଷା କରିବାକୁ ହୋଇଥିଲା। ପୋଲିସ୍ ଆସି ପହଞ୍ଚିଲା ବେଳକୁ ମୁନ୍‌ଲାଇଟ୍ ବାର୍‌ର କୌଣସି ଆସବାବ ପତ୍ର ଅକ୍ଷତ ଅବସ୍ଥାରେ ନ ଥଲା। ମୋତେ ଦୁଇ ତିନିଦିନ ପାଇଁ ହସ୍‌ପିଟାଲର ଆଶ୍ରୟ ଗ୍ରହଣ କରିବାକୁ ପଡ଼ିଥିଲା।

ତା'ପରଠାରୁ ରୀଟାକୁ ଆଉ ମୁଁ ମୁନ୍‌ଲାଇଟ ବାର୍‌ର ନର୍ତ୍ତକୀ ରୂପେ ଦେଖିବାକୁ ଚାହିଁ ନ ଥିଲି।

ରୀଟାର କୌଣସି ମନ୍ତବ୍ୟ ନ ଥିଲା। ତା'ର ଆବଶ୍ୟକ ଥିଲା ଟଙ୍କା, କେବଳ ଟଙ୍କା। ଟଙ୍କା ପାଇଁ ସେତେବେଳେ ସେ ସବୁ କରିବାକୁ ପ୍ରସ୍ତୁତ ଥିଲା।

: କିନ୍ତୁ ଟଙ୍କାର ଏତେ ପ୍ରୟୋଜନ କ'ଣ ଥିଲା ରୀଟାର ? ସଂସାରଟି ତ ତା'ର

ଥିଲା ଅତି ଛୋଟ । ବାପା ମା' କେହି ନ ଥିଲେ । ଭାଇ ଭଉଣୀ ଦି'ଜଣ ।

ଅନାଦି ଗୋମେସ୍ କହିଲେ: ମୁଁ ବି ସେଇଆ ଜାଣିଥିଲି । ସେଇଥିପାଇଁ ରୀଟାକୁ ବାରମ୍ବାର ପ୍ରଶ୍ନ କରିଥିଲି । କିନ୍ତୁ କୌଣସି ସଦୁତ୍ତର ପାଇ ନଥିଲି । ସେ ଯେପରି ମୋତେ ସେ ସବୁ ପ୍ରଶ୍ନ ଏଡ଼େଇ ଚଳିବାକୁ ଚେଷ୍ଟା କରୁଥିଲା । ତା'ମନରେ ଦୁଃଖ ହେବ, ସେଥିପାଇଁ ମୁଁ ଆଉ ଆଗକୁ ବଢୁ  ନଥିଲି ।

: ହୁନ୍ତ ତା'ପରେ ? ଆପଣ ନିଶ୍ଚୟ ଦିନେ ରୀଟାର ସେହି ରହସ୍ୟ ଉଦ୍‌ଘାଟନ କଲେ । ମାନେ ଆପଣ ଜାଣି ପାରିଲେ ରୀଟାର ଏପରି ପ୍ରଚୁର ଅର୍ଥ ପ୍ରୟୋଜନ କାହିଁକି ହେଉଛି ।

ଅନାଦି ଗୋମେସ୍ ଏକ ଦୀର୍ଘଶ୍ୱାସ ତ୍ୟାଗ କରି କହିଲେ : ମୁଁ ଯେତେବେଳେ ଜାଣି ପାରିଲି, ସେତେବେଳେ ମୋର ଆଉ କୌଣସି ଉପାୟ ନଥିଲା । କେବଳ ରୀଟାର ଦୁର୍ଭାଗ୍ୟ ପାଇଁ ସମବେଦନା ଜଣାଇବା ଛଡ଼ା ମୁଁ ଆଉ କିଛି କରି ପାରି ନ ଥିଲି ।

: କାହିଁକି ? ରୀଟା କ'ଣ...ମୁଁ କଥା ସମାପ୍ତ କରିବା ପୂର୍ବରୁ ଶିଡ଼ିର ପାଦଶବ୍ଦ ଆଡ଼େ ଚାହିଁ ଦେଖିଲି ସଶରୀରେ ରୀଟା ଉପସ୍ଥିତ ହୋଇଛି । ଏଥର ମୋତେ ରୀଟା ପ୍ରଶ୍ନର ଉତ୍ତର ଦେବାକୁ ପଡ଼ିଲା ।

: ଲଞ୍ଚ୍ କେତେବେଳେ କଲେ ? ରୀଟା ପଚାରିଲା ।

: ଏଇ ଅଳ୍ପ ସମୟ ହେବ ।

ସେ ମୋ ହାତ ଧରି ଟାଣି ଟାଣି ମୋତେ ଉପରକୁ ନେଇଗଲା । ବିଦ୍ରୂପ ସ୍ୱରରେ କହିଲା: ମୁଁ ଜୀବନରେ ଅନେକ ଲୋକ ଦେଖିଛି, ମାତ୍ର ଆପଣଙ୍କ ପରି ସୁପୁରୁଷ... ରୀଟା ହସି ଉଠିଲା ।

ମୁଁ ହଠାତ୍ ଠିଆ ହୋଇଗଲି ।

ରୀଟା ପୁଣି ମୋ ହାତ ଧରି ଟାଣୁ ଟାଣୁ କହିଲା : ଅଧ ଗିଲାସେ ବିଅର ପିଇ ଯାହାକୁ ଚାରିଘଣ୍ଟା ନିଶା ଘାରିପାରେ ସେ ସୁପୁରୁଷ ନୁହେଁ ତ ଆଉ କ'ଣ ?

ଆମେ ଯାଇ ଛାତ ଉପରେ ଆମର ସେହି ରୁମ୍‌ଟି ମଧ୍ୟରେ ପ୍ରବେଶ କଲୁ ।

ରୀଟା କହିଲା : ମୁଁ ସବୁ କାମ ତୁଟେଇ ଦେଇ ଆସିଛି । ଏଥର ପ୍ରୋଗ୍ରାମ ଠିକ୍ କରନ୍ତୁ ।

ମୁଁ କହିଲି : ଆପଣଙ୍କ ସହିତ ପ୍ରୋଗ୍ରାମ୍ ଠିକ୍ କରିବାର ଯୋଗ୍ୟତା ମୋର ନାହିଁ । ତା'ଛଡ଼ା ମୋର ଆଉ ଗୋଟିଏ ପ୍ରସ୍ତାବ ଅଛି ।

: ଯଥା ?

: ଆପଣଙ୍କ ସହିତ ଅନ୍ୟ କେଉଁଆଡ଼େ ବାହାରିବା ପୂର୍ବରୁ ମୁଁ  ଚାହେ ଏଇ ଘରେ ନିରୋଳାରେ ବସି ଆପଣଙ୍କ ମୁହଁରୁ ଅନେକ କଥା ଶୁଣିବାକୁ ।

: ମୋ ମୁହଁରୁ ଅନେକ କଥା ଶୁଣିବେ ? ରୀଟା ହସି ହସି ଲୋଟି ପଡ଼ିଲା । ମୁଁ ଦେଖୁଛି ଶେଷରେ ଅନ୍ୟମାନଙ୍କ ପରି ଆପଣ ବି ମୋତେ ସେହି ପ୍ରସ୍ତାବ ଦେଲେ, ନିରୋଳାରେ ରହିବା ଆମେ ଦୁଇଜଣ । ପୃଥିବୀ ଠାରୁ ତୁଟାଇ ଦେବା ସମସ୍ତ ସଂପର୍କ । ତୁମେ ଆଉ ମୁଁ । ମୁଁ ଆଉ ତୁମେ । ତୁମେ କହିବ ମୁଁ ଶୁଣିବି, ମୁଁ କହିବି ତୁମେ ଶୁଣିବ । ହାଃ ହାଃ ହାଃ...। ରୀଟା ନିର୍ଲଜ୍ଜଙ୍କ ଭଳି ହସିବାରରେ ଲାଗିଲା ।

ମୁଁ କିପରି ଏକ ଅସ୍ୱସ୍ତି ଭିତରେ ବନ୍ଦୀ ହୋଇ ପଡ଼ିଥିଲି । ସେଇ ମୁହୂର୍ତ୍ତରେ ଘର ଛାଡ଼ି ପଳାଇ ଆସିବାକୁ ବେଳେ ବେଳେ ଇଚ୍ଛା ହେଉଥିଲେ ମଧ, ରୀଟାର ଅସହାୟତାବୋଧ ମୋ ଅନ୍ତରରେ ଯେତିକି କରୁଣାର ସଞ୍ଚାର କରିଥିଲା, ତାହାହିଁ ରୀଟା ପାଇଁ ଥିଲା ଯଥେଷ୍ଟ ।

ରୀଟା ପୁଣି କହିଲା: ମୁଁ ତାକୁ ପ୍ରାଣ ଦେଇ ଭଲ ପାଇଥିଲି । ମୋ ଜୀବନର ପ୍ରଥମ ମନର ମଣିଷ ଥିଲା ସେ । ତାକୁ ପାଇଥିଲେ ଜୀବନର ଗତି ମୋର ଅନ୍ୟ ପଥରେ ପରିଚାଳିତ ହୋଇ ଥାଆନ୍ତା । ମୁଁ ଆଜି କଣ୍ଟକ ଶଯ୍ୟାରେ ଶୋଇ ପ୍ରତି ମୁହୂର୍ତ୍ତରେ ହତାଶାର ତାଣ୍ଡବ ନୃତ୍ୟ ଦେଖୁ ନ ଥାନ୍ତି ।

: କିନ୍ତୁ ସେ ଆପଣଙ୍କୁ ବିଟ୍ରେ କଲା କାହିଁକି ?

: କିଏ ରଞ୍ଜନ ? ରୀଟା ହସି ହସି ଭାଙ୍ଗି ପଡ଼ିଲା । ଆପଣ ସେ କଥା ଜାଣିବାକୁ ଚାହାନ୍ତି ! ହଁ ଜାଣିବା ଉଚିତ ମଧ । ମୁଁ ଆପଣଙ୍କୁ କହିବି ସେ କାହାଣୀ । ରଞ୍ଜନକୁ ମୁଁ କିପରି ପାଇଲି, ସେ କାହିଁକି ମୋତେ ବିଟ୍ରେ କଲା ଏବଂ ତା' ମୂଳରେ କାହାର ହାତ ଥିଲା । ଅବିଶ୍ୱାସ୍ୟ ସେ କାହାଣୀ । ଆପଣ ଶୁଣିଲେ ସ୍ତବ୍ଧ ହୋଇଯିବେ ।

ମୁଁ ରୀଟାର ମୁଣ୍ଡଟା ମୋ କୋଳ ଉପରୁ ଉଠାଇବାକୁ ଚେଷ୍ଟା କରିବାରୁ ସେ ମୁଣ୍ଡଟାକୁ ଆହୁରି ଜୋରରେ ମାଡ଼ିଧରି କହିଲା : ନା ନା, ଜୀବନର ବହୁ ସମୟ ମୋର ହାହାକାର ମଧରେ କଟିଲାଣି । ଅନେକ ମୋ ଆଖିରେ ବହୁ ସୁନେଲି ସ୍ୱପ୍ନର ଅଞ୍ଜନ ବୋଳି ଶେଷରେ ସ୍ୱାର୍ଥ ସାଧନ କରି ଚାଲି ଯାଇଛନ୍ତି, କିନ୍ତୁ କେହି ଜଣେ ହେଲେ ଆସି ନାହାନ୍ତି ନିଃସ୍ୱାର୍ଥପର ଭାବରେ, କେହି ଶୁଣିବାକୁ ଚାହିଁ ନାହାନ୍ତି ମୋର ଜୀବନ ଗୀତି । ଆଜି କିନ୍ତୁ ଆପଣ ମୋତେ ବ୍ୟର୍ଥ କରନ୍ତୁ ନାହିଁ । ତା'ହେଲେ ମୁଁ ପାଗଳ ହୋଇଯିବି ।

: ଘରଟା ଯେ ଅନ୍ଧକାରରେ ଭରି ଗଲାଣି । ମୁଁ ଲାଇଟ୍‌ଟା ଜଳେଇ ଦିଏ !

: ନା ନା, ଆଜି ଆଉ ଆଲୋକର ଆବଶ୍ୟକ ନାହିଁ । ସେ କାହାଣୀ ଅନ୍ଧକାରର । ଅନ୍ଧକାରରେ ସବୁ କହିବି ମୁଁ ଆପଣଙ୍କୁ ।

ମିସେସ୍ ସ୍ମିଥ କ୍ୟାପ୍‌ଟେନ ସ୍ମିଥ୍‌ଙ୍କର ଆଦରଣୀୟା ସ୍ତ୍ରୀ । ଆମର ପଡ଼ୋଶୀ । ଆମେ ସେତେବେଳେ ଗ୍ରାଣ୍ଟ ଷ୍ଟ୍ରିଟ୍‌ର ଅଧିବାସୀ । ସେତେବେଳକୁ ଆମେ ସର୍ବସ୍ୱ ହରାଇ ମିସେସ୍ ସ୍ମିଥ୍‌ଙ୍କ ପାଖ ଘରେ ଗୋଟିଏ ଛୋଟିଆ ଫ୍ଲାଟ୍‌ରେ ଯାଇ ରହିଚୁ । ବାପା ମା' କେହି ଆମର ନାହାନ୍ତି ଦୁନିଆରେ । ମୋର ବୟସ ଷୋଳ ସତର ହେବ ଆଉ ମୋ ବଡ଼ଭାଇ ରାଜେନ୍ ମୋଠାରୁ ଦୁଇବର୍ଷ ବଡ଼ ।

ମିସେସ୍ ସ୍ମିଥ୍ ଯେଉଁଦିନ ଆମକୁ ଦେଖିଲେ ଏବଂ ଆମ ଜୀବନର କରୁଣ ଇତିହାସ ଶୁଣିଲେ, ସେ ଆମ ଦୁହିଁଙ୍କୁ କୋଳକୁ ଟାଣି ନେଇ ଅଶ୍ରୁସିକ୍ତ ନୟନରେ ଆମର କପାଳ ଚୁମ୍ବନ କରି କହିଲେ: ଭଗବାନ ଯାହା କରନ୍ତି ପ୍ରାଣୀର ମଙ୍ଗଳ ପାଇଁ । ତମ ଦୁହିଁଙ୍କୁ ଆଣି ଠିକ୍ ଜାଗାରେ ପହଞ୍ଚାଇଛନ୍ତି । ମୋର ସବୁ ଥିଲା, କିନ୍ତୁ ଶୂନ୍ୟଥିଲା କୋଳ ।

ମାତୃପମା ମିସେସ୍ ସ୍ମିଥ୍‌ଙ୍କ ଆଶ୍ୱାସନା ପାଇ ସେଦିନ ଆମେ ଯେପରି ଅନ୍ଧାରରେ

ଆଲୋକର ସଂଧାନ ପାଇଥିଲୁ ।

କ୍ୟାପ୍‌ଟେନ ସ୍ମିଥ୍ ଗୋଟିଏ ଜାହାଜ କମ୍ପାନୀରେ କାମ କରନ୍ତି । ସେ ପ୍ରାୟ ଘରେ ନ ଥାନ୍ତି । କମ୍ପାନୀର ଜାହାଜ ନେଇ ଦେଶ ବିଦେଶ ବୁଲନ୍ତି । ମିସେସ୍ ସ୍ମିଥ୍ ଥାଆନ୍ତି ଘରେ । ବୟସ ତାଙ୍କୁ ଚାଳିଶ ପଇଁଚାଳିଶରୁ କମ୍ ହେବ ନାହିଁ । କିନ୍ତୁ ବେଶବାସ, ସଜାସଜିରେ ସେ ତାଙ୍କର ବୟସକୁ ଆହୁରି ପାଞ୍ଚବର୍ଷ ଏପରିକି ଦଶ ବର୍ଷ କମାଇ ପାରିଲେ ଖୁସି ହୋଇ ପାରନ୍ତେ ବୋଲି ଧୀରେ ଧୀରେ ମୋର ଧାରଣ ଜନ୍ମିଥିଲା ।

ମିସେସ୍ ସ୍ମିଥ୍‌ଙ୍କର ସୋସାଇଟ୍ ଖୁବ୍ ବଡ଼ । କଲିକତାର ବହୁ ବୁନିଆଦି କ୍ଲବର ସେ ମେମ୍ବର । ଦିନେ ସଂଧ୍ୟାବେଳେ ସେ ମୋତେ ପାଖକୁ ଡାକିଲେ । ମୋର ମଳିନ ବେଶ ପୋଷାକ ଓ ଶୁଖିଲା ମୁହଁ ଆଡ଼େ କିଛି ସମୟ ନିରୀକ୍ଷଣ କରି ମୋ ହାତ ଟାଣି ଟାଣି ତଳକୁ ନେଇଗଲେ । ତା'ପରେ ଟ୍ୟାକ୍‌ସିରେ ବସାଇ ଚୌରଙ୍ଗୀର ଗୋଟିଏ ଡ୍ରେସ ଦୋକାନରେ ଡ୍ରେସ୍‌ର ଅର୍ଡର ଦେଇ ମୋତେ ଅବାକ କରିଦେଲେ ।

ମୁଁ ଅବଶ୍ୟ ଆପତ୍ତି କରିଥିଲି, କିନ୍ତୁ ସେ ଶୁଣିଲେ ନାହିଁ । କହିଲେ : ମୁଁ ଯଦି ତୋତେ ଜନ୍ମ କରିଥାନ୍ତି, ତୁ କ'ଣ ମୋତେ ବାଧା ଦେବାକୁ ସାହସ କରି ଥାଆନ୍ତୁ ?

ସେଦିନ ମିସେସ ସ୍ମିଥ୍‌ଙ୍କର ମାତୃସୁଲଭ ଆଚରଣ ମୋତେ ମୌନ କରାଇ ଦେଇଥିଲା । ମୁଁ ଫେରିଲାବେଳେ ପଦଟିଏ ହେଲେ କଥା ତାଙ୍କୁ କହି ପାରି ନଥିଲି ।

ମୋ ଭାଇ ରାଜେନ୍ ଅନନ୍ୟୋପାୟ ହୋଇ ଗୋଟାଏ ଦୋକାନରେ ସେଲସ୍‌ମ୍ୟାନ ଚାକିରି କରୁଥିଲା । ସକାଳ ଆଠଟାରୁ ସେ ଘରୁ ବାହାରି ଯାଇ ଫେରୁଥିଲା ରାତି ନଅଟାରେ ।

ଆମ ଜୀବନର ଏଇ ବିରାଟ ସନ୍ଧିକ୍ଷଣରେ ମିସେସ୍ ସ୍ମିଥ୍ ଆମକୁ କୋଳକୁ ଆଉଜାଇ ନେଇ ପ୍ରକୃତରେ ମାତୃତ୍ୱର ପରିଚୟ ଦେଇଥିଲେ ।

ଦିନେ ମିସେସ୍ ସ୍ମିଥ୍ ଡ୍ରେସ୍ ଗୁଡ଼ିକ ଆଣି ପହଞ୍ଚିଲେ । ସେଦିନ ମୋ ଠାରୁ ତାଙ୍କ ମନରେ ବେଶି ଉତ୍ସାହ ଖେଳି ବୁଲୁଥିଲା । ସେ ମୋତେ ନିଜ ହାତରେ ଗୋଟିକ ପରେ ଗୋଟିଏ ଡ୍ରେସ୍ ପିନ୍ଧେଇ, ମୋ ସୌନ୍ଦର୍ଯ୍ୟର ତାରିଫ୍ କରିଥିଲେ । ଆଉ ମୋର ମନ ବି କୁଣ୍ଢେମୋଟ ହୋଇ ଯାଇଥିଲା ।

ମିସେସ୍ ସ୍ମିଥ୍ ସେଇଦିନ ପ୍ରଥମ ମୋତେ ସଙ୍ଗରେ ଧରି ବାହାରି ଥିଲେ ତାଙ୍କର ପରିଚିତ କେତୋଟି ହୋଟେଲ ଓ କ୍ଲବକୁ । ଅନେକଙ୍କ ସହିତ ମୋର ପରିଚୟ କରାଇଲେ ତାଙ୍କର ସଂପର୍କୀୟା ଝିଆରୀ ରୂପେ ।

କଲିକତା ସହରରେ ମୋ ଅଦେଖାରେ ଯେ ଏତେଗୁଡ଼ିଏ ଇନ୍ଦ୍ରପୁରୀ ରହିଯାଇଛି, ସେଦିନ ମୁଁ ଆବିଷ୍କାର କରିପାରି ମିସେସ୍ ସ୍ମିଥ୍‌ଙ୍କ ପାଖରେ କୃତଜ୍ଞତାରେ ନଇଁ ପଡ଼ିଥିଲି ।

ଆମେ ଫେରି ଆସିଲୁ ସେଦିନ । ଅବଶ୍ୟ ରାତି ଟିକିଏ ଅଧିକ ହୋଇ ଯାଇଥିଲା । ଦେଖିଲି ଭାଇ ବି ଫେରି ଆସିଚି ଏବଂ ମୋରି ପ୍ରତୀକ୍ଷାରେ ଏପାଖ ସେପାଖ ହେଉଛି ।

ମିସେସ୍ ସ୍ମିଥ୍ ଭାଇର ଗାଲ ଟିପି ଦେଇ ଆଦରରେ କହିଲେ : ଏ ଝିଅଟିକି ଚିହ୍ନି ପାରୁଚୁ ।

ପ୍ରକୃତରେ ଭାଇ ମୋ ଆଡ଼େ ଚାହିଁ କିପରି ସ୍ତବ୍ଧ ହୋଇ ଯାଇଥିଲା ।

ମୁଁ ଓ ମିସେସ୍ ସ୍ମିଥ୍ ଏକା ସାଙ୍ଗରେ ହସି ଉଠିଥିଲୁ ।

ମିସେସ୍ ସ୍ମିଥ୍ କହିଲେ : ରାତି ଅନେକ ହେଲାଣି । ଚାଲ ଖିଆ ପିଆ ଶେଷ କରିବା ।

ସେଦିନ ମିସେସ୍ ସ୍ମିଥ୍‌ଙ୍କ ଘରେ ଆମପାଇଁ ରନ୍ଧା ହୋଇଥିଲା ।

ଆମେ ଡାଇନିଂ ଟେବୁଲରେ ବସି ନାନା ପ୍ରକାର ଗଳ୍ପ ମଝିରେ ଖାଇବା ଶେଷ କରିଥିଲୁ । ମିସେସ୍ ସ୍ମିଥ୍‌ଙ୍କର ଆକୃତ୍ରିମ ସ୍ନେହ ପାଖରେ ମୁଣ୍ଡ ମୋର ନଇଁ ପଡ଼ିଥିଲା ।

ଭାଇ କିନ୍ତୁ ସମସ୍ତ ମୁହୂର୍ତ୍ତ କାବା ହୋଇ ଆମଆଡ଼େ ଚାହୁଁଥିଲା । ସେ କଥା ମଝିରେ ପଦେ ଅଧେ କହି, ଖାଇବାରେ ମନୋନିବେଶ କରିଥିଲା ।

ମିସେସ୍ ସ୍ମିଥ୍ କ୍ୟାପ୍‌ଟେନ୍ ସ୍ମିଥ୍‌ଙ୍କ କଥା ସେଦିନ ଅନେକ କହିଲେ । ସେ ତାଙ୍କୁ କେତେ ଭଲ ପାଆନ୍ତି । ଦୂରରେ ଥାଇ ବି ପ୍ରତିଦିନ କିପରି ତାଙ୍କୁ ଚିଠି ଲେଖନ୍ତି । ବହୁ କର୍ମଜଞ୍ଜାଳ ମୁହୂର୍ତ୍ତ ଗୁଡ଼ାକରେ ବି ତାଙ୍କ ମନରେ ମିସେସ୍ ସ୍ମିଥ୍ କିପରି ଜିଇଁ ରହି ଥାଆନ୍ତି, ଇତ୍ୟାଦି ଇତ୍ୟାଦି ।

ସେଦିନ ଖିଆ ପିଆ ପର୍ବ ଶେଷ କରି ଆମେ ଯେତେବେଳେ ଶୋଇବାକୁ ଗଲୁ, ଘଡ଼ିରେ ସେତେବେଳେ ରାତି ଦଶଟା ବାଜୁଥିଲା ।

ଆମେ ମିସେସ୍ ସ୍ମିଥ୍‌ଙ୍କୁ ଶୁଭରାତ୍ରି ଜଣାଇ ଆମ ଘରକୁ ଚାଲିଗଲୁ ।

ଭାଇ ମୋତେ ନିରୋଳାରେ ଦେଖି ପଚାରିଲା : ମିସେସ୍ ସ୍ମିଥ୍‌ଙ୍କର ହଠାତ୍ ଆମ ପ୍ରତି ଏତେ ଅନୁରାଗ କାହିଁକି ?

ସେଦିନ ସେଇ ମୁହୂର୍ତ୍ତରେ ଭାଇ ଉପରେ ମନେ ମନେ ମୁଁ ବିରକ୍ତ ହୋଇ ଉଠିଥିଲି । ହେଲେ ସନ୍ତୋଷଜନକ କିଛି ଉତ୍ତର ଦେଇ ପାରି ନ ଥିଲି ।

କିନ୍ତୁ ପର ମୁହୂର୍ତ୍ତରେ ଭାଇ ବି ଏକ ଅବାକ୍ କାଣ୍ଡ କରି ବସିଲା । ସେ ତା' ଟ୍ରାଉଜର ପକେଟରୁ ଗୋଟିଏ ଛୋଟ ବାକ୍‌ସ ବାହାର କରି ମୋ ହାତକୁ ବଢ଼ାଇ ଦେଇ କହିଲା : ଦେଖିଲୁ, ତୋ'ପାଇଁ କ'ଣ ଆଣିଛି ?

ମୁଁ ମନର ଆଗ୍ରହକୁ କୌଣସି ପ୍ରକାର ଦମନ କରି ନ ପାରି ସଙ୍ଗେ ସଙ୍ଗେ ସେଇଟିକୁ ଫିଟେଇ ପକାଇଲି । ଗୋଟାଏ ନେକ୍‌ଲେସ । ଭାଇକି କୋଳରେ ଧରି ସେଦିନ ନାଚି ଉଠିଥିଲି । ମୋର ପରିହିତ ସୁନ୍ଦର ଡ୍ରେସ ସାଙ୍ଗକୁ ନେକ୍‌ଲେସଟି ଗଳାରେ ଲମ୍ବାଇ ଯେତେବେଳେ ଅଇନା ସାମ୍‌ନାରେ ନିଜର ପ୍ରତିଛବି ଦେଖିଲି, ମୋର ମନେ ହେଲା, ସ୍ୱର୍ଗର ଅପ୍‌ସରି ମୁଁ । ଏଇ ଓହ୍ଲେଇ ଆସିଛି ମର୍ତ୍ତ୍ୟକୁ ।

ଭାଇ ସେତେବେଳକୁ ତା'ଘରେ ଯାଇ ପୋଷାକ ବଦଳାଉଥିଲା ।

ମୁଁ ଆନନ୍ଦରେ ଆତ୍ମହରା ହୋଇ ଛୁଟିଗଲି ତା' ପାଖକୁ ।

କିନ୍ତୁ ଏ କ'ଣ ? ଆଖି ମୋର ଝଲସି ଉଠିଲା । ଭାଇର ଖଟ ପାଖକୁ ଲାଗି ପଡ଼ିଥିବା ଭଙ୍ଗା ଟେବୁଲ୍‌ଟ । ଉପରେ ବିଡ଼ାଏ ଶହେଟଙ୍କିଆ ନୋଟ୍ ।

ଭାଇ ମୋ ମନର ଭାବ ବୁଝି ପାରିଲା । କହିଲା : ସେଲ୍‌ସମ୍ୟାନ ଚାକିରି ଛାଡ଼ି ଦେଇଛି ଅନେକ ଦିନରୁ । ଆଉ ଗୋଟାଏ ନୂଆ ଚାକିରି କଲିଣି ମାସେ ହେବ । ତୋତେ କହି ନ ଥିଲି । କହିଥିଲେ ଆଜି ତତେ ଏପରି ଅବାକ୍ କରିପାରି ନ ଥାନ୍ତି ।

ସେ ମୋ ପାଖକୁ ଲାଗି ଆସି ମୋ ମୁଣ୍ଡରେ ହାତ ବୁଲାଇ କହିଲା : ଆଉ ଚିନ୍ତାର କାରଣ ଆମର କିଛି ନାହିଁ । ମୁଁ ଗୋଟାଏ ଭଲ ଫ୍ଲାଟ୍ ଖୋଜୁଛି । ପାଇଲେ

ସଙ୍ଗେ ସଙ୍ଗେ ଚାଲିଯିବା ।

ଭାଇର ଆହୁରି ଉନ୍ନତି କାମନା କରି ମୁଁ ସେଦିନ ମନେ ମନେ ଭଗବାନଙ୍କୁ ବହୁ ପ୍ରଣାମ ଜଣାଇଥିଲି ।

ଭାଇ ମୋତେ କହିଲା ମିସେସ୍ ସ୍ମିଥ୍ ଆମ ପାଇଁ ବହୁତ କରିଛନ୍ତି । ଆମ ଦୁର୍ଦ୍ଦିନରେ ସେ ଆମକୁ ସହାୟ ହୋଇଛନ୍ତି । କିନ୍ତୁ ଆଜି ଆଉ ତାଙ୍କଠାରୁ କିଛି ଗ୍ରହଣ କରିବା ଆମର ଉଚିତ ନୁହେଁ ।

ମୁଁ କହିଲି : ସେ କିନ୍ତୁ କଷ୍ଟ ପାଇବେ ଯେ ! ଆମ ଦୁହିଁଙ୍କୁ ସେ ତାଙ୍କର ସନ୍ତାନ ପରି ଦେଖନ୍ତି ।

ଭାଇ ସେଦିନ ଆଉ କିଛି କହିଲା ନାହିଁ । ବିଛଣା ଉପରେ ଲୋଟିପଡ଼ି ଗୋଟାଏ ସିଗାରେଟ୍ କେଉଁଠୁ ବାହାର କରି, ତହିଁରେ ଅଗ୍ନି ସଂଯୋଗ କଲା ।

ସେଇଦିନ ମୁଁ ପ୍ରଥମେ ଭାଇକୁ ସିଗାରେଟ୍ ଟାଣିବାର ଦେଖିଲି ।

ସେ ଶୋଇ ଶୋଇ ଆଖିବୁଜି କ'ଣ ସବୁ ଚିନ୍ତା କରିବାରେ ଲାଗିଲା । ମୁଁ ଧୀରେ ଧୀରେ ତା'ଘରୁ ବାହାରି ଆସିଲି ।

ତା'ପରର ଦିନ ଗୁଡ଼ିକ ମୋ ଆଖିରେ ସ୍ୱପ୍ନର ଅଞ୍ଜନ ବୋଳି ପକ୍ଷ ବିସ୍ତାର କରି ଚାରି ପାଖରେ ଉଡ଼ି ବୁଲୁଥିଲା ।

ମିସେସ ସ୍ମିଥ୍ଙ୍କର ଅକୃତ୍ରିମ ସ୍ନେହ ଓ ଭାଇର ହଠାତ୍ ଭାଗ୍ୟ ପରିବର୍ତ୍ତନରେ ମୁଁ ଆତ୍ମହରା ହୋଇ ପଡ଼ିଥିଲି ।

ଏବେ ମିସେସ ସ୍ମିଥ୍ ଘଡ଼ିରେ ଚାରିଟା ବାଜିବାକ୍ଷଣି ମୋତେ ଡାକ ପକାନ୍ତି । ନିଜ ହାତରେ ସଜେଇ ଦିଅନ୍ତି । ଠିକ୍ ପାଞ୍ଚଟା ବେଳକୁ ମୋତେ ସାଂଗରେ ଧରି ବାହାରି ପଡ଼ନ୍ତି କୌଣସି କ୍ଲବ୍, ହୋଟେଲ ବା ରେଷ୍ଟୁରେଣ୍ଟକୁ ।

ମିସେସ ସ୍ମିଥ୍ଙ୍କ ଗୁଣମୁଗ୍ଧ ବହୁ କିଶୋର କିଶୋରୀ, ଯୁବକ ଯୁବତୀ ଆମ ଚାରି ପାଖରେ ଆସି ଭିଡ଼ କରନ୍ତି । ମିସେସ୍ ସ୍ମିଥ୍ ସମସ୍ତଙ୍କୁ ଖୁଆନ୍ତି ପେଟ ପୂରାଇ । ତା'ପରେ କାହା ଗାଲ, କାହା କପାଳ ଚୁମ୍ବନ କରି, କାହାକୁ ଚାପୁଡ଼ା ବିଧା ଦୁଇଟା ଗୋଟାଏ ବସାଇ ଫେରି ଆସନ୍ତି ରାତି ଆଠଟା ନଅଟା ବେଳକୁ ।

ମୋତେ ଭାରି ଭଲ ଲାଗେ । ନିତି ନିତି ନୂଆ ନୂଆ ବନ୍ଧୁ, ନୂଆ ନୂଆ ପରିବେଶ, ମୋ ମନ ବଗିଚାରେ ସ୍ୱପ୍ନର ଫୁଲ ଫୁଟାଏ ।

ମିସେସ ସ୍ମିଥ୍ଙ୍କ ସହିତ ମୋର ଏହି ନିତ୍ୟ ନୈମିତ୍ତିକ ପ୍ରୋଗ୍ରାମ କଥା ଭାଇକୁ ମୁଁ ଶୁଣାଇଲେ ବି, ସେ ଶୁଣି ନ ଶୁଣିଲା ପରି ଆପଣା ଚିନ୍ତାରେ ମଗ୍ନ ଥାଏ । ଆଜିକାଲି ବହୁ ସମୟରେ ରାତିରେ ସେ ଆଉ ଘରେ ଖାଏ ନାହିଁ । କେଉଁଦିନ ପାର୍ଟି, କେଉଁଦିନ କାହାର ଜନ୍ମଦିନ ଏହିପରି ନାନା ପ୍ରକାର ଅନୁଷ୍ଠାନରୁ ଭାଇ ରାତ୍ରି ଭୋଜନ ଶେଷ କରି ଫେରେ । ସେ ଏତେ କ୍ଲାନ୍ତ ହୋଇ ଲେଉଟେ ଯେ, ମୋ ସହିତ ବିଶେଷ କଥାବାର୍ତ୍ତା କରିବାକୁ ତା'ର ଆଉ ଧୈର୍ଯ୍ୟ ନଥାଏ ।

ଆସ୍ତେ ଆସ୍ତେ ମିସେସ୍ ସ୍ମିଥ୍ ମୋତେ ତାଙ୍କ ସହିତ ଏପରି ଜଡ଼ାଇ ଧରିଲେ ଯେ, ମୋ ଛଡ଼ା ତାଙ୍କର ଆଉ ମୁହୂର୍ତ୍ତେ ଚଳିଲା ନାହିଁ । ସେ ବାହାରକୁ ବାହାରିଲେ ମୋତେ ସାଙ୍ଗରେ ବାନ୍ଧନ୍ତି । ଏପରି କି ଦୋକାନ ବଜାର ସବୁଠିକି ସେ ମୋତେ ଟାଣି ଟାଣି

ନିଅନ୍ତି । ଆଉ ସବୁବେଳେ ମୁଁ ତାଙ୍କ ସହିତ ବାହାରିବା ପୂର୍ବରୁ ସେ ମୋତେ ଅଧଘଣ୍ଟାଏ ସଜାନ୍ତି । ମୋ ଅଙ୍ଗର ପ୍ରତିଟି ଅବୟବ ପ୍ରତି ତାଙ୍କର ଲକ୍ଷ୍ୟ ଥାଏ । ମୁହଁରେ ରୋଜ୍ ପାଉଡ଼ରଠୁ ଲିପ୍‌ଷ୍ଟିକ୍, ଆଖି ପତାରେ କଜଳଗାରଠାରୁ ଆରମ୍ଭ କରି ଛାତିର ସ୍ଫୀତି ବଢ଼ାଇବା ପର୍ଯ୍ୟନ୍ତ ସେ ଏକାନ୍ତ ମନଯୋଗ ସହକାରେ ନିଜ ହାତରେ ସମ୍ପାଦନା କରନ୍ତି ।

ଆଉ ଆମେ ଯୁଆଡ଼େ ଯାଉ, ପଛେ ପଛେ ଦଳେ ଯୁବକ ଚାଲି ଥାଆନ୍ତି । ସେଥିପାଇଁ ମିସେସ୍ ସ୍ମିଥ୍‌ଙ୍କ ମନରେ ଅସୀମ ଗର୍ବ ।

ଦିନେ ସେ କଥା ଛଳରେ ମୋତେ କହି ପକାଇଲେ, ଏହି ଅଳ୍ପ ବୟସର ପିଲାଗୁଡ଼ାଙ୍କୁ ମୋତେ ଭାରି ଭଲ ଲାଗେ । ଯୌବନର ପ୍ରଥମ ପାହାଚକୁ ପାଦ ବଢ଼ାଉଛନ୍ତି ଏମାନେ, କିନ୍ତୁ ମନେ ମନେ ସେମାନେ ଗର୍ବରେ ଭାଙ୍ଗି ପଡୁଛନ୍ତି । ଡାକିଲେ ଶୁଣନ୍ତି ନାହିଁ । ମୁହଁ ମୋଡ଼ି ଚାଲିଯାଆନ୍ତି । କେହି କେହି 'ଓଲ୍ଡ଼ ଲେଡ଼ି' କହି ବିଦ୍ରୂପ କରନ୍ତି । କିନ୍ତୁ...

ମିସେସ୍ ସ୍ମିଥ୍ ଟିକିଏ ଅଟକି, ମୋ ଆଡ଼େ ପରିତୃପ୍ତ ନୟନରେ ଚାହିଁ ସେହିପରି ଉତ୍ସାହିତ ହୋଇ କହିଲେ : ଏଥର କିନ୍ତୁ ସେମାନଙ୍କର ଆଣ୍ଠୁ ଭାଙ୍ଗି ଯାଇଚି ।

ମିସେସ୍ ସ୍ମିଥ୍‌ଙ୍କ ସହିତ ମୁଁ ବି ସେଦିନ ପ୍ରାଣ ଖୋଲି ହସି ଉଠିଥିଲି । ତାଙ୍କ କଥାର ଇଙ୍ଗିତରେ ଲୁଚିଥିବା ଗଭୀର ଅର୍ଥ ବୁଝିବା ପାଇଁ ମୁଁ ଚେଷ୍ଟା କରି ନ ଥିଲି ।

ସେଦିନ ଆମେ ଫେରିଲା ବେଳକୁ ଆମ ସହିତ ଯେଉଁ ପିଲାଟି ଆମ ଘରଯାଏ ଆସିଲା, ତା' ନାଁ ଟା ବୋଧହୁଏ ଜର୍ଜ । ବୟସ ତାକୁ ଅଠର କି ଉଣେଇଶ ହେବ । ମୁହଁରେ ସରୁ ସରୁ ଦାଢ଼ିଟିଏ ଲେଖା ଗଜା ମାରୁଥିଲା ମାତ୍ର । ସେଦିନ କୋଉ ଗୋଟାଏ ହୋଟେଲରେ ସେ ଆମ ସହିତ ଖାଇ ବସିଥିଲା । ଜର୍ଜ ଟିକିଏ ଲାଜକୁଳା, କିନ୍ତୁ ମୋତେ ଖୁବ୍ ମୁଗ୍ଧ କରିଥିଲା । ମୁଁ ତା' ସହିତ ପ୍ରାଣଖୋଲା ଗଳ୍ପ ଆରମ୍ଭ କରି ଦେଇଥିଲି ।

ଖିଆପିଆ ଶେଷ କରି ମିସେସ୍ ସ୍ମିଥ୍ ଆମକୁ ସେଇ ଟେବୁଲ ଉପରେ ଆହୁରି ଗପିବାର ସୁଯୋଗ ଦେଇ ବୋଧହୁଏ କିଛି ସମୟ ପାଇଁ ଅନ୍ୟ କେଉଁଠାକୁ ଚାଲି ଯାଇଥିଲେ। ଫେରିଲେ ପ୍ରାୟ ଘଣ୍ଟାଏ ପରେ ।

ଆମେ ଉଠିଲୁ। ଜର୍ଜ ବି ଆମ ସହିତ ଉଠିଲା । ଆମେ ଯେଉଁ ଟ୍ୟାକ୍‌ସିରେ ବସିଲୁ, ଜର୍ଜ ଆସି ସେଇ ଟ୍ୟାକ୍‌ସିରେ ବସିଲା । ମୁଁ ଭାବିଥିଲି ମିସେସ୍ ସ୍ମିଥ୍ ବୋଧହୁଏ ମୋ ଉପରେ ବିରକ୍ତ ହେବେ । କିନ୍ତୁ ତାଙ୍କ ମୁହଁରେ ସେପରି କିଛି ଲକ୍ଷଣ ଫୁଟିଲା ନାହିଁ । ସେ ଆମ ସହିତ ଗଳ୍ପରେ ମାତିଗଲେ ।

ଆମେ ଗ୍ରାଣ୍ଡ ଷ୍ଟ୍ରିଟ୍‌ରେ ପହଞ୍ଚି ଯେତେବେଳେ ଟ୍ୟାକ୍‌ସିରୁ ଓହ୍ଲାଇଲୁ, ଜର୍ଜ ଶୁଭ ରାତ୍ରି ଜଣାଇ କହିଲା : ଆଶା କରୁଚି କାଲି ପୁଣି ଦେଖା ହେବ ।

ମିସେସ୍ ସ୍ମିଥ୍ ହାତ ଘଡ଼ିକୁ ଚାହିଁ ଅଭିଯୋଗ ସ୍ୱରରେ କହିଲେ : ଏତେ ବାଟ ଆସି, ଆମ ଘରଟା ଦେଖିଯିବା କ'ଣ ଅପରାଧ ହେବ ।

ଜର୍ଜ ବୋଧହୁଏ ମୋ ସହିତ ଆଉ କିଛି ସମୟ କଟାଇବା ପାଇଁ ମନେ ମନେ ଚାହୁଁଥଲା । ମିସେସ୍ ସ୍ମିଥ୍‌ଙ୍କ କଥାର କୌଣସି ପ୍ରତିବାଦ ନ କରି ସୁବୋଧ ବାଳକଟି ପରି ଆମ ସହିତ ଉପରକୁ ଉଠି ଆସିଲା ।

ସେତେବେଳେ ରାତି ଦଶଟା ବାଜି ଯାଇଥିଲା । ଆମ ଘରର ଚାବିଟା ମୋ ପାଖରେ ଥିଲା । ମୁଁ ମନେ ମନେ ଶଙ୍କିତ ହୋଇ ଉଠିଥିଲି, ଭାଇ ଘରକୁ ଫେରି ହୁଏତ

ଏପାଖ ସେପାଖ ହେଉଥିବ । କିନ୍ତୁ ସେ ଆଶଙ୍କା ମୋର ଦୂର ହେଲା । ଭାଇ ଫେରି ନ ଥିଲା ।

ଜର୍ଜକୁ ସଙ୍ଗରେ ନେଇ ମିସେସ୍ ସ୍ମିଥ୍ ତାଙ୍କ ଘରକୁ ଚାଲି ଯାଇଥିଲେ । ଭାଇର ଅନୁପସ୍ଥିତି ଯୋଗୁଁ ମୁଁ ମଧ୍ୟ ଅଳ୍ପ ସମୟ ପରେ ସେଠାକୁ ଫେରିଗଲି । ମୁଁ ଦେଖିଲି ମିସେସ୍ ସ୍ମିଥ୍ ତାଙ୍କର ବେଶ ପୋଷାକ ସଂକ୍ଷିପ୍ତ କରିବା ପାଇଁ ଚେଷ୍ଟା କରୁଛନ୍ତି ।

ମୋତେ ଦେଖି ତାଙ୍କର ସେହି ଅସଂଯତ ଅବସ୍ଥାରେ ଦୁଇ ବାହୁରେ ଜଡ଼ାଇ ଧରି ମୋର ମୁହଁ ଓ କପାଳରେ ଘନ ଘନ ଚୁମ୍ବନ କରି କହିଲେ : ତୋତେ ଦେଖିଲେ ମୁଁ ମୋର ପ୍ରଥମ ଯୌବନକୁ ଆଉ ଥରେ ଫେରି ପାଇବା ପରି ଲାଗେ ।

ମିସେସ୍ ସ୍ମିଥ୍ କୌଣସି କାରଣରୁ ସାମାନ୍ୟ ଉତ୍ତେଜିତ ମନେ ହେଉଥିଲେ । ମୋତେ ଆଲିଙ୍ଗନ ମୁକ୍ତ କରି ସେ ତାଙ୍କ ପୋଷାକ ପରିବର୍ତ୍ତନ ପ୍ରତି ମନ ଦେଲେ । ମୋତେ କହିଲେ : ଜର୍ଜ ଡ୍ରଇଂ ରୁମ୍‌ରେ ଏକା ବସିଛି, ତୁ ଯା' ତା'ସହିତ ଗଳ୍ପ କରିବୁ ।

ଧୀରେ ଧୀରେ ମୁଁ ଡ୍ରଇଂ ରୁମ୍‌କୁ ଚାଲିଗଲି । ଜର୍ଜ କିନ୍ତୁ ଅସ୍ଥିର ଭାବରେ ପଦଚାଳନା କରି ହାତ ଘଡ଼ିକୁ ଘନ ଘନ ଚାହୁଁଥିଲା ।

ମୋତେ ଦେଖିବାକ୍ଷଣି ସ୍ଥିର ପାଦରେ ମୋ ଆଡ଼େ ଚାହିଁ ସ୍ମିତ ହସି କହିଲା ଆଜି କ'ଣ ମୋତେ ଘରକୁ ଫେରିବାର ଅନୁମତି ମିଳିବ ନାହିଁ ?

ଜର୍ଜର ଏପରି ମିନତୀରେ ମୁଁ ନିଜକୁ ଅତ୍ୟନ୍ତ ଗୌରବାନ୍ୱିତ ମଣିଲି । ଜର୍ଜ ଆଡ଼େ ଶାନ୍ତ ଚାହାଣିରେ ଚାହିଁ ସାମାନ୍ୟ ହସି କହିଲି, ଏତେବଡ଼ ଅଧିକାରର ଅଧିକାରୀ ହେବା ଯୋଗ୍ୟତା ମୁଁ ଅର୍ଜନ କରିନାହିଁ ।

ଜର୍ଜ ସେହି ନିରୋଳା ପରିବେଶରେ, ମୋର ଅତି ପାଖକୁ ଲାଗିଆସି, କାନ ପାଖରେ ଧୀରେ ଧୀରେ କହିଲା : ଅଧିକାର କିଏ କାହାକୁ ଦିଏ ନାହିଁ, ନିଜେ ନିଜେ ଅଧିକାରର ଅଧିକାରୀ ହେବାକୁ ହୁଏ ।

ମୁଁ କିଛି ଉତ୍ତର ଦେବା ପୂର୍ବରୁ ମୋ ଅଣ୍ଟାରେ ଜର୍ଜ ହାତର ସ୍ପର୍ଶ ଅନୁଭବ କଲି । ମୋର ସମଗ୍ର ଶରୀରରେ ଏକ ଅପୂର୍ବ ଶିହରଣର ବନ୍ୟା ଖେଳିଗଲା ।

ମୋର ମନେହେଲା ଯେପରି ମୋର ଦେହଟା ଗୋଟାଏ ହାଲ୍‌କା ଫୁଲ ପରି ପବନରେ ଉଡ଼ି ବୁଲୁଛି । ନିଜ ପାଦ ଉପରୁ ମୁଁ ଆସ୍ଥା ହରାଇ ଧୀରେ ଧୀରେ ସୋଫା ଉପରେ ବସି ପଡ଼ିଲି ।

ଠିକ୍ ସେହି ମୁହୂର୍ତ୍ତରେ ମିସେସ୍ ସ୍ମିଥ୍ ହାତରେ ଗୋଟିଏ ଟ୍ରେ' ଧରି ଡ୍ରଇଂ ରୁମ୍‌ରେ ପ୍ରବେଶ କଲେ । କିନ୍ତୁ ଇଏ କ'ଣ ମିସେସ୍ ସ୍ମିଥ୍ ! ନିଜ ଆଖିକୁ ବିଶ୍ୱାସ କରିବା ଭଳି ଦୃଶ୍ୟ ତାହା ନ ଥିଲା ।

ମିସେସ୍ ସ୍ମିଥ୍ ଯେ ତାଙ୍କ ବେଶବାସ ଏତେ ସଂକ୍ଷିପ୍ତ କରି ପାରନ୍ତି, ମୁଁ ନିଜ ଆଖିରେ ଦେଖି ନ ଥିଲେ ବିଶ୍ୱାସ କରି ପାରି ନଥାନ୍ତି ।

ଆଉ ଜର୍ଜ ! ତା'ର ଆଖି ଯୋଡ଼ାକ ମିସେସ୍ ସ୍ମିଥ୍‌ଙ୍କ ଅର୍ଦ୍ଧ ଉନ୍ମୀଳିତ ବକ୍ଷ ଉପରେ ନିବଦ୍ଧ ହୋଇଥିଲ ।

କିନ୍ତୁ ମିସେସ ସ୍ମିଥ୍ ଯେପରି ଷୋଡ଼ଶୀ ଚପଳା । ଆମେ ଯେପରି ତାଙ୍କର ଅନ୍ତରଙ୍ଗ ବନ୍ଧୁଦଳ । ସେହିପରି କଥାବର୍ତ୍ତା ସେ ଆରମ୍ଭ କରିଦେଲେ ।

ଟ୍ରେ' ଉପରେ ସଜା ହୋଇଥିବା ତିନୋଟି ଗ୍ଲାସ୍ ମଧ୍ୟରୁ ଗୋଟିଏ ଜର୍ଜ ଆଡ଼କୁ ବଢ଼ାଇ ଦେଇ କହିଲେ ସରବତ୍ । ଏତେ ରାତିରେ ଆଉ ଚା' କଫିର ବ୍ୟବସ୍ଥା କଲିନାହିଁ ।

ମୁଁ ଦେଖିଲି, ମନ୍ତ୍ରମୁଗ୍ଧ ପରି ଜର୍ଜ ମିସେସ୍ ସ୍ମିଥ୍‌ଙ୍କ ହାତରୁ ଗ୍ଲାସ୍‌ଟି ନେଇ ପିଇବାକୁ ଆରମ୍ଭ କରିଦେଲା ।

ମୁଁ ବି ଗୋଟିଏ ଗ୍ଲାସ ମିସେସସ୍ମିଥ୍‌ଙ୍କ ହାତରୁ ନେଲି ।

ଏକା ନିଃଶ୍ୱାସକେ ସର୍ବତ ଗ୍ଲାସକ ନିଃଶେଷ କରି କହିଲି : ଭାଇ ହୁଏତ ଆସିଗଲାଣି

ମୁଁ ଦେଖି ଆସୁଚି ।

କାହାରି କୌଣସି ଉତ୍ତରକୁ ଅପେକ୍ଷା ନ କରି ମୁଁ ସେଠାରୁ ଉଠି ଚାଲି ଆସିଲି । ମୋ ଦେହଟା ଗୋଟିପଣେ ଥରୁଥିଲା । ଜର୍ଜର ସ୍ପର୍ଶରେ ମୁଁ କିପରି ଆତ୍ମହରା ହୋଇ ପଡ଼ିଥିଲି ।

କିନ୍ତୁ ଭାଇ ସେତେବେଳଯାଏ ଫେରି ନଥିଲା । କ'ଣ ହେଲା ଭାଇର ? କେବେ ତ ସେ ଏତେ ରାତି ଯାଏ ଅଟକେ ନାହିଁ ?

ମୋର ଚିନ୍ତାଧାରା ହଠାତ୍ ଭିନ୍ନ ମୁଖୀ ହୋଇ ଉଠିଲା ।

ଭାଇର କୌଣସି ବିପଦ ଆପଦ ଘଟିଲା ନାହିଁ ତ ?

ମୁଁ ଧୀରେ ଧୀରେ ତଳକୁ ଓହ୍ଲେଇ ଗଲି । ଗ୍ରାଣ୍ଟ ଷ୍ଟ୍ରିଟ୍‌ର ଅଳସ ଦେହ ଯେପରି କ୍ଲାନ୍ତିର ହାଇ ମାରୁଛି ।

ଭାଇଟା ତେବେ ଆଜି ଗଲା କୁଆଡ଼େ ।

ଯେଉଁଦିନ ତା'ର ପାର୍ଟିଥାଏ, ନିମନ୍ତ୍ରଣ ଥାଏ ସେଦିନ ସେ କହି ଯାଇଥାଏ । ଆଜି ହଠାତ୍ ସେ ଅଟକିଲା ବା କେଉଁଠି ?

ପ୍ରାୟ ଅଧଘଣ୍ଟାଏରୁ ଅଧିକ ତଳ ଦୁଆରେ ଅପେକ୍ଷା କଲି । କିନ୍ତୁ ଭାଇ ତ ଆସିଲା ନାହିଁ !! ମନରେ ନାନା ପ୍ରକାର ଦୁର୍ଭାବନା ନେଇ ଉପରକୁ ଉଠିଲି । ଘର ଖୋଲି ବସିଲି କିଛି ସମୟ । କିନ୍ତୁ ଆଉ ପାରିଲି ନାହିଁ । ଗୋଟିକ ପରେ ଗୋଟିଏ ଭାବନାରେ ମନଟା ଶୀତେଇ ଉଠିଲା । ମିସେସ୍ ସ୍ମିଥ୍ ସହିତ ଏ ସମ୍ବନ୍ଧରେ ପରାମର୍ଶ କରି ଗୋଟାଏ କିଛି ବିହିତ କରିବାକୁ ହେବ ।

ମୁଁ ଧୀରେ ଧୀରେ ମିସେସ ସ୍ମିଥ୍‌ଙ୍କ ବେଡ୍ ରୁମ୍‌ରେ ପହଞ୍ଚିଲି କିନ୍ତୁ ସେ କାହାନ୍ତି ? ମୋର ମନେ ପଡ଼ିଲା ଜର୍ଜ କଥା । ସେ ହୁଏତ ଏତେବେଳଯାଏ ଡ୍ରଇଂ ରୁମ୍‌ରେ ବସି ଜର୍ଜ ସହିତ ଗପ କରୁଛନ୍ତି । ମୁଁ ସେଇ ଆଡ଼େ ଆଗେଇ ଗଲି ।

ଡ୍ରଇଂ ରୁମ୍ ଦୁଆରେ ମୋ ପାଦ ଆପଣା ଛାଏଁ ଅଟକି ଗଲା ।

ଘର ଭିତରେ ଅସ୍ପଷ୍ଟ ନୀଳ ଆଲୋକ ।

ଦୁଆରେ ସ୍କ୍ରିନ୍‌ଟଣା ହୋଇଛି ।

ଏସବୁ ସତ୍ତ୍ୱେ ମୋ ମନରେ କୌଣସି ଭାବାନ୍ତର ଦେଖା ଦେଇ ନ ଥିଲା । ମୋ ମନରେ ଭାଇର ଦୁର୍ଭାବନା ଏପରି ଏକ ରୂପ ପରିଗ୍ରହ କରିଥିଲା ଯେ, ମୁଁ ସ୍କ୍ରିନ୍ ଆଡ଼େଇ ଡ୍ରଇଂ ରୁମ୍ ଭିତରେ ପଶିଯିବାକ୍ଷଣି, ସ୍ତବ୍ଧ ହୋଇ ଠିଆ ହୋଇ ଯାଇଥିଲି । ସେମାନଙ୍କୁ ଏପରି ଏକ ଅବସ୍ଥାରେ ଦେଖିବି ବୋଲି ଆଶା କରି ନ ଥିଲି ।

ସେମାନେ ମୋର ଉପସ୍ଥିତି ବୁଝିଥିଲେ କି ନାହିଁ ମୁଁ କହି ପାରିବି ନାହିଁ । କିନ୍ତୁ ଧୀରେ ଧୀରେ ପଛକୁ ପାଦ ଲେଉଟାଇ ମୁଁ ଫେରି ଆସିଥିଲି । ସିଧା ଆମ ଘରେ ପଶି ରୁମ୍‌ର କବାଟ କିଳି ବିଛଣା ଉପରେ ଲୋଟି ପଡ଼ିଥିଲି ।

କିନ୍ତୁ ସେତେବେଳର ପ୍ରଚଣ୍ଡ ଗରମରେ ମଧ୍ୟ ମୋର ସମଗ୍ର ଦେହରେ ଡିସେମ୍ବରର ହାଡ଼ଭଙ୍ଗା ଶୀତର ପ୍ରକୋପ  ଦେଖା ଦେଇଥିଲା ।

ମୁଁ ଆମର ରେଜେଇ, କମ୍ବଳ,ସବୁଯାକ ଘୋଡ଼େଇ ହୋଇ ମଧ୍ୟ ଶୀତର ପ୍ରକୋପ କମେଇ ପାରି ନ ଥିଲି ।

ଆରଦିନ ସକାଳେ ମିସେସ ସ୍ମିଥ୍ ନିଜେ ଆସି ଆମ ଦୁଆରେ ନକ୍ କରି ମୋର ନିଦ୍ରାଭଙ୍ଗ କରାଇଲେ ।

ମୁଁ ସ୍ୱପ୍ନରୁ ଉଠିଲା ପରି ମିସେସ ସ୍ମିଥଙ୍କ ମୁହଁକୁ ବହୁତ ବେଳଯାଏ ଅନାଇ ରହିଥିଲି । ସେ ବୋଧହୁଏ ମୋର ଏପରି ଚାହାଣିରେ ସନ୍ଦେହ ପ୍ରକାଶ କରି ନିଜ ମୁହଁରେ ଥରେ ହାତ ବୁଲାଇ ନେଇ, ଆମ ଘରର ଆଇନା ସାମନାରେ ଯାଇ ଠିଆ ହୋଇଥିଲେ । ତା'ପରେ ନିଜ ମୁହଁରୁ କୌଣସି ଅସଂଗତି ଖୋଜି ନ ପାଇ ମୋତେ ପ୍ରଶ୍ନ କଲେ,

: ରାଜେନ୍ କ'ଣ ସକାଳୁ ଚାଲି ଗଲାଣି ?

ଭାଇର ନାଁ ଶୁଣି ମୁଁ ଟିକିଏ ପ୍ରକୃତିସ୍ଥ ହୋଇ ଉତ୍ତର ଦେଲି : ଭାଇ କାଲି ରାତିରେ ଫେରି ନାହିଁ ।

ମିସେସ ସ୍ମିଥ୍‌ଙ୍କ ମୁହଁରେ ବିସ୍ମୟର ସାମାନ୍ୟ ଆଭାସ । ସେ ପୁଣି ପଚାରିଲେ : ରାଜେନ୍ କ'ଣ ଫେରିବ ନାହିଁ ବୋଲି କହି ଯାଇଥିଲା ?

: ନା, ମୋତେ କିଛି କହି ନଥିଲା ।

: ବାଃ, ବେଶ୍ ଭଉଣୀ ତ ! ମୋତେ ବି ଖବରଟା ନାହିଁ ? ଆଜିକାଲି ଦିନକାଳ ଯାହା ।

ମୋ ଛାତି ଭିତରଟା ପୁଣି ଥରେ କମ୍ପି ଉଠିଲା ।

ମିସେସ ସ୍ମିଥ୍ ମୋତେ ନୀରବ ଦେଖି ବିରକ୍ତି ମିଶା ସ୍ୱରରେ କହିଲେ : ଆଜିକାଲିର ପିଲାମାନେ କାହା କଥାରେ ନା ବୋଲରେ ଅଛନ୍ତି । ଯେସନ ଭାଇ, ତେସନ ଭଉଣୀ । ରାଜେନର ଅଫିସ ଠିକଣାଟା ଦେଲୁ ।

ମୁଁ ମହା ସମସ୍ୟାରେ ପଡ଼ିଗଲି । ଭାଇର ନୂଆ ଅଫିସ୍ ଠିକଣା ମୋତେ ଜଣା ନ ଥିଲା । ମୁଁ ଖୁବ୍ ଧୀରେ କହିଲି : ମୋତେ ଜଣାନାହିଁ ।

ମିସେସ ସ୍ମିଥ୍ ଏଥର ଗର୍ଜି ଉଠିଲେ । କହିଲେ: ଭାଇ କୋଉଠି କାମ କରେ ଏତିକି ବି ଭଉଣୀକୁ ଜଣା ନାହିଁ । ଚମତ୍କାର ।

ମିସେସ ସ୍ମିଥ୍ ଜୋତା ଠକ୍ ଠକ୍ କରି କ୍ଷିପ୍ର ଗତିରେ ଆମ ଘରୁ ବାହାରି ଗଲେ । ମୁଁ ନିଃସହାୟଙ୍କ ପରି ତାଙ୍କ ଯିବା ପଥକୁ ଚାହିଁ କେବଳ ଭାଇର ଅମଂଗଳ କଥା ଗୁଡ଼ା ଚିନ୍ତା କରି ଯାଉଥିଲି ।

ପୁଣି କିଛି ସମୟ ପରେ ମିସେସ ସ୍ମିଥ୍ ବେଶ ପୋଷାକ ପିନ୍ଧି ବାହାରି ଆସିଲେ ।

ମୋ ଆଡ଼େ କିପରି ଏକ ତୀକ୍ଷ୍ଣ ଚାହାଣି ବୁଲେଇ କହିଲେ : ତମେମାନେ କେହି ମୋତେ ମୂହୂର୍ତ୍ତେ ଶାନ୍ତିରେ ନିଃଶ୍ୱାସ ମାରିବାକୁ ଦେବନାହିଁ । ମୁଁ ରାଜେନକୁ ଖୋଜିବାକୁ ବାହାରିଲି । ତୁ ଘରେ ରହିବୁ । କାଳେ କେଉଁଠୁ କିଛି ସମ୍ବାଦ ଆସିପାରେ ।

ମିସେସ୍ ସ୍ମିଥ୍‌ଙ୍କ ପାଖରେ କୃତଜ୍ଞତାରେ ମୋର ମୁଣ୍ଡ ନଇଁ ପଡ଼ିଲା ।

ମୁଁ କିନ୍ତୁ ଆଗକୁ କି ପଛକୁ ପାଦ ଲେଉଟାଇ ପାରୁ ନଥିଲି । ମୋର ସମସ୍ତ ଚଳତ୍‌ଶକ୍ତି ଲୋପ ପାଇ ଯାଇଥିଲା ।

ହଠାତ୍ ତଳେ ଯେପରି କେହି ମୋର ନାମ ଧରି ଖୋଜୁ ଥିବାର ମୁଁ ଶୁଣି ପାରିଲି । ତରତର ହୋଇ ଓହ୍ଲେଇ ଯାଇ ଦେଖିଲି, ହଁ ମୋତେ ହିଁ ସେ ଖୋଜୁଛନ୍ତି । ଜଣେ ପ୍ରିୟ ଦର୍ଶନ ଯୁବକ । ଚାରି ଆଖି ଏକାଠି ମିଶିବାକ୍ଷଣି, ସେ କହିଲେ ମୋ ନାଁ ରଞ୍ଜନ । ସକାଳୁ ସକାଳୁ ଆପଣଙ୍କୁ ଗୋଟାଏ ଦୁଃସମ୍ବାଦ ଶୁଣାଇବାକୁ ଆସିଛି । ଆପଣଙ୍କ ଭାଇ ହସ୍‌ପିଟାଲରୁ ମୋତେ ପଠାଇଛନ୍ତି ।

ମୋ ମୁହଁରୁ ପଦଟିଏ କଥା ବାହାରିଲା ନାହିଁ । ମୁଁ କେବଳ ସ୍ତବ୍ଧ ହୋଇ ଠିଆ ହୋଇଥିଲି ଏବଂ ମୂହୂର୍ତ୍ତକ୍ ପରେ ମୋ ପାଦ ଯୋଡ଼ାକ ଏପରି ଅବଶ ହୋଇ ପଡ଼ଲା ଯେ, ରଞ୍ଜନ ମୋତେ ଧରି ନ ପକାଇଥିଲେ ମୁଁ ହୁଏତ ଶିଡ଼ିର ପାହାଚରୁ ତଳକୁ ଗଡ଼ି ପଡ଼ି ଥାଆନ୍ତି ।

ରଞ୍ଜନ ମୋତେ ସମ୍ଭାଳି ନେଇ ପୁଣି କହିଲା : ବିଶେଷ ଚିନ୍ତାର କିଛି କାରଣ ନାହିଁ । ମୁଣ୍ଡରେ ସାମାନ୍ୟ ଆଘାତ ଲାଗିଛି ।

ରଞ୍ଜନ କାନ୍ଧରେ ଆଶ୍ରା କରି ମୁଁ ଦୋତାଲା ଉପରକୁ ଉଠିଥିଲି । ଅପରିଚିତ ସେହି ଯୁବକଟି ସେଦିନ ମୋର ବହୁ ଯୁଗର ପରିଚିତ ବଂଧୁ ପରି ମନେ ହୋଇଥିଲା । ସେ ଯେତେବେଳେ ପ୍ରକାଶ କଲା, କାଲି ରାତି ଦଶଟାବେଳେ ଏକ ଅନ୍ଧାରୁଆ ଜାଗାରେ ହଠାତ୍ ହେଡ୍ ଲାଇଟ୍ ଜଳାଇ ମୋର ଭାଇକୁ ଆବିଷ୍କାର କଲା, ରକ୍ତାକ୍ତ କଳେବରରେ ଅଚେତ ହୋଇ ପଡ଼ିଛି ।

ରଞ୍ଜନ ପ୍ରଥମେ ଭାବିଥିଲା ଗାଡ଼ି ଚଳେଇ ନେଇ ଆପଣା ବାଟରେ ସେ ଚାଲିଯିବ । କିନ୍ତୁ ପାରିଲା ନାହିଁ । ଗାଡ଼ି ଅଟକାଇ ଦେଖିଲା ଲୋକଟାର ବୋଧହୁଏ ଆକ୍‌ସିଡେଣ୍ଟ ହୋଇଛି । ନିଃଶ୍ୱାସ ଓ ନାଡ଼ିର ଗତି ପରକ୍ଷା କରି, ଅବହେଳାରେ ଗୋଟିଏ ପ୍ରାଣ ନଷ୍ଟ କରିବାକୁ ନଦେଇ, ରଞ୍ଜନ ଭାଇକୁ ଗାଡ଼ିରେ ଉଠାଇ ନେଇ ହସ୍‌ପିଟାଲରେ ଭର୍ତ୍ତି କଲା । ସମଗ୍ର ରାତି ସେ ଉଜାଗରରେ କଟାଇ ସକାଳୁ ଭାଇର ହୋସ୍ ହେବାରୁ, ଭାଇ ରଞ୍ଜନକୁ ମୋ ପାଖକୁ ପଠାଇଥିଲା ଖବରଟା ଦେବାପାଇଁ ।

ମୋର ସେହି ସର୍ବନାଶୀ ସଂବାଦରେ ବି ମୁଁ ସେଦିନ କାନ୍ଦି ପାରି ନଥିଲି ।

ରଞ୍ଜନ ମୋତେ ସାନ୍ତ୍ୱନା ଦେଇ କହିଥିଲା, ରାଜେନ୍ ପାଇଁ ଆପଣ ବିଶେଷ ଚିନ୍ତା ନ କରିବା ହିଁ ଭଲ । ଡାକ୍ତରଙ୍କ ମତ ଖୁବ୍ ଗୋଟାଏ ଖରାପ ନୁହେଁ । ବହୁ ରକ୍ତ ସ୍ରାବ ଫଳରେ ଦେହର ଯାହା କ୍ଷତି ଘଟିଛି । ମୁଣ୍ଡରେ ଷ୍ଟିଚ୍ କରି ଦେଇଛନ୍ତି । ବ୍ୟାଣ୍ଡେଜ୍ ବାନ୍ଧି ଦେଇଛନ୍ତି । ଛଅ ସାତ ଦିନ ପରେ ସେ ସୁସ୍ଥ ହୋଇ ଫେରି ଆସିବ ।

ମୁଁ ରଞ୍ଜନକୁ ସେଦିନ ଚା' କପେ ବି ଖାଇବାକୁ ଅନୁରୋଧ କରି ପାରି ନଥିଲି ।

ରଞ୍ଜନ କିନ୍ତୁ ଗଲାବେଳକୁ ମୋତେ କହି ଯାଇଥିଲା : ଆପଣ ଚାରିଟା ବେଳକୁ

ପ୍ରସ୍ତୁତ ହୋଇଥିବେ, ମୁଁ ରାଜେନ ପାଖକୁ ନେଇଯିବି । ଏଇକ୍ଷିଣା ଯାଇ କିଛି ଲାଭ ହେବନାହିଁ । ଭିତରକୁ ଛାଡ଼ିବେ ନାହିଁ ।

ତା'ପରେ ରଞ୍ଜନ ଚାଲି ଯାଇଥିଲା । ମୁଁ ତା'ପାଖରେ କୃତଜ୍ଞତା ନ ଜଣାଇ ପାରି ନଥିଲି ।

ରଞ୍ଜନର ଆଚାର ବ୍ୟବହାରରେ ମୁଁ ଏତେ ମୁଗ୍ଧ ହୋଇପଡ଼ିଥିଲି ଯେ, ମୋର ମନେ ହେଉଥିଲା, ରଞ୍ଜନ ଯାହା କହିଗଲା ତା' କଥାରେ ଟିକିଏ ହେଲେ ଅତିରଞ୍ଜନ ନାହିଁ । ଭାଇ ପାଇଁ ମନଟାକୁ ଧୀରେ ଧୀରେ ମୁଁ ଦୃଢ଼ କରି ଉଠୁଥିଲି ।

ବେଳ ଅନେକ ହୋଇ ଯାଇଥିଲା । ସେତେବେଳଯାଏ ମୁଁ ମୋର ସକାଳର ନିତ୍ୟକର୍ମ ବି ଶେଷ କରି ନ ଥିଲି ।

ଧୀରେ ଧୀରେ ଉଠି ବାଥ୍‌ରୁମ୍‌ରେ ପଶି, ଟୁଥ୍‌ପେଷ୍ଟ ବ୍ରାସ୍‌ରେ ଲଗାଇ ଦାନ୍ତ ଘଷିବାକୁ ଆରମ୍ଭ କରିଛି, ଦୁଆରେ କିଏ ନକ୍ କରିବାର ଶୁଣିଲି ।

ବୋଧହୁଏ ମିସେସ୍ ସ୍ମିଥ୍ ଫେରିଆସିଥିଲେ ।

ମୁଁ ଛୁଟି ଆସି ଭାଇର ସମ୍ବାଦଟା ତାଙ୍କୁ ଜଣାଇବା ପାଇଁ ଦରଜା ଖୋଲିବା କ୍ଷଣି ଦେଖିଲି ଜଣେ ପୋଲିସ ଅଫିସର, ଦୁଇଜଣ କନେଷ୍ଟବଳ ଏବଂ ସେମାନଙ୍କ ପଛରେ ପ୍ରତିବେଶୀ ଦଳ ।

ହଠାତ୍ କିଛି ମୁଁ ବୁଝି ପାରିଲି ନାହିଁ ।

ପୋଲିସ୍ ଅଫିସରଟି ମୋତେ ଅତି ବିନୟ ସହକାରେ କହିଲେ, : ଆମେ ରାଜେନର ଘର ତଲାସ କରିବାକୁ ଆସିଛୁ । ଆପଣ ବୋଧହୁଏ ତାଙ୍କର ଭଉଣୀ । ଆଶା କରୁଛୁ ଆପଣ ଆମ କାର୍ଯ୍ୟରେ କୌଣସି ବାଧା ସୃଷ୍ଟି କରିବେ ନାହିଁ ।

ପ୍ରକୃତରେ ସେଦିନ ମୁଁ ଜଡ଼ ପାଲଟି ଯାଇଥିଲି । ଦରଜା ପାଖରୁ ଦୂରେଇ ଯାଇ ଆମର ଭଙ୍ଗା ଇଜି ଚେୟାର ଉପରେ କୌଣସି ପ୍ରକାର ଦେହ ଭାର ନଦିଦେଇ ନିଜକୁ ରକ୍ଷା କରିଥିଲି ।

ମୁଁ ଯେତେବେଳେ ଆଖି ଖୋଲିଲି, ସେତେବେଳେ ମିସେସ ସ୍ମିଥ୍ ମୋ ପାଖରେ ବସି ମୁଣ୍ଡ ସାଉଁଳେଇ ଦେଉଥିଲେ । ଘରର ଆସବାସପତ୍ର ଗୁଡ଼ାକ ଇତସ୍ତତଃ ବିକ୍ଷିପ୍ତ ହୋଇ ପଡ଼ିଥିଲା ।

ମିସେସ୍ ସ୍ମିଥ୍‌ଙ୍କୁ ଦେଖି ମୁଁ ତାଙ୍କ କାନ୍ଧ ଉପରେ ମୁଣ୍ଡ ରଖି ଭୋ ଭୋ ହୋଇ କାନ୍ଦି ଉଠିଥିଲି ।

ସେ ମୋତେ ତାଙ୍କର ନିଜର ସନ୍ତାନ ପରି ସାନ୍ତ୍ୱନା ଦେଇ ଖୁଆଇ ପିଆଇ ଶାନ୍ତ କରିଥିଲେ ।

ମିସେସ୍ ସ୍ମିଥ୍‌ଙ୍କର ଏକ ପୂର୍ବ ନିର୍ଦ୍ଧାରିତ ପ୍ରୋଗ୍ରାମ ଥିବାରୁ ସେ ତିନିଟାବେଳେ ବାହାରି ଚାଲି ଯାଇଥିଲେ ଏବଂ କହି ଯାଇଥିଲେ ଫେରିଲା ବେଳକୁ ସେ ରାଜେନ୍‌କୁ ମେଡ଼ିକାଲରେ ଦେଖି ଆସିବେ ।

ମୁଁ ଉଦ୍‌ବିଗ୍ନ ହୋଇ ରଞ୍ଜନର ଆସିବା ବାଟକୁ ଅନାଇ ବସିଥିଲି । ରଞ୍ଜନ ଠିକ୍ ସମୟରେ ଆସିଥିଲା ।

ମୁଁ ଗାଡ଼ିର ହର୍ଣ୍ଣ ଶୁଣିବା ମାତ୍ରକେ ତଳକୁ ଓହ୍ଲାଇ ଯାଇଥିଲି ।

ରଞ୍ଜନ ମୋତେ ମେଡ଼ିକାଲ ହତାରେ ଛାଡ଼ିଦେଇ ୱାର୍ଡ଼ ଓ ବେଡ଼ ନମ୍ବର କହିଦେଇ ଚାଲି ଯାଇଥିଲା । ଘଣ୍ଟାକ ପରେ ଫେରି ଆସି ପୁଣି ମୋତେ ଘରେ ପହଞ୍ଚାଇବାର ପ୍ରତିଶ୍ରୁତି ଦେଇ ଯାଇଥିଲା ।

ମୁଁ ଭାଇକୁ ଦେଖି ପ୍ରଥମେ ଚିହ୍ନି ପାରିଲି ନାହିଁ ।

ସେ ମୋତେ ହାତଠାରି ପାଖକୁ ଡାକିଲା ।

ମୋ ଆଖିରୁ ଦୁଇଟୋପା ଲୁହ ଗଡ଼ି ପଡ଼ିଲା ।

ଭାଇ ମୋ ମୁଣ୍ଡରେ ହାତ ଥାପି ମୋତେ ସାନ୍ତ୍ୱନା ଦେଲା ।

ଅଚାନକ ଗୋଟାଏ ଗାଡ଼ିର ଧକ୍‌କା ଲାଗି ତା'ର ଏପରି ଅବସ୍ଥା ହୋଇଛି ବୋଲି କହିଲା ।

କିନ୍ତୁ ଆମ ଘରକୁ କାହିଁକି ପୋଲିସ୍ ଯାଇଥିଲେ, ସେ କଥା ଭାଇକୁ ପଚାରିବା ପାଇଁ ମୁଁ ଭରସା କରି ପାରୁ ନଥିଲି ।

କିଛି ସମୟ ପରେ ଭାଇ ମୋତେ ହାତଠାରି ତା'ର ଆହୁରି ପାଖକୁ ଡାକିଲା । ଖୁବ୍ ଧୀରେ ଧୀରେ ମୋ କାନ ପାଖରେ ଜଣକ ନାଁ ଏବଂ ଗୋଟିଏ ଠିକଣା କହିଲା । ତା'ପରେ କେଉଁଠୁ ଗୋଟିଏ ଜଉମୁଦା ଖାମ ବାହାର କରି ମୋ ହାତକୁ ବଢ଼ାଇ ଦେଇ କହିଲା, : ଏଇ ଖାମ୍‌ଟି ଟିକିଏ ସେଇଠି ପହଞ୍ଚାଇ ଦେବୁ । ଖୁବ୍ ଦରକାରୀ ଖାମ । ସାବଧାନରେ ରଖ ।

ଖାମଟି ହାତରେ ଧରି ଥରେ ମୁଁ ଦେଖିଲି । ଆକାରରେ ଖୁବ୍ ଛୋଟ । ଭିତରେ ମଧ୍ୟ ଖଣ୍ଡେ କାଗଜ ଛଡ଼ା ଅନ୍ୟ କିଛି ଥିଲା ପରି ମନେ ହେଉ ନଥିଲା । ସେଇଟିକୁ ବ୍ଲାଉଜ୍ ଭିତରେ ପୂରାଇ ଦେଇ ପୁଣି ଭାଇ ଆଡ଼କୁ ଚାହିଁଲି ।

ସେ ପୁଣି ମୋତେ ସାବଧାନ କରାଇ ଦେଇ କହିଲା : ଖୁବ୍ ସାବଧାନ । ଅନ୍ୟ କାହାରି ହାତରେ ଯେପରି ଚିଠିଟା ନ ପଡ଼େ । ସାର୍ ସର୍ବାଧିକାରୀ ଖୁବ୍ ବୟସ୍କ ଲୋକ । ମୁଣ୍ଡବାଳ ଚନ୍ଦା ହୋଇ ଯାଇଛି । ଦେଖିଲେ ଏବଂ ପରିଚୟ ଜାଣିଲେ ଖୁବ୍ ଆଦର କରିବେ । କିଛି ଟଙ୍କା ବି ତୋତେ ଦେବେ । ତୁ କିଛି ପ୍ରତିବାଦ ନ କରି ସେ ଯାହା କହିବେ, କରିଯିବୁ ।

ଟଙ୍କା ନା ଶୁଣିବାକ୍ଷଣି ମୋ ସମଗ୍ର ଦେହରେ କିପରି ତଡ଼ିତ୍ ପ୍ରବାହ ଖେଳିଗଲା । ମୁଁ ଭାଇର କରୁଣ ପରିସ୍ଥିତି ଆଡ଼େ ଚାହିଁ ନୀରବ ରହିଲି ।

ଭାଇ ମୋତେ ପୁଣି ପାଖକୁ ଡାକି କହିଲା : ମୋ ପାଇଁ ତୁ ମୋଟେ ଭାବିବୁ ନାହିଁ । ମୁଁ ହୁଏତ ପାଞ୍ଚ ସାତ ଦିନ ପରେ ଘରକୁ ଫେରିଯିବି । ମଣିଷ ଜୀବନରେ ବଡ଼ ହେବାର ସୁଯୋଗ ହୁଏତ ଥରେ ଅଧେ ଆସିଥାଏ । ଭାଗ୍ୟ ଲକ୍ଷ୍ମୀଙ୍କୁ ସେତେବେଳେ ଜାବୁଡ଼ି ନ ଧରିଲେ, ସେ ଆଉ ଧରାଛୁଆଁ ଦିଅନ୍ତି ନାହିଁ । ମୋର ଇଚ୍ଛା ନ ଥିଲା ତତେ ଏସବୁ କଥା କହି, ତୋ କଅଁଳ ମନ ଉପରେ ଗୋଟାଏ ଚିନ୍ତାର ଗାର ଟାଣିବା ପାଇଁ । କିନ୍ତୁ ଉପାୟ ନାହିଁ । ହଠାତ୍ ମୋର ଏଇ ଆକସ୍ମିକ ଦୁର୍ଘଟଣା ଆମର ଭବିଷ୍ୟତ ଛାରଖାର କରି ଦେବାକୁ ଯାଉଛି । ଆଜି ମୋର ଏକମାତ୍ର ଆଶା ଭରସା ତୁଇ । ତୁ ଯଦି ମୋ ସହିତ କମର ଭିଡ଼ି ଆଗେଇ ନ ଆସୁ, ତା'ହେଲେ ପୂତିଗନ୍ଧମୟ ନରକ-ବାସ ଆମ ଜୀବନରେ ଲେଖା ହୋଇ ରହିବ ।

ଭାଇର ଏଇ ମୁହୂର୍ତ୍ତରେ ଏପରି ଉତ୍ତେଜିତ ହେବା ଉଚିତ୍ ହେବ ନାହିଁ । ସେଥିପାଇଁ ମୁଁ ତାକୁ ନିରସ୍ତ କରିବା ପାଇଁ କହିଲି : ତମେ ବ୍ୟସ୍ତ ହେଉଛ କାହିଁକି ? ମୁଁ ତ ଦାୟିତ୍ୱ ନେଲି । ଚିଠିଟା ନିଶ୍ଚୟ ସାର୍ ସର୍ବାଧିକାରୀଙ୍କ ଘରେ ପହଞ୍ଚାଇ ଦେବି ।

ଭାଇ ପୁଣି ମୋତେ କହିଲା : କିନ୍ତୁ ଆଉ ଗୋଟାଏ କଥା । ଏ ନାଁ'ଟା ଓ ଠିକଣାଟା ଚିଠି ପହଞ୍ଚାଇ ସାରିବା ପରେ ସଂପୂର୍ଣ୍ଣ ରୂପେ ଭୁଲି ଯିବାକୁ ହେବ । ଖାଲି ସେତିକି ନୁହେଁ, ତୋର କୌଣସି ଅତି ଆତ୍ମୀୟ ପାଖରେ ବି ଭୁଲ୍‌ରେ ସେ ନାଁଟା ପ୍ରକାଶ କରି ପାରିବୁ ନାହିଁ । ସାର୍ ସର୍ବାଧିକାରୀ ସହରର ଏକ ଅତି ମାନ୍ୟଗଣ୍ୟ ଲୋକ । ସମାଜ ସେବାଠାରୁ ଆରମ୍ଭ କରି ଲୋକ ସଭାଯାଏ ସବୁଆଡ଼େ ତାଙ୍କର ସୁନାମ ଅଛି । ଯେପରି ତାଙ୍କର ସେହି ସୁନାମରେ ଆଞ୍ଚ୍ ଆସିବା ଭଳି କୌଣସି କାମ ନ ହୁଏ, ସେଥିପ୍ରତି ଧ୍ୟାନ ଦେବାକୁ ହେବ ।

ମୁଁ ଭାଇଠାରୁ ନୀରବରେ ସବୁକଥା ଶୁଣିସାରି, ଖୁବ୍ ଗୋଟାଏ ସନ୍ତୋଷ ଲାଭ କରିପାରିଲି ନାହିଁ । ଭାଇ କଥା ଗୁଡ଼ିକ ଯେ ଇଙ୍ଗିତପୂର୍ଣ୍ଣ ଏବଂ କାର୍ଯ୍ୟଟା ଯେ ବିପଦସଙ୍କୁଳ ସେ କଥା ମୁଁ ଅଳ୍ପ ଅଳ୍ପ ବୁଝି ପାରିଥିଲେ ମଧ୍ୟ, ଭାଇର ଏପରି ଅବସ୍ଥାରେ ତା' କଥାର ପ୍ରତିବାଦ କରିବା ପାଇଁ ମୋ ମନରେ ସାହସ ନ ଥିଲା ।

ଭାଇ ମୋତେ କହିଲା  ତୁ ଚାଲିଯା । ଆଜି ସନ୍ଧ୍ୟା ଛ'ଟା ଭିତରେ ତାଙ୍କ ପାଖରେ ଏ ଚିଠିଟା ପହଞ୍ଚିବା ଏକାନ୍ତ ଆବଶ୍ୟକ । ଏ ଦୁନିଆରେ ତୋ'ଛଡ଼ା ମୋର ଆପଣାର ଆଉ ବିଶ୍ୱାସୀ ଲୋକ କିଏ ଅଛି ?

ଭାଇ ମନର ବିବ୍ରତ ଭାବ ଲକ୍ଷ୍ୟ କରି ମୁଁ ବାଧ୍ୟ ହୋଇ ଉଠିଲି ।

ଭାଇ ମୋତେ ପାଖକୁ ଡାକି କାନ ପାଖରେ ନାମ ଓ ଠିକଣାଟା ଆଉ ଥରେ କହି ଦେଲା ।

ମୋ ମନ ଭିତରଟା କିପରି ଏକ ଉତ୍ତେଜନାରେ ଭରି ଯାଇଥିଲା ।

ମୁଁ ବାଧ୍ୟ ହୋଇ ଧୀରେ ଧୀରେ ବାହାରି ଆସିଲି । ଭାଇର ଆକୁଳ ଅନୁରୋଧ ରକ୍ଷା କରିବା ମୋର ପ୍ରଥମ କର୍ତ୍ତବ୍ୟ ବୋଲି ମନ ସ୍ଥିର କରିନେଲି ।

ଚିଠିଟିଏ ନେଇ ଜଣେ ଭଦ୍ରଲୋକ ପାଖରେ ପହଞ୍ଚାଇ ଆସିବା ମୂଳରେ ବିଶେଷ କୌଣସି ବିପଦର ସୂଚନା ମୁଁ ପାଇଲି ନାହିଁ ।

ତଥାପି ପାଦ ଯୋଡ଼ିକ ମୋର ଭୟରେ ଥରୁଥିଲା ।

ମୋତେ ଭବାନୀପୁର ଯିବାକୁ ହେବ। ଆଜି କାହିଁକି ଟ୍ୟାକ୍‌ସିଟା ମୋତେ ନିରାପଦ ମନେ ହେଲା ନାହିଁ ।

ମୋ ମନଟା ଆଶ୍ଚର୍ଯ୍ୟ ରୂପେ କେତେଗୁଡ଼ାଏ ଦୁର୍ଭାବନାରେ ଭରି ଉଠିଥିଲା ।

ଶେଷରେ ମୁଁ ଯାଇ ଗୋଟାଏ ବସ୍‌ରେ ଉଠି ବସିଲି ।

ସାର୍ ସର୍ବାଧିକାରୀଙ୍କ ଘର ଖୋଜି ବାହାର କରିବାକୁ ମୋତେ ବିଶେଷ କଷ୍ଟ ସ୍ୱୀକାର କରିବାକୁ ପଡ଼ିଲା ନାହିଁ । ମୁଁ ଦରଜାରେ ପହଞ୍ଚିବା କ୍ଷଣି ଗୋଟିଏ ବେହେରା ମୋତେ ଅଭ୍ୟର୍ଥନା ଜଣାଇ ଭିତରକୁ ନେଇଗଲା ।

ମୋତେ ନେଇ ଯେଉଁଠି ଛାଡ଼ିଲା ଏବଂ ଯାହାଙ୍କ ସହିତ ମୋର ପ୍ରଥମ ସାକ୍ଷାତ ହେଲା, ସେ ଯେ ସାର୍ ସର୍ବାଧିକାରୀ, ଦେଖିବା ମାତ୍ରେ ଚିହ୍ନି ପାରିଲି । ଭାଇର ବର୍ଣ୍ଣନା

ସହିତ ଭଦ୍ରଲୋକଙ୍କ ଚେହେରା ବହୁତ ମିଳି ଯାଉଥିଲା ।

ସାର୍ ସର୍ବାଧିକାରୀ ତାଙ୍କ ଲାଇବ୍ରେରୀରେ ବସି ପୁସ୍ତକ ଗଦା ଭିତରେ ବୁଡ଼ି ଯାଇଥିଲେ । ମୋର ଉପସ୍ଥିତି ସମ୍ବନ୍ଧରେ ସଚେତନ ହୋଇ ଯେତେବେଳେ ମୁହଁ ଉଠାଇ ମୋ ଆଡ଼କୁ ଚାହିଁଲେ ତାଙ୍କ ପ୍ରଶାନ୍ତ ମୁଖମଣ୍ଡଳଟି ଦେଖି, ତାଙ୍କ ପ୍ରତି ମୋ ଅନ୍ତରରେ ଏକ ସ୍ୱତଃଶ୍ରଦ୍ଧା ଜାତହେଲା । ମୁଁ ବିନମ୍ର ପ୍ରଣାମ କଲି । ସେ ମୋତେ ହାତ ଠାରି ପାଖର ଗୋଟିଏ ଚେୟାରରେ ବସିବାକୁ କହିଲେ ।

ମୋ ଆଡ଼କୁ ଥରେ ଚାହିଁ, କୌଣସି ପ୍ରଶ୍ନ ନ କରି ପୁଣି ଖୋଲିଥିବା ବହିର ପୃଷ୍ଠାଟି ଉପରେ ଦୃଷ୍ଟି ନିବଦ୍ଧ କଲେ ।

ମୁଁ କହିଲି : ମୋ ନାଁ ରୀଟା । ମୋ ଭାଇ ନାଁ ରାଜେନ୍ । ସେ ମୋତେ ଆପଣଙ୍କ ପାଖକୁ ପଠାଇଛି । କ୍ଷମା କରିବେ, ଆପଣଙ୍କ ନାଁଟା ବୋଧହୁଏ ସାର୍ ସର୍ବାଧିକାରୀ ।

ମୋ ମୁହଁରୁ ଏତେ ଗୁଡ଼ାଏ କଥା ଶୁଣିବା ପରେ ସାର୍ ସର୍ବାଧିକାରୀ ସେହି ମୋଟା ବହିଟି ବନ୍ଦ କରି ମୋ ଆଡ଼କୁ ଚାହିଁ କହିଲେ : ତମେ ଠିକ୍ ଲୋକ ପାଖରେ ପହଞ୍ଚିଛ । ରାଜେନ୍ ମୋର ଅତ୍ୟନ୍ତ ସ୍ନେହ ଭାଜନ । ତୁମେ ରାଜେନ୍‌ର ଭଉଣୀ ଜାଣି ଖୁବ୍ ଖୁସି ହେଲି ।

ସାର୍ ସର୍ବାଧିକାରୀଙ୍କ ମୁହଁରେ କୌଣସି ପ୍ରକାର ପରିବର୍ତ୍ତନ ମୁଁ ଲକ୍ଷ୍ୟ କଲି ନାହିଁ । ସେ ପୁଣି କହିଲେ : ରାଜେନ୍ ଗତ ରାତିରେ ଆକ୍‌ସିଡେଣ୍ଟ ହେବାର ଖବର ଶୁଣିଛି । ତେବେ ଉଦ୍‌ବେଗର କୌଣସି କାରଣ ନାହିଁ ।

ସାର୍ ସର୍ବାଧିକାରୀ ଏଥର ମୋ ମୁହଁ ଉପରେ ଏକ ପ୍ରସନ୍ନ ଚାହାଣି● ବୁଲେଇ ନେଇ ପୁଣି ବହିଟିକୁ ଖୋଲିବାକୁ ଆରମ୍ଭ କଲେ ।

ମୁଁ ଥରେ ଚାରିଆଡ଼କୁ ଚାହିଁ, ଅତି ସାବଧାନ ସହକାରେ ବ୍ଲାଉଜ୍ ଭିତରୁ ଖାମ୍ ବାହାର କରି କହିଲି : ଭାଇ ଏଇଟିକୁ ଆପଣଙ୍କ ପାଖକୁ ପଠାଇଛନ୍ତି ।

ସାର୍ ସର୍ବାଧିକାରୀଙ୍କର ଖାମ୍‌ଟି ଉପରେ ଆଖି ପଡ଼ିବା ମାତ୍ରେ, ମୁହଁରେ ସାମାନ୍ୟ ଚଞ୍ଚଳତା ଲକ୍ଷ୍ୟ କରିଥିଲି । କିନ୍ତୁ ତା'ପରେ ସେ ବି ସହଜ ଭାବରେ ଚିଠିଟି ମୋ ହାତରୁ ନେଇ କହିଲେ : ରାଜେନ୍ ଖୁବ୍ ଭଲ ପିଲା । ବିଶ୍ୱାସୀ । ଭବିଷ୍ୟତରେ ସେ ଜଣେ ବଡ଼ ମଣିଷ ହେବ ।

ମୋ ଠାରୁ ଖାମ୍‌ଟି ନେଇ ସାର୍ ସର୍ବାଧିକାରୀ ବହି ଭିତରେ ସେଟିକୁ ଭରି ଦେଇ କହିଲେ : ଆଉ କିଛି କାମ ଅଛି ?

: ନା, ମୁଁ ଉଠି ଠିଆ ହେଲି ।

ସାର୍ ସର୍ବାଧିକାରୀ ତାଙ୍କ ଡ୍ରୟାର ଟାଣି, ପାଞ୍ଚ ଟଙ୍କା ନୋଟ୍‌ର ଗୋଟିଏ ସଂପୂର୍ଣ୍ଣ ବଣ୍ଡିଲ୍ ମୋ ହାତକୁ ବଢ଼ାଇ ଦେଇ କହିଲେ,

: ନିଅ ।

ପ୍ରଥମେ ମୁଁ ନୋଟ୍ ବଣ୍ଡିଲ୍‌ଟାକୁ ଅବିଶ୍ୱାସ୍ୟ ଦୃଷ୍ଟିରେ ଚାହିଁ, ଦୁଇପାଦ ପଛକୁ ଘୁଞ୍ଚି ଯାଇଥିଲି ।

ସାର୍ ସର୍ବାଧିକାରୀ ନିଜେ ଠିଆ ହୋଇ ପଡ଼ି ମୋର ଭ୍ୟାନିଟ୍ ବ୍ୟାଗ୍‌ଟି ଖୋଲି,

ତହିଁରେ ନୋଟ୍ ବଣ୍ଡିଲଟି ଭରି ଦେଇ ମୋ ଗାଲରେ ସ୍ନେହର ଗୋଟିଏ ଛୋଟ ଚାପୁଡ଼ା ମାରି କହିଲେ : ଆଇ ଉଇସ୍ ଇଓର ଗୁଡ୍ ଲକ୍ ।

ତା'ପରେ ପୁଣି ସେ ବହି ପଢ଼ାରେ ମନଯୋଗ ଦେବାକୁ ପ୍ରସ୍ତୁତ ହେଲେ ।

ମୁଁ ଯେଉଁ ଚିଠିଟି ଆଣିଥିଲି, ତାହା ସେହିପରି ଅବହେଳିତ ବହି ଭିତରେ ପଡ଼ି ରହିଲା ।

ମୋର ଆଉ କ'ଣ କର୍ତ୍ତବ୍ୟ ? କିଛି ସ୍ଥିର କରିବା ପୂର୍ବରୁ ମୋତେ ଭିତରେ ଛାଡ଼ି ଦେଇ ଯାଇଥିବା ବେହେରାଟି ପୁଣି ଆସି ମୋ ପାଖରେ ପହଞ୍ଚିଲା । କହିଲା : ଆସନ୍ତୁ ।

ମୁଁ ତା' ପଛେ ପଛେ ଫେରି ଯାଉଥିଲି ।

ସାର୍ ସର୍ବାଧିକାରୀ ପୁଣି ମୋତେ ପଛରୁ ଡାକି କହିଲେ : କାଲି ହସ୍‌ପିଟାଲରୁ ଫେରି ପ୍ରଥମେ ମୋ ପାଖରେ ରାଜେନ୍ଦ୍ରର ଖବର ଦେଇଯିବ ।

ଯଦିଓ ମୁଁ ତାଙ୍କ ଆଦେଶ ପାଳନ କରିବାକୁ ବାଧ୍ୟ ନ ଥିଲି, କିନ୍ତୁ ସାର୍ ସର୍ବାଧିକାରୀଙ୍କ ସ୍ୱରରେ ଏପରି ଏକ ବଳିଷ୍ଠ ଇଂଗିତ ଲୁଚି ରହିଥିଲା, ଯାହାକୁ ଅବଜ୍ଞା କରି ହୁଏ ନାହିଁ ।

ବେହେରାଟି ମୋତେ ଆଣି ବାହାରେ ଛାଡ଼ି ଦେଇ ପଚାରିଲା, : ଟ୍ୟାକ୍‌ସି ଡାକି ଦେବି ?

ମୁଁ ବାରଣ କଲି । କାରଣ ମନ ଭିତରଟା ମୋର କ୍ରମଶଃ ଯେପରି ଅପରାଧ ପ୍ରବଣ ହୋଇ ଉଠୁଥିଲା ।

ମେନ୍ ରୋଡ଼ରେ ଯାଇ ମୁଁ ଗୋଟିଏ ବସ୍‌ରେ ବସିଲି ।

ଟଙ୍କା ଭର୍ତ୍ତି ଭ୍ୟାନିଟି ବ୍ୟାଗ୍‌ଟାକୁ ଖୁବ୍ ଜୋର୍‌ରେ ଜାବୁଡ଼ି ଧରିଥିଲି । ଆଉ ଭାବୁଥିଲି ସାର୍ ସର୍ବାଧିକାରୀଙ୍କ କଥା । ତାଙ୍କ ମୁହଁରେ, ତାଙ୍କ ଆଚରଣରେ କାହିଁ କେଉଁଠିତ ମୁଁ ଅଳ୍ପ ଟିକିଏ ହେଲେ କାଳିମା ଦେଖିଲି ନାହିଁ ?

ତା'ପରେ ମନେ ପଡ଼ିଲା ରଞ୍ଜନ କଥା । ସେ ନିଶ୍ଚୟ ଘଣ୍ଟାକ ପରେ ମେଡ଼ିକାଲରୁ ଆସି ମୋତେ ଖୋଜିଥିବ । ସେଠାରେ ନପାଇ ତା'ମନରେ ନିଶ୍ଚୟ ଦୁଃଖ ହୋଇଥିବା ରଞ୍ଜନ ପରି ବନ୍ଧୁ କେଇଜଣ ଏ ପୃଥିବୀରେ ଅଛନ୍ତି ? ସବୁ ବିପଦକୁ ମୁଣ୍ଡରେ ମୁଣ୍ଡେଇ ସେ ମୋର ଭାଇର ପ୍ରାଣରକ୍ଷା କରିଛି । ତା'ପାଖରେ ମୋର କୃତଜ୍ଞତା ରହିବାର କଥା ।

ବସ୍ ଚାଲିଲା ।

ଭିଡ଼ ଭିତରେ ଚାପି ହୋଇ ଚୁପ୍ ଚାପ୍ ଗୋଟାଏ କୋଣକୁ ବସିଥିଲି ।

କିନ୍ତୁ ମନରେ ଭାବନା ଗୁଡ଼ିକ ପକ୍ଷ ବିସ୍ତାର କରି ଉଡ଼ି ଯାଇଥିଲେ ବହୁଦୂରକୁ ।

ଏକ ସମୟରେ ଧର୍ମତାଲା ଷ୍ଟ୍ରିଟ୍‌ରେ ଓହ୍ଲେଇ, ମୁଁ ଆମର ଗ୍ରାଣ୍ଟ୍ ଷ୍ଟ୍ରିଟ୍ ଗୃହ ଅଭିମୁଖରେ ଯାତ୍ରା କଲି । ହାତରେ ଭ୍ୟାନିଟି ବ୍ୟାଗ୍‌ଟା ମନେ ହେଉଥିଲା, ଯେପରି ଶହ ଶହ କିଲୋଗ୍ରାମଠାରୁ ଆହୁରି ଓଜନ ।

ଯେତେବେଳେ ଆସି ଘରେ ପହଞ୍ଚିଲି, ମୋ ଦେହରୁ ପରସ୍ତେ ଝାଳ ବୋହିଗଲା । ଫ୍ୟାନ୍‌ଟା ଫୁଲ୍ ସ୍ପିଡ୍‌ରେ ଖୋଲି ଦେଇ ଭିତରୁ କବାଟ ଲଗେଇ ଦେଇ, ଦେହରୁ ଧୀରେ ଧୀରେ ଲୁଗାପଟା ଖୋଲିବାକୁ ଲାଗିଲି । ମନେ ହେଉଥିଲା ମୁଁ ଯେପରି ସମଗ୍ର କଲିକତା ସହରଟାରେ ଅଗ୍ନି ସଂଯୋଗ କରିଦେଇ ନିଭୃତରେ କୋଟର ଗର୍ଭରେ ଆତ୍ମଗୋପନ କରିଛି ।

ଏପରି ମନେ ହେବାର କୌଣସି କାରଣ ନଥିଲା । କିନ୍ତୁ ସକାଳୁ ଗୋଟିକ ପରେ ଗୋଟିଏ ଘଟି ଯାଇଥିବା ଚଳମାନ ଘଟଣାଗୁଡ଼ିକ ମଝିରେ ମୁଁ ହୁଏତ ଦିଶାହରା ହୋଇ ପଡ଼ିଥିଲି ।

ଦରଜାରେ କିଏ ନକ୍ କଲା ।

ଏଥର ମୁଁ ଚମକି ପଡ଼ି, ଭ୍ୟାନିଟି ବ୍ୟାଗ୍‌ଟାକୁ ତକିଆ ତଳେ ରଖି ଦେଇ, ମନରେ ଟିକିଏ ଶକ୍ତି ସଞ୍ଚୟ କରିବାକୁ ଚେଷ୍ଟା କଲି ।

ପୁଣି ନକ୍ ହେବାର ଶବ୍ଦରେ ମୁଁ ଯାଇ ଡରି ଡରି ଦରଜା ଖୋଲିଲି ।

ମିସେସ୍ ସ୍ମିଥ୍, ପଛରେ ରଞ୍ଜନ ।

ମିସେସ୍ ସ୍ମିଥ୍ ରଞ୍ଜନକୁ ଘର ଭିତରକୁ ଆସିବାକୁ କହି ମୋ ଉପରେ ମୁରବି ପଣିଆ ଜାହିରି କରି କହିଲେ : ତତେ ମୁଁ ଅପେକ୍ଷା କରିବାକୁ କହିଥିଲି ନା, ଟିକିଏ ହେଲେ ତର ସହିଲା ନାହିଁ? ବିଚରା ରଞ୍ଜନ ତୋତେ ଅପେକ୍ଷା କରି କରି କ୍ଳାନ୍ତ ହୋଇ ପଡ଼ିଲାଣି ।

ରଞ୍ଜନ ମୋ ଆଡ଼କୁ ଟିକିଏ କଣେଇ ଚାହିଁ, ଅଳ୍ପ ହସି କହିଲା, : ସେଇଟା ଅବଶ୍ୟ ମିସ୍ ରୀଟାର ଦୋଷ ନୁହେଁ । ରାଜେନ୍ ତାକୁ ଗୋଟାଏ କାମରେ ପଠାଇଥିଲା ।

ରଞ୍ଜନ ମୋ ପକ୍ଷ ସମର୍ଥନ କରିବାରୁ ତା' ପ୍ରତି ମୋ ମନଟା କୃତଜ୍ଞତାରେ ଭରିଗଲା । ମିସେସ୍ ସ୍ମିଥ୍ ସେହିପରି ମୁରବିଆନା କଣ୍ଠରେ କହିଲେ : ତମେ ପିଲାମାନେ ସମସ୍ତେ ସମାନ । ତମମାନଙ୍କ ପରି ପିଲାମାନଙ୍କୁ ଶାସନ କରିବା ପାଇଁ ଆମମାନଙ୍କ ପରି ମୁରବିମାନେ ଯୋଗ୍ୟ ନୁହନ୍ତି ।

ସେ ରଞ୍ଜନର ହାତ ଧରି ଟାଣି ଟାଣି ବାହାରକୁ ନେଉ ନେଉ କହିଲେ : ତୁ କାମ ଶେଷ କରି ଶୀଘ୍ର ଆମ ଘରକୁ ଚାଲି ଆ, ରଞ୍ଜନ ଖୁବ୍ କ୍ଳାନ୍ତ, ସେ ଟିକିଏ ବିଶ୍ରାମ କରୁ ।

ରଞ୍ଜନ ମୋ ଆଡ଼କୁ ଚାହିଁ ଚାହିଁ ମିସେସ୍ ସ୍ମିଥ୍‌ଙ୍କ ପଛେ ପଛେ ତାଙ୍କ ଘରକୁ ଚାଲିଗଲା ।

କେଜାଣି କାହିଁକି ଗତ ରାତିଠାରୁ ମିସେସ୍ ସ୍ମିଥ୍‌ଙ୍କ ଉପରକୁ ମନଟା ମୋର ଚିଡ଼ି ଯାଇଥିଲା । ଜର୍ଜ ସହିତ ତାଙ୍କର ଆଚରଣ ଦେଖିବା ପରଠାରୁ ମୋ ଅବସ୍ଥା କ'ଣ ଯେ ହୋଇଥିଲା, ବିଭିନ୍ନ ଘଟଣା ପ୍ରବାହ ମଧ୍ୟରେ ମୁଁ ସବୁ ଭୁଲି ଯାଇଥିଲି । ପୁଣି ହଠାତ୍ ରଞ୍ଜନକୁ ମିସେସ୍ ସ୍ମିଥ୍‌ଙ୍କ ସଙ୍ଗରେ ଦେଖି, ମୁଁ କାହିଁକି ଶଙ୍କି ଉଠିଥିଲି ।

ପୁଣି ଥରେ ଦରଜା ବନ୍ଦ କରି ମୁଁ ବିଛଣାରେ ଶୋଇ ପଡ଼ିଥିଲି । ଯଦିଓ ରଞ୍ଜନ ପଛରେ ମୋର ମନଟା ଛୁଟି ଯାଇଥିଲା କିନ୍ତୁ ମିସେସ୍ ସ୍ମିଥ୍‌ଙ୍କ ପାଖରେ ଧରା ନ ପଡ଼ିବା ପାଇଁ ମୁଁ ଇଚ୍ଛା କରି ଡେରି କରିଥିଲି ।

କିନ୍ତୁ ଫଳ କିଛି ଫଳି ନଥିଲା । ବରଂ ମନରେ ମିସେସ୍ ସ୍ମିଥ୍‌ଙ୍କ ପ୍ରତି ଏକ ତିକ୍ତତା ଜମି ଉଠିଥିଲା । ମୋର ମନେ ହୋଇଥିଲା, ମିସେସ୍ ସ୍ମିଥ୍ ଯେପରି ମୋତେ କେନ୍ଦ୍ରକରି ତାଙ୍କର ମନର ଅଭିପ୍ସା ମେଣ୍ଟାଇବାକୁ ଚାହାନ୍ତି । ମୋତେ ସାମ୍ନାରେ ଥୋଇ, ଭଲ ଭଲ ଶିକାରଙ୍କର ମୋ ପ୍ରତି ଦୃଷ୍ଟି ଆକର୍ଷଣ କରାଇ ଟାଣି ଟାଣି ଘେନି ଆସୁଛନ୍ତି । ତାଙ୍କର ମାତୃତ୍ୱର ମମତା ମୂଳରେ ବି ସ୍ୱାର୍ଥ ସାଧନର ଏକ କୁତ୍ସିତ ମନୋବୃତ୍ତି ଲୁଚି

ରହିଛି ।

ଧେତ୍ । ଏଭଳି ସବୁ ନିମ୍ନ ସ୍ତରର ଭାବନା ମନରେ ସ୍ଥାନ ଦେବା ହୁଏତ ଉଚିତ ନୁହେଁ । କିନ୍ତୁ ନିରୋଳାରେ ଶୋଇଲେ ପରିଣତି ଏହାହିଁ ହେବ ।

ଉଠି ଠିଆ ହୋଇ ପଡ଼ିଲି । ବାଛି ବାଛି ସବୁଠାରୁ ସୁନ୍ଦର ଡ୍ରେସ୍‌ଟିଏ ପିନ୍ଧି ମିସେସ୍ ସ୍ମିଥ୍‌ଙ୍କ ବୈଠକଖାନାକୁ ସେଦିନ ବାହାରି ଯାଇଥିଲି ।

ରଞ୍ଜନ ଏକା ଏକା ବସି ରେଡିଓଗ୍ରାମ ବଜାଉଥିଲା ।

ମୋତେ ଦେଖିବାକ୍ଷଣି ଉଲ୍ଲାସରେ ନାଚି ଉଠି ହାତ ବଢ଼ାଇ ଦେଲା ।

ମୁଁ ଟିକିଏ ଅଟକିଗଲି, ଟିକିଏ ଚିନ୍ତା କଲି, ତା'ପରେ ଆଗେଇ ଗଲି ରଞ୍ଜନର ପ୍ରସାରିତ ବାହୁଯୁଗଳ ମଧ୍ୟକୁ ।

ରେଡିଓଗ୍ରାମରେ ବଲଡ଼ାନ୍‌ସର ଏକ ମିଉଜିକ୍ ବାଜୁଥିଲା ।

ରଞ୍ଜନ ମୋତେ କୋଳରେ ଧରି ସେଇଠି ନାଚିବାକୁ ଆରମ୍ଭ କରିଦେଲା । ମୋ ପାଦ ଯୋଡ଼ାକ  ବି ମିଉଜିକ୍‌ର ତାଳେ ତାଳେ ଛନ୍ଦ ରଚନା କରିଥିଲା ।

ରଞ୍ଜନ ଧୀରେ ଧୀରେ ମୋ କାନ ପାଖରେ କହିଲା : ତୁମେ ଭାରି ସୁନ୍ଦର । ମୋ ଜୀବନରେ ତମପରି ଝିଅଟିଏ ଭେଟିନାହିଁ ।

ମୁଁ ସିନା ନାଚୁଥିଲି, କିନ୍ତୁ ମୋ ଦେହର ଭାର ସମସ୍ତ ରଞ୍ଜନ ବହନ କରିଥିଲା ।

ରଞ୍ଜନର କଥା ଶୁଣି ମୁଁ ଖାଲି ଟିକିଏ ହସିଲି ।

ରଞ୍ଜନ ପୁଣି କହିଲା : ତମକୁ ଧରି ଦିନ ଦିନ ରାତି ରାତି ଏହିପରି ନାଚିବାକୁ ଇଚ୍ଛା ହେଉଛି । ତୁମେ ସଙ୍ଗରେ ଥିଲେ ଟିକିଏ କ୍ଲାନ୍ତି କି ଟିକିଏ ଶ୍ରାନ୍ତି ଲାଗିବ ନାହିଁ ।

ମୁଁ ଆହୁରି ରଞ୍ଜନର ଛାତି ଆଡ଼କୁ ଭିଡ଼ି ହୋଇ ଯାଇଥିଲି । ଓଠ ସହିତ ଓଠ ମିଶାଇଥିଲି ।

ଏକ ଅପୂର୍ବ ଶିହରଣରେ ମୁଁ ଆଖି ବୁଜି ଦେଇଥିଲି ।

ରେଡ଼ିଓଗ୍ରାମର ରେକର୍ଡ ଶେଷ ହୋଇ ଯାଇଥିଲା ।

ହଠାତ୍ ଆମେ ଦୁହେଁ ଅଟକି ଯାଇଥିଲୁ ।

ସେତିକିବେଳେ ପର୍ଦ୍ଦା ଆଡ଼େଇ ଭିତରକୁ ପ୍ରବେଶ କରିଥିଲେ ମିସେସ୍ ସ୍ମିଥ୍ । ମୁଁ ମିସେସ୍ ସ୍ମିଥ୍‌ଙ୍କୁ ଚାହିଁ କାବା ହୋଇଯାଇଥିଲି । ମୋର ମନେ ହୋଇଥିଲା, ମିସେସ ସ୍ମିଥ୍‌ଙ୍କ ବଦଳରେ ହୁଏତ ତାଙ୍କର ବିଂଶ ବର୍ଷୀୟା କନ୍ୟା ମିସ୍‌ସ୍ମିଥ୍ ଗୃହ ମଧ୍ୟରେ ପ୍ରବେଶ କରିଥିଲେ । କିନ୍ତୁ ଦୁର୍ଭାଗ୍ୟ ସେ ସନ୍ତାନ ସୁଖରୁ ବଞ୍ଚିତା ଥିଲେ ।

ରେଡିଓଗ୍ରାମ୍‌ଟା ଏହା ଭିତରେ ରେକର୍ଡ଼ ଚେଞ୍ଜ୍ କରି ପୁଣି ବାଜି ଉଠିଥିଲା । ସେଇ ବଲ୍‌ଡାନ୍‌ସର ସ୍ୱରା ଟିଉନିଙ୍ଗଟାର ଅଳ୍ପ ଟିକିଏ ତଫାତ୍ ମାତ୍ର ।

ରଞ୍ଜନ ବି ତାଙ୍କ ଆଡ଼େ କାବା ହୋଇ ଚାହିଁଥିଲା ।

ମିସେସ୍ ସ୍ମିଥ୍ ଘରକୁ ମହକିତ କରି ମୋ କାନ୍ଧରୁ ରଞ୍ଜନର ହାତ ଛଡ଼ାଇ ନେଇ ମିଉଜିକ୍‌ର ତାଳେ ତାଳେ ପାଦ ଚଳେଇଲେ । ରଞ୍ଜନ ତାଙ୍କ ସହିତ ତାଳ ମିଳାଇଲା । କିନ୍ତୁ ରଞ୍ଜନର ଛନ୍ଦ ପତନ ଘଟୁଥିଲା, ମିସେସ୍ ସ୍ମିଥ୍ ସମ୍ଭାଳି ନେଉଥିଲେ ।

ରଞ୍ଜନ ମିସେସ୍ ସ୍ମିଥ୍‌ଙ୍କ ଠାରୁ ଦୂରେଇ ଦୂରେଇ ରହୁଥିଲା, କିନ୍ତୁ ମିସେସ୍ ସ୍ମିଥ୍ ତାକୁ ଜଡ଼େଇ ନେଉଥିଲେ ।

ରଞ୍ଜନ ମଝିରେ ମଝିରେ ବୁଲି ବୁଲି ମୋ ଆଡ଼କୁ ଚାହୁଁଥିଲା, କିନ୍ତୁ ମିସେସ୍ ସ୍ମିଥ୍ ତାକୁ ନିଜ ଆଡ଼କୁ ଆକର୍ଷିତ କରେଇବା ପାଇଁ ଚେଷ୍ଟା କରୁଥିଲେ ।

ରେକର୍ଡ଼ ବାଜିବା ଶେଷ ହେବା ସଂଗେ ସଂଗେ ନୃତ୍ୟ ଶେଷ ହେଲା ।

ମିସେସ୍ ସ୍ମିଥ୍ ଅତ୍ୟଧିକ ଉତ୍‌ଫୁଲ୍ଲ ହୋଇ କହି ଉଠିଥିଲେ : ଓ୍ୱଣ୍ଡରଫୁଲ୍ଲ ! ତମେ ଠିକ୍ ପାରିବ ରଞ୍ଜନ । ଆଜି ଗ୍ରାଣ୍ଡରେ ଗୋଟାଏ ବିରାଟ ପାର୍ଟି ଅଛି । ମୁଁ ସେଠାକୁ ନିମନ୍ତ୍ରିତ ହୋଇଛି । କିନ୍ତୁ ନାଚିବା ପାଇଁ ଜଣେ ପାର୍ଟନର ଖୋଜି ପାଉ ନଥିଲି । ତମେ ଠିକ୍ ପାରିବ ରଞ୍ଜନ । ମୋର ଅନୁରୋଧ, ତୁମେ ମୋ ସହିତ ଆଜି ସହଯୋଗ କରିବ ।

ମିସେସ୍ ସ୍ମିଥ୍ ମୋ ଆଡ଼କୁ ମୁହଁ ବୁଲାଇ କହିଲେ : ତତେ ବି ମୁଁ ଆଜି ସାଙ୍ଗରେ ନେଇଯିବି । ବଡ଼ ବଡ଼ ପାର୍ଟି, ବଡ଼ ବଡ଼ ଡାନ୍‌ସ ଆଟେଣ୍ଡ ନ କଲେ ଆରିଷ୍ଟୋକ୍ରାସି ଶିଖି ହେବ ନାହିଁ । ମିଷ୍ଟର ସ୍ମିଥ୍ କହନ୍ତି, ଆରେଷ୍ଟୋକ୍ରାସିର ଏକ ଚିରାଚରିତ ଧାରା ନାହିଁ । ତାହା ସମୟ ଅନୁସାରେ ବଦଳୁଥାଏ । ଯେଉଁମାନେ ବଦଳାନ୍ତି ସେମାନେ ପଛରେ ପଡ଼ି ରହନ୍ତି । ତେଣୁ ସବୁ ସମୟରେ ବଡ଼ ବଡ଼ ପାର୍ଟି, ବଡ଼ ବଡ଼ ଫଙ୍କସନ ଆଟେଣ୍ଡ କରିବାକୁ ହୋଇଥାଏ । ସେଇଠାରୁ ତ ଆରିଷ୍ଟୋକ୍ରାସି ଜନ୍ମ ଗ୍ରହଣ କରେ ।

ତା'ପରେ ଆମେ ସମସ୍ତେ ଗୋଟିଏ ଗୋଟିଏ ସୋଫା ଅଧିକାର କଜି ବସିଲୁ ।

ରଞ୍ଜନ ମିସେସ୍ ସ୍ମିଥ୍‌ଙ୍କ ଅନୁରୋଧ ରକ୍ଷା କରି ପାରିବ କି ନାହିଁ ବୋଧହୁଏ ଚିନ୍ତା କରୁଥିଲା ।

ମିସେସ୍ ସ୍ମିଥ୍ ପୁଣି ଆରମ୍ଭ କଲେ : ପ୍ରତ୍ୟେକ ମଣିଷର ଜୀବନ ଆରମ୍ଭର ପ୍ରାକ୍‌କାଳରେ ଜଣେ ସଦ୍‌ଗୁରୁର ପ୍ରୟୋଜନ । ସଦ୍‌ଗୁରୁ ନ ପାଇଲେ ଜୀବନର ବିକାଶ କୀଟଦ୍ରଷ୍ଟର କାରଣ ହୋଇ ଠିଆ ହୁଏ ।

କଥା ମଝିରେ ବୟ ଆଣି ଅଳ୍ପ କିଛି ଖାଦ୍ୟ ଓ ପାନୀୟ ରଖି ଯାଇଥିଲା । ମିସେସ୍ ସ୍ମିଥ୍ ନିଜ ହାତରେ ଆମକୁ ଅତି ସ୍ନେହରେ ଖୁଆଇଥିଲେ ।

ପାନୀୟ ଗ୍ଲାସଗୁଡ଼ିକ ଆମ ହାତକୁ ଦେଲା ବେଳକୁ କହିଥିଲେ, ଏଇଟା ମୋର ନିଜ ହାତରେ ତିଆରି । କାଲି ରାତିରେ ମୁଁ ଜର୍ଜକୁ ପିଆଇଥିଲି, ଆଜି ଆମେ ସମସ୍ତେ ପିଇବା । ଭାରି ସୁସ୍ୱାଦୁ । ଆଉ ମଧୁର ଆବେଗର ଏକ ଅପୂର୍ବ ସ୍ପର୍ଶ ମିଳିବ ଏଥିରୁ ।

ରଞ୍ଜନ ବୋଧହୁଏ ଗ୍ଲାସ ଉଠାଇବାକୁ ଦ୍ୱିଧାବୋଧ କରୁଥିଲା । ମିସେସ ସ୍ମିଥ୍ ନିଜେ ଉଠିପଡ଼ି ଗ୍ଲାସଟି ନେଇ ରଞ୍ଜନର ମୁଖରେ ଲଗାଇ ଦେଲେ ।

ଆଉ ଗୋଟିଏ ଗ୍ଲାସ ମୋ ହାତକୁ ବଢ଼ାଇ ଦେଇ କହିଲେ : ମୁଁ କହୁଛି, ଏହା ସରବତ୍ ଜାତୀୟ । ଦ୍ୱିଧାବୋଧ କରିବାର କିଛି ନାହିଁ ।

ସେଦିନ ମିସେସ୍ ସ୍ମିଥ୍‌ଙ୍କର ସେହି ସ୍ପେଶାଲ ଡ୍ରିଙ୍କ୍ ପାନ କରି ଧୀରେ ଧୀରେ ମୁଁ ସତ୍ତା ହରାଇଥିଲି । ଅଧଘଣ୍ଟା ଯାଏ ସବୁକଥା ମୁଁ ଦେଖି ପାରିଥିଲି ଏବଂ ଶୁଣି ପାରିଥିଲି । ମିସେସ୍ ସ୍ମିଥ୍ ହାତ ହଲାଇ, ହସି ଚିବୁକ ସ୍ପର୍ଶ କରି ବହୁତ କଥା କହିଥିଲେ । କିନ୍ତୁ କିଛି ଗୋଟାଏ ମୋର ମନେ ନ ଥିଲା । ଧୀରେ ଧୀରେ ମିସେସ୍ ସ୍ମିଥ୍‌ଙ୍କର ବୈଠକଖାନାର ସେହି ଲମ୍ବା ସୋଫାଟା ଉପରେ ମୁଁ ଲୋଟି ପଡ଼ିଥିଲି । ଖାଲି ମୋର ମନେ ହେଉଥିଲା, ମିସେସ୍ ସ୍ମିଥ୍ ରଞ୍ଜନକୁ ଜଡ଼େଇ ଧରି ଘରଯାକ ବହୁତ ନାଚୁଛନ୍ତି, ବହୁତ ହସୁଛନ୍ତି, ଆଉ...

ଧୀରେ ଧୀରେ ଆଖି ଯୋଡ଼ାକ ମୋର ମୁଦି ହୋଇ ଯାଇଥିଲା ।

ସେଦିନ ମଡ଼ର୍ଣ୍ଣ ଆରିଷ୍ଟୋକେସି ଶିକ୍ଷା କରିବାର ସୌଭାଗ୍ୟରୁ ମୋତେ ବଞ୍ଚିତ ହେବାକୁ ପଡ଼ିଥିଲା । ମିସେସ୍ ସ୍ମିଥ୍ ଓ ରଞ୍ଜନ ଗ୍ରାଣ୍ଡ ହୋଟେଲର ବିଶେଷ ପ୍ରୋଗ୍ରାମରେ ଯାଇ ଭାଗ ନେଇଥିଲେ କି ନାହିଁ ସେ ଖବର ପରେ ମୁଁ ଆଉ କାହାରିକୁ ପଚାରିବାର ଭରସା କରି ନଥିଲି ।

ମିସେସ୍ ସ୍ମିଥ୍ ଆରଦିନ ସକାଳୁ ମୋତେ ଡାକି ଦେଇଥିଲେ । ମୁଁ ତାଙ୍କର ଡ୍ରଇଂ ରୁମ୍‌ର ସୋଫାରୁ ଉଠି ଆମ ଘରକୁ ଫେରି ଆସିବା ଆଗରୁ ମନେ ମନେ ରଞ୍ଜନକୁ ଖୋଜିଥିଲି । ମିସେସ୍ ସ୍ମିଥ୍ ବୋଧହୁଏ ମୋ ମନୋଭାବ ବୁଝି ପାରି କହିଲେ : ରଞ୍ଜନ ଚାଲି ଯାଇଛି । କହି ଯାଇଛି ଆଜି ଚାରିଟାବେଳକୁ ଆସିବ ।

ମୁଁ ଧୀରେ ଧୀରେ ଉଠି ଆମ ଘରକୁ ଚାଲି ଯାଇଥିଲି ।

ମିସେସ ସ୍ମିଥ୍ ମୋ ମନ ଉପରେ ଯେଉଁ ମାତୃ ସୁଲଭ ପ୍ରଭାବ ବିସ୍ତାର କରିଥିଲେ, ତାହା ଯେପରି ଅଳ୍ପ ଅଳ୍ପ କରି କମି ଆସୁଥିଲା ।

ମୁଁ ଘରେ ଯାଇ ଚୁପ୍‌ଚାପ୍ ବସି ପାରିଲି ନାହିଁ । କିଛି ହେଲେ ମୋତେ ଭଲ ଲାଗିଲା ନାହିଁ । ପୃଥିବୀଟା ମୋତେ ଅଭିଶାପଗ୍ରସ୍ତ ପରି ମନେ ହେଲା ।

ଗାଧୁଆ ପାଧୁଆ ଶେଷ କରି ଯେତେବେଳେ ଆସି ଆଇନା ସାମ୍ନାରେ ଠିଆ ହେଲି, ମୋ ମୁହଁକୁ ମୁଁ ଚିହ୍ନି ପାରିଲି ନାହିଁ । ଗୋଟାଏ ରାତି ଭିତରେ ଏପରି ପରିବର୍ତ୍ତନ ! ଯେପରି ଦୁଇମାସ ରୋଗ ଭୋଗି ଉଠିଚି ।

କ'ଣ କରିବି ! ଶେଷରେ ପୁଣି ମୋତେ ମିସେସ୍ ସ୍ମିଥ୍‌ଙ୍କ ଶରଣାପନ୍ନ ହେବାକୁ ପଡ଼ିଲା । ସେ ଶୋଇ ଶୋଇ ଖଣ୍ଡିଏ ଚିଠି ପଢୁଥିଲେ । ମୋତେ ଦେଖିବାକ୍ଷଣି ପାଖକୁ ଡାକି କହିଲେ : ମିଷ୍ଟର ସ୍ମିଥ୍ ଲେଖିଛନ୍ତି । ଦୈନିକ ମୋ ପାଖକୁ ସେ ଚିଠି ନ ଲେଖିଲେ ରାତିରେ ତାଙ୍କୁ ନିଦ୍ରା ହୁଏ ନାହିଁ । ସେ ଆଶା କରୁଛନ୍ତି, ମାସକ ମଧ୍ୟରେ ଆସି ଭାରତ ମାଟିରେ ପାଦ ଦେବେ ।

ସେ ସେଦିନ ଏପରି ମନଯୋଗ ସହକାରେ ଚିଠି ଖଣ୍ଡିକ ପଢୁଥିଲେ, ମୋର ମନେ ହେଲା ସେ ଯେପରି ତାଙ୍କର ପ୍ରେମାହସ୍ପଦ ଠାରୁ ପ୍ରଥମ ଚିଠିଟି ପାଇଛନ୍ତି ।

ମୁଁ ତାଙ୍କ ଆନନ୍ଦରେ ବାଧାଦାନର ଚେଷ୍ଟା ନ କରି ଫେରି ଆସିଲି ।

ଏପାଖ ସେପାଖ ହୋଇ ବହୁ କଷ୍ଟରେ ଦିନଟା କଟାଇଲି ।

ଠିକ୍ ଚାରିଟା ନ ବାଜୁଣୁ ବାହାରେ ମଟର ହର୍ଣ୍ଣ ଶୁଣି ଏକା ନିଶ୍ୱାସକେ ତଳକୁ ଛୁଟିଗଲି । ରଞ୍ଜନ ଗାଡ଼ିରେ ବସି ମୋ ପଥକୁ ଚାହିଁଥିଲା ।

ମୁଁ ଗାଡ଼ିର ଦରଜା ଖୋଲି ଭିତରକୁ ପଶିଛି କି ନାହିଁ, ଦେଖିଲି ମିସେସ୍ ସ୍ମିଥ୍ ନୃତ୍ୟ ଭଙ୍ଗୀରେ ମୋ ପଛରେ ଛୁଟିଛନ୍ତି ।

ସେ ଆସି ଗାଡ଼ିର ଦରଜା ଖୋଲି ବସିଲେ ।

ରଞ୍ଜନ ମୋତେ ମେଡ଼ିକାଲରେ ଛାଡ଼ିଦେଲା । ମିସେସ୍ ସ୍ମିଥ୍ କିନ୍ତୁ ଗାଡ଼ିରୁ ଓହ୍ଲାଇଲେ

ନାହିଁ । ବରଂ ପଛ ସିଟ୍‌ରୁ ଉଠି ଯାଇ ଆଗ ସିଟ୍‌ରେ ରଞ୍ଜନ ପାଖରେ ବସୁ ବସୁ କହିଲେ: ରାଜେନ୍‌କୁ କହିବୁ ଆଜି ଗୋଟିଏ ବିଶେଷ କାମରେ ଯାଉଥିବାରୁ, ତା'ସହିତ ଦେଖା କରି ପାରିବି ନାହିଁ ।

ରଞ୍ଜନ ମୋ ଆଡ଼େ କରୁଣ ଦୃଷ୍ଟିରେ ଚାହିଁ ଗାଡ଼ିରେ ଷ୍ଟାର୍ଟ ଦେଲା ।

ମୁଁ ଗୋଟିଏ ଦୀର୍ଘଶ୍ୱାସ ପକାଇ ଧୀରେ ଧୀରେ ମେଡ଼ିକାଲ ୱାର୍ଡ ଭିତରକୁ ପଶିଲି ।

ଭାଇ ମୋ ପାଇଁ ଅଧୀର ଆଗ୍ରହରେ ଅପେକ୍ଷା କରିଥିଲା ।

ମୋତେ ଦେଖିବାମାତ୍ରକେ ପ୍ରଶ୍ନକଲା : କାଲି ଚିଠି ପହଞ୍ଚାଇବାରେ ତୋର କୌଣସି ଅସୁବିଧା ହୋଇ ନାହିଁ ତ ?

ମୁଁ ଗୋଟିଏ ଷ୍ଟୁଲ୍ ଟାଣି ବସୁ ବସୁ କହିଲି : ନା, ଅସୁବିଧା କିଛି ହୋଇ ନାହିଁ, କିନ୍ତୁ ଘଟଣା କ'ଣ କହିଲ ? ମୋତେ କାହିଁକି କିଛି ଭଲ ଲାଗୁନାହିଁ ।

ଭାଇ ସାମାନ୍ୟ ଟିକିଏ ହସିବାକୁ ଚେଷ୍ଟା କରି କହିଲା : ତୋର ସେ ସବୁ ଦିଗ ପ୍ରତି ନଜର ନ ଦେବାହିଁ ଭଲ ଆଜିକାଲି ଦୁନିଆରେ ବଡ଼ ହେବାକୁ ହେଲେ, ସତ୍‌ପଥରେ ଚାଲି କିଛି କରି ହେବ ନାହିଁ । କେତେ ଦିନ ଆମେ ଖାଲି ପେଟରେ ଆମର ଖାନଦାନକୁ ଜଗି ପଡ଼ିଥିବା ?

ଭାଇର କଣ୍ଠ ସ୍ୱରରେ ଏପରି ଏକ ଦୃଢ଼ତାର ଆଭାସ ପାଇଲି ଆଉ ଆଖି ଦି'ଟାରୁ ଏପରି ଏକ ଜ୍ୟୋତି ଝରୁଥିଲା, ଯାହା ଉପରେ କଥା କହିବା ପାଇଁ ମୋର ଆଉ ସାହସ ନ ଥିଲା ।

ମୁଁ କିଛି ସମୟ ଚୁପ୍‌ଚାପ୍ ବସି ରହିଲି ।

ଭାଇ ମୋତେ ପଚାରିଲା : ସାର୍ ସର୍ବାଧିକାରୀ ତୋତେ କିଛି କହୁଥିଲେ ?

ମୁଁ ଉତ୍ତର ଦେବା ପୂର୍ବରୁ ଆଉ ଜଣେ ଆଗନ୍ତୁକ ହସି ହସି ଭାଇ ପାଖକୁ ଲାଗି ଆସି କହିଲା : ଖବର କ'ଣ ?

ଭାଇ ଉତ୍ତର ଦେଲା : ଭଲ ।

: କିନ୍ତୁ ଏତେଟା ମୁଁ ଆଶା କରି ନ ଥିଲି । ଆଗନ୍ତୁକଟି କହିଲା ।

: ମୁଁ ଭାବି ନ ଥିଲି ।

: କିନ୍ତୁ ସାର୍ ତୋ' କାର୍ଯ୍ୟରେ ଖୁବ୍ ସନ୍ତୁଷ୍ଟ ହୋଇଛନ୍ତି । ସେ କହୁଥିଲେ ମରଣକୁ ତୁଚ୍ଛ କରି ତୁ କର୍ତ୍ତବ୍ୟ କରିଛୁ ।

ଭାଇ କହିଲା : ସେଇଟା ଭଗବାନଙ୍କର ଆଶୀର୍ବାଦ । ସେମାନେ ଯେପରି ଭାବରେ ମୋତେ ଆକ୍ରମଣ କରିଥିଲେ, ମୁଁ ଯେ ଆଉ ଥରେ ଜୀବନ ପାଇବି ଏ କଥା ଭାବି ନ ଥିଲି ।

ଆଗନ୍ତୁକଟିର କଥାବାର୍ତ୍ତାରୁ ବୁଝି ପାରିଲି ସେ ଭାଇର ବନ୍ଧୁ । କିନ୍ତୁ ଆଶ୍ଚର୍ଯ୍ୟ ସେ ମୋ ଆଡ଼କୁ ଥରଟିଏ ବି ଚାହିଁ ନଥିଲା ।

ଶେଷରେ ଭାଇ ମୋ ଆଡ଼କୁ ହାତ ବଢ଼ାଇ କହିଲା : ରୀତା ମୋ ଭଉଣୀ । ଯାରି କଥା ମୁଁ ତତେ କହିଥିଲି ।

ସେ ମୋ ଆଡ଼େ ଚାହିଁ ହାତ ଯୋଡ଼ି ନମସ୍କାର ଜଣାଇଲା । ମୁଁ ପ୍ରତି ନମସ୍କାର

ଜଣାଇ ନୀରବ ହେଲି ।

ଲୋକଟି ଭାଇର ସମବୟସୀ ନ ହେଲେ ହେଁ, ତିନି ଚାରି ବର୍ଷରୁ ଅଧିକ ବଡ଼ ହେବ ନାହିଁ । ମୁହଁଟି ଖୁବ୍ ସୁନ୍ଦର । ଚାହାଣିଟିରେ ଆନ୍ତରିକତାର ଛାପ ଦେଖିଲି ।

ମୋ ଆଡୁ ମୁହଁ ଫେରାଇ ନେଇ ସେ କହିଲା : ସାର୍ କହିଛନ୍ତି, ତୁ କିଛି ଚିନ୍ତା ଭାବନା କରିବୁ ନାହିଁ । ଦରକାର ପଡ଼ିଲେ ତୋ ପଛରେ ସେ ତାଙ୍କର ସମସ୍ତ ଶକ୍ତି ଖଟାଇବେ ।

ସେମାନଙ୍କର କଥାବର୍ତ୍ତା ଭିତରୁ ମୁଁ କେବଳ ଗୋଟାଏ ଆଶଙ୍କାର ପ୍ରତିଚ୍ଛବି ଦେଖୁଥିଲି ।

ଭାଇ ମୋ ଚିନ୍ତିତ ମୁଖମଣ୍ଡଳ ଆଡ଼େ ଚାହିଁ କହିଲା : ଯା ସହିତ ତୋର ପରିଚୟ କରେଇ ଦିଏ । ୟାଙ୍କ ନାଁ ରଫିକ୍ । ମୋର ଅନ୍ତରଙ୍ଗ ବନ୍ଧୁ ।

ଭାଇର ବଂଧୁ ପ୍ରତି ମୋର କୌଣସି ଆକର୍ଷଣ ନ ଥିଲା । କେଜାଣି କାହିଁକି ମନଟା ମୋର ସେତେବେଳକୁ ଗୁଡ଼ାଏ ଦୁର୍ଭାବନାରେ ପୂର୍ଣ୍ଣ ହୋଇ ଯାଇଥିଲ ।

ମୁଁ ଉଠି ଠିଆ ହେଲି, ଭାଇ କହିଲା : ଘରକୁ ଯିବୁ ?

ମୁଁ ସମ୍ମତି ଜଣାଇଲି ।

ଭାଇ ଟିକିଏ ଉଠି ବସିବାକୁ ଚେଷ୍ଟା କରି କହିଲା : ହଉ ତୁ ଚାଲି ଯା । ମୁଁ ତ ଭଲ ଅଛି । ଡାକ୍ତର କହିଛନ୍ତି ତିନି ଚାରିଦିନ ପରେ ମୋତେ ଛାଡ଼ିଦେବେ ।

ମୁଁ ଚାଲି ଆସିଲି । ମୋ ଆଖି ଆଗରେ ଯେପରି ସମଗ୍ର ମେଡ଼ିକାଲଟା ଚକାଭଉଁରୀ ଖେଳୁଥିଲା ।

ଘରକୁ ଫେରିଆସି ଚୁପ୍‌ଚାପ୍ ଶୋଇ ପଡ଼ିବାକୁ ପ୍ରସ୍ତୁତ ହେଉଛି, ବାହାରେ କାହାର ହାସ୍ୟରୋଳ ଶୁଣିବାକୁ ପାଇଲି ।

ମୋର ମନେ ହେଲା ମିସେସ୍ ସ୍ମିଥ୍, ଆଉ ଆର ଜଣକ ?

କବାଟ ସାମାନ୍ୟ ଫାଙ୍କ କରି ଦେଖିଲି, ରଞ୍ଜନର ହାତ ଧରି ମିସେସ୍ ସ୍ମିଥ୍ ଉଚ୍ଛ୍ୱସିତ ହାସ୍ୟରୋଳ ଭିତରେ ତାଙ୍କ ଘର ଆଡ଼େ ଆଗେଇ ଯାଉଛନ୍ତି । ମୁଁ କବାଟରେ କିଳିଣି ଦେଇ ଶୋଇ ପଡ଼ିଲି ।

ତା'ପରେ ଘଟଣା ଆହୁରି ବୈଚିତ୍ର୍ୟପୂର୍ଣ୍ଣ ।

ଭାଇ ହସ୍‌ପିଟାଲରୁ ଫେରି ଆସିବା ପରେ ତା' ବଂଧୁମାନେ ଯେତେ ଯିଏ ଆସିଲେ, ମିସେସ୍ ସ୍ମିଥ୍ ସମସ୍ତଙ୍କ ଉପରେ ଆଧିପତ୍ୟ ବିସ୍ତାର କରିବାକୁ ଚେଷ୍ଟା କଲେ । ବିଶେଷ କରି ରଞ୍ଜନକୁ ସେ ଏପରି ଭୁଲେଇ ରଖିଲେ ଯେ ମୋ ସହିତ ମିଶିବା ପାଇଁ ମୋତେ ସୁବିଧା ସୁଯୋଗ ଦେଲେ ନାହିଁ ।

ଭାଇ ପୁଣି ତା' କର୍ମ ଜଞ୍ଜାଳ ଭିତରେ ବୁଡ଼ି ରହିଲା ।

ଆମେ ଅଳ୍ପ ଦିନ ଭିତରେ ଘର ବଦଳାଇ ରସଲ ଷ୍ଟ୍ରିଟ୍‌କୁ ଚାଲିଗଲୁ ।

ମିସେସ୍ ସ୍ମିଥ୍ ଆମକୁ ପାଖରେ ଗୋଟାଏ ଫ୍ଲାଟ ଖୋଜି ଦେଇଥିଲେ, କିନ୍ତୁ ମୁଁ ସେଥିରେ ସମ୍ମତି ପ୍ରକାଶ କଲିନାହିଁ । ମିସେସ୍ ସ୍ମିଥ୍‌ଙ୍କ ଅତ୍ୟାଚାର ଦିନକୁ ଦିନ ମୋ ସହିବାର ବାହାରକୁ ଚାଲିଯାଇଥିଲା । ମୁଁ ଅନୁଭବ କରୁଥଲି, ସେ ଯେପରି ମୋତେ ଚଢ଼େଇ ଧରିବାର ଗୋଟିଏ ମାଧ୍ୟମ ରୂପରେ ବ୍ୟବହାର କରୁଛନ୍ତି । ମୋ ରୂପରେ

ଯେଉଁମାନେ ଆକୃଷ୍ଟ ହୋଇ ଧାଇଁ ଧାଇଁ ଆସୁଛନ୍ତି, ମିସେସ୍ ସ୍ମିଥଙ୍କ ବହ୍ନି ଶିଖାରେ ସେମାନଙ୍କୁ ଝାସ ଦେବାକୁ ପଡୁଛି ।

କିନ୍ତୁ ରସଲ ଷ୍ଟ୍ରିଟ୍ ଫ୍ଲାଟ୍‌ଟା ମୋ ଜୀବନରେ ପ୍ରାଚୁର୍ଯ୍ୟ ଆଣିଦେଲା ସିନା, କିନ୍ତୁ ଯେଉଁଦିନ ରାତି ନଅଟାରେ ଫେରି ସାର୍ ସର୍ବାଧିକାରୀଙ୍କ ଠାରୁ ଡାକରା ପାଇଲି, ସେଦିନଟି ମୋ ଜୀବନରେ ଅବିସ୍ମରଣୀୟ ହୋଇ ରହିଗଲା ।

ସାର୍ ସର୍ବାଧିକାରୀ ଗାଡ଼ି ପଠାଇଥିଲେ ।

ମୋ ଭାଇଙ୍କର ଅନ୍ନଦାତା ସେ । ବାଧହୋଇ ତାଙ୍କ ଗାଡ଼ିରେ ମୋତେ ଉଠିବାକୁ ପଡ଼ିଥିଲା ।

କିନ୍ତୁ ଗାଡ଼ି ଯେ ଅନ୍ୟ କୌଣସି ଦିଗରେ ଚାଲିଛି !

ଡ୍ରାଇଭର କହିଲା : ସାର୍ ଯେଉଁଠି ଅଛନ୍ତି, ମୁଁ ଆପଣଙ୍କୁ ସେଇଠାକୁ ନେଇ ଯାଉଛି ।

କୌଣସି ପ୍ରତିବାଦ କରି ପାରି ନଥିଲି ।

ଗାଡ଼ି କେତେ ଗଳି କନ୍ଦି ଭିତର ଦେଇ କେଉଁ ଆଡ଼େ ଚାଲିଥିଲା, ତା'ବି ଜାଣି ପାରୁ ନ ଥିଲି । ମୁଁ ଯେ ଗୋଟାଏ ଅଘଟଣର ସମ୍ମୁଖୀନ ହେବାକୁ ଯାଉଛି ସେହିପରି ଆଶଙ୍କା ମୋ ମନଟାକୁ ଆଚ୍ଛନ୍ନ କରି ରଖିଥିଲା ।

ଗାଡ଼ି ଯାଇ ଯେଉଁଠି ରହିଲା, ସେଇଟା ଗୋଟାଏ ଭଙ୍ଗାକୋଠା । ସହରଠାରୁ ଦୂରରେ । ଗାଡ଼ି ହତା ଭିତରେ ପହଞ୍ଚିବାମାତ୍ରେ ଗୁଡ଼ାଏ ନିଶାଚର ପକ୍ଷୀ ପକ୍ଷ ବିସ୍ତାର କରି ଭୟରେ ଉଡ଼ିବାକୁ ଲାଗିଲେ ।

ଡ୍ରାଇଭର୍ ସହିତ ମୁଁ ଭିତରେ ପ୍ରବେଶ କଲି ।

ଦୋତାଲାରେ ଗୋଟିଏ ଘର ଦେଖାଇ ଦେଇ ଡ୍ରାଇଭର ତଳକୁ ଓହ୍ଲାଇ ଗଲା । ଶଙ୍କିତ ପାଦ ଚାଲି ମୁଁ ଯେତେବେଳେ ଯାଇ ହଲ୍ ଘରଟାର ଦୁଆରେ ପହଞ୍ଚିଲି, ଭିତରୁ କାହାର ଗମ୍ଭୀର କଣ୍ଠସ୍ୱର ଶୁଣି ଚମକି ଉଠିଲି ।

: ଭିତରକୁ ଆସ ।

ଯନ୍ତ୍ରଚାଳିତ ପରି ମୁଁ ସେହି ହଲ୍ ଘରଟା ଭିତରେ ପ୍ରବେଶ କଲି ।

ସାର୍ ସର୍ବାଧିକାରୀ ଯେପରି ମୋରି ପାଇଁ ଅପେକ୍ଷା କରିଥିଲେ ।

ମୋତେ କହିଲେ : ତମକୁ ଏଠାକୁ ଡାକିବାରେ ମୋର ମୋଟେ ଇଚ୍ଛା ନ ଥିଲା । କିନ୍ତୁ ଘଟଣାଟା ତମେ ନିଜ ଆଖିରେ ନ ଦେଖିଲେ ହୁଏତ ବିଶ୍ୱାସ କରିବ ନାହିଁ ।

କଥା କହି କହି ସାର୍ ସର୍ବାଧିକାରୀ ଆଗେଇ ଚାଲିଥିଲେ।

ମୁଁ ତାଙ୍କ ପଛେ ପଛେ ଚାଲିବାକୁ ବାଧ ହୋଇଥିଲି ।

ସେ ଯାଇ ହଲ୍ ଘରର ଗୋଟିଏ କୋଣରେ ଠିଆ ହୋଇ ଇଂଗିତରେ ଏକ ଦରଜା ଖୋଲିବାକୁ କହିଲେ ।

ଭିତରେ ଗୋଟାଏ ଛୋଟ ରୁମ୍ । ଖଟଟିଏ ପଡ଼ିଛି । ମନେ ହେଲା ସେଇ ଖଟ ଉପରେ କିଏ ଯେପରି ସାଦା ଚାଦରଟିଏ ଘୋଡ଼େଇ ହୋଇ ଶୋଇଛି ।

ମୁଁ ଆଉ ଭିତରକୁ ପଶିବାକୁ ସାହସ କରି ପାରିଲି ନାହିଁ ।

ସାର୍ ସର୍ବାଧିକାରୀ କହିଲେ : ଭୟର କିଛି କାରଣ ନାହିଁ । ଆଗେଇ ଯାଅ ଏବଂ

ଖଟ ଉପରୁ ସେହି ଚାଦରଟା ଟାଣିଦିଅ ।

ମୁଁ ତାଙ୍କ ଆଦେଶ ପାଳନ କରି ଚିତ୍କାର କରି ଉଠିଲି । ଚାଦର ତଳେ ଗୋଟେ ମୃତ ଦେହ ଢଙ୍କା ହୋଇଥିଲା ।

ସାର୍ ସର୍ବାଧିକାରୀ କହିଲେ: ଏଠାରେ ଯାହାର ମୃତଦେହ ଶୋଇଥିବାର ଦେଖୁଛ, ସେ ସହରରେ ଜଣେ ବିଶିଷ୍ଟ ଲୋକ । ସାମାଜିକ ପ୍ରତିପତ୍ତି ଠାରୁ ଆରମ୍ଭ କରି ରାଜନୈତିକ ମହଲରେ ଏହାଙ୍କର ଯଥେଷ୍ଟ ପ୍ରଭାବ ଥିଲା । କିନ୍ତୁ ଦିନେ ଦୁଇଦିନ ପରେ ଯେତେବେଳେ ପୋଲିସ୍ ତାଙ୍କୁ ନ ପାଇ, ସମଗ୍ର କଲିକତାକୁ ଘାଣ୍ଟି ଚକଟି ତାଙ୍କର ମୃତ ଦେହ ଏଠାରୁ ଆବିଷ୍କାର କରିବ ଏବଂ ଆଉ ଦୁଇଦିନ ପରେ ଯେତେବେଳେ ତା'ର ହତ୍ୟାକରୀକୁ ଧରି କୋର୍ଟ୍‌ରେ ହାଜିର କରିବନ୍ତ ବିଚାରକ ହତ୍ୟାକରୀକୁ କି ଦଣ୍ଡ ଦେବେ ବୁଝି ପାରୁଛ ?

ମୁଁ ହତବାକ୍ ହୋଇ କେବଳ ଶୁଣି ଯାଉଥିଲି। କିନ୍ତୁ ବୁଝି ପାରୁ ନ ଥିଲି ଏହି ମୃତ ଦେହ ମୋତେ କାହିଁକି ଦେଖାଉଛନ୍ତି, ହତ୍ୟାକରୀ ସହିତ ମୋର ବା ସଂପର୍କ କ'ଣ !!

କିନ୍ତୁ ତା'ପର ମୁହୂର୍ତ୍ତଟା ମୋ ଜୀବନରେ ସବୁଠାରୁ ବଡ଼ କାରୁଣ୍ୟର ଛାପ ଦେଇଗଲା ।

ସାର୍ ସର୍ବାଧିକାରୀ ମୋତେ ତାଙ୍କ ସାଙ୍ଗରେ ଆଉ ଗୋଟାଏ ଘରକୁ ନେଇଗଲେ । ପର୍ଦ୍ଦାଆଡ଼େଇ ମୋତେ ଭିତରକୁ ଟାଣିନେଇ ଯାହାକୁ ଦେଖାଇଲେ, ସେ କିଏ ? ସେ ଯେ ମୋର ଭାଇ । ତାକୁ ଚିହ୍ନିବା ପାଇଁ ମୋତେ ବେଶ୍ କେତୋଟି ମୁହୂର୍ତ୍ତ ଲାଗିଲା । ମୋତେ ବୋଧହୁଏ ଭାଇ ସେଠାରେ ଆଶାକରି ନ ଥିଲା ।

ଭାଇର ସମଗ୍ର ଶରୀରରୁ ଯେପରି ରକ୍ତ ଶୁଖି ଯାଇଥିଲା । ମୁଣ୍ଡର ବାଳଗୁଡ଼ାକ ଫୁର୍ ଫୁର୍ ଉଡୁଥିଲା ।

ସାର୍ ସର୍ବାଧିକାରୀ କହିଲେ  ରାଜେନ୍ ସେ ଲୋକଟାକୁ ହତ୍ୟା କରି ଖୁବ୍ ଅନ୍ୟାୟ କରିଛି ।

ମୁଁ ପୁଣି ଥରେ ଚିତ୍କାର କରି ବୋଧହୁଏ ସଂଜ୍ଞା ହରେଇ ପଡ଼ିଥିଲି । ଯେତେବେଳେ ମୋର ଚେତନା ଫେରି ଆସିଲା, ଦେଖିଲି ଆମର ରସଲଷ୍ଟ୍ରିଟ୍ ଘରେ ଶୋଇଛି ।

ତା'ପରେ ଭାଇ ସାଙ୍ଗରେ ମୋର ଦେଖା ସାକ୍ଷାତ ହୋଇ ନଥିଲା । ମଝିରେ ଭାଇର ହାତ ଲେଖା ସହିତ କିଛି କିଛି ଟଙ୍କା ମୁଁ ପାଉଥିଲି । ଭାଇର ଚିଠିଗୁଡ଼ିକ ମୋତେ ଖୁବ୍ କରୁଣ ମନେ ହେଉଥିଲା ।

ବିରାଟ ଗୋଟାଏ ଫ୍ଲାଟ୍‌ରେ ଏକା ଏକା ସମୟ କଟାଇବା ମୋ ପକ୍ଷରେ ଯଥେଷ୍ଟ ଭୟର କାରଣ ଥିଲା । କିନ୍ତୁ କୌଣସି ଉପାୟ ନ ଥିଲା ।

ଭାଇ ପ୍ରତି ଚିଠିରେ ଲେଖୁଥିଲା, ବର୍ତ୍ତମାନ ପରିସ୍ଥିତିରେ ମୋର ଆତ୍ମଗୋପନ କରିବା ଛଡ଼ା ଅନ୍ୟ ଉପାୟ ନ ଥିଲା । ପୋଲିସ ଆଖିରୁ ବଞ୍ଚିବା ପାଇଁ ମୋତେ ଏହି ପନ୍ଥା ଅବଲମ୍ବନ କରିବାକୁ ପଡ଼ିଛି । ଆଉ ବେଶୀଦିନ ନୁହେଁ, ସାର୍ କହିଛନ୍ତି ଆଉ ଅଳ୍ପଦିନ ପରେ ମୋତେ ସେ ଅନ୍ୟ ସହରକୁ ପଠାଇଦେବେ । ଆମେ ସେଠାରେ ପୁଣି ମୁକ୍ତ ଆକାଶର ବିହଙ୍ଗ ହୋଇ ଉଡ଼ି ବୁଲିବା ।

କିନ୍ତୁ ଭାଇର ସେ ସ୍ବପ୍ନ ସଫଳ ହେବ । ପୂର୍ବରୁ ମୁଁ ଭୀଷଣ ଅର୍ଥାଭାବ ଅନୁଭବ କଲି । ଯଦିଓ ମଝିରେ ମଝିରେ ଚିଠି ଖଣ୍ଡିଏ ଖଣ୍ଡିଏ କିଏ ଆଣି ଆମ ଫ୍ଲାଟ୍‌ର ଲେଟର

ବକ୍ସରେ ଗଳାଇ ଦେଇ ଯାଉଥିଲେ, କିନ୍ତୁ ଟଙ୍କା ମୁଁ ପାଉ ନ ଥିଲି । ଘର ଭଡ଼ା ପ୍ରାୟ ଦୁଇ ତିନି ମାସର ବାକି ପଡ଼ିଗଲା । ଦୁଃଖର କାହାଣୀ କାହାକୁ କହିବି ? ଶେଷରେ ଦିନେ ଯାଇ ସାର୍ ସର୍ବାଧିକାରୀଙ୍କ ଘରେ ହାଜର୍ ହେଲି ।

ସାର୍ ସର୍ବାଧିକାରୀ ଶାନ୍ତ କଣ୍ଠରେ ସମବେଦନା ଜଣାଇ କହିଲେ : ରାଜେନ୍ ବାବଦରେ କୌଣସି ପ୍ରକାର ସାହାଯ୍ୟ ତମକୁ ଦେବା ମୋ ପକ୍ଷରେ ସମ୍ଭବ ନୁହେଁ । କାରଣ ରାଜେନ୍ ପାଇଁ ମୋତେ ବହୁ ଅର୍ଥ ବ୍ୟୟ କରିବାକୁ ପଡୁଛି । ଯେଉଁଟା ମୋ କର୍ତ୍ତବ୍ୟ ବାହାରର କଥା । ତେବେ ତମକୁ ମୁଁ ଅର୍ଥ ଉପାର୍ଜ୍ଜନର ଗୋଟାଏ ବାଟ ଦେଖାଇ ଦେଇପାରେ ।

ମୁଁ ସାର୍ ସର୍ବାଧିକାରୀଙ୍କ ମୁହଁକୁ କରୁଣ ଆଖିରେ ଅନାଇ ରହିଥିଲି ।

ସେ ପୁଣି ମୋତେ କହିଲେ : ତୁମେ ଯଦି ମୋ ପ୍ରସ୍ତାବରେ ରାଜିଥାଅ, ତେବେ ଏଇ ଠିକଣାରେ ଯାଇ ଦେଖା କର । ସେ ତମର ଗୋଟାଏ ସୁବନ୍ଦୋବସ୍ତ କରିଦେବେ ।

ସାର୍ ସର୍ବାଧିକାରୀ ଖଣ୍ଡିଏ ଛପା କାର୍ଡ ମୋ ହାତକୁ ବଢ଼ାଇଦେଇ ଉଠି ଯାଉଥିଲେ । ମୁଁ କହିଲି : ଭାଇ ସଙ୍ଗରେ ମୋର ଟିକିଏ ଦେଖାକରିବାକୁ ଇଚ୍ଛା ହେଉଛି । ଦୟାକରି

ସାର୍ ସର୍ବାଧିକାରୀ ମୁହୂର୍ତ୍ତେ ଠିଆ ହୋଇ ମୋ କଥାଟକ ଶୁଣିସାରି କହିଲେ : ଦୁଇଦିନ ଛାଡ଼ି ଆସିବ ।

ତା'ପରେ ସେ ଚାଲିଗଲେ ।

ମୁଁ ଫେରିଆସିଲି ।

ହାତରେ ସେହି ଛାପା କାର୍ଡ ଖଣ୍ଡିକ ମୋ ଜୀବନ ଯାପନର ଏକମାତ୍ର ଆଶ୍ରୟ ହୋଇପଡ଼ିଥିଲା ।

ଆନମନା ହୋଇ ଫୁଟ୍‌ପାଥ୍ ଉପରେ ନାନା କଥା ଚିନ୍ତା କରି କରି ମୁଁ ଚାଲିଥିଲି । ମିସେସ୍ ସ୍ମିଥ୍ ବାରମ୍ବାର ମୋ ଭାବନା ମଝିରେ ଆସି ଠିଆ ହେଉଥିଲେ । ଦୁର୍ଦ୍ଦିନରେ ପ୍ରକୃତ ବନ୍ଧୁ ସେ ଥିଲେ ଆମର । ତାଙ୍କ କଥା ନ ମାନି ଗ୍ରାଣ୍ଟ ଷ୍ଟ୍ରିଟ୍ ଛାଡ଼ି ଚାଲି ଆସିବା ଆମ ଜୀବନରେ ଗୋଟିଏ ବଡ଼ ଅଭିଶାପ ହୋଇଛି ।

କିନ୍ତୁ ଏତେ ପରେ ଆଉ ମିସେସ୍ ସ୍ମିଥ୍‌ଙ୍କ ପାଖରେ ମୁହଁ ଦେଖାଇବାକୁ ବାଟ ନଥିଲା ।

ମୁଁ ନାନା ଭାବନା ଦୁର୍ଭାବନା ମଝିରେ ଆତ୍ମସତ୍ତା ହରାଇ ଚାଲିଥିଲି ।

ହଠାତ୍ ଫୁଟ୍‌ପାଥ୍ କଡ଼ରେ ମୋର ପାଖକୁ ଲାଗି ଗୋଟାଏ ମଟର ବ୍ରେକ୍ କଲା । ମୁଁ ଚାହିଁ ଦେଖିଲି, ରଞ୍ଜନ । ମୋତେ ଚାହିଁ ଚାହିଁ ଅଳ୍ପ ଅଳ୍ପ ହସୁଛି ।

ମୁଁ ଆଗପଛ ସବୁ ଭୁଲିଯାଇନ୍ତ ଚଳନ୍ତ ଗାଡ଼ିର ଦରଜା ନିଜ ହାତରେ ଖୋଲି, ଗାଡ଼ି ଭିତରକୁ ଉଠିଗଲି ।

ଅଥଳ ସମୁଦ୍ରରେ ଯେପରି କୂଳ ପାଇଲି ମୁଁ ।

ରଞ୍ଜନ ମୋ ମୁଣ୍ଡରେ ହାତ ବୁଲେଇ ଦେଇ ସାନ୍ତ୍ୱନା ଦେବା ସ୍ୱରରେ କହିଲା : ତମେ ସବୁ ଚାଲିଗଲ, ମୋତେ ଠିକଣାଟା ବି ଦେଇଗଲ ନାହିଁ ? ମୁଁ କେତେ ଖୋଜିଛି ।

ମୋର ସେତେବେଳେ କଥା କହିବାର ଶକ୍ତି ନ ଥିଲା ।

ମୁଁ ରଞ୍ଜନ କାନ୍ଧରେ ମୁହଁଗୁଞ୍ଜି କାନ୍ଦିବାକୁ ଆରମ୍ଭ କରିଦେଇ ଥିଲି ।

ରଞ୍ଜନ ପୁଣି କହିଲା  ମିସେସ୍ ସ୍ମିଥ୍ ବି ତମ ଠିକଣା କହି ପାରିଲେ ନାହିଁ । ଶେଷରେ ମୁଁ ନିରାଶ ହୋଇ ଚୁପ୍ ରହିଲି ।

ରଞ୍ଜନ ସେଦିନ ମୋତେ ଗୋଟାଏ ହୋଟେଲକୁ ନେଇ ବହୁତ ଖୁଆଇଲା । ଜୀବନକୁ ଜୀବନ ପରି ଉପଭୋଗ କରିବା ପାଇଁ ମିସେସ୍ ସ୍ମିଥ୍ ତାକୁ କିପରି ଶିକ୍ଷା ଦେଇଥିଲେ ସେ ସବୁ କଥା ମଧ କହିଥିଲା । ରଞ୍ଜନର ପ୍ରଥମ ଯୌବନରେ ମିସେସ୍ ସ୍ମିଥ୍ଙ୍କ ପରି ଜଣେ ଉପଯୁକ୍ତ ଶିକ୍ଷକ ପାଇ କିପରି ସେ ଆନନ୍ଦ ପାଇଛି ସେ କଥା ମଧ କହିଥିଲା ।

ଆଉ କହିଥିଲା , ଖୁବ୍ ନିକଟରେ ସେ ବିଦେଶ ଯାଉଛି । ଅବଶ୍ୟ ତା'ର ସେହି ବିଦେଶ ଯିବା ମୂଳରେ ମିସେସ୍ ସ୍ମିଥ୍ଙ୍କର ଯେ ଖାଲି ପ୍ରେରଣା ଅଛି ସେ କଥା କହିଲେ ଭୁଲ୍ ହେବ, ସେ ବିଦେଶରେ ଅଧ୍ୟୟନର ସମସ୍ତ ଖର୍ଚ୍ଚ ମଧ ଯୋଗାଡ଼ କରି ଦେଇଛନ୍ତି ।

ମୁଁ ନୀରବରେ ବସି ବସି ରଞ୍ଜନ ମୁହଁରୁ ମିସେସ୍ ସ୍ମିଥ୍ଙ୍କର ପ୍ରଶଂସା ଶୁଣୁଥିଲି ।

ରଞ୍ଜନ ପୁଣି କହିଲା : ମିସେସ୍ ସ୍ମିଥ୍ ବି ମୋ ସହିତ ଯାଉଛନ୍ତି । ତାଙ୍କର ସ୍ୱାମୀ ଅସୁସ୍ଥ ହୋଇ ସୁଇଜରଲାଣ୍ଡରେ ଚିକିତ୍ସିତ ହେଉଛନ୍ତି । ମୁଁ ତାଙ୍କୁ ସେଠାରେ ପହଞ୍ଚାଇ ଦେବି ।

ରଞ୍ଜନର ମୁହଁ ଆଶାର ଆଲୋକରେ ଜଳି ଉଠିଥିଲା ।

ମୁଁ ତା'ର ଶୁଭ କାମନା କରି କହିଥିଲି : ଭଗବାନ ତମର ମଙ୍ଗଳ କରନ୍ତୁ ।

ରଞ୍ଜନ ମୋର ଆହୁରି ଟିକିଏ ପାଖକୁ ଲାଗିଆସି, ମୋ କାନ ପାଖରେ ଥିରି ଥିରି କହିଥିଲା : ଏସବୁ ପରେ ବି ମୋର ଗୋଟାଏ ଅଭିଳାଷ ଅଛି ।

ମୁଁ ରଞ୍ଜନର ମନ କଥା ବୁଝିବାକୁ ଚେଷ୍ଟା ନ କରି କହିଥିଲି : ସେଇଟାବି ଅପୂରଣ ରହିବ ନାହିଁ ।

ସତ କହୁଚ ? ରଞ୍ଜନ ଉଲ୍ଲସିତ ହୋଇ ପଚାରିଲା ।

ମୁଁ କହିଥିଲି : ଭାଗ୍ୟ ଯାହାର ପ୍ରସନ୍ନ, ତା'ର ଅପୂରଣ କିଛି ରୁହେ ନାହିଁ ।

ସେହି ମୁହୂର୍ତ୍ତରେ ରଞ୍ଜନ ମୋତେ କୋଳକୁ ଟାଣି ନେଇ ମୋ ଗଣ୍ଡ ଦେଶରେ ଅଜସ୍ର ଚୁମ୍ବନ ଆଙ୍କି ଦେଇଥିଲା ।

ମୁଁ ବାଧା ଦେବାର ବି ଅବସର ପାଇ ନ ଥିଲି ।

ତା'ପରେ ସେ ତା' ହାତରୁ ଗୋଟିଏ ମୁଦି ବାହାର କରି ମୋ ଆଙ୍ଗୁଳିରେ ପିନ୍ଧାଇ ଦେଇଥିଲା ।

ମୁଁ ଆନନ୍ଦରେ କି ଦୁଃଖରେ କେଜାଣି, ସେଦିନ ଖୁବ୍ ଜୋର୍‌ରେ କାନ୍ଦି ଉଠିଥିଲି ।

ରଞ୍ଜନ ମୋ ଅଶ୍ରୁ ସହିତ ଅଶ୍ରୁ ମିଶାଇ କହିଥିଲା : ବିଦେଶରୁ କୋର୍ସ ଶେଷ କରି ଫେରିବାକୁ ତିନୋଟି ବର୍ଷ ଲାଗିବ। ସେଇ ତିନୋଟି ବର୍ଷ  ମୋ ପାଇଁ ତୁମକୁ ଅପେକ୍ଷା କରିବାକୁ ହେବ ରୀଟା । ପ୍ରଥମ ଦର୍ଶନରୁ ତୁମକୁ ମୁଁ ମୋର ହୃଦୟରେ ସ୍ଥାନ ଦେଇଛି । ତୁମକୁ ନ ପାଇଲେ ଜୀବନଟା ମୋର ଅସଂପୂର୍ଣ୍ଣ ରହିଯିବ ।

ମୁଁ ସେଦିନ କେବଳ ରଞ୍ଜନ ଛାତିରେ ମୁହଁ ଗୁଞ୍ଜି କାନ୍ଦିଥିଲି । କଥା କହିବାର ଶକ୍ତି ମୋର ଲୋପ ପାଇ ଯାଇଥିଲା ।

ତା'ପରେ ରଞ୍ଜନ ସହିତ ନିତି ସଂଧ୍ୟାବେଳେ ଏକ ନିର୍ଦ୍ଦିଷ୍ଟ ହୋଟେଲରେ ଦେଖା ହୋଇଥିଲା ଏବଂ ସେ ବିଦେଶ ଯିବାର ପୂର୍ବ ମୁହୂର୍ତ୍ତ ପର୍ଯ୍ୟନ୍ତ ତା' ସହିତ ଦେଖା ହେବାର ସମସ୍ତ ସମ୍ଭାବନା ଥିଲା । କିନ୍ତୁ ମଝିରେ ବିପର୍ଯ୍ୟୟ ଘଟିଲା ମୋ ଭାଗ୍ୟରେ ।

ଦିନକୁ ଦିନ ମୁଁ ଏତେ ନିସ୍ୱ ହୋଇ ଉଠିଥିଲି, ପେଟଟାକୁ ଭରିବାର ଉପାୟ ମୋର ନ ଥିଲା । ଶେଷରେ ବାଧ ହେଲି ସାର୍ ସର୍ବାଧିକାରୀଙ୍କ ପ୍ରଦତ୍ତ ଠିକଣାରେ ଯାଇ ହାଜିର୍ ହେବାକୁ ।

ସେଠାରେ ଯାହାଙ୍କ ସହିତ ଦେଖା ହେଲା, ତାଙ୍କ ନାଁ ମିଷ୍ଟର ବାଜୋଡ଼ିଆ । କୋଟିପତି । ବୟସ୍କ ଭଦ୍ରଲୋକ । ମୋତେ ସେ ଦେଖିବାକ୍ଷଣି, ମୋ ମୁହଁକୁ ଅନେକ ସମୟ ନିର୍ଲଜଙ୍କ ପରି ଅନାଇ ରହିଥିଲେ । ମୋତେ ତାଙ୍କ ଚାହାଣୀର ଭଙ୍ଗୀ ଯଦିଓ ଭଲ ଲାଗିଲା ନାହିଁ, ତଥାପି ମୁଁ ଚୁପ୍‌ଚାପ୍ ତଳକୁ ମୁହଁ କରି ବସିଥିଲି ।

ମିଷ୍ଟର ବାଜୋଡ଼ିଆ କହିଲେ : ସାର୍ ସର୍ବାଧିକାରୀ ମୋର ଅନ୍ତରଙ୍ଗ ବନ୍ଧୁ । ସେ ଯେତେବେଳେ ତୁମକୁ ପଠାଇଛନ୍ତି, ତୁମର ଗୋଟାଏ ବ୍ୟବସ୍ଥା କରିବାକୁ ହେବ । ଆଚ୍ଛା, ତୁମେ ଟାଇପ୍ କରି ଜାଣ ?

ମୁଁ ମନେ ମନେ ଭୀଷଣ ଲଜ୍ଜିତ ହୋଇ ମୁଣ୍ଡ ହଲାଇଥିଲି ।

ମିଷ୍ଟର ବାଜୋଡ଼ିଆଙ୍କୁ ଟିକିଏ ଚିନ୍ତିତ ମନେ ହେଲା ।

ସେ ପୁଣି ପଚାରିଲେ : ତୁମର ମାସିକ କେତେ ଟଙ୍କା ହେଲେ ଚଳିବ ?

ମୁଁ କିଛି ଉତ୍ତର ଦେଇ ପାରିଲି ନାହିଁ । ମୋର ମାସକୁ କେତେ ଟଙ୍କାର ପ୍ରୟୋଜନ ହେବ, ତା' ମୁଁ ନିଜେ ବି ଜାଣି ନ ଥିଲି ।

ମିଷ୍ଟର ବାଜୋଡ଼ିଆ ବହୁ ଚିନ୍ତା ଭାବନା କରି ମୋତେ କହିଲେ,

: ଠିକ୍ ଅଛି, ତୁମେ କାଲି ଦଶଟାବେଳକୁ ଆସ ।

ମୁଁ ସେଦିନ ମିଷ୍ଟର ବାଜୋଡ଼ିଆଙ୍କ ଅଫିସରୁ ଚାଲି ଆସିଥିଲି ।

ରସଲ ଷ୍ଟ୍ରିଟ୍ ଫ୍ଲାଟକୁ ଫେରି ଯିବା ପାଇଁ ସେଦିନ ମୋ ମନରେ ସାହସ ନ ଥିଲା । ମୁଁ ଚାଲିଲି ସାର୍ ସର୍ବାଧିକାରୀଙ୍କ ଗୃହ ଅଭିମୁଖରେ ।

ଭାଇକି ଥରେ ଦେଖିବା ପାଇଁ ମୋ ପ୍ରାଣରେ ପ୍ରବଳ ଇଚ୍ଛା ଜାଗ୍ରତ ହୋଇଥିଲା । ସାର୍ ସର୍ବାଧିକାରୀଙ୍କ ପାଖରେ ମୁଁ ବହୁ ଅନୁନୟ ବିନୟ ପ୍ରକାଶ କଲି । କିନ୍ତୁ ତାଙ୍କ ଭିତରଟା ଯେ ଏତେ କଠିନ, ସେଦିନ ମୁଁ କାନ୍ଦି କାନ୍ଦି ତାଙ୍କ ପାଦତଳେ ଲୋଟି ଯାଇଥିଲେ ବି ସେ ମୋ ଦୁଃଖରେ ତରଳି ନ ଥିଲେ ।

ତାଙ୍କ ମୁହଁରେ ସାମାନ୍ୟ ଟିକିଏ ପରିବର୍ତ୍ତନ ବି ମୁଁ ଲକ୍ଷ୍ୟ କରି ନ ଥିଲି ।

ସର୍ବ ଶେଷରେ ସାର୍ ସର୍ବାଧିକାରୀ କହିଥିଲେ, ତୁମେ ମିଷ୍ଟର ବାଜୋଡ଼ିଆଙ୍କ ଫାର୍ମରେ ଆପଏଣ୍ଟମେଣ୍ଟ ପାଇଲା ପରେ, ମୁଁ ରାଜେନ ସହିତ ତମର ଦେଖା ହେବାର ବ୍ୟବସ୍ଥା କରିଦେବି ।

ସେଦିନ ରାଗରେ ମୋର ସର୍ବାଙ୍ଗ ଜଳି ଉଠିଥିଲା ।

ମୋର ଆଖିର ଲୁହ ଅଗ୍ନି ସ୍ଫୁଲିଙ୍ଗରେ ପରିଣତ ହୋଇଯାଇଥିଲା ।

କିନ୍ତୁ ବାଟ କିଛି ଖୋଜି ପାଇ ନଥିଲି ।

ଭାବିଥିଲି ପୋଲିସ ଷ୍ଟେସନରେ ଯାଇ ସାର୍ ସର୍ବାଧିକାରୀଙ୍କ ବିରୁଦ୍ଧରେ ସବୁକଥା କହିବି । କିନ୍ତୁ ମୋ କଥା ସେମାନେ କ'ଣ ଶୁଣିବେ ?

ତା'ଛଡ଼ା ମୋ ଭାଇକୁ ଯଦି ସେ ହତ୍ୟା ଅପରାଧରେ ଧରାଇ ଦିଅନ୍ତି !! ମୋ ମନର ସବୁ ପ୍ରକାର ସମ୍ଭାବନା ମଉଳି ପଡ଼ିଥିଲା ।

ରଞ୍ଜନ ପାଖରେ ମୋ ଦୁର୍ଦ୍ଦଶାର କାହାଣୀ କହିବି ବୋଲି ଠିକ୍ କରିଥିଲି ।

କିନ୍ତୁ ସେଦିନ ରଞ୍ଜନ ନିର୍ଦ୍ଦିଷ୍ଟ ସ୍ଥାନକୁ ଆସିଲା ନାହିଁ । ଦୁଃଖ, ବେଦନା ଓ ହତାଶାକୁ ପୁଞ୍ଜି କରି ରାତିରେ ପାଣି ଗ୍ଲାସେ ପିଇ, ଲୁଚି ଲୁଚି ଯାଇ ଫ୍ଲାଟ୍ ମଧ୍ୟରେ ପ୍ରବେଶ କରିଥିଲି ।

ସମଗ୍ର ରାତିରେ ଚିନ୍ତା ଭାବନା ଭିତରେ ମିଷ୍ଟର ବାଜୋଡ଼ିଆଙ୍କ ଅଫିସ୍‌ରେ ଚାକିରି କରିବାକୁ ସିଦ୍ଧାନ୍ତ କଲି ।

ମିଷ୍ଟର ବାଜୋଡ଼ିଆ ମୋତେ ଦୟାକରି ଶହେ ପଚିଶ ଟଙ୍କାର ଖଣ୍ଡିଏ ଚାକିରୀ ଦେଲେ ଏବଂ ଆପଏଣ୍ଟମେଣ୍ଟ ଦେଲେ ଆସନ୍-ସୋଲରେ । ତାଙ୍କ ୱାର୍କସପ୍‌ରେ । ସେଠାରେ ମୋ ରହିବା ପାଇଁ କ୍ୱାର୍ଟରର ବନ୍ଦୋବସ୍ତ ମଧ କରିଦେଲେ ।

ମୁଁ ଆଗପଛ ଚିନ୍ତା ନ କରି ମିଷ୍ଟର ବାଜୋଡ଼ିଆଙ୍କ ଅଫର୍ ମାନିନେଲି । ପରଦିନ ଆସାନସୋଲରେ ଯାଇ ମୋର ଜଏନ୍ କରିବା କଥା ।

ତା' ପୂର୍ବରୁ ରଞ୍ଜନ ସହିତ ମୋର ଥରେ ଦେଖା ହେବା ଏକାନ୍ତ ପ୍ରୟୋଜନ ମନେ ହୋଇଥିଲେ ବି ସୁଯୋଗ ଜୁଟିଲା ନାହିଁ ।

ମୁଁ ଆସନ୍‌ସୋଲ ଚାଲିଗଲି ।

ସେଠାରେ କାମର ତାଡ଼ନା ବିଶେଷ କିଛି ନଥିଲା । ମୋତେ ସେ ଷ୍ଟୋର୍‌ରେ ଆପଏଣ୍ଟ କରିଥିଲେ । ଦୈନିକ କେତେ ମାଲ୍ ଗଲା, କେତେ ଆସିଲା, ତା'ରି ହିସାବ ରଖିବାକୁ ହୁଏ । ସେଠାରେ ଆହୁରି ତିନିଜଣ ସହକର୍ମୀ ଥିଲେ । ସେମାନଙ୍କ ମଧ୍ୟରେ ଜଣେ ମହିଳା ମଧ ଥିଲେ ।

ଭଦ୍ରମହିଳା ଦେଖିବାକୁ ଅସୁନ୍ଦର ଏବଂ ବୟସ୍କା ।

ମୋତେ ଦେଖି ସେ ଖୁବ୍ ଆନନ୍ଦ ପ୍ରକାଶ କଲେ । କାମଦାମ ଶିଖେଇଦେବାର ପ୍ରତିଶ୍ରୁତି ଦେଲେ ।

ଦିନେ ଦୁଇଦିନରେ ମୁଁ ଜାଣି ପାରିଲି ଯେ, ଭଦ୍ର ମହିଳାର ବାହାରଟା ଅସୁନ୍ଦର ହେଲେ ବି ଭିତରଟା ଖୁବ୍ କୋମଳ । ସେ ଖୁବ୍ ସ୍ନେହପରାୟଣା ।

ତାଙ୍କ ସାଙ୍ଗ ପାଇ ମୁଁ ନାନା ପ୍ରକାର ଦୁର୍ଭାବନରୁ ଟିକିଏ ମୁକ୍ତି ପାଇଲି ।

କିନ୍ତୁ ସପ୍ତାହଟିଏ ଶେଷ ନ ହେଉଣୁ ମିଷ୍ଟର ବାଜୋଡ଼ିଆ ଆସି ହାଜର ହେଲେ ଆସାନ୍‌ସୋଲରେ ।

ସେ ମୋ ଜୀବନରେ ଆଉ ଏକ ଅନୁଭୂତି ।

ମୁଁ ଲକ୍ଷ୍ୟ କଲି ମିଷ୍ଟର ବାଜୋଡ଼ିଆ ଯେପରି ମୋର ସୁଖସ୍ୱାଚ୍ଛନ୍ଦ୍ୟ ପାଇଁ ବ୍ୟସ୍ତ ହୋଇ ଉଠିଛନ୍ତି ।

ମୋତେ ସେ ତାଙ୍କ ବଙ୍ଗଲୋକୁ ଡାକି ନେଇ ମୋର ସୁବିଧା ଅସୁବିଧା କଥା ପଚାରିଲେ । ଏଥର ତାଙ୍କଠାରୁ ଯଥେଷ୍ଟ ଆନ୍ତରିକତାର ଆଭାସ ପାଇ ଆଶ୍ୱସ୍ତ ହୋଇ

ପାରିଲି ନାହିଁ ।

ଆରଦିନ ମୋତେ ଡାକି ପଠାଇ ମୋ ଆଗରେ ଗୋଟିଏ ପ୍ରସ୍ତାବ ବାଢ଼ିଲେ । କହିଲେ : ସାତ ଆଠ ଦିନ ପାଇଁ ମୁଁ ଟୁର୍‌ରେ ଯାଉଛି । ଭାରତର ପ୍ରାୟ ସବୁ ବଡ଼ ବଡ଼ ସହର ବୁଲିବାକୁ ହେବ । ସେଥିପାଇଁ ପ୍ରାଇଭେଟ୍ ସେକ୍ରେଟାରୀ ହିସାବରେ ତୁମକୁ ମୁଁ ସଂଗରେ ନେବାକୁ ଚାହେଁ ।

ପ୍ରଥମେ ମୁଁ କୌଣସି ଉତ୍ତର ଦେଇ ପାରି ନ ଥିଲି ।

ଶେଷ ପର୍ଯ୍ୟନ୍ତ ବି ଅରାଜି ହେବାର ଉପାୟ ନ ଥିଲା ।

ମିଷ୍ଟର ବାଜୋଡ଼ିଆ ପ୍ରଥମେ ଦିଲ୍ଲୀ ଗଲେ । ସେଠାରେ ସେ ଯେଉଁ ହୋଟେଲରେ ଉଠିଲେ, ସେଇ ହୋଟେଲରେ ସାମ୍‌ନା ସୁଇଟ୍‌ରେ ମୋ ପାଇଁ ଗୋଟିଏ ବେଡ୍‌ର ବ୍ୟବସ୍ଥା କରା ହୋଇଥିଲା ।

ମୁଁ ସ୍ୱସ୍ତିରେ ନିଶ୍ୱାସ ମାରି ପାରୁ ନ ଥିଲି ।

ମିଷ୍ଟର ବାଜୋଡ଼ିଆ ମୋତେ ହୋଟେଲରେ ଛାଡ଼ିଦେଇ କୁଆଡ଼େ ଚାଲି ଯାଇଥିଲେ, ରାତି ନଅଟାଯାଏ ଫେରି ନ ଥିଲେ ।

ମୁଁ ତାଙ୍କ ପାଇଁ ପ୍ରତୀକ୍ଷା କରି କରି ଶେଷରେ ଖାଇ ପିଇ ଶୋଇ ପଡ଼ିଲି ।

ଖୁବ୍ ଗଭୀର ରାତ୍ରିରେ ମୋର ନିଦ ଭାଙ୍ଗିଲା ।

ଚମକି ଉଠି ଦେଖିଲି, ମିଷ୍ଟର ବାଜୋଡ଼ିଆ ମୋ ବିଛଣା ଉପରେ ବସି ଅନୁନୟ କଣ୍ଠରେ ମୋତେ କ'ଣ କହୁଛନ୍ତି ।

ମୁଁ ଭୂତ ଦେଖିଲା ପରି ବିଛଣା ଉପରୁ ତଳକୁ ଡେଇଁ ପଡ଼ି ବହୁ କଷ୍ଟରେ ଆତ୍ମସମ୍ବରଣ କଲି ।

ମିଷ୍ଟର ବାଜୋଡ଼ିଆ ମୋ ପାଖକୁ ଯାଇ ମୋର ହାତ ଧରି ଅନେକ ଆଶା ଦେଲେ, ଆଶ୍ୱାସନା ଦେଲେନ୍ତ ଉନ୍ନତିର ମାର୍ଗ ନିର୍ଦ୍ଧାରଣ କରି, ଉତ୍ତେଜନା ପୂର୍ଣ୍ଣ କଥାମାନ କହିବାକୁ ଲାଗିଲେ ।

କିନ୍ତୁ ମୁଁ ତାଙ୍କର କୌଣସି ସର୍ତ୍ତରେ ଆତ୍ମସମର୍ପଣ କରିବାକୁ ରାଜି ନ ଥିଲି ।

ମିଷ୍ଟର ବାଜୋଡ଼ିଆ ନିଜର ଆୟତ୍ତରେ ନ ଥିଲେ ।

ମୁଁ ଭୟରେ ଗୋଟିପଣ ଥରୁଥିଲି ।

ମିଷ୍ଟର ବାଜୋଡ଼ିଆ ଶେଷରେ ରୁଦ୍ରରୂପ ଧାରଣ କରି ଯେତେବେଳେ ମୋ ପାଖକୁ ଛୁଟି ଆସୁଥିଲେ , ସେତିକିବେଳେ ହଠାତ୍ ଦରଜାରେ ନକ୍ ହେଲା ।

: କିଏ ? ମିଷ୍ଟର ବାଜୋଡ଼ିଆ ଚିତ୍କାର କରି ଉଠିଲେ ।

: କଲିକତାରୁ ଟ୍ରଙ୍କକଲ ଆସିଛି, ବାହାରୁ ଶୁଣିବାକୁ ମିଳିଲା ।

ମିଷ୍ଟର ବାଜୋଡ଼ିଆ ଯେପରି ଆତ୍ମସତ୍ତା ଫେରି ପାଇଲେ । ସେ ଦରଜା ଖୋଲି ଯିବା ପୂର୍ବରୁ ଥରେ ମୋ ଆଡ଼କୁ ଚାହିଁ ଦ୍ରୁତ ପଦରେ ବାହାରି ଗଲେ ।

ମୁଁ ଭଗବାନଙ୍କ ଉଦ୍ଦେଶ୍ୟରେ ଯୋଡ଼ ହାତରେ ପ୍ରଣାମ କରି, ମିଷ୍ଟର ବାଜୋଡ଼ିଆଙ୍କ ପଛେ ପଛେ ବାହାରି ଯିବାକୁ ଚେଷ୍ଟା କରିଥିଲି ।

କିନ୍ତୁ ବୃଥା ଚେଷ୍ଟା । ମିଷ୍ଟର ବାଜୋଡ଼ିଆ ବାହାରୁ ଦରଜା ବନ୍ଦ କରି ଦେଇ ଯାଇଥିଲେ ।

ମୁଁ ନୀରବରେ ଠିଆ ହୋଇ ଭଗବାନଙ୍କୁ ପ୍ରାର୍ଥନା କରିବା ଛଡ଼ା ଅନ୍ୟ କିଛି ବାଟ ନ ଥିଲା ।

ପ୍ରାୟ ପନ୍ଦର ମିନିଟ୍ ପରେ ମିଷ୍ଟର ବାଜୋଡ଼ିଆ ଫେରିଲେ । ମୁଖର ଭଙ୍ଗୀରେ ତାଙ୍କର ଯଥେଷ୍ଟ ପରିବର୍ତ୍ତନ ହୋଇଥିଲା । ସେ ମୋ ଆଡ଼କୁ ଏକ ତୀର୍ଯ୍ୟକ ଦୃଷ୍ଟିରେ ଚାହିଁ ନିଜ ବେଡ୍ ଉପରେ ଯାଇ ବସିଥିଲେ । ତା'ପରେ ଲେଦର ସୁଟ୍‌କେଶଟା ବାହାର କରି କ'ଣ ସବୁ ଘଣ୍ଟା ଚକଟା କରିଥିଲେ ।

ଧୀରେ ଧୀରେ ମୁଁ ଯାଇ ମୋ ବିଛଣା ଉପରେ ଶୋଇ ପଡ଼ିଥିଲି ।

ସେଦିନ ରାତିଟା ବହୁ ଆଶଙ୍କାର ରାତି ହେଲେ ମଧ୍ୟ ନିର୍ବିଘ୍ନରେ କଟି ଯାଇଥିଲା ।

ପରଦିନ ସକାଳୁ ମିଷ୍ଟର ବାଜୋଡ଼ିଆ ଉଠି କଅଁଳ କଣ୍ଠରେ ଡାକି ମୋର ନିଦ୍ରା ଭଙ୍ଗ କରାଇଥିଲେ ।

ମୁଁ ଉଠିଥିଲି ଏବଂ ବିଶ୍ୱସ୍ତ କର୍ମଚାରୀ ଭଳି ମିଷ୍ଟର ବାଜୋଡ଼ିଆଙ୍କ ଆଦେଶ ପାଳନ ପାଇଁ ପ୍ରତୀକ୍ଷା କରିଥିଲି ।

ମିଷ୍ଟର ବାଜୋଡ଼ିଆ ମୋ ଉପରେ ଏକ ଗୁରୁତର କାର୍ଯ୍ୟର ଭାର ଦେବାକୁ ଚାହିଁଥିଲେ । ସେ କହିଲେ, ସେଦିନର ପ୍ଲେନ୍‌ରେ ମୋତେ ଏକ ବିଶେଷ ପଦାର୍ଥ ନେଇ କଲିକତା ଫେରି ଯିବାକୁ ହେବ ଏବଂ ପରଦିନ ସାର୍ ସର୍ବାଧିକାରୀଙ୍କ ଠାରୁ ଆଉ ଏକ ପଦାର୍ଥ ଧରି ଉଡ଼ି ଆସିବାକୁ ହେବ ।

ପ୍ରଥମେ ମୁଁ ମିଷ୍ଟର ବାଜୋଡ଼ିଆଙ୍କ ମୁହଁକୁ ଅବାକ୍ ହୋଇ ଚାହିଁଥିଲି ।

ସେ ମୋତେ କହିଥିଲେ : ତୁମର ଏ କାମ ଚାକିରିର ବାହାରେ ଏଥିପାଇଁ ବିଶେଷ ଭାବରେ ପାରିଶ୍ରମିକ ଦିଆଯିବ ।

ମୁଁ କିନ୍ତୁ ମିଷ୍ଟର ବାଜୋଡ଼ିଆଙ୍କ ପ୍ରସ୍ତାବ ଖୁବ୍ ସହଜ ଭାବରେ ଗ୍ରହଣ କରି ପାରି ନ ଥିଲି ।

ତଥାପି ମୋତେ ବାଧ୍ୟ ହୋଇ ଗୋଟିଏ ଅଠର ଇଞ୍ଚିଆ ସୁଟ୍‌କେଶ ଧରି ସେଇଦିନ ପାଲାମରୁ ଦମ୍‌ଦମ୍ ଯାଏ ଉଡ଼ିବାକୁ ହୋଇଥିଲା ।

ମୁଁ ଦମ୍‌ଦମ୍ ଏରୋଡ୍ରମରୁ ବାହାରକୁ ବାହାରିବାକ୍ଷଣି ଦେଖିଥିଲି, ମୋତେ ଜଣେ ଖାକି ପୋଷାକ ପରିହିତ ଲୋକ ସାଲ୍ୟୁଟ୍ କରି କହିଥିଲା, ସାର୍ ଗାଡ଼ି ପଠାଇଛନ୍ତି ।

ମୁଁ ଲୋକଟି କଥାରେ କୌଣସି ପ୍ରତିବାଦ ନ କରି ତା' ପଛେ ପଛେ ଯାଇ ଗୋଟିଏ କଳା ରଙ୍ଗର ଆମ୍ବାସାଡ଼ର ଗାଡ଼ିରେ ଉଠି ବସିଥିଲି ।

ଅଠର ଇଞ୍ଚିଆ ସେହି ଲେଦର ସୁଟ୍‌କେଶଟି ମୋ ମନରେ ଯେତିକି ଭୀତି ସଞ୍ଚାର କରିଥିଲା, ସେତିକି କୌତୁହଳ ବି ବଢ଼ାଇ ଥିଲା ।

ସାର୍ ସର୍ବାଧିକାରୀ ମୋତେ ସେଦିନ ଖୁବ୍ ପ୍ରଶଂସା କଲେ ।

ମୋର ଭବିଷ୍ୟତ ଉଜ୍ଜ୍ୱଳ ସମ୍ପର୍କରେ ବହୁ କଥା କହିଲେ । ଫେରିଲା ବେଳେ ଡ୍ରୟାରରୁ ଦଶଟଙ୍କା ନୋଟର ଗୋଟିଏ ବଣ୍ଡିଲ ବାହାର କରି ମୋ ହାତକୁ ବଢ଼ାଇ ଦେଇ କହିଲେ: ତୁମର ପୁଣି ଆଜି ପ୍ଲେନ୍‌ରେ ଫେରି ଯିବାର ଥିଲା, କିନ୍ତୁ କେତେକ ଅନିବାର୍ଯ୍ୟ କାରଣ ଯୋଗୁଁ ତାହା ସମ୍ଭବ ହେଉନାହିଁ । ତୁମକୁ କାଲି ପ୍ଲେନ୍‌ରେ ଯିବାକୁ ହେବ ।

ମୁଁ ସାର୍ ସର୍ବାଧିକାରୀଙ୍କ କଥାର କୌଣସି ଉତ୍ତର ନ ଦେଇ ଚୁପ୍‌ଚାପ୍ ଠିଆ

ହୋଇ ରହିଲି । ମୋର ସେତେବେଳେ ଖାଲି ଭାଇ କଥା ମନେ ପଡୁଥିଲା । ସାର୍ ସର୍ବାଧିକାରୀ ମୋର ସେହି ଚିନ୍ତିତ ମୁଖମଣ୍ଡଳ ଆଡ଼େ ଚାହିଁ କହିଲେ ତୁମପାଇଁ ହୋଟେଲ୍‌ର ବ୍ୟବସ୍ଥା କରା ହୋଇଛି । ଡ୍ରାଇଭର ନେଇ ଛାଡ଼ିଦେଇ ଆସିବ । ଆବଶ୍ୟକ ହେଲେ ତୁମେ ଡ୍ରାଇଭରକୁ ରଖିପାର ।

ମୁଁ କିନ୍ତୁ ଅନ୍ୟକଥା ଚିନ୍ତା କରୁଥିଲି । କହିଲି : ଭାଇ ସହିତ ମୋତେ ଥରେ ଦେଖା କରାଇବାର ସୁଯୋଗ ଦିଅନ୍ତୁ ସାର୍ ।

ସାର୍ ସର୍ବାଧିକାରୀଙ୍କ ମୁହଁରେ ସେଦିନ ହସ ଦେଖିଥିଲି । ବିଦ୍ୟୁତ୍ ଶିଖା ପରି ମୁହୂର୍ତ୍ତକ ମଧରେ ତାହା ମିଳାଇ ଯାଇଥିଲା । ସେ କହିଥିଲେ ରାଜେନ୍‌କୁ ମୁଁ କଲିକତାରୁ ଅନ୍ୟ ସହରକୁ ପଠାଇ ଦେଇଛି । ତା'ର ନିରାପତ୍ତା ପାଇଁ ମୁଁ ସବୁ ପ୍ରକାର ବ୍ୟବସ୍ଥା କରୁଛି । ବର୍ତ୍ତମାନ ବି ଇଣ୍ଟେଲିଜେନ୍‌ସୀ ବ୍ରାଞ୍ଚ୍ ଡକ୍‌ଟର ମେଘନାଦ ବର୍ମାଙ୍କର ହତ୍ୟାକାରୀଙ୍କୁ ଖୋଜୁଛନ୍ତି । ମୋ ମତରେ ତୁମେ ରାଜେନ୍ ପାଇଁ ବ୍ୟସ୍ତ ନ ହେବାହିଁ ଭଲ ।

ସାର୍ ସର୍ବାଧିକାରୀଙ୍କ ମୁହଁରୁ ଆଉ କିଛି ଶୁଣିବାର ପ୍ରତୀକ୍ଷା ନ କରି ମୁଁ ଫେରି ଆସୁଥିଲି । ସେ ପୁଣି ପଛରୁ ଡାକି କହିଲେ : କାଲି ସକାଳୁ ପ୍ଲେନ୍ ଅଛି । ତୁମେ ପ୍ରସ୍ତୁତ ହୋଇଥିବା ଡ୍ରାଇଭର ତୁମକୁ ଦମ୍‌ଦମ୍‌ରେ ନେଇ ଛାଡ଼ିଦେଇ ଆସିବ ।

ଆଉ ଅପେକ୍ଷା କରିବାର ଆବଶ୍ୟକ ନ ଥିଲା ।

ମୁଁ ବାହାରକୁ ବାହାରି ଯାଇ ଗାଡ଼ିରେ ବସିଥିଲି ।

ଡ୍ରାଇଭର ମୋତେ ନେଇ ଯାଇଥିଲା ସାଗରିକା ହୋଟେଲକୁ ।

ରିସେପ୍‌ସନିଷ୍ଟ ମୋତେ ଅଭିବାଦନ ଜଣାଇଥିଲେ । ନାଁ ପଚାରି ଥିଲେ । ଗୋଟିଏ ବେହେରାକୁ ମୋ ସାଙ୍ଗରେ ପଠାଇଥିଲେ ୧୦୩ ନମ୍ବର ରୁମ୍‌ଟି ଦେଖାଇ ଦେବା ପାଇଁ ।

ମୁଁ ରୁମ୍‌ରେ ପ୍ରବେଶ କରିଥିଲି । ରୁମ୍‌ର ବୈଭବରେ ଅଭିଭୂତ ହୋଇ ପଡ଼ିଥିଲେ ହେଁ, କର୍ତ୍ତବ୍ୟ ଭୁଲି ନ ଥିଲି । ମନ ଭିତରେ ମୋର ଏକ କାରୁଣ୍ୟର ସ୍ୱର ବାଜି ଚାଲିଥିଲା । ବେହେରା ମୋତେ ପଚାରିଲା: କ'ଣ ଖାଇବାକୁ ଆଣିବି ?

ସମୟର ସ୍ୱଳ୍ପତା ଦୃଷ୍ଟିରୁ ମୁଁ ବେହେରାକୁ ସେତେବେଳେ କିଛି ଖାଇବାକୁ ମନା କରିଥିଲି । ସେତେବେଳେ ମୋର ପ୍ରଥମ କର୍ତ୍ତବ୍ୟ ସିଦ୍ଧାନ୍ତ ଗ୍ରହଣ କରିବା । ସେଇଥି ପାଇଁ ପ୍ରତିଟି ମିନିଟ୍ ମୋ ପାଖରେ ବହୁ ମୂଲ୍ୟବାନ ହୋଇ ଉଠିଥିଲା ।

ମୁଁ ମୁହଁ ହାତ ଟିକିଏ ଧୋଇ ସଙ୍ଗେ ସଙ୍ଗେ ବାହାରି ପଡ଼ିଥିଲି ।

କିନ୍ତୁ ରଞ୍ଜନକୁ ପାଇବି କେଉଁଠୁ ?

ଶେଷରେ ସିଦ୍ଧାନ୍ତ କଲି, ମିସେସ୍ ସ୍ମିଥ୍ ଯାହା ଭାବନ୍ତୁ ପଛେ ତାଙ୍କରି ପାଖରେ ଯାଇ ରଞ୍ଜନର ଖବର ବୁଝିବି ।

ଗ୍ରାଣ୍ଟ ଷ୍ଟ୍ରିଟ୍‌ର ସେହି ବହୁ ପରିଚିତ ଗୃହକୁ ତ୍ରସ୍ତ ପଦରେ ପ୍ରବେଶ କରିଥିଲି ।

: ହ୍ୟାଲୋ ରୀଟା ! କାହାର ଉଚ୍ଛ୍ୱସିତ କଣ୍ଠ ସ୍ୱରରେ ମୁଁ ବୁଲି ଅନେଇଲି । ମାଥ୍ୟୁ ହସି ହସି ମୋ ଆଡ଼କୁ ଧାଇଁ ଆସୁଛି ।

ହଠାତ୍ ମୁଁ ତାକୁ ଚିହ୍ନି ପାରିଲି ନାହିଁ । ସେ ଆମର ସେହି ଗ୍ରାଣ୍ଟ ଷ୍ଟ୍ରିଟ୍‌ର ପ୍ରତିବେଶୀ ଥିଲା । କିନ୍ତୁ ସେମାନଙ୍କ ପାରିବାରିକ ଦୁଃସ୍ଥିତି ଏତେ ତୀବ୍ର ଥିଲା ଯେ, ସେମାନେ ଦୁଇବେଳା ପେଟ ପୂରାଇ ମୁଠେ ଖାଇ ପାରୁ ନଥିଲେ । କିନ୍ତୁ ମାଥ୍ୟୁକୁ ଆଜି ଏପରି

ଗର୍ଜିଏସ ପୋଷାକରେ ଦେଖି ମୁଁ ମୋର ଦୁଇ ଆଖିକୁ ବିଶ୍ୱାସ କରି ପାରିଲି ନାହିଁ ।

ମାଥ୍ୟୁ ଛୁଟି ଆସି ମୋର କାନ୍ଧ ଦୁଇଟାକୁ ଧରି ଲୋଟି ପଡ଼ି କହିଲା: ଆମେ ମିସେସ୍ ସ୍ମିଥ୍‌ଙ୍କ ଫ୍ଲାଟଟା ଭଡ଼ା ନେଇଛୁ ।

ମୋ ମୁଣ୍ଡରେ ଯେପରି ବଜ୍ରପାତ ହେଲା ।

ସେ ମୋର ପରିବର୍ତ୍ତିତ ମୁଖଭଙ୍ଗୀ ଆଡ଼େ ଚାହିଁ ବୋଧହୁଏ ଟିକିଏ ଶଙ୍କିତ ହୋଇ ପଡ଼ିଥିଲା । ତା' ପରେ ଧୀରେ ଧୀରେ କହିଲା ତୁମେ କ'ଣ ମିସେସ୍ ସ୍ମିଥ୍‌ଙ୍କର ସୁଇଜରଲାଣ୍ଡ ଯିବା ଖବର ଶୁଣି ନ ଥିଲ ?

ମୁଁ ଆଉ ପଦୁଟିଏ କଥା ନ କହି ଫେରି ଯିବାକୁ ବସିଥିଲି । କିନ୍ତୁ ମାଥ୍ୟୁ ମୋତେ ଛାଡ଼ିଲା ନାହିଁ କହିଲା : ଛଅମାସ କି ଆଠମାସ ପରେ ତମେ ଆସିଛ । ମୁଁ ଜାଣେ ତମ ଅବସ୍ଥାର ଯଥେଷ୍ଟ ପରିବର୍ତ୍ତନ ହୋଇଛି । ଆମେ ଯେତେ ଗରିବ ହେଲେ ବି, ଦିନେ ଆମ ମଧ୍ୟରେ ସାମାନ୍ୟ ଆତ୍ମୀୟତା ଥିଲା ।

ମୁଁ ମାଥ୍ୟୁ ମୁହଁକୁ କେବଳ ଅବାକ୍ ହୋଇ ଚାହିଁଥିଲି ।

ଏଇ ମାଥ୍ୟୁ, କାନ କାଟିଲେ ଯାହା ମୁହଁରୁ ବଚନ ବାହାରୁ ନ ଥିଲା, ସେ ଏ କେଇମାସ ଭିତରେ ଏପରି ବାକ୍ୟବାଗୀଶ ହୋଇ ଗଲାଣି ।

ମାଥ୍ୟୁର ଅନୁରୋଧ ଉପେକ୍ଷା କରି ପାରିଲି ନାହିଁ ।

ତା'ପଛେ ପଛେ ଉପରକୁ ଉଠିଲାବେଳେ ଦେଖିଲି, ଆମେ ଯେଉଁ ରୁମ୍‌ଟି ନେଇଥିଲୁ, ସେଥିରେ ତାଲା ପଡ଼ିଛି ।

ମାଥ୍ୟୁ ମୋ ଚାହାଣିର ଅର୍ଥ ବୁଝି ପାରି କହିଲା : ସେଇଟା ସେଇଦିନ ଠାରୁ ଖାଲି ପଡ଼ିଛି ।

ମାଥ୍ୟୁ ପଛରେ ମୁଁ ତାଙ୍କ ଘରକୁ ଆଗେଇ ଯାଇଥିଲି ।

ମିସେସ୍ ସ୍ମିଥ୍ ତାଙ୍କର ସମସ୍ତ ଆସବାବ ପତ୍ର ଛାଡ଼ି ଚାଲି ଯାଇଛନ୍ତି । ଯେଉଁଠାରେ ଯେଉଁଠି ଯାହା ଥିଲା, ସବୁ ଠିକ୍ ପୂର୍ବପରି ରହିଛି ।

ମୁଁ ମାଥ୍ୟୁର ମା'ଙ୍କୁ ଯାଇ ପ୍ରଣାମ କଲି ।

ସେ ମୋତେ ଆଶୀର୍ବାଦ କରି କହିଲେ : ତୋର ମଙ୍ଗଳ କାମନା କରୁଛି ଝିଅ । ମୁଁ ମାଥ୍ୟୁକୁ ଜନ୍ମ କରି ନ ଥିଲେ କି ଯେ ଦୁରବସ୍ଥା ଭୋଗୁଥାଆନ୍ତି, ତୁ ତ ଦେଖିଥିଲୁ ଝିଅ । ପୁଅ ଦିଇଟା ବାଳୁଙ୍ଗା ହୋଇଗଲେ । କିନ୍ତୁ ଏଇ ଝିଅଟି ପାଇଁ... ସେ ମାଥ୍ୟୁକୁ ଚାହିଁ, ତାଙ୍କ ଆଖି ଦୁଇଟା ଛଳ ଛଳ ହୋଇ ଉଠିଲା ।

ମାଥ୍ୟୁ ମୋ ହାତ ଧରି ଟାଣି ଟାଣି ଡ୍ରଇଂ ରୁମ୍‌କୁ ନେଇଗଲା ।

ସେଇ ଚେଆର, ସେଇ ସୋଫା, ସେଇ ପରିବେଶ ।

ମୁଁ ମାଥ୍ୟୁକୁ ପଚାରିଲି, ତୁମେ ତ ଏଠାରେ ବହୁ ଦିନର ବାସିନ୍ଦା । ମିଷ୍ଟର ସ୍ମିଥ୍‌କୁ ତ ଦେଖିଥିବା ସେ କିପରି ଲୋକ ?

ମାଥ୍ୟୁ ମୁଣ୍ଡ ହଲାଇ କହିଲା : ଆମେ ଏଠି ପାଞ୍ଚ ଛଅ ବର୍ଷ ହେବ ରହିଛୁ, କିନ୍ତୁ ମିଷ୍ଟର ସ୍ମିଥ କେବେ ଆସିବାର ଦେଖିନାହିଁ ।

ମୁଁ ଅବାକ୍ ହୋଇ ଯାଇଥିଲି । ତା'ହେଲେ ମିଷ୍ଟର ସ୍ମିଥ୍ ନରକକୁ ଯାଆନ୍ତୁ, କିନ୍ତୁ ମୋର ଯେ ଏକମାତ୍ର ଭରସା ଥିଲା ରଞ୍ଜନ । ମିସେସ୍ ସ୍ମିଥ୍‌ଙ୍କ ଚକ୍ରାନ୍ତରେ ସେ ବି ଦେଶ

ଛାଡ଼ି ଚାଲିଯାଇଛି । ମୋତେ କ'ଣ ତେବେ ସାର୍ ସର୍ବାଧିକାରୀଙ୍କ ଶାଣିତ ଖଡ଼୍ଗ ତଳେ ଆଶ୍ରୟ ନେବାକୁ ହେବ ।

ନା, ନା, ନା । ମୋ ଭିତରୁ କିଏ ଯେପରି ଚିତ୍କାର କରି ଉଠୁଥିଲା ।

ତା'ହେଲେ ମୋର କର୍ତ୍ତବ୍ୟ ?

ସାର୍ ସର୍ବାଧିକାରୀଙ୍କ କଥା ନ ମାନିଲେ ଚାକିରି ଯିବା ପେଟ ପୋଷିବାର ଅନ୍ୟ ପନ୍ଥା ଆଉ କ'ଣ ଅଛି ?

ଆଖି ଆଗରେ ଜ୍ୱଳନ୍ତ ଉଦାହରଣ ମାଥ୍ୟୁ । ସେ ତ ପୁଣି ନିଜ ପେଟ ପୋଷି ତା' ବାପା, ମା', ଭାଇମାନଙ୍କୁ ପୋଷିବାକୁ ସମର୍ଥ ହୋଇପାରିଛି । ଅଥଚ ମୋର ଗୋଟାଏ ପେଟ । ସେଇଟା କ'ଣ ଅପୋଷା ରହିଯିବ ।

ମାଥ୍ୟୁ ଗୋଟିଏ ଟ୍ରେରେ ମୋ ପାଇଁ କିଛି ଖାଦ୍ୟ ପଦାର୍ଥ ଧରି ଫେରି ଆସିଥିଲା ।

ମୁଁ କିନ୍ତୁ ଆଉ ହୋଟେଲ ସାଗରିକାକୁ ଫେରି ନ ଥିଲି ।

ବହୁ ଆଶଙ୍କା, ବହୁ ଦୁର୍ଭାବନା ଭିତରେ ମୋର ସେ ରାତିଟି କଟିଥିଲା । ମୁଁ ଶୋଇ ପାରି ନଥିଲି । ଆଖିକୁ ଟିକିଏ ନିଦ ଆସିଲେ, ଭୟଙ୍କର ସ୍ୱପ୍ନ ଦେଖି ମାଥ୍ୟୁକୁ ଜାବୁଡ଼ି ଧରିଥିଲି । ସେ ବାରମ୍ବାର ମୋର ଏପରି ଆଚରଣରେ ବ୍ୟଥିତ ହୋଇ ପଡ଼ିଥିଲା ।

ମାଥ୍ୟୁ ସେଦିନ ରାତି ଭରି ବହୁତ ଉପଦେଶ ଦେଇଥିଲା । ଆଶ୍ୱାସନା ବି ଦେଇଥିଲା । ନିଜ ଘରେ ଆଶ୍ରୟ ଦେବାର ପ୍ରତିଶ୍ରୁତି ମଧ୍ୟ ଦେଇଥିଲା । ପୁଣି କହିଥିଲା : ମୋର ଅନ୍ନ ସଂସ୍ଥାନର ସମଗ୍ର ବ୍ୟବସ୍ଥା ସେଇ କରେଇ ଦେବ ଏବଂ ମୁଁ ଯେପରି ବହୁ ପ୍ରାଚୁର୍ଯ୍ୟ ଭିତରେ ଜୀବନକୁ ଉପଭୋଗ କରି ପାରିବି, ତାର ମଧ୍ୟ ବ୍ୟବସ୍ଥା କରେଇ ଦେବ ।

ମୁଁ ମଧ୍ୟ ଶିଘାଂଣୀନାକି ମାଥ୍ୟୁକୁ ମୋ ଜୀବନର ଏକମାତ୍ର ଆଶାଭରସା ରୂପେ ଜାବୁଡ଼ି ଧରିଥିଲି ।

ତା'ପରେ ମୁଁ ବହୁତ ଭାବିଚିନ୍ତି ସ୍ଥିର କରିଥିଲି ଯେ ସାର୍ ସର୍ବାଧିକାରୀ ବା ମିଷ୍ଟର ବାଜୋଡ଼ିଆଙ୍କ ସଂସର୍ଗ ମୁଁ ଛାଡ଼ିଦେବି । ବାହାରେ ସେମାନେ ସମାଜର ବହୁ ମାନ୍ୟଗଣ୍ୟ ବ୍ୟକ୍ତି ହେଲେ ମଧ୍ୟ ଭିତରଟା ସେମାନଙ୍କର ଭୀଷଣ ଭୟଙ୍କର । ସେମାନେ ଅସାମାଜିକ । ସେମାନେ ଅପରାଧ ପରାୟଣ । ଦିନେ ହୁଏତ ସେମାନେ ମୋ ମୁଣ୍ଡ ଉପରେ ହତ୍ୟାର କଳଙ୍କ ବୋଳି ଭାଇ ପରି ମୋତେ ମଧ୍ୟ ସେମାନଙ୍କର ହାତର ଖେଳନା କରି ରଖିବେ ।

ମୋ ସିଦ୍ଧାନ୍ତରେ ମୁଁ ଅଟଳ ରହିଲି ।

ଗ୍ରାଣ୍ଟ୍ ଷ୍ଟ୍ରିଟ୍‌ର ଆମର ସେହି ପୂର୍ବ ଘରଟିକୁ ପୁଣି ମୁଁ ଭଡ଼ା ନେଲି ।

କିନ୍ତୁ ମନଟା ମୋର ଭୀଷଣ ଭାଙ୍ଗି ପଡ଼ିଥିଲା ।

ମୁଁ ଏକ ପ୍ରକାର ଚବିଶ ଘଣ୍ଟା କବାଟ କିଳି ଘରେ ଶୋଇ ରହୁଥିଲି ।

ମାଥ୍ୟୁ ବେଳେ ବେଳେ ଆସୁଥିଲା, ଭଲ ମନ୍ଦ ପଚାରୁଥିଲା, କିଛି ଖାଇବାକୁ ଦେଇ ଚାଲି ଯାଉଥିଲା । ମୋର ଭାବନାଗୁଡ଼ାକ ସବୁ ପକ୍ଷାଘାତ ଗ୍ରସ୍ତ ହୋଇ ପଡ଼ିଥିଲା । ମୁଁ ନିଜକୁ କୌଣସି ପ୍ରକାର କର୍ମକ୍ଷମ କରି ପାରୁନଥିଲି ।

ସେହିପରି ବିକାରଗ୍ରସ୍ତ ମନ୍ ନେଇ ମୁଁ କେତେଦିନ କଟାଇ ଥାଆନ୍ତି କେଜାଣି, ହଠାତ୍ ଦିନେ ଏକ ମର୍ମନ୍ତୁଦ ଚିଠି ପାଇଲି । ଭାଇ ଲେଖିଥିଲା, ସେ ଏକ ଦୁଃସହ ଜୀବନ

ଯାପନ କରୁଛି । ବର୍ତ୍ତମାନ ସେ ବ୍ୟାଧିଗ୍ରସ୍ତ । ତା'ର ତତ୍ତ୍ୱ ନେବାକୁ କେହି ନାହାନ୍ତି । ସାର୍ ପରାମର୍ଶ ଦେଇଛନ୍ତି ଘରକୁ ଫେରିଯିବା ପାଇଁ ଏବଂ ସାର୍ ଭାଇକୁ ମୋର ଠିକଣା ମଧ୍ୟ ଯୋଗାଡ଼ କରି ଦେଇଛନ୍ତି । ସେମାନେ ଚିକିତ୍ସାର ସବୁ ଦାୟିତ୍ୱ ନେବେ କିନ୍ତୁ ତାର ସେବା ଯତ୍ନ କରିବା ପାଇଁ ଜଣେ ଆପଣାର ଲୋକର ଏକାନ୍ତ ପ୍ରୟୋଜନ । ଅଥଚ ଦୁନିଆରେ ମୋର ତୋ ଛଡ଼ା ଦ୍ୱିତୀୟ ଜଣେ ନାହିଁ । ଆଉ ତୋତେ ବି ଅନୁରୋଧ କଲାଭଳି ଏତ୍ ସାହସ ମୋର ନାହିଁ । ତଥାପି ମୋ ବିକଳ ମନର ଅବସ୍ଥା ତୋତେ ନ ଜଣାଇ ରହି ପାରୁନାହିଁ । ତୁ ଭାବିଚିନ୍ତି ଦେଖିବୁ, ଯଦି ମୁଁ ତୋ ଜୀବନ ଧାରଣର ଚଲା ପଥରେ କୌଣସି ଅନ୍ତରାୟ ସୃଷ୍ଟି କଲାଭଳି ଅବସ୍ଥା ନ ଉପୁଜାଏ ତା'ହେଲେ ବିଚାର କରିବୁ । ମୋତେ ତଳ ଲିଖିତ ଠିକଣାରୁ ଯେକୌଣସି ଦିନ ରାତି ଦଶଟା ପରେ ଘରକୁ ନେଇଯିବୁ ।

ଭାଇର ସେଇ ଚିଠି ଖଣ୍ଡିକ ମୋ ଜୀବନର ଆଉ ଏକ ନୂତନ ଅଧ୍ୟାୟ ସୃଷ୍ଟି କଲା । ମୁଁ ବହୁ ଚେଷ୍ଟା କରି ବି ନିଜକୁ ସଂଯତ ରଖି ପାରିଲି ନାହିଁ । ଭାଇକୁ ଦେଖିବା ପାଇଁ ମୋର ବ୍ୟାକୁଳତାର ସୀମା ରହିଲା ନାହିଁ ।

ସେଇଦିନ ରାତି ଦଶଟା ପରେ ମୁଁ ନିର୍ଦ୍ଦିଷ୍ଟ ଠିକଣାରେ ଯାଇ ପହଞ୍ଚିଲି । ଘରଟି ଛୋଟ ଧରଣର ଗୋଟିଏ ହସ୍‌ପିଟାଲ କହିଲେ ଅତ୍ୟୁକ୍ତି ହେବନାହିଁ । ତେବେ ସେଇଟା ଡକ୍ଟର ନରସିଂହମ୍‌ଙ୍କର ନର୍ସିଂହୋମ ।

ଡକ୍ଟର ନରସିଂହମଙ୍କର ସହକାରୀ ମୋ ମୁହଁରୁ ସବୁ କଥା ଶୁଣି କହିଲେ ଆମର କିଛି ଆପତ୍ତି ନାହିଁ । ବେଡ୍ ନମ୍ବର ୧୭ ପାଇଁ ସେହିପରି ନିର୍ଦ୍ଦେଶ ଅଛି । ଆପଣ ଯେକୌଣସି ମୁହୂର୍ତ୍ତରେ ୧୭ ନମ୍ବର ରୋଗୀକୁ ସଙ୍ଗରେ ନେଇ ଯାଇ ପାରନ୍ତି ।

ମୁଁ ସଙ୍ଗେ ସଙ୍ଗେ ଭାଇକୁ ଗୋଟିଏ ଟ୍ୟାକ୍‌ସିରେ ବସାଇ ଘରକୁ ଘେନି ଆସିଲି । ଭାଇର ସ୍ୱାସ୍ଥ୍ୟ ଯଦିଓ ବିଶେଷ ଭାଙ୍ଗି ନ ଥିଲା, କିନ୍ତୁ ମନଟା ଭାଙ୍ଗି ଯାଇଥିଲା ପୂରପୂରି ।

ସେ ଘରକୁ ଆସିବାର ଦିନେ ଦୁଇଦିନ ପର୍ଯ୍ୟନ୍ତ ମୋ ମୁହଁକୁ ଚାହିଁ ପାରି ନଥିଲା କିମ୍ବା ମୋ ସହିତ କଥା କହିବାକୁ ଭରସା କରି ପାରି ନ ଥିଲା ।

ମୁଁ ବି ତାକୁ ବିରକ୍ତ କରିବା ଉଚିତ୍ ମଣି ନ ଥିଲି ।

କିନ୍ତୁ ଆଶ୍ଚର୍ଯ୍ୟ ହେଲି, ଏହା ଭିତରେ ତିନି ଚାରିଦିନ ଅତିବାହିତ ହୋଇଥିଲେ ମଧ୍ୟ ଭାଇକୁ ଦେଖିବା ପାଇଁ କୌଣସି ଡାକ୍ତର ଆସିଲେ ନାହିଁ ।

ଦିନେ ମୁଁ ଡରି ଡରି ଭାଇକୁ ସବୁ କଥା ପଚାରିଲି । ଭାଇ ଗୋଟିଏ ଦୀର୍ଘଶ୍ୱାସ ଛାଡ଼ି କହିଲା, ସେମାନେ ଆଉ ଡାକ୍ତର ପଠାଇବେ ନାହିଁ । ଆମ ଦାୟିତ୍ୱ ଆମର । ସେମାନଙ୍କର କର୍ତ୍ତବ୍ୟ ଶେଷ ହୋଇ ଯାଇଛି ।

: କିନ୍ତୁ ସେମାନଙ୍କ ପାଇଁ ତୁମେ ଯେ ଜୀବନ ବିପନ୍ନ କରି...

ଭାଇ ମୁହଁରେ ଟିକେ ଫିକା ହସ ଦେଖି ମୁଁ ନୀରବ ହୋଇଗଲି । ଭାଇ କହିଲା : ସେ ସବୁ ତୋ ଆଗରେ କିଛି ମୁଁ କହିବାକୁ ଚାହେନାହିଁ । ଭଗବାନଙ୍କ କୃପାରୁ ମୁଁ ଯଦି ଆରୋଗ୍ୟ ହୁଏ, ସେତେବେଳେ ସବୁ ବୁଝି ପାରିବୁ । କିନ୍ତୁ ତୁ ସେମାନଙ୍କ କଥାରେ ରାଜି ନ ହୋଇ ଭଲ କରିଛୁ ।

ମୁଁ ଚମକି ଉଠି ପଚାରିଲି : ସେମାନଙ୍କ କଥାରେ ମାନେ ?

ଭାଇ କହିଲା : ସାର୍ ତୋତେ ଦଳରେ ଭିଡ଼େଇବା ପାଇଁ ସବୁ ପ୍ରକାର ଚେଷ୍ଟା

କରିଥିଲେ । ଯେଉଁଥିପାଇଁ ମୋତେ ହତ୍ୟା ଅପରାଧରେ ଅପରାଧୀ ହେବାକୁ ପଡ଼ିଲା । ମୁଁ ଶଯ୍ୟାଶାୟୀ ହେଲି ଏବଂ ଶେଷରେ ମୋ ଦେହରେ...

ମୋର ଉତ୍ତେଜିତ ମୁଖମଣ୍ଡଳ ଆଡ଼େ ଚାହିଁ ଭାଇ ବୋଧହୁଏ ନୀରବ ହୋଇଗଲା । ତା'ପରେ ସେ ଧୀରେ ଧୀରେ କହିଲା : ସେ ସବୁ କଥା ତୁ ନ ଶୁଣିବା ହିଁ ଭଲ ।

ମୁଁ କିନ୍ତୁ ଭାଇର ଛାତି ଉପରେ ମୁହଁ ରଖି କାନ୍ଦି ଉଠିଥିଲି । ମୋ ପାଇଁ ଭାଇର ଯେ ଏପରି ଦୁରବସ୍ଥା, ସେ କଥା ଆଗରୁ ଜାଣିଥିଲେ ହୁଏତ ପ୍ରତିକାରର ବ୍ୟବସ୍ଥା କରି ଥାଆନ୍ତି । ମୁଁ ମୋତେ ନିଃଶେଷ କରି ଭାଇକୁ ସ୍ୱାଚ୍ଛନ୍ଦ୍ୟ ଦେବାକୁ ଚେଷ୍ଟା କରି ଥାଆନ୍ତି ।

ଭାଇ ମୋତେ ବୋଧ ଦେଇ କହିଲା ସାର୍ ଭାରି ହୁସିଆର ଲୋକ । ସେ ଯାହାକୁ ଦଳକୁ ଟାଣନ୍ତି ତା'ର ସମସ୍ତ ଶକ୍ତିକୁ ଦୁର୍ବଳ କରି ନିଜ ଖାପଚରେ ରଖନ୍ତି । ସେଇଥିପାଇଁ ମୋ ବିରୁଦ୍ଧରେ ଏକ ହତ୍ୟା ଅପରାଧ ଆରୋପ କରି ରଖିଥିଲେ । ମୁଁ ସୂର୍ଯ୍ୟାଲୋକର ଅନ୍ତରାଳରେ ରହିବାକୁ ବାଧ୍ୟ ହେଲି ଏବଂ ମୋର ସେହି ଅସହାୟ ଅବସ୍ଥାରର ସୁଯୋଗରେ ତୋତେ ଦଳକୁ ଟାଣିବାର ଏକ ସୂକ୍ଷ୍ମ ଜାଲ ବିସ୍ତାର କରିଥିଲେ । କିନ୍ତୁ ତୁ ଅତି ନିର୍ମମ ଭାବରେ ତାହା ଛିନ୍ନ କରିଛୁ, ସେଥିପାଇଁ ସାର୍...

ଭାଇ ପୁଣି ନୀରବ ହୋଇଗଲା । ମୋ ଆଖିରେ କିନ୍ତୁ ଲୁହ ବଦଳରେ ଅଗ୍ନି ସ୍ଫୁଲିଙ୍ଗ ଫୁଟି ଉଠିଥିଲା ।

କିନ୍ତୁ ପଥ କାହିଁ ?

ମୁଁ ନୀରବରେ ଭାଇର ରକ୍ତହୀନ ଅସହାୟ ମୁଖମଣ୍ଡଳ ଆଡ଼େ ବହୁତ ସମୟ ଅନାଇ ରହିଥିଲି । ଭାଇ ବୋଧହୁଏ ତା' ଅପରାଧର ସମସ୍ତ କାଳିମା ଘୋଡ଼େଇବା ପାଇଁ ଆଖି ବୁଜିଦେଇଥିଲା ।

ସେଦିନ ସଂଧ୍ୟାବେଳେ ଭାଇ ଦେହରେ ମୁଁ ପ୍ରବଳ ଉତ୍ତାପ ଅନୁଭବ କରିଥିଲି । ମୁହଁରେ ତା'ର ଅସଂଖ୍ୟ ଯନ୍ତ୍ରଣାର ଚିହ୍ନ ଦେଖିଥିଲି । ସେ କିନ୍ତୁ ମୁହଁ ଫିଟାଇ ମୋ ପାଖରେ କିଛି ପ୍ରକାଶ କରି ନଥିଲା ।

ଭାଇର ଅବସ୍ଥା ମୋର ସହନଶୀଳତା ବାହାରକୁ ଚାଲି ଯାଉଥିଲା ।

ମୁ ସେଦିନ ଆଉ ଆତ୍ମ ସମ୍ବରଣ କରି ପାରି ନ ଥିଲି ।

ମୋ ପାଖରେ ସେତେବେଳଯାଏ ସାର୍ ସର୍ବାଧିକାରୀଙ୍କ ପ୍ରଦତ୍ତ ଏକ ହଜାର ଟଙ୍କା ମଧ୍ୟରୁ ପ୍ରାୟ ଦୁଇ ତିନି ଶହ ଅବଶିଷ୍ଟ ଥିଲା । ଯଦିଓ ସେହି ଅର୍ଥ ପ୍ରତି ମୋର ଗୋଟାଏ ଘୃଣା ଜାତ ହୋଇଥିଲା, ତଥାପି ମୁଁ ଅନ୍ୟ ଉପାୟ ନ ଦେଖି ସେହି ଟଙ୍କାକୁ ଭାଇ ପାଇଁ ପ୍ରାଥମିକ ଚିକିତ୍ସା ଖର୍ଚ୍ଚ ରୂପେ ବ୍ୟୟ କରିବାର ସିଦ୍ଧାନ୍ତ ଗ୍ରହଣ କରିଥିଲି ।

ଯେଉଁ ଡାକ୍ତରଙ୍କୁ କଲ୍ କରି ଆଣିଥିଲି, ଦୁଇ ତିନି ଦିନ ଲାଗି ସୁଦ୍ଧା ସେ ରୋଗ ନିର୍ଣ୍ଣୟ କରି ପାରି ନ ଥିଲେ । ଭାଇର ଦେହରେ ଘଣ୍ଟାକୁ ଘଣ୍ଟା ବିଭିନ୍ନ ରୋଗର ଲକ୍ଷଣ ଫୁଟି ମଉଳୁ ଥିଲା । ଶେଷରେ ସେ ହତାଶ ହୋଇ, ଆଉ ଜଣେ ବଡ଼ ଡାକ୍ତରଙ୍କ ନାମ ମୋ ଆଗରେ ପ୍ରସ୍ତାବ କଲେ । ତାଙ୍କ ମତରେ ଭାଇକୁ ଶୀଘ୍ର ସେହି ଡାକ୍ତରଙ୍କୁ ଦେଖାଇବା ଉଚିତ ।

କିନ୍ତୁ ସେତେବେଳକୁ ଏହି ଛୋଟ ଡାକ୍ତରଙ୍କ ପଛରେ ମୋର ସଞ୍ଚିତ ସେହି ସାମାନ୍ୟ ପୁଞ୍ଜିତକ ନିଃଶେଷ ହୋଇ ଯାଇଥିଲା । ମୁଁ ଏକ ଦୁର୍ଭାବନାରେ ପଡ଼ି ଯାଇଥିଲି ।

ଭାଇକୁ ବଞ୍ଚାଇବା ମୋର ଏକମାତ୍ର କର୍ତ୍ତବ୍ୟ ‘ବୋଲି ଯେତେବେଳେ ଧରିନେଲି, ସେତେବେଳେ ସାର୍ ସର୍ବାଧିକାରୀଙ୍କ ସେହି ଶାନ୍ତ ଚାହାଣିଟି ମୋ ଆଗରେ ଭାସି ଉଠିଥିଲା । ସେହି ଶାନ୍ତ ଚାହାଣି ତଳେ ଯେ କେତେ ସର୍ବନାଶର ଇଙ୍ଗିତ ଲୁଚି ରହିଛି, ସେହିସବୁ ଭାବିବାକ୍ଷଣି ମୋର ଦେହ ଶୀତେଇ ଉଠିଥିଲା ।

ଭାଇକୁ ରୋଗମୁକ୍ତ କରିବାକୁ ହେଲେ ପ୍ରଚୁର ଅର୍ଥ ଆବଶ୍ୟକ ।

ଆଉ ସେ ଅର୍ଥର ଏକମାତ୍ର ଉତ୍ତରାଧିକାରୀ ସାର୍ ସର୍ବାଧିକାରୀ ।

ଦେହଟା ମୋର ରୋମାଞ୍ଚିତ ହୋଇ ଉଠିଲା ।

ଏହା ଯେ ମୋ ବିରୁଦ୍ଧରେ ସାର୍ ସର୍ବାଧିକାରୀଙ୍କର ଏକ ଭୀଷଣ ଷଡଯନ୍ତ୍ର, ମୋ ଆଖି ଆଗରେ ଜଳ ଜଳ ହୋଇ ଜଳି ଉଠିଲା । ସେ ଜଣେ ଦକ୍ଷ ଶିକାରୀ । ତାଙ୍କ ବିସ୍ତୃତ ଜାଲ ଭିତରେ ମୋର ପ୍ରବେଶ ପାଇଁ ଚାରିଆଡ଼ୁ ସେ ଫାଙ୍କା କରି ରଖିଛନ୍ତି । ଏବଂ ସେ ଜାଣିଛନ୍ତି ମୋତେ ତାଙ୍କ ଶିକାର ଅବଶ୍ୟ ହେବାକୁ ପଡ଼ିବ ।

ମାଥ୍ୟୁ ସେତିକିବେଳେ ଆସି ମୋ ସମ୍ମୁଖରେ ଉପସ୍ଥିତ ହେଲା ।

ମୋର ସମସ୍ତ ଚିନ୍ତା ଭାବନା ମୁହୂର୍ତ୍ତକ ପାଇଁ ଭିନ୍ନ ପଥଗାମୀ ହୋଇ ଉଠିଥିଲା ।

ମାଥ୍ୟୁ ପଚାରିଲା, ଭାଇ କିପରି ଅଛନ୍ତି ?

ମୁଁ କୌଣସି ଉତ୍ତର ନ ଦେଇ ପାରି କାନ୍ଦି ପକାଇଲି ।

ସେ ମୋତେ ତାଙ୍କ ଘରକୁ ଟାଣି ନେଇଗଲା । ମୋ ମୁହଁରୁ ଭାଇ ଦୁର୍ଭାରୋଗର କାହାଣୀ ଶୁଣି ତା’ ମୁହଁରେ ମଧ୍ୟ ଆତଙ୍କ ଫୁଟି ଉଠିଲା ।

ନୀରବତା ମଧ୍ୟରେ ଆମ ଦୁହିଁଙ୍କର କିଛି ସମୟ କଟିଗଲା ।

ମାଥ୍ୟୁ ଧୀରେ ଧୀରେ ଥରିଲା କଣ୍ଠରେ କହିଲା : ଉପାର୍ଜନର ପଥ ଅନେକ ଅଛି ଭଉଣୀ । କିନ୍ତୁ...

ଆଗ୍ରହରେ ମୁଁ ଶତମୁଖ ହୋଇ ଉଠିଲି । ସାର୍ ସର୍ବାଧିକାରୀଙ୍କ କରୁଣା କଣିକା ଭିକ୍ଷା ନ କରି ଅନ୍ୟ ଯେ କୌଣସି ଉପାୟରେ ଅର୍ଥ ଉପାର୍ଜନ କରିବା ପାଇଁ ମୁଁ ପ୍ରସ୍ତୁତ ଥିଲି ।

ମାଥ୍ୟୁ ମୋ ମନୋଭାବ ବୁଝିପାରି ଆଶ୍ୱାସନା ଦେଇ କହିଲା : ତା’ ହେଲେ ତୋର ଅର୍ଥର ଅଭାବ ରହିବ ନାହିଁ । ମୁଁ ଉପାର୍ଜନର ପଥ ବତେଇ ଦେବି ।

ସେଦିନ ପାଞ୍ଚଟା ବେଳେ ମୋତେ ପୁଣି ଡାକିଲା । ମୋ ମୁହଁକୁ ଥରେ କରୁଣ ନୟନରେ ଚାହିଁ କହିଲା: ତୁ କ’ଣ ଶେଷରେ ମୋରି ପଥ ଧରିବୁ ରୀଟା ?

ମାଥ୍ୟୁ କଥାର ଅର୍ଥ ମୁଁ ବୁଝି ପାରି ନଥିଲି । ବୁଝିବାର ମଧ୍ୟ ପ୍ରୟୋଜନ ନ ଥିଲା । କିନ୍ତୁ ଅର୍ଥର ଆବଶ୍ୟକ ମୋ ପାଖରେ ଏତେ ପ୍ରବଳ ହୋଇ ଉଠିଥିଲା ଯେ, ମୁଁ ମାଥ୍ୟୁର କଥା ଭିତରୁ କୌଣସି ତାତ୍ତ୍ୱିକ ଅର୍ଥ ଖୋଜି ବାହାର କରିବାକୁ ଆଗ୍ରହ ପ୍ରକାଶ କରି ନଥିଲି ।

ମାଥ୍ୟୁ ମୋତେ ପାଖକୁ ଟାଣି ନେଇ ତା’ର ସୁନ୍ଦର ଓ ମୂଲ୍ୟବାନ ପୋଷାକ ପତ୍ର ସାହାଯ୍ୟରେ ମୋତେ ସଜେଇବାକୁ ଲାଗିଲା । ମୁହଁରେ ପାଉଡ଼ର, ଓଠରେ ଲିପଷ୍ଟିକ୍ ଓ ଭୁରୁରେ କଳାଗାର ଟାଣି ମୋତେ ଯେତେବେଳେ ଆଇନା ସାମ୍ନାରେ ନେଇ ଠିଆ କରେଇ ଦେଲା, ମୋତେ ଦେଖି ମୋ ଆଖି ଆଗରେ ଭାସି ଉଠିଥିଲା ଆଉ ଦିନକର

କଥା। ମିସେସ ସ୍ମିଥ୍ ମୋତେ ଏହପରି ସଜାଇ ଦେଇଥିଲେ ନିଜ ହାତରେ, ନିଜର ଅର୍ଥ ବ୍ୟୟ କରି । ପରେ ଅବଶ୍ୟ ଜାଣି ପାରିଥିଲି ସେ ତାଙ୍କର ସ୍ୱାର୍ଥ ପାଇଁ ଏହା କରିଥିଲେ, କିନ୍ତୁ ମାଥ୍ୟୁ ? ତା'ର କି ସ୍ୱାର୍ଥ ଅଛି ମୋଠାରେ ?

ମାଥ୍ୟୁ ମୋ ଚାହାଣିର ନିଗୂଢ଼ ଅର୍ଥ ହୁଏତ ବୁଝି ପାରିଲା ନାହିଁ । ସେ ଅଳ୍ପ ହସି କହିଲା : ଧୀରେ ଧୀରେ ସବୁ ଦିହସୁହା ହୋଇଯିବ । କିନ୍ତୁ ଖୁବ୍ ସାବଧାନ ସହକାରେ ସେଇ ନରପିଶାଚ ଗୁଡ଼ାଙ୍କୁ ପରିଚାଳିତ କରିବାକୁ ହେବ । ସେମାନଙ୍କୁ ଜବ୍ଦ କରିବାର ଏକ ସୂକ୍ଷ୍ମ ଉପାୟ ମୁଁ ଆବିଷ୍କାର କରିଛି । ସେଇ ସୂତ୍ରଟା ମୁଁ ତତେ ଶିଖେଇ ଦେବି । ତା'ପରେ ତୁ ଏହି ଲାଇନ୍‌ରେ ଅପରାଜେୟ ହୋଇ ରହିଯିବୁ ।

ସେଦିନ ସେ ମୋ ଚିବୁକଟା ହଲାଇ ଦେଇ କହିଲା : ଏ ରୂପରେ ଅର୍ଥର ଅଭାବ ରହିବ ନାହିଁ ରୀଟା । ତୋତେ ଦେଖିଲେ ମୋର ଆଜି ଈର୍ଷା ହେଉଛି ।

ଆଉ ଅଧଘଣ୍ଟା ପରେ ମାଥ୍ୟୁ ମୋତେ ସାଙ୍ଗରେ ନେଇ ବାହାରି ଯାଇଥିଲା ।

ବାଟରେ ମୋତେ ତା' ଲାଇନ୍‌ର ବହୁ ଗୁରୁତ୍ୱପୂର୍ଣ୍ଣ କଥାଗୁଡ଼ିକ ସମ୍ବନ୍ଧରେ ଉପଦେଶ ଦେଇ ଚାଲିଥିଲା ।

ଆମେ ଗୋଟିଏ ରିକ୍‌ସାରେ ବସି ଗ୍ରାଣ୍ଟ୍ ଷ୍ଟ୍ରିଟ୍‌ରୁ ବାହାରି ଯାଇଥିଲୁ ।

ଓଏଲସଲି ଷ୍ଟ୍ରିଟ୍‌ରେ ମ୍ୟାଜେଷ୍ଟିକ୍ ସିନେମା ନିକଟରେ ରିକ୍‌ସାରୁ ଓହ୍ଲାଇଲୁ । ଆମେ ତଳକୁ ଓହ୍ଲେଇବା ମାତ୍ରେ ଚାରି ପାଞ୍ଚଜଣ ଆଂଲୋଇଣ୍ଡିଆନ୍ ଯୁବକ ଆସି ଆମ ଚାରି ପାଖରେ ବେଢ଼ି ଗଲେ । ବେଶ ପୋଷାକରୁ ସେମାନଙ୍କର ଦୈନ୍ୟ ଫୁଟି ଦିଶୁଥିଲା ।

ମାଥ୍ୟୁ ସେମାନଙ୍କ ଭିତରୁ ଜଣକୁ ମୋ ସହିତ ପରିଚୟ କରାଇ ଦେଇ କହିଲା : ୟା ନା ରବର୍ଟ ।

ସେମାନଙ୍କ ଭିତରୁ ଆଉ ଜଣେ ଯୁବକ ରବର୍ଟକୁ ଦୂରକୁ ଟାଣି ନେଇ ମୋ ସାମ୍‌ନାକୁ ଆଗେଇ ଆସି କହିଲା : ପ୍ଲିଜ୍, ମୋତେ ଆଜି ଚାନ୍‌ସଟା ଦେବାକୁ ହେବ । ଟଙ୍କାଏ ବା ବାରଣା ଯାହା ଦେବ ସେଥିରେ ମୁଁ ରାଜି । ଡ୍ରିଙ୍କ୍ ଦିଅ ବା ନ ଦିଅ ସେଥିପାଇଁ କୌଣସି ଦାବି ନାହିଁ । କିନ୍ତୁ ପ୍ଲିଜ୍ ! ମୋତେ ଆଜି ଦୟା କରିବାକୁ ହେବ । ମାଥ୍ୟୁ ପାଖରେ ଯୋଡ଼ ହାତ କରି ଯୁବକଟି କରୁଣା ଭିକ୍ଷା କରିଥିଲା ।

ରବର୍ଟ କିନ୍ତୁ ସେଇ ଯୁବକଟିକୁ ଦୂରକୁ ଘୁଞ୍ଚେଇ ଦେଇ ଆହୁରି କରୁଣ କଣ୍ଠରେ କହିଥିଲା : ମୁଁ ଆଠଣା ପାଇଲେ ବି ରାଜି ଅଛି । ତିନିଦିନ ହେଲା ମୁଁ ସୁଯୋଗ ପାଇନାହିଁ ।

ସେହି ଯୁବକ ମାନଙ୍କ ଆଚରଣରେ ମୁଁ ସ୍ତବ୍ଧ ହୋଇ ଯାଇଥିଲି ।

ମାଥ୍ୟୁ କିନ୍ତୁ ରବର୍ଟକୁ ପ୍ରଥମ ସୁଯୋଗ ଦେଇଥିଲା ।

ଆମେ ପୁଣି ଆଗେଇ ଚାଲିଥିଲୁ । ଏଥର ବାଟ ଚାଲିଲାବେଳେ ମାଥ୍ୟୁ ମୋତେ ବାର୍‌ର ନିୟମକାନୁନ୍ ବୁଝାଇବାକୁ ଯାଇ କହିଥିଲା : ବାର୍ ଆଇନ୍‌ରେ ଅଛି, କୌଣସି ନିଃସଙ୍ଗ ମହିଳାର ବାର୍‌ରେ ପ୍ରବେଶ ଅଧିକାର ନାହିଁ । ସଙ୍ଗରେ ଜଣେ ପୁରୁଷ ସଙ୍ଗୀ ଏକାନ୍ତ ଆବଶ୍ୟକ । ତେଣୁ ଆମକୁ ବାର୍‌ରେ ପ୍ରବେଶ କରିବା ପୂର୍ବରୁ ଜଣେ ଏସକର୍ଟ ନେବାକୁ ହୋଇଥାଏ ଏବଂ ସେଇ ଏସ୍‌କର୍ଟମାନେ ଭଡ଼ାରେ ମିଳନ୍ତି । ସେମାନଙ୍କ କାର୍ଯ୍ୟ ହେଲା, ବାର୍ ଭିତରେ ଆମ ସାମନାରେ ଚୁପ୍‌ଚାପ୍ କିଛି ଗୋଟାଏ ଡ୍ରିଙ୍କ୍ ଧରି ବସି

ରହିବେ । ଯେତେବେଳେ ଶିକାର ଆମ ଜାଲରେ ଧରାପଡ଼ି ଆମ ସହିତ ମଧୁର ଆଳାପ ଆରମ୍ଭ କରିଦେବେ, ସେତେବେଳେ ଏସ୍କର୍ଟର ଛୁଟି ।

ସେମାନେ ଚୁପ୍‌ଚାପ୍ ବାଟ କାଟିବେ, ତେବେ ଆମର ସବୁ ଧରାବନ୍ଧା ଏସକର୍ଟ ଅଛନ୍ତି । ସେମାନେ ଆମକୁ ବାର୍ ପାଖରେ ଅପେକ୍ଷା କରିବେ । ତୁ ଏ ଲାଇନ୍‌ର ନୂଆ । ସେଇଥିପାଇଁ ରବର୍ଟକୁ ତୋ' ପାଇଁ ସିଲେକ୍ଟ କରିଛି । ସେଇଟା ଅପେକ୍ଷାକୃତ ଭଲ ପିଲା । ବାର୍ ଭିତରେ ଡ୍ରିଙ୍କ୍ ପାଇଁ ବିଶେଷ ବ୍ୟସ୍ତ କରେ ନାହିଁ ।

ମୁଁ ମାଥ୍ୟୁ ମୁହଁରୁ ଯେପରି ଆରବ୍ୟ ଉପନ୍ୟାସର କାହାଣୀ ଶୁଣୁଥିଲି ।

ମୋ ବିସ୍ମୟ-ବିସ୍ତାରିତ ନୟନ-ଯୁଗଳ ଆଡ଼େ ଚାହିଁରହି ମାଥ୍ୟୁ କହୁଥିଲା : ଏହାଠାରୁ ଆହୁରି ଆଶ୍ଚର୍ଯ୍ୟ କାହାଣୀ ଗନ୍ତାଘର ଏଇ କଲିକତା । ଲାଇନ୍‌ରେ ପ୍ରବେଶ କଲୁଣି ଯେତେବେଳେ ଧୀରେ ସବୁ ଶିକ୍ଷା ହୋଇଯିବ ।

ମୋ ଦେହଟା ସେତେବେଳେ ଆଉଥରେ ଶିହରୀ ଉଠିଥିଲା ।

ଅର୍ଥ ଉପାର୍ଜନ ପାଇଁ ଯେ ଏପରି ଏକ ଅଭିନବ ପନ୍ଥା ଅଛି, ସେଦିନ ମୁଁ ମାଥ୍ୟୁ ମୁହଁରୁ ଶୁଣି କାବା ହୋଇ ଯାଇଥିଲି ।

ମାଥ୍ୟୁ ମୋତେ ସେଦିନ ସଙ୍ଗରେ ନେଇ ଯେଉଁଠି ପ୍ରବେଶ କରିଥିଲା, ତା' ନାଁ ମୁନଲାଇଟ୍ ହୋଟେଲ ।

ସନ୍ଧ୍ୟା ଆରମ୍ଭ ହୋଇଥିଲା ମାତ୍ର ।

ମାଥ୍ୟୁ ଓ ମୋ ପରି ଆହୁରି ଦଳେ ଝିଅ, ସେମାନଙ୍କ ସାଙ୍ଗରେ ଜଣେ ଜଣେ ଏସ୍କର୍ଟ ଧରି ଯୋଡ଼ା ଯୋଡ଼ା ହୋଇ ଗୋଟିଏ ଗୋଟିଏ ଟେବୁଲ୍ ଅଧିକାର କରି ବସି ଯାଇଥିଲେ ।

ମାଥ୍ୟୁ ହୋଟେଲର ମ୍ୟାନେଜରଙ୍କ ସହିତ ମୋର ପରିଚୟ କରାଇ ଦେଇଥିଲା । ମ୍ୟାନେଜର ମୋ ମୁହଁକୁ ବହୁତ ସମୟ ଯାଏ ନିର୍ଲଜ୍ଜଙ୍କ ପରି ଅନାଇ ରହି କହିଥିଲେ : ଗୋଟିଏ ଜିନିଅସ୍ । ଏହାର ଭବିଷ୍ୟତ ଅଛି ।

ମୋ ମୁହଁଟି ଛୋଟ ହୋଇଥିଲା ସିନା, କିନ୍ତୁ ମାଥ୍ୟୁ ଆନନ୍ଦରେ ଭାଙ୍ଗି ପଡ଼ିଥିଲା ।

ଆମେ ହଲ୍ ଭିତରେ ଯାଇ ବସିଥିଲୁ । ମାଥ୍ୟୁ ମୋତେ ତା' ପାଖ ଟେବୁଲ୍‌ରେ ବସାଇ କଷ୍ଟମର ସହିତ କିପରି ବ୍ୟବହାର କରିବାକୁ ହେବ, ଯଥା ସମ୍ଭବ ଶିକ୍ଷା ଦେବାରେ ଲାଗିଥିଲା ।

ରବର୍ଟ ମୋ ସାମ୍ନାରେ ବସି ନିରୀହଙ୍କ ପରି ଜୁଳୁ ଜୁଳୁ ... ଦୃଷ୍ଟିରେ ବେଳେ ବେଳେ ମୋ ମୁହଁକୁ ଚାହିଁ ଚାହାଣି ନତ କରୁଥିଲା ।

ହଠାତ୍ ହଲ୍‌ର ଏକ କୋଣରୁ ମିଉଜିକ୍ ବାଜି ଉଠିଲା ।

ମୋ ଭଳି ଝିଅମାନଙ୍କ ମଧ୍ୟରେ ଏକ ଗୁଂଜରଣ ସୃଷ୍ଟି ହୋଇଗଲା ।

ଘଡ଼ିରେ ସାତଟା ବାଜିଥିଲା । ଏଥର ବାର୍‌କୁ କଷ୍ଟମର ଆସିବେ ।

ତେଣୁ ପ୍ରସ୍ତୁତ ହେବାକୁ ହେବ ।

ପ୍ରକୃତରେ କିଛି ସମୟପରେ ବାର୍‌ର ଟେବୁଲ୍ ଚେଆର ଆସ୍ତେ ଆସ୍ତେ ପୂର୍ଣ୍ଣ ହେବାକୁ ଲାଗିଲା । ବୋତଲ ଓ ଗ୍ଲାସର ଟୁଙ୍ଗ୍‌ଟାଙ୍ଗ ଶବ୍ଦରେ ଏକ ସ୍ୱତନ୍ତ୍ର ମିଉଜିକ୍‌ର ସୃଷ୍ଟି ହୋଇଗଲା ।

ମୋ ଛାତି ଭିତରଟା ଖାଲି ରହି ରହି କମ୍ପି ଉଠୁଥିଲା ।

ଏକ ସମୟରେ ମୋ ସାମ୍ନା ଚେଆରରେ ଆସି ଜଣେ ଷଣ୍ଢମାର୍କା ଲୋକ ବସିଲା । ଗୋଟାଏ ଲଙ୍ଗ୍ କୋଟ୍‌ରେ ସମସ୍ତ ଦେହ ଆବୃତ୍ତ । ମୁଣ୍ଡରେ ଗୋଟାଏ କାଶ୍ମିରୀ ଟୋପି । ଆଖିରେ କଳା ଚଷମା ।

ସେ ମୋ ମୁହଁକୁ ଚାହିଁ ରହିଲା ।

ମୁଁ ରହି ରହି ମାଥ୍ୟୁ ମୁହଁକୁ ଚାହୁଁଥିଲି । ମାଥ୍ୟୁ ଇଙ୍ଗିତରେ ମୋତେ କ'ଣ କହୁଥିଲା ମୁଁ କିଛି ବୁଝି ପାରୁ ନଥିଲି।

ରବର୍ଟ ଧୀରେ ଧୀରେ ଆମକୁ ତ୍ୟାଗ କରି ଚାଲି ଯାଇଥିଲା ।

ଆଗନ୍ତୁକଟି ତା'ପରେ ମୋତେ କ'ଣ କହିଲା, ମୋର ମନେ ନାହିଁ । ଶେଷରେ ମାଥ୍ୟୁ ମୋ ଟେବୁଲ୍ ପାଖକୁ ଉଠିଆସି ଆଗନ୍ତୁକଟି ପାଖରେ ଠିଆ ହୋଇ ହସି ହସି କହିଲା: ରୀଟା ଏ ଲାଇନ୍‌ରେ ଏକଦମ୍ ନୂଆ । ଆପଣ ଟିକେ ଚଳେଇ ନେବେ ।

ସେ ମୋ ଆଡ଼େ ଏଥର ଅର୍ଥପୂର୍ଣ୍ଣ ନୟନରେ ଚାହିଁ ହସିଲା । ମୋ ହାତଟାକୁ ଡାହାଣ ହାତରେ ଚାପି ଧରି କହିଲା : ଆଇ ସି । କିନ୍ତୁ ତୁମକୁ ମୌନ ବ୍ରତ ଭାଙ୍ଗିବାକୁ ପଡ଼ିବ ।

ମାଥ୍ୟୁ ମୋ କାନ ପାଖରେ ଆସି ଚୁପି ଚୁପି କହିଥିଲା : ଇବ୍ରାହିମଜୀ । ସେ ରେସ୍‌କୋର୍ସର ଏ କ୍ଲାସ ଜକି । ଖୁବ୍ ମୁକ୍ତ ହସ୍ତ । କେବେ ପଚାଶ ଟଙ୍କାରୁ କାହାରିକୁ କମ୍ ଦିଅନ୍ତି ନାହିଁ ।

ଇବ୍ରାହିମଜୀ ପାନୀୟର ଅର୍ଡର ଦେଇ ପୁଣି ଯେତେବେଳେ ମୋ ଆଡ଼କୁ ମୁହଁ ବୁଲେଇଲେ, ସେତେବେଳକୁ ମୋ ଦେହରୁ ସାମାନ୍ୟ ଜଡ଼ତା ଘୁଞ୍ଚି ଯାଇଥିଲା ।

ତା'ପରେ ସେ ମୋ ନାଁ ପଚାରିଲେ ।

ମୁଁ ସହଜ ସ୍ୱରରେ ଉତ୍ତର ଦେଇଥିଲି ।

ଇବ୍ରାହିମ୍‌ଜୀ ଗ୍ଲାସରୁ ପାନୀୟତକ ନିଃଶେଷ କରି ଗୋଟିଏ ସିଗାରେଟ୍‌ରେ ଅଗ୍ନି ସଂଯୋଗ କରି, ମୋ ମୁହଁକୁ ଏକ ଦୃଷ୍ଟିରେ ବହୁତ ସମୟ ଅନେଇ ରହି କହିଥିଲେ : ନା, ନା, ତୁମ ଆଖି ଯୋଡ଼ାକୁ ଚାହିଁଲେ ମୋର ମନେ ହେଉଛି, ତୁମେ ଗୋଟିଏ ଜିନିଅସ୍ । ତୁମକୁ ଜୀବନର ଖେଳ ପଡ଼ିଆରେ ଆହୁରି ତୀବ୍ର ବେଗରେ ଧାଇଁବାକୁ ହେବ ।

ମୁଁ ଇବ୍ରାହିମ୍‌ଜୀ କଥାର ଅର୍ଥ ବୁଝି ନ ପାରିଲେ ହେଁ, ମାଥ୍ୟୁର ଇଂଗିତ ବୁଝିପାରି ବୋତଲରୁ ପାନୀୟ ଢାଳି ଆଉ ଗୋଟିଏ ଗ୍ଲାସ୍ ବଢ଼ାଇ ଦେଲି ।

ଇବ୍ରାହିମ୍‌ଜୀ ଏଥର ଆନନ୍ଦରେ ଚିତ୍କାର କରି ଉଠିଲେ : ଇଏସ, ତୁମକୁ ମଣିଷର ଅନ୍ତର ବୁଝିବାକୁ ହେବ । ଅନ୍ୟର ହୃଦୟକୁ ଜୟ କରିବାକୁ ହେବ ।

ଧୀରେ ଧୀରେ ଇବ୍ରାହିମଜୀ ଉତ୍ତେଜିତ ହୋଇ ଉଠିଥିଲେ ।

ମୁଁ ମାଥ୍ୟୁର ଇଂଗିତ ଅନୁସାରେ ଗ୍ଲାସ୍ ପରେ ଗ୍ଲାସ୍ ଢାଳି ତାଙ୍କ ହାତକୁ ବଢ଼ାଇ ଦେଇ ଯାଉଥିଲି ଏବଂ ପାଖକୁ ଲାଗିବସି ଇବ୍ରାହିମ୍‌ଜୀଙ୍କ ମନ ଭିତରେ ସ୍ୱପ୍ନର ଫୁଲ ଫୁଟାଇବାକୁ ହୁଏତ ଚେଷ୍ଟା କରିଥିଲି ।

ଶେଷରେ ଇବ୍ରାହିମ୍‌ଜୀ ମୋତେ ବହୁତ ଆଦର କଲେ । ମୋତେ ଧରି ନାଚିଲେ ।

ତାଙ୍କ ଜୀବନର କାହାଣୀ ଶୁଣେଇଲେ । ଏପରି କି ଏକ ସମୟରେ ଇବ୍ରାହିମ୍‌ଜୀ ମୋ କୋଳରେ ମୁଣ୍ଡରଖି ଅବୋଧ ବାଳକଟି ପରି କାନ୍ଦି ଉଠିଲେ ।

ସେତେବେଳକୁ ରାତି ଦଶଟା ବାଜି ଯାଇଥିଲା ।

ମୁନ୍‌ଲାଇଟ୍ ବାର୍‌ରେ ଏକ ବିଭତ୍ସ ଦୃଶ୍ୟ ସୃଷ୍ଟି ହୋଇ ଯାଇଥିଲା । ଇବ୍ରାହିମ୍‌ଜୀ ମୋ ହାତ ଦୁଇଟାକୁ ଚାପିଧରି ଅନୁନୟ ସ୍ୱରରେ କହିଥିଲେ,

: ମୋତେ ଟିକିଏ ଟ୍ୟାକ୍‌ସିରେ ଉଠାଇ ଦେଇ ଆସି ପାରିବ ରୀଟା !

ମୁଁ ତାଙ୍କର କାତର ଅନୁରୋଧ ଉପେକ୍ଷା କରି ପାରି ନ ଥିଲି ।

ଇବ୍ରାହିମ୍‌ଜୀଙ୍କୁ ଟ୍ୟାକ୍‌ସିରେ ବସାଇଦେଇ ଯେତେବେଳେ ଦରଜା ବନ୍ଦ କରିବାକୁ ଗଲି, ସେ ମୋ ହାତକୁ ଶହେଟଙ୍କାର ଖଣ୍ଡେ ନୋଟ୍ ବଢ଼ାଇ ଦେଇ କହିଲେ : ମୁଁ ଭାରି ଖୁସି ହୋଇଛି ।

ଟ୍ୟାକ୍‌ସି ଛାଡ଼ି ଦେଇଥିଲା ।

ଇବ୍ରାହିମ୍‌ଜୀ ଆଉ କ'ଣ କହିଥିଲେ କେଜାଣି ମୁଁ ଶୁଣିପାରି ନ ଥିଲି । ମୋ ଜୀବନର ପ୍ରଥମ ଉପାର୍ଜିତ ନୋଟ୍ ଖଣ୍ଡିକୁ ବହୁ ସମୟ ଯାଏ ଅନାଇ ରହି ମନ ଭିତରୁ ବହୁ ଦୁଃସ୍ୱପ୍ନକୁ ଦୂରେଇବାକୁ ଚେଷ୍ଟା କରିଥିଲି ।

ମୋର ମନେ ହୋଇଥିଲା ଉପାର୍ଜନ ପଥଟା ସୁଗମ ନ ହେଲେ ହେଁ ଖୁବ୍ ଗୋଟାଏ ଦୁର୍ଗମ ନୁହେଁ ତ !

ପୁଣି ମୁଁ ମୁନ୍‌ଲାଇଟ୍ ବାର୍‌କୁ ଫେରି ଯାଇଥିଲି ।

କିନ୍ତୁ ମ୍ୟାନେଜର ମୋତେ ବାଧା ଦେଇ କହିଲେ : ନା, ଆପଣ ଏକା ଏକା ବାର୍ ମଧ୍ୟରେ ପ୍ରବେଶ କରି ପାରିବେ ନାହିଁ ।

ମୁଁ ସଚେତନ ହୋଇଥିଲି । ମୋର ମନେ ପଡ଼ିଥିଲା ମାଥ୍ୟୁର ଉପଦେଶ । ନିଃସଙ୍ଗ ମହିଳାଙ୍କର ବାର୍‌ରେ ପ୍ରବେଶାଧିକାର ନାହିଁ । ତା'ଛଡ଼ା ରାତି ଦଶଟା ବାଜି ଯାଇଛି । ଭାଇ ତେଣେ ରୋଗ ଶଯ୍ୟାରେ ଶୋଇ ହୁଏତ ଛଟପଟ ହେଉଥିବ ।

ମୁଁ ବାହାରି ଯିବା ପାଇଁ ପାଦ ଉଠାଇଲି ।

ମ୍ୟାନେଜର ମୋତେ ପଛରୁ ଡାକିଲେ । କହିଲେ : ତୁମେ ନାଚ ଶିଖିଚ ?

ମୁଁ ମୁଣ୍ଡ ହଲାଇ ମନା କଲି ।

ମ୍ୟାନେଜର ମୋର ପାଦରୁ ମୁଣ୍ଡଯାଏ ଥରେ ଚାହିଁ, ଖାତା ଲେଖିବାରେ ମନଯୋଗ ଦେଲେ । ଏଥର ମୁଁ ବାର୍‌ରୁ ବାହାରି ଯାଇ ଗୋଟିଏ ରିକ୍‌ସା ଧରିଲି ।

ମୋ ଜୀବନର ଏହି ନୂତନ ଅଧ୍ୟାୟ କଥା ଭାଇକୁ ବହୁତ ଦିନ ଯାଏ ଶୁଣାଇ ନ ଥିଲି ।

ମୁନ୍‌ଲାଇଟ୍ ବାର୍‌ରେ ଦିନ ପରେ ଦିନ ମୋର ଭାଉ ବଢ଼ିବାକୁ ଲାଗିଲା ।

ଉପାର୍ଜନ ବି କ୍ରମଶଃ ବୃଦ୍ଧି ପାଇଲା ।

କିନ୍ତୁ ଯେତେ ଅଧିକ ଟଙ୍କା ରୋଜଗାର କଲେ ମଧ୍ୟ ଭାଇର ଔଷଧ ଖର୍ଚ୍ଚ ଓ ବଡ଼ ଡାକ୍ତରଙ୍କ ଭିଜିଟ୍ ଦେଉଁ ଦେଉଁ ମୁଁ ସର୍ବସ୍ୱାନ୍ତ ହେଇ ଯାଉଥିଲି । ଭାଇର ରୋଗ କିନ୍ତୁ

କମିବାର କୌଣସି ଲକ୍ଷଣ ଜଣା ପଡୁନଥିଲା ।

ସେହିପରି ଆହୁରି କିଛିଦିନ ଅତିବାହିତ ହୋଇଗଲା ।

ମୁନ୍‌ଲାଇଟ୍ ବାର୍‌ରେ ମୋର ସୁଖ୍ୟାତି ବଢ଼ିବାରେ ଲାଗିଥିଲା । ମୁଁ ବି ମାଥ୍ୟୁ ଦୟାରୁ ସମସ୍ତ ଆଦବ କାଇଦା ହାସଲ କରି ସାରିଥିଲି ।

ହଠାତ୍ ଦିନେ ଜାଣିଲି, ମୁନ୍‌ଲାଇଟ୍ ବାର୍‌ର ପ୍ରୋପ୍ରାଇଟର ଖୁସି ହୋଇ ମୋତେ ନର୍ତ୍ତକୀ ରୂପେ ନିଯୁକ୍ତି ଦେଇଛନ୍ତି । ନାଚ ଶିଖିବା ପାଇଁ ସେ ମୋର ସମସ୍ତ ବନ୍ଦୋବସ୍ତ ମଧ୍ୟ କରି ଦେଇଛନ୍ତି ।

ମୁଁ ନର୍ତ୍ତକୀ ହେଲି । ଦରମା ଛଡ଼ା ବହୁ ଉପୁରି ରୋଜଗାରର ବାଟ ମୋ ପାଇଁ ମୁକ୍ତ ହୋଇଗଲା ।

କିନ୍ତୁ ବାର୍‌ରୁ ଯେତେବେଳେ ଘରକୁ ଫେରୁଥିଲି, ଭାଇର ନିସ୍ତେଜ ଦେହଟା ଆଡ଼େ ଚାହିଁ ଆହତ ହୋଇ ପଡୁଥିଲି ।

ଡାକ୍ତରମାନେ ଭାଇକୁ ହସ୍‌ପିଟାଲରେ ଭର୍ତ୍ତି କରିବା ପାଇଁ ଉପଦେଶ ଦେଇଥିଲେ ।

ମୁଁ ସେଥିରେ ସମ୍ମତି ଜଣାଇ ପାରି ନଥିଲି । ଭାଇ ଯେ ଗୋଟିଏ ହତ୍ୟାକାରୀ ଆସାମୀ, ସେ କଥା ସବୁବେଳେ ମୋର ମନେ ଥିଲା ।

ଭାଇକୁ ଦେଖିବା ପାଇଁ ବେଳେ ବେଳେ ଭାଇର ବନ୍ଧୁ ରଫିକ୍ ଲୁଚି ଲୁଚି ଆସୁଥିଲା । ଦିନେ ଦିନେ ରଫିକ୍ ସହିତ ମୋର ଭେଟ ହୋଇ ଯାଉଥିଲା ।

ଯେଉଁଦିନ ସେ ମୋର ହୃଦୟ ବିଦାରକ ବ୍ୟଥାରେ ବ୍ୟଥିତ ହୋଇ କହିଲା, ରାଜେନକୁ ଆରୋଗ୍ୟ କରିବାର କୌଣସି ଉପାୟ ନାହିଁ । ସାର୍‌ଙ୍କ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରି ଏ ପୃଥିବୀରେ କେହି ଏ ପର୍ଯ୍ୟନ୍ତ ବଞ୍ଚି ପାରି ନାହାନ୍ତି । ରାଜେନ୍ ବି ବଞ୍ଚିବ ନାହିଁ, କାରଣ ତା' ଦେହର ରକ୍ତରେ ନାନା ପ୍ରକାର ରୋଗର ଜାର୍ମ ଛଡ଼ା ହୋଇଛି ।

ମୋ ମନ ଦୁଃଖରେ ନୁହେଁ, ବିଦ୍ରୋହରେ ଜଳି ଉଠିଥିଲା ।

ରଫିକ୍ ମୋତେ ଉପଦେଶ ଦେଇଥିଲା : ତୁମେ ଯଦି ସାର୍‌ଙ୍କ ସହିତ ସହଯୋଗ କରି ପାରନ୍ତ, ତା'ହେଲେ ହୁଏତ...

ମୁଁ ଆଉ ରଫିକ୍‌କୁ କଥା କହିବାକୁ ଦେଇ ନ ଥିଲି । ସେଦିନ ମୋ ମୁହଁରେ ଭୀଷ୍ମ ପ୍ରତିଜ୍ଞା ଫୁଟି ଉଠିଥିଲା । ଭାଇକୁ ମୁଁ ନିଶ୍ଚୟ ଭଲ କରିବି । ସାର୍ ସର୍ବାଧିକାରୀଙ୍କୁ ଦେଖେଇ ଦେବି, ସାମାନ୍ୟ ଜଣେ ଝିଅ ବି ତାଙ୍କ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିପାରେ ।

କିନ୍ତୁ ପାରିଲି ନାହିଁ ।

ସାର୍ ସର୍ବାଧିକାରୀଙ୍କର ଜୟ ହେଲା ।

ମୋର ବର୍ଷ ବର୍ଷର ସମସ୍ତ ସାଧନା ବ୍ୟର୍ଥ ହୋଇଗଲା ।

ଭାଇକୁ ମୁଁ ବଞ୍ଚାଇ ପାରିଲି ନାହିଁ । ଦିନେ ମୁନ୍‌ଲାଇଟ୍ ବାର୍‌ରୁ ଫେରିଯାଇ ଦେଖିଲି, ଭାଇ ଆତ୍ମହତ୍ୟା କରିଛି ।

ସେଦିନ ମୋ ମନର ଅବସ୍ଥା କଥା ବୁଝି ପାରିବେ ନାହିଁ । ଆପଣ ଲେଖକ ହୋଇ ମଧ୍ୟ ମୋର ସେଇ ପରିଣତିର କଥା କଳ୍ପନା କରି ପାରିବେ ନାହିଁ ।

ଶେଷ ପର୍ଯ୍ୟନ୍ତ ଭାଇ ମୋର ଆତ୍ମହତ୍ୟା କରିଥିଲା ।

ଯାହା ପାଇଁ ତିଳ ତିଳ କରି ନିଜକୁ ନିଃଶେଷ କଲି, ସେ ମୋ ପରିଣତି ଆଡ଼େ ଏତେ ଟିକିଏ ବି ଦୃଷ୍ଟି ନ ଦେଇ, ମୋତେ ଦୁଃଖର ଅଗାଧ ସମୁଦ୍ର ଭିତରେ ଭସାଇ ଦେଇ, ଆତ୍ମହତ୍ୟା କରି ମୋଠାରୁ ସବୁଦିନ ପାଇଁ ଛୁଟିନେଇ ଚାଲିଗଲା । ସାର୍ ସର୍ବାଧିକାରୀଙ୍କ ପାଖରେ ହଠାତ୍ ମୋର ପରାଜୟ ଘୋଷଣା କରି ଭାଇ ମୋ ସହିତ ବିଦ୍ରୋହ କଲା ।

ରୀଟା ସେଦିନ ମୋ କୋଳରେ ମୁହଁ ଗୁଞ୍ଜି ଭୋ ଭୋ ହୋଇ କାନ୍ଦି ଉଠିଥିଲା । ମୁଁ ତା' ଜୀବନର କରୁଣ ପରିଣତି କଥା ଶୁଣି ଶୁଣି ନିଜେ ବି ଆତ୍ମ ସମ୍ବରଣ କରି ପାରି ନଥିଲି । ମୋ ଆଖିରୁ ମଧ କେଇ ବିନ୍ଦୁ ଲୁହ ଝରି ପଡ଼ିଥିଲା ।

ବହୁତ ସମୟ ପରେ ରୀଟାକୁ ପଚାରିଲି : ତା'ପରେ ?

ରୀଟା ଟିକିଏ ପ୍ରକୃତିସ୍ଥ ହୋଇଥିଲା । କହିଲା, ତା'ପରେ ମୁଁ ମୁନଲାଇଟ୍ ବାର୍ ଛାଡ଼ି ଦେଇଥିଲି । ସାର୍ ସର୍ବାଧିକାରୀଙ୍କ ଆଶ୍ରୟ ଭୀକ୍ଷା କରିଥିଲି । ତାଙ୍କରି ନିର୍ଦ୍ଦେଶ ଅନୁସାରେ ମୁଁ ଆଜି ଅଗରବାଲ ବ୍ରଦର୍ସର ଟାଇପିଷ୍ଟ୍ ।

: କିନ୍ତୁ ପୁଣି ଆପଣ ଜାଣି ଜାଣି କାହିଁକି ସାର୍ ସର୍ବାଧିକାରୀଙ୍କ ଫାନ୍ଦରେ ଗୋଡ଼ ପୂରାଇଲେ ।

ଏଥର ରୀଟା ଉନ୍ମାଦିନୀଙ୍କ ପରି ହସି ଉଠିଲା । କହିଲା : ତା' ପରର ଘଟଣା କହିବାର ସ୍ୱାତନ୍ତ୍ୟ ମୋର ନାହିଁ ।

ରୀଟା ମୋ କାନ ପାଖରେ ଧୀରେ କହିଲା : ଆପଣ ମୋ ସହିତ ଉଠି ଆସନ୍ତୁ ଦେଖିବେ ।

ପାଦ ଟିପି ଟିପି ଆମେ ଦୁହେଁ ଦରଜା ପାଖକୁ ଆଗେଇ ଗଲୁ । ରୀଟା ଖୁବ୍ ଧୀରେ ଦରଜାର କିଳିଣୀଟା କାଢ଼ି ହଠାତ୍ ଦରଜାଟା ମେଲା କରିଦେଲା ।

ମୁଁ ଦେଖିଲି ଗୋଟାଏ ଲୋକ ସେଠାରୁ ଛୁଟି ପଳାଇ ଯାଉଛି ।

ରୀଟା ପୁଣି ଉନ୍ମାଦିନୀଙ୍କ ପରି ହସି ଉଠିଲା । କହିଲା : ଚାରିଆଡ଼େ ଗୁପ୍ତଚର ଘେରି ରହିଛନ୍ତି । ସରକାରଙ୍କର ନୁହେଁ, ସାର୍ ସର୍ବାଧିକାରୀଙ୍କର ।

ଆମେ ସରକାରଙ୍କୁ ଫାଙ୍କି ଦେଇ ପାରୁ । କିନ୍ତୁ ସାର୍ ସର୍ବାଧିକାରୀଙ୍କୁ ! ଅସମ୍ଭବ ।

ରୀଟା ଘରର ଲାଇଟ୍ ଜଳାଇଲା ।

ମୁଁ ତା' ଆଖିରେ ପ୍ରତିହିଂସାର ଗୋଟାଏ ଜ୍ୱଳନ୍ତ ଶିଖା ଦେଖିଥିଲି ।

ତା'ପରେ ମୁଁ ବହୁତ ଚିନ୍ତା କରିଥିଲି ।

ରୀଟା ପୁଣି ସାର୍ ସର୍ବାଧିକାରୀଙ୍କ ଦଳରେ କାହିଁକି ଯୋଗ ଦେଇଥିଲା ।

ତା'ର ତ ଅଭାବ ନ ଥିଲା । ଅସୁବିଧା ନ ଥିଲା । ସେ ଯେଉଁ ପଥକୁ ଓହ୍ଲାଇ ଯାଇଥିଲା, ସେ ପଥରେ ଆୟର ଯଥେଷ୍ଟ ସୁଯୋଗ ଥିଲା । ତଥାପି ସେ ସାର୍

ସର୍ବାଧିକାରୀଙ୍କ ଦଳରେ ଭିଡ଼ିଥିଲା କାହିଁକି ?

ଏ ସମ୍ବନ୍ଧରେ ମୁଁ ଅନାଦି ଗୋମେସ୍ ସହିତ ଅଲୋଚନା କରିଥିଲି ।

ଅନାଦି ଗୋମେସଙ୍କ କୌଣସି ଯୁକ୍ତିଯୁକ୍ତ ଉତ୍ତର ଦେଇ ପାରି ନ ଥିଲେ । ଏତେ ବଡ଼ ଜଣେ ଶକ୍ତିଶାଳୀ ଲୋକ ଆଖିରେ ସେଦିନ ମୁଁ ଅଶ୍ରୁ ଦେଖିଥିଲି ।

ଅନାଦି ଗୋମେସ କହିଥିଲେ: ରୀଟାର ସବୁକଥା ଜାଣି ବି ମୁଁ ଚାହିଁଥିଲି ତାକୁ ନିଜର କରି ରଖିବା ପାଇଁ । ସେଇଥିପାଇଁ ତାକୁ ମୁନ୍‌ଲାଇଟ୍ ବାର୍‌ରୁ ଛଡ଼େଇ ଥିଲି, କିନ୍ତୁ ଫଳ ଫଳିଲା ଓଲଟା । ରୀଟା ମୋ ଅନୁରୋଧ ରଖିଲା ନାହିଁ । ମୋର ପାର୍ଟନର ହେବାକୁ ଚାହିଁଲା ନାହିଁ ।

ଅନାଦି ଗୋମେସ୍‌ଙ୍କର ଦୀର୍ଘଶ୍ୱାସ ଓ ଆଖିର ଲୁହ ରୀଟା ପାଇଁ ହୃଦୟରେ ଆଜି ବି ସ୍ଥାନ ରଖିଛି ବୋଲି ମୁଁ ଅନୁଭବ କରିଥିଲି ।

କିନ୍ତୁ ରୀଟା ତା' ପରବର୍ତ୍ତୀ ଜୀବନ କାହାଣୀ ମୋତେ ଆଉ ଶୁଣାଇ ନ ଥିଲା ।

ମୋତେ ଦୁଇଦିନ ପରେ ରୀଟା ପୁଣି ପ୍ୟାଲେସ ହାଉସ୍‌ର ୫୫ ନମ୍ବର ସୁଇଟ୍‌ରେ ନିମନ୍ତ୍ରଣ କରିଥିଲା ।

ରୀଟା ପାଇଁ ମୋ ହୃଦୟରେ ଏକ ସ୍ୱତନ୍ତ୍ର ସ୍ଥାନ ଯେପରି ଗଢ଼ି ଉଠିଥିଲା ।

ମୁଁ ୫୫ ନମ୍ବର ସୁଇଟ୍‌ରେ ସେଦିନ ଆବିଷ୍କାର କଲି ଜୁନିଆର ଅଗରବାଲକୁ । ସେ ଗ୍ଲାସରୁ ପାନୀୟ ତକ ନିଃଶେଷ କରି, ସିଗାରେଟ୍‌ରେ ଅଗ୍ନି ସଂଯୋଗ କରୁଥିଲା । ମୋର ପ୍ରବେଶରେ ଅଳ୍ପ ସଙ୍କୁଚିତ ହେଲା ପରି ମନେ ହେଉଥିଲା ।

ମୁଁ ଯାଇ ସୋଫା ଉପରେ ବସିବା ମାତ୍ରେ ସେ ହାତ ଘଡ଼ିକୁ ଚାହିଁ ଉଠି ଠିଆ ହୋଇ ପଡ଼ିଥିଲା । ରୀଟା ଆଡ଼େ ଏକ ଲାଜୁରା ଚାହାଣିରେ ଚାହିଁ କହିଥିଲା, ଆଜିର ଆପଏଣ୍ଟମେଣ୍ଟ୍ କଥାଟା ଯେପରି ମନେ ରୁହେ ।

ଜୁନିଅର ଅଗରବାଲ୍ ଆଉ ଥରେ ମୋ ଆଡ଼େ ଚାହିଁ, ଗୋଟିଏ କ୍ଷୁଦ୍ର ନମସ୍କାର ଜଣାଇ ଚାଲି ଯାଇଥିଲା ।

ରୀଟା ଖୁବ୍ ଚିନ୍ତିତ ହୋଇ ପଡ଼ିଥିଲା ।

ମୁଁ କାରଣ ପଚାରିବାରୁ ସେ ବ୍ୟଥିତ କଣ୍ଠରେ କହିଥିଲା: ଏଇ ସବୁ ଏତେ ସାନ ସାନ ପିଲାମାନେ । ଏମାନଙ୍କ ସମ୍ବନ୍ଧରେ ଚିନ୍ତା କଲେ ମୋତେ ଦୁଃଖ ଯେତିକି ଲାଗୁଛି, କାନ୍ଦ ବି ସେତିକି ମାଡ଼ୁଛି । ଏମାନଙ୍କର ଜଘନ୍ୟ ପ୍ରସ୍ତାବ ଶୁଣିବାକୁ ମୋ ମନରେ କିପରି ବିଦ୍ରୋହ ଜାଗୁଛି, ଇଚ୍ଛା ହେଉଛି ଜଣ ଜଣ କରି ଗୋଟିକ ପରେ ଗୋଟିଏ ଠିଆ କରି ଗୁଳି ଚଳାଇ ଦେବାପାଇଁ ।

ରୀଟା ଟିକିଏ ରହି ପୁଣି କହିଥିଲା: ଜୁନିଅର ଅଗରବାଲ ମୋତେ କାଲି ଆଠଟା ବେଳକୁ ନିମନ୍ତ୍ରଣ କରି ଯାଇଛି । ଗୋଟିଏ ହୋଟେଲକୁ ସେ ତା' ବନ୍ଧୁମାନଙ୍କୁ ଡାକିଛି । କି ଦୁଃସାହସ ଦେଖନ୍ତୁ ମୋତେ ସେଠାରେ ଯାଇ ତା'ର ବନ୍ଧୁମାନଙ୍କୁ ପାନୀୟ ପରିବେଷଣ କରିବାକୁ ହେବ, ଆଉ ଅର୍ଦ୍ଧ ଉଲଙ୍ଗ ହୋଇ ନାଚିବାକୁ ହେବ । ସେମାନେ ମାତାଲ ହୋଇ ହସିବେ, ମୋ ସହିତ ନାଚିବେ, ତାଳି ମାରିବେ...

ରୀଟା ହଠାତ୍ ଚୁପ୍ ହୋଇଗଲା ।

ମୁଁ କହିଲି : ଆପଣ ତ ସେପରି ନିମନ୍ତ୍ରଣ ଉପେକ୍ଷା କରିପାରନ୍ତେ !

ରୀତା ମୁହଁରେ ବ୍ୟଥାର ଛାପ ଫୁଟାଇ କହିଲା : ଆପଣ ସେ କଥା ବୁଝି ପାରିବେ ନାହିଁ । କାହିଁକି ଓ କିପରି ବାଧ ହୋଇ ମୋତେ ଏହିସବୁ କାର୍ଯ୍ୟରେ ସହଯୋଗ କରିବାକୁ ହୋଇଥାଏ । ଛାଡ଼ନ୍ତୁ । ଆପଣଙ୍କୁ ଆଜି ମୋର ଗୋଟାଏ କଥା କହିବାକୁ ଅଛି ।

ରୀତା ହଠାତ୍ ଉଠିଯାଇ ଅନ୍ୟ ଘରୁ ଗୋଟାଏ ଲଫାପା ଓ ଫାଉଣ୍ଟେନ୍ ପେନ୍ ଆଣି କହିଲା : ଏଥିରେ ଆପଣଙ୍କ ଠିକଣାଟା ଲେଖି ଦେଇ ଯାଆନ୍ତୁ ।

ମୁଁ ଟିକିଏ ଆଶ୍ଚର୍ଯ୍ୟ ହୋଇ ଯାଇଥିଲି ।

ରୀତା ମୋ ମନଭାବ ବୁଝି ପାରି ହସି ହସି କହିଥିଲା : ଭୟ ନାହିଁ । ପୋଲିସ୍ ଆପଣଙ୍କୁ ଆରେଷ୍ଟ କରିବାକୁ ଯିବନାହିଁ । ମୋର କେତେଗୁଡ଼ିଏ ଦରକାରୀ କଥା ଅଛି, ଲେଖି ଆପଣଙ୍କୁ ଜଣାଇବି ।

ମୁଁ କାଳିଘାଟ ଠିକଣାଟା ସେହି ଲଫାପା ଉପରେ ଲେଖି ଦେଇଥିଲି ।

ରୀତା ପୁଣି ସେଠାରୁ ଉଠି ଚାଲି ଯାଇଥିଲା । ଫେରି ଆସିଥିଲା ପ୍ରାୟ୍ ଦଶ ମିନିଟ୍ ପରେ, ବାହାରକୁ ବାହାରିବା ବେଶରେ ସଜ୍ଜିତ ହୋଇ ।

ରୀତା ମୋ ହାତ ଧରି ମୋତେ ଉଠାଇଥିଲା ।

ତା'ପରେ ମୋ ଆଡ଼େ ଚାହିଁ ସ୍ମିତ ହସି କହିଥିଲା : ସତରେ ଆପଣଙ୍କୁ ଦେଖିଲେ ମନରେ ମୋର ଅଶେଷ ସ୍ୱପ୍ନ ଜାଗି ଉଠୁଚି । ମନ ହେଉଚି, କ'ଣ ମନ ହେଉଛି ଜାଣନ୍ତି ?

ମୋ ଆଡ଼େ ରୀତା ପ୍ରଶ୍ନବାଚୀ ନୟନରେ ଅନାଇ ରହିଲା ।

ମୁଁ ହସି ହସି କହିଲି : ହୁଏତ ମନେ ହେଉଚି ଏଇ ଅନାଡ଼ି ଲୋକ ଗୁଡ଼ାକ ଆମ ସ୍ୱପ୍ନ ଦୁନିଆର ଗଳଗ୍ରହ । ଏମାନଙ୍କୁ ଲାଇନ୍ ଲାଇନ୍ ଠିଆ କରି ଏକାଥରକେ ଗୁଳିଟିପି ହତ୍ୟା କରି ପାରିଲେ, ସ୍ୱସ୍ତିରେ ନିଃଶ୍ୱାସ ମାରି ହୁଅନ୍ତା ।

ରୀତା ଶାନ୍ତ କଣ୍ଠରେ କହିଲା : ନା, ଠିକ୍ ତା' ନୁହେଁ । ମୋର ଇଚ୍ଛା ହେଉଛି, ମୋ ଭଳି ଝିଅମାନେ ଆପଣଙ୍କ ପରି ଜଣେ ଜଣେ ଲୋକଙ୍କ ହାତ ଧରି ଯଦି ଘନ ଜଙ୍ଗଲକୁ ଚାଲି ଯାଇ ପାରନ୍ତେ, ତେବେ ଦୁନିଆରୁ ବ୍ୟଭିଚାର ମରି ଯାଆନ୍ତା ।

ମୁଁ ରୀତା ମୁହଁକୁ ଚାହିଁଲି ।

ରୀତା ମୁହଁରେ ଖଣ୍ଡେ ଦୁଷ୍ଟ ହସ ଫୁଟାଇ ମୋତେ ଟାଣି ଟାଣି ବାହାରକୁ ନେଇଗଲା ।

ରୀତାର ଗତିପଥ ମୋତେ ଜଣା ନ ଥିଲା ।

ଆମେ ତଳକୁ ଓହ୍ଲେଇ ଯାଇ ଗୋଟିଏ ଟ୍ୟାକ୍ସିରେ ବସିଲୁ ।

ମୋ ଉଦ୍ଦେଶ୍ୟପୂର୍ଣ୍ଣ ଚାହାଣି ଆଡ଼େ ଚାହିଁ ରୀତା କହିଲା : ମୋର ଜଣେ ବାନ୍ଧବୀ ମୋତେ ଗ୍ରାଣ୍ଡରେ ଅପେକ୍ଷା କରିଥିବ । ତା' ସହିତ ମୁଁ ଆପଣଙ୍କର ପରିଚୟ କରାଇ ଦେବି । ତାକୁ ଆପଣଙ୍କୁ ଭାରି ଭଲ ଲାଗିବ ।

: କିପରି ଆପଣ ମୋ ମନ କଥା ବୁଝିଲେ ?

ରୀତା ସେହିପରି ଦୁଷ୍ଟ ହସ ହସି କହିଲା : ମୁଁ ଏତେ ବର୍ଷ ଧରି ଅନ୍ୟର ମନକଥା ବୁଝି ସେବା କରି ଆସିଲି, ଆଉ ଆଜି ଆପଣ ତାହା ଅସ୍ୱୀକାର କଲେ ଚଳିବ ?

ମୁଁ ଖାଲି ହସିଲି । ରୀତାକୁ କିଛି ଉତ୍ତର ଦେଲି ନାହିଁ ।

ଆମେ ଗ୍ରାଣ୍ଡ ହୋଟେଲକୁ ଆସିଲୁ ।

କିନ୍ତୁ ରୀଟାର ସେହି ବଂଧୁ ସେଠାରେ ନ ଥିଲେ ।

ରୀଟା ମୋତେ ବାର୍‌କୁ ଯିବା ପାଇଁ ଅନୁରୋଧ କଲା ।

ମୁଁ କହିଲି : ମୋର ଆପତ୍ତି ନାହିଁ, କିନ୍ତୁ ଗୋଟାଏ ସର୍ତ୍ତ । ଆପଣ ତ ଜାଣନ୍ତି ।

ରୀଟା କହିଲା : ଆପଣଙ୍କ ସର୍ତ୍ତରେ ମୁଁ ରାଜି, କିନ୍ତୁ ମୋର ଗୋଟିଏ କଥା ମାନିବାକୁ ହେବ ।

ମୁଁ ପ୍ରଶ୍ନବାଚୀ ନୟନରେ ରୀଟା ମୁହଁକୁ ଚାହିଁଲି ।

ସେ ମୋର ଆହୁରି ପାଖକୁ ଲାଗି ଆସି, ଅନ୍ତରଙ୍ଗ ପରି କହିଲା ମୋତେ ଆପଣ ଆଜି ଡ୍ରିଙ୍କ୍ ଦେବେ ।

ମୋର ମନେହେଲା ରୀଟା ଯେପରି ମୋ ପାଖରେ ଆଜି ଭିକ୍ଷା ପାତ୍ର ଧରି ଠିଆ ହୋଇଛି । ତା' ଜୀବନର ସମସ୍ତ ସମ୍ପଦ ନିଃଶେଷ କରି ସେ ଆସିଛି ମୋ ଦୁଆରକୁ ।

ମୁଁ ପଚାରିଲି : ମୁଁ ତୁମକୁ ଡ୍ରିଙ୍କ୍ ଦେଲେ ତୁମେ କ'ଣ ଆନନ୍ଦ ପାଇବ ?

ରୀଟା କହିଲା : ମୋର ଏଇ ଶେଷ ଇଚ୍ଛା । ଆପଣ ପୂରଣ ନ କଲେ ମୋ ଜୀବନରେ ଏକ ବ୍ୟଥାର ରାଗିଣୀ ବାଜି ଉଠିବ ।

ରୀଟାର ଏଇ ଶେଷ ଇଚ୍ଛା କଥା ଶୁଣି ମୁଁ ଚମକି ଉଠିଥିଲି ।

ରୀଟା କିନ୍ତୁ ମୋତେ ଟାଣି ଟାଣି ବାର୍‌କୁ ନେଇଥିଲା ଏବଂ ପେଗ୍ ପରେ ପେଗ୍ ନିଃଶେଷ କରିଥିଲା ।

ସେଦିନ ବାର୍‌ର ସମସ୍ତ ବିଲ୍ ମେଣ୍ଟାଇ ଆମେ ଯେତେବେଳେ ଫେରୁଥିଲୁ, ହଠାତ୍ ବାର୍‌ର ଶେଷ ପ୍ରାନ୍ତରେ ଜଣକ ସହିତ ଭେଟ ହୋଇଗଲା । ସେ ଆମର ପଥରୋଧ କରି ଠିଆ ହୋଇଗଲା ।

ରୀଟା କହିଲା : ରଞ୍ଜନ । ଯାହାଙ୍କ କଥା ମୁଁ ପୂର୍ବରୁ ଆପଣଙ୍କୁ କହିଥିଲି ।

ରଞ୍ଜନ ମୋତେ ନମସ୍କାର କରି ବସିବାକୁ ଅନୁରୋଧ କଲା । ରୀଟାର ଅନିଚ୍ଛା ସତ୍ତ୍ୱେ ରଞ୍ଜନର ଅନୁରୋଧ ରକ୍ଷା କଲି ।

ମୋ ମନ ଭିତରେ କିନ୍ତୁ ନୂତନ ଏକ ଆଗ୍ରହର ଜନ୍ମ ଲାଭ କରିଥିଲା । ହଠାତ୍ ମୋର ମନେ ପଡ଼ି ଯାଇଥିଲା ମିସେସ ସ୍ମିଥ୍‌ଙ୍କ କଥା । ତାଙ୍କର ପରିଣତି କ'ଣ ହେଲା ଜାଣିବା ପାଇଁ ମୁଁ ଖୁବ୍ ଚଞ୍ଚଳ ହୋଇ ଉଠିଥିଲି ।

ରଞ୍ଜନ ରୀଟାକୁ ଉଦ୍ଦେଶ୍ୟ କରି ମୋତେ ଦେଖାଇ କହିଲା: ଭଦ୍ରଲୋକ ନିଶ୍ଚୟ ତମର ସ୍ୱାମୀ ।

ରୀଟା ନିର୍ଲଜ୍ଜଙ୍କ ପରି ମୁଣ୍ଡ ହଲାଇ ସମ୍ମତି ଜ୍ଞାପନ କଲା ।

ରଞ୍ଜନ ଆଉ ଥରେ ମୋତେ ହାତ ଯୋଡ଼ି ନମସ୍କାର କରି ଗୋଟିଏ ଦୀର୍ଘଶ୍ୱାସ ତ୍ୟାଗ କରି କହିଲା : ଆପଣମାନେ ସୁଖୀ ହୁଅନ୍ତୁ, ଭଗବାନଙ୍କ ନିକଟରେ କାମନା କରୁଛି । ମୋପରି ଅଭିଶପ୍ତ ଜୀବନ କୌଣସି ଶତ୍ରୁର ବି ନ ହେଉ ।

ରଞ୍ଜନ ତା' ବିଦେଶ ଭ୍ରମଣର ଅଭିଜ୍ଞତା ବର୍ଣ୍ଣନା କରିଥିଲା ।

ପାଠପଢ଼ା ତ ହେଲା ନାହିଁ । କିନ୍ତୁ ମିସେସ୍ ସ୍ମିଥ୍‌ଙ୍କୁ ଧରି ସେ କିପରି ଏକ ସହରରୁ ଅନ୍ୟ ସହର ଓ ଏକ ହସ୍‌ପିଟାଲ୍‌ରୁ ଅନ୍ୟ ହସ୍‌ପିଟାଲ ଘୂରି ବୁଲୁଥିଲା ଏବଂ

ମିସେସ୍ ସ୍ମିଥ୍ଙ୍କ ଅତ୍ୟାଚାରରେ ଜର୍ଜରିତ ହୋଇ ଆଖିର ଲୁହରେ ତକିଆ ଭିଜେଇ ଥିଲା, ସେସବୁ କାହାଣୀ ରଞ୍ଜନ ଆମକୁ କହିଲା ।

ରଞ୍ଜନର ଆଜି ବି ସନ୍ଦେହ ଯେ, ମିସେସ୍ ସ୍ମିଥ୍ଙ୍କର କେବେ କେହି ସ୍ୱାମୀ ନ ଥିଲେ କି ନାହାନ୍ତି । କିନ୍ତୁ ମିସେସ ସ୍ମିଥ୍ ମିଷ୍ଟର ସ୍ମିଥ୍ଙ୍କ ପାଇଁ ଆତ୍ମ ବିଭୋର ହୋଇ ରହିଥିଲେ ।

ପ୍ରତିଦିନ ରାତିରେ ସେ ତାଙ୍କର ସ୍ୱାମୀଙ୍କ ସହିତ କଟାଇଥିବା ରୋମାଞ୍ଚକର ଦିନ ଗୁଡ଼ିକର କାହାଣୀ ମୋତେ ଶୁଣାଉଥିଲେ । ସେତେବେଳେ ସେ ଏତେ ଭାବ ପ୍ରବଣ ହୋଇ ଉଠୁଥିଲେ ଯେ, ଯେପରି ସେ ସେହି ମୁହୂର୍ତ୍ତରେ ସେଗୁଡ଼ା ଅଙ୍ଗେ ନିଭାଉଛନ୍ତି, ସେହି ଭଳି ଭାବ ପ୍ରକାଶ କରି, ମୋତେ ମିଷ୍ଟର ସ୍ମିଥ୍ ପରିକଳ୍ପନା କରି ବିବ୍ରତ କରି ପକାଉଥିଲେ । ପ୍ରତି ରାତିରେ ମୋତେ ମିଷ୍ଟର ସ୍ମିଥ୍ଙ୍କ ସ୍ଥାନ ପୂରଣ କରିବାକୁ ହେଉଥିଲା ।

ସେତେବେଳେ ମିସେସ୍ ସ୍ମିଥ୍ଙ୍କ ଦେହ ମୁହଁରେ କି ପ୍ରସନ୍ନତା । ମୁଁ ଦେଖି ଅବାକ୍ ହୋଇ ଯାଉଥିଲି । ସେତେବେଳେ ମିସେସ୍ ସ୍ମିଥ୍ ଏକ ଅନୂଢ଼ା କିଶୋରୀ ପରି ମୋ ସହିତ ଗୋଳ କରୁଥିଲେ ।

ଶେଷ ପର୍ଯ୍ୟନ୍ତ ମୋତେ ମିସେସ୍ ସ୍ମିଥ୍ଙ୍କର ସମସ୍ତ ଅତ୍ୟାଚାର ସହ୍ୟ କରିବାକୁ ପଡ଼ିଲା । ସେ ମିଷ୍ଟର ସ୍ମିଥ୍ଙ୍କ ଅନୁସନ୍ଧାନ ତ୍ୟାଗ କରି ସ୍ୱଇଜରଲାଣ୍ଡର ଏକ ଛୋଟ ବଂଲୋ ପାଟର୍ଣ୍ଣର ଘରଭଡ଼ା ନେଇ ସ୍ଥିର ଚିତ୍ତରେ ବସବାସ ଆରମ୍ଭ କରିଦେଲେ ।

ମୁଁ ଅବାକ୍ ହୋଇଗଲି । ସବୁଠାରୁ ବେଶି ଅବାକ୍ ହୋଇଥିଲି, ଯେଉଁଦିନ ସେ ସେଠାକାର ଏକ ବ୍ୟାଙ୍କର ପାସ୍‌ବୁକ୍ ଆଣି ମୋତେ ଦେଖାଇଲେ । ତାଙ୍କ ନାଁରେ ସେ ବ୍ୟାଙ୍କରେ ପ୍ରଚୁର ଅର୍ଥ ଜମା ରଖିଥିଲେ ।

ସେ ମୋ ମୁହଁକୁ ଚାହିଁ ସ୍ମିତ ହସି କହିଲେ : ମୋ ବାପା ଥିଲେ ଏଠାକାର ବାସିନ୍ଦା । ତାଙ୍କର କିନ୍ତୁ କର୍ମସ୍ଥଳ କାଳ କ୍ରମେ ଇଣ୍ଡିଆ ହୋଇଥିଲା । ମୋର ଜନ୍ମ ଇଣ୍ଡିଆରେ । ବାପା ମା' ଶେଷ ନିଃଶ୍ୱାସ ଇଣ୍ଡିଆ ମାଟିରେ ତ୍ୟାଗ କରିଥିଲେ । ତାଙ୍କର ଆଉ କୌଣସି ସନ୍ତାନ ସନ୍ତତି ନ ଥିଲେ । ଶୁଣିଛି ଏଠାରେ ପ୍ରଚୁର ସମ୍ପତ୍ତି ଥିଲା । ବାପା ଥରେ ଆସି ସେ ସମସ୍ତ ବିକ୍ରୟ କରି ଦେଇ ସମସ୍ତ ଟଙ୍କା ବ୍ୟାଙ୍କରେ ମୋ ନାଁରେ ଗଚ୍ଛିତ କରି ଯାଇଥିଲେ । ସେହି ଟଙ୍କା ଚକ୍ରବୃଦ୍ଧି ହାରରେ ବଢ଼ି ଏହି ଅଙ୍କ ଧାରଣା କରିଛି ।

ମୁଁ ସେଦିନ ଦୀର୍ଘ ସମୟ ମିସେସ୍ ସ୍ମିଥ୍ଙ୍କ ମୁହଁକୁ ଅନାଇ ରହିଥିଲି ।

ତା'ପରେ ମିସେସ୍ ସ୍ମିଥ୍ ମୋତେ ଆଶ୍ୱାସନା ଦେଇ କହିଥିଲେ: ଆଉ କିଛିଦିନ ବିଭିନ୍ନ ଦେଶରେ ଆମେ ମିଷ୍ଟର ସ୍ମିଥ୍ଙ୍କୁ ଖୋଜିବା । ତା'ପରେ ଯଦି ନ ପାଇବା ଫେରି ଆସିବା ଏଇ ସ୍ୱଇଜରଲାଣ୍ଡକୁ । ନତୁବା ଫେରିଯିବା ଇଣ୍ଡିଆକୁ । ସେଇଟା ତମ ଇଚ୍ଛା ଅନୁସାରେ ନିର୍ଦ୍ଧାରଣ କରିବା ।

ଆମେ ପୁଣି ଯାତ୍ରା ଆରମ୍ଭ କରିଥିଲୁ । ଜାପାନ, ଜର୍ମାନ, ଆମେରିକା ପ୍ରତିଟି ଦେଶରେ ଛୋଟଠୁ ବଡ଼ ସହରରେ ଆମେ ଖୋଜିଥିଲୁ ମିଷ୍ଟର ସ୍ମିଥ୍ଙ୍କୁ । ପ୍ରତି ହସ୍‌ପିଟାଲରେ ରେକର୍ଡ ଘାଣ୍ଟି ଦେଖିଥିଲୁ ବର୍ଷ ବର୍ଷକର । କିନ୍ତୁ କୌଣସି ଗୋଟିଏ ଜାଗାରେ ମିଷ୍ଟର ସ୍ମିଥ୍ଙ୍କ ନାମ ଖୋଜି ବାହାର କରି ପାରି ନ ଥିଲୁ ।

ମିସେସ୍ ସ୍ମିଥ୍ କିନ୍ତୁ ହତାଶ ହୋଇ ନ ଥିଲେ ।

ତାଙ୍କର ବିଶ୍ୱାସ ଥିଲା, ଦିନେ ନା ଦିନେ ସେ ମିଷ୍ଟର ସ୍ମିଥ୍‌ଙ୍କୁ ଆବିଷ୍କାର କରିବେ।

କିନ୍ତୁ ମୁଁ ବ୍ୟଥିତ ହୋଇ ପଡ଼ିଥିଲି।

ମିସେସ୍ ସ୍ମିଥ୍ ମୋ ମନର ଅବସ୍ଥା ବୁଝିପାରି, ତାଙ୍କ ଛାତି ଉପରକୁ ମୋତେ ଆଉଜାଇ ନେଇ, ମୋର ସେହି ମୁହୂର୍ତ୍ତ ଗୁଡ଼ାକୁ ସରସ କରି ତୋଳିବା ପାଇଁ ସବୁ-ପ୍ରକାର ଚେଷ୍ଟା କରିଥିଲେ।

ମୋ ଅଜାଣତରେ ଧୀରେ ଧୀରେ ମୁଁ ମିସେସ୍ ସ୍ମିଥ୍‌ଙ୍କ ପ୍ରତି ପ୍ରବଳ ଭାବରେ ଆସକ୍ତ ହୋଇ ଉଠିଥିଲି।

ବର୍ଷ ବର୍ଷ ଧରି ବହୁ ଦେଶ ପର୍ଯ୍ୟଟନ କରି ଆମେ ମିଷ୍ଟର ସ୍ମିଥ୍‌ଙ୍କୁ ଖୋଜିଥିଲୁ। ମିଷ୍ଟର ସ୍ମିଥ୍‌ଙ୍କ ନାଁ ଶୁଣିଲେ ମିସେସ୍ ସ୍ମିଥ୍ ଯେପରି ସମ୍ମୋହିତ ହୋଇ ପଡୁଥିଲେ। ମୁଁ ଆଜି ମିଷ୍ଟର ସ୍ମିଥ୍‌ଙ୍କ କଥା ଭାବିଲେ ସ୍ତବ୍‌ଧ ହୋଇ ଯାଉଛି।

ରଞ୍ଜନ ଟିକିଏ ରହି ପାନ ପାତ୍ରରୁ ଶେଷ ପାନୀୟତକ ନିଃଶେଷ କରି କହିଲା: ତା' ପରର ଘଟଣା କିନ୍ତୁ ଆହୁରି ରହସ୍ୟପୂର୍ଣ୍ଣ।

ରଞ୍ଜନ କହି ଚାଲିଥିଲା : ଏବଂ ଶେଷରେ ଆମେ ସୁଇଜରଲାଣ୍ଡକୁ ଫେରି ଆସିଲୁ। ଆହୁରି କେତେଦିନ ସେହିପରି କଟିଗଲା।

ଦିନେ ଅଧରାତିରେ ହଠାତ୍ ମିସେସ୍ ସ୍ମିଥ୍ ମୋତେ ନିଦରୁ ଉଠାଇ ବସାଇଲେ। ମୁଁ ଶେଯ ଉପରେ ଉଠି ବସିଲି। ମିସେସ୍ ସ୍ମିଥ୍ ମୋ ମୁହଁକୁ ବହୁତ ସମୟ କିପରି ଚୁପ୍‌ଚାପ୍ ଅନାଇ ରହି ଧୀରେ ଧୀରେ କହିଲେ : ଜାଣ ରଞ୍ଜନ ! ମୁଁ ଆଜି ଗୋଟାଏ ସ୍ୱପ୍ନ ଦେଖିଲି।

ମିସେସ୍ ସ୍ମିଥ୍‌ଙ୍କର ଉଦ୍ଭଟ ସ୍ୱପ୍ନ ବୃତ୍ତାନ୍ତ ଶୁଣିବାକୁ ମୋର ମୋଟେ ଆଗ୍ରହ ନ ଥିଲା। ମୁଁ ପୁଣି ବିଛଣାରେ ଶୋଇବାକୁ ଚେଷ୍ଟା କରୁଥିଲି। କିନ୍ତୁ ମିସେସ୍ ସ୍ମିଥ୍ ମୋତେ ଶୁଆଇ ଦେଲେ ନାହିଁ।

ମୁଁ ବାଧହେଲି ତାଙ୍କର ସ୍ୱପ୍ନ ବୃତ୍ତାନ୍ତ ଶୁଣିବା ପାଇଁ।

ମିସେସ୍ ସ୍ମିଥ୍ ଗଦ୍‌ଗଦ୍ ହୋଇ କହିଲେ : ମିଷ୍ଟର ସ୍ମିଥ୍ ଆଉ ବୋଧହୁଏ ଇହଜଗତରେ ନାହାନ୍ତି। ସେ ପ୍ରାୟ ତିନି ଚାରି ବର୍ଷ ହେବ୍ ଏକ ଜାହାଜ ଦୁର୍ଘଟଣାରେ ମୃତ୍ୟୁ ବରଣ କରିଛନ୍ତି। ମିଷ୍ଟର ସ୍ମିଥ୍ ନିଜେ ଆଜି ମୋତେ କହିଗଲେ। ଆଉ କ'ଣ କହିଗଲେ ଜାଣ ?

ମୁଁ ମିସେସ୍ ସ୍ମିଥ୍‌ଙ୍କର ଛଳ ଛଳ ଆଖିଆଡ଼େ ଚୁପ୍‌ଚାପ୍ ଅନାଇ ରହିଲି।

ମୋ ପାଖକୁ ଉଠିଆସି, ଅନ୍ୟ ଦିନମାନଙ୍କ ପରି ମୋତେ ନିବିଡ଼ ଭାବରେ ଦୁଇ ବାହୁରେ ଜଡ଼େଇ ଧରି, କାନ୍ଦି କାନ୍ଦି କହିଲେ: ମିଷ୍ଟର ସ୍ମିଥ୍ କହିଗଲେ, ସେ ମରି ସୁଦ୍ଧା ତମ ଦେହରେ ଅମର ହୋଇ ରହିଛନ୍ତି। ସେ କହିଗଲେ ମୋର ରକ୍ତ ମାଂସର ଶରୀର ତ ଆଉ ନାହିଁ, ମୋର ଆତ୍ମା ରଞ୍ଜନର ଆତ୍ମା ସହିତ ମିଶି ଯାଇଛି। ତେଣୁ ତୁମେ ରଞ୍ଜନକୁ ପାଇଲେ ମୋତେ ପାଇଲ ବୋଲି ଜାଣିବ।

ସେଦିନ ବହୁ ଚେଷ୍ଟା କରି ମଧ୍ୟ ମିସେସ ସ୍ମିଥ୍‌ଙ୍କୁ ମୋ ଦେହରୁ ଅଲଗା କରିପାରି ନ ଥିଲି। ସେ କାନ୍ଦି କାନ୍ଦି ପ୍ରସ୍ତାବ କରିଥିଲେ, ମୋତେ ବିବାହ କରି, ସ୍ୱାମୀ ରୂପେ

ବରଣ କରି, ଆଇନ୍ ସଂଗତ ଭାବରେ ଘର ସଂସାର କରିବେ ।

ସେ ମୋତେ ଏପରି ଭାବରେ ବାଧ୍ୟ କରିଥିଲେ ଯେ, ତାଙ୍କ ପ୍ରସ୍ତାବରେ ସମ୍ମତ ନ ହେବାର ଉପାୟ ମୋର ନ ଥିଲା ।

ରଞ୍ଜନ ନୀରବରେ ପୁଣି ବୋତଲରୁ ପାନୀୟ ଢାଳିଲା । ଆଖି ବୁଜି ନୀରବରେ ପାନପାତ୍ରକୁ ନିଃଶେଷ କରିବାକୁ ଲାଗିଲା ।

ମୁଁ ପଚାରିଲି : ତା'ପରେ ? ରଞ୍ଜନ ହୋ ହୋ ହୋଇ ହସି ଉଠିଲା । କହିଲା, ତା'ପରେ ମିସେସ୍ ସ୍ମିଥ୍ ହେଲେ ମିସେସ୍ ତରଫ୍‌ଦାର୍, ଅର୍ଥାତ୍ ରଞ୍ଜନ ତରଫ୍‌ଦାର୍‌ର ସ୍ତ୍ରୀ ।

ରଞ୍ଜନ ଏଥର ହସିଲା, ଖାଲି ହସିଲା । ପାନପତ୍ର ପରେ ପାନପତ୍ର ନିଃଶେଷ କରିବାରେ ଲାଗିଲା ।

ରୀଟା ବୋଧହୁଏ ଅଧୈର୍ଯ୍ୟ ହୋଇ ଉଠିଥିଲା । ସେ ମୋ ହାତ ଧରି ଟାଣି ଟାଣି ବାହାରକୁ ନେଇଗଲା ।

ରୀଟା ବିଦାୟ ନେଲାବେଳେ ମୋଠାରୁ ଦୁଇଦିନ ପାଇଁ ଛୁଟି ନେଇଥିଲା ।

ଦୁଇଦିନ ପରେ ମୁଁ ପୁଣି ପ୍ୟାଲେସ୍ ହାଉସ୍‌ରେ ପହଞ୍ଚିଲି ।

ଲିଫ୍‌ଟରେ ଉଠିଲାବେଳେ ମିଷ୍ଟର ଆୟଙ୍ଗାରଙ୍କ ସହିତ ଦେଖା ହୋଇଗଲା । ସେ ମୋତେ ଜଡ଼େଇ ଧରି କହିଲେ : ଆପଣଙ୍କର ଯେ ଆଉ ଦର୍ଶନ ନାହିଁ । ମୁଁ କିନ୍ତୁ ଆପଣଙ୍କ ପାଇଁ ଗୋଟିଏ ଶୁଭ ଖବର ରଖିଛି । ବହୁ ଦରଖାସ୍ତ ବହୁ ଲୋକଙ୍କର ନାନା ପ୍ରଲୋଭନ ମୁଁ ଗୋଡ଼ରେ ଆଡ଼େଇ ଦେଇଛି ।

ହଠାତ୍ ମୁଁ ମିଷ୍ଟର ଆୟଙ୍ଗାରଙ୍କ କଥାର ମର୍ମ କିଛି ବୁଝିପାରିଲି ନାହିଁ । ସେ କିନ୍ତୁ ଅବିଚଳିତ କଣ୍ଠରେ କହି ଚାଲିଥିଲେ :ଏ କେତେଦିନ ହେବ ମୁଁ କେତେଗୁଡ଼ିଏ ଘଟଣାର କାହାଣୀ ନୋଟ୍ କରି ରଖିଛି । ଆପଣଙ୍କୁ ବିଶେଷ କିଛି ପରିଶ୍ରମ କରିବାକୁ ପଡ଼ିବ ନାହିଁ । ସବୁ ଏଇ ପ୍ୟାଲେସ୍ ହାଉସ୍‌ର ଘଟଣା । ମୋ ନିଜ ଆଖିରେ ଦେଖା ।

ଆମେ ଲିଫ୍‌ଟରୁ ଓହ୍ଲାଇଲୁ । ମିଷ୍ଟର ଆୟଙ୍ଗାର ୫୫ ନମ୍ବର ସୁଇଟ୍ ପାଖରେ ମୁହୂର୍ତ୍ତେ ଠିଆ ହୋଇ କହିଲେ : ଏଇ ସୁଇଟ୍‌ଟି ମୁଁ ଆପଣଙ୍କୁ ନିଶ୍ଚୟ ଦେବି । ହୁଏତ ଆଉ ଦିନେ ବା ଦୁଇଦିନ ଆପଣଙ୍କୁ ଅପେକ୍ଷା କରିବାକୁ ପଡ଼ିବ ।

ପୁଣି ଆମେ ଆଗେଇ ଯାଇଥିଲୁ । ମିଷ୍ଟର ଆୟଙ୍ଗାର ମ୍ୟାନେଜରିଆଲ ଟେବୁଲ୍ ଉପରେ ବସି ଖୁବ୍ ଗଦ୍ ଗଦ୍ ହୋଇ କହିଲେ : ସେଇ ୫୫ ନମ୍ବର ସୁଇଟ୍‌ର ଏକ ସୁଇଟ୍ ଲଳନାର କାହାଣୀ ମୁଁ ଆପଣଙ୍କୁ କହିବି । ସେଥିରେ ରୋମାଞ୍ଚ ଅଛି, ରୋମାନ୍‌ସ ଅଛି, ଆଉ ଅଛି...

ମିଷ୍ଟର ଆୟଙ୍ଗାର ନୀରବ ରହି ପକେଟରୁ ତାଙ୍କ ମନି ପର୍ସଟା ବାହାର କଲେ ।

ମନିପର୍ସର ଏକ ବିଶେଷ ସ୍ଥାନରୁ ଛୋଟ ଫଟୋଟିଏ ବାହାର କରି ଟେବୁଲ୍ ଉପରେ ଥୋଇ, ମୋ ମୁହଁକୁ ଆଶାୟୀ ନୟନରେ ଚାହିଁ ରହିଲେ, ବୋଧହୁଏ ଅଭିମତ ପ୍ରତୀକ୍ଷାରେ ।

ମୁଁ ଫଟୋଟି ଦେଖିଲି । ରୀଟାର । ଏକ ଅସଂଯତ ମୁହୂର୍ତ୍ତର ଫଟୋ ।

ଧୀରେ ଧୀରେ ଆଖି ଉଠାଇ ମିଷ୍ଟର ଆୟଙ୍ଗାରଙ୍କ ଚାହାଣି ସହିତ ମିଶାଇବା କ୍ଷଣି ସେ ହସିଲେ ।

ମୁଁ ସ୍ମିତ ହସି ପଚାରିଲି : କ'ଣ ଇଙ୍ଗେଜଡ଼୍ ?

ମିଷ୍ଟର ଆୟଙ୍ଗାର ମୁହଁରେ ଏକ ଅପୂର୍ବ ବେଦନାର ଛାପ ଫୁଟି ଉଠିଲା । ସେ ବ୍ୟଥିତ କଣ୍ଠରେ କହିଲେ : ମୋ ମୁହଁଟା ଏପରି ଦେଖିବାକୁ ଯେତେ ଅସୁନ୍ଦର, ପ୍ରକୃତରେ ସେତେଟା ନୁହେଁ । ମୋର ଫଟୋ ଫେସ୍ କିନ୍ତୁ ଅପୂର୍ବ । ମିସ୍ ରୀଟାକୁ ବହୁତ ବୁଝାଇଲି, ବହୁତ ଅନୁନୟ କଲି : ସେ କିନ୍ତୁ ମୋ ଦୁଃଖ ବୁଝିଲା ନାହିଁ । ଏକା ରୀଟା କାହିଁକି, ଏହି ପ୍ୟାଲେସ୍ ହାଉସ୍‌ରେ ବହୁ ସୁନ୍ଦରୀଙ୍କ ପାଣି ଗ୍ରହଣ କରି, ସେମାନଙ୍କୁ ରାଣୀ ପରି ରଖିବାକୁ ନିର୍ଭର ପ୍ରତିଶ୍ରୁତି ଦେଇଛି । ପାସବୁକ୍‌ରୁ ବ୍ୟାଙ୍କ୍ ବାଲାନ୍‌ସ ଦେଖେଇଛି । କିନ୍ତୁ କେହି ମୋ ହୃଦୟର ବେଦନା ବୁଝି ନାହାନ୍ତି । ଅନ୍ତରାଳରୁ ମୋତେ ପରିହାସ କରି କହିଛନ୍ତି, ଓଲ୍ଡ଼ ପିଗ୍ । ଆଚ୍ଛା ଆପଣ କୁହନ୍ତୁ ତ ମିଷ୍ଟର ଦାସ ? ଆପଣ ଜଣେ ଲେଖକ, ମଣିଷର ହୃଦୟ ବୁଝନ୍ତି, ମଣିଷର ଅନ୍ତର ଚିହ୍ନନ୍ତି, ମଣିଷର ରୂପଟା କ'ଣ ଏକମାତ୍ର ତୁଳନୀୟ ବସ୍ତୁ ।

ମିଷ୍ଟର ଆୟଙ୍ଗାର ମୋର ହାତ ଧରି ପ୍ରାୟ କାନ୍ଦି ଉଠିଲେ । ଏଥର ମୁଁ ମିଷ୍ଟର ଆୟଙ୍ଗାରଙ୍କ ମୁହଁକୁ ଚାହିଁ ପ୍ରକୃତରେ ଏକ ବନ୍ୟ ଶାର୍ଦ୍ଦୁଳର ପ୍ରତିଛବି ଦେଖିଲି । କିନ୍ତୁ ସମବେଦନା ଜଣାଇ କହିଲି: ମଣିଷ ମଣିଷକୁ ଏପରି ପରିହାସ କରିବା ଖୁବ୍ ଅପରାଧ । ଯେଉଁମାନେ ରୂପ ଗର୍ବରେ ମତ୍ତ ହୋଇ ଅନ୍ୟକୁ ପରିହାସ କରନ୍ତି, ସେମାନେ ଜାଣନ୍ତି ନାହିଁ, ତାଙ୍କ ଜୀବନର ପରବର୍ତ୍ତୀ ମୁହୂର୍ତ୍ତ ଗୁଡ଼ିକ ତାଙ୍କ ପାଇଁ କେତେ ଦୁଃଖ, ଯନ୍ତ୍ରଣାରେ ପୂରି ରହିଛି ।

ମିଷ୍ଟର ଆୟଙ୍ଗାର ମୋ କଥା ଏଡ଼େଇ ଯାଇ କହିଲେ : ଆପଣ ବିଶ୍ୱାସ କରନ୍ତୁ, ମୋ ଫଟୋ ଫେସ୍ ମୋର ସାଧାରଣ ମୁହଁଠାରୁ ଯଥେଷ୍ଟ ଭଲ । ଆପଣ ଆସନ୍ତୁ ଦେଖିବେ। ଆଲବମ୍ ଫିଟେଇ ଗୋଟି ଗୋଟି କରି ମୁଁ ଆପଣଙ୍କୁ ଦେଖେଇବି । ସେଥିରୁ ନିଶ୍ଚୟ ଗୋଟାଏ ଦୁଇଟା ଫଟୋ ଆପଣଙ୍କର ପସନ୍ଦ ହେବ । ମୁଁ ଜାଣେ ଲେଖକମାନେ ଖୁବ୍ ସଂବେଦନଶୀଳ ହୁଅନ୍ତି । ମୋର ଆପଣଙ୍କ ନିକଟରେ ଏକମାତ୍ର ନିବେଦନ, ଆପଣଙ୍କ ପ୍ରଥମ ବହିରେ ମୋର ଫଟୋଟିଏ ଛାପି, ଦୁନିଆକୁ ଜଣାଇ ଦେବେ ଯେ, ମଣିଷର ଚେହେରା ଦେଖି, ମଣିଷକୁ ବିଚାର କରିବା ଅନୁଚିତ ।

ମିଷ୍ଟର ଆୟଙ୍ଗାର ଆହୁରି କ'ଣ ଆରମ୍ଭ କରିବାକୁ ଯାଉଥିଲେ । କିନ୍ତୁ ମୁଁ ଉଠି ଠିଆ ହୋଇପଡ଼ି କହିଲି : ଚାଲନ୍ତୁ, ଆପଣଙ୍କର ଗୋଟିଏ ଫଟୋ ନେଇ ମୁଁ ଚାଲିଯିବି । ମୋର ଗୋଟାଏ ଜରୁରୀ ଆପଏଣ୍ଟମେଣ୍ଟ୍ ଅଛି ।

ମିଷ୍ଟର ଆଙ୍ଗୟାର ସଙ୍ଗେ ସଙ୍ଗେ ଚେଆରରୁ ଉଠି ତାଙ୍କ ରୁମ୍ ଆଡ଼କୁ ଆଗେଇ ଗଲେ ।

ସବୁଗୁଡ଼ିକ ଆଲବମ୍ ଘାଣ୍ଟିବାକୁ ଧୈର୍ଯ୍ୟ ମୋର ନ ଥିଲା ।

ପ୍ରଥମ ଆଲବମ୍‌ଟିକୁ ମୁଁ ଦୁଇ ଚାରି ପୃଷ୍ଠା ଓଲଟେଇ, ତହିଁରୁ ଖଣ୍ଡିଏ ଫଟୋ ବାହାର କରି ପକେଟରେ ରଖିଲି ।

ମିଷ୍ଟର ଆୟଙ୍ଗାର କୃତ୍ୟ କୃତ୍ୟ ହୋଇ କହିଲେ : ଆପଣଙ୍କ ପାଇଁ ୫୫ ନମ୍ବର ସୁଇଟ୍‌ଟି ମୁଁ ରିଜର୍ଭ ରଖିଲି ଜାଣନ୍ତୁ । କିନ୍ତୁ ଆପଣଙ୍କର ପ୍ରଥମ ବହିଟିରେ ମୋର ଏହି ଫଟୋଟି ନିଶ୍ଚୟ ଛାପିବେ ।

ମୁଁ ମିଷ୍ଟର ଆୟଙ୍ଗାରଙ୍କୁ ଛାପିବାର ନିର୍ଭର ପ୍ରତିଶ୍ରୁତି ଦେଇ, ଊର୍ଦ୍ଧ୍ୱଶ୍ୱାସରେ ଘରୁ ବାହାରି ଆସିଲି ।

କିନ୍ତୁ ଆଖି ଆଗରେ, ୫୫ ନମ୍ବର ସୁଇଟ୍ ସାମ୍ନାରେ...

ମୋ ପାଦ ଯୋଡ଼ାକ ଯେପରି ଖମ୍ବ ପାଲଟି ଯାଇଥିଲା ।

ଜଣେ ପୋଲିସ୍ ଅଫିସର ଦ୍ରୁତ ପଦରେ ମୋରି ଆଡ଼କୁ ମାଡ଼ି ଆସୁଥିଲେ ।

ମୋ ଛାତି ଭିତରଟା ରୀଟାର ଅମଙ୍ଗଳ ଚିନ୍ତାରେ କମ୍ପି ଉଠିଥିଲା ।

ମିଷ୍ଟର ଆୟଙ୍ଗାର ରୁମ୍‌ରୁ ବାହାରି ପୋଲିସ୍ ଅଫିସରଙ୍କ ସହିତ କଥାବାର୍ତ୍ତା କଲେ । ସେମାନେ ୫୫ ନମ୍ବର ସୁଇଟ୍‌ଟା ଇନ୍‌କ୍ୱାରୀ କରିବେ । ୫୫ ନମ୍ବର ଆସାମୀ ଥିବା ନ ଥିବା ସାଙ୍ଗରେ ସେମାନଙ୍କର କିଛି ସମ୍ପର୍କ ନାହିଁ ।

ମିଷ୍ଟର ଆୟଙ୍ଗାରଙ୍କ ପ୍ରତିବାଦ କରିବାର ଶକ୍ତି ନ ଥିଲା ।

ସେ ପୋଲିସ ଅଫିସରଙ୍କ ସହିତ ସହଯୋଗ କଲେ ।

ରୀଟା ସେତେବେଳେ ୫୫ ନମ୍ବର ସୁଇଟ୍‌ରେ ଉପସ୍ଥିତ ନ ଥିଲା । ସେଠାକାର କର୍ମଚାରୀଙ୍କ ମୁହଁରୁ ପୋଲିସ୍ ଅଫିସର ଜାଣିଲେ ଯେ, ରୀଟା ତିନିଦିନ ହେବ ଏଠାକୁ ଫେରିନାହିଁ ।

ମିଷ୍ଟର ଆୟଙ୍ଗାର ଡୁପ୍ଲିକେଟ୍ ଚାବି ସାହାଯ୍ୟରେ ୫୫ ନମ୍ବର ସୁଇଟ୍‌ର ଦରଜା ଖୋଲିଲେ । ବାହାରେ ଦୁଇଜଣ ପୋଲିସ ବସାଇ ଅଫିସର ଜଣକ ମିଷ୍ଟର ଆୟଙ୍ଗାରଙ୍କ ସହିତ ସୁଇଟ୍ ଭିତରକୁ ପ୍ରବେଶ କଲେ ।

ପ୍ରବଳ ଉତ୍ତେଜନା ସତ୍ତ୍ୱେ ଭିତରକୁ ପଶିବାର ଇଚ୍ଛା ମୁଁ ସମ୍ବରଣ କଲି ।

ଆଉ କେତେଜଣ ବୋର୍ଡର ବାହାରି ସେଠାରେ ଭିଡ଼ ଜମେଇ ଥିଲେ । ମୁଁ ମନେ ମନେ ଭଗବାନଙ୍କୁ ଧନ୍ୟବାଦ ଦେଉଥିଲି ଯେ, ରୀଟା ଏ ସମୟରେ ଉପସ୍ଥିତ ନାହିଁ । ତା' ନ ହେଲେ ହୁଏତ ପୋଲିସ ଅଫିସର ତାକୁ ଆରେଷ୍ଟ କରି ଥାଆନ୍ତେ ।

ଦୀର୍ଘ ସମୟ ମୁଁ ସେଇଠି ପୋଲିସ ଅଫିସରଙ୍କ ପ୍ରତ୍ୟାବର୍ତ୍ତନ ପାଇଁ ଅପେକ୍ଷା କରି ରହିଥିଲି ।

ପ୍ରାୟ ଅଧଘଣ୍ଟା ପରେ ମିଷ୍ଟର ଆୟଙ୍ଗାର ସହ ପୋଲିସ୍ ଅଫିସର ଫେରିଲେ । ତାଙ୍କ ହାତରେ କେତେ ଗୁଡ଼ାଏ କାଗଜପତ୍ର । ଆୟଙ୍ଗାରଙ୍କ ହାତରେ ଗୋଟାଏ ଫଟୋ ଆଲବମ୍ ।

ମିଷ୍ଟର ଆୟଙ୍ଗାର ମୋତେ ସାମ୍ନାରେ ଦେଖି କହିଲେ : ମୋତେ ଏଇକ୍ଷଣି ଥାନାକୁ ଯିବାକୁ ହେବ । ଆପଣ ଯାଆନ୍ତୁ । ମୋ କଥା ମନେ ରଖିଥିବେ ।

ମିଷ୍ଟର ଆୟଙ୍ଗାର ପୋଲିସ ଅଫିସରଙ୍କ ସହିତ ଥାନାକୁ ବାହାରି ଗଲେ ।

ସେଦିନ ମୁଁ ହୋଟେଲକୁ ଫେରି ସ୍ୱସ୍ତିର ନିଃଶ୍ୱାସ ମାରି ପାରି ନ ଥିଲି ।

୫୫ ନମ୍ବର ସୁଇଟରୁ ପୋଲିସ ହୁଏତ ବହୁ ବେଆଇନ୍ କାଗଜପତ୍ର ଆବିଷ୍କାର କରିଛି । ରୀଟା ଯେ ସେହିପରି ଏକ ଦଳ ସହିତ ସଂଶ୍ଳିଷ୍ଟ ମୁଁ ତାହା ଜାଣିଥିଲି । ତଥାପି ରୀଟା ପାଇଁ କେଜାଣି କାହିଁକି ଅନ୍ତର ମଧ୍ୟରେ ଏକ ସମବେଦନା ଜମି ଉଠିଥିଲା ।

ରାତିରେ ଖୁବ୍ ଗୋଟାଏ ସୁଖ ନିଦ୍ରା ହେଲାନାହିଁ ।

ସକାଳୁ ଖୁବ୍ ଶୀଘ୍ର ନିଦ ଭାଙ୍ଗିଗଲା । କିନ୍ତୁ କରିବି କ'ଣ ?

ଉଠି ବସିଲି । ଖବର କାଗଜଟା ଆସି ଯାଇଥିଲା ।

ମୁଁ ଖବର କାଗଜଟା ଉପରେ ଆଖି ପକାଇବା ମାତ୍ରକେ ମୋର ସମଗ୍ର ଶରୀରରେ ଏକ ବିଦ୍ୟୁତ୍ ପ୍ରବାହ ଖେଳିଗଲା ।

ସେଦିନ ପ୍ରଧାନ ସମ୍ବାଦ ଥିଲା ରୀଟାର ଗିରଫଦାର ସମ୍ବାଦ ।

ପ୍ରଥମ ପୃଷ୍ଠାରେ ରୀଟାର ଏକ ଫଟୋ ଛପା ହୋଇଥିଲା । ବଡ଼ ବଡ଼ ଅକ୍ଷରରେ ଛପା ହୋଇଥିଲା ।

: ରୀଟା ଭାରତବର୍ଷର ଏକ ବିରାଟ ଅପରାଧୀ ଦଳର ନାୟିକା । ରୀଟାକୁ ଗିରଫଦାର କରି ଭାରତର ଇଣ୍ଟେଲିଜେନ୍ସି ବିଭାଗର ସେହି ଅପରାଧୀ ଦଳକୁ ସମୂଳେ ବିନାଶ କରିବାର ପଥ ଆବିଷ୍କାର କରିଛନ୍ତି ।

ଗତ କାଲି ପ୍ରାୟ ଦିନ ଦୁଇଟା ହେବ ରୀଟା ବମ୍ବେର ଜୁହୁ ବିଚ୍‌ରେ ଧରା ପଡ଼ିଛି । ସେ ଗୋଟିଏ କ୍ଷୁଦ୍ରାୟତନ ବାକ୍ସ ଧରି ଜୁହୁ ବିଚ୍‌ରେ କାହାପାଇଁ ଅପେକ୍ଷା କରୁଥିବା ବେଳେ ପୋଲିସ ସେହି ବାକ୍ସ ସମେତ ରୀଟାକୁ ଆରେଷ୍ଟ କରିଛି ।

ଏକ ଅସମର୍ଥିତ ସମ୍ବାଦରୁ ଜଣା ଯାଇଛି ଯେ, ସେହି ବାକ୍ସ ମଧ୍ୟରେ ଭାରତର ସାମରିକ ବିଭାଗର ବିଭିନ୍ନ ଗୁପ୍ତ ଘାଟିର ଏକ ନକ୍ସା ରହିଛି ଏବଂ ପ୍ରାୟ ଏକ ପାଉଣ୍ଡ ହେବ ୟୁରେନିଆମ୍ ରହିଛି ।

ରୀଟାକୁ ଆରେଷ୍ଟ କରିବା ପରଠାରୁ ସେ ନୀରବ ରହିଛି । ପୋଲିସ୍ ନିକଟରେ କୌଣସି ଜମାନବନ୍ଦୀ ଦେଇନାହିଁ ।

ତେବେ ଅନୁମାନ କରା ଯାଉଛି ଯେ, ରୀଟା ଯେଉଁ ଅପରାଧୀ ଦଳ ସହିତ ସଂଶ୍ଳିଷ୍ଟ ସେଇଟା ଭାରତବର୍ଷରେ ଏକ ଭୟଙ୍କର ଅପରାଧଚକ୍ର । ତା'ର ଯୋଗସୂତ୍ର ଇଣ୍ଟରନାସନାଲ ଅପରାଧୀ ଦଳ ସହିତ ରହିଛି ।

ଆହୁରି ଅନୁମାନ କରା ଯାଉଛି ଯେ ଭାରତ ଚୀନ ଓ ଭାରତ ପାକିସ୍ଥାନ ଯୁଦ୍ଧ ସମୟରେ ଏହି ଦଳ ସେମାନଙ୍କୁ ଭାରତର ବହୁ ସାମରିକ ଗୁପ୍ତ ତଥ୍ୟ ସରବରାହ

କରିଛି । ଏହି ଦଳ ସହିତ ଭାରତବର୍ଷର ଯେ ବହୁ ଜ୍ଞାନୀ, ମାନୀ ମାନଙ୍କର ସହଯୋଗ ରହିଛି, ଏହା ଅନସ୍ୱୀକାର୍ଯ୍ୟ । ଆଶା କରା ଯାଉଛି, ପୋଲିସ ବିଭାଗ ଦ୍ରୁତ ଏହି ଅପରାଧୀ ଦଳର ମୂଳୋତ୍ପାଟନ କରି ଭାରତର ସ୍ୱାର୍ଥ ରକ୍ଷା କରିବେ ।

ଏ ସମ୍ବନ୍ଧରେ ସବିଶେଷ ତଥ୍ୟ ଆଗାମୀ କାଲି ପ୍ରକାଶ ପାଇବ ।

ମୁଁ ଖବର କାଗଜର ଏହି ସମ୍ବାଦଟି ପଢ଼ି ଶେଷ କଲା ବେଳକୁ ମୋ ନାକରୁ ଦୀର୍ଘଶ୍ୱାସ ବାହାରୁ ଥିଲା ।

ଶେଷରେ ରୀଟା ଆରେଷ୍ଟ ହେଲା !

ଅଥଚ ସାର୍ ସର୍ବାଧିକାରୀ, ମିଷ୍ଟର ବାଜୋଡ଼ିଆ, ମିଷ୍ଟର ଅଗରବାଲ ଯେଉଁମାନେ ପ୍ରକୃତ ଆସାମୀ, ଯେଉଁମାନେ ପ୍ରକୃତ ଅପରାଧୀ, ସେମାନେ ସମାଜରେ ସେହିପରି ସୁଖ୍ୟାତି ସମ୍ପନ୍ନ ହୋଇ, ଉଚ୍ଚ ଶିର ନତ ନ କରି ଭଦ୍ର ଭାବରେ ବଞ୍ଚି ରହିଲେ ।

ରୀଟାର ବା କି ପ୍ରୟୋଜନ ଥିଲା ଏହିପରି ଏକ ଇଣ୍ଟରନାସନାଲ୍ କ୍ରିମିନାଲ ଦଳ ସହିତ ମିଶିବାରେ ! ମୁଁ ବା ରୀଟା ସହିତ ଏତେ ଦିନ ମିଶି କି ଉପକାର ତା'ର କଲି । ତାକୁ ତ ଏହିପରି ସବୁ ଦୁଷ୍କର୍ମରୁ ନିବର୍ତ୍ତାଇ ପାରିଥାନ୍ତି ।

ଖାଲି ଏମାନେ ସ୍ମଗଲର ନୁହନ୍ତି, ଖବର କାଗଜର ସମ୍ବାଦ ଯଦି ସତ୍ୟ ହୋଇଥାଏ, ତେବେ ଭାରତର ସ୍ୱାର୍ଥ ବିରୋଧୀ ବହୁ ଅପରାଧର ଅପରାଧୀ ହେବ ରୀଟା । ହୁଏତ ଖୁବ୍ କଡ଼ା ଶାସ୍ତି ବିଧାନ ହେବ ରୀଟାକୁ ।

ହଠାତ୍ ମୋ ଭାବନାର ଗତି ବଦଳିଗଲା ।

ରୀଟା କ'ଣ ପ୍ରକୃତରେ ସେହି ରୀଟା, ଯାହା ପରିଚୟ ବାଢ଼ିଥିଲା ସେ ମୋ ପାଖରେ ? ନା ରୀଟାର ଅନ୍ୟ ପରିଚୟ ଅଛି ?

ରୀଟା ଗୁପ୍ତଚରୀ ନୁହେଁ ତ ?

ଅନ୍ୟ ସମସ୍ତ ପରିଚୟ ତା'ର ମିଥ୍ୟା ନୁହେଁ ତ ?

ମୁଁ ସ୍ଥିର ହୋଇ ବସି ପାରିଲି ନାହିଁ । ଧୀର ଚିତ୍ତରେ ଚିନ୍ତା କରି ପାରିଲି ନାହିଁ । ରୀଟାର ଏହି ଗିରଫଦାର ସଂବାଦ ମୋର ସମଗ୍ର ଶରୀରରେ ଯେପରି ଏକ ବିଷାକ୍ତ ପ୍ରତିକ୍ରିୟା ସୃଷ୍ଟି କରିଥିଲା ।

ମୁଁ ଖବର କାଗଜର ସେହି ସଂବାଦଟା ବାରମ୍ବାର ପଢୁଥିଲି ।

ଚା' କପ୍ ପରେ କପ୍ ନିଃଶେଷ କରୁଥିଲି ।

ରୀଟା ପ୍ରତି ମନଟା କେତେବେଳେ କରୁଣାରେ ଭରି ଯାଉଥିଲା ଆଉ କେତେବେଳେ ବିଦ୍ରୋହ କରି ଉଠୁଥିଲା ।

ରୀଟା ପରି ଝିଅ ଜାତିର କଳଙ୍କ ।

ମୋ ରୁମ୍ ଦରଜାରେ ବାହାରୁ କିଏ କରାଘାତ କଲା ।

ଅକସ୍ମାତ୍ ମନଟା ମୋର ଚଞ୍ଚଳ ହୋଇ ଉଠିଲା । ପୋଲିସ ମୋ ପାଖକୁ ଆସି ନାହିଁ ତ ! ଅସମ୍ଭବ କ'ଣ ! ରୀଟା ସହିତ ମୁଁ ତ ବହୁତ ଦିନ ବୁଲିଛି । ତା'ଛଡ଼ା ମୋ ନିଜ ହାତରେ ମୋର ନାମ, ଠିକଣା ଲେଖି ଦେଇ ଆସିଛି ।

ପୁଣି ଦରଜାରେ କରାଘାତ ହେଲା । ସଙ୍ଗେ ସଙ୍ଗେ ପାଟି ବି ଶୁଭିଲା ହୋଟେଲ ବୟର ।

ମୁଁ ନିଶ୍ଚିନ୍ତ ହୋଇ କବାଟ ଖୋଲିଲି ।

ବୟଟି ମୋ ହାତକୁ ଗୋଟିଏ ଲଫାପା ବଢ଼େଇ ଦେଲା ।

ମୋରି ହାତଲେଖା ଲଫାପା, ଯେଉଁଟା ମୁଁ ଲେଖି ଦେଇ ଆସିଥିଲି ରୀଟାକୁ । ଡାକ ଘରର ମୋହରରୁ ଜଣା ଯାଉଥିଲା, ଚିଠିଟା ବମ୍ବେରୁ ପୋଷ୍ଟ ହୋଇଛି ।

ବୟଟି ମୁହଁକୁ ଚାହିଁଲି । ସେ ମୋତେ ସନ୍ଦେହ କରି ନାହିଁ ତ ?

ଏଇଟା ଯେ ରୀଟା ମୋତେ ଲେଖିଛି, ପୋଲିସ୍ ଖବର ପାଇ ନାହିଁ ତ !

ମନଟା ଭୀଷଣ ଦୁର୍ବଳ ହୋଇ ପଡ଼ିଥିଲା । ହାତଟା ମଧ ରହି ରହି କମ୍ପି ଉଠୁଥିଲା !

ମୁଁ ରୁମ୍‌ର ଦରଜା ବନ୍ଦ କରିଦେଲି ।

ଥରିଲା ହାତରେ ଚିଠିଟି ଖୋଲିଲି ।

ରୀଟା ଲେଖିଛି । ହଁ, ରୀଟା ଚିଠି ଖଣ୍ଡିକ ଲେଖିଛି । ଦୁଇଦିନ ପୂର୍ବର ତାରିଖ ।

'ସେ ସମ୍ବୋଧନ କରିଛି, ପ୍ରିୟ ବଂଧୁ !

ତା'ପରେ ଆରମ୍ଭ କରିଛି, ଆପଣ ହିଁ ମୋ ଜୀବନର ଏକ ପ୍ରକୃତ ବନ୍ଧୁ । ନିଃସ୍ୱାର୍ଥପର ବନ୍ଧୁ । କିନ୍ତୁ ଆଉ ଯେଉଁମାନେ ଯେତେ ଆସିଛନ୍ତି, ସମସ୍ତେ ମନର କାମନା, ବାସନା ଧରି ଆସିଛନ୍ତି । କିନ୍ତୁ ଆପଣ ମୋ ଜୀବନରେ ଆହୁରି କିଛି ଦିନ ପୂର୍ବରୁ ଆସିଥିଲେ ହୁଏତ ମୋ ଜୀବନ ଯାତ୍ରାର ପଥ ଭିନ୍ନମୁଖୀ ହୋଇ ଥାଆନ୍ତା । ଆପଣଙ୍କ ସହିତ ଭେଟ ହେଲା ମୋର ବହୁ ପରେ, ଯେତେବେଳେ ମୋର ପଥ ପରିବର୍ତ୍ତନର କୌଣସି ଉପାୟ ନ ଥିଲା ।

ଆପଣଙ୍କୁ ସେଦିନ ମୁନ୍‌ଲାଇଟ୍ ହୋଟେଲରେ ଯେଉଁ କଥା କହି ପାରି ନ ଥିଲି, ଆଜି ଏ ନିର୍ଜୀବ କାଗଜ ଉପରେ ସେ କଥା ଲିପିବଦ୍ଧ କରିବା ପାଇଁ କିଛି ଅସୁବିଧା ନାହିଁ ।

ଆପଣ ମୋତେ ପ୍ରଶ୍ନ କରିଥିଲେ ମୁନ୍‌ଲାଇଟ୍ ବାର୍‌ର ନର୍ତ୍ତକୀ ଜୀବନ ଛାଡ଼ି ମୁଁ କାହିଁକି ସାର୍ ସର୍ବାଧୀକାରୀଙ୍କ ଦଳରେ ପୁଣି ଯୋଗ ଦେଲି ।

ତା' ମୂଳରେ ମୋର ଦେଶ ପ୍ରେମ ନ ଥିଲା, ଅଧିକ ଅର୍ଥ ଉପାର୍ଜନର ଲାଳସା ନ ଥିଲା, କେବଳ ଥିଲା ପ୍ରତିଶୋଧ ଗ୍ରହଣର ଏକ ପ୍ରବଳ ଉତ୍ତେଜନା । ମୁଁ ଧରି ନେଇଥିଲି ଯେ, ସାର୍ ସର୍ବାଧିକାରୀ ମୋ ଭାଇର ଜୀବନକୁ ତିଳ ତିଳ କରି ନଷ୍ଟ କରିଛନ୍ତି । ମୋ ଭାଇକୁ ସେ ହତ୍ୟା କରିଛନ୍ତି । ମୁଁ ତା'ର ପ୍ରତିଶୋଧ ନେବି ।

କିନ୍ତୁ ସାର୍ ସର୍ବାଧିକାରୀଙ୍କ ଦଳ ସମଗ୍ର ବିଶ୍ୱବ୍ୟାପୀ ଯେ ଦେଶ ଦ୍ରୋହୀତାର ବହୁ କାମ କରୁଛନ୍ତି । ଶତ୍ରୁ ପକ୍ଷ ନିକଟରେ ଦେଶର ବହୁ ଦୁର୍ବଳ ତଥ୍ୟ ପ୍ରକାଶ କରି ଅର୍ଥ ଉପାର୍ଜନ କରୁଛନ୍ତି । ଖାଲି ସେତିକି ନୁହେଁ, ଆମ ଦେଶର ବହୁ ଦୁର୍ମୂଲ୍ୟ ପଦାର୍ଥ ମଧ ବିଦେଶକୁ ପଠାଇ ଦେଉଛନ୍ତି ।

ସତ କହିବାକୁ ଗଲେ, ଜାତୀୟ ସ୍ୱାର୍ଥରକ୍ଷା କରିବାର ମହାନ୍ ବ୍ରତ ଗ୍ରହଣ କରି ମୁଁ ଦୁଃସାହସିକ କାର୍ଯ୍ୟରେ ଆତ୍ମୋତ୍ସର୍ଗ କରି ନାହିଁ । ମୁଁ କେବଳ ମୋ ଭାଇର ପ୍ରତିଶୋଧ ଗ୍ରହଣ କରିବା ପାଇଁ ସାର୍ ସର୍ବାଧିକାରୀଙ୍କ କମ୍ପାନୀରେ ଆଉ ଥରେ ନାମ ଲେଖାଇଲି ।

କିନ୍ତୁ ଆପଣଙ୍କ ସହିତ ଯଦି ସେତିକିବେଳେ ଦେଖା ହୋଇ ଥାଆନ୍ତା, ହୁଏତ ପଥ ବଦଳାଇ ଥାଆନ୍ତି ।

ଛାଡ଼ନ୍ତୁ । ଆଜି କ୍ଲାଇମାକ୍ସରେ ପହଞ୍ଚି ସେ କଥା ଚିନ୍ତାକରି ଆଉ କିଛି ଲାଭ ନାହିଁ ।

ମୁଁ ଆଉ ଥରେ ସାର୍ ସର୍ବାଧିକାରୀଙ୍କ ଦଳରେ ଭିଡ଼ିଲି । ସମସ୍ତ ପ୍ରାଣ ଦେଇ, ମୁଁ ମୋ କର୍ତ୍ତବ୍ୟ ନିଖୁଣ ଭାବରେ ପାଳନ କରିବାକୁ ଚେଷ୍ଟା କଲି ।

ତଥାପି ମୁଁ ସାର୍ ସର୍ବାଧିକାରୀଙ୍କ ବିଶ୍ୱାସ ଭାଜନ ହୋଇ ପାରିଲି ନାହିଁ । ସେ ମୋର ଚାଲି ଚଳନ ଉପରେ ବିଶେଷ ଦୃଷ୍ଟି ରଖିଥିଲେ ।

କିନ୍ତୁ ମୁଁ ଧୀରେ ଧୀରେ ସନ୍ତୁଷ୍ଟ ହେଲି, ଯେତେବେଳେ ସେ ମୋତେ ଗୋଟିକ ପରେ ଗୋଟିଏ ଦାୟିତ୍ୱପୂର୍ଣ୍ଣ କାମ କରିବାକୁ ଦେଲେ ।

ମୁଁ ମୋର ମନପ୍ରାଣ ଢାଳି କର୍ତ୍ତବ୍ୟ କରି ଚାଲିଲି ।

ଆଉ ସଂଗ୍ରହ କରିବାରେ ଲାଗିଲି ସାର୍ ସର୍ବାଧିକାରୀଙ୍କ ଦୁର୍ବଳତା ।

ତାଙ୍କର ପୃଥିବୀର ସହଯୋଗୀମାନଙ୍କର ନାମ ତାଲିକା ।

ଦିନ ପରେ ଦିନ ଦୁଇ ଦିଗରୁ ମୁଁ ସଫଳତା ମାର୍ଗରେ ଆଗେଇ ଚାଲିଲି ।

ଦିନେ ମୋତେ ସାର୍ ସର୍ବାଧିକାରୀ ଅଫିସକୁ ଡାକି ପଠାଇଲେ ।

ସେହିଭଳି ଶାନ୍ତ ମୁଖମଣ୍ଡଳ, ଗମ୍ଭୀର କଣ୍ଠସ୍ୱର ।

ମୋତେ କହିଲେ : ମୁଁ ତୁମର କାମରେ ଖୁବ୍ ସନ୍ତୁଷ୍ଟ ହୋଇଛି । ମୋର ଇଚ୍ଛା ନୁହେଁ, ଭାରତବର୍ଷ ଭଳି ଗୋଟିଏ ଅନୁନ୍ନତ ଦେଶରେ ତୁମର ପ୍ରତିଭା ଏହିପରି ମଉଳି ପଡୁ । ମୋର ଇଚ୍ଛା ତୁମକୁ ଆମେରିକା ପଠାଇବା ପାଇଁ । ସେମାନେ ପ୍ରତିଭାର ପୂଜାରୀ । ମୋର ଜଣେ ଆମେରିକାନ ବନ୍ଧୁ ତୁମକୁ ଦେଖିଛନ୍ତି । ତୁମର କାର୍ଯ୍ୟକଳାପର ଧାରାକୁ ପ୍ରଶଂସା କରିଛନ୍ତି । ତାଙ୍କର ଇଚ୍ଛା, ତୁମେ କିଛିଦିନ ଆମେରିକାରେ ରହି ସେମାନଙ୍କ ସହିତ ସହଯୋଗ କଲେ ଭଲ ହୁଅନ୍ତା ।

ପ୍ରଥମେ ମୁଁ ସାର୍ ସର୍ବାଧିକାରୀଙ୍କ ମୁହଁରୁ ମୋର ପ୍ରଶଂସା ଶୁଣି ବୁଝି ପାରିଥିଲି ଯେ ନିଶ୍ଚୟ ମୋର ସର୍ବନାଶର ଦିନ ଉପସ୍ଥିତ ହୋଇଛି । ତା'ପରେ ସେ ମୋତେ ଆମେରିକା ପଠାଇବାର ପ୍ରସ୍ତାବରୁ ବୁଝିଲି ସେ ମୋତେ ଆମେରିକାର କ୍ରିମିନାଲ ଦଳକୁ ବିକ୍ରୟ କରିବାକୁ ଚାହାନ୍ତି । ମୋତେ ସେମାନଙ୍କୁ ବିକ୍ରୟ କରି ହୁଏତ ଅନେକ ଡଲାର ଉପାର୍ଜନ କରି ପାରିବେ ।

ମୁଁ ଟିକିଏ ଚିନ୍ତା କଲି ।

ସାର୍ ସର୍ମାଧିକାରୀଙ୍କ ପ୍ରସ୍ତାବରେ ଅସମ୍ମତ ପ୍ରକାଶ କରିବାର ସତ୍‌ସାହସ ମୋର ନ ଥିଲା ।

କହିଲି: ଆପଣ ଯେଉଁଟାକୁ ମୋ ଭବିଷ୍ୟତ ଉନ୍ନତିର ପଥ ବୋଲି ବିଚାର କରୁଛନ୍ତି, ମୋର ସେଥିରେ ପ୍ରତିବାଦ କରିବାର କ'ଣ ଅଛି !

ସାର୍ ସର୍ବାଧିକାରୀ ମୋ ମୁଣ୍ଡରେ ହାତ ବୁଲାଇ କହିଥିଲେ : ମୁଁ ଜାଣେ, ମୋ ଦଳର ପ୍ରତିଟି ସଦସ୍ୟ ମୋର ସମ୍ମାନ ରକ୍ଷା ପାଇଁ ପ୍ରାଣ ବିସର୍ଜନ ଦେବାକୁ ପଛେଇବେ ନାହିଁ ।

ମୁଁ ସେଦିନ ଫେରି ଆସିଥିଲି । ଜାଣି ପାରିଥିଲି, ଜନ୍ମମାଟିର ସମସ୍ତ ମୋହ ତୁଟେଇ ମୋତେ ସୁଦୂର ଆମେରିକା ଚାଲିଯିବାକୁ ହେବ । ଯେଉଁମାନେ ମୋତେ

କିଣିନେବେ, ସେମାନଙ୍କର ମର୍ଜି ଜଗି ମୋତେ ଚଳିବାକୁ ହେବ ।

ମୋର ତା'ହେଲେ ପ୍ରତିଜ୍ଞା ପୂରଣ ହେବ କିପରି ?

ତଥାପି ମୁଁ ଅବିଚଳିତ ଚିତ୍ତରେ ସାର୍ ସର୍ବାଧିକାରୀଙ୍କ ଆଦେଶ ପାଳନ କରି ଚାଲିଲି ।

ମନେ ମନେ ମୋ ଉଦ୍ଦେଶ୍ୟ ପୂରଣର ପଥ ମଧ୍ୟ ନିର୍ଦ୍ଧାରଣ କରି ଚାଲିଲି । ମୁଁ ଧରି ନେଇଥିଲି, ମୋତେ ସାର୍ ସର୍ବାଧିକାରୀ ଆମେରିକାର କ୍ରିମିନାଲମାନଙ୍କ ହାତରେ ସମର୍ପଣ କରି ଦେବା ପୂର୍ବରୁ ମୁଁ ସମସ୍ତଙ୍କୁ ପଦାରେ ପକାଇ ଦେଇଥିବି ।

ସେଇ ସୁଯୋଗର ଦିନ ମୋର ଆଗେଇ ଆସିଲା ।

ପୁଣି ଏକ ମାରାତ୍ମକ କାର୍ଯ୍ୟର ଝୁଙ୍କି ମୁଁ ମୋ ମୁଣ୍ଡ ଉପରେ ନେଲି ।

ଏହି ମୋ ପକ୍ଷରେ ଥିଲା ସୁବର୍ଣ୍ଣ ସୁଯୋଗ । ଏ ସୁଯୋଗ ହରାଇଲେ, ମୁଁ ହୁଏତ ଜୀବନରେ ପ୍ରତିଜ୍ଞା ପୂରଣ କରି ପାରିବି ନାହିଁ ।

ଆପଣଙ୍କୁ ଏ ଚିଠି ଲେଖିଲା ବେଳକୁ ମୁଁ ମୋର ପରିକଳ୍ପନାର ସମସ୍ତ ଆୟୋଜନ ଶେଷ କରିଛି ।

ମୁଁ ଇଣ୍ଟେଲିଜେନ୍‌ସୀ ବିଭାଗର ବଡ଼ ଅଫିସରଙ୍କ ସହିତ ଲୁଚି ଲୁଚି ଦେଖା କରିଛି । ସେ ମୋତେ ସବୁପ୍ରକାର ସାହାଯ୍ୟ କରିବାର ପ୍ରତିଶ୍ରୁତି ଦେଇଛନ୍ତି ।

ମୋର ଏହି ଚିଠି ପାଇବା ବେଳକୁ ଆପଣ ହୁଏତ ମୋର ଗିରଫଦାରର ସମ୍ବାଦ ଖବର କାଗଜରୁ ପଢ଼ି ସାରିଥିବେ ।

ମୁଁ ଦେଶକୁ ଶତ୍ରୁ କବଳରୁ ରକ୍ଷା କରବା ପାଇଁ କିମ୍ବା ଭାରତ ବର୍ଷର ଗୋଟିଏ କ୍ରିମିନାଲ ଗ୍ୟାଙ୍ଗ୍‌ର ମୂଳୋତ୍ପାଟନ କରିବାର ଗୌରବ ଅର୍ଜନ କରବା ପାଇଁ ଏହା କରୁନାହିଁ । ମୁଁ କେବଳ ଭୀଷଣ ପ୍ରତିଶୋଧ ନେବାପାଇଁ ଏହି ସିଦ୍ଧାନ୍ତ ଗ୍ରହଣ କରିଛି । ଆଶା କରୁଛି ସଫଳତା ଅର୍ଜନ କରିବି ।

ମୁଁ ଏହି ଚିଠି ଖଣ୍ଡିକ ଆପଣଙ୍କୁ ଲେଖୁଛି ଏହି କାରଣରୁ ଆପଣଙ୍କୁ ମୋ ଜୀବନରେ ସମସ୍ତ ଇତିବୃତ୍ତି ଶୁଣାଇଛି । ମୋ ଜୀବନର ନାଟକର ଏକ ମହତ୍ତ୍ୱପୂର୍ଣ୍ଣ ଅଧ୍ୟାୟ ଆପଣଙ୍କ ଅଜଣାରେ ରହିଯାଉ, ତାହା ମୋର ଇଚ୍ଛା ନୁହେଁ । ତେବେ ସାର୍ ସର୍ବାଧିକାରୀ ମୋର ଏହି ଚକ୍ରାନ୍ତ କଥା ସ୍ୱପ୍ନରେ ସୁଦ୍ଧା ଭାବି ପାରିବେ ନାହିଁ ।

ହୁଏତ ଦୁଇ ଦିନ ପରେ ଯେତେବେଳେ ମୋର ରାଜସାକ୍ଷୀ ହେବା କଥା ଖବର କାଗଜମାନେ ପ୍ରଚାର କରିବେ, ସେତେବେଳକୁ ସାର୍ ସର୍ବାଧିକାରୀ ସଦଳବଳେ ଆରେଷ୍ଟ ହୋଇ ସାରିଥିବେ ।

ମୁଁ ବହୁ ଚିନ୍ତାଭାବନା କରି ଦେଖିଲି ରାଜସାକ୍ଷୀ ହେବା ଛଡ଼ା ମୋର ଅନ୍ୟ ଉପାୟ ନାହିଁ ।

ଦଳରେ ରହି ସାର୍ ସର୍ବାଧିକାରୀଙ୍କୁ ବିଟ୍ରେ କରିବା ଅର୍ଥ ଜୀବନକୁ ବିପନ୍ନ କରିବା । ଆଶା କରୁଛି ମୋର ଏହି ସିଦ୍ଧାନ୍ତକୁ ଆପଣ ସମର୍ଥନ କରିବେ । ଆପଣଙ୍କ ସହିତ ମୋର ଶେଷଦିନ କୋଟୋଟି ଖୁବ୍ ଆନନ୍ଦରେ ଅତିବାହିତ ହୋଇଛି । ଆପଣଙ୍କ ପରି ସରଳ ଓ ବିଶ୍ୱାସ ଭାଜନ ଲୋକମାନେ ଏହି ପୃଥିବୀରେ ଅଛନ୍ତି ବୋଲି, ପୃଥିବୀ ହୁଏତ ଆଜିଯାଏ ଧ୍ୱଂସ ହୋଇନାହିଁ ।

ତେବେ ଜାଣେନା, ମୋର ଏହି ସିଦ୍ଧାନ୍ତ ଶେଷ ପର୍ଯ୍ୟନ୍ତ କାର୍ଯ୍ୟକାରୀ ହୋଇ ପାରିବ କି ନାହିଁ। ସାର୍ ସର୍ବାଧିକାରୀଙ୍କ ପରି ଧୂର୍ତ୍ତ ଲୋକଙ୍କ ଆଖିରେ ଧୂଳି ଛାଟିବା ଏତେ ସହଜ କଥା ତ ନୁହେଁ।

ତା'ଛଡ଼ା ଯଦିବା ମୋ ସିଦ୍ଧାନ୍ତ କାର୍ଯ୍ୟକାରୀ ହୁଏ, ତା'ର ଶେଷ ପରିଣତି କ'ଣ ହେବ ତା' ବି ମୋତେ ଜଣା ନାହିଁ।

ତେବେ ମୋ ମନର ଦୃଢ଼ ବିଶ୍ୱାସ ମୁଁ ହରାଇ ନାହିଁ। ମୋର ଆଶା ଅଛି, ମୁଁ ଏ କାର୍ଯ୍ୟରେ ଜୟଯୁକ୍ତ ହେବି।

ମୁଁ ଏ ଚିଠି ଲେଖୁଛି ଏକ ପ୍ରଥମ ଶ୍ରେଣୀର ହୋଟେଲର ତୂଳୀତଳ୍ପ ଶେଯରେ ଶୋଇ। ବର୍ତ୍ତମାନ ଘଡ଼ିରେ ରାତି ଦୁଇଟାର ଘୋଷଣା ହେଉଛି। ଆଖିକୁ ନିଦ ଆସୁନାହିଁ। ମୋ ଜୀବନର ପରୀକ୍ଷାର ଦିନ ଆଗେଇ ଆସୁଛି।

ହୁଏତ ଜୟ ନ ହେଲେ ପରାଜୟ।

ଅବଶ୍ୟ ମୋ ଜୀବନଟାକୁ ମୁଁ ଗୋଟାଏ ସ୍ପୋର୍ଟସମ୍ୟାନ୍ ସ୍ପିରିଟ୍‌ରେ ଚଳେଇ ଆସିଛି। ଜଣେ ଖେଳୁଆଡ଼ ଜୟ ପରାଜୟକୁ ସମାନ ମର୍ଯ୍ୟାଦା ଦେବା ଉଚିତ।

ମୁଁ ଯଦି ହାରିଯାଏ, ମୋର ମୃତ୍ୟୁ ସୁନିଶ୍ଚିତ।

ଆପଣ ନିଶ୍ଚୟ ବୁଝି ପାରିଥିବେ ମୃତ୍ୟୁକୁ ମୋର ଭୟ କରିବାର କୌଣସି କାରଣ ନାହିଁ।

ତଥାପି ଜଣକ ପାଇଁ ମୋର ସାମାନ୍ୟ ଦୁର୍ବଳତା ରହି ଯାଇଛି।

ଯଦି ମୋର ମୃତ୍ୟୁ ହୁଏ, ମୋ ପାଇଁ ଆପଣଙ୍କୁ ଗୋଟିଏ ଦାୟିତ୍ୱ ବହନ କରିବାକୁ ପଡ଼ିବ।

ବିଚରା ଜନ୍। ଦୁନିଆରେ ତା'ର ମୋ ଛଡ଼ା କେହି ନାହିଁ। ଯାହା ସହିତ ମୁଁ ଆପଣଙ୍କର ପରିଚୟ ପରେ କରାଇ ଦେବି ବୋଲି କହିଥିଲି। କିନ୍ତୁ ସେ ସୁଯୋଗ ଆଉ ଆସିଲା ନାହିଁ।

ମୋର ଯଦି ମୃତ୍ୟୁ ହୁଏ, ତା'ହେଲେ ଏ ପୃଥିବୀରେ ସବୁଠାରୁ ବେଶି କ୍ଷତି ହେବ ଜନ୍‌ର। କିନ୍ତୁ ଆପଣ ମୋ ମୃତ୍ୟୁ ସଂବାଦ ତାକୁ ଜଣାଇବେ ନାହିଁ। ତା'ର ଟିକିଏ ଦାୟିତ୍ୱ ନେଇ, ତା'ର ଗୋଟିଏ ସୁବ୍ୟବସ୍ଥା କରିଦେବେ।

ଜନ୍ ଆପଣଙ୍କ ଠାରୁ ଆହୁରି ସରଳ, ଆହୁରି ନିରୀହ।

ତା'ରି ପାଇଁ ମୁଁ ଖାଲି ବଞ୍ଚି ରହିବାର ସାମାନ୍ୟ ପ୍ରୟାସ କରୁଛି। ଯାହା ହେଉ ବ୍ୟାଙ୍କରେ ମୋର କିଛି ଟଙ୍କା ଅଛି। ଜନ୍‌ର କିଛିଦିନ ଚଳିଯିବ, କିନ୍ତୁ ଆପଣଙ୍କୁ ତା'ର ଟିକିଏ ତତ୍ତ୍ୱାବଧାନ କରିବାକୁ ପଡ଼ିବ।

ରାତି ଅନେକ ହେଲାଣି। ଆଉ ଘଣ୍ଟାକ ପରେ ମୋତେ ଗୋଟାଏ ବିଶେଷ କାର୍ଯ୍ୟରେ ବାହାରିବାକୁ ପଡ଼ିବ। ତଥାପି ମୁଁ ଏଇ ଚିଠିଟିରେ ମୋର ସମସ୍ତ ଇଚ୍ଛା ପ୍ରକାଶର ଚେଷ୍ଟା କରୁଛି। ଏହି ଚିଠିଟି ଶେଷ ପର୍ଯ୍ୟନ୍ତ ଯେ ଯାଇ ଆପଣଙ୍କ ନିକଟରେ ପହଞ୍ଚି ପାରିବ, ସେ ଭରସା ମୋର ନାହିଁ।

ତଥାପି ଯଦି ଆପଣଙ୍କ ହାତରେ ଯାଇ ପହଞ୍ଚେ, ଆପଣ ମୋର ଶେଷ ଅନୁରୋଧଟି

ରଖିବେ । ଜନ୍‌କୁ ଥରେ ଯାଇ ସାନ୍ତ୍ୱନା ଦେଇ ଆସିବେ । ସେ ମୋର ଅନୁପସ୍ଥିତିରେ ଭୀଷଣ ବ୍ୟାକୁଳ ହୋଇ ଉଠିଥିବ ।

ଜନ୍ ଗ୍ରାଣ୍ଟ ଷ୍ଟ୍ରିଟ୍‌ର ମୋର ସେହି ଛୋଟ ଘରଟିରେ ରହେ ।

ଜନ୍‌କୁ ଦେଖିଲେ ଆପଣଙ୍କ ମନରେ ହୁଏତ ବହୁ ଚିନ୍ତାର ଉଦୟ ହୋଇପାରେ ।

ଆପଣଙ୍କ ଆଖିରେ  ସନ୍ଦେହର ମସାଲ ଜଳି ଉଠିପାରେ ।

ଆପଣ ଜନ୍ ମୁହଁକୁ ଚାହିଁ, ତା' ସହିତ କଥାବାର୍ତ୍ତା କରି ହୁଏତ ମୋ ସମ୍ବନ୍ଧରେ ଏକ ଅଭିନବ ଧାରଣା କରିପାରନ୍ତି ।

କିନ୍ତୁ ସେ ସବୁର ବହୁ ଦୂରରେ ମୁଁ ।

ଜନ୍‌ର ଛୋଟ ଗୋଟିଏ ଇତିହାସ ଅଛି, ଯେଉଁଟା ମୁଁ ଆପଣଙ୍କୁ ନ ଜଣାଇଲେ ଆପଣ ଜାଣି ପାରିବେ ନାହିଁ ।

ଆଜିକୁ  ହୁଏତ ବର୍ଷେ ହୋଇନାହିଁ ।

ଦିନେ ସନ୍ଧ୍ୟାବେଳେ ଆମ ଗ୍ରାଣ୍ଟ ଷ୍ଟ୍ରିଟ୍‌ର ଘରେ ହଠାତ୍ ଏକ ଘଟଣା ଘଟିଲା । ଯେଉଁ ଘଟଣାର ମୂଳ ସାକ୍ଷୀ ହୋଇ ମୁଁ ରହି ଯାଇଥିଲେ, ମୋତେ ଆଜି ଏତେ ଚିନ୍ତିତ ହେବାକୁ ପଡ଼ି ନଥାନ୍ତା ।

କିନ୍ତୁ ମୁଁ ପାରି ନ ଥିଲି ।

ତଳେ କାହାର ପ[illegible]ଳ ଶୁଣି ମୁଁ ଓହ୍ଲେଇ ଯାଇଥିଲି ।

ଗୋଟିଏ ଛଅ ସାତ ବର୍ଷର ସୁନ୍ଦର ବାଳକ । ସାଙ୍ଗରେ ଜଣେ ବର୍ଷୀୟସୀ ମହିଳା । ସେ କ୍ୟାପ୍‌ଟେନ୍ ସ୍ମିଥ୍‌ଙ୍କୁ ଖୋଜୁଥିଲେ ।

ପ୍ରତିବେଶୀମାନେ ତାଙ୍କୁ ଉତ୍ତର ଦେଇଥିଲେ : କ୍ୟାପ୍‌ଟେନ୍ ସ୍ମିଥ୍ ନାମରେ କେହି ଏଠାରେ ଥିବାର ସେମାନେ ଦେଖି ନାହାନ୍ତି । ତେବେ ମିସେସ ସ୍ମିଥ୍ ବୋଲି ଜର୍ନୈକା ଭଦ୍ରମହିଳା ଥିଲେ, ସେ ବହୁଦିନ ହେବ ତାଙ୍କ ସ୍ୱାମୀ ପାଖକୁ ଚାଲି ଯାଇଛନ୍ତି ।

ଆଗନ୍ତୁକା ସେହି ଭଦ୍ରମହିଳାଙ୍କ ମୁହଁରେ ଚିନ୍ତାର ମେଘ ଘୋଟି ଆସିଲା । କେଜାଣି କାହିଁକି ସେ ଖୁବ୍ ଦୁର୍ଭାବନାରେ ପଡ଼ିଗଲା ପରି ମନେ ହେଲା ।

ବାଳକଟି ଲୁଳୁ ଲୁଳୁ କରି ସମସ୍ତଙ୍କୁ ଚାହୁଁଥିଲା ।

ହୁଏତ ସେ ଏହି ପରିବେଶର ପରିଣତି ସମ୍ବନ୍ଧରେ କିଛି ଚିନ୍ତା କରି ପାରୁ ନ ଥିଲା ।

ମୁଁ ଧୀରେ ଧୀରେ ତଳକୁ ଓହ୍ଲେଇ ଯାଇଥିଲି ।

ବାଳକଟି ମୋତେ ଦେଖିବା ମାତ୍ରେ ସେହି ଭିଡ଼ ଠେଲି, ମୋ ପାଖକୁ ଛୁଟି ଆସିଥିଲା । ମା' ମା' ଡାକି ମୋ ବେକକୁ ଧରି ଓହୋଳି ପଡ଼ିଥିଲା ।

ଅକସ୍ମାତ୍ ଏପରି ଏକ ଘଟଣାରେ ମୁଁ ବିଚଳିତ ହୋଇ ପଡ଼ିଥିଲି ।

ବାଳକଟି ଯେତେବେଳେ ମୋ ବେକ ଛାଡ଼ିଲା, ସେତେବେଳକୁ ଆଗନ୍ତୁକା ସେହି ଭଦ୍ରମହିଳା, ଯିଏ ବାଳକଟିକୁ ସଙ୍ଗରେ ଧରି ଆସିଥିଲେ, ସେ ଆଉ ନାହାନ୍ତି ।

ମୁଁ ମହା ସମସ୍ୟାରେ ପଡ଼ିଗଲି ।

ବାଳକଟି ମୁହଁରେ ପ୍ରସନ୍ନତା ଫୁଟି ଉଠିଥିଲା ।

ମୁଁ ରାସ୍ତାକୁ ଦଉଡ଼ି ଯାଇ ଭଦ୍ରମହିଳାଙ୍କର ପ୍ରସ୍ଥାନ ସମ୍ବନ୍ଧରେ ବିଶେଷ ଧ୍ୟାନ ଦେଇ

ନ ଥିଲି । ସେମାନେ ବାଳକଟିର ମା' ମା' ଡାକରେ ଆକର୍ଷିତ ହୋଇ ମୋରି ଆଡ଼େ ଚାହିଁ ରହିଥିଲେ ।

ହୁଏତ ମୋର ଗୋଟାଏ ଏତେ ବଡ଼ ପୁଅ ଥିବା କଥା ପରିକଳ୍ପନା କରି ସେମାନେ ବିସ୍ମିତ ହୋଇଥିଲେ ।

ବାଳକଟି କିନ୍ତୁ ଆଶ୍ଚର୍ଯ୍ୟ ଭାବରେ ମୋତେ ସମ୍ମୋହିତ କଲା ।

ସେ ତା'ର ଜନ୍ମଦାତ୍ରୀ ବା ଆଶ୍ରୟଦାତ୍ରୀଙ୍କୁ ଭୁଲିଯାଇ ମୋତେ ତା'ର ଅତି ଆପଣାର ରୂପେ ବାଛି ନେଇଥିଲା ।

ପ୍ରତିବେଶୀମାନଙ୍କର ସନ୍ଦେହୀ ଦୃଷ୍ଟି ମୋ ଆଡ଼େ ବିସ୍ତାରିତ ହୋଇ ଉଠିଲା । କିନ୍ତୁ ଜନ୍‌ର ସନ୍ତାନ ସୁଲଭ ଆନ୍ତରିକତା ପାଇ ଜନ୍‌କୁ ଦୂରେଇ ପାରିଲି ନାହିଁ ।

ଖୁବ୍ ଗୋଟାଏ ଆଶ୍ଚର୍ଯ୍ୟ ହୋଇଯାଇଥିଲି ।

ଜନ୍‌ର ଜନ୍ମ ଇତିହାସ ସେ ନିଜେ ଶୁଣାଇବା ଭଳି ବୟସ ତା'ର ହୋଇ ନ ଥିଲା ।

ମୁଁ ଜନ୍‌କୁ ତଥାପି ଅନେକ କଥା ପଚାରିଲି । ତା'ର ବାପା ନାଁ ମା' ନାଁ, ଆଗେ ସେ କେଉଁଠି ଥିଲା, ଇତ୍ୟାଦି ଇତ୍ୟାଦି ବହୁ ଛୋଟ ଛୋଟ କଥା । ଯେଉଁଗୁଡ଼ିକ କହିଲା ଭଳି ଓ ମନେ ରଖିଲା ଭଳି ବୟସ ଜନ୍‌ର ହୋଇଥିଲା ।

କିନ୍ତୁ ଜନ୍ କିଛି କହି ନ ଥିଲା । ଖାଲି ହସିଥିଲା ।

ମୋ ବେକରେ ହାତ ଛନ୍ଦି, ମୁହଁରେ ଚୁମା ଦେଇ କହିଥିଲା : ତୁ ମୋ ମା! ଅନ୍ୟ କାହାରିକୁ ମୁଁ ଚିହ୍ନିନାହିଁ ।

ପୃଥିବୀର ବହୁ ବୈଚିତ୍ର୍ୟମୟ ଘଟଣା ଭିତରେ ଇଏ ଯେ ଗୋଟିଏ ମୁଁ କେବଳ ସେଇଆ ଚିନ୍ତା କରି ଜନ୍‌କୁ ଛାତିରେ ଆଉଜାଇ ନେଇଥିଲି ।

କିନ୍ତୁ ବହୁ ଚେଷ୍ଟା କରି ଜନ୍‌ର ଜନ୍ମ ବୃତ୍ତାନ୍ତ ଆବିଷ୍କାର କରି ପାରିଲି ନାହିଁ ।

ଯେଉଁ ଭଦ୍ରମହିଳା ଜନ୍‌କୁ ଧରି ଆମ ସେଠାକୁ ଆସିଥିଲେ, ସେ କ'ଣ କ୍ୟାପ୍‌ଟେନ୍ ସ୍ମିଥ୍‌ଙ୍କର କିଛି ହୁଅନ୍ତି ?

ଭଦ୍ରମହିଳା କ'ଣ କ୍ୟାପ୍‌ଟେନ୍ ସ୍ମିଥ୍‌ଙ୍କ ସନ୍ତାନର ଜନ୍ମଦାତ୍ରୀ ? ଅଥବା ମିସେସ୍ ସ୍ମିଥ୍‌ଙ୍କର କେହି ଆତ୍ମୀୟା ?

ଜନ୍ ମିସେସ୍ ସ୍ମିଥ୍‌ଙ୍କ ଗର୍ଭଜାତ ନୁହେଁ ତ ? ହୁଏତ ମିସେସ୍ ସ୍ମିଥ୍ ଅପବାଦକୁ ଡରି, ସନ୍ତାନଟିକୁ ନିଜର କୌଣସି ଆତ୍ମୀୟା ଉପରେ ଲାଳନ ପାଳନର ଭାର ଦେଇଥିଲେ !!

ମୋର ସମସ୍ତ ପ୍ରଶ୍ନ ଅମୀମାଂସିତ ରହିଗଲା ।

ବହୁ ପ୍ରକାର ଅନୁସନ୍ଧାନ କରି ମଧ୍ୟ ଜନ୍‌ର ପ୍ରକୃତ ପରିଚୟ ଆବିଷ୍କାର କରି ପାରିଲି ନାହିଁ ।

ଯାହା ହେଉ, ବର୍ତ୍ତମାନ ଜନ୍ ମୋର ସନ୍ତାନ ।

ମୋରି କୋଳକୁ ଆଶ୍ରୟ କରି ଜନ୍ ପୃଥିବୀର ମାତୃହରା ହୋଇନାହିଁ ।

ତେଣୁ ଜନ୍ ପାଇଁ ମୋ ହୃଦୟରେ ଏକ ସ୍ୱତନ୍ତ୍ର ଆଶ୍ରୟ ଗଢ଼ି ଉଠିଛି ।

କିନ୍ତୁ ଜନ୍‌ଟା ଭୀଷଣ ବୋକା । ମୁଁ ତାକୁ ଭବିଷ୍ୟତରେ ବଡ଼ ମଣିଷଟିଏ କରି ଗଢ଼ିବା ପାଇଁ ଯେତେ ଚେଷ୍ଟା କରୁଛି, ସେ ମୋତେ ମୋ କଥା ଶୁଣୁନାହିଁ ।

ମୁଁ ରାଗିଗଲେ ସେ ହସି ହସି ମୋ ବେକରେ ହାତ ଛନ୍ଦି, ମୋ ଗାଲରେ ମୁହଁ ଲଗାଇ ଯେତେବେଳେ ଚୁମାଟିଏ ଦେଉଛି, ମୁଁ ସବୁ ଭୁଲି ଯାଉଛି ।

ଆଜି କେବଳ ଜନ୍‌ର ଚିନ୍ତା ମୋତେ ବିଚଳିତ କରୁଛି ।

ଅବଶ୍ୟ ମାଥ୍ୟୁକୁ ମୁଁ ତା'ର ସମସ୍ତ ଦାୟିତ୍ୱ ଦେଇ ଆସିଛି । ସେ ତା'ର ତତ୍ତ୍ୱ ନେଲେ ବି ମା' ମନ ଅବୁଝା ।

ଆପଣ ଥରେ ଯାଇ ଜନ୍‌କୁ ଦେଖି ଆସିବେ ।

ମୋ ଜୀବନର ସମସ୍ତ କାହାଣୀ ମୁଁ ଆପଣଙ୍କୁ ଜଣାଇ ସାରିଛି । ଆଜି ଆଉ କିଛି ବାକି ନାହିଁ ।

ମୁଁ ବର୍ତ୍ତମାନ ନିଶ୍ଚିନ୍ତ, ଖୁବ୍ ନିଶ୍ଚିନ୍ତ ।

ଆପଣ ମୋ ଜୀବନର ସବୁ ରହସ୍ୟ ଜାଣି ସାରିଲା ପରେ, ମୁଁ ଜାଣେ, ଘୃଣାରେ ନୁହେଁ, ସମବେଦନାରେ ମୋ ପାଇଁ ଆପଣଙ୍କ ଅନ୍ତର ଭରି ଉଠିଥିବ । କିନ୍ତୁ ମୁଁ ଆପଣଙ୍କ ସମବେଦନା ଗ୍ରହଣ କରିବା ପାଇଁ ବି ଅଯୋଗ୍ୟ ।

ଛାଡ଼ନ୍ତୁ ଜୀବନର ବହୁ ସ୍ୱପ୍ନ, ବହୁ ଆଶା ମଉଳି ପଡ଼ିଛି ଯେତେବେଳେ, ଆଜି ଆଉ ନୂତନ ସ୍ୱପ୍ନ ଦେଖି କିଛି ଲାଭ ନାହିଁ ।

ତଥାପି ମୁଁ ଗୋଟିଏ ଅପ୍ରିୟ ସତ୍ୟ ପ୍ରକାଶ ନ କରି ଏ ଚିଠି ଶେଷ କରିପାରୁ ନାହିଁ ।

ମୁନ୍‌ଲାଇଟ୍ ହୋଟେଲ୍‌ରେ, ଯେଉଁଦିନ ମୁଁ ଆପଣଙ୍କ କୋଳରେ ଶୋଇ ଶୋଇ ମୋ ଜୀବନର କାହାଣୀ ଶୁଣାଉଥିଲି, ସେଦିନ ମୋର ମନେ ହେଉଥିଲା, ମୁଁ ମୋର ନିର୍ଭୟ ଆଶ୍ରୟ ପାଇଛି । ଆଉ ମୁଁ ସେଦିନ ଅନୁଭବ କରିଥିଲି, ମୋ ଜୀବନର ଗୋଟିଏ ଶ୍ରେଷ୍ଠ ଦିନର କଥା । ଯେଉଁ ଦିନଟି ଝିଅମାନଙ୍କ ଜୀବନରେ ମାତ୍ର ଥରେ ଆସିଥାଏ ।

ଆଉ ଗୋଟିଏ କଥା ମୁଁ ନ ଲେଖି ରହି ପାରୁନାହିଁ । ହୁଏତ ଜୀବନର ଗତି ପଥରେ ଆପଣଙ୍କ ସହିତ କେବେ ଆଉ ଦେଖା ନ ହୋଇପାରେ । କିଛିଦିନ ପରେ ଯେତେବେଳେ ଜନ୍‌ର ସ୍କୁଲରେ ନାମ ଲେଖାଇବ । ବେଳେ ତା'ର ପିତୃ ପରିଚୟ ଆବଶ୍ୟକ ହେବ, ସେତେବେଳେ ଆପଣଙ୍କ ନାଁ, ସେ ସ୍ଥାନଟି ପୂରଣ କରିବ । ଜନ୍ ଭିତରେ ଆପଣ ମୋ ପାଖରେ ଜିଇ ରହିବେ । ଜନ୍ ମୋର କେହି ନୁହେଁ ଆପଣ ବି ମୋର କେହି ନୁହନ୍ତି, ତଥାପି ମୁଁ ଦୁହିଁଙ୍କୁ ମୋର ହୃଦୟର ନିଭୃତତମ ପ୍ରଦେଶରେ ଚାପି ଧରି ବଞ୍ଚି ରହିବାକୁ ଚାହେ ।

ଆପଣ ମୋର ଏହି ବଞ୍ଚିରହିବାର ଇଚ୍ଛାକୁ ନଷ୍ଟ କରି ଦେବେ ନାହିଁ, ଏତିକି ମୋର ନିବେଦନ ।

ରଚନା କାଳ : ୧୯୬୫





ବ୍ ଠକ୍ ଠକ୍.....ଠକ୍ ଠକ୍। ଠକ୍.....

ରାତ୍ରିର ନିସ୍ତବ୍ଧତା ଭଙ୍ଗ କରି ଘୋଡ଼ା ଟାପୁର ଶବ୍ଦ ପାଖେଇ ଆସୁଥିଲା।

ଘୋର ଅନ୍ଧକାର ଭିତରେ 'ଉଦୟ ମହଲ' ଆତ୍ମଗୋପନ କରିଥିଲା। କେବଳ ଦୋତାଲାର ଏକ ବନ୍ଦ କୋଠରୀରୁ କାଚ ଫାଙ୍କରେ ସାମାନ୍ୟ ଟିକିଏ ଆଲୋକ ବାହାରେ ଦିଶୁଥିଲା।

ଗଭୀର ନିର୍ଜନତା।

ହଠାତ୍ ଘୋଡ଼ା ଟାପୁର ଶବ୍ଦ ବନ୍ଦ ହୋଇଗଲା। ତା'ପରେ ଉଦୟ ମହଲର ସଦର ଦ୍ୱାର ଖୋଲିବାର ଶବ୍ଦ ହେଲା.....

ମୁହୂର୍ତ୍ତକ ପରେ....

ରେଲ୍ ଲାଇନ୍ ଉପରେ ବୋଧହୁଏ ମେଲ୍ ଟ୍ରେନ୍‌ଟା ପାସ୍ କରି ଯାଉଥିଲା। ଟ୍ରେନ୍‌ର ବିକଟ ଆବାଜ୍ ଉଦୟ ମହଲର ପ୍ରତି ସ୍ତରେ ସ୍ତରେ ପ୍ରବେଶ କରୁଥିଲା।

ମେଲ୍ ଟ୍ରେନ୍‌ର ଆବାଜ୍ ମିଳେଇ ଯିବା ପୂର୍ବରୁ ହଠାତ୍ ଏକ ଆର୍ତ୍ତଚିତ୍କାର ଶୁଣାଗଲା। ତା'ପରେ କାହାର ଦ୍ରୁତ ପାଦଶବ୍ଦ।

ପୁଣି ମୁହୂର୍ତ୍ତକ ପରେ ହ୍ରେଷାରବ। ସଙ୍ଗେ ସଙ୍ଗେ ଘୋଡ଼ା ଟାପୁର ଶବ୍ଦ। ଦ୍ରୁତରୁ ଦ୍ରୁତତର। ଧୀରେ ଧୀରେ ମିଳେଇ ଗଲା।

ପୁଣି ନିସ୍ତବ୍ଧତା।

ଉଦୟ ମହଲ ଗାଢ଼ ଅନ୍ଧକାର ଭିତରେ ବୁଡ଼ିଗଲା।

ଉଦୟ ମହଲ !

ଏଇ ଉଦୟ ମହଲର ଅଳ୍ପ ଟିକିଏ ପରିଚିତି ଆବଶ୍ୟକ। ଉଦୟ ମହଲଟି ଏପରି ଏକ ସ୍ଥାନରେ ଅବସ୍ଥିତ, ଯେଉଁଠାରେ କେବଳ ପାହାଡ଼ ପର୍ବତର ଭିଡ଼।

ଏକଦା ଉଦୟ ନଗରର ରାଜା ଉଦୟ ନାରାୟଣ ଏହି ନିର୍ଜନ ସ୍ଥାନରେ ଉଦୟ

ମହଲକୁ ତାଙ୍କର ଶିକାର କେନ୍ଦ୍ର ରୂପେ ସ୍ଥାପନ କରିଥିଲେ। ସେ ଆଜକୁ ଶହେବର୍ଷ ପୂର୍ବର କଥା। ସେତେବେଳେ ଏ ଅଞ୍ଚଳ କେବଳ ଜଙ୍ଗଲରେ ପୂର୍ଣ୍ଣ ଥିଲା। ଏବେ ମଧ୍ୟ ଏହି ଅଞ୍ଚଳରେ--ଜନସମାଗମ ବିରଳ।

ଗତ ଦୁଇବର୍ଷ ଆଗରୁ ଏହି ଉଦୟ ମହଲର ଦୁଇ ତିନି ମାଇଲ ଭିତରେ କୌଣସି ଜନବସତି ନ ଥିଲା। ଏବେ ଏହି ଅଞ୍ଚଳରେ ଏକ କୋଇଲା ଖଣିର ସନ୍ଧାନ ମିଳିଥିବାରୁ ଏବଂ ନାନା ଭାବରେ ସରକାରୀ ଅନୁସନ୍ଧାନ ହେଉଥିବାରୁ କିଛି କିଛି ଲୋକ ଏଠାରେ କାମରେ ଲାଗିଛନ୍ତି। ଛୋଟ ଛୋଟ ଘରଦ୍ୱାର କେତୋଟି ନିର୍ମାଣ ହୋଇଛି। ଉଦୟ ମହଲର ଠିକ୍ ସାମ୍‌ନାକୁ ଗୋଟିଏ ଅସ୍ଥାୟୀ ହୋଟେଲ ମଧ୍ୟ ପ୍ରତିଷ୍ଠା ହୋଇଛି।

ଯେଉଁଦିନର ଘଟଣା ଏଠାରେ ବର୍ଣ୍ଣନା କରା ହେଉଛି, ସେଦିନ ପ୍ରାୟ ସକାଳ ଆଠଟାବେଳେ ପୋଲିସ୍ ଇନିସ୍ପେକ୍ଟର ନଟରାଜ ସାହାଣୀ ଉଦୟ ମହଲ ସାମ୍‌ନା ହୋଟେଲ୍‌ରେ ଯାଇ ପ୍ରବେଶ କଲେ।

ହୋଟେଲର ମାଲିକ ନିଦରୁ ଉଠି ଇଷ୍ଟନାମ ସ୍ମରଣ କରିବା ପୂର୍ବରୁ ପୋଲିସ୍ ଇନିସ୍ପେକ୍ଟରଙ୍କୁ ଆଖି ଆଗରେ ଦେଖି ହତଚକିତ ହୋଇଗଲା।

: ତମ ନାଁ ? ପୋଲିସ୍ ଇନିସ୍ପେକ୍ଟର ପଚାରିଲେ।

: ଦିବାକର ପଣ୍ଡା, ହୋଟେଲ ମାଲିକ କହିଲା।

: କାଲି ରାତିରେ ତୁମେ କେତେବେଳଯାଏ ଚେଇଁଥିଲ ?

: ତା' ଆଜ୍ଞା ରାତି ଏଗାରଟା ହେବ।

: ଉଦୟ ମହଲରେ କୌଣସି ଦୁର୍ଘଟଣା ଘଟିଥିବାର ଶୁଣିଛ ?

: ନା ଆଜ୍ଞା, ମୁଁ କିଛି ତ ଶୁଣି ନାହିଁ। କ'ଣ ହେଇଚି ଆଜ୍ଞା ?

ଇନିସ୍ପେକ୍ଟର ଦିବାକର ପଣ୍ଡା ଉପରୁ ଆଖି ଉଠେଇ ନେଇ ଆଉ ଯେଉଁ ଦୁଇ ଚାରିଜଣ କୁଲିଶ୍ରେଣୀର ଲୋକ ଖଣ୍ଡିଏ କାଠ ବେଞ୍ଚ ଉପରେ ବସି ଚା' ହାଣ୍ଡିକୁ ଅନେଇ ରହିଥିଲେ, ଇନିସ୍ପେକ୍ଟର ସେମାନଙ୍କ ନିକଟରେ ପହଞ୍ଚିଲେ।

ସେମାନେ ସେହି ଆଖପାଖ ତମ୍ବୁରେ ରୁହନ୍ତି। ମାଟି ଖୋଳିବା ପାଇଁ ଏଠାକୁ ବ୍ରହ୍ମପୁରରୁ ଆସିଛନ୍ତି। ଉଦୟ ମହଲ ସମ୍ବନ୍ଧରେ ସେମାନଙ୍କର କୌଣସି ଧାରଣା ନାହିଁ।

ଆଉ ଜଣେ ଦୁଇଜଣଙ୍କୁ ପଚାରି ସାରିବା ପରେ ଇନିସ୍ପେକ୍ଟର ପୁଣି ଦିବାକର ପଣ୍ଡା ପାଖକୁ ଫେରିଗଲେ। ଗୋଟିଏ ଭଙ୍ଗା ବେଞ୍ଚ ଉପରେ ବସୁ ବସୁ କ'ଣ ଗୋଟାଏ ମାଡ଼ି ପକେଇଲେ।

ବେଞ୍ଚତଳୁ ଏକ ଅଶ୍ରାବ୍ୟ ଭାଷାର ଗାଳି ଶୁଣି ଦିବାକର ପଣ୍ଡା ବ୍ୟସ୍ତ ହୋଇ ଉଠିଲେ। ଦିବାକର ବିନୀତ ସ୍ୱରରେ କହିଲା : ସେ ଗୋଟାଏ ପାଗଳା ଲୋକଟାଏ ଆଜ୍ଞା। ମୋରି ବେକ ମୋଡ଼ି ଗଣ୍ଡେ ଗଣ୍ଡେ ଖାଉଚି।

ପୋଲିସ୍ ଇନିସ୍ପେକ୍ଟର ସେ ଆଡ଼େ ଧ୍ୟାନ ନ ଦେଇ କହିଲେ : ଏଇଟା କିନ୍ତୁ ବଡ଼ ଆଶ୍ଚର୍ଯ୍ୟର କଥା। ଉଦୟ ମହଲ ତମର ଏତେ ପାଖରେ। ଏଠାରେ ଆଉ କୌଣସି ପ୍ରକାର ଗୋଳମାଳର ସମ୍ଭାବନା ନାହିଁ। ଅଥଚ କାଲି ରାତିରେ ଉଦୟ ମହଲରେ ଦୁଇରାଉଣ୍ଡ ଗୁଳି ଫୁଟିଲା, ତମେ କିଛି ଶୁଣି ପାଇଲ ନାହିଁ ?

: ଗୁଳି ? ଦିବାକର ପଣ୍ଡା ଆଖି ଆଗରେ ଯେପରି ମହାକାଳ ଦେଖିଲା।

: ହଁ ଗୁଳି । ଡୁଇରାଉଣ୍ଡ ଚାଳିଛି ।

: ମୁଁ କିନ୍ତୁ ଶୁଣିଛି ହଜୁର ! ଯେଉଁ ଲୋକଟିକୁ ଦିବାକର ପଣ୍ଡା ପାଗଳା ବୋଲି କହୁଥିଲା, ସେ ବେଞ୍ଚ ତଳୁ ଉଠି ଆସି ଇନିସ୍ପେକ୍ଟରଙ୍କ ସାମ୍ନାରେ ଠିଆ ହେଲା ।

: ତୁ ଶୁଣିଛୁ ? ଇନିସ୍ପେକ୍ଟର ଲୋକଟି ଆଡ଼େ ଆଶାୟୀ ନୟନରେ ଅନାଇଲେ ।

: ଆଜ୍ଞା ।

: କ'ଣ ଶୁଣିଚୁ ?

: ଗୋଟାଏ ଚିତ୍କାର ।

: ଗୁଳି ଫୁଟିବାର ଶବ୍ଦ ଶୁଣି ନାହୁଁ ?

: ନା ନା ଆପଣ ଭୁଲ୍ କହୁଛନ୍ତି ପୋଲିସ୍ ସାହେବ, ସେଇଟା ଗୁଳି ଫୁଟିବାର ଶବ୍ଦ ନୁହେଁ ।

: ଆଉ ?

: ଘୋଡ଼ା ଟାପୁର ଆବାଜ୍ ।

: ଏଁ ! ତୁ ଘୋଡ଼ାଟାପୁର ଆବାଜ୍ ମଧ୍ୟ ଶୁଣିଛୁ ?

: ଆଜ୍ଞା ।

ଅଥଚ ଗୁଳି ଫୁଟିବାର ଶବ୍ଦ....ପୋଲିସ୍ ଇନିସ୍ପେକ୍ଟର ମନେ ମନେ କଥାଟାକୁ ଦୋହରେଇଲେ । ଟିକିଏ ଚିନ୍ତା କଲେ । ଉଦୟ ମହଲ ଆଡ଼କୁ ଚାହିଁଲେ । ଲୋକଟା ଯେଉଁଠି ବସିଥିଲା, ସେଉଠୁ ଉଦୟ ମହଲର ସାମ୍ନା ପାଖଟା ବେଶ୍ ପରିଷ୍କାର ଦେଖା ଯାଉଥିଲା ।

: ହୁଁ, ତୋ ନାଁ କ'ଣ ?

: ମୋ ନାଁ... ଲୋକଟା ଟିକିଏ ଅଟକି ଯାଇ କହିଲା, ମୋ ନାଁ ମସ୍ତରାମ ।

ଇନିସ୍ପେକ୍ଟର ମସ୍ତରାମ ମୁହଁକୁ ଥରେ ଚାହିଁଲେ । ତାଙ୍କ ମନରେ ପ୍ରଶ୍ନ ଉଠିଲା, ମସ୍ତରାମ କ'ଣ ସତରେ ପାଗଳ ? କହିଲେ, : ତୁ ତା'ହେଲେ କାଲି ରାତିରେ ଘୋଡ଼ାଟାପୁର ଶବ୍ଦ ଶୁଣିଛୁ, ନା ?

: ହଁ ଆଜ୍ଞା ! ମଝିରେ ମଝିରେ ମୁଁ ଶୁଣେ ।

: ମଝିରେ ମଝିରେ କ'ଣ ଶୁଣୁ ?

: ସେଇ ଘୋଡ଼ା ଟାପୁର ଶବ୍ଦ ।

: କେତେବେଳେ ?

: ଅଧ ରାତିରେ ।

: ଘୋଡ଼ାରେ ଚଢ଼ି କିଏ ଆସେ ? କେଉଁଠାକୁ ଆସେ ?

: ସଇତାନ ଆଜ୍ଞା ! ଏ ଅଞ୍ଚଳରେ ଗୋଟାଏ ସଇତାନ ଅଛି । ରାତି ଅଧ ହେଲେ ବାହାରେ ।

ଇନିସ୍ପେକ୍ଟର ହୋଟେଲ ମାଲିକ ଦିବାକର ପଣ୍ଡା ମୁହଁକୁ ଅନାଇଲେ, ମସ୍ତରାମ କଥାର ସମର୍ଥନ ପାଇଁ ।

ଦିବାକର ପଣ୍ଡା କିନ୍ତୁ ନୀରବ ରହିଥିଲା ।

ମସ୍ତରାମ କହିଲା : ମୁଁ ଜାଣେ ଆପଣ ମୋ କଥା ବିଶ୍ୱାସ କରିବେ ନାହିଁ ।

କିନ୍ତୁ ଆପଣ ଯଦି ଏହି ଅଞ୍ଚଳରେ ଦୁଇ ଚାରି ରାତି ରୁହନ୍ତେ, ତେବେ ବୁଝି ପାରନ୍ତେ ।

: ହେଲା, ତୋ କଥା ମୁଁ ବିଶ୍ୱାସ କରୁଛି । ଯେଉଁ ସଇତାନଟା ଘୋଡ଼ାରେ ଚଢ଼ିଭ ବାହାରେ, ତା'ର ଗତିବିଧି ସମ୍ବନ୍ଧରେ ତୋତେ କିଛି ଜଣା ଅଛି ?

: ନା, ହଜୁର ! ସେଇ ଘୋଡ଼ା ଟାପୁର ଶବ୍ଦ ଶୁଣିଲେ ମୁଁ ଚେଇଁ ଥିଲେ ବି ଆଖିବୁଜି ଦେଇ ଲୁଗା ଘୋଡ଼େଇ ହୋଇ ଶୋଇ ପଡ଼େ ।

: ବୁଝିଲି, ତୁ ତା'ହେଲେ କାଲି ରାତିରେ ଘୋଡ଼ା ଟାପୁର ଶବ୍ଦ ଶୁଣିଛୁ ଏବଂ କାହାର ଆର୍ତ୍ତ ଚିତ୍କାର ମଧ ଶୁଣିଛୁ । ଅଥଚ ଗୁଳି ଚଳିବାର ଶବ୍ଦ ଶୁଣିନାହୁଁ ।

: ନା ଆଜ୍ଞା ।

ପୋଲିସ୍ ଇନିସ୍ପେକ୍ଟର ଡାହାଣ ହାତରେ ଧରିଥିବା ଗୋଟାଏ କଳା ରୋଲରକୁ ବାଁ ହାତରେ ପିଟୁଥିଲେ ଏବଂ ଅସ୍ପଷ୍ଟ ସ୍ୱରରେ ଉଚ୍ଚାରଣ କରୁଥିଲେ, ଘୋଡ଼ା ଟାପୁର ଶବ୍ଦ ! ତା'ହେଲେ କାଲି ରାତିରେ ଘୋଡ଼ାରେ ଚଢ଼ି କେହି ଏଠାକୁ ଆସିଥିଲା ଏବଂ....

: ହେଇ, ଶୁଣୁଛନ୍ତି ଆଜ୍ଞା ! ମସ୍ତରାମ କହିଲା ।

: କ'ଣ ?

: ଘୋଡ଼ା ଟାପୁର ଶବ୍ଦ ।

: ଇନିସ୍ପେକ୍ଟର ମସ୍ତରାମ ଆଡ଼େଚାହିଁ ପୁଣି ଆଗକୁ ଚାହିଁଲା ବେଳକୁ ଦେଖିଲେ, ଗୋଟାଏ ଘୋଡ଼ାଗାଡ଼ି ଉଦୟ ମହଲ ଦୁଆର ମୁହଁରେ ଆସି ଠିଆ ହେଲା ।

ଇନିସ୍ପେକ୍ଟର ଦ୍ରୁତ ଗତିରେ ଆଗେଇ ଗଲେ ।

ଘୋଡ଼ା ଗାଡ଼ିରୁ ସାହେବ ପୋଷାକ ପରିହିତ ଜଣେ ଯୁବକ ଓହ୍ଲାଇ ଇନିସ୍ପେକ୍ଟରଙ୍କୁ ସାମ୍ନାରେ ଦେଖି ପଚାରିଲେ କାଲି ରାତିରେ ତା'ହେଲେ ସବୁ ଶେଷ ହୋଇ ଯାଇଛି ?

ଇନିସ୍ପେକ୍ଟର ଆଗନ୍ତୁକଙ୍କ ପ୍ରଶ୍ନର କୌଣସି ଉତ୍ତର ନ ଦେଇ ପଚାରିଲେ ଆପଣଙ୍କ ପରିଚୟଟା....

: ମୁଁ ମଦନାରାୟଙ୍କ ଠାରୁ ଚିଠି ପାଇ ଆସିଥିଲି । ଆଉ ବୋଧହୁଏ ଏଠାରେ ମୋର କୌଣସି ଆବଶ୍ୟକ ନାହିଁ । ଆଗନ୍ତୁକ ପକେଟରୁ ଖଣ୍ଡିଏ ଚିଠି ବାହାର କରି ଇନିସ୍ପେକ୍ଟରଙ୍କ ହାତକୁ ବଢ଼ାଇ ଦେଲେ ।

ପୋଲିସ ଇନିସ୍ପେକ୍ଟର ଲଫାପା ଉପରେ ଆଗନ୍ତୁକର ନାମ ପଢ଼ିବା ମାତ୍ରେ ଚିତ୍କାର କରି ଉଠିଲେ, ଆରେ ମିଃ ମହାପାତ୍ର ଯେ ! ଆପଣଙ୍କ ସୁଖ୍ୟାତି ବହୁତ ଶୁଣିଥିଲି । କିନ୍ତୁ ଦୁଇ ଆଖିରେ ଦେଖିବାର ସୌଭାଗ୍ୟ ମୋର ହୋଇ ନ ଥିଲା । ଆଜି ସକାଳୁ ଆପଣଙ୍କ ଦର୍ଶନ ପାଇ ନିଜକୁ ଗୌରବାନ୍ୱିତ ମନେ କରୁଛି ।

କିନ୍ତୁ ମିଃ ମଦନ ରାୟ.....

: କାଲି ରାତିରେ ତାଙ୍କୁ କେହି ହତ୍ୟା କରିଛି ।

: ଆସିଲାବେଳେ ବାଟରେ ମୋର ସେହିପରି ମନେ ହେଉଥିଲା । ଏଇ ସବୁ ଲୋକମାନଙ୍କର ଚେତନା ବହୁତ ଡେରିରେ ହୁଏ, ସେତେବେଳେ ଆଉ ସେମାନଙ୍କୁ ରକ୍ଷା କରିବାର କୌଣସି ଉପାୟ ନଥାଏ । ଛାଡ଼ନ୍ତୁ, ମୁଁ ତା'ହେଲେ ଫେରି ଯାଉଛି । ସତ୍ୟବ୍ରତ ମହାପାତ୍ର ଘୋଡ଼ାଗାଡ଼ି ଆଡ଼କୁ ମୁହାଁଇଲେ ।

: ନା ନା ମିଃ ମହାପାତ୍ର ଯାହାଙ୍କ ଚିଠି ପାଇ ଏଠାକୁ ଆସିଥିଲେ, ତାଙ୍କର ହତ୍ୟାକାରୀକୁ ଆପଣଙ୍କ ଛଡ଼ା ଆଉ କିଏ ଖୋଜି ବାହାର କରିବ ? ଘଟଣାଟା ଖୁବ ରହସ୍ୟପୂର୍ଣ୍ଣ ମନେ ହେଉଛି । ଆପଣ ଥରେ ଉଦୟ ମହଲ ଭିତରକୁ ଚାଲନ୍ତୁ । ଅନ୍ତତ ତାଙ୍କର ଶୋକ ସନ୍ତପ୍ତ ପରିବାର ଆପଣଙ୍କୁ ଦେଖିଲେ ଟିକିଏ ଆଶ୍ୱସ୍ତ ହେବେ ।

: ହୁଁ, ଏତେବାଟ ଆସିଛି ଯେତେବେଳେ' ଘଟଣାଟା ଅନ୍ତତ ଥରେ ଦେଖିଯିବା ଉଚିତ । କିନ୍ତୁ ଏହି ନିବିଡ଼ ବନଭୂଇଁ ଭିତରେ ଏପରି ଏକ ସୁନ୍ଦର ଅଟ୍ଟାଳିକାର ପରିକଳ୍ପନା ମଦନରାୟଙ୍କ ମୁଣ୍ଡରେ ଯେ କିପରି ପଶିଲା, ଭାବିବାର କଥା ।

: ମୁଁ ବି ଠିକ୍ ଜାଣିନାହିଁ ମିଃ ମହାପାତ୍ର । ଅଳ୍ପ କେଇମାସ ହେବ ଏ ଅଞ୍ଚଳକୁ ମୁଁ ବଦଳି ହୋଇ ଆସିଛି । ଅବଶ୍ୟ ମିଃ ମଦନ ରାୟଙ୍କ ସହିତ ଦୁଇଚାରିଥର ଭେଟିବାର ସୌଭାଗ୍ୟ ମୋର ଘଟିଛି । ଭଦ୍ରଲୋକ ବେଶ ଅମାୟିକ ଥିଲେ । ମୁଁ ଶୁଣିଥିଲି ମିଃ ମଦନରାୟ ଏହି ଉଦୟ ମହଲରେ ମାତ୍ର କେଇବର୍ଷ ହେବ ବସବାସ କରୁଛନ୍ତି ।

: ହୁଁ ସତ୍ୟବ୍ରତ ମହାପାତ୍ର ଉଦୟ ମହଲର ବାଗବଗିଚା ଆଡ଼େ ଆଖି ବୁଲେଇ ଭିତରକୁ ଯାଉଥିଲେ ।

ସେମାନେ ମଦନରାୟଙ୍କ ଶୟନ କକ୍ଷରେ ପହଞ୍ଚିଲେ ।

ଗୋଟାଏ ପ୍ରଶସ୍ତ କକ୍ଷ। ଦାମୀ କାଠର ପଲଙ୍କ ଉପରେ ମୋଟା ଗଦି ପଡ଼ିଛି । ଗୋଟାଏ ପାଖରେ ତିନି ଚାରୋଟି ପୁସ୍ତକ ପୂର୍ଣ୍ଣ ଆଲମିରା । ଗୋଟିଏ ଟେବୁଲ । ଦୁଇଟି ଚେୟାର । ବେଶ୍ ପରିଷ୍କାର ପରିଚ୍ଛନ୍ନ । ମଦନରାୟ ଚଟାଣ ଉପରର ନାଲି ସିମେଣ୍ଟ ଉପରେ ଆଖିବୁଜି ଶୋଇ ପଡ଼ିଛନ୍ତି । ତାଙ୍କ ମୁଣ୍ଡ ପର୍ଯ୍ୟନ୍ତ ଗୋଟିଏ ସରୁ ଚାଦରରେ ଢାଙ୍କି ଦିଆ ହୋଇଛି ।

ସତ୍ୟବ୍ରତ ପ୍ରଥମେ ଲକ୍ଷ୍ୟ କଲେ ତାଙ୍କ କପାଳରେ ଏକ ଅଂଶ ଛିଦ୍ର ହୋଇ ଯାଇଛି, ବୋଧହୁଏ ଗୁଳି ସେଇଠି ଭେଦିଛି । ଧୀରେ ଧୀରେ ମଦନରାୟଙ୍କ ଉପରୁ ଚଦରଟି କାଢ଼ି ଦେଲେ । ରାତ୍ରି ପୋଷାକଟି ସଂପୂର୍ଣ୍ଣ ରକ୍ତରେ ଭିଜି ଯାଇଛି ।

: ହୁଁ, ମଦନରାୟଙ୍କୁ ଆପଣ ଆସି ଠିକ ଏହିପରି ଅବସ୍ଥାରେ ଶୋଇଥିବାର ଦେଖିଲେ ?

: ନା, ସେ ତଳକୁ ମୁହଁମାଡ଼ି ପଡ଼ିଥିଲେ। ତାଙ୍କର ଗୋଟାଏ ହାତ ପେଟ ତଳେ ପଶିଥିଲା । ପିଠି ଆଡୁ ଆଉ ଗୋଟାଏ ଗୁଳି ଭେଦିଛି ।

: ଆପଣ ତା'ହେଲେ ମଦନରାୟଙ୍କୁ ଏହିପରି ଶୁଆଇ ଦେଇଛନ୍ତି ?

: ହଁ ।

ସତ୍ୟବ୍ରତ ଉଠି ଠିଆ ହେଲେ । ଘରଟାର ଚାରିଆଡ଼େ ଥରେ ତୀକ୍ଷ୍ଣ ଦୃଷ୍ଟି ବୁଲେଇ ଆଣିଲେ : ଆଉ, ଆପଣଙ୍କ ମତ କଣ ? କେତୁଟା ରାତିରେ ଏହି ହତ୍ୟାକାଣ୍ଡ ଘଟିଛି ?

: ଏ ପର୍ଯ୍ୟନ୍ତ ଠିକ୍ ଜଣା ନାହିଁ । କେହି ସଠିକ ସମ୍ବାଦ ଦେଇ ପାରୁ ନାହାନ୍ତି । ସତ୍ୟବ୍ରତ ଘରର ଚାରିଆଡ଼େ ଏଥର ବୁଲି ବୁଲି ପରୀକ୍ଷା କଲେ । ଦୁଇଟି ଆଲମାରୀର ମଝିରେ ଗୋଟିଏ ସିଲ୍କ ପର୍ଦ୍ଦା ଝୁଲୁଥିଲା । ସତ୍ୟବ୍ରତ ସେଇଟାକୁ ଆଡ଼େଇ ଦେଇ ଦେଖିଲେ ଅଳ୍ପ ଦୂରରେ ଗୋଟିଏ ଛୋଟ ଦୁଆର । ଅବଶ୍ୟ ସେଇଟା ଆଉ ଗୋଟାଏ

କୋଠରିକୁ ଯିବାକୁ ବାଟ ।

ସତ୍ୟବ୍ରତ ଦୁଆର ଖୋଲି ଭିତରକୁ ପଶିଲେ । ଘରଟା ସେତେ ପ୍ରଶସ୍ତ ନୁହେଁ, ଅପେକ୍ଷାକୃତ ଛୋଟ । ଅନ୍ଧକାର ପୂର୍ଣ୍ଣ । ସତ୍ୟବ୍ରତ ଘରର ଗୋଟାଏ ଝରକା ଖୋଲି ଦେଲେ । ଏଥର ଘରଟି ଆଲୋକିତ ହୋଇ ଉଠିଲା ।

ଏହି ଘରଟିରେ ବିଶେଷ କୌଣସି ସାଜ ସରଞ୍ଜାମର ପରିପାଟି ନଥିଲା । କେବଳ ତିନି ଚାରୋଟି ଷ୍ଟିଲ୍ ଆଲ୍‌ମାରୀ, ଗୋଟିଏ ବଡ଼ ଟେବୁଲ, ଚାରିଖଣ୍ଡି ଚେୟାର ପଡ଼ିଥିଲା । ଚାରିକାନ୍ଥରେ ଚାରୋଟି ବଡ଼ ବଡ଼ ପେଣ୍ଟିଂ ଝୁଲୁଥିଲା ।

ସେଇ ପେଣ୍ଟିଂ ଚାରୋଟି ସେ ମଦନରାୟଙ୍କ ଅମଳର ନୁହେଁ ଏହା ସ୍ପଷ୍ଟ ମନେ ହେଉଥିଲା । କାରଣ ସେଗୁଡ଼ିକ ବହୁପୁରୁଣା ଥିଲା ଏବଂ ରାଜକୀୟ ଠାଣିରେ ଚିତ୍ରିତ ହୋଇଥିଲା ।

ସତ୍ୟବ୍ରତ ଷ୍ଟିଲ୍ ଆଲ୍‌ମିରାଗୁଡ଼ିକ ମଧ୍ୟରୁ ପ୍ରତ୍ୟେକଟିକୁ ପରୀକ୍ଷା କରି ଦେଖିଲେ, ସବୁଗୁଡ଼ିକ ବନ୍ଦ ।

ସତ୍ୟବ୍ରତ ଅନୁମାନ କଲେ, ଏହି କକ୍ଷଟି ମଦନ ରାୟଙ୍କର ପ୍ରାଇଭେଟ୍ ଚେମ୍ବର ଥିଲା । ସେ ଏହିଠାରେ ବସି ବସି ହୁଏତ ତାଙ୍କ ଜୀବନର ସମସ୍ତ ଗୁରୁତ୍ୱପୂର୍ଣ୍ଣ ସମସ୍ୟା କଥା ଚିନ୍ତା କରୁଥିଲେ ।

ଟେବୁଲ ଉପରେ ନଇଁପଡ଼ି ସେ କେତେକ କାଗଜ ପତ୍ର ପରୀକ୍ଷା କଲେ । ତା'ପରେ ଟେବୁଲ ଡ୍ରୟାର ଖୋଲିବାକୁ ଚେଷ୍ଟାକରି ବ୍ୟର୍ଥ ହେଲେ । ଦୁଇପାଖ ଯାକ ଚାବି ଦିଆ ହୋଇଛି ।

ତା'ହେଲେ ? ମଦନରାୟ ସବୁବେଳେ ସତର୍କତା ଅବଲମ୍ବନ କରି ଚଳୁଥିଲେ । ହୁଏତ ସେ କାହାକୁ ଭୟ କରୁଥିଲେ ଅଥବା ଏଠାରେ କାହାରିକୁ ସେ ବିଶ୍ୱାସ କରି ପାରୁ ନଥିଲେ ।

ହଠାତ୍ ପଛଆଡୁ କାହାର ଗୁଣୁ ଗୁଣୁ କଣ୍ଠର ସଙ୍ଗୀତ ଶୁଣି ଦୁହେଁ ଫେରି ଅନାଇଲେ । ଦୁଇଟି ସ୍ଥିର ନୟନ ପରଦା ଫାଙ୍କରେ ଏମାନଙ୍କ ଉପରେ ନିବଦ୍ଧ ଥିଲା ଏବଂ ମୃଦୁ ମୃଦୁ କଣ୍ଠ ସଙ୍ଗୀତ ଶୁଣାଯାଉଥିଲା ।

: କିଏ ? ସତ୍ୟବ୍ରତ ପ୍ରଶ୍ନବାଚୀ ନୟନରେ ଆଗେଇ ଗଲେ । ଗୋଟିଏ ସୁନ୍ଦର ହସିଲା ମୁହଁ ।

ବୟସର କାଠିନ୍ୟ ମୁହଁର କୌଣସି ସ୍ତର ଉପରେ ଆଞ୍ଚ ଆଣି ପାରିନାହିଁ । କିନ୍ତୁ ମୁଣ୍ଡର କେଶ ରାଶିରେ ବୟସ ନିର୍ଦ୍ଦୟ ଭାବରେ ଛାପ ପକାଇ ଯାଇଛି । ଶୁଭ୍ରକେଶ, ଶୁଭ୍ରବସନା କିଏ ଏହି ମହିଳା ?

ସତ୍ୟବ୍ରତଙ୍କ ଆଖିଲେ ଆଖି ମିଶିବା ମାତ୍ରେ ସେହି ପ୍ରୌଢ଼ାଟି ଟିକିଏ ହସିଦେଲେ । ତା'ପରେ ମଦନରାୟଙ୍କ ମୃତ ଦେହଟା ଆଡ଼େ ଥରେ ଚାହିଁ ଧୀରେ ଧୀରେ ଘରୁ ବାହାରି ଗଲେ ।

: ଶୁଣନ୍ତୁ ! ସତ୍ୟବ୍ରତ ଡାକିଲେ ।

ସେ କିନ୍ତୁ ଶୁଣିଲେ ନାହିଁ । ପୁଣି ଗୁଣୁ ଗୁଣୁ ଗୀତ ଗାଇ ନିଜ ବାଟରେ ଆଗେଇ ଗଲେ ।

ମି. ମଦନ ରାୟଙ୍କ ସ୍ତ୍ରୀ, ପାଗଳୀ ତ ଇନିସ୍ପେକ୍ଟର କହିଲେ ।

: ଓଃ ! ଆଉ ଅନ୍ୟମାନେ ?

: ଆପଣ ବସନ୍ତୁ, ମୁଁ ସମସ୍ତଙ୍କୁ ଡାକି ପଠାଉଛି ।

ନା, ଆପଣ ବରଂ ଗୋଟାଏ କାମ କରନ୍ତୁ । ମଦନରାୟଙ୍କ ପରିବାର୍‌ରେ ସମସ୍ତଙ୍କୁ ଚିହ୍ନିଥିଲା ଭଳି ଜଣେ ଲୋକ ସଙ୍ଗରେ ଆଣନ୍ତୁ । ଆମେ ବୁଲି ବୁଲି ସମସ୍ତଙ୍କ ସହିତ ସାକ୍ଷାତ କରିବା ।

ଆପଣ ମୋ ସହିତ ଆସନ୍ତୁ । ବେଶିଲୋକ ନାହାନ୍ତି । ଆଶା କରୁଛି ମୁଁ ସମସ୍ତଙ୍କୁ ଚିହ୍ନେଇ ଦେଇ ପାରିବି ।

ଇନିସ୍ପେକ୍ଟରଙ୍କ ପଛେ ପଛେ ସତ୍ୟବ୍ରତ ମହାପାତ୍ର ଆଗେଇ ଚାଲିଲେ ।

: ଏ ଘରେ ରୁହନ୍ତି ମଦନ ରାୟଙ୍କ ପାଳିତା କନ୍ୟା ମଳିନା ଦେବୀ ।

ଦୁଆର ଖୋଲି ଭିତରେ ପଶିଲେ ଦୁହେଁ ।

ମଳିନା ଦେବୀ ଡ୍ରେସିଂ ଟେବୁଲଟି ଉପରେ ମୁଣ୍ଡ ରଖି ଶୋଇ ଯାଇଥିଲେ । କେଶବାସ ଅସଂଯତ ହୋଇଥିଲା । ମୁଖମଣ୍ଡଳରେ ସାମାନ୍ୟ ମଳିନତା ।

ସତ୍ୟବ୍ରତ ସଜ୍ଜିତ ଗୃହର ଚାରିଆଡ଼େ ଆଖି ବୁଲେଇ ମଳିନା ଦେବୀଙ୍କ ନିକଟକୁ ଆଗେଇ ଗଲେ । ସେ ଶୋଇଥିଲେ ।

ଇନିସ୍ପେକ୍ଟର ପାଟିକରି କ'ଣ କହିବାକୁ ଯାଉଥିଲେ । ସତ୍ୟବ୍ରତ ଇଙ୍ଗିତରେ ନୀରବ ରହିବାକୁ କହିଲେ ।

ମଳିନା ଦେବୀଙ୍କ କପାଳରେ ଛୋଟ କୁଙ୍କୁମ ବିନ୍ଦୁ ଟିଏ । ନେତ୍ର ଯୁଗଳରେ କଜ୍ଜଳ ରେଖା । ଆଉ ? ଆଉ ?

ସତ୍ୟବ୍ରତ ପୁଣି ଗୁଣୁ ଗୁଣୁ ସଙ୍ଗୀତ ଶୁଣିଲେ । ମଳିନା ଦେବୀଙ୍କ ଉପରୁ ଦୃଷ୍ଟି ଫେରାଇ ନେଇ ଚାହିଁଲେ, ଦୁଆର ମୁହଁରେ ସ୍ଥିର ନେତ୍ରରେ ଚାହିଁ ଠିଆ ହୋଇଛନ୍ତି ସେହି ପ୍ରୌଢ଼ା ମହିଳା ଜଣକ । ମଦନ ରାୟଙ୍କ ସ୍ତ୍ରୀ ରତ୍ନମଞ୍ଜରୀ ଦେବୀ ।

ସତ୍ୟବ୍ରତ ମଳିନା ଦେବୀଙ୍କୁ ଡାକିଲେ ନାହିଁ । ଘରୁ ବାହାରି ଆସିଲେ । ଗୁଣୁ ଗୁଣୁ କଣ୍ଠ ସଙ୍ଗୀତ ଦୂରେଇ ଯାଉଥିଲା ।

: ଏ ଘରେ ରୁହନ୍ତି ମଦନ ରାୟଙ୍କ ଭାଉଜ ।

ସତ୍ୟବ୍ରତ ଘରେ ପଶି ଜଣେ ରୁଗ୍‌ଣା ପ୍ରୌଢ଼ା ମହିଳାଙ୍କୁ ଦେଖିଲେ । ସେ ଗୋଟିଏ ପଲଙ୍କ ଉପରେ ଶୋଇଥିଲେ । ଏମାନଙ୍କୁ ଗୃହରେ ପ୍ରବେଶ କରିବାର ଦେଖି ଉଠିବାକୁ ଚେଷ୍ଟା କଲେ । କିନ୍ତୁ ପାରିଲେ ନାହିଁ ।

: ଅନେକ ଦିନରୁ ପକ୍ଷାଘାତ ରୋଗରେ ଭୋଗୁଛନ୍ତି । ଏହାଙ୍କର ଡାହାଣ-ପାର୍ଶ୍ୱଟା ସଂପୂର୍ଣ୍ଣ ଅଚଳ ହୋଇ ଯାଇଛି ।

ଘରର ଚାରିଆଡ଼େ ଆଖିବୁଲେଇ ଆଣିଲେ । ସାଜସଜା ଅତି ସଂକ୍ଷିପ୍ତ ।

ମଦନରାୟଙ୍କ ଭାଉଜ ଏମାନଙ୍କୁ କ'ଣ କହିବାକୁ ବୋଧହୁଏ ଚେଷ୍ଟା କରୁଥିଲେ, କିନ୍ତୁ ଜିଭ ତାଙ୍କର ଲେଉଟୁ ନଥିଲା । ବାଁ ହାତ ଉଠାଇ କପାଳରେ ଥାପିଲେ । ତା'ପରେ ପୁଣି ସେ ଆଖି ବୁଜିଦେଲେ ।

ସତ୍ୟବ୍ରତ ସେ ଘରୁ ବାହାରି ଆସିଲେ । ତା'ପରେ ଏକ ପ୍ରଶସ୍ତ ବାରଣ୍ଡା ପାରହୋଇ

ସେମାନେ ଯାଇ ଯେଉଁ କୋଠରିରେ ପ୍ରବେଶ କଲେ, ସେଇଟା ଖୋଲାଥିଲା । ଜଣେ ତେଇଶି ଚବିଶି ବର୍ଷର ଯୁବକ, ପୋଷାକ ପତ୍ର ପିନ୍ଧି କେଉଁଠାକୁ ଯେପରି ଯିବାକୁ ପ୍ରସ୍ତୁତ ହେଉଥିଲା । ପୋଲିସ୍ ଇନିସ୍ପେକ୍ଟରଙ୍କୁ ସମ୍ମୁଖରେ ଦେଖି କହିଲେ : ମୁଁ ବର୍ତ୍ତମାନ ଆପଣଙ୍କ ନିକଟକୁ ଯାଉଥିଲି ।

: କାହିଁକି ?

: ଆପଣଙ୍କଠାରୁ ଅନୁମତି ନ ନେଇ ଘରୁ ବାହାରିବାକୁ ଆପଣ ନିଷେଧ କରିଛନ୍ତି । କିନ୍ତୁ ମାମୁଙ୍କର ଏଇ ଆକସ୍ମିକ ମୃତ୍ୟୁ ସମ୍ବାଦ ଆମର ଆତ୍ମୀୟ ସ୍ୱଜନଙ୍କ ନିକଟରେ ତ ପୁଣି ପହଞ୍ଚେଇବାକୁ ହେବ ?

ଏ ହେଉଛନ୍ତି ମଦନ ରାୟଙ୍କ ଭଣଜା । ଉମାପତି ସାମନ୍ତ । ଇନିସ୍ପେକ୍ଟର ସତ୍ୟବ୍ରତଙ୍କୁ ଚିହ୍ନାଇ ଦେଲେ ।

ଉମାପତି ବାବୁ ହାତଯୋଡ଼ି ନମସ୍କାର କଲେ ଏବଂ ସତ୍ୟବ୍ରତ ପ୍ରତି ନମସ୍କାର ଜଣାଇଲେ ।

: ଆପାତତଃ ଆପଣଙ୍କୁ କିଛି ସମୟ ଆମ ସହିତ ସହଯୋଗ କରିବାକୁ ପଡ଼ିବ । କାରଣ ମଦନ ରାୟଙ୍କ ହତ୍ୟା ରହସ୍ୟ ଏତେ ଜଟିଳ ଯେ, ତାଙ୍କ ମୃତ୍ୟୁ ସମ୍ବାଦ ବାହାରେ ପ୍ରଚାର କରିବା ଯୁକ୍ତି ଯୁକ୍ତ ମନେ ହେଉନାହିଁ । ସତ୍ୟବ୍ରତ କହିଲେ ।

ଉମାପତି ବାବୁ ସତ୍ୟବ୍ରତଙ୍କ ମୁହଁକୁ ପ୍ରଶ୍ନବାଚୀ ନୟନରେ ଚାହିଁଥିଲେ ।

: ମୋ ନାଁ ସତ୍ୟବ୍ରତ ମହାପାତ୍ର । ପ୍ରାଇଭେଟ ଡିଟେକ୍ଟିଭ । ମି. ମଦନ ରାୟଙ୍କ ଅନୁରୋଧକ୍ରମେ ଉଦୟ ମହଲକୁ ଆସିଥିଲି । କିନ୍ତୁ ଅତ୍ୟନ୍ତ ଦୁଃଖର ବିଷୟ ତାଙ୍କ ସହିତ ଦେଖା ହୋଇ ପାରିଲା ନାହିଁ । ଛାଡ଼ନ୍ତୁ, ହଁ ତା'ପରେ ? ଅନ୍ୟମାନେ କିଏ କେଉଁଠି ଥାଆନ୍ତି ।

: ଆଉ କେହି ନାହାନ୍ତି କହିଲେ ଚଳେ । ମଦନରାୟଙ୍କ ସ୍ତ୍ରୀଙ୍କ ସହିତ ତ ଆପଣଙ୍କର ଭେଟ ହୋଇଛି । ତାଙ୍କ ଭାଉଜଙ୍କୁ ମଧ୍ୟ ଭେଟିଛନ୍ତି । ଏମାନଙ୍କ ଛଡ଼ା ଆଉ ତିନିଜଣ ଚାକର ଚାକରାଣୀ ଅଛନ୍ତି । ଇନିସ୍ପେକ୍ଟର କହିଲେ ।

: ମଦନ ରାୟଙ୍କର ଆଉ କୌଣସି ସନ୍ତାନ ସନ୍ତତି . ?

ନା, ଉମାପତି ବାବୁ ଏକ ଦୀର୍ଘ ନିଶ୍ୱାସ ତ୍ୟାଗ କଲେ । ସେ ଦିଗରୁ ମାମୁ ଖୁବ୍ ଦରିଦ୍ର । ମାଇଁ ଦୀର୍ଘ ପନ୍ଦର କୋଡ଼ିଏ ବର୍ଷ ହେବ ବିକୃତ ମସ୍ତିଷ୍କ ହୋଇ ରିହିଛନ୍ତି ।

: ତା'ହେଲେ ଉଦୟ ମହଲରେ ବର୍ତ୍ତମାନ ଆପଣ ଏକମାତ୍ର ନିର୍ଭରଯୋଗ୍ୟ ବ୍ୟକ୍ତି ?

ଉମାପତି ବାବୁ ନୀରବ ରହିଲେ ।

: ମଦନରାୟଙ୍କ ହତ୍ୟା ରହସ୍ୟ ଉଦ୍‌ଘାଟନରେ ଆପଣ ହେବେ ଆମର ବଳିଷ୍ଠ ସହାୟକ । ଏଥର କୁହନ୍ତୁ ଆପଣଙ୍କର କାହାକୁ ସନ୍ଦେହ ହେଉଛି । ସତ୍ୟବ୍ରତ ମହାପାତ୍ର ଗୋଟିଏ ଚେଆର ଅଧିକାର କରି ବସିଲେ ।

ଉମାପତି ବାବୁ ଆହୁରି ଗମ୍ଭୀର ହୋଇ ଉଠିଲେ । ସେ କହିଲେ : ଆପଣ ବିଶ୍ୱାସ କରନ୍ତୁ ମହାପାତ୍ର ବାବୁ, ମାମୁଙ୍କ ହତ୍ୟା ରହସ୍ୟ ସମ୍ବନ୍ଧରେ ମୁଁ କିଛି ଜାଣି ନାହିଁ ।

: ଆମ ଅପେକ୍ଷା ନିଶ୍ଚୟ ଆପଣଙ୍କୁ ବେଶି ଜଣାଥିବ ।

ଅବଶ୍ୟ ଆପଣଙ୍କର ସେହିପରି ମନେ ହେବା ସ୍ୱାଭାବିକ। କିନ୍ତୁ ମାମୁଙ୍କର ହତ୍ୟା ଏପରି ଆକସ୍ମିକ ଯେ, ମୋର ଧାରଣାତୀତ।

: ଆଚ୍ଛା ଉମାପତି ବାବୁ ! ଏଥର ଆପଣ ମୋ ପ୍ରଶ୍ନର ଉତ୍ତର ଦିଅନ୍ତୁ। କହିଲେ, ଗତକାଲି ରାତିରେ, ଯେତେବେଳେ ମଦନ ରାୟଙ୍କୁ ହତ୍ୟା କରାଗଲା, ସେତେବେଳେ ଆପଣ ନିଶ୍ଚୟ ନିଜ କୋଠରିରେ ଉପସ୍ଥିତ ଥିଲେ। ସତ୍ୟବ୍ରତ କହିଲେ।

: ହଁଏତ ଥିଲି। କାରଣ କାଲି ରାତି ଦଶଟା ଠାରୁ ମୁଁ ମୋ ରୁମ୍‌ରେ ଥିଲି।

: ତା'ପରେ ?

: ଆଜି ଭୋରରୁ ରାମୁ ଆସି ମୋତେ ମାମୁଙ୍କ ଦୁଃସମ୍ବାଦ ଜଣାଇଲା।

: ଆପଣ କାଲି ରାତିରେ ଗୁଳି ଫୁଟିବାର ଶବ୍ଦ ଶୁଣି ନାହାନ୍ତି ?

: ନା।

: କେତେବେଳ ପର୍ଯ୍ୟନ୍ତ ଆପଣ ଶୋଇ ନଥିଲେ ?

: କାନ୍ଥ ଘଣ୍ଟାରେ ଏଗାରଟା ବାଜିବାର ଶୁଣିଛି। ତା'ପରେ ଆଉ କିଛି ଶୁଣିନାହିଁ।

: ତା' ମାନେ, ଆପଣ ଏଗାରଟାରୁ ସାଢ଼େ ଏଗାରଟା ମଧ୍ୟରେ ଶୋଇ ପଡ଼ିଛନ୍ତି ?

: ହଁ।

: ମଦନ ରାୟଙ୍କୁ ଆପଣ ଜୀବିତାବସ୍ଥାରେ କେବେ ଦେଖିଥିଲେ ?

: କାଲି ସକାଳ ଦଶଟାରେ।

: ତା'ପରେ ଆଉ ଦେଖି ନାହାନ୍ତି ?

: ନା।

: କାଲି ଦିନ ଦଶଟା ପରେ ଉଦୟ ମହଲକୁ ଆଉ କିଏ ଆସିଥିଲେ କହି ପାରିବେ ?

: ମୁଁ କାଲି ନଥିଲି। ଦିନ ଏଗାରଟାରେ ବାହାରି ଯାଇଥିଲି, ଫେରିଲି ରାତି ଆଠଟାରେ।

: ତାହେଲେ ଆପଣ କିଛି ଜାଣି ନାହାନ୍ତି।

: ନା।

: ହୁଁ, ସତ୍ୟବ୍ରତ ନୀରବରେ କିଛି ସମୟ ଚିନ୍ତା କଲେ। ଆଚ୍ଛା, ଆପଣ ବୋଧହୁଏ କହି ପାରିବେ ମଦନରାୟଙ୍କ ମୃତ୍ୟୁ ପରେ ତାଙ୍କର ବିଶାଳ ସମ୍ପତ୍ତିର ଉତ୍ତରାଧିକାରୀ କିଏ ହେବ ?

: ନା, ତା ମଧ୍ୟ ମୋତେ ଜଣା ନାହିଁ। କାରଣ ମାମୁ ଏତେ ଗମ୍ଭୀର ସ୍ୱଭାବର ଲୋକ ଥିଲେ ଯେ, ଖୋଲା ଖୋଲି ଭାବରେ କେବେ କାହାରି ସହିତ କଥା ପଦେ କହୁ ନଥିଲେ।

: ହୁଁ, ଆଚ୍ଛା ! ଆପଣଙ୍କ ସହିତ ଏ ସମ୍ବନ୍ଧରେ ପରେ ଆଲୋଚନା କରିବି। ମୋର ଅନୁରୋଧ ଆପଣ ଘରଛାଡ଼ି କୁଆଡ଼େ ଯାଆନ୍ତୁ ନାହିଁ। ସତ୍ୟବ୍ରତ ଉଠି ଠିଆ ହେଲେ। ଇନିସ୍ପେକ୍ଟରଙ୍କୁ ଇଂଗିତରେ ଉଠିବାକୁ କହିଲେ। ଆଉ କେତେଜଣ ଚାକର ଏବଂ ମଳିନା ଦେବୀ। ଏମାନଙ୍କ ଛଡ଼ା ମଦନରାୟଙ୍କ ମୃତ୍ୟୁ ସମ୍ବନ୍ଧରେ କେହି କିଛି ସାକ୍ଷ୍ୟ ଦେଇ ପାରିବେ ନାହିଁ।

ମଳିନା ଦେବୀ ସେହିପରି ଡ୍ରେସିଂ ଟେବୁଲ ଉପରେ ମୁଣ୍ଡରଖି ଶୋଇଥିଲେ ।

: ମଳିନା ଦେବୀ, ସତ୍ୟବ୍ରତ ଅଳ୍ପ ଦୂରରୁ ଥାଇ ଡାକିଲେ ।

କେବଳ ମଳିନାର ଆଖିପତା ଯୋଡ଼ିକ ଥରି ଉଠିଲା । ତା'ପରେ ନିଥର, ନିଶ୍ଚଳ ।

ସତ୍ୟବ୍ରତ ପୁଣି ଡାକିଲେ । ଡାକେ, ଦୁଇ ଡାକେ........

ମଳିନା ଦେବୀ ଆଖି ଖୋଲି କହିଲେ : ଆପଣ ତ ମୋତେ କହିଥିଲେ ନିଜ କୋଠରିରେ ଯାଇ ବିଶ୍ରାମ କରିବାକୁ ।

ସେ କଥା ମୋର ମନେ ଅଛି । କିନ୍ତୁ ଆପଣ ଏଥର ଆସନ୍ତୁ । ମି. ମହାପାତ୍ର ଆପଣଙ୍କୁ ମଦନରାୟଙ୍କ ମୃତ୍ୟୁ ସମ୍ବନ୍ଧରେ କେତେକ ପ୍ରଶ୍ନ ପଚାରିବେ ।

ମଳିନା ଆଡ଼ ନୟନରେ ସତ୍ୟବ୍ରତଙ୍କ ମୁହଁକୁ ଥରେ ଚାହିଁଲା । ଆଖିରୁ ଆଳସ୍ୟ ଠେଲି ସିଧା ହୋଇ ବସିବାକୁ ଚେଷ୍ଟା କରି ବ୍ୟର୍ଥ ହେଉଥିଲା ।

: ଆପଣ ବୋଧହୁଏ କାଲି ରାତିରେ ଶୋଇ ପାରି ନାହାନ୍ତି ? ସତ୍ୟବ୍ରତ ପଚାରିଲେ ।

ମଳିନା ବିସ୍ଫାରିତ ନୟନରେ ସତ୍ୟବ୍ରତଙ୍କ ମୁହଁକୁ କିଛି ସମୟ ଅନାଇ ରହିଲା । କହିଲା : କାଲି ରାତିରେ ତ ମୁଁ ନିଶ୍ଚିନ୍ତରେ ଶୋଇଥିଲି । ଶୋଇବା ପାଇଁ ମୋତେ ଭାରି ଭଲ ଲାଗେ ।

: ଆପଣଙ୍କର ବାପାଙ୍କର ମୃତ୍ୟୁ ସମ୍ବନ୍ଧରେ ଆପଣ କିଛି ଜାଣିଛନ୍ତି ?

: ସେ ମରି ଯାଇଛନ୍ତି । ଏତିକି ଛଡ଼ା ମୋତେ ଆଉ କିଛି ଜଣା ନାହିଁ ।

: ଆପଣ କାଲି ରାତି ଦଶଟା ଠାରୁ ଆଜି ମଦନ ରାୟଙ୍କ ମୃତ୍ୟୁ ସଂବାଦ ଶୁଣିବା ପର୍ଯ୍ୟନ୍ତ କେଉଁଠି ଥିଲେ ?

: ମୋର ଠିକ୍ ମନେ ନାହିଁ । ତେବେ ଆଜି ସକାଳେ ମୁଁ ଯେତେବେଳେ ବାପାଙ୍କର ମୃତ୍ୟୁ ସଂବାଦ ପାଇଲି, ସେତେବେଳେ ଏଇ ଘରେ ଏଇ ଖଟ ଉପରେ ଶୋଇଥିଲି ।

: ଆପଣଙ୍କର କାଲି ରାତିକଥା ମନେ ନାହିଁ ମାନେ ? ସତ୍ୟବ୍ରତ କିପରି ସନ୍ଦିଗ୍ଧ ନୟନରେ ମଳିନା ମୁହଁକୁ ଚାହିଁଲେ ।

: କ୍ଷମା କରିବେ । ରାତିରେ ମୋର କିଛି ମନେ ରହେନାହିଁ । ମୋର ସ୍ମରଣ ଶକ୍ତି ଖୁବ୍ ଦୁର୍ବଳ ।

ଅଦ୍ଭୁତ ଝିଅ ତ ମଳିନା ! ସତ୍ୟବ୍ରତ ଇନିସ୍ପେକ୍ଟରଙ୍କ ମୁହଁକୁ ଚାହିଁଲେ । ମଳିନା କିନ୍ତୁ ନିର୍ବିକାର ଭାବରେ ସେଇଠି ବସି ରହିଥିଲା ।

: ଆପଣଙ୍କୁ କିନ୍ତୁ କାଲି ରାତିର ଘଟଣା ମନେ ପକେଇବାକୁ ହେବ। ସତ୍ୟବ୍ରତ କହିଲେ ।

ମଳିନା ମୁହଁରେ ସ୍ମିତ ହାସ୍ୟରେଖା ଟିକିଏ ଫୁଟି ଉଠିଲା । ସେ କହିଲା : ମୋତେ ଆଉ ଆପଣମାନେ ବିରକ୍ତ କରନ୍ତୁ ନାହିଁ । ମୋର କିଛି ମନେ ନାହିଁ ।

: ଆପଣ କାଲି ରାତିରେ ଗୁଳି ଫୁଟିବାର ଶବ୍ଦ ଶୁଣି ନାହାନ୍ତି ?

: ନା, ମୁଁ କିଛି ଶୁଣି ନାହିଁ ।

: ହଁ ଆପଣ ଶୁଣିଛନ୍ତି । ନିଶ୍ଚୟ ଶୁଣିଛନ୍ତି । କୁହନ୍ତୁ ମଳିନା ଦେବୀ । ଆପଣଙ୍କୁ ଗୋଟି ଗୋଟି କରି ସବୁକଥା କହିବାକୁ ହେବ । ସତ୍ୟବ୍ରତଙ୍କ ମୁହଁରେ ଓ ଭାଷାରେ କଠିନତା ଫୁଟି ଉଠିଲା ।

ମଳିନା ଭୋ-ଭୋ ହୋଇ କାନ୍ଦି ଉଠିଲା । ତାକୁ ଆଉ କୌଣସି ପ୍ରଶ୍ନର ଉତ୍ତର ଦେବାକୁ ପଡ଼ିଲା ନାହିଁ ।

ରାମୁ କେଉଁଠି ଥିଲା ଛୁଟି ଆସିଲା । ଯୋଡ଼ ହାତରେ ନିବେଦନ କରି କହିଲା : ଆଜ୍ଞା ଦେଈଙ୍କୁ କନ୍ଦାନ୍ତୁ ନାହିଁ । ତାଙ୍କର କାନ୍ଦଣା ଥରେ ଆରମ୍ଭ ହେଲେ, ଦୁଇ ତିନିଦିନ ପର୍ଯ୍ୟନ୍ତ ଆଉ ବନ୍ଦ ହୁଏନାହିଁ ।

: ତୁମ ନାଁ ? ସତ୍ୟବ୍ରତ ପଚାରିଲେ ।

: ରାମୁ । ସାଆନ୍ତଙ୍କ ଘରେ ବାଳ ପାଚିଲାଣି । ଦେଈ ଭାରି ଗେଲ ବସରରେ ବଢ଼ିଛନ୍ତି । ତାଙ୍କୁ କେହି ପଦେ ଟାଣକଥା କହିଲେ ସେ ସହି ପାରନ୍ତି ନାହିଁ ।

: ତମେ ତା'ହେଲେ ମଦନରାୟଙ୍କ ନିକଟରେ ପିଲାଟି ବେଳରୁ ରହି ଆସିଛ ।

: ଆଜ୍ଞା ।

: ମଳିନା ଦେବୀ ମଦନରାୟଙ୍କର କ'ଣ ହୁଅନ୍ତି ?

: ଝିଅ । ଆପଣ ବାହାରକୁ ଚାଲି ଆସନ୍ତୁ । ଦେଈଙ୍କି ଆଉ କନ୍ଦାନ୍ତୁ ନାହିଁ । ଯାହା ଜାଣିବାର କଥା ମୁଁ ଆପଣଙ୍କ ଆଗରେ ସବୁ କହିବି ।

ମଳିନା କାନ୍ଦୁଥିଲା । ସତ୍ୟବ୍ରତ ଥରେ ସେ ଆଡ଼େ ଚାହିଁ, ରାମୁ ସହିତ ବାହାରି ଗଲେ ।

: ତା'ହେଲେ ତମେ ମଳିନା ଦେବୀଙ୍କର ସମ୍ବନ୍ଧରେ ସବୁ କଥା କହିବ, ଏଇଆ ତ ? ସତ୍ୟବ୍ରତ ପଚାରିଲେ ।

: ମୁଁ ନୌକର ଚାକର ଆଜ୍ଞା । ଯେତିକି ଜାଣିଛି ସେତିକି କହିବିସିନା !

: ଆଚ୍ଛା ତମେ କାଲି ମଦନ ରାୟଙ୍କୁ ଶେଷଥର ପାଇଁ କେବେ ଜୀବିତାବସ୍ଥାରେ ଦେଖିଥିଲେ ?

: ରାତିରେ ଆଜ୍ଞା ।

: କେତେଟା ରାତି ହେବ ?

: ଏଇ ସାଢ଼େ ନଅ ଦଶଟା ହେବ ।

: ମଳିନା ଦେବୀ ସେତେବେଳେ କେଉଁଠି ଥିଲେ ?

: ସେକଥାତ ମୋତେ ଜଣା ନାହିଁ !

: ଆଚ୍ଛା, ତମେ କାଲି ରାତି ଦଶଟାବେଳେ ମଦନ ରାୟଙ୍କ ସହିତ କାହିଁକି ଦେଖା କରିଥିଲ ?

: ମୋତେ ସେ ଡାକିଥିଲେ । ତା'ଛଡ଼ା ମୁଁ ତ ତାଙ୍କ ଘରକୁ ପ୍ରାୟ ଯାଆ ଆସ କରେ ।

କାଲି ରାତିରେ ଯେତେବେଳେ ଯାଇଥିଲ, ସେତେବେଳେ ମଦନ ରାୟଙ୍କ ପାଖରେ ଆଉ କିଏ ଥିଲେ ?

: ନା, ଆଉ କେହି ନ ଥିଲେ ।

: ତା' ହେଲେ ତମ୍ଭୁକୁ ସେ କାହିଁକି ଡାକିଥିଲେ ?

: ଆଜି ଭୋର୍‌ରୁ ଟିକିଏ ତାଙ୍କ ନିଦ ଭାଙ୍ଗି ଦେବା ପାଇଁ ।

: ମଦନ ରାୟ କ'ଣ ସବୁଦିନେ ଡେରି ପର୍ଯ୍ୟନ୍ତ ଶୋଉଥିଲେ ?

: ଆଜ୍ଞା, ତାଙ୍କ ନିଦ ଭାଙ୍ଗୁ ଭାଙ୍ଗୁ ପ୍ରାୟ ଆଠଟା ବାଜିଯାଏ ।

କଥା ମଝିରେ ଇନିସ୍ପେକ୍ଟର କହିଲେ : ମୁଁ ଟିକିଏ ଆସୁଛି ଆଜ୍ଞା ! ସାମ୍ନାରେ ଏଇ ହୋଟେଲରେ ଟିକିଏ ଅନୁସନ୍ଧାନ କରିବାର ଅଛି । ଆପଣ କାମ ସାରନ୍ତୁ ।

ଆଚ୍ଛା । ସତ୍ୟବ୍ରତ ପୁଣି ରାମୁ ଆଡ଼କୁ ଚାହିଁଲେ । ଦେଖ ରାମୁ ଏହି ଉଦୟ ମହଲରେ ତମେ ଅନେକ ଦିନ ହେବ କାମ କରୁଛ । ତେଣୁ ଏଠିକାର ପ୍ରତିଟି ଅଧିବାସୀ ସମ୍ବନ୍ଧରେ ତମର ପୂରା ଧାରଣା ଥିବ ।

ନା ଆଜ୍ଞା, ଆପଣ ଭୁଲ କହୁଛନ୍ତି । ଯଦିଓ ସାଆନ୍ତଙ୍କର ମୁଁ ଅତି ପୁରୁଣା ଚାକର, ତେବେ ଏ ଘରେ ମୋର ବେଶି ଦିନର ଚାକିରି ନୁହେଁ । ସାଆନ୍ତଙ୍କ ବାପାଙ୍କର ମୁଁ ଥିଲି ଅତି ପ୍ରିୟ ଚାକର । ଏମାନଙ୍କୁ କୋଳରେ କାଖରେ ଧରି ମଣିଷ, କରିଛି । କିନ୍ତୁ ତା'ପରେ ଯେ ଯୁଆଡ଼େ ନିଜ ଧନ୍ଦାରେ ଚାଲି ଯାଇଛନ୍ତି । ମୋତେ କିନ୍ତୁ ବୁଢ଼ା ସାଆନ୍ତେ ଦିନକ ପାଇଁ ଆଖିରୁ ଅନ୍ତର କରି ନ ଥିଲେ ।

: ତା' ହେଲେ ? ତମେ ଏଠାକୁ ଆସିଲ କିପରି ?

: ଗତବର୍ଷ ବୁଢ଼ା ସାଆନ୍ତେ ମରିଗଲେ । ତାଙ୍କର ଶୁଦ୍ଧିକ୍ରିୟାକୁ ଯାଇ ସାଆନ୍ତେ ମୋତେ ସାଙ୍ଗରେ ଘେନି ଆସିଲେ ।

: ମଦନ ରାୟ କ'ଣ ତାଙ୍କ ବାପାଙ୍କ ପାଖରେ ରହୁ ଥିଲେ ?

: ନା ଆଜ୍ଞା ! ସାଆନ୍ତେ ବାହାହେବା ପରଠାରୁ ବୁଢ଼ା ସାଆନ୍ତଙ୍କଠାରୁ ଅଲଗା ହୋଇ ରହିଛନ୍ତି ।

: ମଦନ ରାୟଙ୍କର ଆଉ ଭାଇ ଭଉଣୀ କେତୋଟି ?

: ଭାଇ କେହି ନାହାନ୍ତି ଆଜ୍ଞା । ଗୋଟିଏ ବଡ଼ ଭଉଣୀ ଥିଲେ । ତାଙ୍କୁ ବୁଢ଼ା ସାଆନ୍ତେ କୁଆଡ଼େ ପାଟଣାରେ ବାହା ଦେଇଥିଲେ । ସେ ବି ଦି' ତିନି ବର୍ଷ ହେବ ମରି ସାରିଲେଣି ।

: ମଦନ ରାୟଙ୍କର ସେ ଭଉଣୀର ପୁଅ ବୋଧହୁଏ ଉମାପତି ସାମନ୍ତ ।

: ସେଇଆ ତ ମୁଁ ଶୁଣିଛି ।

: ତମେ କ'ଣ ତାଙ୍କୁ ଚିହ୍ନି ନାହଁ ?

: ନା ଆଜ୍ଞା, ସେମାନଙ୍କୁ କେବେ ମୁଁ ଦେଖି ନ ଥିଲି ।

: ହାଁ ତା'ହେଲେ ମଦନ ରାୟ ବହୁ ସମ୍ପତ୍ତିର ଅଧିକାରୀ ଥିଲେ ।

: ତା'ବି ନୁହେଁ ।

: କିପରି ?

: ବୁଢ଼ା ସାଆନ୍ତେ ତାଙ୍କ ସମ୍ପତ୍ତିରୁ ବେଶିଭାଗ ରାଧାଗୋବିନ୍ଦଜୀଉଙ୍କ ନାମରେ ଲେଖି ଦେଇ ଟ୍ରଷ୍ଟି ହାତରେ ଦେଇ ଯାଇଛନ୍ତି । ବାକି ଅଳ୍ପ କେତୁଟା କୋଠା, କିଛି ନଗଦ ଟଙ୍କା ଆଉ ସାମାନ୍ୟ କିଛି ଜମିବାଡ଼ି ସାଆନ୍ତଙ୍କ ନାମରେ ରଖି ଯାଇଛନ୍ତି । ସାଆନ୍ତ କିନ୍ତୁ ସେ ସବୁକୁ ଭୋଗ ଦଖଲ କରିବା ପାଇଁ ଯାଆନ୍ତି ନାହିଁ । ମୁଁ ଶୁଣିଥିଲି ସାଆନ୍ତେ କୋଉଠୁ ଏକ ସମୟରେ ବହୁ ପୋତା ଧନ ପାଇଥିଲେ । ସେଇଥିରେ ସେ ଅଗାଧ ସମ୍ପତ୍ତି କରି ଯାଇଛନ୍ତି ।

: ହଁ । ସତ୍ୟବ୍ରତ କିଛି ସମୟ ନିରବରେ ଚିନ୍ତାକଲେ । ଆଚ୍ଛା ରାମୁ ! ତୁମେ ତ କହିଲ ତମ ସାଆନ୍ତଙ୍କର କେହି ଭାଇ ଭଉଣୀ ନାହାନ୍ତି, କିନ୍ତୁ ଏହି ଉଦୟ ମହଲରେ ତାଙ୍କର ଯେଉଁ ଅସୁସ୍ଥ ଭାଉଜ ରହୁଛନ୍ତି, ସେ କିଏ ?

: ମୁଁ ତାଙ୍କ ସମ୍ବନ୍ଧରେ କିଛି କହି ପାରିବି ନାହିଁ । ତେବେ ସାଆନ୍ତଙ୍କ ମୁହଁରୁ କେତେଥର ଭାଉଜ ଡାକ ଶୁଣିଛି ।

ଆଉ ମଳିନା ଦେବୀ ?

: ସେ ସାଆନ୍ତଙ୍କର ପାଳିତା ଝିଅ । ତେବେ ସେ କଥା ଦେଇ ଜାଣନ୍ତି ନାହିଁ । ଖୁବ୍ ଛୁଆବେଳୁ ସାଅନ୍ତେ ତାକୁ ପାଳିଛନ୍ତି ।

: ହଁ ବୁଝିଲି । ତା'ହେଲେ ମଦନ ରାୟଙ୍କର ଏହି ଯେଉଁ ଅଗାଧ ସମ୍ପତ୍ତି, ଏହାର ବର୍ତ୍ତମାନ ଉତ୍ତରାଧିକାରୀ ଏକମାତ୍ର ମଳିନା ଦେବୀ ?

: ନା ଆଜ୍ଞା, ଏ ସମସ୍ତ ସମ୍ପତ୍ତି ସାଆନ୍ତେ ଆଉ କାହା ନାଁରେ ଉଇଲ୍ କରି ରଖି ଯାଇଛନ୍ତି । କେବଳ ଦେଇଙ୍କ ବାହାଘର ବାବଦରେ କିଛି ଟଙ୍କା ସେ ଦେଇଙ୍କ ନାଁରେ ରଖିଛନ୍ତି ।

: ମୁଁ ଶୁଣିଛି ଆଜ୍ଞା, ରାମୁ କହିଲା । ଏଇ ତିନି ଚାରି ମାସ ହେବ ସାଆନ୍ତେ ସମ୍ପତ୍ତି ବାଡ଼ିର କ'ଣ ଗୋଟାଏ ଉଇଲ୍‌ପତ୍ର କରି ଦେଇଛନ୍ତି । କାହାକୁ କେତେ କ'ଣ ଦେଇଛନ୍ତି ମୋତେ କିଛି ଜଣା ନାହିଁ ।

: ଆଉ ତୁମର ସାଆନ୍ତାଣୀ, ମାନେ ମଦନ ରାୟଙ୍କ ସ୍ତ୍ରୀ, ସେ ଏ ସମ୍ବନ୍ଧରେ କିଛି କହି ପାରିବେ ?

ରାମୁ ମୁହଁରେ ହସ ଟିକିଏ ଫୁଟି ଉଠିଲା, ବୋଧହୁଏ ବେଦନାର । ସେ କହିଲା ମୁଁ ଏ ଘରକୁ ଆସିଲା ଦିନରୁ ମା' ସାଆନ୍ତାଣୀ କେବେ ପଦେ କଥା କହିବାର ଶୁଣିନାହିଁ । କେବଳ ସେ ସବୁବେଳେ ନିଜ ମନକୁ ମନ ଗୁଣୁ ଗୁଣୁ ହୋଇ ଗୀତ ଗାଆନ୍ତି । କାହାକୁ ଦେଖିଲେ ଟିକିଏ ହସି ଦିଅନ୍ତି । ତା'ପରେ ସେ ଅନ୍ୟ ଆଡ଼କୁ ଚାଲିଯାଆନ୍ତି ।

ତମ ସାଆନ୍ତଙ୍କ ସହିତ କେବେ ସେ କଥାବାର୍ତ୍ତା ହୁଅନ୍ତି ନାହିଁ ?

: ନାଇଁ ଆଜ୍ଞା ! ତା'ହେଲେତ ସାଆନ୍ତ ଟିକିଏ ନିଶ୍ଚିନ୍ତରେ ବଞ୍ଚି ପାରି ଥାନ୍ତେ ।

: ଆଚ୍ଛା, ତମ ସାଆନ୍ତଣୀଙ୍କର ଏହିପରି ଅବସ୍ଥା କେବେଠାରୁ ହେଲାଣି ?

: ମୋତେ ଜଣାନାହିଁ । ମୁଁ ଆସିଲା ଦିନଠାରୁ ଏହିପରି ଅବସ୍ଥା ଦେଖୁଛି ।

: ତମେ କ'ଣ କେବେ ତମ ସାଆନ୍ତାଣୀଙ୍କୁ ସୁସ୍ଥ ମସ୍ତିଷ୍କରେ ଦେଖିନାହିଁ ?

: ଦେଖିଥିଲି ଆଜ୍ଞା, ମାତ୍ର ଦିନକ ପାଇଁ । ଯେତେବେଳେ ସାଆନ୍ତେ ବାହାହୋଇ ପ୍ରଥମ ଥର ଘରକୁ ଯାଇଥିଲେ ।

ଘରେ କ'ଣ ସେ ମାତ୍ର ଦିନେ ରହିଲେ ?

: ଆଜ୍ଞା ! ବୁଢ଼ାସାଆନ୍ତେ ତାଙ୍କୁ ଗ୍ରହଣ କରି ପାରିଲେ ନାହିଁ । ଏ ବାହାଘର ବୁଢ଼ା ସାଆନ୍ତଙ୍କ ଇଚ୍ଛା ଅନୁସାରେ ହୋଇ ନଥିଲା । ତେଣୁ ବାପ ପୁଅଙ୍କ ଭିତରେ ଭୀଷଣ କଳିଗୋଳ ହେଲା । ସେଇ ଦିନ ସାଆନ୍ତେ ସାଆନ୍ତାଣୀଙ୍କୁ ସାଙ୍ଗରେ ଧରି ଘରୁ ବାହାରି ଆସିଥିଲେ ।

: ତା'ପରେ ?

: ଆଉ ସେ ଘରକୁ ଫେରି ନ ଥିଲେ ।

: ତମ ବୁଢ଼ା ସାଆନ୍ତେ ?

ସେ ମଧ୍ୟ ଆଉ ଖୋଜିଲେନି । କହିଲେ, ମୋର ପୁଅ ନାହିଁ । ମୁଁ ଅପୁତ୍ରିକା ତାଙ୍କର ଅଭିଶାପ ସାନ ସାଆନ୍ତଙ୍କ ଉପରେ ପଡ଼ିଲା । ସାଆନ୍ତଣୀ ପାଗଳୀ ହୋଇଗଲେ । ସାଆନ୍ତେ ମଧ୍ୟ ଅପୁତ୍ରିକ ହୋଇ ରହିଲେ ।

: ହୁଁ, ଏଥର ତା'ହେଲେ ମଳିନା ଦେବୀଙ୍କ କଥା କୁହ ।

: ସେ ସାଆନ୍ତଙ୍କର ପାଳିତା କନ୍ୟା ।

: ମଳିନା ଦେବୀ କେଉଁଠୁ ଆସିଥିଲେ, ତାଙ୍କର ମାଆ କିଏ, ବୋଧହୁଏ ସେ ସବୁ କଥା ତମକୁ କିଛି ଜଣାନାହିଁ ।

: ନାଇଁ ଆଜ୍ଞା ।

: ସବୁକଥା ଜାଣିଥିବା ଭଳି ଲୋକ ଏ ଉଦୟ ମହଲରେ ଆଉ କିଏ ଅଛି ?

ମୁଁ କହି ପାରିବି ନାହିଁ । ଅନ୍ୟ ଯେଉଁ ଚାକର ବାକର କେଇଜଣ ଅଛନ୍ତି, ସେମାନଙ୍କୁ ମୁଁ ଆସିବା ପରେ ରଖେଇଛି । ତେଣୁ ସେମାନେ କିଛି ଜାଣି ନ ଥିବେ ।

: ଆଉ ଉମାପତି ବାବୁ ?

: ସେ କେତେଦିନ ହେବ ଅଛନ୍ତି ମୋତେ ଜଣାନାହିଁ ।

: ତା'ହେଲେ ତୁମକୁ କିଛି ଜଣାନାହିଁ । ମୁଁ ଯାଉଛି ମଳିନାକୁ ଭଲକରି ଜେରା କରିବି । କାରଣ ତା'ଛଡ଼ା ଆଉ କାହାରିକୁ ଏହି ଉଦୟ ମହଲ ରହସ୍ୟ ଜଣା ନ ଥିବ ।

ରାମୁ ସତ୍ୟବ୍ରତଙ୍କ ଗୋଡ଼ଧରି ଲମ୍ବହୋଇ ପଡ଼ିଗଲା । କହିଲା : ଆପଣ ଆଉ ଦେଈଙ୍କ ଘରକୁ ଯାଆନ୍ତୁ ନାହିଁ ଆଜ୍ଞା । ସେ ଯଦି କନ୍ଦାକଟା ଆରମ୍ଭ କରନ୍ତି, ତେବେ ତିନି ଚାରିଦିନ ଯାଏ କାନ୍ଦିବେ ।

ବଡ଼ ଆଶ୍ଚର୍ଯ୍ୟ କଥା ତ ! ସତ୍ୟବ୍ରତ ରାମୁ କଥାକୁ ବିଶ୍ୱାସ କରିବେକି ନାହିଁ ଚିନ୍ତା କରୁଥିଲେ । ବିଶ୍ୱାସ କଲେ ମଧ୍ୟ ମଳିନା ଛଡ଼ା ଉଦୟ ମହଲର ରହସ୍ୟମୟ ଇତିହାସ କହିବାକୁ ଆଉ ଯେ କେହି ଲୋକ ନାହିଁ ! ଉମାପତି ହୁଏତ ଅଳ୍ପ କେଇବର୍ଷ ହେବ ଆସି ଏଠାରେ ରହୁଛି । ମଦନରାୟଙ୍କ ସ୍ତ୍ରୀତ ପାଗଳୀ, ତାଙ୍କ ଭାଉଜ ପକ୍ଷାଘାତ ରୋଗୀ । ଏକମାତ୍ର ମଳିନାକୁ ଛାଡ଼ିଦେଲେ ଆଉକେହି ତାଙ୍କ ଅନୁସନ୍ଧାନରେ ସହାୟତା କରିବା ଭଳି ଲୋକ ଏଠାରେ ନାହିଁ । ଆଚ୍ଛା, ଦେଖାଯିବ ।

ସତ୍ୟବ୍ରତ ରାମୁକୁ ଆଶ୍ୱାସନା ଦେଇ କହିଲେ ମୁଁ ଆଉ ତମର ଦେଈଙ୍କୁ କନ୍ଦାଇବି ନାହିଁ । କିନ୍ତୁ ତମକୁ ମୋର ଆଉ କେତୋଟି ପ୍ରଶ୍ନର ଉତ୍ତର ଦେବାକୁ ହେବ ।

: ପଚାରନ୍ତୁ, ଯାହା ଜାଣିଥିବି କହିବି ।

: ଆଚ୍ଛା, ଏ କେଇମାସ ଭିତରେ ତମର ମଳିନା ପ୍ରତି ଏତେ ଆନ୍ତରିକତା ସୃଷ୍ଟି ହେଲା କିପରି ?

ରାମୁ କେବଳ ଛଳ ଛଳ ଆଖିରେ ସତ୍ୟବ୍ରତଙ୍କ ମୁହଁକୁ ଅନାଇ ରହିଲା ।

: କୁହ ରାମୁ ! ମଳିନା କ'ଣ ତମର କୌଣସି ସମ୍ପର୍କୀୟା ?

ରାମୁ ଜିଭ କାମୁଡ଼ି ପକେଇ, ଦି'[illegible] ନିଜର କାନକୁ ମୋଡ଼ି ପକାଇଲା ।

କହିଲା : ଏପରି କଥା କୁହନ୍ତୁ ନାହିଁ, ମୋର ପାପ ହେବ । କେତେ ପୁଣ୍ୟ ଅର୍ଜିଲେ ଏଇଭଳି ବଂଶରେ ଜନ୍ମଗ୍ରହଣ କରିବାକୁ ହୁଏ । ମୁଁ ଯେତେ ମୂର୍ଖ ହେଲେବି ସେତକ ଧାରଣା ମୋର ଅଛି ।

: ତେବେ କୁହ ରାମୁ ! ମଳିନା ପ୍ରତି ତମର ଆନ୍ତରିକତା ଲକ୍ଷ୍ୟକରି ମୋର ମନେ ହେଉଛି, ଏହା ପଛରେ କିଛିନା କିଛି କାରଣ ଅଛି ।

ରାମୁ ଆଖି ଲୁହ ସମ୍ଭାଳି ପାରିଲା ନାହିଁ । ଭୋ ଭୋ ହୋଇ କାନ୍ଦି ପକେଇ କହିଲା  ମୋର ଗୋଟିଏ ନାତୁଣୀ ଥିଲା ଠିକ ଦେଖିବାକୁ ଦେଈଙ୍କ ପରି । ବିଚାରୀ ବାହାଘର ଦିନ ରାତିରେ ମରିଗଲା ।

: ହୁଁ, ସତ୍ୟବ୍ରତ ଗୋଟିଏ ଦୀର୍ଘଶ୍ୱାସ ତ୍ୟାଗକରି କହିଲେ, ତମେ ଏବେ ଯାଅ ରାମୁ । ମୁଁ ପରେ ତୁମକୁ ଡାକି ପଠେଇବି ।

ସେଦିନ ଉଦୟ ମହଲର ଏକ ନିରୋଳା କକ୍ଷରେ ସତ୍ୟବ୍ରତ ନୀରବରେ ବସି ଚିନ୍ତା କରୁଥିଲେ ।

ମଦନ ରାୟଙ୍କ ମୃତଦେହ ପୋଷ୍ଟମର୍ଟମ୍ ପାଇଁ ଚାଲି ଯାଇଥିଲା ।

ପୋଲିସ୍ ଇନିସ୍ପେକ୍ଟର ତଦନ୍ତ କାର୍ଯ୍ୟ ଶେଷକରି ଫେରି ଯାଇଥିଲେ ।

ତା'ହେଲେ ! ଏ ମୃତ୍ୟୁ ନିଶ୍ଚୟ ରହସ୍ୟମୟ ! କିନ୍ତୁ କିଏ ଏହି ରହସ୍ୟମୟ ନାଟକର ଅଧିନାୟକ ? ଯେଉଁ କେତେଜଣ ଉଦୟ ମହଲରେ ବାସ କରୁଛନ୍ତି, ସେମାନଙ୍କ ଭିତରୁ କାହାକୁ ସେ ସନ୍ଦେହ କରିବେ ? ବାହାରର କେଉଁ ଲୋକ ଆସି ଅବା ଏପରି ଏକ ଦୁଷ୍କର୍ମ କରି ଚାଲିଗଲା ?

ରାମୁ ଆସି ସତ୍ୟବ୍ରତଙ୍କ ଘରେ ଆଲୋକ ରଖିଦେଇ ଗଲା ।

ସତ୍ୟବ୍ରତ ଯେଉଁ ଘରେ ବସିଥିଲେ, ସେଇ ଘରର ଦୁଇଟି କୋଠରି ଛଡ଼ାରେ ରୁହେ ମଳିନା । ସେ ଆଜି ଦିନକ ଭିତରେ ଯେତେଥର ମଳିନା ଘରକୁ ଯାଇଛନ୍ତି, ସବୁବେଳେ ମଳିନାକୁ ଶୋଇଥିବା ଅବାସ୍ଥାରେ ଦେଖି ଫେରି ଆସିଛନ୍ତି ।

ଆଉ ଉମାପତି ! ତା' ସହିତ ସକାଳେ ଯାହା ଦେଖା ହୋଇଥିଲା ସେତିକି । ତା'ପରେ ସେ କୁଆଡ଼େ ଚାଲିଯାଇଛି ଯେ ଏ ପର୍ଯ୍ୟନ୍ତ ଫେରିନାହିଁ ।

କେବଳ ମଝିରେ ମଝିରେ ମଦନ ରାୟଙ୍କ ସ୍ତ୍ରୀ ଉଲ୍କାପରି ଛୁଟିଆସି ପୁଣି ଲୁଚି ଯାଉଛନ୍ତି । ଗୁଣୁ  ଗୁଣୁ କଣ୍ଠସ୍ୱର ସବୁବେଳେ ତାଙ୍କର ଶୁଣାଯାଉଛି । ଉଦୟ ମହିଲର ସର୍ବତ୍ର ସେ ବିଚରଣ କରି ଚାଲିଛନ୍ତି । ହୁଏତ ପ୍ରତିଟି ସ୍ଥାନରେ ତାଙ୍କର ପଦଚିହ୍ନ ଫୁଟି ଉଠୁଛି ।

ସତ୍ୟବ୍ରତ ଥରେ ଦୁଇଥର ପ୍ରବଳ ଚେଷ୍ଟା କରିଛନ୍ତି ତାଙ୍କ ସହିତ କଥାବାର୍ତ୍ତା କରିବା ପାଇଁ । କିନ୍ତୁ ବ୍ୟର୍ଥ ହୋଇଛନ୍ତି । କେବଳ ସାମାନ୍ୟ ହସ ଟିକିଏ ଛଡ଼ା ଉତ୍ତରରେ ଆଉ କିଛି ସେ ପାଇ ନାହାନ୍ତି ।

ମଦନରାୟଙ୍କ ଭାଉଜ ଦମୟନ୍ତୀ ଦେବୀ । ତାଙ୍କ ଘରକୁ ମଧ ସତ୍ୟବ୍ରତ ଦୁଇ ତିନିଥର ଯାଇଛନ୍ତି । ସବୁବେଳେ ତାଙ୍କୁ ସେ ଶାୟିତ ଅବସ୍ଥାରେ ଦେଖିଛନ୍ତି ।

ରାମୁ ଆସି ହଠାତ୍ ତାଙ୍କ ଭାବନାରେ ବାଧାଦେଲା ।

: କ'ଣ କିରେ ରାମୁ ?

: ଆଜ୍ଞା ଜଣେ ଲୋକ କିଏ ପୁରୀରୁ ଆସିଛନ୍ତି । ସେ ସାଆନ୍ତଙ୍କ ସଙ୍ଗରେ ଦେଖା କରିବାକୁ ଚାହାନ୍ତି ।

ସତ୍ୟବ୍ରତଙ୍କର ସମସ୍ତ ଜଡ଼ତା କଟିଗଲା । ସେ ଯେପରି ନୂତନ ଉତ୍ସାହରେ ନାଚି ଉଠିଲେ ।

: କେଉଁଠି ସେ ଅପେକ୍ଷା କରିଛନ୍ତି ?

: ମୁଁ ତାଙ୍କୁ ବୈଠକ ଖାନରେ ବସେଇ ଆସିଛି ।

: ତୁମେ ତାଙ୍କୁ ମଦନ ରାୟଙ୍କ ମୃତ୍ୟୁ ସମ୍ବନ୍ଧରେ କିଛି କହିଛ ?

: ନା ଆଜ୍ଞା, ଆପଣ ବାରଣ କରିଛନ୍ତି, ମୁଁ କହିବି କାହିଁକି ।

: ବେଶ୍ କରିଛ । ଆଚ୍ଛା, ଏ ଯେଉଁ ଲୋକଟି ଆସିଛି, ତୁମେ ତାକୁ ଆଗରୁ କେବେ ଦେଖିଥିଲ ?

: ମୋର ଠିକ୍ ମନେ ପଡୁନାହିଁ । ତେବେ ଆଗରୁ କେଉଁଠି ଥରେ ଅଧେ ଦେଖିଲା ପରି ମନେ ହେଉଛି ।

: ଲୋକଟିର ନାଁ କ'ଣ ?

: ପଚାରି ନାହିଁ ।

: ଆଚ୍ଛା, ମୁଁ ଯାଉଛି ଚାଲ । ସତ୍ୟବ୍ରତ ସଙ୍ଗେ ସଙ୍ଗେ ଉଠି ବାହାରିଲେ । ତଳ ବୈଠକଖାନାରେ ଲୋକଟି ଅପେକ୍ଷା କରି ବସିଥିଲା ।

ସତ୍ୟବ୍ରତ ପ୍ରବେଶ କରିବା ମାତ୍ରେ ଲୋକଟି ଉଠି ଠିଆହେଲା । ନମସ୍କାର ଜଣାଇ କହିଲା : ଦିବ୍ୟରଞ୍ଜନ ମହାପାତ୍ରଙ୍କର ମୁଁ ପ୍ରାଇଭେଟ ସେକ୍ରେଟାରୀ । ମୋ ନାଁ ଅଳକେଶ ପଟ୍ଟନାୟକ ।

: ବସନ୍ତୁ । ସତ୍ୟବ୍ରତ ଖଣ୍ଡିଏ ଚେଆର ଅଧିକାର କରି ବସିଲେ ।

: ଆପଣଙ୍କ ଚିଠି ଦିବ୍ୟରଞ୍ଜନବାବୁ ପାଇଛନ୍ତି । ସେ ଖୁବ ଅସୁସ୍ଥ । ଆସିବାକୁ ତାଙ୍କର ପ୍ରବଳ ଇଚ୍ଛା ଥିଲେ ମଧ୍ୟ ଆସି ପାରିଲେ ନାହିଁ । ସେଥିପାଇଁ ସେ ଅତ୍ୟନ୍ତ ଦୁଃଖିତ । ମୋତେ ଏହି ଚିଠି ଖଣ୍ଡିକ ଦେଇ ପଠାଇଛନ୍ତି ।

ସତ୍ୟବ୍ରତ ଚିଠିଟି ହାତକୁ ନେଇ ଲଣ୍ଠନର ଆଲୋକ ଆଉ ଟିକିଏ ତେଜି ଦେଲେ ।

ପ୍ରିୟ ମଦନ ରାୟ !

ମୁଁ ତମର ଚିଠି ରୋଗ ଶଯ୍ୟାରେ ଶୋଇ ପାଇଲି । ବୁଝି ପାରୁନାହିଁ ତମ ମନରେ କାହିଁକି ଏତେ ଉତ୍କଣ୍ଠା ଜାତ ହୋଇଛି । ମୋର ପ୍ରବଳ ଇଚ୍ଛା ଥିଲା ତମର ଏଇ ଦୁର୍ଦ୍ଦିନରେ ଯାଇ ଅନ୍ତତଃ ପଦେ ସାନ୍ତ୍ୱନା ବାଣୀ ଶୁଣାଇବାକୁ । କିନ୍ତୁ ମୋର ଦୁର୍ଭାଗ୍ୟ । ମୋର ସେହି ପୁରୁଣା ରୋଗଟା ଏବେ ଭୀଷଣ ଆକାରରେ ଦେଖା ଦେଇଛି । ଡାକ୍ତରମାନଙ୍କର ମତ ଅପରେଶନ କରିବାକୁ ହେବ । ମେଜର ଅପରେଶନ । ଏ ଯାତ୍ରାରୁ ରକ୍ଷା ପାଇଲାପରି ଲାଗୁନାହିଁ ।

ପତ୍ରବାହକ ମୋର ଅତ୍ୟନ୍ତ ବିଶ୍ୱାସୀ ଲୋକ । ପିଲାଟି ସତ୍ ଓ ମହତ୍ । ତାକୁ ଅବିଶ୍ୱାସ କରିବାର କିଛି ନାହିଁ । ତା' ହାତରେ ନିର୍ବିକାର ଚିତ୍ତରେ ତୁମେ ପଠାଇ ପାର । ଯଦି ଖୁବ୍ ଅସହାୟ ମନେ କରୁଥାଅ, ତେବେ ଅଳକେଶକୁ କିଛିଦିନ ସେଠାରେ ଅଟକେଇ

ଦେଇପାର ।

ତମ ଚିଠିର ଶେଷ ପାରାଟିର ଉତ୍ତର ସ୍ୱରୂପ ଅଳକେଶଙ୍କୁ ମୁଁ ଉପଯୁକ୍ତ ବୋଲି ମନେ କରୁଛି । ଦେଖିବ । ମତେ ଲେଖି ଜଣାଇବ । ମୁଁ ସୁସ୍ଥ ଥିଲେ ନିଶ୍ଚୟ ଯାଇ ଥାଆନ୍ତି । ଚିଠିଦେବ ।

ତମର

ଦିବ୍ୟରଞ୍ଜନ

ସତ୍ୟବ୍ରତ ଚିଠିଟି ପଢ଼ିସାରି ଅଳକେଶ ମୁହଁକୁ ଚାହିଁଲେ । ସେ ସନ୍ଦିଗ୍ଧ ନୟନରେ ସତ୍ୟବ୍ରତଙ୍କ ମୁହଁକୁ ଅନାଇ ବସି ରହିଛି ।

: ଆପଣଙ୍କ ସନ୍ଦେହ ଯଥାର୍ଥ ଅଳକେଶବାବୁ ।

: କିନ୍ତୁ ମଦନ ରାୟଙ୍କ ଚିଠିଟା ଆପଣ ଯେ....

: ହଁ, ସେ ମୋତେ ତାଙ୍କର ସମସ୍ତ ଅଧିକାର ଦେଇ ଯାଇଛନ୍ତି । ଖାଲି ଚିଠି ଖୋଲିବା ନୁହେଁ, ଚିଠିର ଉତ୍ତର ଦେବା ଦାୟିତ୍ୱ ମଧ୍ୟ ମୋ ଉପରେ ।

ଅଳକେଶ ଲଣ୍ଠନର ମୃମାୟିତ ଶିଖା ଆଡ଼େ ଚାହିଁ ରହିଥିଲା ।

: ତା'ହେଲେ ଦିବ୍ୟରଞ୍ଜନ ମହାପାତ୍ର ମଦନ ରାୟଙ୍କର ଅନ୍ତରଙ୍ଗ ବନ୍ଧୁ ? ସତ୍ୟବ୍ରତ ପଚାରିଲେ ।

: ଆଶା କରୁଛି ମୋ ଅପେକ୍ଷା ଆପଣଙ୍କୁ ଅଧିକ ଜଣାଥିବ ।

ସତ୍ୟବ୍ରତ ହସିଲେ । ରାମୁକୁ ଡାକି କହିଲେ : ଭଦ୍ରଲୋକ ଆଜି ଆମର ଅତିଥି । ତାଙ୍କ ରହିବା ପାଇଁ ସମସ୍ତ ବନ୍ଦୋବସ୍ତ କରିଦେବ ।

: ଆପଣଙ୍କ ପରିଚୟଟା ଜାଣି ପାରିଲି ନାହିଁ ତ ? ଅଳକେଶ ପଚାରିଲା ।

: ନ ଜାଣିବାହିଁ ଭଲ । ଯେତେବେଳ ପର୍ଯ୍ୟନ୍ତ ଜାଣି ନଥିବେ, ସେତେବେଳେ ଯାଏ ନିଶ୍ଚିନ୍ତରେ ରହି ପାରିବେ । ତା' ପରଠାରୁ.....

ହଠାତ୍ ଗୁଣୁ ଗୁଣୁ କଣ୍ଠର ଧ୍ୱନି ଶୁଣି ଅଳକେଶ ଚଞ୍ଚଳ ହୋଇ ଉଠିଲା । ରତ୍ନମଞ୍ଜରୀ ଦେବୀ ବୈଠକଖାନା ଦୁଆରେ ଠିଆ ହୋଇ ଭିତରକୁ ଚାହିଁଲେ । ତା'ପରେ କ'ଣ ଗୋଟାଏ ସତ୍ୟବ୍ରତଙ୍କ ଉପରକୁ ଫିଙ୍ଗିଦେଇ, ସାମାନ୍ୟ ହସି ଗୁଣୁ ଗୁଣୁ ଗୀତ ଗାଇ ଘରୁ ବାହାରି ଚାଲିଗଲେ ।

ସତ୍ୟବ୍ରତଙ୍କ ଗୋଡ଼ ପାଖରେ ଯାଇ ଯେଉଁ ବସ୍ତୁଟି ପଡ଼ିଲା, ତାହା ଗୋଟିଏ ଗୋଲାପ ଫୁଲ । ସତ୍ୟବ୍ରତ ସେଇଟିକୁ ଗୋଟେଇ ନେଲେ । ରକ୍ତ ଗୋଲାପ । ସଦ୍ୟ ବୃନ୍ତଚ୍ୟୁତ ହୋଇଛି ।

ସତ୍ୟବ୍ରତ ଗୋଲାପକୁ ଚାହିଁଥିଲେ ।

ଅଳକେଶ ପରିସ୍ଥିତିଟାକୁ ଅନୁଭବ କରୁଥିଲା, ସାମାନ୍ୟ ବିସ୍ମୟଭାବ ଫୁଟିଥିଲା ତା' ଆଖି ଯୋଡ଼ିକରେ ।

: ମଦନ ରାୟ ଦିବ୍ୟରଞ୍ଜନ ବାବୁଙ୍କୁ ଲେଖିଥିବା ଚିଠିଟି ଆପଣ ପଢ଼ିଛନ୍ତି ?

: ନା ।

: ମଦନ ରାୟଙ୍କ ନିକଟକୁ ଦିବ୍ୟରଞ୍ଜନବାବୁ ଯେଉଁ ଚିଠି ଦେଇଛନ୍ତି, ସେ ସମ୍ବନ୍ଧରେ

ଆପଣମାନଙ୍କ ଭିତରେ କୌଣସି ଆଲୋଚନା ହୋଇଛି ?

: ନା, କିନ୍ତୁ ମଦନରାୟଙ୍କୁ ଚିଠିଟା ଦେଲେ ସେ ତାବୁଝି ପାରିବେ ।

ସତ୍ୟବ୍ରତ ହସିଲେ। କହିଲେ : ଦୁଃଖ ତ ସେଇଠି ଅଳକେଶବାବୁ ! ଏ ଚିଠିର ମର୍ମ ବୁଝିବା ପାଇଁ ମଦନ ରାୟ ଆଉ ନାହାନ୍ତି ।

: ମାନେ ? ଅଳକେଶ ଆଖିରେ ବିସ୍ମୟ ଫୁଟି ଉଠିଲା ।

: ଆପଣ ଏଠାରେ ଆସି ପହଞ୍ଚିବାର ପଚିଶ ତିରିଶ ଘଣ୍ଟା ପୂର୍ବରୁ ତାଙ୍କର ମୃତ୍ୟୁ ହୋଇ ଯାଇଛି ।

ଅଳକେଶ ମୁହଁରେ ଦୁଃଖର ଅଭିବ୍ୟକ୍ତି ଫୁଟି ଉଠିଲା ।

ସତ୍ୟବ୍ରତ କହିଲେ : କିନ୍ତୁ ଆପଣଙ୍କର କୌଣସି ଅସୁବିଧା ହେବ ନାହିଁ ଅଳକେଶବାବୁ । ଆପଣ ଆଜି ରାତିଟା ଅନ୍ତତଃ ଏଠାରେ କଟେଇ ଦିଅନ୍ତୁ । ଫେରିଯିବାର ତ ଆଉ ଉପାୟ ନାହିଁ। ତେବେ ଆପଣ ଆଣିଥିବା ଏହି ଚିଠିଟିର ଅର୍ଥ ସାମାନ୍ୟ ଭାବରେ ବୁଝି ପାରିଥିଲେ ଭଲ ହୋଇଥାନ୍ତା । ତଥାପି ମୁଁ ବୁଝିବାକୁ ଚେଷ୍ଟା କରିବି ।

ସତ୍ୟବ୍ରତ ହାତରେ ଧରିଥିବା ରକ୍ତଗୋଲାପଟି ଅଳକେଶର କୋଟ୍‌ରେ ଲଗାଇ ଦେଲେ । କହିଲେ : ସୁନ୍ଦର ପଦାର୍ଥକୁ ନଷ୍ଟ କରିବା ଉଚିତ ନୁହେଁ ।

: କିନ୍ତୁ-

ଅଳକେଶ କ'ଣ କହିବାକୁ ଯାଇ ଅଟକି ଗଲା ।

: କୁହନ୍ତୁ, ସତ୍ୟବ୍ରତ ଉତ୍ସାହିତ ହୋଇ କହିଲେ ।

: ଆଜି ରାତିରେ ଏଠାରୁ ଫେରିଯିବାର କ'ଣ କୌଣସି ଉପାୟ ନାହିଁ ?

: ଆପଣ କ'ଣ ଭୟ କରୁଛନ୍ତି ଅଳକେଶବାବୁ ? ଉଦୟ ମହଲରେ ଅନ୍ତତଃ ଭୂତ ଭୟରୁ ରକ୍ଷା କରିବା ପାଇଁ ମୁଁ ଆପଣଙ୍କୁ ପ୍ରତିଶ୍ରୁତି ଦେଇପାରେ ।

: ନା ନା ଭୟ ମୁଁ କରୁନାହିଁ ଯେ, ଏଠାରେ ମୋର କୌଣସି କାମ ନାହିଁ ଯେତେବେଳେ ଅଯଥା ବସିରହି ଲାଭ କ'ଣ ?

: ଗୋଟିଏ ରାତି ପାଇଁ ଲାଭ କ୍ଷତିର ହିସାବ କଷିଲେ ଚଳିବ ନାହିଁ ଅଳକେଶ ବାବୁ ! ଆଜି ରାତିରେ ଆପଣଙ୍କର ଉଦୟ ମହଲରେ ରହିବା ଛଡ଼ା ଗତ୍ୟନ୍ତର ନାହିଁ ।

ଅଳକେଶ ନୀରବରେ ବସି ରହିଲା । ତା' ମନରେ ଉଦୟ ମହଲର ପରିବେଶ କିପରି ରହସ୍ୟାବୃତ୍ତ ମନେ ହେଉଥିଲା । ସତ୍ୟବ୍ରତଙ୍କ କଥାବାର୍ତ୍ତାର ଢଙ୍ଗରୁ ଅଳକେଶ ତାଙ୍କ ଉପରେ ଆସ୍ଥା ସ୍ଥାପନ କରି ପାରୁ ନଥିଲା ।

: ଆପଣଙ୍କର ଏଠାରେ ଆଉ କୌଣସି କାମ ନଥିଲେ ମଧ, ଅନ୍ତତଃ ଆଜି ରାତିଟା ପାଇଁ ରହି ଯିବାକୁ ହେବ ।

: ହଁ ମୁଁ ତ ସେଇଆ ଦେଖୁଛି ।

: ଆଛା ଅଳକେଶ ବାବୁ ! ଦିବ୍ୟରଞ୍ଜନ ବାବୁଙ୍କୁ ମି. ମଦନ ରାୟ ଯେଉଁ ଚିଠିଟି ଲେଖିଥିଲେ, ଆପଣ ସେଇଟା ପଢ଼ି ନାହାନ୍ତି କିନ୍ତୁ ମଦନ ରାୟଙ୍କୁ ଦିବ୍ୟରଞ୍ଜନ ବାବୁ ଯେଉଁ ଚିଠିଟି ଲେଖିଛନ୍ତି; ଆପଣ ସେଇଟି ପଢ଼ିଛନ୍ତି ?

: ନା !

: ତା'ହେଲେ ପଢ଼ନ୍ତୁ । ସତ୍ୟବ୍ରତ ଚିଠିଟି ବଢ଼େଇ ଦେଲେ । ଅଳକେଶ ଚିଠିଟି

ସମାପ୍ତ କରି ସତ୍ୟବ୍ରତଙ୍କ ମୁହଁକୁ ଚାହିଁଲା ।

: ଏଥିରୁ କିଛି ବୁଝି ପାରୁଛନ୍ତି ?

: ନା ।

: ଦିବ୍ୟରଞ୍ଜନ ବାବୁ ମଦନ ରାୟଙ୍କୁ ଏହି ଚିଠିଟି ଦେବା ଛଡ଼ା ମୌଖିକ ଆଉ କିଛି କହିବାକୁ କହି ନଥିଲେ ?

: ହଁ ସେ କହିଥିଲେ, ମଦନ ରାୟ କୌଣସି ଦାମୀ ଜିନିଷ ମୋ ହାତରେ ପଠାଇ ପାରନ୍ତି। ମୁଁ ସେଇଟା ନିରାପଦରେ ପହଞ୍ଚାଇ ଦେବା ହେଲା ମୋର ଦାୟିତ୍ୱ।

: ଆଉ ଚିଠିର ସେହି ଶେଷ ପାରାଟି ? ସତ୍ୟବ୍ରତ ହସି ହସି ପଚାରିଲେ।

: ଆପଣ ବିଶ୍ୱାସ କରନ୍ତୁ, ମୁଁ କିଛି ବୁଝି ପାରୁନାହିଁ।

: କିନ୍ତୁ ଆପଣ ଜାଣି ନାହାନ୍ତି ଅଳକେଶବାବୁ, ମଦନ ରାୟଙ୍କୁ ହତ୍ୟା କରା ହୋଇଛି ।

: ହତ୍ୟା ? ଅଳକେଶ ଚେଆରରୁ ଉଠି ବସି ପଡ଼ିଲା ।

: ହଁ ହତ୍ୟା । ସେ ହତ୍ୟା କିନ୍ତୁ ଅତ୍ୟନ୍ତ ରହସ୍ୟଜନକ ଭାବରେ ହୋଇଛି । ହୁଏତ ଆପଣ ଯେଉଁ ଦାମୀ ଜିନିଷଟି ମଦନ ରାୟଙ୍କ ନିକଟରୁ ନେବାପାଇଁ ଆସିଥିଲେ, ହତ୍ୟାକାରୀ ଆପଣଙ୍କୁ ସେ ଦାୟିତ୍ୱରୁ ମୁକ୍ତ କରି ଦେଇ ଚାଲିଯାଇଛି ।

: ମୁଁ ଆପଣଙ୍କର ଇଙ୍ଗିତଟା ବୁଝି ପାରୁନାହିଁ।

: ମଣିଷ ସବୁ ବୁଝି କିଛି ନ ବୁଝିବାର ଛଳନା କଲେ ତାକୁ ବୁଝାଇ ହୁଏ ନାହିଁ।

: ମାନେ ?

: ମୋ ନାଁ ସତ୍ୟବ୍ରତ ମହାପାତ୍ର । ଆଶା କରୁଛି, ମୋ ନାଁରୁ ମୋର ପରିଚିତି ପାଇପାରିବେ । ଯଦିବା କେବେ ମୋ ନାଁ ଶୁଣି ନଥାନ୍ତି, ତେବେ ମନେ ରଖନ୍ତୁ ମୁଁ ଜଣେ କ୍ରିମିନଲୋଜିଷ୍ଟ । ମୋର ପେଶା ଗୁଇନ୍ଦା ଗିରି । ଆଉ ଆପଣଙ୍କ ପାଇଁ ସବୁଠାରୁ ଦୁଃଖର କଥା ହେଉଛି, ମୁଁ ମଦନ ରାୟଙ୍କ ମୃତ୍ୟୁ ରହସ୍ୟ ଉଦ୍‌ଘାଟନ କରିବା ପାଇଁ ଉଦୟ ମହଲରେ ନିଯୁକ୍ତି ପାଇଛି ।

: ସେଥିରେ ମୋର କ'ଣ ଅଛି ?

ସତ୍ୟବ୍ରତ ହସିଲେ । ଚେଆର ଉପରେ ସଜାଡ଼ି ହୋଇ ବସି କହିଲେ : ଆପଣଙ୍କୁ ଟିକିଏ ଅସୁବିଧା ହେବ ଏଇ ଦୃଷ୍ଟିରୁ, ଆପଣ କିଛିଦିନ ପାଇଁ ଏଠାରେ ନଜରବନ୍ଦୀରେ ରହିଯିବେ । ଖୋଲାଖୋଲି ଭାବରେ କହିବାକୁ ଗଲେ, ଆପଣ ସତ୍ୟକଥା ପ୍ରକାଶ ନ କରିବା ଯାଏ ଏଠାରୁ ମୁକ୍ତି ପାଇ ପାରିବେ ନାହିଁ।

: ମୋତେ ଏଠାରେ ନଜରବନ୍ଦୀ ରଖିବାର ଅଧିକାର ଆପଣଙ୍କର ନାହିଁ ମି.ମହାପାତ୍ର । ମୁଁ ଯଦି କୁହେ ଆପଣ ଅନଧିକାର ଚର୍ଚ୍ଚା କରୁଛନ୍ତି ?

: ଆପଣ କହି ପାରନ୍ତି । ଆଚ୍ଛା, ଆପାତତଃ ଆପଣ ବିଶ୍ରାମ କରନ୍ତୁ । ମୁଁ ରାମୁକୁ ପଠାଇ ଦେଉଛି, ସେ ଆପଣଙ୍କ ପାଇଁ ରହିବାର ବନ୍ଦୋବସ୍ତ ସବୁ କରିଦେବ ।

: ସତ୍ୟବ୍ରତ ଉଠି ଠିଆହେଲେ ଏବଂ ସେଠାରୁ ଚାଲିଯିବା ପାଇଁ ପାଦ ଉଠାଇଲେ ।

: କିନ୍ତୁ ମି. ମହାପାତ୍ର.......

ଅଳକେଶ କ'ଣ କହିବାକୁ ଚାହୁଁଥିଲା । ସତ୍ୟବ୍ରତ ବାଧା ଦେଇ କହିଲେ : କାଲି

ସକାଳେ ପୁଣି ଆପଣଙ୍କ ସହିତ ଦେଖା ହେବା ରାତିକ ଭିତରେ ସତ୍ୟକଥା କହିବା ପାଇଁ ଆପଣ ପ୍ରସ୍ତୁତ ହୋଇ ଯାଆନ୍ତୁ ।

ସତ୍ୟବ୍ରତ ଧୀର ପଦକ୍ଷେପରେ ଉଦୟ ମହଲର ବାହାରକୁ ବାହାରି ଗଲେ । ସାମନାରେ ଝାଟିମାଟି ବୋଲା ଚାଳ ଘରର ସେହି ଛୋଟ ହୋଟେଲଟିରେ ଲଣ୍ଠନ ଲାଗି ଯାଇଥିଲା । କେହି କେହି ପାଇଟି ଶେଷ କରି ଆସି ଚା' ଟୋପେ ପିଇବାପାଇଁ ଭଙ୍ଗା ବେଞ୍ଚଟି ଉପରେ ଗୋଡ଼ଟେକି ବସି ଯାଇଥିଲେ ।

ସତ୍ୟବ୍ରତ ଯାଇ ସେଇମାନଙ୍କ ମେଳରେ ବସି ପଡ଼ିଲେ ।

ହୋଟେଲ ମାଲିକ ଦିବାକର ପଣ୍ଡା ସତ୍ୟବ୍ରତଙ୍କୁ ଦେଖିବା ମାତ୍ରେ ଉଠି ଠିଆହୋଇ ପଡ଼ିଲା ଏବଂ ସଙ୍ଗେ ସଙ୍ଗେ ସତ୍ୟବ୍ରତଙ୍କ ପାଖରେ ପହଞ୍ଚି କହିଲା : ଆପଣ ଏଆଡ଼େ ଆସନ୍ତୁ ଆଜ୍ଞା । ସେଠିଂ ସେମାନଙ୍କ ସଙ୍ଗରେ......

ସତ୍ୟବ୍ରତ ସାମାନ୍ୟ ହସିଲେ। କହିଲେ : ଏକା କଥା, ମସ୍ତରାମ କୁଆଡ଼େ ଗଲା ?

: ସେ ପାଣି ଆଣିବାକୁ ଯାଇଛି । ଆପଣ ତା'କଥା ମୋଟେ ବିଶ୍ୱାସ କରିବେ ନାହିଁ ସେ ଗୋଟାଏ ଅର୍ଦ୍ଧପାଗଳା କେତେବେଳେ ସେ କାହାକୁ କ'ଣ ଯେ କୁହେ......

ମସ୍ତରାମ ଯାହା କୁହେ ଏକଦମ ସତକଥା କୁହେ ଆଜ୍ଞା ! ସେଆଡୁ ପାଣି ମାଠିଆଟା ମୁଣ୍ଡେଇ ମସ୍ତରାମ ଆସି ଠିଆ ହୋଇଗଲା ।

: ହଁ ହଁ, ମୁଁ ସେକଥା ଜାଣେ । ତତେ ଏମାନେ କେହି ଦି'ଆଖିରେ ଦେଖି ପାରନ୍ତି ନାହିଁ ଆଚ୍ଛା, ତୁ ଆସିବୁଟି ମୋ ସଙ୍ଗରେ । ତୋ ଠାରେ ମୋର ଟିକିଏ କାମ ଅଛି ।

ମସ୍ତରାମ ପାଣି ମାଠିଆ କାନ୍ଧରୁ ଉହ୍ଲେଇ ତଳେ ଥୋଇଲା ।

: ଆଜ୍ଞା ଟିକିଏ ଚା' ଖାଆନ୍ତୁ । ହୋଟେଲ ମାଲିକ ନିବେଦନ କଲା ।

ସତ୍ୟବ୍ରତ ମନା କଲେ । ମସ୍ତରାମକୁ ସାଙ୍ଗରେ ଧରି ଉଦୟ ମହଲ ଆଡ଼କୁ ସେ ବାହାରି ଗଲେ ।

: ଆଚ୍ଛା ମସ୍ତରାମ !

: ଆଜ୍ଞା !

: ତୁ ଏଠାରେ କେତେଦିନ ହେବ ବସବାସ କରୁଛୁ ?

: ଅନେକ ଦିନରୁ ଆଜ୍ଞା ।

: କ'ଣ ଏହି ହୋଟେଲ ହେବା ଆଗରୁ ?

: ହଁ ଆଜ୍ଞା । ହୋଟେଲ ହେବାର ଅନେକ ଆଗରୁ ମୁଁ ଏଠାରେ ରହୁଛି ।

: କୋଉଠି ରହୁଥିଲୁ ?

: ଷ୍ଟେସନରେ ।

: ଓଃ ତା'ହେଲେ ଏଠାରେ ନୁହେଁ ।

: ନାଇଁ ଆଜ୍ଞା, ଏଠାରେ ଆଉ ରହିଆଆନ୍ତି କେଉଁଠି ?

: କାହିଁକି ଏଇ ଉଦୟ ମହଲରେ ?

: ଛି, ମସ୍ତରାମ କିପରି ଏକ ଅଦ୍ଭୁତ ହସ ହସିଉଠିଲା ।

: କାହିଁକି ? ଏଇଟା କ'ଣ ରହିବା ଜାଗା ନୁହେଁ ? ସତ୍ୟବ୍ରତ ପଚାରିଲେ ।

ଆଜ୍ଞା, ସେଇଠି ରୋଗୀ ରୁହନ୍ତି, ରୋଗୀ । ଭଲ ମଣିଷ କେହି ରହନ୍ତି ତା'ଭିତରେ ଆପଣ ଦେଖୁଛନ୍ତି ?

: ତୁ କେବେ ଉଦୟ ମହଲ ଭିତରକୁ ଯାଇଛୁ ?

: ଥରେ ଯାଇଥିଲି ଆଜ୍ଞା, ଭୟରେ ପଳେଇ ଆସିଲି । ଆଉ ଥରେ ଯାଇଥିଲେ ଜୀବନ ଧରି ଫେରି ନ ଥାନ୍ତି ।

: କାହିଁକି ?

: ଆଜ୍ଞା, ଯୁଆଡ଼େ ଗଲି, ସିଆଡ଼େ ଦେଖିଲି ଗୋଟାଗୋଟା ରୋଗୀ ଗଡୁଛନ୍ତି । କିଏ ହସୁଛି, କିଏ କାନ୍ଦୁଛି । ଆଉଜଣେ ତ ମତେ କାମୁଡ଼ି ଗୋଡ଼େଇଲା । ଏଡ଼େ ଏଡ଼େ ଢିମା ଢିମା ଆଖି କରି ମୋ ପଛେ ପଛେ ଦଉଡ଼ିଲା । ମୁଁ ଜୀବନ ବିକଳରେ ଇମିତି ଗୋଟାଏ ଘରଭିତରେ ପଶିଗଲିଯେ, ନା ଆଜ୍ଞା, ଆପଣଙ୍କ ଆଗରେ କହିବି ନାହିଁ ।

: ଆରେ କହ, ଭୟ କରୁଛୁ ?

: ଆପଣ ଜାଣି ରଖନ୍ତୁ ଆଜ୍ଞା, ମସ୍ତରାମ ତା' ଜୀବନରେ ଆଜି ପର୍ଯ୍ୟନ୍ତ କାହାକୁ ଭୟ କରି ଶିଖିନାହିଁ ।

: ତେବେ ?

: ଲାଜ କଥାଟା ଆଜ୍ଞା । ଆପଣଙ୍କ ଆଗରେ କହିବି କେମିତି ?

: ଆରେ କହ ।

: ଗୋଟାଏ ମାଇପିଲା ଆଜ୍ଞା, ଛି ଛି । ତା' ଦେହରେ କୋଉଠି ହେଲେ କନା ଖଣ୍ଡେ ନ ଥିଲା । ଗୋଟାଏ ଗଦି ବିଛଣାରେ ଗଡୁଥିଲା ।

ସତ୍ୟବ୍ରତ ଗମ୍ଭୀର ହୋଇଗଲେ । କହିଲେ : କେତେଦିନ ତଳର କଥା ଏ ?

: ସିଏ ବି ଅନେକ ଦିନ ତଳର କଥା । ଏଇ ହୋଟେଲ ସେତେବେଳେକୁ ଆରମ୍ଭ ହେଉଥାଏ । ମୁଁ ଉଦୟ ମହଲକୁ ଯାଇଥିଲି ଚାକିରି ପାଇଁ ।

: ଆଉ କ'ଣ ଦେଖିଲୁ ?

: ନାଇଁ ଆଜ୍ଞା ! ସେ ଦିନ ଲୁଚି ଲୁଚି ପଳାଇ ଆସିଲାବେଳକୁ ଦେଖିଲି ଗୋଟାଏ ବନ୍ଧୁକର ନଳୀ ମୋ ଆଡ଼କୁ ମୁହଁକରି ଅନେଇ ରହିଛି । ଅନ୍ଧାର ଭିତରେ ବନ୍ଧୁକର ମାଲିକ ଠିଆ ହୋଇଛନ୍ତି ।

: ତା'ପରେ ?

: ମୁଁ ଅଟକିଗଲି । ଗୋଟାଏ ଗମ୍ଭୀର ସ୍ୱର ଶୁଣିଲି ଆଜିକ ମୁଁ ତତେ କ୍ଷମା କରିଦେଲି । ଆଉ ଯଦି କେବେ ତୁ ଉଦୟ ମହଲର ମାଟି ମାଡ଼ିଛୁ, ତେବେ ଜୀବନ ନେଇ ଆଉ ଫେରି ଯାଇ ପାରିବୁ ନାହିଁ ।

: ହଁ, ତା'ହେଲେ ସେଇଦିନୁ ଆଉ ତୁ ଉଦୟ ମହଲ ଭିତରେ ପ୍ରବେଶ କରିନାହୁଁ ।

: ନାଇଁ ଆଜ୍ଞା ।

: ଆଜି ? ଆଜି ମୋ ସହିତ ଭିତରକୁ ଯିବୁ ?

: ନା ନା, ମୋତେ ମାଫ୍ କରନ୍ତୁ ଆଜ୍ଞା । ସବୁ କହିବେ, ଉଦୟ ମହଲକୁ ଯିବା କଥା ମୋତେ କହିବେ ନାହିଁ ।

: ମୁଁ ତ ସାଙ୍ଗରେ ଅଛି, ତୁ ଭୟ କରୁଚୁ କାହିଁକି ?

: ନା ହଜୁର, ଆପଣ ସେ ବନ୍ଧୁକ ନଳୀ ଦେଖି ନାହାନ୍ତି । ତା'ହେଲେ ମୋତେ ସଙ୍ଗରେ ଡାକନ୍ତେ ନାହିଁ ।

: ଆଚ୍ଛା ମନ୍ତରାମ, ତୁ କାଲି ରାତିରେ ଘୋଡ଼ା ଟାପୁର ଶବ୍ଦ ଏଠାରେ ଶୁଣିଥିଲୁ, ନା ?

: ଖାଲି କାଲି କାହିଁକି ? ମଝିରେ ମଝିରେ ମୁଁ ଶୁଣେ ।

: ଘୋଡ଼ାରେ ଚଢ଼ି କିଏ ଆସେ ?

: ଭୂତ ଆସେ ଆଜ୍ଞା ! ଘୋଡ଼ା ଟାପୁ ଶୁଣିଲେ ମତେ କମ୍ପ ଆସେ । ମୁଁ ଆଖି କାନ ବୁଜି ଶୋଇପଡ଼େ ।

: ଘୋଡ଼ାରେ ଚଢ଼ି ଯେ ଭୂତ ଆସେ, ଏ କଥା ତତେ କିଏ କହିଲା ?

: ମୁଁ ଶୁଣିଛି ଆଜ୍ଞା । ଏ ଯେଉଁ ଉଦୟ ମହଲ କୋଠା ଆପଣ ଦେଖୁଛନ୍ତି, ଏଇଟା ଥିଲା କୋଉ ଉଦୟ ନଗରର ଜଣେ ରଜାଙ୍କର। ସେ ମଝିରେ ମଝିରେ ଆସି ଏଇ କୋଠାରେ ରହୁଥିଲେ ଏବଂ ଜଙ୍ଗଲରେ ଶିକାର କରୁଥିଲେ। ଥରେ ଦେଖାଗଲା ଯେ ରାଜାଙ୍କୁ ଚମ ଦଉଡ଼ିରେ ବାନ୍ଧି କୋଠା ଭିତରେ କିଏ ଟଙ୍ଗେଇ ରଖି ଦେଇଛି । ରଜା ଜିଭ କାମୁଡ଼ି ପକେଇ ମରି ଯାଇଛନ୍ତି। ସେଇଦିନୁ ସେ ଏହି ଅଞ୍ଚଳରେ ଭୂତ ହେଇ ବୁଲୁଛନ୍ତି । ତାଙ୍କୁ ଯିଏ ହତ୍ୟା କରିଥିଲା, ରାତି ହେଲେ ଘୋଡ଼ାରେ ଚଢ଼ି ସେ ସେଇ ଲୋକଟାକୁ ଖୋଜି ବାହାରନ୍ତି ।

: ହଁ, ବୁଝିଲି । ତା'ହେଲେ ତୁ କାଲି ରାତିରେ ଘୋଡ଼ାଟାପୁର ଶବ୍ଦ ଶୁଣିଥିଲୁ ?

: ହଁ ।

: ଆଉ କ'ଣ ଶୁଣିଥିଲୁ ?

: ଗୋଟାଏ ମାଇପିଲା କିଏ ଖୁବ୍ ଯୋରରେ ଚିତ୍କାର କରି ଉଠିଲା ।

: ଆଉ କୌଣସି ଗୁଳି ଚାଳିବାର ଶବ୍ଦ ?

: ନା ।

: ସେତେବେଳେ କେତେ ରାତି ହେବ ?

: ସେ କଥା ତ କହି ପାରିବି ନାହିଁ । ତେବେ ପୋଲ ଉପରେ ଟ୍ରେନ୍ ଯାଉଥିଲା ।

: ହୁଁ, ଆଚ୍ଛା । ତୁ ତା'ହେଲେ ଯା' ମନ୍ତରାମ । ଉଦୟ ମହଲ ଭିତରକୁ ଯିବୁ ନାହିଁ କହୁଚୁ ଯେତେବେଳେ, ତତେ ଆଉ ମୁଁ ବାଧ କରିବି ନାହିଁ ।

: କ'ଣ ?

: ଘୋଡ଼ା ଟାପୁର ଶବ୍ଦ । ସତକୁ ସତ ଖୁବ୍ ଦୂରରୁ ଘୋଡ଼ା ଟାପୁର ଶବ୍ଦ ଭାସି ଆସୁଥିଲା । ସତ୍ୟବ୍ରତ ସେଇଠି ଠିଆ ହୋଇ ଅପେକ୍ଷା କଲେ ।

କିଛି ସମୟ ପରେ ଦେଖିଲେ ଘୋଡ଼ା ଗାଡ଼ିଟାଏ ଉଦୟ ମହଲ ଆଡ଼କୁ ମାଡ଼ି ଆସୁଚି। ହଁ, ତାଙ୍କ ଅନୁମାନ ସତ୍ୟ ।

ସତ୍ୟବ୍ରତଙ୍କ ମନରେ ଆଶାର ଆଲୋକ ଜଳି ଉଠିଲା । ମଦନ ରାୟଙ୍କ ସହିତ ସାକ୍ଷାତ କରିବାକୁ ହୁଏତ ଆଉ ଜଣେ କେହି ଆସୁଛି ।

: ଆରେ ମି. ସାହାଣୀ ଯେ ! ମୁଁ ଭାବିଥିଲି.....

: ନା ନା, ଆପଣଙ୍କର ସନ୍ଦେହର ପାତ୍ର ମୁଁ ନୁହେଁ, ତେବେ ଗୋଟାଏ ଶୁଭ ସମ୍ବାଦ ମୁଁ ଆପଣଙ୍କ ପାଇଁ ବହନ କରି ଆଣିଛି । ପୋଲିସ୍ ଇନିସ୍‌ପେକ୍ଟର ନଟରାଜ ସାହାଣୀ ଘୋଡ଼ା ଗାଡ଼ିରୁ ଓହ୍ଲାଉ ଓହ୍ଲାଉ କହିଲେ ।

: ଯଥା ?

: ଅପେକ୍ଷା କରନ୍ତୁ । ଏତେ ସହଜରେ ମୁଁ ଗୋଟିଏ ଦାମୀ ତଥ୍ୟ ଆପଣଙ୍କ ଆଗରେ ପ୍ରକାଶ କରି ଦେବି ?

: ତା'ହେଲେ ଘୁଷ୍ ନିଅନ୍ତୁ । ସତ୍ୟବ୍ରତ ମହାପାତ୍ର ପକେଟରୁ ଡନ୍‌ହିଲ୍ ସିଗାରେଟ୍ ପ୍ୟାକେଟଟି ବାହାର କରି ଇନିସ୍ପେକ୍ଟରଙ୍କ ଆଡ଼କୁ ବଢ଼ାଇ ଧରିଲେ ।

: ଧନ୍ୟବାଦ । ଆସନ୍ତୁ ଟିକିଏ ଷ୍ଟେସନ ଆଡୁ ବୁଲି ଆସିବା । ପ୍ରକୃତରେ ମୁଁ ଗୋଟିଏ ଦାମୀ ତଥ୍ୟର ସମ୍ବାଦ ପାଇଛି ।

ସତ୍ୟବ୍ରତ ଆଉ କଥା ନ କହି ଯାଇ ଘୋଡ଼ା ଗାଡ଼ି ଉପରେ ବସିଲେ ।

ପୁଣି ଘୋଡ଼ା ଟାପୁର ଶବ୍ଦ ମୁଖର ହୋଇ ଉଠିଲା ।

: ଏଇ ଘୋଡ଼ା ଗାଡ଼ିରେ ଚଢ଼ି କାଲି ରାତିରେ ମଦନରାୟଙ୍କ ହତ୍ୟାକାରୀ ଉଦୟ ମହଲରେ ପ୍ରବେଶ କରିଥିଲା । ଇନିସ୍ପେକ୍ଟର ବିନା ଭୂମିକାରେ କଥା ଆରମ୍ଭ କଲେ ।

: ତା'ପରେ ? ସତ୍ୟବ୍ରତ ନିର୍ବିକାର କଣ୍ଠରେ ପ୍ରଶ୍ନ କଲେ ।

: ମଦନ ରାୟଙ୍କୁ ହତ୍ୟା କରିବା ପରେ ପୁଣି ସେ ଏଇ ଘୋଡ଼ା ଗାଡ଼ିରେ ଚଢ଼ି ଷ୍ଟେସନକୁ ଫେରି ଯାଇଥିଲା ।

: ଆଉ ତା'ର ଏକମାତ୍ର ସାକ୍ଷୀ ଏଇ ବୁଢ଼ା କୋଚମ୍ୟାନ । ସତ୍ୟବ୍ରତ ସହଜ ଓ ସରଳ କଣ୍ଠରେ କହିଲେ ।

: ହଁ । ବହୁ ଅନୁସନ୍ଧାନ ପରେ ମୁଁ ଏହି ତଥ୍ୟଟି ଆବିଷ୍କାର କରିଛି । ଅମିର୍‌ଆଲି ମଧ୍ୟ ସେ କଥା ସ୍ୱୀକାର କରିଛି । କାଲି ରାତି ପ୍ରାୟ ଦୁଇଟା ସମୟରେ ସେ ଗୋଟିଏ ଲୋକକୁ ଘୋଡ଼ା ଗାଡ଼ିରେ ବସାଇ ଉଦୟ ମହଲକୁ ଆଣିଥିଲା ଏବଂ ଉଦୟ ମହଲରେ ମାତ୍ର ପାଞ୍ଚ ଦଶ ମିନିଟ୍ ରହିବା ପରେ ଲୋକଟି ପୁଣି ଫେରି ଯାଇଥିଲା ।

: ଲୋକଟି କ'ଣ ଅମିର ଆଲିର ପରିଚିତ ?

: ଠିକ୍ ପରିଚିତ ନୁହେଁ, ତେବେ ସେ ଲୋକଟି ମଝିରେ ମଝିରେ ରାତି ଅଧରେ ଆସି ଅମିର ଆଲିକୁ ବିରକ୍ତ କରିଥାଏ ।

: ମାନେ ? ଲୋକଟା ତା'ହେଲେ ଉଦୟ ମହଲକୁ ପ୍ରାୟ ଯିବା ଆସିବା କରୁଥିଲା ?

: ଅମିର ଆଲି ସେଇଆ କହୁଚି । ଏଥରକୁ ଲଗେଇ ବର୍ଷକ ଭିତରେ ଲୋକଟି ପ୍ରାୟ ଦଶଥର ଉଦୟ ମହଲକୁ ଯାଇଛି । ସବୁଥର ଯାଇ ଲୋକଟା ଦୁଇ ତିନିଘଣ୍ଟା ପରେ ଫେରେ । ଏଥର କିନ୍ତୁ ସଙ୍ଗେ ସଙ୍ଗେ ଫେରି ଯାଇଚି ।

: ତା'ହେଲେ ସେ ଲୋକଟା କ'ଣ ପ୍ରତିଥର ରାତି ଅଧରେ ଆସେ ?

: ହଁ ।

: ଲୋକଟାର ବର୍ଣ୍ଣନା ଅନୁସାରେ ଆପଣଙ୍କର ଏ ଅଞ୍ଚଳରେ କୌଣସି ଲୋକକୁ ସନ୍ଦେହ ହେଉଛି ?

: ନା, ଅମିର ଆଲି ଲୋକଟାର ଯେପରି ବର୍ଣ୍ଣନା ଦେଉଛି, ସେଥିରୁ ସେ ଯେ

କୌଣସି ଜୀବନ୍ତ ବ୍ୟକ୍ତି ନୁହେଁ, ତାହାହିଁ ଅନୁମାନ କରିବାକୁ ହେଉଛି । ଅମିର ଆଲିର ପୁରା ଧାରଣା ଯେ ସେଇଟା ଗୋଟାଏ ସଇତାନ । କୌଣସି ଜୀବନ୍ତ ବ୍ୟକ୍ତି ନୁହେଁ ।

: ମାନେ ? ସେ ପୁଣି କିପରି କଥା ? ସତ୍ୟବ୍ରତଙ୍କ ସ୍ୱର ପଞ୍ଚମକୁ ଉଠିଗଲା ।

ଅମିର ଆଲିର ଧାରଣା ଯେ ସେ ଗୋଟିଏ ପ୍ରେତକୁ ତା' ଗାଡ଼ିରେ ନେଇ ଉଦୟ ମହଲରେ ଛାଡ଼େ ଏବଂ ପୁଣି ଗାଡ଼ିରେ ବସାଇ ଷ୍ଟେସନକୁ ଆଣେ ।

ତା' ହେଲେ ତ କାହାଣୀଟି ବେଶ୍ ଚମକପ୍ରଦ । ମୁଁ ଅମିର ଆଲି ମୁହଁରୁ ଘଟଣାଟା ଶୁଣିବି । ଆପଣ ଷ୍ଟେସନକୁ ଚାଲନ୍ତୁ । ଷ୍ଟେସନରେ ପହଞ୍ଚିବାକୁ ଆଉ କେତେ ସମୟ ଲାଗିବ ?

: ପ୍ରାୟ ଆସି ପହଞ୍ଚି ଗଲେଣି ।

ଅମିର ଆଲି କହିଲା : ଆପଣଙ୍କୁ ମିଛ ମତେ ସତ ଆଜ୍ଞା । ପ୍ରଥମ ଦିନ ମୁଁ ଅବାକ୍ ହୋଇ ଯାଇଥିଲି । ରାତି ସେତେବେଳେକୁ ଅଧରୁ ବେଶି ହେବ । ମୁଁ ଘରେ ଶୋଇଛି । ବେଶ ଗାଢ଼ ନିଦ୍ରା । ହଠାତ୍ ଯେପରି ନିଦ ଭାଙ୍ଗିଗଲା । ମୋର ମନେହେଲା ମୋ ଦୁଆର ମୁହଁରେ ଘୋଡ଼ା ଗାଡ଼ିଟା ଆସି ଯୋଚା ହୋଇ ଠିଆ ହୋଇଛି ଆଉ ଘୋଡ଼ାଟା ରହି ରହି ଗୋଡ଼ କଚାଡୁଛି ।

ଚାଉଁକିନା ନିଦ ଭାଙ୍ଗିଗଲା । କାରଣ ମୁଁ ସେଦିନ ରାତିରେ ନଅଟା ହେବ, ଶେଷ ସବାର ଷ୍ଟେସନରେ ଛାଡ଼ି, ଘୋଡ଼ାକୁ ଖୁଆଇ ପିଆଇ ଘରେ ବନ୍ଦ କରି ଆସିଥିଲି ।

ବାହାରକୁ ଆସି ଦେଖିଲି ସତକୁ ସତ ଘୋଡ଼ାଗାଡ଼ିଟା ଯୋଚା ହୋଇ ଠିଆ ହୋଇଛି । ମୁଁ ତ ଅବାକ୍ ହୋଇଗଲି ଆଜ୍ଞା । ଗାଡ଼ିର କବାଟ ଇତ୍ୟାଦି ସବୁ ବନ୍ଦ ହୋଇଥିଲା । ରାଗ ତ ମୋର ପଞ୍ଚମକୁ ଉଠିଗଲା । ମୋର ମନେ ହେଲା ଏଠାକାର କୌଣସି ଦୁଷ୍ଟଲୋକ ଏପରି କରିଛି । ମୁଁ ଗାଡ଼ିର ଦରଜା ଖୋଲିବାକୁ ଯାଉଛି, ଭିତରୁ ଶବ୍ଦ ହେଲା-ସାବଧାନ ଅମିର ଆଲି । ଗାଡ଼ିର ଦରଜା ଖୋଲିବୁ ନାହିଁ । ଖୋଲିଲେ ମୋତେ ଦେଖିବା ମାତ୍ରେ ତୋର ମୃତ୍ୟୁ ହେବ ।

ଚୁପ୍‌ଚାପ୍ ମୁଁ ଠିଆହୋଇ ରହିଲି ।

ଗାଡ଼ି ଭିତରୁ ପୁଣି ଶୁଣାଗଲା : ଚାଲେ ଅମିର ଆଲି, ମୋତେ ଉଦୟ ମହଲରେ ପହଞ୍ଚାଇ ଦେଇ ଆସିବୁ ।

: ଏତେ ରାତିରେ ଆଜ୍ଞା ?

: ତୋ' ପ୍ରାପ୍ୟ ତୁ ପାଇବୁ ଅମିର-ଆଲି । ତୋତେ ଅଧିକା ଦିଆଯିବ ।

ତଥାପି ମୋର ସାହସ ହେଲା ନାହିଁ । ମୁଁ ଜଡ଼ ସଡ଼ ହୋଇ ଠିଆ ହୋଇ ରହିଲି ।

ଗାଡ଼ି ଭିତରୁ ପୁଣି ଶୁଣାଗଲା : ତୁ ଭୟ କରନା ଅମିର୍ ଆଲି । ତୋର କୌଣସି ଅନିଷ୍ଟ ହେବନାହିଁ । ତୁ ଗାଡ଼ିକୁ ଉଠ୍ ।

ମୋ ହୃତ୍‌ପିଣ୍ଡରେ ସେତେବେଳକୁ ପ୍ରାଣ ନ ଥିଲା । ମୁଁ ବୁଝି ପାରିଥିଲି ଯେ, କୌଣସି ସଇତାନ ଆସି ମୋ ଗାଡ଼ିରେ ସବାର ହୋଇଛି । ଘୋଡ଼ା ଶାଳରୁ ଘୋଡ଼ା ବାହାର କରି ଗାଡ଼ିରେ ଯୋଚି ଗାଡ଼ି ସଜ କରି ଥୋଇଛି । ମୁଁ ଯଦି ଗାଡ଼ିରେ ନ ଉଠେ ତେବେ ସେ ହୁଏତ ଗାଡ଼ିଟା ନେଇ ଚାଲିଯିବ । ମୁଁ ଭୟରେ ଥରି ଥରି ଗାଡ଼ିରେ ଉଠିଛି କି ନାହିଁ, ଘୋଡ଼ାଟା ଆପଣାଛାଏଁ ଚାଲିବାକୁ ଆରମ୍ଭ କରିଦେଲା ।

ନିର୍ଜନ ରାତିରେ ମୁଁ ଯାଇ ଉଦୟ ମହଲ ଦୁଆରେ ଗାଡ଼ି ଭିଡ଼େଇଲି ।

ଭିତରୁ ପୁଣି ଶୁଣାଗଲା : ତୁ ଏଇଠି ଠିଆ ହୋଇ ରହ ଅମିର ଆଲି । ମୁଁ ଉଦୟ ମହଲରୁ ନ ଫେରିବା ଯାଏ ଅପେକ୍ଷା କରିଥିବୁ' କିନ୍ତୁ ସାବଧାନ ! ପଛକୁ ଚାହିଁବୁ ନାହିଁ କିମ୍ବା ମୋତେ ଦେଖିବାର ଚେଷ୍ଟା କରିବୁ ନାହିଁ । ତା'ହେଲେ ତୋର ମୃତ୍ୟୁ ହେବ ।

ଭୟରେ ମୋ ଆଖି ବୁଜିହୋଇଗଲା । ସଇତାନଟା ଗାଡ଼ିରୁ ଓହ୍ଲାଇ ଗଲା । ମୁଁ ଭୟରେ ଗୋଟିପଣ କମ୍ପୁଥିଲି ।

ଅମିର ଆଲି ନୀରବ ହେଲା ।

: ପ୍ରାୟ ଦୁଇ ତିନିଘଣ୍ଟା ପରେ । ମୋ ଆଖିରେ ଟିକିଏ ନିଦ ଲାଗି ଆସିଥିଲା । ମୁଁ ପୁଣି ଶୁଣିଲି ସେଇ ଗଳାର ଆବାଜ, ଚାଲେ ଅମିର ଆଲି । ମୋର କାମ ଶେଷ ହୋଇଛି ।

ମୋ ନିଦ ଭାଙ୍ଗିବା ଆଗରୁ ଘୋଡ଼ାଟା ନିଜ ଇଚ୍ଛାରେ ଚାଲିବାକୁ ଆରମ୍ଭ କରି ଦେଇଥିଲ ॥ ଗାଡ଼ି ଷ୍ଟେସନରେ ପହଞ୍ଚିଲା । ମୁଁ ଗାଡ଼ି ଠିଆ କରେଇ ଅନେକ ବେଳଯାଏ ଅପେକ୍ଷା କଲି । କିନ୍ତୁ କାହାରି ପାଟିତୁଣ୍ଡ ଗାଡ଼ି ଭିତରୁ ଶୁଣାଗଲା ନାହିଁ ।

ସେଇଠୁ ମୁଁ ଡରି ଡରି ତଳକୁ ଓହ୍ଲାଇଲି । ଦେଖିଲି ଗାଡ଼ିର ଦୁଆର ଖୋଲା । ଭିତର ଶୂନ୍ୟ । ପକେଟରୁ ଡିଆସିଲି ବାହାର କରି ଜଳାଇ ଦେଖିଲି । ଦଶଟା ଟଙ୍କା ସିଟ୍ ଉପରେ ଥୁଆ ହୋଇଛି ।

ଅମିର ଆଲି ପୁଣି ନୀରବ ହୋଇଗଲା ।

: ହୁଁ, ବୁଝିଲି । ତା'ପରେ ?

: ମୁଁ ଭାବିଥିଲି ଯା'ହେଉ ଗୋଟାଏ ସଇତାନ କବଳରୁ ମୁକ୍ତି ପାଇଗଲି । ଅମିର ଆଲି କହିଲା । କିନ୍ତୁ ପାରିଲି ନାହିଁ ଆଜ୍ଞା । ପୁଣି ମାସକ ପରେ ସେହି ଏକା ଘଟଣା ଘଟିଲା ।

: କିପରି ?

ପୁଣି ଦିନେ ରାତି ଅଧରେ କିଏ ଜଣେ ମୋ ନାଁ ଧରି ଡାକ ଛାଡ଼ିଲା । ଆଖି ମଳି ମଳି ମୁଁ ବାହାରକୁ ଉଠି ଆସିଲି । ଘୋଡ଼ାଟା ଗାଡ଼ିରେ ଯୋଚା ହୋଇ ମୋ ଦୁଆରେ ଠିଆ ହୋଇଥିଲା । ମୁଁ କିଛି ବୁଝି ପାରିବା ଆଗରୁ ଗାଡ଼ି ଭିତରୁ ଗମ୍ଭୀର କଣ୍ଠସ୍ୱର ଶୁଣାଗଲା, ମୁଁ ପୁଣି ଆସିଛି ଅମିର ଆଲି, ଉଦୟ ମହଲକୁ ଯିବାକୁ ହେବ ।

ମୁଁ ବୁଝି ପାରିଲି । ପୁଣି ସେଇ ସଇତାନଟା ଆସି ମୋ ଗାଡ଼ିରେ ବସିଛି । ସେଥର ମୋ ଭୟ ଅନେକଟା ଭାଙ୍ଗି ଯାଇଥିଲା । ମୁଁ ଆଉ କୌଣସି ଦ୍ୱିଧାବୋଧ ନ କରି ସିଧା ଗାଡ଼ିରେ ଉଠିଲି । ଏଥର କିନ୍ତୁ ସେହି ସଇତାନଟା ମୋ ସଙ୍ଗରେ କଥାବାର୍ତ୍ତା ଆରମ୍ଭ କରିଦେଲା ।

: କ'ଣ କହିଲା ?

: ମୋତେ ପଚାରିଲା ଅମିର ଆଲି ! ତୁ ଉଦୟ ମହଲର ମଦନ ରାୟଙ୍କୁ କେବେ ଦେଖିଛୁ ?

: ଦେଖିଚି ଆଜ୍ଞା ।

: ତା' ସହିତ କଥାବର୍ତ୍ତା କରିଚୁ ?

ସେମାନେ ବଡ଼ଲୋକ ଆଜ୍ଞା । ଗାଡ଼ିରେ ଉଠନ୍ତି ସିନା, କଥାବାର୍ତ୍ତା କରନ୍ତି ନାହିଁ ।

ସେଦିନ ସେତିକି ।

ଉଦୟ ମହଲରୁ ଫେରିଲାବେଳେ ମୁଁ ଡରି ଡରି ପଚାରିଲି : ଆପଣଙ୍କର ପରିଚୟଟା ତ ମୁଁ ପାଇପାରିଲି ନାହିଁ ଆଜ୍ଞା ।

ସେ ହସିଲା, କହିଲା : ମୋତେ ତୁ ଚିହ୍ନି ପାରିବୁ ନାହିଁ ଅମିର ଆଲି । ତେବେ ଉଦୟ ମହଲର ରାଜା ଉଦୟ ନାରାୟଣଙ୍କ ନାଁ ତୁ ଶୁଣିଥିବୁ। ମୁଁ ତାଙ୍କର ପ୍ରଧାନ ସେନାପତି ଥିଲି ।

ଆଉ କୌଣସି କଥାବାର୍ତ୍ତା ନାହିଁ ।

ଷ୍ଟେସନରେ ପହଞ୍ଚି ଦେଖିଲି, ସେହିପରି ଗାଡ଼ି ଖାଲି । ଟଙ୍କା ଲୋଭରେ ଡିଆସିଲି ଜାଳି ଭିତରଟା ଦେଖିଲି। ଦଶଟି ଟଙ୍କା ସିଟ୍ ଉପରେ ରଖା ହୋଇଥିଲା ।

: ହୁଁ । ତୁ ସେଇ ସଇତାନଟାକୁ କେବେ ତୋ ନିଜ ଆଖିରେ ଦେଖି ନାହୁଁ ?

: ଦେଖିଛି ଆଜ୍ଞା ! ଡରିଡରି ଆଖିଖୋଲି ଥରେ ଚାହିଁ ଦେଇଥିଲି ।

କ'ଣ ଦେଖିଲୁ ?

: ଗୋଟାଏ କିମ୍ଭୂତ କିମାକାର ରୂପ । ଠିକ ଚିହ୍ନି ପାରିଲିନାହିଁ । ମଣିଷ ନୁହେଁ, ସେହିପରି କୌଣସି ଜନ୍ତୁ ଜାନୁଆର ମଧ୍ୟ କେବେ ମୁଁ ଦେଖିଲା ପରି ମନେ ପଡୁନାହିଁ ।

: ବୁଝିଲି, ସବୁ ତୋର ମନର ବିକାର ଅମିର ଆଲି । ଆଛା, କେବେ ତୁ ତାକୁ ମଣିଷ ରୂପରେ ଦେଖିନାହୁଁ ?

: କାଲି ରାତିରେ ଦେଖିଥିଲି ଆଜ୍ଞା । ଯେତେବେଳେ ସେ ଉଦୟ ମହଲରୁ ଛୁଟି ପଳେଇ ଆସୁଥିଲା, ମୋତେ ଜଣାଗଲା କିଏ ଜଣେ ଯେପରି ପ୍ୟାଣ୍ଟ କୋଟ୍ ପିନ୍ଧି, ମୁଣ୍ଡରେ ଟୋପି ଚଢ଼େଇ ଛୁଟି ଆସୁଛି । ଅନ୍ଧାର ରାତି ତ ! ଭଲକରି କିଛି ଦେଖି ପାରିଲି ନାହିଁ ।

: ତା'ପରେ ?

: ସେ ଗାଡ଼ିରେ ବସି କହିଲା, ଚଲାଓ ଅମିର ଆଲି । ଖୁବ ଜଲ୍‌ଦି ।

ମୁଁ ପ୍ରସ୍ତୁତ ହେବା ଆଗରୁ ଘୋଡ଼ାଟା ଆପଣାଛାଏଁ ଛୁଟିବାକୁ ଆରମ୍ଭ କରିଦେଲା । କାଲି ମୋତେ ଲଗାମ ଧରିବାକୁ ବି ପଡ଼ିନାହିଁ ।

: ହୁଁ, ତା'ପରେ ସେ ସଇତାନଟା ଷ୍ଟେସନରେ ପହଞ୍ଚିବା ଆଗରୁ ଗାଡ଼ିରୁ ଓହ୍ଲେଇ ଯାଇଥିଲା ?

: ହୁଁ, ଯାଇଥିଲା ଆଜ୍ଞା । ମୁଁ କିନ୍ତୁ ଆଉ ଗାଡ଼ି ଦେଖି ନଥିଲି । ଏକାଥରେ ନେଇ ରଖିବାବେଳେ ଦେଖିଲି । ଖାଲି ଟଙ୍କା ଲୋଭରେ ।

: ଟଙ୍କା ଥିଲା ?

: ଆଜ୍ଞା ! ସେଥିରେ କେବେ ବ୍ୟତିକ୍ରମ ଘଟିନାହିଁ ।

: ତା'ହେଲେ ତୁ ଗୋଟିଏ ଭଲ ଖରିଦାର ପାଇଛୁ ନା ଅମିର ଆଲି ?

: ସବୁ ଖୋଦାଙ୍କର ମେହର୍‌ବାନ ଆଜ୍ଞା। ସଇତାନ୍‌ଟା ଯେ ମୋ ତଣ୍ଟି ଚିପି ମାରି ଦେଇନାହିଁ, ସେଇ ମୋର ପୂର୍ବ ଜନ୍ମର ସୁକୃତିର ଫଳ।

ସତ୍ୟବ୍ରତ ହସିଲେ। ପୋଲିସ୍ ଇନିସ୍ପେକ୍ଟର ଅମିର ଆଲିର କଥାକୁ ଉପଭୋଗ କରୁଥିଲେ। କହିଲେ : ଏ ସବୁ ହୁଏତ ଅମିର ଆଲି ମନର ବିକାର।

: ତା'ଛଡ଼ା ଆଉ କ'ଣ ହୋଇପାରେ ? ସତ୍ୟବ୍ରତ କହିଲେ। ଏଇ ସଇତାନ୍ ଭୟଟା ଅମିର ଆଲି ମନରେ ସାଇକଲୋଜିକାଲି କାମ କରୁଛି, ଯାହା ଫଳରେ ଅମିର ଆଲି ସବୁଥର ଲୋକଟାକୁ ଭୂତ ବୋଲି ମନେ କରି ଆସିଛି । କିନ୍ତୁ ବର୍ତ୍ତମାନ ସମସ୍ୟା ହେଉଛି ପ୍ରକୃତରେ ସେଇ କ'ଣ ମଦନ ରାୟଙ୍କ ହତ୍ୟାକାରୀ ? ପରିବେଶକୁ ତୁଳନା କଲେ, ଅମିର ଆଲିର ସେଇ ସଇତାନଟାକୁ ହତ୍ୟାକାରୀ ରୂପେ ପରିକଳ୍ପନା କରିବାକୁ ବେଶ୍ ମଜା ଲାଗୁଛି, ନା ମି. ସାହାଣୀ ? ମନେ ହେଉଛି ଆମର ସମସ୍ତ ଦାୟିତ୍ୱ ଶେଷ ହୋଇଗଲା । ମଦନ ରାୟଙ୍କ ହତ୍ୟାକାରୀ ଆମ ହାତ ମୁଠାରେ । ଖାଲି ସେଇ ସଇତାନଟାକୁ ଖୋଜି ବାହାର କରି ପାରିଲେ, କାମ ଫତେ ।

: ମୁଁ ତ ସେହିପରି ମନେକରି ଆପଣଙ୍କ ପାଖକୁ ଛୁଟି ଆସିଥିଲି ।

ସତ୍ୟବ୍ରତ ମହାପାତ୍ର ଓ ପୋଲିସ ଇନିସ୍‌ପେକ୍ଟର ଷ୍ଟେସନର ପ୍ଲାଟଫର୍ମ ଉପରେ କଥାବାର୍ତ୍ତା ହୋଇ ଆଗେଉଥିଲେ ।

ଛୋଟ ଷ୍ଟେସନଟିଏ । ଏଠାରୁ ଉଦୟ ମହଲ ପ୍ରାୟ ଦୁଇ ମାଇଲ ହେବ । ମେଲ୍ ବା ଏକ୍ସପ୍ରେସ୍ ଗାଡ଼ି ଏହି ଷ୍ଟେସନରେ ଅଟକେ ନାହିଁ । ଯାତ୍ରୀ ସମାଗମ ମଧ ଏଠାରେ ଖୁବ୍ କମ ;

ଏମାନେ କଥାବାର୍ତ୍ତା ହେଉ ହେଉ ଷ୍ଟେସନ ମାଷ୍ଟରଙ୍କ ଅଫିସ୍‌ରେ ଯାଇ ପହଞ୍ଚିଲେ । ଷ୍ଟେସନ ମାଷ୍ଟରଙ୍କ ସହିତ ପୋଲିସ୍ ଇନିସ୍ପେକ୍ଟର ସତ୍ୟବ୍ରତଙ୍କ ପରିଚୟ କରାଇ ଦେଲେ ।

ବିଶେଷ କଥା ଆଉ ଜମିଲା ନାହିଁ ।

ଷ୍ଟେସନ ମାଷ୍ଟରଙ୍କ ଅନୁରୋଧ କ୍ରମେ ସେମାନଙ୍କୁ ଚା' ଓ ସାମାନ୍ୟ ଜଳଖିଆ ଖାଇବାକୁ ପଡ଼ିଲା ।

ସତ୍ୟବ୍ରତ କିନ୍ତୁ ସେତିକିବେଳୁ ଅମିର ଆଲିର ସେଇ ସଇତାନଟା କଥା ଚିନ୍ତା କରୁଥିଲେ । ପ୍ରକୃତରେ ଲୋକଟା କିଏ ହୋଇପାରେ ? ରାତି ଅଧ ପରେ ସେ ଆସେ ଏବଂ ଦୁଇ ତିନିଘଣ୍ଟା ଉଦୟ ମହଲରେ କଟାଇ ଫେରିଯାଏ । କାହିଁକି ସେ ଉଦୟ ମହଲକୁ ଯାଏ ? କ'ଣ ତା'ର ଉଦ୍ଦେଶ୍ୟ ? ସେଇ କଣ ପ୍ରକୃତରେ ମଦନ ରାୟଙ୍କୁ ହତ୍ୟା କରିଛି ?

ଷ୍ଟେସନ ମାଷ୍ଟର କହିଲେ : ଆପଣଙ୍କ ଦର୍ଶନ ପାଇ ମୁଁ କୃତାର୍ଥ ହେଲି ମହାପାତ୍ର ବାବୁ ! ଆମର ଯାହା ଚାକିରି ନା ଆଜ୍ଞା, ବଗ ମାଛକୁ ଚାକି ବସିଥିବା ଭଳି ଆମେ ଟ୍ରେନ ଆସିବାକୁ ଚାହିଁ ବସିଥିବୁ । ଦିନ ପରେ ଦିନ ରାତି ପରେ ରାତି । କାହାସହିତ ମିଶିବାର ବା ମନଖୋଲା ପଦେ କଥା ହେବାର ଅବସର ଆମକୁ ମିଳେନାହିଁ ।

ସତ୍ୟବ୍ରତ କହିଲେ : ଆପଣମାନଙ୍କ ସାଧନା ଯୋଗୁ ଆଜି ଦେଶର ଦୂରତ୍ୱ ଘୁଞ୍ଚି ଯାଇଛି । ପୃଥିବୀ ଯାକ ଆମେ ଗୋଟିଏ ପରିବାର ହୋଇ ପାରିଛନ୍ତି । ଆପଣଙ୍କର ସାଧନାର ମୂଲ୍ୟ କ'ଣ କେହି ଦେଇପାରିବ ?

ଷ୍ଟେସନ ମାଷ୍ଟର ବୋଧେ କୃତ୍ୟ କୃତ୍ୟ ହୋଇଗଲେ । ବିନୟ ସହକାରେ କହିଲେ

ଆପଣ ଆମର ଏହି ଅରାଜ୍ୟକୁ ଆସିଛନ୍ତି ଯେତେବେଳେ ଥରେ ଆମର ପର୍ଣ୍ଣ

କୁଟୀରରେ ପଦଧୂଳି ଦିଅନ୍ତୁ ।

: ଆଚ୍ଛା, ସତ୍ୟବ୍ରତ ଷ୍ଟେସନ ମାଷ୍ଟରଙ୍କୁ ଉଦ୍ଦେଶ୍ୟ କରି କହିଲେ । ଆପଣ ଏହି ଷ୍ଟେସନରେ କେତେଦିନ ହେବ ଅଛନ୍ତି ?

: ଖୁବ ବେଶିଦିନ ହୋଇନାହିଁ । ମୋ'ଆଗରୁ ଯେଉଁ ଭଦ୍ରଲୋକ ଏଠାରେ ଥିଲେ, ତାଙ୍କର ଏଇଠି ରହି ବାଳ ପାଚିଥିଲା ।

: ନା, ମୁଁ ତାଙ୍କ କଥା ପଚାରୁ ନାହିଁ । ଆପଣ ଅନ୍ତତଃ କେତେ ଦିନ ହେବ ଏଠାରେ ଅଛନ୍ତି ?

ମୋତେ ଛଅମାସ ବି ପୂରିନାହିଁ । ତେବେ ଜାଗାଟି ଭଲ, ବେଶ୍ ନିରୋଳା । ଜିନିଷପତ୍ର ଅପେକ୍ଷାକୃତ ଶସ୍ତା ।

ସତ୍ୟବ୍ରତ ଅଯଥା ଆଉ ସମୟ ନଷ୍ଟ କରିବାକୁ ଚାହୁଁ ନ ଥିଲେ । ତେଣେ ଉଦୟ ମହଲରେ ସେ ଅଳକେଶକୁ ଛାଡ଼ି ଆସିଛନ୍ତି । ରାତି ଆସି ଆଠଟା ବାଜିବାକୁ ଗଲାଣି । ଶୀଘ୍ର ସେ ଉଦୟ ମହଲକୁ ଫେରିଯିବା ଉଚିତ ।

ବାହାରେ ଟ୍ରେନ୍ ଆସିବାର ସାଙ୍କେତିକ ଘଣ୍ଟାଧ୍ୱନି ବାଜି ଉଠିଲା ।

ଷ୍ଟେସନ ମାଷ୍ଟର ଉଠି ଠିଆହୋଇ ପଡ଼ିଲେ  ଟ୍ରେନ୍ ଆସୁଛି ଆଜ୍ଞା। ମୁଁ ଟିକିଏ.....

: ନିଶ୍ଚୟ ! ନିଶ୍ଚୟ !! ଆପଣ ଯାଆନ୍ତୁ। ଆମେ ମଧ୍ୟ ଯାଉଛୁ ।

: ତା'ହେଲେ କେବେ ଥରେ-

: ମୁଁ ତ ଏଠାରେ ଦୁଇ ଚାରିଦିନ ରହିଛି, ଦିନେ ଆସି ନିଶ୍ଚୟ ଆପଣଙ୍କ ଅତିଥି ହେବି ।

ସେତିକିବେଳେ ଟ୍ରେନ୍‌ଟା ଆସି ପ୍ଲାଟଫର୍ମରେ ପହଞ୍ଚିଗଲା ।

ଷ୍ଟେସନ ମାଷ୍ଟର ବାହାରକୁ ବାହାରିଗଲେ ।

ସତ୍ୟବ୍ରତ ଓ ଇନିସ୍‌ପେକ୍ଟର ଆଉ ସମୟ ନଷ୍ଟ ନ କରି ପୁଣି ଯାଇ ଅମିର ଆଲିର ଘୋଡ଼ାଗାଡ଼ିରେ ଉଠି ବସିଲେ ।

ପୁଣି ଘୋଡ଼ାଟାପୁର ଶବ୍ଦ ନିର୍ଜନ ପାହାଡ଼ିଆ ରାସ୍ତାକୁ ମୁଖରିତ କରି ତୋଳିଲା ।

ଅଳକେଶ ନୀରବରେ ଉଦୟ ମହଲର ବୈଠକଖାନାରେ ବସିଥିଲା ।

ସେ ଏଠାରେ ପହଞ୍ଚି, ସତ୍ୟବ୍ରତଙ୍କ ସହିତ କଥାବର୍ତ୍ତା ପରେ ଏପରି ସ୍ତମ୍ଭୀଭୂତ ହୋଇ ପଡ଼ିଥିଲା ଯେ, ହୁଏତ ନିଜର ସ୍ଥିତି ସମ୍ବନ୍ଧରେ ସେ ଅଚେତନ ହୋଇ ଯାଇଥିଲା ।

ରାମୁ କିଛି ଜଳଖିଆ ଓ ଚା' ଆଣି ରଖି ଦେଇଗଲା ।

ଅଳକେଶ କେବଳ ଚା' କପ୍‌ଟି ଓଠେଇ ନେଇ ଓଠରେ ଲଗେଇଲା । ସେ ଆଜି ଉଦୟ ମହଲରେ ନଜରବନ୍ଦୀ । ଅନ୍ତତଃ ସତ୍ୟବ୍ରତ ମହାପାତ୍ର ସେଇଆ କହି ଯାଇଛନ୍ତି । ତାକୁ ରାତିକ ପାଇଁ ସମୟ ଦିଆହୋଇଛି । ସତ୍ୟକଥା ପ୍ରକାଶ ନ କରିବା ଯାଏ ଏଠାରୁ ଛାଡ଼ି ଦିଆଯିବ ନାହିଁ ।

ଅଳକେଶ ସତ୍ୟକଥା ପ୍ରକାଶ କରିବ, କଣ ଆଉ ସତ୍ୟକଥା ? ସେ କ'ଣ କହିବ ମଦନ ରାୟଙ୍କୁ ମୁଁ ହତ୍ୟାକରିଛି ?

ଅଳକେଶ ମନକୁ ମନ ହସି ଉଠିଲା । ବୋକା, ନିର୍ବୋଧ ଏମାନେ ।

ରାମୁ ଆସି ଅଳକେଶ ଭାବନାରେ ବାଧା ଦେଲା । କହିଲା, : ଆପଣଙ୍କୁ ଦେଈ ଡାକୁଛନ୍ତି ।

: ଦେଈ ? ମତେ ଦେଈ ଡାକୁଛନ୍ତି ।

ଆଜ୍ଞା ।

: ତଥାପି ଅଳକେଶ ରାମୁର କଥାକୁ ବିଶ୍ୱାସ କରି ପାରୁ ନ ଥିଲା ।

କିନ୍ତୁ ସେ ଚେଆର ଛାଡ଼ି ଉଠିଲା । ରାମୁ ପଛେ ପଛେ ଆଗେଇ ଗଲା ।

ଦୋତାଲା ଉପରେ ନିଜ ରୁମରେ ମଳିନା ଶେଯ ଉପରେ ଶୋଇଥିଲା । ଅଳକେଶ ରୁମରେ ପ୍ରବେଶ କରିବା ମାତ୍ରେ ମଳିନା ଶେଯ ଉପରେ ଉଠି ବସିଲା । ଗୋଡ଼ରୁ ମୁଣ୍ଡଯାଏ ଅଳକେଶକୁ ଚାହିଁଗଲା । ତା'ପରେ ଚାହାଣିଟା ଅଳକେଶର ମୁହଁ ଉପରେ ସ୍ଥିର ରଖି କହିଲା : ବସନ୍ତୁ ।

ଅଳକେଶ ଖଣ୍ଡିଏ ଚେଆର ଉପରେ ବସିଲା ।

ତୁ ଯାଆ ରାମୁ, ମଳିନା କହିଲା । ବାବୁଙ୍କ ପାଇଁ କିଛି ଜଳଖିଆ ଆଣିବୁ ।

ରାମୁ ଚାଲିଗଲା । ଅଳକେଶ ବସିବାକୁ ମଧ୍ୟ ଅବକାଶ ପାଇଲା ନାହିଁ ।

: ରାମୁ ମୁହଁରୁ ଶୁଣିଲି ଆପଣ ଦିବ୍ୟରଞ୍ଜନ ବାବୁଙ୍କ ପାଖରୁ ଆସିଛନ୍ତି । ମଳିନା ସହଜ ସ୍ୱରରେ ପଚାରିଲା ।

ହଁ, କିନ୍ତୁ ଏଠାରେ ଆସି ଦେଖିଲି, ପରିସ୍ଥିତିଟା ସଂପୂର୍ଣ୍ଣରୂପେ ଅସ୍ୱାଭାବିକ ।

ହଁ, ବାପା ମରି ଯାଇଛନ୍ତି । ପୋଲିସ କହୁଛି ତାଙ୍କୁ କୁଆଡ଼େ କିଏ ହତ୍ୟା କରିଛି । ମଳିନାର ସ୍ୱର ଥରି ଉଠୁଥିଲା ।

ମୁଁ ସେଇଆ ଶୁଣିଲି । କିନ୍ତୁ ସବୁ ଯେ ଗଣ୍ଡଗୋଳ ହୋଇଗଲା । ଦିବ୍ୟରଞ୍ଜନ ବାବୁ କହୁଥିଲେ.... ଅଳକେଶ ବୋଧହୁଏ ଆଉ କିଛି କହିବାକୁ ସାହସ କରି ପାରିଲା ନାହିଁ ନୀରବ ହୋଇଗଲା ।

: ମୁଁ ସେ କଥା ଜାଣିଛି ଅଳକେଶ ବାବୁ ।

: ଆପଣ ଜାଣିଛନ୍ତି ?

: ହଁ ମୁଁ ଜାଣିଛି । ବାପା କିନ୍ତୁ ମୋତେ ଜଣାଇ ନ ଥିଲେ । ସେ ଦିବ୍ୟରଞ୍ଜନ ବାବୁଙ୍କୁ ଜଣେ ବିଶ୍ୱାସୀ ଲୋକ ପଠାଇବାକୁ ଲେଖିଥିଲେ ।

କିନ୍ତୁ ମୋ ପହଞ୍ଚିବା ପୂର୍ବରୁ.......

ମଳିନା ମୁହଁରେ କରୁଣ ହାସ୍ୟରେଖା ଚେନାଏ ଫୁଟି ଉଠିଲା । ହୁଏ, ବେଳେ ବେଳେ ସେମିତି ହୋଇଥାଏ । ଆପଣ ମୋର ଗୋଟିଏ ଅନୁରୋଧ ରଖି ପାରିବେ ଅଳକେଶ ବାବୁ ?

: ସେ ତ ମୋର ପରମ ସୌଭାଗ୍ୟର କଥା ହେବ ।

: ଆପଣ ମୋତେ ଏଇ ଉଦୟ ମହଲରୁ ବାହାର କରି ନେଇ ଯାଇ ପାରିବେ ?

: ସେ କିପରି କଥା ?

: ଆପଣ ଦିବ୍ୟରଞ୍ଜନ ବାବୁଙ୍କର ବିଶ୍ୱାସୀ ଲୋକ ନା ? ଆପଣ ଆସିଲା ବେଳକୁ

ଦିବ୍ୟରଞ୍ଜନ ବାବୁ କହି ନାହାନ୍ତି ଗୋଟିଏ ଦାମୀ ଜିନିଷ ଅତ୍ୟନ୍ତ ସାବଧାନ ସହକାରେ ନେଇଯିବା ପାଇଁ ?

ହଁ, କହିଛନ୍ତି ।

ସେଇ ଦାମୀ ଜିନିଷଟି ହେଉଛି ମୁଁ ।

: ଆପଣ ? ଅଳକେଶ ପ୍ରଶ୍ନବାଚୀ ନୟନରେ ମଳିନା ମୁହଁକୁ ଅନାଇ ରହିଲା । ସେ ମଳିନାର ଏହି କଥାକୁ ବିଶ୍ୱାସ କରି ପାରୁ ନ ଥିଲା ।

ଆପଣ ବିଶ୍ୱାସ କରନ୍ତୁ ଅଳକେଶ ବାବୁ ! ବାପା ଥିଲେ ମୋତେ ଆପଣଙ୍କ ସହିତ ଦିବ୍ୟରଞ୍ଜନ ବାବୁଙ୍କ ନିକଟକୁ ପଠାଇ ଥାଆନ୍ତେ । ସେ ଆଜି ସେପୁରରେ । ତେଣୁ ଆପଣ ଆଜି ମୋ କଥା ବିଶ୍ୱାସ କରିବେ କିପରି ?

ପ୍ରକୃତରେ ମଳିନା ଦେବୀ, ଆପଣଙ୍କର ଏହି କଥା ଅତ୍ୟନ୍ତ ଅବିଶ୍ୱାସ୍ୟ ।

କିନ୍ତୁ ଆପଣ ଯାହା ଭାବନ୍ତୁ ପଛେ, ମୋତେ ଏଠାରୁ ନେଇ ଦିବ୍ୟରଞ୍ଜନ ବାବୁଙ୍କ ନିକଟରେ ପହଞ୍ଚାଇ ଦେବାକୁ ହେବ । ତା' ନ ହେଲେ ଏଠାରେ ମୋର ଶ୍ୱାସ ରୁଦ୍ଧ ହୋଇଯିବ, ମୁଁ ମରିଯିବି ।

ଅଳକେଶ ବଡ଼ ସମସ୍ୟାରେ ପଡ଼ିଗଲା । ସେ ନୀରବରେ ବସି ଚିନ୍ତା କରୁଥିଲା ।

: ଆପଣ ଜାଣି ନ ଥିବେ ଅଳକେଶ ବାବୁ, ଦିବ୍ୟରଞ୍ଜନ ବାବୁ ମୋ ବାପାଙ୍କର ଅତ୍ୟନ୍ତ ଘନିଷ୍ଠ ବନ୍ଧୁ । ସେ ମୋତେ ଝିଅପରି ସ୍ନେହ କରନ୍ତି । ସେ ମୋର ଏହି ଅସହାୟ ଅବସ୍ଥା କଥା ଶୁଣିଲେ ଏଇ ମୁହୂର୍ତ୍ତରେ ଛୁଟି ଆସିବେ । ମୁଁ ତାଙ୍କୁ ବାପାଙ୍କ ମୃତ୍ୟୁ ସଂବାଦ ଜଣାଇ ନାହିଁ, କାରଣ ମୁଁ ଜାଣିଥିଲି ସେ ନିଜେ ଆସିବେ । ବାପାଙ୍କ ଚିଠି ପାଇ ସେ ନିଶ୍ଚୟ ଆସିବେ । କିନ୍ତୁ ସେ ନ ଆସି ଆପଣଙ୍କୁ ପଠାଇଛନ୍ତି ଯେତେବେଳେ........

ଅବଶ୍ୟ ତାଙ୍କର ପ୍ରତିନିଧି ସ୍ୱରୂପ ମୁଁ ଆପଣଙ୍କର ଦାୟିତ୍ୱ ବହନ କରିବାକୁ ଅକ୍ଷମ ନୁହେଁ, ତେବେ ଏଠାକାର ପରିବେଶ ମଧ୍ୟରୁ ଆପଣଙ୍କୁ ନେଇ ବାହାରି ଯିବା ତ ସହଜ କଥା ହେବ ନାହିଁ ।

ଆପଣ ମୋତେ ବଞ୍ଚାନ୍ତୁ ଅଳକେଶ ବାବୁ । ମୁଁ ଆଜି ଅତ୍ୟନ୍ତ ଅସହାୟ ଅବସ୍ଥାରେ ପଡ଼ିଛି ।

: କିନ୍ତୁ କାହିଁକି ଆପଣ ନିଜକୁ ଏତେ ଅସହାୟ ମଣୁଛନ୍ତି ?

: ସେ କଥା ମୁଁ ଆପଣଙ୍କୁ ବୁଝେଇ ପାରିବି ନାହିଁ ଅଳକେଶ ବାବୁ । ସେ ଅନେକ କଥା । ସୁବିଧା ପାଇଲେ କେବେ ଥରେ ସବୁ କହିବି । ବର୍ତ୍ତମାନ ଏଇଟା ବେଳ ନୁହେଁ । ସବୁ ଆଡ଼େ ପୋଲିସ୍ ଲୋକ ପୂରି ରହିଛନ୍ତି ।

: କିନ୍ତୁ ମି. ମଦନ ରାୟଙ୍କର ଏହି ଅକାଳ ମୃତ୍ୟୁ ସମ୍ବନ୍ଧରେ.....

: ମୁଁ କିଛି ଜାଣିନାହିଁ ଅଳକେଶ ବାବୁ ! ଆପଣ ମୋତେ ଆଉ ସେ ପୋଲିସ୍ ଲୋକଙ୍କ ପରି ଜେରା କରନ୍ତୁ ନାହିଁ । ମୋତେ ଏଠାରୁ ନେଇ ନ ଯିବା ଯାଏ ଆପଣ ଉଦୟ ମହଲ ଛାଡ଼ି ଯିବେ ନାହିଁ ।

: କିନ୍ତୁ....

: ନା ଆଉ କିନ୍ତୁ ଫିନ୍ତୁ ମୁଁ କିଛି ଶୁଣିବି ନାହିଁ । ମୋର ଆଜି ଏଠାରେ ଆପଣାର ଲୋକ ହୋଇ କେହି ନାହିଁ । ଆପଣ କ୍ୱନ୍ତୁ କଥା ଦିଅନ୍ତୁ, ଉଦୟ ମହଲ ଛାଡ଼ି ଯିବେ

ନାହିଁ ।

: ଆଚ୍ଛା, ତାହାହିଁ ହେବ । ଅଳକେଶ କହିଲା ।

: ଆପଣ ମୋତେ ଗୋଟାଏ ବିରାଟ ଦୁଶ୍ଚିନ୍ତାରୁ ବଞ୍ଚେଇଦେଲେ ଅଳକେଶ ବାବୁ । ମୁଁ ଏବେ ଟିକିଏ ନିଶ୍ଚିନ୍ତ ହୋଇ ପାରିବି ।

: ମୁଁ ତା'ହେଲେ ଆସୁଚି ମଳିନା ଦେବୀ ।

: ହଁ ଆପଣ ଯାଆନ୍ତୁ । ଆମର ଏହି ସମ୍ବନ୍ଧ ଅନ୍ୟମାନେ ନ ଜାଣି ପାରିବା ହିଁ ଭଲ ।

ଅଳକେଶ ଚିନ୍ତାର ବୋଝ ମୁଣ୍ଡେଇ ମଳିନା ଘରୁ ବାହାରକୁ ଆସିଲା । ବଡ଼ ଆଶ୍ଚର୍ଯ୍ୟ ପରିବେଶ ତ ! ସେ ଏଠାକୁ କାହିଁକି ଆସିଲା କେଜାଣି ! ଧୀରେ ଧୀରେ ଯେ ଅଠାକାଠିରେ ଲାଖି ଯାଉଛି ।

ଅଳକେଶ ବୈଠକଖାନାକୁ ଫେରି ଯାଇ ନୀରବରେ ବସି ଚିନ୍ତା କରୁଥିଲା ।

ମଳିନା ଏଠାରୁ ଖସି ଯିବାପାଇଁ ଏତେ ବ୍ୟଗ୍ର କାହିଁକି ? ତା'ହେଲେ ସେଇ କ'ଣ ମିଃ ମଦନ ରାୟଙ୍କୁ.....ଅଳକେଶର ଭାବନା ଥମିଗଲା । ନା, ନା, ଏହା ଅସମ୍ଭବ । ଯେତେହେଲେ ବି ମଦନ ରାୟ ମଳିନାର ବାପା । ମଳିନା ଏତେ ନିଷ୍ଠୁର ହୋଇ ପାରେନା । କିନ୍ତୁ ଦିବ୍ୟରଞ୍ଜନ ବାବୁ ମୋତେ ଯେଉଁ ଆଦେଶ ଦେଲେ, ଯେପରି ଭାବରେ ସତର୍କ କରାଇ ଦେଲେ, ତା' ଭିତରେ ମଳିନା ଗନ୍ଧ ଆସିଲା କେଉଁଠୁ ? ମଳିନା ମିଛ କହୁଛି । ହୁଏତ ଅତ୍ୟନ୍ତ ଅସହାୟ ଅବସ୍ଥାରେ ପଡ଼ିଯାଇ ତାକୁ ଏହିପରି ମିଥ୍ୟାର ଆଶ୍ରୟ ନେବାକୁ ପଡୁଛି । କିନ୍ତୁ ମଳିନା ଯେ ମଦନ ରାୟଙ୍କ କନ୍ୟା । ସେ ହୁଏତ ଏହି ବିଶାଳ ସମ୍ପତ୍ତିର ଉତ୍ତରାଧିକାରିଣୀ । କିନ୍ତୁ ସେ ଏପରି ଲୁଚି ପଳାଇବାକୁ ଚାହୁଁଛି କାହିଁକି ?

ହସି ଉଠିଲା ଅଳକେଶ । ପ୍ରକୃତରେ ମଳିନା ଦେବୀଙ୍କର ଯୁକ୍ତି ଅତି ପିଲାଳିଆ ।

: ଶ୍ରୀ ଅଳକେଶ ପଟ୍ଟନାୟକ, ମି. ମଦନ ରାୟଙ୍କ ପରମ ବନ୍ଧୁ ଦିବ୍ୟରଞ୍ଜନ ମହାପାତ୍ରଙ୍କର ପ୍ରାଇଭେଟ ସେକ୍ରେଟାରୀ । ଯାହାଙ୍କ କଥା ମୁଁ ବାଟରେ ଆପଣଙ୍କୁ କହୁଥିଲି । ସତ୍ୟବ୍ରତ ମହାପାତ୍ର ପୋଲିସ ଇନିସ୍ପେକ୍ଟରଙ୍କୁ କହିଲେ ।

ଅଳକେଶ ହଠାତ୍ ପଛଆଡୁ ସତ୍ୟବ୍ରତଙ୍କ ସ୍ୱର ଶୁଣି ଚମକି ଉଠିଥିଲା ।

ଆଉ ଏ ହେଉଛନ୍ତି ସ୍ଥାନୀୟ ଥାନାର ପୋଲିସ ଇନିସ୍ପେକ୍ଟର । ସତ୍ୟବ୍ରତ ଅଳକେଶ ସହିତ ପରିଚୟ କରାଇ ଦେଲେ ।

ଦୁହିଁଙ୍କ ଭିତରେ ନମସ୍କାର ବିନିମୟ ହେଲା ।

: ଆପଣ ସେତିକିବେଳୁ ଏକା ଏକା ଏଠାରେ ବସିଛନ୍ତି ? ସତ୍ୟବ୍ରତ ପଚାରିଲେ ।

: ଆଉ ଉପାୟ କ'ଣ ଅଛି କୁହନ୍ତୁ । ମୁଁ ଦେଖୁଛି ଏଠାରେ ଆସି ଗୋଟାଏ ସମସ୍ୟାରେ ପଡ଼ିଗଲି । ଅଳକେଶ କହିଲା ।

ଜୀବନରେ ସମସ୍ୟା ନ ଥିଲେ ସେ ଜୀବନ ଜୀବନ ନୁହେଁ ଅଳକେଶ ବାବୁ! ଆପଣ ଯୁବକ ଲୋକ । ଅନ୍ତତଃ ମଝିରେ ମଝିରେ ସମସ୍ୟାର ସମ୍ମୁଖୀନ ହେବାକୁ ପସନ୍ଦ କରିବା ଉଚିତ ।

ତା'ବୋଲି ହତ୍ୟା, ବିଭୀଷିକା ଏଇ ସବୁ ସମସ୍ୟା ସହିତ ଜଡ଼ିତ ହେବାକୁ ହେବ ?

: ଆପଣ ଭୁଲ କରୁଛନ୍ତି ଅଳକେଶ ବାବୁ ! ଆମେ ତ ଆପଣଙ୍କୁ ହତ୍ୟା ଆଉ ବିଭୀଷିକା ସହିତ ସଂପୃକ୍ତ କରୁନାହୁଁ, ବରଂ ଆପଣଙ୍କର ସାହାଯ୍ୟ ଲୋଡୁଛୁ । ଯଦ୍ୱାରାକି ଏହି ସମସ୍ୟାର ଗୋଟିଏ ସମାଧାନ ସହଜରେ ହେଇ ପାରିବ । ଆପଣ କିନ୍ତୁ....

: ମୋତେ ବିଶ୍ୱାସ କରନ୍ତୁ ମି. ମହାପାତ୍ର । ମୁଁ ମି. ମଦନରାୟଙ୍କ ସମ୍ବନ୍ଧରେ କିଛି ଜାଣିନାହିଁ ।

: ଆପଣଙ୍କ କଥା ମୁଁ ବିଶ୍ୱାସ କରୁଛି, କିନ୍ତୁ ଯଦି କୁହେ ଦିବ୍ୟରଞ୍ଜନ ବାବୁଙ୍କ ସମ୍ବନ୍ଧରେ ଆପଣ ଯଥେଷ୍ଟ ଜାଣିଛନ୍ତି ।

: ସେଇଟା ଅବଶ୍ୟ ସତ୍ୟ ।

: ତା'ହେଲେ ଦିବ୍ୟରଞ୍ଜନ ବାବୁ ମି. ମଦନରାୟଙ୍କ ସମ୍ବନ୍ଧରେ ଅନେକ କଥା ଜାଣିଥିବେ !

: ସେଇଟା ମଧ୍ୟ ସତ୍ୟ ହୋଇପାରେ । କିନ୍ତୁ ମୋ ପକ୍ଷରେ ଦିବ୍ୟରଞ୍ଜନ ବାବୁଙ୍କ ମନ କଥା ଜାଣିବାଟା କ'ଣ ସହଜ ବୋଲି ଆପଣଙ୍କର ଧାରଣା ?

: ସେଇଥିପାଇଁ ତ ଆପଣଙ୍କୁ ବାରମ୍ବାର ମୋର ଏ ପ୍ରଶ୍ନ ।

: ତା'ହେଲେ ଆପଣ ଭୁଲ୍ କରୁଛନ୍ତି ।

: ହୁଏତ ମୋର ଭୁଲ ହୋଇ ପାରିଥାଏ, କିନ୍ତୁ ମୋର ଦୃଢ଼ ବିଶ୍ୱାସ ଯେ, ଆପଣ ମଦନ ରାୟଙ୍କ ଠାରୁ ଯେଉଁ ଦାମୀ ପଦାର୍ଥଟି ବହନ କରି ନେଇ ଯିବାପାଇଁ ଆସିଛନ୍ତି, ସେହି ପଦାର୍ଥଟି ସମ୍ବନ୍ଧରେ ଆପଣଙ୍କର ନିଶ୍ଚୟ ଧାରଣା ଅଛି ।

ଅଳକେଶ ହସି ଉଠିଲା : ଆପଣଙ୍କର ଏପରି ଅନୁମାନ କରିବା ମୂଳରେ ଯଥେଷ୍ଟ ସତ୍ୟତା ଥାଇପାରେ, କିନ୍ତୁ ଆପଣ ମୋତେ ବିଶ୍ୱାସ କରନ୍ତୁ, ମୁଁ ଅସଲ ବସ୍ତୁ ସମ୍ବନ୍ଧରେ କିଛି ଜାଣିନାହିଁ ।

: ଶୁଣନ୍ତୁ ଆଳକେଶ ବାବୁ : ସତ୍ୟବ୍ରତ କହିଲେ । ମି. ମଦନ ରାୟଙ୍କ ମୃତ୍ୟୁ ନିଶ୍ଚୟ ଯେ କୌଣସି ଆତତାୟୀ ଦ୍ୱାରା ହୋଇଛି, ଏହା ନିଃସନ୍ଦେହ । ସେ ଅତ୍ମହତ୍ୟା କରି ନାହାନ୍ତି । କାରଣ ତାଙ୍କ କପାଳରେ ଗୁଳିବିଦ୍ଧ ହୋଇଛି ଏବଂ ପିଠିରେ ମଧ୍ୟ ଗୁଳି ଭେଦିଛି । ତେଣୁ ଏହା ନିଃସନ୍ଦେହ ଯେ ମି. ମଦନରାୟ ନିଜେ କପାଳ ଛଡ଼ା ପିଠିରେ ଗୁଳିବିଦ୍ଧ କରିବା ଅସମ୍ଭବ । ତେଣୁ ଏହା ନିଶ୍ଚିନ୍ତ କଥା ଯେ, କୌଣସି ଜଣେ ଦ୍ୱିତୀୟ ଲୋକ ତାଙ୍କୁ ହତ୍ୟା କରିଛି । କିନ୍ତୁ କାହିଁକି ?

: ବହୁତ ଭାବି ଚିନ୍ତି ମଧ୍ୟ ମୁଁ ତା'ର କାରଣ ଖୋଜି ବାହାର କରି ପାରୁ ନଥିଲି । ଆପଣ ଆସିବା ପରେ ମୋର ଧାରଣା ଅନେକାଂଶରେ ପରିଷ୍କାର ହୋଇ ଯାଇଛି । ମଦନ ରାୟଙ୍କ ନିକଟରୁ ଆପଣ ଯେଉଁ ଦାମୀ ପଦାର୍ଥଟି ବହନ କରି ନେବା ପାଇଁ ଆସିଛନ୍ତି, ମୋର ଅନୁମାନ ସେହି 'ଦାମୀ' ପଦାର୍ଥଟି ପାଇଁ ମଦନ ରାୟଙ୍କୁ ମୃତ୍ୟୁ ବରଣ କରିବାକୁ ପଡ଼ିଛି । ତାହାହିଁ ଯଦି ସତ୍ୟ ହୁଏ, ତେବେ ନିଶ୍ଚୟ ସେହି ଦାମୀ ପଦାର୍ଥଟି ହତ୍ୟାକାରୀ ନେଇ ଚାଲି ଯାଇଛି । ତେଣୁ ମୋର କହିବାର କଥା ହେଉଛି, ଆପଣ ଆଉ ସେ ଦାମୀ ପଦାର୍ଥଟି ନିଶ୍ଚୟ ପାଉ ନାହାନ୍ତି । ତେଣୁ ଆପଣଙ୍କର ଆଉ କୌଣସି ଲାଭ ନାହିଁ ଯେତେବେଳେ ଆମକୁ ସେହି ଦାମୀ ପଦାର୍ଥଟିର ନାଁ କହିଲେ, ଅନ୍ତତଃ ମଦନରାୟଙ୍କ ହତ୍ୟାକାରୀକୁ ଧରିବା ପାଇଁ ଆମେ ସାମାନ୍ୟ ଆଲୋକ ପାଇବୁ ।

ସତ୍ୟବ୍ରତ କଥା ଶେଷକରି ନୀରବରେ ଅଳକେଶ ମୁହଁକୁ ଅନାଇ ରହିଲେ ।

: ମୋର ଆପଣଙ୍କୁ ଆଉ କହିବାର କିଛି ନାହିଁ ମି. ମହାପାତ୍ର । ଅଳକେଶ କହିଲା ।

: ଆପଣ ମୋତେ ଭୁଲ୍ ବୁଝନ୍ତୁ ନାହିଁ ଅଳକେଶ ବାବୁ ! ମୋର ଧାରଣା ଯାହା ସେଇଆ ମୁଁ ଆପଣଙ୍କ ନିକଟରେ ବ୍ୟକ୍ତ କଲି । ଆପଣ ଯଦି ନିତାନ୍ତ କହି ନ ପାରନ୍ତି, ଆମକୁ କିନ୍ତୁ ସେହି ଦାମୀ ଜିନିଷର ତଥ୍ୟ ଆବିଷ୍କାର କରିବାକୁ ପଡ଼ିବ । ହୁଏତ ଆମକୁ ଦିବ୍ୟରଞ୍ଜନ ବାବୁଙ୍କ ନିକଟକୁ ସେହି ଦାମୀ ଜିନିଷର ତଥ୍ୟ ଆବିଷ୍କାର କରିବା ପାଇଁ ଛୁଟି ଯିବାକୁ ହେବ ।

: ତା' ଆପଣ କରି ପାରନ୍ତି । କିନ୍ତୁ କିଛି ଜାଣି ନଥିବା ଜଣେ ଲୋକକୁ ଯଦି ଆପଣ ସନ୍ଦେହର କେନ୍ଦ୍ରବିନ୍ଦୁ ରୂପେ ଧରି ନିଅନ୍ତି, ତା'ହେଲେ ଅଯଥା ସମୟ ତ ନଷ୍ଟ ହେବ, ଇତ୍ୟବସରରେ ଅସଲ ଅପରାଧୀ ହୁଏତ ଦେହରୁ ସମସ୍ତ କାଳିମା ପୋଛି ନିର୍ବିଘ୍ନରେ ଖସି ପଳାଇବ ।

ସତ୍ୟବ୍ରତ ଆଉ କ'ଣ କହିବାକୁ ଯାଉଥିଲେ । ରାମୁ ଆସି ବାଧା ଦେଲା । ଖାଇବେ ଚାଲନ୍ତୁ ଆଜ୍ଞା। ରାତି ଅନେକ ହେଇ ଗଲାଣି ।

: ପୋଲିସ ଇନିସ୍ପେକ୍ଟର ଉଠି ଠିଆ ହେଲେ । ମୁଁ ଆଜି ତେବେ ଆସୁଛି ମିଃ ମହାପାତ୍ର । ପୁଣି କାଲି ସକାଳେ ଦେଖାହେବ ।

ଶୁଭରାତ୍ରି ଜଣାଇ ପୋଲିସ ଇନିସ୍ପେକ୍ଟର ବାହାରି ଗଲେ ।

ସତ୍ୟବ୍ରତ ରାମୁକୁ ପଚାରିଲେ : ମଳିନା ଦେବୀ କ'ଣ କରୁଛନ୍ତି ?

: ସେ ଶୋଇ ପଡ଼ିଲେଣି ।

ରାତି ଗଭୀର ହୋଇ ଆସୁଥିଲା ।

ଉଦୟ ମହଲର ପ୍ରତିଟି କକ୍ଷରୁ ଆଲୋକ ନିର୍ବାପିତ ହୋଇ ଯାଇଥିଲା ।

ସତ୍ୟବ୍ରତ କିନ୍ତୁ ନିଶ୍ଚିନ୍ତରେ ଶୋଇ ପାରୁ ନଥିଲେ । ସେ ନିବିଡ଼ ଅନ୍ଧକାର ମଧ୍ୟରେ ଆକାଶକୁ ଚାହିଁ ବାରଣ୍ଡାରେ ଠିଆ ହୋଇଥିଲେ ।

ନିର୍ମଳ ଆକାଶ ମଧ୍ୟରେ ଅସଂଖ୍ୟ ତାରକାମାନଙ୍କର ଗତିବିଧି ଲକ୍ଷ୍ୟ କରୁଥିଲେ । ସମସ୍ତେ ଯେପରି ଏକନିଷ୍ଠ ସାଧକଙ୍କ ଭଳି ତପସ୍ୟାରତ ।

ଉଦୟ ମହଲର ରହସ୍ୟ ତାଙ୍କ ମୁଣ୍ଡ ଭିତରେ ବାତ୍ୟା ସୃଷ୍ଟି କରିଥିଲା । ସେ କେଉଁଠି ମୁହୂର୍ତ୍ତକ ପାଇଁ ନିଶ୍ଚିନ୍ତ ହୋଇ ପାରୁ ନ ଥିଲେ । ନିଦ୍ରା ମଧ୍ୟ ତାଙ୍କ ଆଖିରେ କାଉଁରୀ ସ୍ପର୍ଶ ଛୁଇଁ ପାରୁ ନଥିଲା ।

ସେ ଏକ ସମୟରେ ଯାଇ ମଦନରାୟଙ୍କ ଶୟନ କକ୍ଷରେ ପ୍ରବେଶ କଲେ । ହାତର ଶକ୍ତିଶାଳୀ ଟର୍ଚ୍ଚଟା ଜଳେଇ ଆଉଥରେ କକ୍ଷର ସମସ୍ତ ଜିନିଷ ପତ୍ର ପରୀକ୍ଷା କରିବାକୁ ଚେଷ୍ଟା କଲେ ।

କ'ଣ ସେ ଆଉ ଦେଖିବେ ? ଯାହା ବାହାରେ ପଡ଼ିଛି, ସବୁଗୁଡ଼ିକ ଅତି ନଗଣ୍ୟ ପଦାର୍ଥ ଆଉ ଯାହା ଆଲମାରୀ ଓ ଡ୍ରୟାର ଭିତରେ ଅଛି ?

ସତ୍ୟବ୍ରତ ମଦନରାୟଙ୍କ ଶୟନ କକ୍ଷର ଦରଜାଟି ଭିତରୁ ବନ୍ଦ କଲେ । ପକେଟରୁ ଡିଆସିଲି ବାହାର କରି ଲଣ୍ଠନରେ ଅଗ୍ନି ସଂଯୋଗ କଲେ । ଯାଇ ବସିଲେ ମଦନରାୟଙ୍କ

ରିଭଲଭିଂ ଚେଆରଟି ଉପରେ ।

ମଦନରାୟ ତାଙ୍କୁ ଲେଖିଥିଲେ ଉଦୟ ମହଲକୁ ଆସିବା ପାଇଁ । କାରଣସ୍ୱରୂପ ସେ ଦର୍ଶାଇଥିଲେ, ତାଙ୍କର ଭୟ ହେଉଛି । କେହି ଜଣେ ଅଜ୍ଞାତ ଶତ୍ରୁ ତାଙ୍କର ସର୍ବସ୍ୱ ଲୁଣ୍ଠନ କରିବା ପାଇଁ ପଛରେ ଲାଗିଛି । ଖାଲି ସେତିକି ନୁହେଁ, ସୁବିଧା ପାଇଲେ ସେ ମଧ ମଦନରାୟଙ୍କ ପ୍ରାଣନାଶ କରିପାରେ । ସେହି ଶତ୍ରୁ ବିନାଶ ପାଇଁ ମଦନରାୟ ସତ୍ୟବ୍ରତଙ୍କ ଶରଣ ପଶିଥିଲେ ।

କିନ୍ତୁ ଶତ୍ରୁ ବିନାଶ ତ ହେଲା ନାହିଁ, ବରଂ ମଦନରାୟ ନିଜେ ଜୀବନ ଦେଲେ ।

ମଦନରାୟଙ୍କର କିଏ ସେହି ଅଜ୍ଞାତ ଶତ୍ରୁ । ସିଏ କି ତା ଉଦ୍ଦେଶ୍ୟ ସାଧନ କରି ଚାଲିଗଲା ଏବଂ ମଦନରାୟଙ୍କର ସର୍ବସ୍ୱ ଲୁଣ୍ଠନ କରି ନେଲା । ସର୍ବସ୍ୱ କହିଲେ କେବଳ ମଦନରାୟଙ୍କର ଜୀବନ ନା ଧନ ସମ୍ପତ୍ତି କିଛି ? ରାମୁ କହୁଥିଲା- ମଦନରାୟ ଅତୀତରେ କେଉଁଠୁ ପୋତା ମାଲ ପାଇ ବଡ଼ ଲୋକ ହୋଇଥିଲେ । କ'ଣ ଆଉ ସେ ପୋତାମାଲ ହୋଇପାରେ ? ଦିବ୍ୟରଞ୍ଜନ ବାବୁଙ୍କ ନିକଟକୁ ପଠାଇବା ପାଇଁ ପରିକଳ୍ପନା କରିଥିବା ଦାମୀ ପଦାର୍ଥ କ'ଣ ସେଇ ପୋତା ମାଲର ଅଂଶ ବିଶେଷ ?

ସତ୍ୟବ୍ରତ ଗୋଡ଼ ଦୁଇଟା ଟେବୁଲ ତଳେ ଭର୍ତ୍ତି କରି ନଡ଼ୁଥିଲେ ।

ହଠାତ୍ ତାଙ୍କ ଗୋଡ଼ ଟେବୁଲର ଗୋଟାଏ ଅଂଶରେ ବାଜିବାରୁ ଝଣ୍‌କରି ଗୋଟାଏ ଶବ୍ଦ ହେଲା । ସେ ନଇଁପଡ଼ି ଟର୍ଚ୍ଚ ଜାଳି ଦେଖିଲେ, ଟେବୁଲ ତଳେ ଏକ ନିରାପଦ ସ୍ଥାନରେ ଗୋଟିଏ କଣ୍ଟାରେ ଗୋଛାଏ ଚାବି ଝୁଲୁଛି ।

ସତ୍ୟବ୍ରତଙ୍କ ମୁହଁରେ ଆଲୋକର ରେଖା ଫୁଟି ଉଠିଲା ।

ଚାବି ନେଛାଟା ଆଣି ସଙ୍ଗେ ସଙ୍ଗେ ସେ ଟେବୁଲର ଡ୍ରୟାରଟା ଖୋଲିବାକୁ ଚେଷ୍ଟା କଲେ । ଦୁଇ ଚାରିଟା ଚାବି ପରୀକ୍ଷା କରିବା ପରେ ଡ୍ରୟାରଟା ଖୋଲିଗଲା । ଡ୍ରୟାର ଭିତରେ ଅସଜଡ଼ା ହୋଇ ଗୋଛାଏ କାଗଜ ପତ୍ର ପଡ଼ିଥିଲା । ସେ କ୍ଷିପ୍ର ହସ୍ତରେ ସବୁଗୁଡ଼ିକ ଖେଳେଇ ଗଲେ । କିନ୍ତୁ କାହିଁ କ'ଣ ? କେତେଖଣ୍ଡ ମାମୁଲି ଚିଠି । ଗୁଡ଼ାଏ ବାଜେ କାଗଜ । ଗୋଟାଏ ପିତଳ ଆଷ୍ଟ୍ରେ । ଦୁଇ ତିନିଟା ପିତଳ ପେପର ଓଏଟ୍ । ଗୋଟାଏ ପେପର ନାଇଫ୍ । ଆଉ ?

ସତ୍ୟବ୍ରତ ତଳ ଡ୍ରାୟାରଟା ଖୋଲିଲେ ।

ଖଣ୍ଡିଏ ରାଇଟିଂ ପ୍ୟାଡ୍ । ଗୋଟାଏ ପାର୍କର କଲମ । ଗୋଟାଏ ଡେସ୍କ କ୍ୟାଲେଣ୍ଡର । ସତ୍ୟବ୍ରତ ଅତ୍ୟନ୍ତ ଆଗ୍ରହ ସହକାରେ କ୍ୟାଲେଣ୍ଡରର ପୃଷ୍ଠା ପରେ ପୃଷ୍ଠା ଓଲଟେଇ ଗଲେ । କିନ୍ତୁ କୌଣସି ପୃଷ୍ଠାରେ ବି କାଳି ବିନ୍ଦୁଟିଏ ଲାଗି ନାହିଁ । ତା'ହେଲେ ? ମଦନରାୟ ତାଙ୍କ ଚାରିତ୍ରିକ ଇତିବୃତ୍ତି ସମ୍ବନ୍ଧରେ ସଂକେତ ଟିକିଏ ବି ରଖି ଯାଇ ନାହାନ୍ତି ?

ବାଁ ପାଖ ଡ୍ରୟାର ଖୋଲି ଦେଇ ଟର୍ଚ୍ଚ ଜଳାଇଲେ । ମାତ୍ର ଖଣ୍ଡିଏ ମୋଟା କଳା ଖାତା । ଡାଇରୀ ନୁହେଁ ତ ?

ହଁ ଡାଇରୀ, ଡାଇରୀ । ସତ୍ୟବ୍ରତ ଆନନ୍ଦରେ କୁରୁଳି ଉଠିଲେ ।

କିନ୍ତୁ ପୃଷ୍ଠା ପରେ ପୃଷ୍ଠା ଖେଳେଇ ସେ ହତାଶ ହେଲେ। ଡାଇରୀ ଭିତରେ ଲେଖା ହୋଇଛି ଘର ଖର୍ଚ୍ଚ ହିସାବ । ପ୍ରତିଦିନର ଉଦୟ ମହଲର ଗୋଟାଏ ଖର୍ଚ୍ଚ ତାଲିକା ।

: କିତା କିତା ହୋଇ କୌଣସିଟାର କିଛି ହିସାବ ନାହିଁ । ପ୍ରତି ତାରିଖର ପୃଷ୍ଠାରେ ଲେଖା ହୋଇଛି, ଘର ଖରଚ - ଏତେ ଟଙ୍କା । ବିଭିନ୍ନ ତାରିଖରେ ବିଭିନ୍ନ ଅଙ୍କର ସଂଖ୍ୟା ବସିଛି । ସତ୍ୟବ୍ରତ ସେଗୁଡ଼ିକୁ ଅନ୍ୟମନସ୍କ ଭାବରେ ଖେଳେଇ ଗଲେ ।

: ତା'ହେଲେ ମଦନରାୟ ଲୋକଟି ମଧ୍ୟ ସହଜ ନ ଥିଲେ । ସତ୍ୟବ୍ରତ ମନେ ମନେ ଚିନ୍ତା କରୁଥିଲେ । ସେ ହୁଏତ ତାଙ୍କ ଜୀବନର କୌଣସି କଳଙ୍କିତ ସ୍ୱାକ୍ଷର ନ ରଖି ଯିବା ପାଇଁ ସବୁବେଳେ ଚେଷ୍ଟା କରୁଥିଲେ ।

ବାଁ ପାଖର ଦ୍ୱିତୀୟ ଡ୍ରୟାରଟି ଟାଣିଲେ । ଖଣ୍ଡିଏ ଫାଇଲ୍ ଗୋଟିଏ କଳଙ୍କି ଲଗା ପଞ୍ଚିଙ୍ଗ ମେସିନ୍ । ଗୋଟା ବାକ୍ସ ଜେମ୍‌ସକ୍ଲିପ୍ ।

ସତ୍ୟବ୍ରତ ଫାଇଲଟି ଉଠାଇ ନେଲେ । ଖୋଲି ଦେଖିଲେ କେଇଖଣ୍ଡ ଚିଠି । ତାରିଖ ଦେଖିଲେ ଦଶ ବର୍ଷ ତଳର । ସେଗୁଡ଼ିକ ବ୍ୟବସାୟ ସଂକ୍ରାନ୍ତୀୟ । ଧେତ୍ ! ବିରକ୍ତରେ ସତ୍ୟବ୍ରତ ସେ ଡ୍ରୟାରଟା ବନ୍ଦ କରିଦେଲେ । ହାତ ବାଜି ହିସାବ ଖାତାଟା ତଳକୁ ଖସି ପଡ଼ିଲା । ସେଇଟାକୁ ଉଠାଇ ଆଣିବାକୁ ଯାଇ ଦେଖିଲେ, ଖଣ୍ଡିଏ ଚାରି ଚଉକ କାଗଜ ତଳେ ଗଳି ପଡ଼ିଛି ।

ଆଗ୍ରହରେ ଉଠାଇ ନେଲେ ସେ ଖଣ୍ଡିକ । ଖଣ୍ଡିଏ ଚିଠି । ଦୁଇଫର୍ଦ୍ଦ ଏକ୍‌ସର ସାଇଜ୍‌ର ଖାତା କାଗଜରେ ଲେଖା ହୋଇଛି । ସତ୍ୟବ୍ରତ ପଢ଼ିବାକୁ ଆରମ୍ଭ କଲେ, ତଳ ପୃଷ୍ଠାଟା ଦେଖିଲେ। ନା ବୋଧହୁଏ ଚିଠିର ପ୍ରଥମ ପୃଷ୍ଠାଟି ନାହିଁ ।

'ଚାହେଁ, ଆଉ ତ କିଛି ବାଟ ନ ଥିଲା । କିନ୍ତୁ ଏବେ ମୁଁ ଦେଖୁଛି ଘଟଣାର ସ୍ରୋତ ଭିନ୍ନମୁଖୀ ହୋଇ ଉଠିଛି । ଆଉ ମୁଁ ନିଶ୍ଚିନ୍ତ ହୋଇ ପାରୁନାହିଁ । ମନେ ହେଉଛି ମୋତେ ଏଥିପାଇଁ ଗୋଟାଏ କିଛି କଠୋର ବ୍ୟବସ୍ଥା ଅବଲମ୍ବନ କରିବାକୁ ପଡ଼ିବ । ତୁମେ ଏଥିପାଇଁ ମୋତେ ଟିକିଏ ସାହାଯ୍ୟ କରିବ ।

'ପ୍ରଥମେ ପ୍ରଥମେ ମୁଁ ଭାବିଥିଲି ମନର ବିକାର ବୋଲି । କିନ୍ତୁ ଗତ କେତେ ଦିନ ତଳେ ମୁଁ ଘଟଣାଟା ନିଜ ଆଖିରେ ଦେଖିଲି । ଅବଶ୍ୟ ବିଶେଷ ଅନ୍ଧକାର ଯୋଗୁଁ ଠିକ ଚିହ୍ନି ପାରିଲି ନାହିଁ । ତେବେ ମୋର ଯାହା ଅନୁମାନ ସେ ମନୋହର ଛଡ଼ା ଆଉ କେହି ନୁହେଁ । ଆରଥର କାଗଜ ପତ୍ର ଖେଳା ଖେଳି ହୋଇଥିଲା, ଏଥର ଟ୍ରେଜେରୀଟାବି ଖୋଲା ହୋଇଥିଲା, ତେବେ ସେ ସୁବିଧା କରି ପାରିନାହିଁ । ମୁଁ ମଧ୍ୟ ଗତ ଥର ଠାରୁ ଯଥେଷ୍ଟ ସାବଧାନରେ ଅଛି ।

'କିନ୍ତୁ କେଜାଣି କାହିଁକି ନିଜ ଉପରେ ଆଉ ଭରସା ରଖି ପାରୁ ନାହିଁ । ସେଇଥିପାଇଁ ଅନେକ ଦିନ ହେବ ଘର ଛାଡ଼ି କୁଆଡ଼େ ଯାଇ ପାରୁନାହିଁ । ଆମର ଧାରଣା ଭୁଲ୍ ହୋଇଗଲା । ମୋର କାହିଁକି ଦୃଢ଼ ବିଶ୍ୱାସ ହେଉଛି ସେ ମନୋହର । ହୁଏତ କେଉଁଠୁ ସବୁ ସତ୍ୟ ସେ ସଂଗ୍ରହ କରିଛି । ମୁଁ ଏହା ଭିତରେ ବିଷୟ ସମ୍ପତ୍ତିର ଗୋଟାଏ ସୁବନ୍ଦୋବସ୍ତ କରି ଦେଉଛି । କିନ୍ତୁ ଅସଲ ପଦାର୍ଥଟି ମୁଁ ଏଠାରେ ରଖିବାକୁ ଚାହୁଁ ନାହିଁ । ତୁମେ ଏ ଚିଠି ପାଇ ଥରେ ନିଶ୍ଚୟ ଆସ । କେବଳ ସେତିକି ପାଇଁ ମୋତେ ଡର ଲାଗୁଛି । ହୁଏତ ମୋ ମନର ଭ୍ରମ ହୋଇ ପାରିଥାଏ । ସେ ମନୋହର ନ ହୋଇ ପାରିଥାଏ । କିନ୍ତୁ ସନ୍ଦେହ ଥରେ ଯେତେବେଳେ ଜାଗିଛି, ତାକୁ ଦୂର କରିବାକୁ ହେବ । ଏଣେ ଆଉ ସବୁ ଠିକ ଅଛି । ଅବଶ୍ୟ ମନୋହର ନିଜକୁ ପ୍ରମାଣିତ.........

ସତ୍ୟବ୍ରତଙ୍କର ଚିଠି ପଢ଼ା ଶେଷ ...ଇଗଲା । ଦୁଇ ଫାଳ ଯାକ କାଗଜ ସେ ପଢ଼ି ଶେଷ କରିଦେଲେ । ଲେଖାର ମୂଳ ନାହିଁ, କିମ୍ବା ଶେଷ ନାହିଁ । ଚିଠିଟା ଯେ ନିଜେ ମଦନ ରାୟ କାହାକୁ ଲେଖିଛନ୍ତି, ସେ ତାହା ବୁଝି ପାରିଥିଲେ । କିନ୍ତୁ ଚିଠି ଖଣ୍ଡିକ ଏଠାରେ ରହିଗଲା କାହିଁକି ? ଲେଖାର ପ୍ରଥମ ପୃଷ୍ଠାଟା ବା ଗଲା କୁଆଡ଼େ ?

ଯା'ହେଉ, ସତ୍ୟବ୍ରତ ମନେ ମନେ ଖୁସି ହେଲେ ଯେ, ସେ ଏତେବେଳକରେ ନିଶ୍ଚୟ ଗୋଟିଏ ମୂଲ୍ୟବାନ ତଥ୍ୟର ସନ୍ଧାନ ପାଇଛନ୍ତି ।

ସେ ଚିଠିଟିକୁ ଆଉଥରେ ଭଲଭାବରେ ପଢ଼ିଲେ ।

ହୁଁ, ହୁଏତ ଏଇ ଚିଠିଖଣ୍ଡିକ ମଦନ ରାୟ ପ୍ରଥମେ ଦିବ୍ୟରଞ୍ଜନ ମହାପାତ୍ରଙ୍କ ନିକଟକୁ ଲେଖିଥିଲେ । ତା'ପରେ ଏ ଦୁଇ ପୃଷ୍ଠାରେ ବୋଧହୁଏ ଅଦଳ ବଦଳ କରିବାକୁ ଭାବି ଆଉ ଥରେ ଲେଖିଛନ୍ତି । ଯାହା ଫଳରେ ଏ ଦୁଇଟି ପୃଷ୍ଠା ଆଉ କାମରେ ଲାଗିନାହିଁ । ଏହାକୁ ହୁଏତ ନଷ୍ଟ କରିବାକୁ ସେ ଭୁଲି ଯାଇଛନ୍ତି । ଯଦି ତାହାହିଁ ହୁଏ, ତେବେ ଅଳକେଶ କ'ଣ ଏଇ ଚିଠିର 'ଅସଲ ପଦାର୍ଥ'ଟିର ବାହକ ହେବା ପାଇଁ ଆସିଛି ? ହୁଏତ ହୋଇପାରେ । କିନ୍ତୁ ଏହି ପରିତ୍ୟକ୍ତ ଚିଠିର ଦୁଇଟି ପୃଷ୍ଠା ଯାହା ଇଙ୍ଗିତ ଦେଉଛି, ସେଥିରୁ ମନେ ହେଉଛି ମଦନ ରାୟ ଏକ ବିଚାଟ ଚକ୍ରାନ୍ତର ଚକ୍ରୀ ଥିଲେ ।

ମନୋହର ପୁଣି କିଏ ? ଯାହାଙ୍କୁ ମଦନ ରାୟ ତାଙ୍କର ସନ୍ଦେହର ପାତ୍ର ବୋଲି ଧରି ନେଇଛନ୍ତି । ଯାହାପାଇଁ ତାଙ୍କ ପ୍ରାଣରେ ଆତଙ୍କ ସୃଷ୍ଟି ହୋଇଛି । ଯାହାପାଇଁ ମଦନ ରାୟ ସଦା ସତର୍କ ରହୁଥିଲେ । କିଏ ସେହି ମନୋହର ? ଶେଷ ପର୍ଯ୍ୟନ୍ତ ସେଇ କ'ଣ ମଦନ ରାୟଙ୍କୁ ହତ୍ୟାକରି କାର୍ଯ୍ୟୋଦ୍ଧାର କରି ଚାଲି ଯାଇଛି ? ସତ୍ୟବ୍ରତ ନିବିଷ୍ଟ ମନରେ ଚିନ୍ତା କରୁଥିଲେ ।

ବାହାରେ କାହାର ମୃଦୁ ପଦଶବ୍ଦ ଶୁଣି ସତ୍ୟବ୍ରତ ସଚେତନ ହୋଇ ଉଠିଲେ । ଲଣ୍ଠନର ଆଲୋକ ମଳିନ କରିଦେଇ ବାହାରକୁ ବାହାରି ଗଲେ ।

ଅନ୍ଧକାରରେ ଯେପରି କାହାର ଛାୟା ସେ ଦେଖିବାକୁ ପାଇଲେ । ଶିଡ଼ିର ପାହାଚ ପରେ ପାହାଚ ଅତିକ୍ରମ କରି ଛାୟା ମୂର୍ତ୍ତିଟି ପଛରେ ଆଗେଇ ଗଲେ । କିନ୍ତୁ ତଳେ ପହଞ୍ଚି ଆଉ କାହାରି ସତ୍ତା ଅନୁଭବ କରି ପାରିଲେ ନାହିଁ । ତା'ହେଲେ କେହି କ'ଣ ତାଙ୍କର କାର୍ଯ୍ୟକଳାପକୁ ଲକ୍ଷ୍ୟ କରୁଥିଲା !

ତଳେ ଥିବା ପ୍ରତ୍ୟେକଟି ଘରର ଦୁଆର ମୁହଁରେ ଯାଇ ସେ କାନ ଡେରିଲେ । ଧୀରେ କବାଟ ଖୋଲି ଦେଖିଲେ, ଭିତରେ କେହି କଥାବାର୍ତ୍ତା ହେବାର ଶୁଣିଲେ ନାହିଁ, ଅଥବା କୌଣସି ଘରର ଦରଜା ଖୋଲିଲା ନାହିଁ ।

ସତ୍ୟବ୍ରତ ବ୍ୟର୍ଥ ମନରେ ଫେରି ଆସୁଥିଲେ । ହଠାତ୍ ଦୂରରୁ ଗୋଟାଏ କାନଫଟା ଚିତ୍କାର ଶୁଣାଗଲା । କୌଣସି ଏକ ରାତ୍ରିଟ୍ରେନ୍ ବୋଧହୁଏ ପାସ୍‌କରି ଯାଉଥିଲା । ଟ୍ରେନ୍‌ର ହୁଇସିଲ୍ ସଙ୍ଗେ ସଙ୍ଗେ ଚଳନ୍ତ ଗତି ଏତେ ଉଗ୍ରହୋଇ ଉଠିଲା ଯେ, ସତ୍ୟବ୍ରତଙ୍କର ମନେହେଲା ଟ୍ରେନଟା ଯେପରି ତାଙ୍କରି ପାଖଦେଇ ଚାଲିଯାଉଛି ଆଉ ସେ ପ୍ଲାଟଫର୍ମ ଉପରେ ଠିଆହୋଇ କମ୍ପନ ଅନୁଭବ କରୁଛନ୍ତି । ରେଲୱେ ଷ୍ଟେସନ ଉଦୟ ମହଲକୁ ଦୁଇମାଇଲ ହେଲେ ମଧ୍ୟ ହୁଏତ ଲାଇନଟ ... ମହଲର ଖୁବ୍ ପାଖଦେଇ ଯାଇଛି । ଟ୍ରେନ୍ ଚାଲି ଯାଇଥିଲା । ଆବାଜ୍ ମିଳେ... ...ଲା । ସତ୍ୟବ୍ରତ ରାତ୍ରିଚର ପରି ଠିଆ

ହୋଇଥିଲେ । ଏହାପରେ କ'ଣ ତାଙ୍କର କର୍ତ୍ତବ୍ୟ ? ଫେରିଯାଇ ବିଶ୍ରାମ କରିବେ ?

କିନ୍ତୁ କାହାର ପାଦଶବ୍ଦ ସେ ଶୁଣିଲେ ? କାହାର ଛାୟାମୂର୍ତ୍ତି ମୁହୂର୍ତ୍ତକ ପାଇଁ ତାଙ୍କ ଆଖି ଆଗ ଦେଇ ମିଳେଇ ଗଲା ? ସେଇଟା ତ ଆଉ ମନର ଭ୍ରମ ନୁହେଁ ।

ସତ୍ୟବ୍ରତ ଫେରି ଆସୁଥିଲେ ।

ପୁଣି କ'ଣ ଭାବି ଲେଉଟି ଗଲେ । ତଳ ମହଲାର ଶେଷ ଭାଗରେ ବଗିଚାଟି ପାର ହୋଇଯିବା ପରେ ଗୋଟିଏ ଛୋଟ ଘର ଥିବାର ସେ ଲକ୍ଷ୍ୟ କରିଥିଲେ । ଘରଟି କୁଞ୍ଜଲତାରେ ଆଚ୍ଛାଦିତ ହୋଇ ରହିଥିଲା । ସେଇଟ ଯେ ଗୋଟାଏ ପରିତ୍ୟକ୍ତ ଘର ହୋଇଥିବ, ଦୂରରୁ ଦେଖି ସତ୍ୟବ୍ରତଙ୍କ ମନରେ ସେ ମଧ୍ୟ ସେଇ ଘରଟାକୁ ପରୀକ୍ଷା କରିବା ପାଇଁ ଭୁଲିଲେ ନାହିଁ ।

ଦୁଆର ମୁହଁରେ ଠିଆହୋଇ ଦେଖିଲେ, ଘର ଭିତରୁ ବାହାରକୁ ସାମାନ୍ୟ ଆଲୋକ ଦିଶୁଛି । ତା'ହେଲେ ?...

ସତ୍ୟବ୍ରତ ଧୀର ପଦକ୍ଷେପରେ ଆଗେଇ ଗଲେ । କବାଟ ଫାଙ୍କରେ ଭିତରକୁ ଚାହିଁଲେ । ମୁଣ୍ଡ ତାଙ୍କର ଗୋଳମାଳ ହୋଇଗଲା । ଉଦୟ ମହଲ ଭିତରେ ଏପରି ଯେ ଗୋଟିଏ ଘର ଅଛି, ସେଇଟା ତାଙ୍କ ଧାରଣାର ବାହାରେ ଥିଲା ।

ଘରଟା ଯେ ଶୂନ୍ୟ, ସତ୍ୟବ୍ରତ ବାହାରୁ ଲକ୍ଷ୍ୟକରି ପାରି ନ ଥିଲେ । କିନ୍ତୁ ଏପରି ଏକ ଦୃଶ୍ୟ ଦେଖିବାପାଇଁ ସେ ଆଦୌ ଚିନ୍ତା କରି ପାରି ନ ଥିଲେ । ତେଣୁ ଭିତରକୁ ପ୍ରବେଶ କରିବେ କି ନାହିଁ, ସେଥିପାଇଁ ମନରେ ଦ୍ୱନ୍ଦ୍ୱ ସୃଷ୍ଟ ହୋଇ ଯାଇଥିଲା ।

ଦରଜା ଖୋଲାଥିଲା । ଧୀରେ ଦରଜା ଖୋଲି ସତ୍ୟବ୍ରତ ଭିତରେ ପ୍ରବେଶ କଲେ, ଘରେ ଏସେନ୍ସର ଗନ୍ଧ । ନିମିଳିତ ଆଲୋକ ଶିଖାକୁ ପ୍ରଜ୍ଜ୍ୱଳିତ କରିଦେଲେ । ଘରୁ ଛାୟା ଅପସରି ଗଲା । ଆଲୋକ ଶିଖା ଭିତରେ ଫୁଟି ଉଠିଲା ଗୃହର ସ୍ୱରୂପ ।

ଘରଟି ସୁନ୍ଦର ଭାବରେ ସଜ୍ଜିତ । ଚାରି କାନ୍ଥରେ ଚାରୋଟି ଉଲଗ୍ନ ଓ ଅର୍ଦ୍ଧଉଲଗ୍ନ ତୈଳଚିତ୍ର । ଗୋଟିଏ ପଲଙ୍କ । ଦୁଇଟି ଆଲମାରୀ । ଗୋଟିଏ ଆଲମାରୀରେ ଦେଶୀ, ବିଦେଶୀ ପାନୀୟ ।

ସତ୍ୟବ୍ରତ ଅବାକ୍ ହୋଇଗଲେ । ଚଟାଣ ଉପରେ ଗୋଟିଏ କାଶ୍ମୀରୀ କାର୍ପେଟ ବିଛା ହୋଇଥିଲା । ଗଦି ଉପରେ ଯେଉଁ ମଣିପୁରୀ ଚଦରଟି ବିଛା ହୋଇଥିଲା, ତାହା କିପରି ବିତ୍ରସ୍ତ ମନେ ହେଉଥିଲା । ଦୁଇଟା ମୋଟା ଲମ୍ବା ତକିଆ, ଗୋଟାକ ଉପରେ ଗୋଟାଏ ପଡ଼ିଥିଲା । ଏକ ବୋତଲ ବିଦେଶୀ ପାନୀୟ ସମାପ୍ତ ପ୍ରାୟ ସେହି ଗଦି ଉପରେ ଗଡୁଥିଲା । ଗୋଟିଏ ପାନପାତ୍ର ପାନୀୟରେ ଭର୍ତ୍ତିହୋଇ ଗଦି ପାଖ କାର୍ପେଟ୍ ଉପରେ ରଖା ହୋଇଥିଲା ।

ସତ୍ୟବ୍ରତ ସବୁଗୁଡ଼ିକ ଉପରେ କୌତୁହଳୀ ଆଖି ବୁଲେଇ ନେଇ, ସ୍ତବ୍ଧ ହୋଇ ଠିଆ ହୋଇଥିଲେ ।

ଏପରି ଏକ ପ୍ରମୋଦ ଗୃହ ସେ କ'ଣ ଉଦୟ ମହଲରେ କଳ୍ପନା କରି ପାରିଥିଲେ ? ମଦନ ରାୟଙ୍କର ମୃତ୍ୟୁ ଗତ ରାତ୍ରିରୁ ଯଦିବା ହୋଇ ଯାଇଛି, ଆଜି ତେବେ ଏ ଗୃହକୁ କାହାର ଶୁଭାଗମନ କଥା ସେ ଚିନ୍ତା କରିବେ ?

ସଦ୍ୟ ଏସେନ୍ସର ଗନ୍ଧ । ଅର୍ଦ୍ଧ ସମାପ୍ତ ପାନୀୟ, ଆଲୋକର ସ୍ତିମିତ ଶିଖା,

ଏସବୁ ପରେ ସତ୍ୟବ୍ରତ କ'ଣ ଭାବିବେ ଯେ ଆଜି ଏଇ ଗୃହକୁ କେହି ଅତିଥି ଆସି ନ ଥିଲେ ?

ଧୀରେ ସତ୍ୟବ୍ରତଙ୍କ ମୁଣ୍ଡ ଭାରି ହୋଇ ଆସୁଥିଲା ! କିଏ ? କିଏ ଆସି ଅଳ୍ପ ସମୟ ପୂର୍ବରୁ ଏଠାରେ ଆସନ ଜମାଇଥିଲା ? ଏ ଗୃହର ଅଧିବାସୀମାନଙ୍କ ମଧ୍ୟରେ ଏକମାତ୍ର ଉମାପତିକୁ ଛାଡ଼ିଦେଲେ ଆଉ କିଏ ଅଛି ଏ ଘରର ଅତିଥି ହେବାପାଇଁ, କିନ୍ତୁ ଉପାପତି......

ହଠାତ୍ ସତ୍ୟବ୍ରତଙ୍କ ଆଖି କୌଣସି ଏକ ବସ୍ତୁ ପ୍ରତି ଆକର୍ଷିତ ହେଲା । ଅଳ୍ପ ଦୂରରେ, ଚଦରର ଗୋଟିଏ ଭାଙ୍ଗ ଭିତରୁ ସାମାନ୍ୟ ଦିଶୁଥିଲା । ସେ ନଇଁପଡ଼ି ସେଇଟିକୁ ଉଠେଇ ଆଣିଲେ । ଗୋଟିଏ ଗୋଲାପ ଫୁଲ । ଗାଢ଼ ରକ୍ତବର୍ଣ୍ଣ ।

ସତ୍ୟବ୍ରତଙ୍କ ସମଗ୍ର ଶରୀର ଯେପରି ରୋମାଞ୍ଚିତ ହୋଇ ଉଠିଲା । ତାଙ୍କର ମନେ ପଡ଼ିଲା ସନ୍ଧ୍ୟାବେଳର କଥା । ଗୋଟିଏ ରକ୍ତ ଗୋଲାପ ରତ୍ନମଞ୍ଜରୀ ଦେବୀ ତାଙ୍କ ଉପରକୁ ଫିଙ୍ଗି ଦେଇଥିଲେ । ସେଇଟିକୁ ସେ ଅଳକେଶର କୋଟ୍ କଲରରେ ଲଗେଇ ଦେଇଥିଲେ ।

ଏ ଫୁଲଟା ତେବେ କ'ଣ...

ପରଦିନ ସକାଳେ ।

ଅଳକେଶ ସହିତ ସତ୍ୟବ୍ରତ ଚା' ଟେବୁଲରେ ବସିଥିଲେ ।

: ମତେ ଏବେ ଫେରିଯିବା ପାଇଁ ଅନୁମତି ଦିଅନ୍ତୁ ମି. ମହାପାତ୍ର ।

ସତ୍ୟବ୍ରତ ହସିଲେ । କହିଲେ : ଅଳକେଶ ବାବୁ ! ମୁଁ ମୋ ଜୀବନରେ ବହୁତ ଲୋକଙ୍କ ସଂସ୍ପର୍ଶରେ ଆସିଛି, କିନ୍ତୁ ଆପଣଙ୍କ ପରି ଜଣେ...

: ମାନେ ?

: ଆପଣ କାଲି ରାତିରେ ଲୁଚିଲୁଚି ଉଦୟ ମହଲରୁ ଚାଲିଯିବାକୁ ଚେଷ୍ଟା କାହିଁକି କରୁଥିଲେ ?

: ମୁଁ, କାଲି ରାତିରେ.....ଏ ଆପଣ କ'ଣ କହୁଛନ୍ତି ?

: ନ ହେଲା ଏବେ, ଇତି ପୂର୍ବରୁ ଆପଣ ଉଦୟ ମହଲକୁ କେତେଥର ଆସିଥିଲେ ?

ମୁଁ ଆଉ ଉଦୟ ମହଲ ? ଅଳକେଶ ସାମାନ୍ୟ ହସିବାକୁ ଚେଷ୍ଟା କଲା । କହିଲା, ମୁଁ ଦେଖୁଛି ଆପଣଙ୍କର ସଂଦେହ ମୋ ଉପରେ ସଂପୂର୍ଣ୍ଣ ରୂପେ ବଢ଼ି ଯାଇଛି ।

: ଆପଣ ମତେ ଶିଶୁ ମନେ କରନ୍ତୁ ନାହିଁ ଅଳକେଶବାବୁ । କାଲି ରାତିରେ, ମୋ'ଠାରୁ ବିଦାୟ ନେଇ ଯିବା ପରେ କ'ଣ କ'ଣ କରିଥିଲେ, କେଉଁଠାକୁ ଯାଇଥିଲେ, ତା'ର ଗୋଟିଏ ସତ୍ୟ ବିବରଣୀ ମୋ ଆଗରେ ଦେଇ ପାରିବେ ?

: ତା' ହେଲେ ଆପଣ ମୋର କୌଣସି କଥାକୁ ବିଶ୍ୱାସ କରି ପାରୁ ନାହାନ୍ତି ?

ସେତିକିବେଳେ ସତ୍ୟବ୍ରତ ତାଙ୍କ ପକେଟରୁ ଗୋଟିଏ ମଉଳା ଗୋଲାପ ବାହାର କରି ଟେବୁଲ ଉପରେ ଥୋଇଲେ । ଅଳକେଶର ଆଖି ବିଦ୍ୟୁତ୍ ବେଗରେ ନିଜର କୋଟ୍‌କଲରର ଆଡ଼େ ବୁଲିଯାଇ ଫେରି ଆସିଲା । ଶୂନ୍ୟ । ସତ୍ୟବ୍ରତଙ୍କ ନଜରରୁ ତାହା ଏଡ଼ାଇଲା ନାହିଁ ।

: କିପରି ବିଶ୍ୱାସ କରିବି କୁହନ୍ତୁ ! ଆପଣ ଯଦି ସବୁବେଳେ ମୋତେ ଏଡ଼େଇ ଚଳନ୍ତି ତେବେ ତ ସମସ୍ୟାର ସମାଧାନ ହେବ ନାହିଁ ।

: ମୁଁ ଯାହା କହୁଛି, ଆପଣ ମୋ ଠାରୁ ତା' ଅପେକ୍ଷା ବେଶି ଆଶା ନ କରିବାହିଁ ଭଲ ।

: ଓଃ ! ସତ୍ୟବ୍ରତ ତୀକ୍ଷ୍ଣ ନୟନରେ ଥରେ ଅଳକେଶ ଆଡ଼କୁ ଚାହିଁଲେ । କହିଲେ : ବେଶ୍ ! ମୁଁ ଆପଣଙ୍କୁ ଆଉ ଆଦୌ ବିରକ୍ତ କରିବି ନାହିଁ ।

ରାମୁ ଚା' ଜଳଖିଆ ଧରି ପ୍ରବେଶ କଲା ।

କାଲି ଉମାପତି ବାବୁ ଫେରିଛନ୍ତି ? ସତ୍ୟବ୍ରତ ରାମୁକୁ ପ୍ରଶ୍ନ କଲେ ।

: ହଁ ।

: କେତେବେଳେ ଫେରିଲେ ?

: ମୁଁ କାଲି ଖାଇବା ପାଇଁ ଡାକିବାକୁ ଗଲାବେଳେ ସେ ତ ଘରେ ଥିଲେ ।

: ହୁଁ, ଆଉ ମଳିନା ?

: ଏତେବେଳ ଯାଏ ଉଠି ନାହାନ୍ତି । ସବୁଦିନ ସେ ପ୍ରାୟ ନ'ଟା ଦଶଟା ବେଳକୁ ବିଛଣା ଛାଡ଼ନ୍ତି ।

ସତ୍ୟବ୍ରତ ଚା' ଖିଆରେ ମନ ନିବେଶ କଲେ । ରାମୁ ଆଦେଶ ଅପେକ୍ଷାରେ ଠିଆ ହୋଇଥିଲା ।

ଦୁଆର ମୁହଁରେ, ଗୁଣୁ ଗୁଣୁ କଣ୍ଠର ସ୍ୱର ଶୁଣାଗଲା ।

ସତ୍ୟବ୍ରତ ମୁଣ୍ଡ ଟେକି ଚାହିଁଲେ, ରତ୍ନମଞ୍ଜରୀ ଦେବୀ । ମୁହଁରେ ହସର ଢେଉ ଖେଳାଇ ଦୁଆର ମୁହଁରେ ଠିଆ ହୋଇଛନ୍ତି । ସତ୍ୟବ୍ରତ ଆଖିରେ ଆଖି ମିଶିବା ମାତ୍ରେ ସଙ୍ଗେ ସଙ୍ଗେ ସେ ଲେଉଟି ଗଲେ ।

ସତ୍ୟବ୍ରତ ସେଇ ମୁହୂର୍ତ୍ତରେ ଚେଆର ଛାଡ଼ି ଉଠିଲେ । ରତ୍ନମଞ୍ଜରୀଙ୍କ ଗୁଣୁ ଗୁଣୁ କଣ୍ଠସ୍ୱର ଓ ଚଳନ ଭଙ୍ଗୀରେ ମଧ୍ୟ ଛନ୍ଦ ଥିଲା ।

ରତ୍ନମଞ୍ଜରୀ ଦେବୀ ଉପରକୁ ଉଠିଲେ । ପ୍ରଥମେ ସେ ମଦନ ରାୟଙ୍କ ଶୟନ କକ୍ଷରେ ପ୍ରବେଶ କଲେ । ସେଠାରେ କେତୋଟି ମୁହୂର୍ତ୍ତ । ତା'ପରେ ମଳିନା ଘରର ଦୁଆର ଠେଲିଲେ, ଭିତରୁ ବନ୍ଦ ଥିଲା । ସେଉଠୁ ସେ ଦମୟନ୍ତୀ ଦେବୀଙ୍କ ଘରେ ପ୍ରବେଶ କଲେ । ଗୁଣୁ ଗୁଣୁ କଣ୍ଠସ୍ୱର ବନ୍ଦ ହୋଇ ନଥିଲା । ତା'ପରେ ସେ ଉମାପତି ରୁମ୍‌ର ଦୁଆର ଠେଲିଲେ । ସେଠାରୁ ଲେଉଟି ସତ୍ୟବ୍ରତଙ୍କ ମୁହାଁମୁହିଁ ହୋଇଗଲେ ।

ରତ୍ନମଞ୍ଜରୀ ଦେବୀ ହସିଦେଲେ ଟିକିଏ । ବାଟ ଭାଙ୍ଗି ଚାଲି ଯାଉଥିଲେ । ସତ୍ୟବ୍ରତ କିନ୍ତୁ ବାଟ ଓଗାଳି ଠିଆ ହୋଇଗଲେ ।

ରତ୍ନମଞ୍ଜରୀ ମୁହଁରୁ ଏକ ବିକଟ ହାସ୍ୟଧ୍ୱନି ଫୁଟି ଉଠିଲା !

ସତ୍ୟବ୍ରତ ଭୟରେ ବାଟ ଛାଡ଼ିଦେଲେ ।

ରତ୍ନମଞ୍ଜରୀ ଦେବୀ ପୁଣି ଟିକିଏ ତାଙ୍କର ସ୍ୱଭାବ ସୁଲଭ ହସ ହସି ଦେଇ ଏକ ପ୍ରକାର ଦଉଡ଼ି ଦଉଡ଼ି ପଳାଇଲେ ।

ଏପରି ଏକ ବିକଟ ହାସ୍ୟଧ୍ୱନି ଶୁଣି ଉମାପତି ତା' ରୁମ୍‌ରୁ ବାହାରି ଆସିଥିଲା ।

ସତ୍ୟବ୍ରତ ପଚାରିଲେ : ଏ କ'ଣ କେବେ କାହା ସହିତ କଥା କହନ୍ତି ନାହିଁ ?

: ମୁଁ ଯେତେବେଳେ ପ୍ରଥମେ ଏଠାକୁ ଆସିଥିଲି, ସେତେବେଳେ କେବେ କେମିତି କାହା ସହିତ ଏଣୁ ତେଣୁ କଥାବର୍ତ୍ତା ପଦେ ଅଧେ କରୁଥିବାର ଶୁଣିଥିଲି । କିନ୍ତୁ ଗତ ଦୁଇତିନି ବର୍ଷ ହେବ ମୁଁ ତାଙ୍କ ମୁହଁରୁ ପଦେ କଥା ବି ଶୁଣିନାହିଁ ।

କିନ୍ତୁ ରତ୍ନମଞ୍ଜରୀ ଦେବୀ ଯେ ପାଗଳ, ସେ କଥା ତାଙ୍କର ଚାଲି ଚଳନ, ହାବଭାବରୁ ତ ଆଦୌ ଜଣା ଯାଉନାହିଁ । ଏହା ଠିକ୍ ଯେ ସେ କଥା କହୁ ନାହାନ୍ତି, ତା'ବୋଲି ତାଙ୍କୁ ପାଗଳ କହିବାଟା କ'ଣ ସମୀଚୀନ ହେଉଛି ?

: ମୋ ମତରେ ତ ନୁହେଁ । ଉମାପତି କହିଲା, କାରଣ ମୁଁ ଲକ୍ଷ୍ୟ କରିଛି, ଏ ଘରର ପ୍ରତ୍ୟେକଟି ମଣିଷ ପ୍ରତି, ପ୍ରତିଟି ଜିନିଷରେ ତାଙ୍କର ଯଥେଷ୍ଟ ମାୟା ଅଛି । ସେ ପ୍ରତିଦିନ ସକାଳୁ ପ୍ରତ୍ୟେକ ରୁମ୍‌ରେ ବୁଲି ବୁଲି ପ୍ରତିଟି ଅଧିବାସୀଙ୍କୁ ଦେଖି ଆସନ୍ତି । ଶୂନ୍ୟ ରୁମ୍‌ଗୁଡ଼ିକରେ ମଧ୍ୟ ବୁଲି ବୁଲି ଦେଖନ୍ତି । କେଉଁଠି ମଇଳା ଟିକିଏ ଲାଗିଥିବାର ଦେଖିଲେ, ନିଜ ଲୁଗା କାନିରେ ଝାଡ଼ି ଦିଅନ୍ତି । ଆଉ ଯଦି କାହାର ଦେହ ମୁଣ୍ଡ ଖରାପ ହୁଏ, ତେବେ ସେ ତା' ପାଖରେ ଦିନ ରାତି ବସି ରହନ୍ତି । କେତେବେଳେ ଆଉଁଶି ଦିଅନ୍ତି, କେତେବେଳେ ବିଞ୍ଚି ଦିଅନ୍ତି । ନହେଲେ ଚୁପ୍‌ଚାପ ଶେଯ ପାଖରେ ବସି ଥାଆନ୍ତି । କିନ୍ତୁ କଥା ପଦେ କାହାରିକୁ କୁହନ୍ତି ନାହିଁ ।

: ତା'ହେଲେ ତାଙ୍କ ମନର ଚେତନା ଏତେ ଦିନଯାଏ ସଜୀବ ଅଛି ?

: ମୋର ତ ସେଇଆ ମନେହୁଏ ।

: ସତ୍ୟବ୍ରତ ପୁଣି ଟିକିଏ ଅନ୍ୟମନସ୍କ ହୋଇ ପଡ଼ିଲେ । ଆଚ୍ଛା ଉମାପତି ବାବୁ

: ଆଜ୍ଞା !

ମଦନ ରାୟଙ୍କର ମୃତ ଦେହ ଦେଖି ରତ୍ନମଞ୍ଜରୀ ଦେବୀଙ୍କର କୌଣସି ଭାବାନ୍ତର ଆପଣ ଲକ୍ଷ୍ୟ କରିଥିଲେ କି ?

: ନା, ନା ସେସବୁ ଦିଗରୁ ସେ ନିର୍ବିକାର । ମୁଁ ଦେଖିଚି, ମାମୁଙ୍କ ମୃତ ଦେହ ଦେଖିବା ପାଇଁ ସେ ଛୁଟି ଆସିଥିଲେ । କଣ୍ଠରେ ତାଙ୍କର ସେହି ମୃଦୁ ସଂଗୀତର ଝଙ୍କାର ଥିଲା । ଆଖିରେ କିନ୍ତୁ ବିସ୍ମୟ ନ ଥିଲା କିମ୍ବା ମୁହଁରେ ଉତ୍କଣ୍ଠା ନ ଥିଲା । ମାମୁଙ୍କ ମୃତ ଦେହ ଦେଖିସାରି ସେ ସମସ୍ତଙ୍କ ଆଡ଼କୁ ଚାହିଁଲେ । ମୋ ଆଖି ସହିତ ଯେତେବେଳେ ତାଙ୍କର ଆଖି ମିଶିଲା, ସେତେବେଳେ ସେ ଫିକ୍‌କରି ହସି ଦେଇ ଚାଲିଗଲେ ।

: ହୁଁ, ଦିନଯାକ ସେ ତା'ହେଲେ କ'ଣ କରନ୍ତି ?------

: ଇମିତି ଉଦୟ ମହଲ ଯାକ ବୁଲୁଥାନ୍ତି । ଦିନରେ ଅନ୍ତତଃ ତିନିଥର ସେ ପ୍ରତ୍ୟେକ ଘରକୁ ଯାଇ ଦେଖି ଆସନ୍ତି ।

: ଆଉ ଖାଇବା ବେଳେ ?

: ନିଜେ ସେ ରୋଷେଇ ଘରେ ଯାଇ ହାଜର ହୁଅନ୍ତି । କେହି ତାଙ୍କୁ ଡାକିବାକୁ ଯାଏ ନାହିଁ, କିମ୍ବା କେବେ ସେ ଡେରିକରି ଯାଆନ୍ତି ନାହିଁ । ଘଡ଼ି କଣ୍ଟା ଧରିଲାପରି ସେ କଣ୍ଟାଏ କଣ୍ଟାଏରେ ଯାଇ ପହଞ୍ଚନ୍ତି ।

: ତା'ହେଲେ ତାଙ୍କର ଯଥେଷ୍ଟ ଚେତନା ଶକ୍ତି ଅଛି । ହୁଏତ ଚେଷ୍ଟା କଲେ ସେ କଥାବାର୍ତ୍ତା ମଧ୍ୟ କରିବେ ।

: ମୋର ସେଇଠି କିନ୍ତୁ ସନ୍ଦେହ, କଥାବାର୍ତ୍ତା ସେ କାହାସହିତ କରିବେ ବୋଲି ମନେ ହେଉନାହିଁ ।

: ଆଚ୍ଛା ଉମାପତି ବାବୁ ?

: ଆଜ୍ଞା ।

ଆପଣ କାଲି ଉଦୟ ମହଲ ଛାଡ଼ି କୁଆଡ଼େ ଯାଇଥିଲେ ?

: ନାଇଁତ, ମୁଁ କାଲି କୁଆଡ଼େ ଯାଇ ନ ଥିଲି !

: ରୁମ୍ ବାହାରେ କୁଆଡ଼େ ଆପଣ ରୁହନ୍ତି ?

: ବେଳେବେଳେ ଛାତରେ ଯାଇ ବସେ । ମୋତେ ଛାତ ଉପରେ ବସିରହି ଫାଙ୍କା ଆକାଶକୁ ଚାହିଁ ରହିବାକୁ ଭାରି ଭଲ ଲାଗେ ।

: ହୁଁ, ଆପଣ ତା'ହେଲେ କାଲି ଛାତ ଉପରେ କେତେ ସମୟ କଟାଇଥିଲେ ?

: ଅନେକ ସମୟ, ପ୍ରାୟ ପାଞ୍ଚ ଛଅ ଘଣ୍ଟା ।

: ଏତେ ସମୟ ସେଠାରେ କ'ଣ କରୁଥିଲେ ?

: ଆରାମ ଚେଆର ଉପରେ ଶୋଇ ଶୋଇ ମୋର ଅନ୍ଧକାର ଭବିଷ୍ୟତ କଥା ଚିନ୍ତା କରୁଥିଲି ।

: ଆପଣ ଏତେ ଅଳ୍ପ ବୟସରୁ ଏପରି ନିରାଶବାଦୀ ହେଲେ କାହିଁକି ?

ଉମାପତି ମୁହଁରେ ମଳିନ ହାସ୍ୟରେଖା ଟିକିଏ ଦେଖାଗଲା । ସେ ଏକ ଦୀର୍ଘଶ୍ୱାସ ତ୍ୟାଗକରି କହିଲା : ଛାଡ଼ନ୍ତୁ, ସେଗୁଡ଼ା ନିତାନ୍ତ ଘରୋଇ କଥା । ଆଚ୍ଛା ମିଃ ମହାପାତ୍ର । ମୋତେ ଆପଣ ଗୋଟାଏ ପ୍ରଶ୍ନର ଉତ୍ତର ଦେଇ ପାରିବେ ?

: କ'ଣ ପଚାରନ୍ତୁ ।

: ମାମୁଙ୍କର ଏହି ହତ୍ୟା ରହସ୍ୟ ତଦନ୍ତ ଆଉ କେତେଦିନରେ ଶେଷ ହେବ ?

: କାହିଁକି କହିଲେ, ଆପଣ ଏପରି ଆତଙ୍କିତ ହୋଇ ଉଠିଛନ୍ତି କାହିଁକି ?

: ନା ନା ମିଃ ମହାପାତ୍ର, ମୁଁ ଆତଙ୍କିତ ନୁହେଁ, ମୁଁ ମୁକ୍ତି ଚାହେଁ, ମୁକ୍ତି ।

: ଆପଣ ମୁକ୍ତି ଚାହାନ୍ତି ମାନେ ?

: ପୋଲିସ୍ ଇନିସ୍ପେକ୍ଟର ମି. ସାହାଣୀ ଆସି ପ୍ରବେଶ କଲେ । ତାଙ୍କ ମୁହଁରେ ଏକ ବ୍ୟଗ୍ରତାର ଚିହ୍ନ ଫୁଟି ଉଠିଥିଲା ।

: ଖବର କ'ଣ ସାହାଣୀବାବୁ ?

ପୋଲିସ ଇନିସ୍ପେକ୍ଟର ଇଙ୍ଗିତରେ ତାଙ୍କୁ ଅନୁସରଣ କରିବାକୁ କହିଲେ ।

ସତ୍ୟବ୍ରତ ଚେଆର ଛାଡ଼ି ଇନିସ୍ପେକ୍ଟରଙ୍କ ପଛେ ପଛେ ତଳକୁ ଓହ୍ଲେଇ ଆସିଲେ ।

ଏକ ନିରୋଳା ସ୍ଥାନରେ ଉପସ୍ଥିତ ହୋଇ ପୋଲିସ୍ ଇନିସ୍ପେକ୍ଟର କହିଲେ : କାଲି ରାତିରେ ଆପଣଙ୍କର ହତ୍ୟାକାରୀ ସହିତ ଭେଟ ହୋଇଥିଲା?

: ମାନେ ?

: କାଲି ରାତିରେ ସେଇ ସଇତାନଟା ପୁଣି ଉଦୟ ମହଲକୁ ଆସିଥିଲା ।

କ୍ଷଣକପାଇଁ ସତ୍ୟବ୍ରତଙ୍କ ଦେହରେ ବିଦ୍ୟୁତ୍ ପ୍ରବାହ ଖେଳିଗଲା ।

: ଅମିର୍ ଆଲି ଆଜି ସକାଳୁ ଯାଇ ମୋତେ ଦେଖାକରି ସେଇ ଖବର କହିଲା । ଇନିସ୍ପେକ୍ଟର କହିଲେ ।

: ତା'ହେଲେ ପୁଣି ସେ ଅମିର ଆଲିର ଗାଡ଼ିରେ ଚଢ଼ି ଆସିଥିଲା ?

: ଅମିର ଆଲି ତ ମୋତେ ସେଇଆ କହିଲା ।

: କେତେ ସମୟ ସେ ଉଦୟ ମହଲରେ ଥିଲା ?

: ପ୍ରାୟ ଘଣ୍ଟାଏ ଠାରୁ ଅଧିକ ହେବ ।

: ତା'ପରେ ?

ସବୁଥର ପରି ସେ ଫେରି ଯାଇଥିଲା ।

: ହଁ, ସତ୍ୟବ୍ରତ ନୀରବ ରହିଲେ ।

: ଆପଣ କାଲି ରାତିରେ କୌଣସି ପ୍ରକାର ଆଭାସ ପାଇ ନାହାନ୍ତି ?

ପାଇଥିଲି, କିନ୍ତୁ ସେ ଯେ ଅମିର ଆଲିର କଳ୍ପିତ ସେଇ ସଇତାନ ହୋଇ ପାରେ, ମୋତେ ଧାରଣା କରିପାରି ନ ଥିଲି । ଯା' ହେଉ, ବର୍ତ୍ତମାନ ତଦନ୍ତର ଧାରାକୁ ସାମାନ୍ୟ ବଦଳେଇବାକୁ ହେବ ।

: ଯଥା..... ଇନିସ୍ପେକ୍ଟର ପଚାରିଲେ ।

: ସେ କଥା ପରେ କହିବି । ଅମିର ଆଲି କାଲି ରାତିରେ ସଇତାନଟାର ବିଶେଷ କୌଣସି ପରିବର୍ତ୍ତନ ଲକ୍ଷ୍ୟ କରିଥିଲା ?

ନା, ସବୁଥର ପରି ଏଥର ମଧ୍ୟ ସଇତାନ ତାକୁ ଘରୁ ଡାକି ଉଠାଇଥିଲା ।

: ଏହି ଘଟଣାରୁ କ'ଣ ମନେ ହେଉଛି ?

: ମୋର ଆଉ ମନେ ହେବାର କ'ଣ ଅଛି ! ମୁଁ ଭାବିଥିଲି ଆପଣ କାଲି ରାତିରେ ନିଶ୍ଚୟ ତାକୁ ଉଦୟମହଲରେ ଭେଟିଥିବେ । ସେଇଥିପାଇଁ ମୁଁ ଅମିର ଆଲିଠାରୁ ଘଟଣାଟା ଶୁଣିବାକ୍ଷଣି ଛୁଟି ଆସିଥିଲି ।

: ଆପଣଙ୍କୁ ଜଣାଇଲା ଭଳି ଉଲ୍ଲେଖଯୋଗ୍ୟ ଘଟଣା କିଛି କାଲି ରାତିରେ ମୋ ଗୋଚରକୁ ଆସିନାହିଁ । ଯାହା ଆସିଛି ତାହା ଏତେ ସାମାନ୍ୟ ଯେ, ସେ ସମ୍ବନ୍ଧରେ ମୁଁ ମଧ୍ୟ ଏତେବେଳଯାଏ କୌଣସି ନିଷ୍ପତ୍ତିରେ ପହଞ୍ଚି ପାରି ନାହିଁ । କିନ୍ତୁ ଏ ସବୁ ପରେ ମଧ୍ୟ ମୁଁ ଆପଣଙ୍କୁ ଏକ ଆଶାର ବାଣୀ ଶୁଣାଇପାରେ ।

: କ'ଣ ?

: ଯେଉଁଥିପାଇଁ ମିଃ ମଦନ ରାୟଙ୍କୁ ହତ୍ୟାକରା ହୋଇଛି, ମୋର ଦୃଢ଼ ବିଶ୍ୱାସ ସେହି ଦାମୀ ପଦାର୍ଥଟି ଏତେବେଳଯାଏ ଏହି ଉଦୟ ମହଲର ବାହାରକୁ ଯାଇ ପାରିନାହିଁ ।

: ତା'ହେଲେ କ'ଣ ହତ୍ୟାକାରୀ କେବଳ ମିଃ ମଦନରାୟଙ୍କୁ ହତ୍ୟାକରି ଚାଲି ଯାଇଛି ।

: ସେ ଚାଲିଯିବାକୁ ବାଧ୍ୟ ହୋଇଛି, ଅଥବା ଆମରି ଆଖି ଆଗରେ ଏଇ ଉଦୟ ମହଲରେ ବିଚରଣ କରି ବୁଲୁଛି ।

: ତା'ହେଲେ ଅମିର୍ ଆଲିର କଳ୍ପିତ ସେଇ ସଇତାନଟା ଏହି ହତ୍ୟାରହସ୍ୟ ସହିତ ସଂପୃକ୍ତ ନୁହେଁ ?

: ଏତେ ଶୀଘ୍ର ସେହି ଜଟିଳ ତଥ୍ୟର ସମାଧାନ କରିବା ସହଜ ନୁହେଁ ମି. ସାହାଣୀ । ଆପଣ ଆଉ ଦିନେ ଦୁଇଦିନ ଅପେକ୍ଷା କରନ୍ତୁ । ଆଶା କରୁଛି ମୁଁ ସେତେବେଳକୁ ଏହାର ଏକ ଯଥାର୍ଥ ଉତ୍ତର ଦେଇ ପାରିବି ।

: ଅପେକ୍ଷା କରିବା ଛଡ଼ା ଅନ୍ୟ କୌଣସି ଉପାୟ ନାହିଁ ଯେତେବେଳେ, ଅପେକ୍ଷା କରିବାକୁହିଁ ପଡ଼ିବ । ଯା'ହେଉ ବର୍ତ୍ତମାନ ମୁଁ ଆଉ ଏକ ତଦନ୍ତ କାର୍ଯ୍ୟରେ ବାହାରିବି । ଉଦୟ ମହଲ ପାଇଁ ଆଜି ଆଉ କନେଷ୍ଟବଳ ପଠାଇବାର ଆବଶ୍ୟକ ମନେ କରୁଛନ୍ତି କି ?

ନା, ଅନ୍ତତଃ ଆଜି ଦିନ ଆଉ ରାତିଟା ମୋତେ ସ୍ୱାଧୀନ ଭାବରେ କାର୍ଯ୍ୟ କରିବାକୁ ଦିଅନ୍ତୁ ଏବଂ ଏଠାକାର ପ୍ରତିଟି ଅଧିବାସୀଙ୍କୁ ସ୍ୱାଧୀନ ଭାବରେ ବିଚରଣ କରିବାକୁ ଛାଡ଼ି ଦିଅନ୍ତୁ, ତା'ପରେ ଦେଖାଯିବ ।

ଘଡ଼ିରେ ଦଶଟା ବାଜୁଥିଲା । ଦିନ ।

ସତ୍ୟବ୍ରତ ଯାଇ ମଳିନା ଦେବୀଙ୍କ ଶୟନ କକ୍ଷରେ ପ୍ରବେଶ କଲେ । ତଥାପି ସେ ଶଯ୍ୟା ତ୍ୟାଗ କରି ନାହାନ୍ତି ।

ସତ୍ୟବ୍ରତ ଡାକିଲେ ।

ମଳିନା ଦେବୀ ଉଠି ବସିଲେ । ଆଖି ଆଗରେ ସତ୍ୟବ୍ରତଙ୍କୁ ଦେଖି ହାତଯୋଡ଼ି କହିଲେ : ମୋ:ତେ କ୍ଷମା କରନ୍ତୁ ସାର୍ । ସକାଳୁ ବିରକ୍ତ କରନ୍ତୁ ନାହିଁ ।

: ମୋର ଆଉ ଉପାୟ ନାହିଁ ମଳିନା ଦେବୀ । ଆପଣଙ୍କୁ ବିରକ୍ତ ନ କରିବା ପାଇଁ ମୁଁ ଆପ୍ରାଣ ଚେଷ୍ଟା କରିଥିଲି, କିନ୍ତୁ ବର୍ତ୍ତମାନ ଦେଖୁଛି, ଆପଣଙ୍କ ଛଡ଼ା ମି: ମଦନ ରାୟଙ୍କ ହତ୍ୟାରହସ୍ୟ ଉଦ୍‌ଘାଟନ କରିବାରେ କେହି ସହାୟତା କରି ପାରିବେ ନାହିଁ ।

: ମୋତେ ବାପାଙ୍କ ମୃତ୍ୟୁ ସମ୍ବନ୍ଧରେ କିଛି ଜଣା ନାହିଁ । ତେଣୁ ମୁଁ ଆପଣଙ୍କୁ କିପରି ସାହାଯ୍ୟ କରି ପାରିବି ?

: ସେକଥା ମୁଁ ଜାଣିଛି ମଳିନା ଦେବୀ । ତଥାପି ଆପଣଙ୍କ ସହଯୋଗହିଁ ମୋର ଏକାନ୍ତ ଆବଶ୍ୟକ । ଆପଣ ଉଠନ୍ତୁ । ମୋ ସହିତ ଟିକିଏ ତଳକୁ ଆସନ୍ତୁ ।

: ମୁଁ ବରଂ ରାମୁକୁ ଡାକି ଦେଉଛି, ସେ ଆପଣଙ୍କୁ ସାହାଯ୍ୟ କରିବା ତାକୁ ମୋଠାରୁ ବେଶି କଥା ଜଣାଅଛି । ମଳିନା ଶେଯ ଉପରୁ ଉଠି ତଳକୁ ଓହ୍ଲାଉ ଓହ୍ଲାଉ କହିଲା ।

: ମଳିନା ଦେବୀ ! ଆପଣ ହେଉଛନ୍ତି ମି. ମଦନରାୟଙ୍କ କନ୍ୟା, ଆଉ ରାମୁ ହେଉଛି ଉଦୟ ମହଲର ଭୃତ୍ୟ । ତେଣୁ ଆପଣ ଆଉ ରାମୁ ଭିତରେ ତଫାତ୍‌ଟା ନିଶ୍ଚୟ ଆପଣ ବୁଝି ପାରୁଥିବେ ।

: ବୁଝି ମୁଁ କିଛି ପାରେ ନାହିଁ । ବୁଝିଲା ଭଳି ଶକ୍ତି ମୋର ମୋଟେ ନାହିଁ । ତେଣୁ ଆପଣ ମୋତେ କିଛି ବୁଝାଇବାକୁ ଚେଷ୍ଟା କରିବେ ନାହିଁ । ପେଟକୁ ଗଣ୍ଡେ ଖାଇବା ଏବଂ ଆରାମରେ ଘଣ୍ଟା ଘଣ୍ଟା ଧରି ଶୋଇବା ହେଉଛି ମୋର ଧର୍ମ । ଆଉ ମୁଁ କିଛି ବୁଝିବାକୁ ଚାହେଁନା, ଆପଣଙ୍କ ଭାଗ୍ୟ ଭଲ ଯେ, ଆଜି ବାପା ନାହାନ୍ତି । ସେ ଯଦି ଥାଆନ୍ତେ ତେବେ ଆପଣ ତାଙ୍କ ଆଗରେ ମୋତେ କିଛି ବୁଝେଇବାକୁ ଚେଷ୍ଟା କରିଥିଲେ....ମଳିନା କଥା ଅଧା ରଖି ସତ୍ୟବ୍ରତଙ୍କ ଆଖିରେ ଆଖି ମିଶାଇଲା ।

: ତନ୍ଦ୍ରାର ପାହାଡ଼ ସତ୍ୟବ୍ରତ ଦେଖିଲେ ମଳିନାର ଅର୍ଦ୍ଧନିମିଳିତ ନୟନ ଯୋଡ଼ିକରୁ । ସେ ଢାଳୁ ଢାଳୁ ଶୋଇ ଯିବ ସତେକି !! ଲୁଗା ସଜାଡ଼ି ଚେଆର ଉପରେ ବସିଲା

ମଳିନା ।

: ଆପଣ କାଲି କେତେ ରାତିରେ ଶୋଇଥିଲେ ? ସତ୍ୟବ୍ରତ ପଚାରିଲେ ।

: ଠିକ ମନେ ନାହିଁ । କିଛି ମନେ ରୁହେନି ମୋର । ତେଣୁ ଆପଣ ମୋ ଠାରୁ ବିଶେଷ କିଛି ଆଶା କରନ୍ତୁ ନାହିଁ ।

ଆପଣଙ୍କର ବାପାଙ୍କୁ ମନେ ପଡ଼ୁନାହିଁ ?

: ହଁ, ବେଶ୍ ମନେ ପଡ଼ୁଛି ।

ଜୀବିତାବସ୍ଥାରେ ତାଙ୍କୁ ଶେଷଥର ପାଇଁ କେବେ ଦେଖିଥିଲେ ?

: ଏଇତ ! ଆପଣ ପୁଣି ମତେ ସମସ୍ୟାରେ ପକାଇଲେ । ମୋର ଯେ ଗତକଥା କିଛି ମନେ ରୁହେ ନାହିଁ, ସେକଥା ଆପଣ ଜାଣି ନାହାନ୍ତି ବୋଧେ !!

: ହଁ ମୁଁ ଜାଣିଛି ।

: ଆପଣ ତା'ହେଲେ ଜାଣିଛନ୍ତି ? ମଳିନା ଅତ୍ୟନ୍ତ ଆଗ୍ରହ ସହକାରେ ପଚାରିଲା ।

: ହଁ ମୁଁ ଜାଣିଛି ମଳିନାଦେବୀ । ବାପାଙ୍କ ସହିତ ଆପଣଙ୍କର ଶେଷ ସାକ୍ଷାତର ଦିନଗୁଡ଼ିକ ମନେ ନଥିଲେ ମଧ୍ୟ ଘଟଣାଗୁଡ଼ିକ ମନେ ଅଛି ।

: ହଁ, ଅଛି ଅଛି । ବାପା ସେଦିନ ମୋତେ ଭାରି ଆଦର କଲେ । ମୋ ମୁଣ୍ଡରେ ହାତ ବୁଲେଇ କହିଲେ, ମା, ଦୁନିଆରେ ମୋର ତୋ ଛଡ଼ା ଆଉ କେହି ନାହିଁ । ତୁ ମୋର ନୟନର ପିତୁଳା । ତୋତେ ମୁଁ ଛାଡ଼ି ଚାଲିଯିବି କିପରି ।

: ଏକଥା ମିଃ ମଦନ ରାୟ ଆପଣଙ୍କୁ କହିଥିଲେ ?

: ହଁ କହିଥିଲେ ବୋଧେ ! ମୋର ତ ସେହିପରି ମନେ ପଡ଼ୁଛି । ଆହୁରି କହିଲେ, ତୁ କାନ୍ଦିବୁ ନାହିଁ ମା, ମୋତେ ମନଦୁଃଖ କରିବୁ ନାହିଁ । ମୁଁ ନ ଥିଲେ ମଧ୍ୟ ତୋର ପାଖେ ପାଖେ ରହିବି । ତୋର କିଛି ଅଭାବ ହେବ ନାହିଁ, ଅସୁବିଧା ହେବ ନାହିଁ । ତୁ ଯେ ମୋର ଏକମାତ୍ର ଆଦରର ଧନ, ନୟନର ପିତୁଳା । ମଳିନାର ଆଖି ବୁଜି ହୋଇ ଆସୁଥିଲା !

: ତା'ପରେ ?

: ସେ କହିଲେ, ମୁଁ ଚାଲିଗଲେ ତୋର ଦୁଃଖ କ'ଣ ? ତୋ ପାଇଁ ମୁଁ ଯାହାରଖି ଯାଉଛି, ଜୀବନ ଭରି ବସି ଖାଇଲେ ଶେଷ ହେବ ନାହିଁ । ମଳିନା ନୀରବ ହେଲା ।

: ଆଉ କ'ଣ କହୁଥିଲେ ?

: ଆଉ ? କାହିଁ ଆଉ ତ କିଛି ମନେ ପଡ଼ୁନାହିଁ । କିନ୍ତୁ ସେଦିନ ସେ ମୋତେ ଭାରି ଆଦର ଯତ୍ନ କରିଥିଲେ ।

: ଆଉ ବାପାଙ୍କ ସମ୍ବନ୍ଧରେ ଆପଣଙ୍କର କ'ଣ ମନେ ପଡ଼ୁଛି ?

: କିଛି ମନେ ପଡ଼ୁନାହିଁ । ଆପଣ ଟିକେ ଦୟାକରି ରାମୁକୁ ଡାକିବେ ? ମୁଁ ଏତେ ବେଳଯାଏ ଚା' ଖାଇ ନାହିଁ । ନହେଲେ, ଏଗୁଡ଼ା କି ଅନ୍ୟାୟ କଥା । ବାପା ନାହାନ୍ତି ବୋଲି କେହି ମୋ ଖବର ବୁଝିବେ ନାହିଁ ।

ସତ୍ୟବ୍ରତ ରାମୁକୁ ଡାକିବା ପାଇଁ ଉଠୁଥିଲେ, କିନ୍ତୁ ରାମୁ ଚା' ଓ ଜଳଖିଆ ଆଣି ଉପସ୍ଥିତ ହେଲା ।

: ପୁଣି ଆପଣ ଦେଈଙ୍କ ଘରକୁ ଆସିଛନ୍ତି ଆଜ୍ଞା ? ରାମୁ କହିଲା ।

ସତ୍ୟବ୍ରତ କହିଲେ : ଆଉ କିଛି ଉପାୟ ନାହିଁ ରାମୁ ! ତମ ଦେଈଙ୍କ ଛଡ଼ା ମଦନ ରାୟ ବଂଶର ଇତିହାସ କହିବା ଭଳି ଲୋକ ଦ୍ୱିତୀୟ ଆଉ କିଏ ଅଛି ?

କିନ୍ତୁ ଦେଈଙ୍କର ଯେ କିଛି ମନେ ରୁହେନା ।

: ସେ କଥା ମୁଁ ଜାଣିଛି ରାମୁ । ତୁ ଚା' ଜଳଖିଆ ରଖି ଦେଇ ଏଠାରୁ ଚାଲି ଯା । ମଳିନା ଦେବୀଙ୍କର କିଛି ମନେ ରୁହେନାହିଁ ଏ କଥା କିଏ କହିଲା ? ହେଇତ ମଳିନା ଦେବୀ ମତେ ଏଇଖିଣା ତମ ସାଆନ୍ତଙ୍କ କଥା କହୁଥିଲେ । ସେ ତମ ଦେଈଙ୍କି କେତେ ଆଦର କରନ୍ତି, କେତେ ଭଲ ପାଆନ୍ତି, ସବୁ କଥା କହୁଥିଲେ ।

: ରାମୁ ଚା' ଜଳଖିଆ ଥୋଇ ଦେଇ ନୀରବରେ ଚାଲିଗଲା ।

: ଆପଣ ମନେ ପକାନ୍ତୁ ମଳିନା ଦେବୀ । ଯଦି ମନେ ପକେଇବାକୁ ଚେଷ୍ଟା ନ କରନ୍ତି, ତେବେ କ୍ଷତିହେବ ଆପଣଙ୍କର । ସୁଖ ସମୃଦ୍ଧି ସବୁ ଧୀରେ ଧୀରେ ମିଳେଇ ଯିବ ।

ମଳିନା ନିବିଷ୍ଟ ଚିତ୍ତରେ ଜଳଖିଆ ଖାଇ ଚାଲିଥିଲା ।

: ମିଃ ମଦନରାୟଙ୍କର ଆପଣ ଏକମାତ୍ର ସନ୍ତାନ । ତାଙ୍କର ସମସ୍ତ ଧନ ସମ୍ପତ୍ତିର ଏକମାତ୍ର ଉତ୍ତରାଧିକାରିଣୀ ଆପଣ ହେବା କଥା। କିନ୍ତୁ ସେଥିରୁ ଆପଣ ବଞ୍ଚିତ ହୋଇଛନ୍ତି ।

ସତ୍ୟବ୍ରତ ଭାବିଥିଲେ ଅତ୍ୟନ୍ତ ଆଗ୍ରହ ସହକାରେ ମଳିନା ପଚାରିବ, କାହିଁକି ?

କିନ୍ତୁ ମଳିନା କିଛି ନଶୁଣିଲା ପରି ଚା' ପିଉଥିଲା ।

: ଶୁଣୁଛନ୍ତି ମଳିନା ଦେବୀ । ସତ୍ୟବ୍ରତ ଟିକିଏ ଜୋର୍‌ରେ ପଚାରିଲେ ।

: ଉଁ, ମଳିନା ସତ୍ୟବ୍ରତଙ୍କ ମୁହଁକୁ ଅନାଇଲା ।

: ଆପଣ ମି. ମଦନରାୟଙ୍କ ସମ୍ବନ୍ଧରେ ସବୁ କଥା ନ କହିଲେ, ତାଙ୍କ ସମ୍ପତ୍ତିରୁ ସାମାନ୍ୟ ଅଂଶ ବି ପାଇ ପାରିବେ ନାହିଁ ।

: ମୋ ପାଇବା ନ ପାଇବା ନେଇ ଆପଣ ଏତେ ଚିନ୍ତା କରୁଛନ୍ତି କାହିଁକି ?

: ସେଇଟା ମୋର କର୍ତ୍ତବ୍ୟ ମଳିନା ଦେବୀ । ଆପଣଙ୍କ ପରି ଜଣେ ଅସହାୟା ଭଦ୍ରମହିଳାଙ୍କୁ ସାହାଯ୍ୟ କରିବାଟା କ'ଣ ମୋର ଅନ୍ୟାୟ ହେଉଛି ?

ଆପଣ ମୋତେ ସାହାଯ୍ୟ କରିବାକୁ ଆସିଛନ୍ତି ? ମଳିନା ଅଳସ ଆଖି ଟେକି ପୁଣି ଥରେ ସତ୍ୟବ୍ରତଙ୍କ ମୁହଁକୁ ଚାହିଁଲା ।

: ନିଶ୍ଚୟ ।

: କ'ଣ ନିଜର ସ୍ୱାର୍ଥ ସାଧନ ପାଇଁ ନା ମୋତେ ସାହାଯ୍ୟ କରିବା ମୂଳରେ ଆନ୍ତରିକତା ରହିଛି ?

: ମାନେ ?

: ମୁଁ ଇମିତି ପଚାରୁଥିଲି । ଆପଣ କିଛି ମନେ କରିବେ ନାହିଁ ।

: ନା ନା ମଳିନା ଦେବୀ, ମୁଁ କିଛି ମନେ କରିବି ନାହିଁ ସତ କିନ୍ତୁ ଆପଣଙ୍କର ଏପରି ପ୍ରଶ୍ନ ମୂଳରେ ନିଶ୍ଚୟ କୌଣସି କାରଣ ଅଛି ।

: ଅଛି ସାର୍ !

: ମୋତେ ତେବେ ଖୋଲା ଖୋଲି ଭାବରେ କହନ୍ତୁ ।

: କହି ଲାଭ କ'ଣ ? ଆପଣଙ୍କ ପରି ସାହାଯ୍ୟ କରିବାର ଛଳନା କରି କେତେ

-ଆସିଲେ, କେତେ ଗଲେ । ଆପଣ ତ ନୂଆ ଆସିଛନ୍ତି ।

ସତ୍ୟବ୍ରତ ମୁହୂର୍ତ୍ତେ ନୀରବ ହୋଇଗଲେ । ମଳିନାର ଇଙ୍ଗିତ ତାଙ୍କ ପ୍ରାଣରେ ଏକ ଅଭୂତପୂର୍ବ ପ୍ରେରଣା ଆଣିଦେଲା । ସେ ନିଜକୁ ସଞ୍ଚତ କରି, ଅତି କୋମଳ କଣ୍ଠରେ କହିଲେ : ମୋତେ ସେମାନଙ୍କ ପରି ଭାବନ୍ତୁ ନାହିଁ ମିଳିନା ଦେବୀ । ମୋତେ ଆପଣଙ୍କର ନିଜର ବଡ଼ଭାଇ ପରି ଧରିନିଅନ୍ତୁ ।

: ବଡ଼ଭାଇ ! ମଳିନା ହୋ ହୋ ହୋଇ ହସି ଉଠିଲା । ମାତ୍ର ବଡ଼ଭାଇ ! କକା, ମଉସା, ମାମୁ ସମ୍ବନ୍ଧଠାରୁ ବଡ଼ଭାଇର ସମ୍ବନ୍ଧଟା କ'ଣ ଆହୁରି ପବିତ୍ର ? ମୋ ଜୀବନରେ ସମସ୍ତେ ଆସିଛନ୍ତି, ଗୋଟି ଗୋଟି ହୋଇ ଆସିଛନ୍ତି । ନିଜ ନିଜର ସ୍ୱାର୍ଥ ସାଧନ କରି ଜଣଜଣ ହୋଇ ଯାଇଛନ୍ତି । ସେମାନଙ୍କ ଭିତରୁ ବଡ଼ଭାଇଙ୍କ ସଂଖ୍ୟା ବେଶି ଥିଲା ସାର୍! ତେଣୁ ଆପଣଙ୍କୁ ମୁଁ ବଡ଼ଭାଇ ରୂପେ ଗ୍ରହଣ କରି ଆଉ ଥରେ ନିଜକୁ ପ୍ରତାରିତ କରିପାରିବି ନାହିଁ । ଆପଣ ଫେରି ଯାଆନ୍ତୁ, ହଁ ଆପଣ ଫେରି ଯାଆନ୍ତୁ । ମୋ'ର କାହାରିଠୁ ସାହାଯ୍ୟ ସହାନୁଭୂତି କିଛି ପ୍ରୟୋଜନ ନାହିଁ । ମଳିନା ଉନ୍ମାଦିନୀଙ୍କ ପରି ହସି ଉଠିଲା ।

ସତ୍ୟବ୍ରତ ସମସ୍ୟା ଭିତରେ ପଡ଼ିଗଲେ, ମହା ସମସ୍ୟା । ମଳିନାର କଥାବାର୍ତ୍ତାର ଢଙ୍ଗ-ରଙ୍ଗରୁ ସେ କିପରି ଏକ ଅଶ୍ଳୀଳ ଇଙ୍ଗିତର ସନ୍ଧାନ ପାଉଥିଲେ । ସେ ବୁଝି ପାରୁ ନଥିଲେ ମଳିନା ବେଳକୁବେଳ୍ ପ୍ରକୃତିସ୍ଥ ହେଉଛି କି ଆତ୍ମ-ବିସ୍ମୃତ ହେଉଛି । ହୁଏତ ଏହି ସୁଯୋଗ । ଏତିକିବେଳେ ଠିକ୍ ହେଉ ବା ଭୁଲ୍ ହେଉ, ମଳିନାଠାରୁ କିଛି ତଥ୍ୟ ସଂଗ୍ରହ କରିହେବ। ସେ ପୂର୍ବପରି ଅତି କୋମଳ ସ୍ୱରରେ କହିଲେ : ଆପଣ ମୋତେ ବିଶ୍ୱାସ କରନ୍ତୁ ମଳିନା ଦେବୀ । ମୁଁ ଆପଣଙ୍କ ସହିତ ଖେଳିବାକୁ ଆସିନାହିଁ । ଆପଣଙ୍କୁ ଠକେଇବା ମୋର ଆଦୌ ଲକ୍ଷ୍ୟ ନୁହେଁ । ମୁଁ ଆସିଛି ସାହାଯ୍ୟ କରିବାକୁ । ଆପଣ ମୋତେ ବିଶ୍ୱାସ କରନ୍ତୁ । ନିଜର ହିତାକାଂକ୍ଷୀ ବୋଲି ଧରିନିଅନ୍ତୁ ।

ମଳିନା ଚୁପ୍‌ଚାପ୍ ବସି ରହି ସତ୍ୟବ୍ରତଙ୍କ କଥା ଶୁଣୁଥିଲା ।

: ଆପଣ ପାରିବେ ନାହିଁ ସାର୍ ! ନା, ମୋତେ ସାହାଯ୍ୟ କରି ପାରିବେ ନାହିଁ ।

: ନିଶ୍ଚୟ ପାରିବି ମଳିନା ଦେବୀ । ଆପଣ ମୋ'ଠାରୁ କି ପ୍ରକାର ସାହାଯ୍ୟ ଚାହାନ୍ତି ଖୋଲି କୁହନ୍ତୁ ।

: ପାରିବେ ?

: ନିଶ୍ଚୟ, ନିଶ୍ଚୟ ପାରିବି । ସତ୍ୟବ୍ରତଙ୍କ କଣ୍ଠରେ ଦୃଢ଼ତା ଫୁଟି ଉଠିଲା ।

: ମୋତେ ମୁକ୍ତି ଦେଇ ପାରିବେ ? ଅତି ସହଜ କଣ୍ଠରେ ମଳିନା କହିଲା ।

: ମୁକ୍ତି ?

: ହଁ ମୁକ୍ତି । ମୁଁ ମୋର ଏହି ଅଭିଶପ୍ତ ଜୀବନରୁ ମୁକ୍ତି ଭିକ୍ଷା କରୁଛି । ଉଦୟ ମହଲରୁ ଦୂରରେ ରହିବାକୁ ଚାହୁଁଛି । ପାରିବେ ! ପାରିବେ ଆପଣ ମୋତେ ମୁକ୍ତ କରି ?

ସତ୍ୟବ୍ରତ ଏକ ନାଟକୀୟ ପରିବେଶ ଭିତରେ ଛନ୍ଦି ହୋଇ ପଡ଼ିଥିଲେ । କ'ଣ କହୁଛି ମଳିନା ! ସେ ମୁକ୍ତି ଚାହେଁ, କିନ୍ତୁ କେଉଁଠୁ, କାହାଠାରୁ ?

ମଳିନା ପୁଣି ହୋ ହୋ ହୋଇ ହସି ଉଠିଲା : ମୁଁ ଜାଣେ ସାର୍! ଆପଣ ପାରିବେ ନାହିଁ, ନା ପାରିବେ ନାହିଁ । କେହି ଯାହା ପାରିନାହାନ୍ତି ଆପଣ ପାରିବେ କିପରି ?

ମଳିନା ହସିଲା ଜୋରରେ, ଆହୁରି ଜୋରରେ । ହସର ତରଙ୍ଗରେ ଘର ପୂର୍ଣ୍ଣ ହୋଇଗଲା । ବାହାରୁ ରାମୁ ଛୁଟି ଆସିଲା । ସେ ଘରୁ ଉମାପତି ଧାଇଁ ଆସିଲା । ମଳିନା ହସୁଥିଲା । ସମସ୍ତ ଗୃହଟାରେ ସେ ନାଚି ନାଚି ହସୁଥିଲା : ଆପଣ ପାରିବେ ନାହିଁ, କେହି ପାରିବେ ନାହିଁ । ମୋତେ କେହି ମୁକ୍ତି ଦେଇ ପାରିବେ ନାହିଁ ।

ରାମୁ ସତ୍ୟବ୍ରତଙ୍କ ପାଦ ଦୁଇଟି ଜାବୁଡ଼ି ଧରି ଅନୁନୟ ସ୍ୱରରେ କହିଲା : ଆପଣ ବାହାରି ଆସନ୍ତୁ ଆଜ୍ଞା । ଦେଈଙ୍କି ଆଉ ସମ୍ଭାଳି ହେବ ନାହିଁ । ସେ ଏହିଭଳି ନାଚି ନାଚି ହସି ହସି ଅଚେତା ହୋଇଯିବେ ।

ସତ୍ୟବ୍ରତ ମଳିନାର ଆଚରଣରେ ସ୍ତବ୍ଧ ହୋଇ ଯାଇଥିଲେ ।

ମଳିନା ହସୁଥିଲା, ନାଚୁଥିଲା, ଚିତ୍କାର କରୁଥିଲା ।

ଉମାପତି ସତ୍ୟବ୍ରତଙ୍କ ହାତ ଧରି ଚେଆରରୁ ଉଠାଇଲା ।

: ମଳିନା ଉଦୟ ମହଲର ଆଉ ଏକ ଆତଙ୍କ । ଆପଣ ବାହାରି ଆସନ୍ତୁ । ସେ ଶାନ୍ତ ହେଲେ ଆପଣ ପୁଣି ତାକୁ ଯାହା ପଚାରିବାର ପଚାରିବେ ।

ସତ୍ୟବ୍ରତ କେବଳ ଚାହିଁଥିଲେ ।

ଉମାପତି ହାତଧରି ଟାଣି ଟାଣି ବାହାରକୁ ନେଇଗଲା ।

ରାମୁ ଗୋଟାଏ ଶିଶି ଧରି ଉମାପତି ପାଖକୁ ଛୁଟିଆସିଲା ।

: ସେଥିରେ କ'ଣ ଅଛି? ସତ୍ୟବ୍ରତ ପଚାରିଲେ ।

: କ୍ଲୋରୋଫର୍ମ । ଉମାପତି କହିଲା,କ୍ଲୋରୋଫର୍ମ ଛଡ଼ା ବର୍ତ୍ତମାନ ଆଉ ଉପାୟ ନାହିଁ । ମଳିନାକୁ ଶୁଆଇ ନ ପକାଇଲେ ସେ ଆଉ ଶାନ୍ତ ହେବନାହିଁ । ଏ ହସ ବନ୍ଦ ହେବାର ନୁହେଁ ।

: ଆଚ୍ଛା, ସୁନ୍ଦର ବ୍ୟବସ୍ଥା ତ ! ନିଶ୍ଚୟ କୌଣସି ଡାକ୍ତରଙ୍କ ପ୍ରେସ୍‌କ୍ରିପ୍‌ସନ ନୁହେଁ ।

: ମୁଁ ଠିକ୍ ଜାଣିନାହିଁ । ଉମାପତି କହିଲା, ଏହିପରି ବ୍ୟବସ୍ଥା ମୁଁ ଆସିଲା ଦିନଠାରୁ ଉଦୟ ମହଲରେ ଦେଖି ଆସୁଛି । କେହି ହଠାତ୍ ଉନ୍ମାଦଗ୍ରସ୍ତ ହୋଇ ଉଠିଲେ, ସଙ୍ଗେ ସଙ୍ଗେ ତାକୁ କ୍ଲୋରୋଫର୍ମ ସାହାଯ୍ୟରେ ଶୁଆଇ ଦିଆଯାଏ ।

: ହୁଁ, ତା'ହେଲେ ମଝିରେ ମଝିରେ ଏଠାରେ କେହି କେହି ଉନ୍ମାଦ ହୋଇ ଉଠନ୍ତି?

: ମାଈଙ୍କୁ ତ ମାସରେ ପ୍ରାୟ ଛଅ ସାତଥର ଦିଆଯାଏ, ମଝିରେ ମଝିରେ ମଳିନା ମଧ୍ୟ ଉନ୍ମାଦିନୀ ହୋଇଉଠେ ।

: ବୁଝିଲି, ମଦନ ରାୟ ତା' ହେଲେ ଉନ୍ମାଦ ରୋଗର ସର୍ବଶ୍ରେଷ୍ଠ ଡାକ୍ତର ଥିଲେ ।

ଉମାପତି ଆଉ କିଛି ଉତ୍ତର ଦେଲାନାହିଁ । ନୀରବରେ ଗୃହ ମଧ୍ୟରେ ପ୍ରବେଶ କଲା ।

ଦିନଟା ସେ ଦିନ ଯେନ ତେନ ପ୍ରକାରେ କଟିଗଲା ।

ଅନେକ ଥର ଚେଷ୍ଟାକରି ମଧ୍ୟ ସତ୍ୟବ୍ରତ ଆଉ ମଳିନା ସହିତ କଥାବାର୍ତ୍ତା ହୋଇପାରିଲେ ନାହିଁ । ମଳିନା ନୀରବରେ ଶୋଇଥିଲା ।

ସେ ବହୁତ ଚିନ୍ତା କରି ମଧ୍ୟ ଠିକ୍ କରି ପାରୁ ନଥିଲେ ଯେ ମଳିନାର ଦୁଃଖ କେଉଁଠି, କାହିଁକି ସେ ଉଦୟ ମହଲରୁ ମୁକ୍ତି ଚାହୁଁଛି ? ଉମାପତି ମୁହଁରେ ମଧ୍ୟ ଠିକ୍ ଏକାକଥା ।

: ମୁକ୍ତି ! ମୁକ୍ତି !!

ଉଦୟ ମହଲରୁ ସମସ୍ତେ ମୁକ୍ତି ଚାହାନ୍ତି । ସତ୍ୟବ୍ରତ ମଧ୍ୟ ଏହି ସମସ୍ୟାର ସମାଧାନ କରି ପାରିଲେ ତାଙ୍କୁ ମୁକ୍ତି ମିଳନ୍ତା ।

ଧୀରେ ସନ୍ଧ୍ୟା ହୋଇ ଆସୁଥିଲା ।

ସତ୍ୟବ୍ରତ ଆଉଥରେ ମଳିନା ଘରକୁ ଯିବାପାଇଁ ମନେ ମନେ ଠିକ୍ କଲେ । ମଳିନା ମନର କେଉଁ ଏକ ସୂକ୍ଷ୍ମ କୋଣରେ ଭୀଷଣ ଆଘାତ ଲାଗିଛି । କିନ୍ତୁ ସେହି ଆଘାତଟା କ'ଣ ହୋଇପାରେ ? ଯେଉଁଥିପାଇଁ ମି. ମଦନରାୟଙ୍କ ଅଗାଧ ସମ୍ପତ୍ତିର ମାୟା ତ୍ୟାଗ କରି ଚାଲିଯିବାକୁ ଚାହୁଛି ।

ମଳିନା ଘର କବାଟ ଭିତରୁ ଆଉଜା ହୋଇଥିଲା ।

ସତ୍ୟବ୍ରତ ଅତି ସନ୍ତର୍ପଣରେ ଖୋଲିଲେ ।

: ଆରେ ! ରତ୍ନମଞ୍ଜରୀ ଦେବୀ ଯେ ! ସେ ମଳିନାର ଶେଯ ଉପରେ ବସିଛନ୍ତି । ମଳିନାର ମୁଣ୍ଡ କୁଣ୍ଡେଇ ଦେଉଛନ୍ତି । ଗୁଣୁ ଗୁଣୁ ଗୀତ ଗାଉଛନ୍ତି । ଦୁଇ ଜଣଙ୍କ ମୁହଁ ବିପରୀତ ଦିଗକୁ ହୋଇଥିବାରୁ ସତ୍ୟବ୍ରତଙ୍କ ପ୍ରବେଶ କେହି ବୁଝି ପାରି ନଥିଲେ ।

ସତ୍ୟବ୍ରତ ନୀରବରେ ଠିଆହୋଇଥିଲେ ।

ରତ୍ନମଞ୍ଜରୀ ଦେବୀ ମଳିନାର ମୁଣ୍ଡ କୁଣ୍ଡେଇ ଦେଇ ସାରି କବରୀରେ ଗୋଟିଏ ରକ୍ତ ଗୋଲାପ ଖୋସିଦେଲେ, ଟିକିଏ ଆଦର କଲେ । କଣ୍ଠରେ କିନ୍ତୁ ଗୁଣୁ ଗୁଣୁ ସଙ୍ଗୀତର ଝଙ୍କାର ଲାଗି ରହିଥିଲା ।

ସତ୍ୟବ୍ରତ ଧୀରେ ଧୀରେ ପଛକୁ ପାଦ ଫେରାଇଲେ ।

ରତ୍ନମଞ୍ଜରୀ ଦେବୀଙ୍କ କାର୍ଯ୍ୟ ଶେଷ ହୋଇଛି । ଏଥର ସେ ଉଠିପାରନ୍ତି, ତେଣୁ ସତ୍ୟବ୍ରତ ସେହିପରି ଅବସ୍ଥାରେ ତାଙ୍କର ମୁହାଁମୁହିଁ ହେବାକୁ ଇଚ୍ଛା କରୁ ନଥିଲେ ।

କେତୋଟି ମୁହୂର୍ତ୍ତ ମାତ୍ର ! ରତ୍ନମଞ୍ଜରୀ ଦେବୀ ଗୁଣୁ ଗୁଣୁ ଗୀତ ଗାଇ ସେ ଘରୁ ବାହାରି ଆସିଲେ । ତା'ପରେ ପ୍ରବେଶ କଲେ ଦମୟନ୍ତୀ ଦେବୀଙ୍କ ଗୃହରେ । ସତ୍ୟବ୍ରତ ଅନୁସରଣ କଲେ । ଦରଜା ପାଖରେ ଠିଆ ହୋଇ ଦେଖିଲେ, ରତ୍ନମଞ୍ଜରୀ ଦେବୀ ଦମୟନ୍ତୀ ଦେବୀଙ୍କ କପାଳରେ ଟିକିଏ ହାତ ବୁଲାଇଲେ, କ୍ରମେ ଅନ୍ଧକାର ହୋଇ ଆସୁଥିବା କକ୍ଷଟିରେ ଲଣ୍ଠନ ଜଳାଇ ଦେଲେ । ଦମୟନ୍ତୀ ଦେବୀଙ୍କ ମୁହଁକୁ ଚାହିଁ ମୁହୂର୍ତ୍ତେ ଠିଆ ହେଲେ, ତା'ପରେ ଧୀରେ ଧୀରେ ଘରର ବାହାରକୁ ଚାଲି ଆସିଲେ ।

ସେଉଠୁ ଉମାପତିର ଗୃହ ଅଭିମୁଖେ ।

ସତ୍ୟବ୍ରତ ସେଠାରୁ ଲେଉଟି ଆସିଲେ । ମଳିନା ଦେବୀଙ୍କ ସହିତ ଆଉଥରେ ଭେଟ କରିବାକୁ ହେବ। ଏଥର ଖୁବ୍ ସହଜ ଭାବରେ ସେ ତାଙ୍କ ସହିତ କଥାବାର୍ତ୍ତା କରିବେ। ପ୍ରଥମରେ ମଳିନାର ମନ ଉପରେ ଅଧିକାର ବିସ୍ତାର କରିବାକୁ ହେବ। ତାକୁ ହିପ୍‌ନୋଟାଇଜ୍ କଲାପରି ଅକ୍ତିଆରକୁ ଆଣି ପାରିଲେ ଯାଇ ଉଦ୍ଦେଶ୍ୟ ସାଧନ କରି ହେବ ।

କିନ୍ତୁ...

ମଳିନା ତା' ଘରର କବାଟ ଭିତରୁ ବନ୍ଦ କରି ଦେଇଥିଲା ।

ଡାକିବେ ନା ନାହିଁ । ସତ୍ୟବ୍ରତ ବାହାରେ ଠିଆ ହୋଇ ଚିନ୍ତା କରୁଥିଲେ ।

ଦୂରରୁ ଗୁଣୁ ଗୁଣୁ କଣ୍ଠର ଧ୍ୱନି ଶୁଣାଗଲା । ସତ୍ୟବ୍ରତ କ୍ଷିପ୍ର ପାଦରେ ତଳକୁ ଓହ୍ଲେଇ ଗଲେ । ଶିଡ଼ିର ଶେଷ ପାହାଚରେ ଅଳକେଶ ସହିତ ଭେଟ ହୋଇଗଲା । ସେ ଠିଆହୋଇ ଉପରକୁ ଚାହିଁ କ'ଣ ଭାବୁଥିଲା ।

: ଆପଣ ଏଠାରେ ଯେ. ସତ୍ୟବ୍ରତ ପଚାରିଲେ ।

: ଭାବୁଥିଲି ଉପରକୁ ଯିବି କି ନାହିଁ ।

: ଉପରକୁ କାହିଁକି ଯାଇଥାନ୍ତେ ?

: ବସି ବସି କେବଳ ଗୋଟାଏ ଦୁଶ୍ଚିନ୍ତାରେ ସମୟ କଟାଇବାକୁ ଆଉ ଭଲ ଲାଗୁନାହିଁ ମି: ମହାପାତ୍ର ।

: ଆଚ୍ଛା ଚାଲନ୍ତୁ । ମୁଁ ଆପଣଙ୍କ ସହିତ ବସି ଗଳ୍ପ କରିବି ।

ଦୁଇଜଣ ଯାକ ବୈଠକଖାନା ଆଡ଼େ ଆଗେଇଲେ ।

ସତ୍ୟବ୍ରତ ଗୋଟିଏ ଚେଆରରେ ବସୁ ବସୁ କହିଲେ: ଏହା ଭିତରେ ହୁଏତ ଦିବ୍ୟରଞ୍ଜନ ବାବୁଙ୍କ ନିକଟରୁ ଖବର ଆସି ଯାଇଥିବ ।

: କି ଖବର ?

: ଆପଣ ଯେଉଁ ପଦାର୍ଥଟି ଏଠାରୁ ବହନ କରି ନେବାପାଇଁ ଆସିଛନ୍ତି ସେଇଟି କି ବସ୍ତୁ । ଆଜି ସକାଳେ ପୁଲିସ୍ ଇନିସ୍ପେକ୍ଟର ପୁରୀ ଥାନାକୁ ଟେଲିଗ୍ରାମ କରିଛନ୍ତି ।

: ତା'ହେଲେ ମୁଁ ଏଥର ମୁକ୍ତି ପାଇବି ତ ? ଅଳକେଶ ଅତ୍ୟନ୍ତ ଆଗ୍ରହ ସହକାରେ ପ୍ରଶ୍ନକଲା ।

: ଆପଣଙ୍କୁ ମୁକ୍ତି ଆଉ ଦେଇ ହେଲା ନାହିଁ ଅଳକେଶ ବାବୁ । ଘର ଭିତରେ ପୋଲିସ ଇନିସ୍ପେକ୍ଟର ମି. ସାହାଣୀ ପ୍ରବେଶ କରି କହିଲେ ।

: ମାନେ ? ଅଳକେଶର ସ୍ୱରରେ ଆତଙ୍କ ଫୁଟି ଉଠିଥିଲା ।

: ଦିବ୍ୟରଞ୍ଜନବାବୁ ଦିନ ଦୁଇଟାବେଳେ ଅପରେସନ୍ ଥିଏଟରରେ ଦେହତ୍ୟାଗ କରିଛନ୍ତି ।

ଅଳକେଶ ସ୍ତବ୍‌ଧ ହୋଇଗଲା । ତା' ମୁହଁରୁ କୌଣସି କଥା ବାହାରିଲା ନାହିଁ । ସେ ଯେପରି ଇନିସ୍ପେକ୍ଟରଙ୍କ କଥାକୁ ବିଶ୍ୱାସ କରି ପାରୁ ନଥିଲା ।

ସତ୍ୟବ୍ରତଙ୍କ ଆଡ଼କୁ ଚାହିଁ ଇନିସ୍ପେକ୍ଟର କହିଲେ: ମୁଁ ଏଇକ୍ଷଣି ଟେଲିଗ୍ରାମ ପାଇ ସଙ୍ଗେ ସଙ୍ଗେ ଆସୁଛି । ସେମାନେ ମୋ ଟେଲିଗ୍ରାମ୍‌ର ଉତ୍ତରରେ ଜଣାଇଛନ୍ତି ଯେ, ଦିବ୍ୟରଞ୍ଜନ ବାବୁଙ୍କ ସହିତ କୌଣସି କଥାବାର୍ତ୍ତା ହୋଇ ପାରିନାହିଁ । ଅତ୍ୟନ୍ତ ଦୁର୍ଭାଗ୍ୟର କଥା, ଦିନ ଦୁଇଟାବେଳେ ସେ ଆଜି ଅପରେସନ ଥିଏଟରରେ ପ୍ରାଣତ୍ୟାଗ କରିଛନ୍ତି ।

: ହୁଁ, ତା'ହେଲେ ଆମକୁ ନିଜ ଶିଙ୍ଗରେ ମାଟି ଖୋଳିବାକୁ ହେବ । ଅଳକେଶ ବାବୁ ! ଏହି ନିବିଡ଼ ଅନ୍ଧକାର ମଧରେ ଆପଣ ହିଁ ଏକମାତ୍ର ଆଲୋକ ଶିଖା ।

: ମି: ମହାମାତ୍ର ! ଅଳକେଶର ଗଳାଟା କଂପି ଉଠିଥିଲା । ମୋତେ ଯେ ଶୀଘ୍ର ଫେରିଯିବାକୁ ହେବ। ପ୍ରକୃତରେ ଯଦି ଦିବ୍ୟରଞ୍ଜନ ବାବୁଙ୍କର ମୃତ୍ୟୁ ହୋଇଥାଏ, ମୋର

ସେଠାରେ ଉପସ୍ଥିତ ଏକାନ୍ତ ବାଞ୍ଛନୀୟ ।

ସେଠା ଅପେକ୍ଷା ଏଠାରେ ଆପଣଙ୍କ ଉପସ୍ଥିତିର ଗୁରୁତ୍ୱ ମଧ କମ୍ ନୁହେଁ ଅଳକେଶ ବାବୁ ! ଆପଣ ସତ୍ୟ କଥା ପ୍ରକାଶ ନ କରିବା ଯାଏ ମୁକ୍ତି ପାଇବା ସମ୍ଭବ ନୁହେଁ । ସତ୍ୟବ୍ରତ କହିଲେ ।

: ନା, ଆପଣଙ୍କୁ ମୁଁ ବିଶ୍ୱାସ କରି ପାରୁ ନାହିଁ । ଆପଣ ତ ସତ୍ୟକଥା କହୁ ନାହାନ୍ତି ।

ଆପଣ ବିଶ୍ୱାସ କରନ୍ତୁ ମି. ମହାପାତ୍ର । ମୁଁ ଯାହା କହୁଛି ସବୁ ସତକଥା କହୁଛି ।

ତା'ହେଲେ କୁହନ୍ତୁ, କାଲି ରାତିରେ ଆପଣ ପଳେଇବାକୁ କାହିଁକି ଚେଷ୍ଟା କରୁଥିଲେ ?

: ନା, ମୁଁ ପଳାଇବାକୁ ଆଦୌ ଚେଷ୍ଟା କରିନାହିଁ ।

: ତା'ହେଲେ ଆପଣ କ'ଣ ସଂଧ୍ୟାଠାରୁ ସକାଳଯାଏ ଏହି ଘର ଭିତରେ ଥିଲେ ?

: ତା' ଅବଶ୍ୟ ନ ଥିଲି ।

: କୁଆଡ଼େ ଯାଇଥିଲେ ?

: ବଗିଚା ଭିତରେ ଗୋଟିଏ ବେଞ୍ଚ ଉପରେ ପ୍ରାୟ ଦୁଇ ତିନିଘଣ୍ଟା ଆକାଶକୁ ଚାହିଁ ବସି ରହିଥିଲି ।

: ତା'ହେଲେ ସେଠାକୁ କୋଟ୍ ପ୍ୟାଣ୍ଟ ପିନ୍ଧି ଯିବାର କି ପ୍ରୟୋଜନ ଥିଲା ?

: କୋଟ୍‌ପ୍ୟାଣ୍ଟ ! ଅଳକେଶ ଆଶ୍ଚର୍ଯ୍ୟ ହୋଇ ପଚାରିଲା ।

: ହଁ, ଆପଣ କାଲି ରାତିରେ ଯୁଆଡ଼େ ଯାଇ ଥାଆନ୍ତୁ ନା କାହିଁକି କୋଟ୍ ପ୍ୟାଣ୍ଟ ପିନ୍ଧି ଯାଇଥିଲେ । ତେଣୁ ଆପଣଙ୍କ ମନୋଭାବଟା ଯେ ନିଶ୍ଚୟ ଭଲ ନଥିଲା, ଏହାଛଡ଼ା ଆଉ କ'ଣ ଆମେ ଅନୁମାନ କରିବୁ ।

: ଆପଣ ବିଶ୍ୱାସ କରନ୍ତୁ ମି. ମହାପାତ୍ର...

: ନା, ନା, ମୁଁ କିଛି ବିଶ୍ୱାସ କରିବି ନାହିଁ ଅଳକେଶ ବାବୁ ! କାଲି ସଂଧ୍ୟାବେଳେ ଆପଣଙ୍କ କୋଟ୍ କଲରରେ ଗୋଟିଏ ରକ୍ତ ଗୋଲାପ ଲଗାଇ ଦେଇଥିବା କଥା ଆପଣଙ୍କ ମନେ ଅଛି ?

: ହଁ ।

: ସେଇଟାକୁ ମୁଁ ଏପରି ଏକ ସନ୍ଦେହ ଜନକ ସ୍ଥାନରୁ ପାଇଛି ଯେ...

ଅଳକେଶ ହୋ ହୋ ହୋଇ ହସି ଉଠିଲା: ଗୋଲାପ ଫୁଲ ବୋଧହୁଏ ପୃଥିବୀ ଉପବନରେ ମାତ୍ର ଗୋଟିଏ ଫୁଟିଥିଲା, ଆଉ ଆପଣ ସେଇଟିକୁ ତୋଳି ଆଣି ମୋ କୋଟ୍ କଲରରେ ଲଗାଇ ଦେଇଥିଲେ ।

ସତ୍ୟବ୍ରତ କିପରି ଏକ ଚାହାଣିରେ ଅଳକେଶ ମୁହଁକୁ ଚାହିଁଲେ । ତା'ପରେ ଧୀରେ ଧୀରେ ଚେଆରରୁ ଉଠି କହିଲେ : ସତ୍ୟବ୍ରତ ମହାପାତ୍ର ଆଖିକୁ ଫାଙ୍କିଦେବା ଏତେ ସହଜ ନୁହେଁ ଅଳକେଶ ବାବୁ । ଆପଣ ଭୁଲ୍ କରନ୍ତୁ ନାହିଁ । ଆଶା କରୁଛି ଆପଣ ସହଜ ପଥରେ ଚଳିବାକୁ ଚେଷ୍ଟା କରିବେ ।

ସତ୍ୟବ୍ରତଙ୍କ ପଛେ ପଛେ ଇନିସ୍ପେକ୍ଟର ଚେଆରରୁ ଉଠି ଚାଲି ଆସିଲେ ।

: ଅଳକେଶ ଆଗରେ ଦିବ୍ୟରଞ୍ଜନ ବାବୁଙ୍କର ମୃତ୍ୟୁ ସମ୍ବାଦଟା ଦେବା ଆପଣଙ୍କର ଠିକ୍ ହେଲାନାହିଁ ମି. ସାହାଣୀ । ଛାଡ଼ନ୍ତୁ, ଜଣେଇ ଦେଇ ସାରିଲେଣି ଯେତେବେଳେ, ଏଣିକି ଆମକୁ ଟିକିଏ ସତର୍କ ହେବାକୁ ପଡ଼ିବ ।

: କାରଣ ?

: ମୋର ଧାରଣ ଅଳକେଶର ଉଦୟ ମହଲ ସହିତ ପୂର୍ବରୁ ପରିଚୟ ଅଛି । ତାକୁ ହୁଏତ ସେହି 'ଦାମୀ' ଜିନିଷଟିର ତଥ୍ୟ ଜଣାଅଛି ।

: ତା'ହେଲେ...

: ମୁଁ କ'ଣ ଭାବୁଛି ଜାଣନ୍ତି ମି: ସାହାଣୀ ? ଦିବ୍ୟରଞ୍ଜନ ବାବୁଙ୍କଠାରୁ ଆମେତ ଆଉ କୌଣସି ସୂତ୍ର ପାଇବାର ସମ୍ଭାବନା ନାହିଁ । ଅଳକେଶଠାରୁ ଆମକୁ କଥା ଆଦାୟ କରିବାକୁ ପଡ଼ିବ । ମୋର ମନେ ହେଉଛି ଲୋକଟା ଆଦୌ ସହଜ ନୁହେଁ ।

: ତେବେ ?

ହୁଏତ ଆଜି ରାତିରେ ଉଦୟ ମହଲରେ ଗୋଟାଏ କିଛି ଉଲ୍ଲେଖଯୋଗ୍ୟ ଘଟଣା ଘଟିପାରେ । ତେଣୁ ଆଜି ରାତିଟା ଆପଣ ଏଠାରେ....

: କିନ୍ତୁ ଅମିର ଆଲି ?

ଓ ହଁ, ସେ ଦିଗଟା ମୁଁ ଏକଦମ ଭୁଲି ଯାଇଥିଲି । ଠିକ୍ ଅଛି । ଆପଣ ତେଣେ ଯାଆନ୍ତୁ । ଆଶା କରୁଛି ମୁଁ ଏକା ସବୁ ସମ୍ଭାଳି ନେବି ।

: ମୋର ଜଣେ ସହକାରୀ ଆପଣଙ୍କୁ ସାହାଯ୍ୟ କରିବାକୁ ପଠାଇବି କି ?

: ଦରକାର ନାହିଁ । ବରଂ ବିଭ୍ରାଟ ସୃଷ୍ଟି ହୋଇପାରେ । ମୁଁ ପରୀକ୍ଷା କରି ଦେଖିଛି, ଅଳକେଶ ପାଖରେ କୌଣସି ଆଗ୍ନେୟାସ୍ତ୍ର ନାହିଁ ।

: ଆପଣଙ୍କର କ'ଣ ମନେହୁଏ ? ମୁଁ ଏପର୍ଯ୍ୟନ୍ତ ବୁଝି ପାରିଲି ନାହିଁ ଯେ, ମି. ମଦନରାୟଙ୍କ ହତ୍ୟାକାରୀ ଜଣେ ନା ଦୁଇଜଣ ?

ସତ୍ୟବ୍ରତ ସ୍ମିତ ହସି କହିଲେ : କୌଣସି ଗୋଟିଏ ଦିଗରୁ ଆଲୋକ ପାତ ହୋଇ ପାରିନାହିଁ ଯେତେବେଳେ, ହତ୍ୟାକରୀ ଜଣେ ବା ଦୁଇଜଣ ଜାଣି କିଛି ଲାଭ ହେବନାହିଁ

: ତଥାପି.........

: ନା ନା, ମୁଁ ମଧ୍ୟ ଏପର୍ଯ୍ୟନ୍ତ ଜାଣିପାରିନାହିଁ ମି: ସାହାଣୀ, ତେବେ ଖୁବ୍ ସମ୍ଭବ ଜଣକ ଗୁଳିରେ ମଦନରାୟ ନିହତ ହୋଇଛନ୍ତି ।

ଦୁଇଜଣ କଥାବାର୍ତ୍ତା ହେଉ ହେଉ, ସତ୍ୟବ୍ରତଙ୍କ କକ୍ଷ ନିକଟରେ ପହଞ୍ଚି ଯାଇଥିଲେ। ଘରେ ରାମୁ ଲଣ୍ଠନ ଜଳାଇ ସାରି ବାହାରି ଯାଇଥିଲା ।

: ବସନ୍ତୁ । ସତ୍ୟବ୍ରତ ନିଜେ ଖଣ୍ଡିଏ ଚେଆରରେ ବସୁ ବସୁ କହିଲେ- । ମଦନରାୟ ପିଠି ଓ କପାଳ ଦୁଇ ଜାଗାରେ ଗୁଳି ଭେଦିଥିବାରୁ ଆପଣଙ୍କର ସନ୍ଦେହ ହେଉଛି ଯେ, ଜଣେ ପଛଆଡୁ ଏବଂ ଆଉଜଣେ ଆଗଆଡୁ ଗୁଳି କରି ମଦନରାୟଙ୍କୁ ହତ୍ୟା କରିଛନ୍ତି । ଏଇଆ ତ ?

: ହଁ ।

: କିନ୍ତୁ ଜଣକ ଦ୍ୱାରା କ'ଣ ତାହା ସମ୍ଭବ ନୁହେଁ ?

: କିପରି ?

: ଧରନ୍ତୁ ମଦନରାୟ ତାଙ୍କ କକ୍ଷରେ ଠିଆ ହୋଇ କୌଣସି କାର୍ଯ୍ୟ କରୁଥିଲେ । ଦରଜା ଆଡ଼କୁ ତାଙ୍କର ପିଠି ଥିଲା । ସେହି ସମୟରେ ଗୃହ ମଧ୍ୟରେ କେହି ପ୍ରବେଶ କରିବାର ପାଦ ଶବ୍ଦ ସେ ଶୁଣିବାକୁ ପାଇଲେ । ଠିକ୍ ସେଇ ମୁହୂର୍ତ୍ତରେ ଆଗନ୍ତୁକ ହାତର ଆଗ୍ନେୟାସ୍ତ୍ରଟି ଗର୍ଜି ଉଠିଲା । ମଦନରାୟଙ୍କ କପାଳରେ ଗୁଳି ବିଦ୍ଧ ହେଲା । ସେ ନିଜର ଭାରସାମ୍ୟ ରକ୍ଷା କରି ନ ପାରି ବୁଲି ପଡ଼ିଲେ । ପୁଣି ସେଇ ମୁହୂର୍ତ୍ତରେ ଆତତାୟୀ ହାତର ଆଗ୍ନେୟାସ୍ତ୍ରଟି ଆଉଥରେ ଗର୍ଜି ଉଠିଲା । ତେଣୁ ଏଥର ଗୁଳିଟା ପିଠିରେ ଭେଦିବା ସ୍ୱାଭାବିକ । ମଦନ ରାୟ ହୁଏତ ସଙ୍ଗେ ସଙ୍ଗେ ମୁହଁମାଡ଼ି ପଡ଼ିଗଲେ ।

କିନ୍ତୁ ଆତତାୟୀର ଗୁଳିଚୋଟ ଯଦି କପାଳରେ ଲାଗିଯାଏ, ତେବେ ମଦନ ରାୟଙ୍କ ମୁହଁଟା ପଛକୁ ବୁଲିଯିବା ସ୍ୱାଭାବିକ କି ?

: ଅତି ସ୍ୱାଭାବିକ । ଏଇ ଦେଖନ୍ତୁ । ସତ୍ୟବ୍ରତ ଉଠି ଠିଆ ହେଲେ । ଏବଂ ସଙ୍ଗେ ସଙ୍ଗେ ଇନିସ୍ପେକ୍ଟରଙ୍କ ଆଡ଼କୁ ପଛକରି କହିଲେ, ଏଇ ହେଲା ମୋର ଅବସ୍ଥା ନା ପୂର୍ବ ଦିଗକୁ ମୁଁ ମୁହଁ କରି ଠିଆ ହୋଇଛି, ଠିକ୍ ମୋର ପଶ୍ଚିମରେ ଦରଜା । ତେଣୁ ମୋର ଶରୀରର ସମସ୍ତ ଭାର ପୂର୍ବ ଆଡ଼କୁ ରହିଛି । ଧରନ୍ତୁ ଆପଣ ଗୃହ ମଧ୍ୟରେ ପ୍ରବେଶ କରିବାର ପାଦଶବ୍ଦ ମୁଁ ଶୁଣିଲି । କେବଳ ମୁହଁଟା ବୁଲେଇ ପଛକୁ ଚାହିଁଲି, କିନ୍ତୁ ଗୋଡ଼ ଦୁଇଟା ଦେହର ଭାର ବହନ କରି ପୂର୍ବ ଆଡ଼କୁ ରହଛି । ମୁଁ ପଛକୁ ଚାହିଁବା ସଙ୍ଗେ ସଙ୍ଗେ ଆପଣ ମୋ କପାଳକୁ ଲକ୍ଷ୍ୟ କରି ଗୁଳି କଲେ । ତେଣୁ ମୋ ମୁହଁଟା ହଠାତ୍ କୁଆଡ଼କୁ ବୁଲିଯିବ ?

: ହଁ, ଏପରି କ୍ଷେତ୍ରରେ ପୂର୍ବ ଆଡ଼କୁ ବୁଲିଯିବା ଅତି ସ୍ୱାଭାବିକ । ଇନିସ୍ପେକ୍ଟର କହିଲେ ।

: ମୋର ଅନୁମାନ ମଦନରାୟଙ୍କ କ୍ଷେତ୍ରରେ ତାହାହିଁ ଘଟିଛି ।

: ଆପଣ ଯେପରିଭାବେ ପରିସ୍ଥିତିଟାକୁ ବିଶ୍ଳେଷଣ କଲେ, ଏପରି କ୍ଷେତ୍ରରେ ଜଣେ ଲୋକ ଦ୍ୱାରା ମଦନରାୟ ନିହତ ହେବା ଅସମ୍ଭବ ନୁହେଁ, ଏ କ୍ଷେତ୍ରରେ ହତ୍ୟାକାରୀ କ'ଣ ଉଦୟ ମହଲର କୌଣସି ଲୋକ ହେବା ସମ୍ଭବ ?

: ନ ହେବ ବା କାହିଁକି ?

: ନା ମୁଁ ଭାବିଥିଲି ଯେ ଉଦୟ ମହଲର କୌଣସି ଲୋକ ହୋଇଥିଲେ, ସେ ଏପରି ଏକ ଅତର୍କିତ ମୁହୂର୍ତ୍ତରେ ବା କାହିଁକି ଆକ୍ରମଣ କରିଥାନ୍ତା ? ତାକୁ ତ ଯଥେଷ୍ଟ ସମୟ ସୁବିଧା ଥିଲା । ଏପରିକି ମଦନ ରାୟ ଶୋଇଥିବାବେଳେ ମଧ୍ୟ ସେ ହତ୍ୟାକାଣ୍ଡ ସମାନ କରି ପାରିଥାନ୍ତା ।

ସତ୍ୟବ୍ରତ ହସିଲେ । କହିଲେ : ନିଶାର୍ଦ୍ଧରେ ଉଦୟ ମହଲ ପାଖରେ ଥରେ ମାତ୍ର ଟ୍ରେନ୍ ଯାଏ ।

: ମାନେ ? ଇନିସ୍ପେକ୍ଟର ଆଶ୍ଚର୍ଯ୍ୟ ହୋଇ ପଚାରିଲେ ।

: ଆପଣ ତ ଜାଣିଛନ୍ତି ମଦନ ରାୟଙ୍କୁ ରିଭଲଭର ସାହାଯ୍ୟରେ ହତ୍ୟା କରା ହୋଇଛି ।

: ହଁ ।

: ଅଥଚ ଦୁଇ ରାଉଣ୍ଡ ଗୁଳି ଚାଲିଥିଲେ ମଧ୍ୟ ଫାୟାରିଂ ଶବ୍ଦ କେହି ଶୁଣି ନାହାନ୍ତି ।

: ହୁଏତ ସମସ୍ତେ ଅସ୍ୱୀକାର କରି ପାରି ଥାଆନ୍ତି ।

: ନା, ଏଇଟା ସତକଥା ଯେ ଫାୟାରିଂ ଶବ୍ଦ କେହି ଶୁଣିନାହାନ୍ତି । କାରଣ ଉଦୟ ମହଲ ପାଖ ଦେଇ ଟ୍ରେନ୍ ଯେତେବେଳେ ବ୍ରିଜ୍ ଉପରେ ଯାଏ ସେତେବେଳେ ଟ୍ରେନ୍‌ର ହୁଇସିଲ ସହ ଏପରି ଏକ କାନଫଟା ବିକଟ ଶବ୍ଦ ହୁଏ ଯେ, ଅନ୍ତତଃ ଦୁଇ ମିନିଟ୍ କାନରେ ପଥର ପଡ଼ିଯାଏ । ମୋର ଅନୁମାନ ଆତତାୟୀ ଠିକ୍ ସେଇ ମୁହୂର୍ତ୍ତଟାକୁ ଅପେକ୍ଷା କରି ବସିଥିଲା ।

: ଆଛା! ମଦନରାୟଙ୍କ ଉପରେ ସେଇଟା ତା'ହାଲେ ଅତର୍କିତ ଆକ୍ରମଣ ନୁହେଁ ।

: ମୋଟେ ନୁହେଁ । ହତ୍ୟାକାଣ୍ଡଟା ନିଶ୍ଚୟ ପୂର୍ବ କଳ୍ପିତ । ତେଣୁ କୌଣସି ବାହର ଲୋକ ଦ୍ୱାରା ଏହା ସଂଘଟିତ ହୋଇଥିବା କଥା ଚିନ୍ତା କରିବା ଟିକିଏ ଭାବପ୍ରବଣତା ହୋଇ ପଡ଼ିବ ।

: ତା'ହେଲେ ଅମିର ଆଲିର କଳ୍ପିତ ସେଇ ସଇତାନଟା...

: ମୋର ଧାରଣା ସେଇଥିଲା ମଦନ ରାୟଙ୍କର ଆତଙ୍କ ।

: ତା' ସମ୍ବନ୍ଧରେ ଆପଣ କ'ଣ କୌଣସି ତଥ୍ୟ ପାଇଛନ୍ତି ?

: ପାଇଛି ଦେଖିବେ ?

ଇନିସ୍ପେକ୍ଟର ଆଗ୍ରହୀ ଦୃଷ୍ଟିରେ ସତ୍ୟବ୍ରତ ଆଡ଼େ ଚାହିଁଥିଲେ । ସତ୍ୟବ୍ରତ ପକେଟରୁ ଖଣ୍ଡିଏ କାଗଜ ବାହର କରି ଇନିସ୍ପେକ୍ଟରଙ୍କ ହାତକୁ ବଢ଼ାଇ ଦେଲେ । (ଯେଉଁଟା ସେ ଗତକାଲି ରାତିରେ ମଦନ ରାୟଙ୍କ ହିସାବ ଖାତା ଭିତରୁ ପାଇଥିଲେ) ଏଇଟା ମଦନ ରାୟଙ୍କ ହାତଲେଖା । ମୋତେ ଲେଖିଥିବା ଚିଠି ସହିତ ମୁଁ ମିଳାଇ ଦେଖିଛି ।

ଇନିସ୍ପେକ୍ଟର ଲଣ୍ଠନ ଆଉ ଟିକେ ତେଜିଦେଇ ଲେଖା କାଗଜଟି ପଢ଼ିବାରେ ମନନିବେଶ କଲେ। ସତ୍ୟବ୍ରତ କେତୋଟି ମୁହୂର୍ତ୍ତ ପାଇଁ ଅବସର ପାଇଗଲେ । ଟେବୁଲ୍ ଉପରେ ରଖା ହୋଇଥିବା ଷ୍ଟେଟ୍ ସିଗାରେଟ୍ ଡବାଟା ଖୋଲି ଗୋଟିଏ ୫୫୫ ସିଗାରେଟରେ ଅଗ୍ନି ସଂଯୋଗ କଲେ ।

ଇନିସ୍ପେକ୍ଟର ଏକାଗ୍ର ଚିତ୍ତରେ ଲେଖା କାଗଜଟି ଉପରେ ବିସ୍ମୟ ଆଖି ଯୋଡ଼ିକୁ ପହଁରାଉ ଥିଲେ ।

ସତ୍ୟବ୍ରତ ଆଖିବୁଜି ଧ୍ୟାନମଗ୍ନ ହୋଇଥିଲେ ।

ହୁଁ, ଇନିସ୍ପେକ୍ଟର ଲେଖାକାଗଜ ଦୁଇଖଣ୍ଡ ପଢ଼ିସାରି ଗୋଟିଏ ଦୀର୍ଘଶ୍ୱାସ ପକାଇ କହିଲେ : ତା'ହେଲେ ଅମିର ଆଲିର କଳ୍ପିତ ସଇତାନ୍ କ'ଣ ମଦନରାୟଙ୍କ ଚିଠିରେ ବର୍ଣ୍ଣିତ ମନୋହର ?

: ହୁଏତ ସେଇଆ, ପୁଣି ନ ହୋଇ ବି ପାରେ । ସେକଥା ପରେ ବିବେଚନା କଲେ ଚଳିବ କିଏ ? ସତ୍ୟବ୍ରତ ହଠାତ୍ ଚେୟାରୁ ଉଠି ଚିତ୍କାର କରି ଉଠିଲେ । ତାଙ୍କର ମନେ ହେଲା ଯେପରି ଗୋଟିଏ ଛାୟାମୂର୍ତ୍ତି ଝରକା ପାଖରୁ ଘୁଞ୍ଚି ଯାଉଛି । ସେ ସଙ୍ଗେ ସଙ୍ଗେ କ୍ଷିପ୍ର ପଦରେ ବାହାରି ଗଲେ ।

କାହାର ଗୁଣୁଗୁଣୁ କଣ୍ଠସ୍ୱର ଭାସି ଯାଉଥିଲା । ହଁ, ରତ୍ନମଞ୍ଜରୀ ଦେବୀ । ତାଙ୍କଛଡ଼ା ଆଉ କିଏ ହୋଇପାରେ ? ସତ୍ୟବ୍ରତ ସେଇଠି ସ୍ଥାଣୁ ପରି ଠିଆ ହୋଇଗଲେ ।

ପୁଣି ରାତ୍ରିର ନିସ୍ତବ୍ଧତା ।

ରାତ୍ରିଚର ପରି ସତ୍ୟବ୍ରତ କାନ ଠିଆକରି ବସିଛନ୍ତି । ହୁଏତ କୌଣସି ପ୍ରକାର ବ୍ୟତିକ୍ରମ ଘଟିବ ଉଦୟ ମହଲରେ ।

କିନ୍ତୁ କାହିଁ ?

ରାତ୍ରି ଆସି ବାରଟାରୁ ଅଧିକ ହେଲାଣି । ଉଦୟ ମହଲର ଅଧିବାସୀମାନେ ଯେ ଯାହା କକ୍ଷରେ କବାଟ କିଳି ହୁଏତ ନିଦ୍ରା ଯାଇଛନ୍ତି । ସତ୍ୟବ୍ରତ ନିଃଶବ୍ଦରେ ସମସ୍ତଙ୍କ କକ୍ଷ ପାଖରୁ ପ୍ରାୟ ଦୁଇତିନି ଥର କରି ଫେରିଲେଣି । ତାଙ୍କର ସବୁଠାରୁ ବେଶି ଲକ୍ଷ୍ୟ ଅଳକେଶ ଓ ଉମାପତି ଉପରେ ।

ତା'ପରେ ମଳିନା ।

ସଂଧ୍ୟାବେଳେ ରତ୍ନମଞ୍ଜରୀ ଦେବୀ ମଳିନାକୁ ଅଭିସାରିକା ବେଶରେ ସଜାଇ ଦେଇଥିଲେ ।

କିନ୍ତୁ କିଏ କାହିଁ ?

ପ୍ରତିଟି କକ୍ଷରୁ ଆଲୋକ ଲିଭି ଯାଇଛି । ସମସ୍ତେ ହୁଏତ ନିଶ୍ଚିନ୍ତରେ ନିଦ୍ରା ଯାଇଛନ୍ତି । କେବଳ ସତ୍ୟବ୍ରତଙ୍କର ମୁଣ୍ଡ ବଥୋଉଛି ।

ତଳେ ବଗିଚା ଭିତରେ ଥିବା ବିଳାସ କକ୍ଷରୁ ସେ ଦୁଇଥର ଫେରିଲେଣି । କାଲି ଯେଉଁଠି ରକ୍ତଗୋଲାପ ଓ ରଙ୍ଗିନ ସୁରାର ସଂଧାନ ପାଇଥିଲେ, ଆଜି ସେ ଘର ନିଷ୍ପ୍ରଦୀପ । ଦିନଯାକ କିନ୍ତୁ ସେଇ ଘର ସମ୍ବନ୍ଧରେ ନାନା କଳ୍ପନା ଜଳ୍ପନା ସେ କରିଥିଲେ । ସବୁ କ'ଣ ବ୍ୟର୍ଥ ହୋଇଯିବ ?

ସେ ମଦନରାୟଙ୍କ ଶୟନ କକ୍ଷରେ ଗାଢ଼ ଅନ୍ଧକାର ଭିତରେ ଦିହ ଲୁଚେଇ ଚୁପ୍‌ଚାପ୍ ବସିଥିଲେ । ଦୁଆର ଖୋଲାଥିଲା । କାନ ଯୋଡ଼ିକ ସତର୍କ ଥିଲା । ଉପରୁ ଯିଏ ତଳକୁ ଓହ୍ଲାଉ ନା କାହିଁକି ତାକୁ ସେଇପଥ ଅତିକ୍ରମ କରିଯିବାକୁ ହେବ । ସେ ଯେତେ ପାଦ ଚିପି ଚିପି ଗଲେ ମଧ୍ୟ ସତ୍ୟବ୍ରତ ନିଶ୍ଚୟ ଶବ୍ଦ ବାରି ପାରିବେ ।

ଆହୁରି କିଛି ସମୟ ନିରବରେ କଟିଗଲା ।

ଏଥର ଯାଇ ତଳ ଘରଗୁଡ଼ିକୁ ଥରେ ଦେଖିଆସିବାକୁ ହେବ। ଅଳକେଶ, ଟାକର ତା'ଛଡ଼ା ରକ୍ତଗୋଲାପ ଓ ରଙ୍ଗିନ୍ ସୁରାର ଆକର୍ଷଣ ତ ଅଛି ।

ସତ୍ୟବ୍ରତ ସର୍ବଶେଷ ପାହାଚରେ ଠିଆହୋଇ ଗଭୀର ଅନ୍ଧକାର ଆଡ଼େ ଚାହିଁଥିଲେ ।

ହଠାତ୍ ମେଞ୍ଚାଏ ଆଲୋକ ଶିଖା ଜଳିଉଠି ଦପ୍‌କରି ନିଭିଗଲା ।

କିଏ ବୋଧେ ଡିଆସିଲି କାଠିଟା ଜଳେଇଦେଇ ନିଭେଇଦେଲା ।

ତା'ପରେ ନିଶ୍ଚୁପ୍ ରଜନୀ ।

ସତ୍ୟବ୍ରତ ରିଭଲଭରଟା ଡାହାଣ ହାତରେ ବାଗେଇ ଧରି ଧୀର ପଦ ଚାଲି ସେଇ ଆଡ଼େ ଆଗେଇ ଗଲେ । ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚି କାହାରି ଅସ୍ତିତ୍ୱ ସେ ଅନୁଭବ କରିପାରିଲେ ନାହିଁ ।

ବାଁ ପାଖର ଗୋଟାଏ ବୃକ୍ଷଶାଖା ଉପରୁ ଦୁଇଟା ବାଦୁଡ଼ି ବୋଧେ କଳିକରି ଉଠିଲେ । ଏତେ ଜୋର୍‌ରେ ସେମାନଙ୍କର ପକ୍ଷଚାଳନାର ଶବ୍ଦ ହେଲା ଯେ, ସତ୍ୟବ୍ରତଙ୍କ

ଛାତିଟା କମ୍ପି ଉଠିଲା ।

ବିଳାସ କକ୍ଷ ଦୁଆରେ, କୁଞ୍ଜଲତା ଛାଉଣୀ ତଳେ ମନେହେଲା ଏକ ସ୍ତିମିତ ଆଲୋକ ଶିଖା । ତେବେ କ'ଣ........

କିଏ ? କିଏ ତାଙ୍କ ପାଖ ଦେଇ ଛୁଟି ପଳେଇଲା ? ବାଁ ହାତର ଟର୍ଚ୍ଚଟା ଜଳାଇବାକୁ ଯାଇ ପୁଣି ସଂଯତ ହୋଇଗଲେ । ପାଦଶବ୍ଦ ଏବେ ବି ପବନରେ ମିଶି ଯାଇନାହିଁ । ହୁଏତ ସେ ତାର ଅନୁସରଣ କରିପାରିବେ ।

କିନ୍ତୁ ସେଇ ମୁହୂର୍ତ୍ତରେ ଟ୍ରେନ୍‌ଟା ଆସିଗଲା ।

ବିକଟ କର୍କଶ ସ୍ୱରରେ ସତ୍ୟବ୍ରତଙ୍କ କାନ ବଧୀରା ହୋଇଗଲା । ଟ୍ରେନ୍ ବ୍ରିଜ୍ ଉପରେ ପାଶ୍‌କରି ଚାଲିଯିବା ଯାଏ ଯେ ନିଶ୍ଚୁପ୍ ଭାବରେ ଠିଆହୋଇ ରହିଲେ ।

ବିଳାସ କକ୍ଷ ଦୁଆରେ, କୁଞ୍ଜଲତାର ଛାଉଣୀ ତଳେ ଯେଉଁ ସ୍ତମିତ ଆଲୋକ ଶିଖାଟି ସେ ଲକ୍ଷ୍ୟ କରିଥିଲେ, ସେ ମଧ ବିଲୀନ ହୋଇଯାଇଥିଲା ।

ଉପର ମହଲାରେ ଖୁବ୍‌ଜୋରରେ କବାଟ ବାଡ଼େଇବାର ଶବ୍ଦ ହେଲା । ସତ୍ୟବ୍ରତ ସିଧା ଉପରକୁ ଛୁଟିଲେ । ପ୍ରଥମେ ସେ ମଦନରାୟଙ୍କ କକ୍ଷରେ ପ୍ରବେଶ କଲେ । ସଙ୍ଗେ ସଙ୍ଗେ ଘର ଭିତରେ ଟର୍ଚ୍ଚ ପକାଇ ଦେଖିଲେ ।

ସବୁଠାରୁ ଆଶ୍ଚର୍ଯ୍ୟର କଥା, କ୍ଷଣକ ଆଗରୁ ସେ ଯେଉଁ ଚାବି ନେଛାଟା ଟେବୁଲ୍ ଉପରେ ଥୋଇଦେଇ ତଳକୁ ଯାଇଥିଲେ, ସେଇ ଚାବି ନେଛାଟା ନାହିଁ । ଅବଶ୍ୟ ସେଗୁଡ଼ିକ ସବୁ ମଦନରାୟଙ୍କ ଚାବି । ଗତକାଲି ରାତିରେ ସେତକ ସେ ଆବିଷ୍କାର କରିଥିଲେ । ଆଜି ଆଉ ଥରେ ଡ୍ରୟାରଗୁଡ଼ିକ ଖୋଲି ଭଲ ଭାବରେ ପରୀକ୍ଷା କରିବେ ବୋଲି ଭାବିଥିଲେ ।

ଅଥଚ ଚାବି ନେଛାଟା ଏଇ କେତେମିନିଟ୍ ଭିତରେ ଅଦୃଶ୍ୟ ହୋଇଗଲା ?

ତା'ହେଲେ ନିଶ୍ଚୟ କେହି ଜଣେ ଏ ଘର ଭିତରେ ପଶିଥିଲା ଏବଂ ଚାବି ନେଛାଟା ହାତକରି ଫେରୁ ଫେରୁ ଅନ୍ଧାରରେ ସେ କବାଟରେ ପିଟି ହୋଇ ଯାଇଥିଲା ।

କିନ୍ତୁ ସେଇ ଚାବି ନେଛାଟା ସାହାଯ୍ୟରେ ଯଦି କେହି ମଦନ୍ ରାୟଙ୍କ ଦାମୀ ପଦାର୍ଥଟା ସ୍ଥାନାନ୍ତରିତ କରି ପକାଏ ।

ସତ୍ୟବ୍ରତ ପୁଣି ସଙ୍ଗେ ସଙ୍ଗେ ତଳକୁ ଛୁଟିଲେ । ଅଳକେଶ ତା' ଘରେ ଅଛି ତ?

ଭିତରୁ କବାଟ ଦିଆ ହୋଇଥିଲା । କାନଡେରି ସତ୍ୟବ୍ରତ ନିଶ୍ୱାସ ପ୍ରଶ୍ୱାସର ଶବ୍ଦ ବାରିଲେ । ତେବେ ଅଳକେଶ ନୁହେଁ, ଉମାପତି ?

ସତ୍ୟବ୍ରତ ଛୁଟିଯାଇ ଉମାପତି ଦୁଆରେ ପହଞ୍ଚିଲେ ।

ହଠାତ୍ ଭିତରୁ ଆଲୋକ ଲିଭିଗଲା । ସତ୍ୟବ୍ରତ ଦୁଆରେ ଆଘାତ କଲେ ।

: କିଏ ? ସଙ୍ଗେ ସଙ୍ଗେ ଉମାପତି ଭିତରୁ ପଚାରିଲା ।

: ମୁଁ ସତ୍ୟବ୍ରତ ମହାପାତ୍ର । ଆପଣ ଏତେରାତି ଯାଏ ଶୋଇନାହାଁନ୍ତି ?

ଉମାପତି ଘରେ ଆଲୋକ ଜଳାଇ କବାଟ ଖୋଲିଦେଲା ।

: ଆସନ୍ତୁ । ମୁଁ ଆଜି କାହିଁକି ମୋଟେ ଶୋଇ ପାରୁନାହିଁ । ଏତେବେଳ ଯାଏ ବିଛଣାଟା ଉପରେ ଆଖିବୁଜି କେବଳ ଗଡୁଥିଲି ।

ହୁଁ, ସତ୍ୟବ୍ରତ ଚାରିଆଡ଼କୁ ଚାହିଁଲେ । ଉମାପତି ହାତରେ ଧରିଥିବା ଜଳନ୍ତା

ସିଗାରେଟଟା ଲୁଚେଇବାକୁ ଚେଷ୍ଟା କରୁଥିଲା ।

: ଆଚ୍ଛା ଆପଣ ଶୋଇ ପଡ଼ନ୍ତୁ । ସତ୍ୟବ୍ରତ ଘରୁ ବାହାରି ଆସିଲେ । ଉମାପତି ସଙ୍ଗେ ସଙ୍ଗେ ଦରଜା ବନ୍ଦ କରି ଦେଲା ।

ତା'ହେଲେ ?

ଚାବିଟା ନେଲା କିଏ ?

ରାତିଭରି କ'ଣ ମଦନ ରାୟଙ୍କ କକ୍ଷରେ ପହରା ଦେବାକୁ ହେବ ?

ସେ ଲେଉଟି ଗଲେ ମଦନରାୟଙ୍କ କକ୍ଷକୁ । ଏଥର ଲଣ୍ଠନ ଜଳେଇଲେ ।

ଘରର ଅନ୍ୟାନ୍ୟ ଜିନିଷପତ୍ର ସେ ପରୀକ୍ଷା କରିବାକୁ ଚେଷ୍ଟା କଲେ । ଯାହା ଯେଉଁଠି ଥଲା, ସବୁ ଠିକ୍ ସେଇଠି ଅଛି । ଖାଲି ଟେବୁଲ୍ ଉପରେ ଚାବିଟା ନାହିଁ । ଆଉ ଡାଇରିଟା ! (ଯେଉଁଥିରେ ଘର ଖରଚ ଲେଖା ହୋଇଛି) ଡାଇରିଟା କ'ଣ ସେ ଆଜି ବାହାର କରିଥିଲେ ? ନାଁତ ! କାଲି ଦେଖିସାରି ପୁଣି ସେଇଟାକୁ ଟେବୁଲ୍ ଡ୍ରୟାରରେ ରଖିଦେଇଥିଲେ । ଆଜି ପୁଣି ଟେବୁଲ୍ ଉପରକୁ ଆସିଲା କିପରି ?

ଲୋକଟା କ'ଣ ଏଇ କେତେ ମିନିଟ୍ ଭିତରେ ଡ୍ରୟାରଟା ଖୋଲିଥିଲା ? ସବୁ ଜିନିଷପତ୍ର ଖେଳେଇ ଦେଖିଥିଲା ? ସାହସ ତ କମ୍ ନୁହେଁ । ସେ ତା'ହେଲେ ସତ୍ୟବ୍ରତଙ୍କ ଗତିବିଧି ଲକ୍ଷ୍ୟ କରୁଥିଲା ।

ଆଶ୍ଚର୍ଯ୍ୟ ! ଏ ଡାଇରୀଟା ତ ସେ ବଜାର ଖାତା ନୁହେଁ ।

ଆରେ ! ସତ୍ୟବ୍ରତ ଅତ୍ୟନ୍ତ ଆଗ୍ରହ ସହକାରେ ଡାଇରୀଟା ଖେଳେଇବାକୁ ଲାଗିଲେ । ଅନେକ ଯାଗାରେ ଲେଖାହୋଇଛି । କିନ୍ତୁ ହସ୍ତାକ୍ଷର ମଦନରାୟଙ୍କର ନୁହେଁ ।

ଡାଇରୀର ଗୋଟାଏ ପୃଷ୍ଠା ଓଲଟାଇ ସେ ଅବାକ୍ ହୋଇଗଲେ ।

'ପ୍ରଥମ ଯୌବନର ସ୍ପର୍ଶ ଲାଗି ଆସୁଥାଏ ମାତ୍ର, ମନ ସେତେବେଳେ ଚାହୁଁଥାଏ ସବୁ ନୂଆ ନୂଆ ରଙ୍ଗିନ ପ୍ରଜାପତି ସଙ୍ଗରେ ଛୁଟିବା ପାଇଁ ଭଲ ଲାଗୁଥାଏ । ଠିକ୍ ସେତିକିବେଳେ ରାଜୁ ସହିତ ମୋର ଭେଟ ହେଲା । ସୁନ୍ଦର ଚେହେରା । ମିଠା ହସ । ସେ ମୋର ପ୍ରାଇଭେଟ୍ ଟିଉଟର ଭାବରେ ଆସିଥିଲା । ଭାରି ଭଲ ଲାଗିଲା ମତେ ତାକୁ । ହାତରେ ମୁଁ ସ୍ୱର୍ଗ ପାଇଲି । ଆଉ ମୋର କିଛି ମନେ ରହିଲା ନାହିଁ । ଦିନସାରା ମୋର କେଉଁଥିରେ ମନ ଲାଗେ ନାହିଁ । ମୁଁ ତା'ରି ବାଟକୁ ଚାହିଁ ବସିଥାଏ । ସଂଧ୍ୟା ହେବା ମାତ୍ରେ ସେ ଆସି ଆମ ଘରେ ପହଞ୍ଚେ । ଦିନେ ବି ଘଡ଼ିଏ ବ୍ୟତିକ୍ରମ ହୁଏ ନାହିଁ ।

'ରାଜୁ ପାଇଁ ମୁଁ ନିତି ନିତି ନୂଆ ପୋଷାକରେ ନିଜକୁ ସଜାଇ ଥାଏ । ରାଜୁ ବି ନିତି ନିତି ଆସିବା ବେଳେ ମୋ ପାଇଁ କିଛି ନା କିଛି ଆଣିଥାଏ । କେଉଁ ଦିନ ବହି ଖଣ୍ଡେ, କେଉଁଦିନ ସୂତା ବଣ୍ଡିଲିଏ, ନ ହେଲାବେଳକୁ ଚକଲେଟ ଦୁଇଚାରିଟା ।

'ସେ ମୋତେ ପଢ଼ାଇ ବସେ । ମୋର ପଢ଼ାରେ ମନ ଲାଗେ ନାହିଁ । ମୁଁ ଖାଲି ରାଜୁର ବଳିଲା ବଳିଲା ବାହୁ ଯୋଡ଼ାକୁ ଆଡ଼କୁ ଅନାଇ ରହେ । କି ସୁନ୍ଦର ସ୍ୱାସ୍ଥ୍ୟ, କେତେ ଆନ୍ତରିକତା ।

'ଏମିତି ଦିନ ଗଡ଼ି ଚାଲେ । ଆମ ଦୁହିଁଙ୍କ ଭିତରେ ପ୍ରବଳ ଆନ୍ତରିକତା ଗଢ଼ିଉଠେ । ସେତେବେଳେ ମୋ ମନ ପ୍ରାଣରେ କେତେ ନୂଆ ଭାବନା, କେତେ ନୂଆ ଆଶା ! ମୁଁ ମାତ୍ର ଫ୍ରକ୍ ଛାଡ଼ି ଶାଢ଼ୀ ପିନ୍ଧୁଥାଏ । ପ୍ରଥମେ ଯେଉଁଦିନ ଶାଢ଼ି ପିନ୍ଧିଲି, ସେ ଦିନ

କୌଣସି ପ୍ରକାର କଟିଗଲା । କିନ୍ତୁ ସଂଧ୍ୟା ଯେତେ ପାଖେଇ ଆସିଲା, ମନଟା ସେତେ ଚଞ୍ଚଳ ହୋଇ ଉଠିଲା । ଆଉ ଟିକେ ପରେ ରାଜୁ ଆସିବ । ମୁଁ ତା' ଆଗକୁ ଯିବି କିପରି ? ସେ ମୋତେ ଦେଖିଲେ ଭାବିବ କ'ଣ ? ହୁଏତ ହସି ହସି ଗଡ଼ିଯିବ ।

'ରାଜୁ ଆସିଲା । ମୁଁ ସେତେବେଳକୁ ଛାତି ଦମ୍ଭକରି ଚୁପ୍‌ଚାପ୍ ପଢ଼ାଘରେ ବସିଥିଲି । ମୋତେ ଦେଖିବା ମାତ୍ରେ ରାଜୁ ଆନନ୍ଦରେ କୁରୁଳି ଉଠିଲା । ଛୁଟି ଆସି ଦୁଇ ବାହୁରେ ଜାବୁଡ଼ି ଧରି ଛାତି ଉପରକୁ ଆଉଜେଇ ନେଲା ।

'ଓଃ, ସେଦିନ ମୋ ପ୍ରାଣରେ ଯେଉଁ ଉତ୍‌କଣ୍ଠା, ଦେହ ମନରେ ଯେଉଁ ଉତ୍ତେଜନା, କେବେ କ'ଣ ଭୁଲି ପାରିବି। ତଣ୍ଟି ଶୁଖିଗଲା, ପାଟି ଫିଟିଲା ନାହିଁ। ସେ କେବଳ ହସି ମୋ ମୁହଁକୁ ବେଳେ ବେଳେ ଚାହିଁ ଦେଉଥିଲା । ମୁଁ ତା' ବାହୁ ବନ୍ଧନ ଭିତରେ ଆବଦ୍ଧ ରହି କମ୍ପୁଥିଲି, ସମଗ୍ର ଦେହ ମୋର ଝାଳେଇ ଯାଇଥିଲା ।

'ରାଜୁ ବହୁତ ସମୟ ପରେ ମତେ ଛାଡ଼ି କହିଲା : ବୋକା ଝିଅଟା କିଛି ଶିଖିନି । ସେ ହସିଲା, ମୁଁ ତଳକୁ ମୁହଁ ପୋତି ଠିଆ ହୋଇଥିଲି ।

: 'ତୁ କିନ୍ତୁ ଶାଢ଼ି ପିନ୍ଧିଲେ ଭାରି ସୁନ୍ଦର ଦିଶୁଛୁ । ମନ ହେଉଛି ଦିନ ଦିନ ରାତିରାତି ଧରି ତୋତେ ଅନାଇ ରହନ୍ତି ।

'ସେ ମୋ ମୁହଁକୁ ଚାହିଁ ରହିଥିଲା । ମୁଁ କିନ୍ତୁ ଅନାଇ ପାରୁ ନ ଥିଲି । ସେ ଦିନ ଆଉ ପାଠ ପଢ଼ା ହେଲା ନାହିଁ । ରାଜୁ ପୁଣି ମୋତେ କୋଳକୁ ଭିଡ଼ିନେଇ ଦେହ ମୁହଁରେ ମୋର ଚୁମ୍ବନରରେଖା ଆଙ୍କିଦେଇ ଗଲା । ଉତ୍ତେଜନାରେ ସମଗ୍ର ଶରୀରଟା ଥର ଥର ହୋଇ କମ୍ପିବାକୁ ଲାଗିଲା । ସେ ଦିନ ମୁଁ ବୁଝି ପାରି ନ ଥିଲି ଏହି ଉତ୍ତେଜନାର ଅର୍ଥ। ଅନେକ ରାତି ଯାଏ ନିରବରେ ବସି ରହିଲୁ । ସେ ବେଳେବେଳେ ପଦେ ଅଧେ କ'ଣ ମୋତେ କହୁଥିଲା ସିନା, ମୁହଁ ଖୋଲି ପାରୁ ନ ଥିଲି ।

'ସେ ଦିନ ରାଜୁ ଚାଲିଯିବାପରେ ମୁଁ ପଢ଼ା ଘରେ ଅନେକ ସମୟ ଯାଏ ଚୁପ୍‌ଚାପ୍ ବସି ରହିଲି । ଆନନ୍ଦ ଓ ଉତ୍ତେଜନାରେ ସେପର୍ଯ୍ୟନ୍ତ ମୋର ସମଗ୍ର ଶରୀରଟା କଂପୁଥିଲା । ରାଜୁ ଚାଲିଯିବା ପରେ ମୁଁ ସେଦିନ ନିଜକୁ ବଡ଼ ଏକୁଟିଆ ମନେ କଲି ।

'ପରଦିନ ପୁଣି ମୋର ଉଦ୍‌ଯୋଗ ପର୍ବ ଚାଲିଲା । ସେ ଦିନ ନିଜକୁ ମୁଁ ଅତି ମାତ୍ରାରେ ସଜାଇବାକୁ ଚେଷ୍ଟାକଲି । ଆଜି ସେ କଥା ଭାବିଲେ ମୋତେ ହସ ଲାଗୁଛି । କିନ୍ତୁ ପ୍ରତି ଝିଅ ପିଲା ଜୀବନରେ ଏମିତି ଗୋଟାଏ ସମୟ ଆସେ ବୋଧହୁଏ !

'ରାଜୁ ଆସିଲା । ମୁଁ ତାକୁ ଚାହିଁ ପାରିଲି ନାହିଁ । ମୋ ସାମନାକୁ ଆସି ଅନେକ ବେଳଯାଏ ମୋ ଆଡ଼େ ଅନାଇ ରହିଲା । ତାପରେ ଧୀରେ ଧୀରେ ମୋତେ କୋଳ ଆଡ଼କୁ ଟାଣି ନେଇ କହିଲା : ତୋ ପାଇଁ ଆଜି ଗୋଟିଏ ସୁନ୍ଦର ଜିନିଷ ଆଣିଛି । ମୁଁ ତା' ଆଡ଼କୁ ଚାହିଁ ପାରୁ ନ ଥିଲି । ତଥାପି ଆଖି ଦି'ଟା ଅଜାଣତରେ ଥରେ ଖୋଲିଗଲା । ସେ ଗୋଟିଏ ରକ୍ତଗୋଲାପ ହାତରେ ଧରିଥିଲା । ଗୋଲାପର ମୃଦୁ ଗନ୍ଧ ମୋ ସମସ୍ତ ଦେହରେ କିପରି ଏକ ମଧୁର ମୂର୍ଚ୍ଛନା ଖେଳେଇ ଦେଇ ଗଲା । ଗୋଲାପଟିକୁ ସେ ଖୋସିଦେଲା ମୋର କବରୀରେ ।

ସତ୍ୟବ୍ରତ ତା'ପରେ ପୃଷ୍ଠା ଓଲଟାଇବାକୁ ଯାଉଥିଲେ, କିନ୍ତୁ ତାଙ୍କର ମନେ ହେଲା ଯେପରି କିଏ ଜଣେ ତଳକୁ ଓହ୍ଲେଇ ଯାଉଛି । ସେ ଉଠିପଡ଼ି ସେଇ ପାଦଶବ୍ଦ ଅନୁସରଣ

କରି ତଳକୁ ଓହ୍ଲେଇ ଗଲେ । ସତକୁ ସତ ସେ ସାମନାରେ କାହାର ଅସ୍ପଷ୍ଟ ଛାୟାମୂର୍ତ୍ତି ଦେଖିଲେ । ସେ ଦ୍ରୁତ ବେଗରେ ଆଗେଇ ଚାଲିଥିଲା ।

ସତ୍ୟବ୍ରତ ମଧ୍ୟ ତା ପଛ ଛାଡ଼ିଲେ ନାହିଁ । ଛାୟାମୂର୍ତ୍ତିଟା ଉଦୟମହଲ ଫାଟକ ଅତିକ୍ରମ କରି ବାହାରକୁ ଚାଲିଗଲା । ମନେ ହେଉଥିଲା ଗୋଟିଏ ନାରୀ ମୂର୍ତ୍ତି ହେବପରା ! କିନ୍ତୁ ସ୍ପଷ୍ଟ କିଛି ବାରି ହେଉ ନ ଥିଲା । ସତ୍ୟବ୍ରତ ଟର୍ଚ୍ଚଟା ଛାଡ଼ିଦେଇ ଆସିଥିଲେ, ବଡ଼ ଅସୁବିଧାରେ ପଡ଼ିବାକୁ ହେଲା ।

ସେ କିନ୍ତୁ ଛାୟା ମୂର୍ତ୍ତିଟାର ପିଛା ଛାଡ଼ି ନ ଥିଲେ ।

ସତ୍ୟବ୍ରତଙ୍କ ମନରେ ସନ୍ଦେହ ଜାଗିଥିଲା, ଲୋକଟା କ'ଣ ମଦନ ରାୟଙ୍କର ସେହି ଦାମୀ ପଦାର୍ଥଟା ନେଇ ପଳାଇ ଯାଉଛି ନା କ'ଣ । ସତ୍ୟବ୍ରତ ତା ପଛେ ପଛେ ଛୁଟିଥିଲେ ।

ଅଳକେଶର ଦୁଆରେ ମୃଦୁ କରାଘାତ ହେଉଥିଲା ।

: କିଏ ?

: ଆଜି କ'ଣ ଶୋଇ ପଡ଼ିଲ ?

: ଓଃ ମଳିନା ଦେବୀ ! କିନ୍ତୁ ସତ୍ୟବ୍ରତ ମହାପାତ୍ରଟା ଯେ ରାତ୍ରିଚର ପରି ଘୂରିବୁଲୁଛି । ବାହାରକୁ ଟିକିଏ ବାହରିବାର ଯୁ ନାହିଁ ।

ମୁଁ ତାକୁ ଦୂରକୁ ପଠାଇ ଦେଇଛି । ତମେ ଆସ, ଆମେ ପ୍ରମୋଦ ଗୃହକୁ ଯିବା ।

: ସେ ଯଦି ଫେରିଆସେ ?

: ନା, ସେ ଫେରୁ ଫେରୁ ଅନେକ ଡେରିହେବ ।

ଅଳକେଶ ମଳିନା ପଛେ ପଛେ ଉଦ୍ୟାନର ଶେଷ ଭାଗରେ ଅବସ୍ଥିତ ପ୍ରମୋଦ ଗୃହଆଡ଼େ ଆଗେଇ ଥିଲା ।

: ମୁଁ କିଛି ଠିକ୍ କରି ପାରୁନାହିଁ । ଏ ପୋଲିସ ଲୋକଗୁଡ଼ା ଯେପରି ଭାବରେ ପଛରେ ଲାଗିଛନ୍ତି, ସେମାନଙ୍କ ଆଖି ଏଡ଼େଇ ଯିବା ମୋତେ ସହଜ ନୁହେଁ ।

: ମୁଁ କିନ୍ତୁ ଆଉ ସହ୍ୟ କରିପାରୁନାହିଁ । ଏଠାକାର ପାଣି ପବନ ମୋର ଶ୍ୱାସରୁଦ୍ଧ କରି ପକାଉଛି । ମୁଁ ତୁମକୁ ମୋର ଶେଷ ଭରସା ରୂପେ ଧରି ନେଇଛି ।

ପ୍ରମୋଦ ଗୃହର ଚାବି ଖୋଲି ଦୁହେଁ ଭିତରେ ପଶିଲେ ।

ମଳିନା କହିଲା : ଦିନଟା କୌଣସି ପ୍ରକାରେ କଟିଯାଏ । କିନ୍ତୁ ସଂଧ୍ୟା ହେବା ମାତ୍ରେ ମୁଁ ଆଉ ସ୍ଥିର ହୋଇ ବସିପାରେ ନାହିଁ । ଏହି ରଙ୍ଗିନ୍ ପାନୀୟ ଗୁଡ଼ିକ ନିକଟରେ ମୁଁ ଏପରି ଭାବରେ ବନ୍ଦି ହୋଇ ଯାଇଛି, ଯାହାର ତୁଳନା ଦେଇହେବ ନାହିଁ । ଦୈନିକ ଅନ୍ତତଃ ଚାରି ପେଗ୍ ପେଟରେ ନ ପଡ଼ିଲେ ମୁଁ ପାଗଳ ହୋଇଯିବି ।

: ଆପଣଙ୍କର ଏ ଅଭ୍ୟାସ ହେଲା କିପରି ?

: ଏ ଅଭ୍ୟାସ !! ମଳିନା ହସି ଉଠିଲା । ଏ ଅଭ୍ୟାସ ମୂଳରେ ବାପାଙ୍କର ଯଥେଷ୍ଟ ଦାନ ଅଛି । ଏଇଟା ଯେ ବଡ଼ଲୋକିର ମର୍ଯ୍ୟାଦା ! ଅବଶ୍ୟ ବାପା ମୋତେ ଶିଖେଇ ନାହାନ୍ତି । ସେ ସୁଯୋଗ ଦେଇଛନ୍ତି । ଛାଡ଼ନ୍ତୁ, ତମକୁ କ'ଣ ଦେବି ? ସବୁ ପ୍ରକାର ପାନୀୟ ଏଠାରେ ମହଜୁଦ ଅଛି । ତା'ଛଡ଼ା ମତେ ନୂଆ ପଦାର୍ଥ ମଧ୍ୟ ଆବିଷ୍କାର

କରିଆସେ ।

: ନା, ନା, ମୋର ନହେଲେ ଚଳିବ । ଏ ସବୁଥିରେ ମୁଁ ଅଭ୍ୟସ୍ତ ନୁହେଁ । ତମେ ଖାଅ ।

ମଳିନା ହସି ଉଠିଲା : ତା' ହୁଏନା ଅଳକେଶ ବାବୁ ! ଯେଉଁ କ୍ଷେତ୍ରରେ ଯାହା କରଣୀୟ ତାକୁ ବାଦ୍‌ଦେଲେ ଚଳିବ କିପରି । ତମେ ନିଅ, ମୁଁ ତମପାଇଁ ଏକ ମଧୁର ପାନୀୟ ତିଆରି କରି ଦେଉଛି । ଭାରି ମଜା ଲାଗିବ। ମୁଖରୋଚକ ହେବ । ଗଳାରେ ଆଦୌ ଲାଗିବ ନାହିଁ । ଅଥଚ ଚମତ୍କାର ଆକ୍‌ସନ ଆରମ୍ଭ ହୋଇଯିବ । ଧୀରେ ଧୀରେ ସମସ୍ତ ଦେହଟାକୁ ଆଚ୍ଛନ୍ନ କରି ଆଣିବ । ମନ ଉପବନରେ ଫୁଟି ଉଠିବ ଲକ୍ଷେ ବାସ୍‌ନା ହେନା ।

ମଳିନା ବିଭିନ୍ନ ପ୍ରକାର ପାନୀୟ ବୋତଲମାନଙ୍କରୁ ପରିମିତ ପରିମାଣରେ ଢାଳି ଗୋଟିଏ ବଡ଼ ପାତ୍ରରେ ମିଶାଉ ଥିଲା । ତା'ପରେ ଗୋଟିଏ କମଳାଲେମ୍ବୁ ଛଡ଼ାଇ ରସ ମିଶାଇଲା ସେଥିରେ । ପୁଣି ଚିନି ମିଶାଇଲା ଦୁଇ ଚାମଚ୍ ।

ସେ କହି ଚାଲିଥିଲା : ଏ ଧରଣର ଉଦ୍‌ଭାବନ ଶକ୍ତି ମଦନ ପଟ୍ଟନାୟକଙ୍କର ଥିଲା ପ୍ରଖର । ଏତେ ବଢ଼ିଆ ବଢ଼ିଆ ପାନୀୟ ସେ ପ୍ରସ୍ତୁତ କରି ପାରନ୍ତି ନା, ଆପଣ ଅବାକ୍ ହୋଇଯିବେ । ହେଇ ନିଅନ୍ତୁ। ମଳିନା ସମସ୍ତ ପାନୀୟକୁ ଦୁଇଭାଗ କରି ଏକ ଭାଗ ଅଳକେଶ ଆଡ଼କୁ ବଢ଼େଇ ଦେଇ କହିଲା: ମୁଁ ମଧ୍ୟ ତମ ସହିତ ଏହି ହାଲ୍‌କା ପାନୀୟ ବ୍ୟବହାର କରିବି । ଏହି ପାନୀୟର ବିଶେଷତ୍ୱ ହେଉଛି, ଆପଣଙ୍କୁ ଆଦୌ ମାତାଲ କରିବ ନାହିଁ, କିନ୍ତୁ ଆପଣଙ୍କ ମନରେ ଚମତ୍କାର ଏକ ସ୍ୱପ୍ନ ସୃଷ୍ଟି କରିବ। ଆପଣଙ୍କର ସମସ୍ତ ଦେହଟା ପବନରେ ଭାସିଲା ପରି ଲାଗିବ ।

ମଳିନା କହିଲା: ଆରମ୍ଭ କରି ଦିଅନ୍ତୁ । ସେ ଅଳକେଶର ଗ୍ଲାସ ସହିତ ଗ୍ଲାସକୁ ଠୁକେଇ ନେଲା ।

ଅଳ୍ପ ସମୟ ପରେ ଦୁହିଁଙ୍କ ପାନ-ପାତ୍ର ନିଃଶେଷ ହୋଇଗଲା । ମଳିନା ପଚାରିଲା : ଆଉ ?

: ନା, ଅଳକେଶ ମୁଣ୍ଡ ହଲାଇ ବାରଣ କଲା ।

: ମୋର କିନ୍ତୁ ଆଉ ଟିକିଏ ଆବଶ୍ୟକ । ମଳିନା ଗୋଟିଏ ପାନ-ପାତ୍ରରେ କିଛି ପାନୀୟ ଢାଳି କହିଲା, ତମେ ସିନା ଅଭ୍ୟସ୍ତ ନୁହଁ, ମୋର କିନ୍ତୁ ଦିନେ ନହେଲେ ଚଳିବ ନାହିଁ । ସେ ଦୃଷ୍ଟିରୁ ଉଦୟ ମହଲରେ ମୁଁ ଆରାମରେ ଅଛି ।

: କିନ୍ତୁ ମୁଁ ବଡ଼ ଆଶ୍ଚର୍ଯ୍ୟ ହେଉଛି ମଳିନା ଦେବୀ, ତମେ କିପରି ଏଥିରେ ଅଭ୍ୟସ୍ତ ହୋଇ ପାରିଲ ।

: ସେ କଥା ନ ପଚାରିବାହିଁ ଭଲ । କାରଣ ଖୁବ୍ ଅଳ୍ପ ବୟସ ବେଳୁ ମୁଁ ଏହାର ସ୍ୱାଦ ଆସ୍ୱାଦନ କରିବାକୁ ଆରମ୍ଭ କରିଥିଲି । ମୋର ତ କୌଣସି ବାଧା ନ ଥିଲା । ତେଣୁ ଧୀରେ ଧୀରେ ଅଭ୍ୟାସରେ ପରିଣତ ହୋଇଯାଇଛି । ମଳିନା ପୁଣି ପାନ-ପାତ୍ରଟି ନିଃଶେଷ କରିଦେଲା ।

: ଅଳକେଶ ବାବୁ ! ମଳିନାର କଣ୍ଠସ୍ୱର କିପରି ଥରି ଉଠିଲା । କେବେ ଉଦୟ ମହଲ ଛାଡ଼ିଯିବା କିଛି ତ କହିଲ ନାହିଁ ?

ଯିବା ଯେ କିନ୍ତୁ କେଉଁଠାକୁ ଯିବା ?

କାହିଁକି ଦିବ୍ୟରଞ୍ଜନ ବାବୁଙ୍କ ଘରକୁ ।

: ସେ ଆଉ ନାହାନ୍ତି ମଳିନାଦେବୀ ।

: ନାହାନ୍ତି ? ମଳିନାର ସମସ୍ତ ଦେହଟା କମ୍ପି ଉଠିଲା ।

: ନା, ଅପରେସନ ଥିଏଟରରେ ତାଙ୍କର ମୃତ୍ୟୁ ହୋଇଛି ।

: ତା'ହେଲେ ମୋ ଅବସ୍ଥା କ'ଣ ହେବ ଅଳକେଶ ବାବୁ !

: କାହିଁକି ତମେ ତ ଏଠି ଆରାମରେ ଅଛ । ମଦନରାୟଙ୍କର ବିଶାଳ ସମ୍ପତ୍ତିର ମାଲିକ ହୋଇ ସମସ୍ତ ଜୀବନ ଆରାମରେ କଟାଇ ଦେଇ ପାରନ୍ତ । କିନ୍ତୁ ମୁଁ ବୁଝି ପାରୁନାହିଁ, ତମେ ଏଠାରୁ ଛୁଟି ପଳାଇ ଯିବାକୁ କାହିଁ ଚାହୁଁଚ ।

: ତମେ ବୁଝି ପାରିବ ନାହିଁ ଅଳକେଶ ବାବୁ ! ବରଂ ତମେ ମୋତେ ଆଶ୍ରୟ ଦିଅ, ମୁଁ କିନ୍ତୁ ଉଦୟ ମହଲରେ ରହିପାରିବିନି ।

: ମୁଁ କ'ଣ ତୁମକୁ ଆଶ୍ରୟ ଦେଇ ପାରିବି ମଳିନା ! ତୁମକୁ ବଞ୍ଚେଇ ରଖିଲା ଭଳି ସାମର୍ଥ୍ୟ କ'ଣ ମୋର ଅଛି ?

: ମୁଁ କିନ୍ତୁ ସବୁ ଅବସ୍ଥା ପାଇଁ ପ୍ରସ୍ତୁତ ଅଛି ଅଳକେଶ ବାବୁ । ତୁମକୁ ମୁଁ ମୋ ଜୀବନର ଶେଷ ଆଶା ଭରସା ରୂପେ ଧରି ନେଇଛି । ଛାଡ଼ିଦେଇ ପାରିବି ନାହିଁ ।

: ଆଚ୍ଛା ମଳିନା ! ମୋର ଗୋଟିଏ ପ୍ରଶ୍ନର ଉତ୍ତର ଦେଇ ପାରିବ ?

: କୁହ । ମୁଁ ଆଜି ତୁମର କୋଟିଏ ପ୍ରଶ୍ନର ଉତ୍ତର ଦେବାକୁ ପ୍ରସ୍ତୁତ ଅଛି ।

: ମି. ମଦନ ରାୟ ଦିବ୍ୟରଞ୍ଜନ ବାବୁଙ୍କ ପାଖକୁ ଯେଉଁ ପତ୍ର ଲେଖିଥିଲେ ତୁମେ ତ ପଢ଼ିଥିଲା ସତ କହିଲ, ତାଙ୍କ ଚିଠିରେ ବର୍ଣ୍ଣିତ ସେଇ ଦାମୀ ପଦାର୍ଥଟି କ'ଣ ? ଯାହା ବହନ କରିନେବା ପାଇଁ ମୁଁ ଏଠାକୁ ଆସିଥିଲି ।

ମଳିନା ଚିନ୍ତିତ ହୋଇ ପଡ଼ିଲା । କହିଲା : ତମେ ବିଶ୍ୱାସ କର ଅଳକେଶ ! ମୋତେ ସେ ସମ୍ବନ୍ଧରେ କିଛି ଜଣାନାହିଁ । ବାପା ମଧ୍ୟ ମୋତେ କେବେ କିଛି ଜଣାଇ ଦେଇ ନାହାନ୍ତି ।

: ତା'ହେଲେ...ମୋର କ'ଣ ମନେ ହେଉଛି ଜାଣ ମଳିନା ! ମି. ମଦନ ରାୟଙ୍କର କୌଣସି ଲୁହା ସିନ୍ଦୁକରେ ସେହି ଦାମୀ ପଦାର୍ଥଟି ନିଶ୍ଚୟ ମୋତେ ପ୍ରତୀକ୍ଷା କରି ବସିଛି । ତୁମେ କ'ଣ ଜାଣନାହିଁ, ମି. ମଦନ ରାୟଙ୍କ ମୂଲ୍ୟବାନ ପଦାର୍ଥ ସବୁ କେଉଁଠି ରହୁଥିଲା ।

: ତା' ଅବଶ୍ୟ ଜାଣିଛି । ତୁମେ ଦେଖିବାକୁ ଚାହଁ ?

ଭାବୁଛି ଦେଖିଲେ ଭଲ ହୁଅନ୍ତା । ମୁଁ ଥରେ ଚେଷ୍ଟା କରି ଦେଖନ୍ତି ।

ତେବେ ଆସ, ମୋ ସଙ୍ଗରେ ଏଇ ମୁହୂର୍ତ୍ତରେ ଆସ । ମଳିନା ଉଠି ଠିଆ ହେଲା । ପାଦ ଯୋଡ଼ାକ ତା'ର ଏଣେ ତେଣେ ପଡୁଥିଲା । କଥାବାର୍ତ୍ତାରେ କିନ୍ତୁ କୌଣସି ପ୍ରକାର ବ୍ୟତିକ୍ରମ ଅଳକେଶ ଲକ୍ଷ୍ୟ କରିପାରୁ ନ ଥିଲା ।

ମଳିନା ପଛେ ପଛେ ଅଳକେଶ ଆଗେଇଥିଲା ।

ଦିବ୍ୟରଞ୍ଜନ ମହାପାତ୍ରଙ୍କ ମୃତ୍ୟୁ ସମ୍ବାଦ ପାଇବା ପରଠାରୁ ଅଳକେଶ ମନରେ ଯେଉଁ ନୂତନ ଭାବନା ଉଦୟ ହୋଇଛି, ତାକୁ ସେ କାର୍ଯ୍ୟକାରୀ କରିପାରିଲେ ସମସ୍ତ

ଜୀବନ ପାଇଁ ହୁଏତ ନିଶ୍ଚିତ ହୋଇ ପାରିବ । ସେଥିପାଇଁ ସବୁବେଳେ ତା ସମସ୍ତ ଶରୀରରେ ଏକ ପ୍ରକାର ଉତ୍ତେଜନା ପୂରି ରହିଥିଲା । ମଳିନାକୁ ସେ କରିବ ପ୍ରଧାନ ଅସ୍ତ୍ର । ତା'ରି ସାହାଯ୍ୟରେ ହୁଏତ କାର୍ଯ୍ୟୋଦ୍ଧାର ହୋଇ ପାରିବ ।

ମଳିନା ସିଧାସଳଖ ଅଳକେଶକୁ ମଦନ ରାୟଙ୍କ ପ୍ରାଇଭେଟ୍ ଚେମ୍ବରକୁ ନେଇଗଲା । କହିଲା : ପକେଟରେ ଡିଆସିଲି ଅଛି ?

: ଅଛି । ଅଳକେଶ ବାହାର କରିଦେଲା ।

ମଳିନା ଡିଆସିଲି ଜଳେଇ ଷ୍ଟିଲ୍ ଆଲମାରୀ ଗୁଡ଼ିକ ଦେଖାଇ ଦେଲା । କହିଲା : ଏଇ ଗୁଡ଼ିକରେ ବାପାଙ୍କର ମୂଲ୍ୟବାନ ପଦାର୍ଥ ସବୁ ଭରି ରହିଛି !

: ଚାବି ? ଅଳକେଶ ପଚାରିଲା ।

ମଳିନା କେଜାଣି କାହିଁକି ଥରେ ମୁଗ୍ଧ ନୟନରେ ଅଳକେଶ ମୁହଁକୁ ଚାହିଁ କହିଲା : ବାପା କେଉଁଠି ଚାବି ରଖୁଥିଲେ ମୋତେ ଜଣାଅଛି । ଆଜି କିନ୍ତୁ...

ବାହାରେ କାହାର ପାଦ ଶବ୍ଦ ଶୁଣି ମଳିନା ଚୁପ୍ ହୋଇଗଲା । ପାଦ ଶବ୍ଦ ଧୀରେ ଧୀରେ ମଦନରାୟଙ୍କ ଶୟନ କକ୍ଷଯାଏ ଆଗେଇ ଆସୁଥିଲା । ଶୟନ କକ୍ଷରେ ଆଲୁଅ ଜଳିଲା ।

ସତ କହ ରାମୁ ! ତୋ କଥାରେ ମୁଁ ଆଦୌ ସନ୍ତୁଷ୍ଟ ହୋଇ ପାରୁନାହିଁ । ସତ୍ୟବ୍ରତ ମହାପାତ୍ରଙ୍କ ସ୍ୱର ଶୁଣାଯାଉଥିଲା ।

: ମୁଁ ମୋଟେ ମିଛ କହୁନାହିଁ ଆଜ୍ଞା । ଏଠାକାର କାଣ୍ଡ କାରଖାନା ଦେଖି ମୋର ଆଉ ଘଡ଼ିଏ ରହିବାର ଇଚ୍ଛା ନ ଥିଲା । ମୁଁ ପଳେଇବି ବୋଲି ତିନି ଚାରିଦିନ ହେବ ମନେ ମନେ ଠିକ୍ କରିଥିଲି ଆଜ୍ଞା । କିନ୍ତୁ ପଳେଇବାର ସୁଯୋଗ ପାଇ ପାରୁ ନଥିଲି ।

: ନା ରାମୁ, ତମେ ମିଛ କହୁଛ । ତମର ଅନ୍ୟ କୌଣସି ଉଦ୍ଦେଶ୍ୟ ନିଶ୍ଚୟ ଥିଲା । ତା' ନହେଲେ ମୁଁ ତମ ପଛେ ପଛେ ଛୁଟୁଥିଲେ ମଧ୍ୟ ତମେ ମୋ ପ୍ରଶ୍ନର ଜବାବ ଦେଉ ନଥିଲ । ଡାକି ଡାକି ମୁଁ ତମ ପଛେ ପଛେ ଧାଉଁଥିଲି । ତଥାପି ତମେ ଏକମୁହାଁ ହୋଇ ଛୁଟୁଥିଲ କାହିଁକି ?

: ଆପଣ ବିଶ୍ୱାସ କରନ୍ତୁ ଆଜ୍ଞା ! ମୁଁ ଲୁଚି ପଳେଇଯିବା ଛଡ଼ା ମୋ ମନରେ ଆଉ କୌଣସି ପ୍ରକାର ଦୁର୍ଭାବନା ନ ଥିଲା ।

: ହୁଁ, ତୁମେ ତା'ହେଲେ ସତ୍ୟକଥା କହିବ ନାହିଁ, ନା ରାମୁ ?

: ମୁଁ ହଲପ କରି କହୁଛି ଆଜ୍ଞା । ମୁଁ ଆପଣମାନଙ୍କୁ ଲୁଚି ପଳେଇ ଯାଉଥିଲି ।

: କାହିଁକି, କାହିଁକି ତୁମେ ଲୁଚି ପଳାଇ ଯାଉଥିଲ ?

ମୋତେ ଏଠାରେ ଆଉ ଭଲ ଲାଗୁନାହିଁ ଆଜ୍ଞା । ଆପଣ ତ ଦେଖୁଛନ୍ତି, ଏଠାରେ କେହି ଜଣେ ହେଲେ ସୁସ୍ଥ ମଣିଷ ନାହିଁ । କେତେଦିନ ଆଉ ଏମାନଙ୍କ ସହିତ ଘାଣ୍ଟିଗୋଳେଇ ହେଉଥିବି ?

: ରାମୁ, ତୁମେ ଯାହା କହୁଛ, ମିଛ କହୁଛ । ଏବେ ମଧ୍ୟ ସମୟ ଅଛି । ସତ କଥା କହିଲେ ମୁଁ ତୁମକୁ ରକ୍ଷା କରି ପାରିବି । ନହେଲେ ପୋଲିସି ତୁମକୁ ଆରେଷ୍ଟ କରିବ ।

: ମୁଁ ଯାହା କହୁଛି, ସତକଥା କହୁଛି । ଏଣିକି ଆପଣଙ୍କ ଦୟା । ଆପଣ ରଖିଲେ ରଖିବେ, ମାରିଲେ ମାରିବେ ।

ସତ୍ୟବ୍ରତ ତୀକ୍ଷ୍ଣ ଦୃଷ୍ଟିରେ କିଛି ସମୟ ରାମୁ ମୁହଁକୁ ଅନାଇ ରହିଲେ । ହୁଁ, ସିଧା ଆଙ୍ଗୁଠିରେ ଘିଅ ଉଠେ ନାହିଁ ମୋତେ ଜଣା ଅଛି । ତମେ କାହିଁକି ପଳେଇ ଯାଉଥିଲ, ସେ କଥା ପୋଲିସ୍ ଆଗରେ କହିବା ବର୍ତ୍ତମାନ ମୋ ସହିତ ଆସ ।

: କୁଆଡ଼େ ଆଜ୍ଞା ?

: ତଳକୁ ।

ସତ୍ୟବ୍ରତ ଆଗେ ଆଗେ ଓ ରାମୁ ପଛେ ପଛେ ଓହ୍ଲେଇ ଗଲେ । ଉଦ୍ୟାନର ଶେଷ ଭାଗରେ ଯେଉଁ ପ୍ରମୋଦ ଗୃହଟି ଥିଲା, ସତ୍ୟବ୍ରତ ସେଇଠି ପହଞ୍ଚି ଆଉ ଥରେ ଅବାକ୍ ହୋଇଗଲେ । ନିଃଶେଷ ପ୍ରାୟ ବୋତଲ ଦୁଇଟା ଗଡୁଥିଲା ସେଥିରୁ ସ୍ପଷ୍ଟ ଅନୁମାନ କରି ହେଉଥିଲା ଯେ, କିଛି ସମୟ ପୂର୍ବରୁ ଏଠାରେ କେହି ଉପସ୍ଥିତ ଥାଇ ରଙ୍ଗିନ୍ ସୁରାର ସଦ୍‌ବ୍ୟବହାର କରି ଥିଲା । ଆଶ୍ଚର୍ଯ୍ୟ ! ଏଠାକାର ଲୋକଗୁଡ଼ାକ ଯେପରି ସତ୍ୟବ୍ରତଙ୍କ ଗତିବିଧିକୁ ସତର୍କତା ସହକାରେ ଲକ୍ଷ୍ୟ କରୁଛନ୍ତି । ସେ ବାହାରକୁ ବାହାରି ଯିବା ମାତ୍ରକେ କେହି ଆସି ଏଠାରେ ରଙ୍ଗିନ ପାନୀୟ ସେବନ କରି ଚାଲି ଯାଇଛି ।

ସତ୍ୟବ୍ରତ ରାମୁ ମୁହଁକୁ ଚାହିଁଲେ ।

ରାମୁ କହିଲା : ସାଆନ୍ତେ ବେଳେବେଳେ ଆସି ଏଠାରେ ସମୟ କଟାଉଥିଲେ । ତା'ଛଡ଼ା ତାଙ୍କର କେହି ଅତିଥି ଅଭ୍ୟାଗତ ଆସିଲେ, ଏଠାରେ ଏଇ ସବୁ ଜିନିଷର ବ୍ୟବହାର ହେଉଥିଲା ।

: ରାମୁ ! ତୁମେ ଭାବିଛ କିଛି ନ ଜାଣିବାର ଛଳନା କରି ମୋ ପାଖରୁ ଛାଡ଼ ପାଇଯିବ । ଏଠାକୁ କ'ଣ ତମ ସଆନ୍ତଙ୍କ ପ୍ରେତମୂର୍ତ୍ତି ଆସିଥିଲା ? ସତ୍ୟବ୍ରତଙ୍କ ସ୍ୱର ପଞ୍ଚମକୁ ଉଠିଗଲା ।

ରାମୁ କିଛି ନ ବୁଝି ପାରିଲା ଭଳି ଚାହିଁଥିଲା ।

: ଘର ଭିତରେ ମହମ୍‌ବତୀର ଆଲୋକ ଦେଖୁଛ ?

: ଆଜ୍ଞା ।

: ଗ୍ଲାସ, ବୋତଲ ଏଠି ସେଠି ଗଡୁଥିବାର ଦେଖୁଛ ?

: ଆଜ୍ଞା ।

: କମଳ ଲେମ୍ବୁ ଚୋପା ।

: କେବେକାର ?

: ଆଜିର ପରି ମନେ ହେଉଛି ଆଜ୍ଞା !

: ତା'ହେଲେ ତମେ କହିବାକୁ ଚାହଁ, ଆଜି କିଛି ସମୟ ପୂର୍ବରୁ ମଦନରାୟଙ୍କ ପ୍ରେତମୂର୍ତ୍ତି ଏଠାରେ ପଶି, ଏଇ ସବୁ କାଣ୍ଡ କରି ଯାଇଛି ?

: ମୁଁ ମୂର୍ଖ ଲୋକ ଆଜ୍ଞା । କ'ଣ ଜାଣିଛି ?

: ତୁମେ ବୋକାଭଳି ଅଭିନୟ ଆଉ କର ନାହିଁ ମୋ ପାଖରେ । କୁହ, କିଏ ଆସି ରୋଜ ରାତିରେ ଏଠାରେ ସୁରା ପାନ କରେ ?

: ଆପଣ ବିଶ୍ୱାସ କରନ୍ତୁ ଆଜ୍ଞା, ରାତି ଏଗାରଟା ପରେ, ମୁଁ ମୋ ଛୋଟିଆ ଘରଟିରେ କବାଟ କିଳି ଶୋଇପଡ଼େ । ଉଠେ ପୁଣି ସକାଳେ । ରାତିରେ କିଏ କି ଉତ୍ପାତ କରେ ମୋତେ କିଛି ବୁଝି ପାରେ ନାହିଁ ।

: ହଁ, ଆଚ୍ଛା ! ସକାଳ ହେଲେ ତମ କଥା ମୁଁ ବୁଝିବି । ଏଥର ତମେ ଯାଇ ପାର । କିନ୍ତୁ ସାବଧାନ, ଆଉ ପଳେଇବାକୁ ଚେଷ୍ଟା କରିବ ନାହିଁ ।

ରାମୁ ନୀରବରେ ପାଦ ଲେଉଟାଇଲା ।

ସତ୍ୟବ୍ରତ ଘର ଭିତରକୁ ପାଦ ବଢ଼ାଉଥିଲେ, କିନ୍ତୁ ହଠାତ୍ ମହମ୍‌ବତିଟା ନିଭିଗଲା । ନା, ଆଉ ଭିତରକୁ ଯାଇ ଲାଭ ନାହିଁ । ବରଂ କିଏ ଏହି ଘରକୁ ଆସି ରଙ୍ଗିନ୍ ପାନୀୟ ନିଃଶେଷ କରିଗଲା ତାକୁ ଖୋଜି ବାହାର କଲେ ଲାଭ ହେବ ।

କିଏ ଆଉ ହୋଇପାରେ ?

ଅଳକେଶ ଘର ଭିରେ ଶୋଇଛି । ତା'ର ନିଶ୍ୱାସ ପ୍ରଶ୍ୱାସର ଶବ୍ଦ ବାହାରକୁ ବାରି ହେଉଚି । ଡାକି ଉଠେଇଲେ ବିଶେଷ ଆଉ ଲାଭ କ'ଣ ହେବ ?

ସେ ପୁଣି ପ୍ରତିଟି କକ୍ଷ ଦୁଆରକୁ ଯାଇ ପରୀକ୍ଷା କଲେ । ସବୁଗୁଡ଼ିକ ଭିତରୁ ବନ୍ଦ ହୋଇଥିଲା । ନିଃଶ୍ୱାସ ପ୍ରଶ୍ୱାସର ଶବ୍ଦ ମଧ୍ୟ ବାରି ହେଉଥିଲା । ସତ୍ୟବ୍ରତ ହତାଶ ହୋଇ ଫେରିଲେ ।

ରାତି ଆସି ଶେଷ ହେବାକୁ ବସିଲାଣି । ବିଶ୍ରାମ ଟିକିଏ ମାତ୍ର କରିହେଲା ନାହିଁ । ସବୁଠାରୁ ଆକର୍ଷଣୀୟ ପଦାର୍ଥଟି ହେଉଛି ଆଜି ପାଇଥିବା ଡାଇରୀ ଖଣ୍ଡିକ । ସେଇଟା ଟେବୁଲ୍ ଉପରକୁ ଆସିଲା କିପରି ? କିଏ ହୁଏତ ଇଚ୍ଛା କରି ସେଇଟିକୁ ଟେବୁଲ ଉପରେ ରଖିଦେଇ ଯାଇଛି, ସତ୍ୟବ୍ରତଙ୍କ ଦୃଷ୍ଟି ଆକର୍ଷଣ କରିବା ପାଇଁ । ଉଦୟ ମହଲରେ ତେବେ କ'ଣ ତାଙ୍କୁ ସାହାଯ୍ୟ କରିବାକୁ ମଧ୍ୟ ଲୋକ ଅଛନ୍ତି ? ତା'ହେଲେ ସେ ପ୍ରତ୍ୟକ୍ଷ ଭାବରେ ସତ୍ୟବ୍ରତଙ୍କୁ ସାହାଯ୍ୟ କରିବାକୁ ଆଗେଇ ଆସୁନାହିଁ କାହିଁକି ?

ସତ୍ୟବ୍ରତଙ୍କର ବିଶ୍ରାମ କରିବା ପାଇଁ ଇଚ୍ଛା ହେଉଥିଲା । ଅବଶ ଦେହକୁ ସେ ଆଉ ବହନ କରି ଚଲାଇ ପାରୁ ନଥିଲେ। ଫେରିଯାଇ ମଦନ ରାୟଙ୍କ ଶୟନ କକ୍ଷରେ ବସି ଡାଇରୀଟା ପଢ଼ିଲେ ମନ୍ଦ ହେବନାହିଁ ।

କିନ୍ତୁ ଲଣ୍ଠନ ନିଭି ଆସୁଥିଲା ।

ତେଲ ଶେଷ ହୋଇ ଯାଇଥିଲା ।

ନା, ଆଜି ଆଉ ନୁହେଁ । ଡାଇରୀଟି ହାତରେ ଉଠାଇଲେ । ଆଉ ଥରେ ଖୋଲେଇ ଦେଖିଲେ । ଡାଇରୀ ତ ନୁହେଁ, କାହାର ଆତ୍ମ ଚରିତ ।

ସତ୍ୟବ୍ରତ ନିଜର କକ୍ଷ ଆଡ଼େ ଅବଶ ପାଦ ଦୁଇଟିକୁ ଚଳାଇବାକୁ ଚେଷ୍ଟା କଲେ ।

ସତ୍ୟବ୍ରତ ଡାଇରୀଟାକୁ ମନଦେଇ ପଢୁଥିଲେ ।

ଆଉ ଦିନେ । ପଢ଼ା ଶେଷକରି ରାଜୁ ଚାଲି ଯାଉଥିଲା । ଆମ ପଢ଼ାଘରେ ବାପା ବସି କ'ଣ ଗୋଟାଏ ବହି ପଢୁଥିବାରୁ ଆମେ କୌଣସି କଥାବାର୍ତ୍ତା ହୋଇ ପାରୁ ନ ଥିଲୁ । ରାଜୁକୁ ବାଟେଇ ଦେବା ପାଇଁ ମୁଁ ପଦାକୁ ବାହାରି ଆସିଲି । ରାଜୁ ଏକମୁହାଁ ହୋଇ ପଳାଇ ଯାଉଥିଲା । ମୁଁ ତା' ସାର୍ଟକୁ ଧରି ଟାଣି ଦେଲି । ସେ ମଝି ବାଟରେ ଅଟକି ଗଲା ।

: ରାଗିଚ ? ଚୁପ୍ ଚୁପ୍ ପଚାରିଲି ।

ସେ ଉତ୍ତରରେ ମୋ ଗାଲରେ ଛୋଟ ଚାପୁଡ଼ାଟାଏ ବସେଇଲା ।

: ବଗିଚାରେ ବୁଲିବା ଚାଲ ।

ଦୁହେଁ ଯାଇ ବସିଲୁ । ଆକାଶରେ ଚାନ୍ଦ ଉଠିଥାଏ । ମୃଦୁପବନ ଫୁଲର ମହକ ଚୋରେଇ ଆଣି ଆମ ଦେହରେ ବୋଳି ଦେଉଥାଏ ।

ମୁଁ ରାଜୁର କୋଳରେ ମୁଣ୍ଡରଖି ସିମେଣ୍ଟ ବେଞ୍ଚ ଉପରେ ଶୋଇ ଯାଇଥିଲି ।

: ଏତେ ମମତା ଭଲ ନୁହେଁ ।

କାହିଁକି ? ମୁଁ ପଚାରିଲି ।

: ସ୍ୱର୍ଗକୁ ନିଶୁଣି ପାଏନା ଜାଣ ତ ? ଶେଷରେ ମୋତେ କାନ୍ଦିବାକୁ ହେବ ।

ସେଦିନ ରାଜୁ ମୁହଁରୁ ଏପରି କଥା ଶୁଣି ମୁଁ ଅବାକ୍ ହୋଇ ଯାଇଥିଲି : ଏ କ'ଣ କହୁଛ ତୁମେ ?

: ହଁ, ମିଛ କହୁନି ମୋଟେ । ଆମ୍ଭର ଏ ସମ୍ପନ୍ଧ ଦୁଇ ଦିନର । କାଲି ସକାଳେ ତୁମେ ଯାଇ ଅନ୍ୟ କାହାର ଘର କରିବ ! ମୁଁ କେବଳ ତୁମରି ସ୍ମୃତିକୁ ବିଭୂତି କରି ବୋଳି ହୋଇ ବୁଲିବି ।

: ଓ, ଏଇଆ । ମୁଁ ହୋ ହୋ ହେଇ ହସି ଉଠିଥିଲି । କହିଥିଲି, ସେ ଭୟ ତୁମେ କର ନାହିଁ । କେବେ ଯଦି ଅନ୍ୟର ଯାଇ ଘର କରିବାକୁ ହୁଏ, ତେବେ ତୁମରି ଘର ମୁଁ ଯାଇ ସଜାଡ଼ିବି ।

: ଏଇଟା କେବଳ ତମର ଆଶ୍ୱାସନା । ରାଜୁ କହିଥିଲା । କାରଣ ତମର ମୋର ତୁଳନା ହୁଏ ନାହିଁ । ତା'ଛଡ଼ା ତୁମର ବାପାଙ୍କୁ ତୁମେ ତ ଚିହ୍ନିଛ ।

: ମୋତେ ବିଶ୍ୱାସ କରି ପାରୁ ନାହଁ ? ହିନ୍ଦୁ ଝିଅ ମୁଁ । ଜଗନ୍ନାଥଙ୍କ ନାମରେ ଶପଥକରି କହୁଛି, ଯେତେ ବାଧା ବିପତ୍ତି ଆସୁ, ଯେତେ ଝଡ଼ ଝଞ୍ଜା ବହୁ, ତମ ଛଡ଼ା ମୁଁ ଆଉ କାହାରି ଘର ସଜାଡ଼ିବାକୁ ଯିବି ନାହିଁ ।

ହଠାତ୍ ରାଜୁ ମୋ ମୁଣ୍ଡଟାକୁ ତା' କୋଳ ଉପରୁ ଉଠାଇ ଦେଇ ଠିଆ ହୋଇପଡ଼ିଲା । ମୁଁ ସିମେଣ୍ଟ ବେଞ୍ଚଟା ଉପରୁ ପଡ଼ି ଯାଉ ଯାଉ କୌଣସି ପ୍ରକାରେ ସମ୍ଭାଳି ହୋଇଗଲି । ଚାହିଁ ଦେଖିଲି, ସାମ୍ନାରେ ବାପା ଠିଆ ହୋଇଛନ୍ତି ।

ରାଜୁ ଆଉ କୌଣସି କଥା ନ କହି ବାଟଭାଙ୍ଗି ଚାଲିଗଲା । ମୁଁ ତଳକୁ ମୁହଁପୋତି ଠିଆ ହୋଇଥିଲି । ବାପା ଗମ୍ଭୀର କଣ୍ଠରେ କହିଲେ : ଘରକୁ ଯା ।

ମୁଁ ଉର୍ଦ୍ଧଶ୍ୱାସରେ ଛୁଟି ପଳାଇଲି ।

ସେଦିନ ରାତିରେ ଆଖିକୁ ନିଦ ଆସିଲା ନାହିଁ । ହୁଏତ ବାପା ସବୁ କଥା ଶୁଣି ପାରିଛନ୍ତି । ଲାଜରେ ମୋ ମୁଣ୍ଡ ନଇଁ ଯାଉଥିଲା । କାଲି ସକାଳୁ ବାପାଙ୍କ ଆଗକୁ ଯିବି କିପରି ? ବୟସ ତୁଳନାରେ ମୋର ଏପରି ମନୋବୃତ୍ତି ନିଶ୍ଚୟ ଲଜ୍ଜାକର ।

ଯା'ହେଉ, ଆରଦିନ ବାପା ମୋତେ ଆଉ କିଛି କହିଲେ ନାହିଁ ।

ତା'ପରେ ଦିନ ଦିନ କରି ପ୍ରାୟ ଗୋଟିଏ ସପ୍ତାହ ଅତିବାହିତ ହୋଇଗଲା, କିନ୍ତୁ ରାଜୁ କାହିଁ ? କେବଳ ଅପେକ୍ଷା ଏବଂ ଉତ୍କଣ୍ଠା । ରାଜୁ ଆଉ ଆସିଲା କାହିଁ ? ହୁଏତ ବାପା ତାକୁ ବାରଣ କରି ଦେଇଥିଲେ । ମୁଁ କିନ୍ତୁ ଅନେକ ଦିନଯାଏ ରାଜୁକୁ ଅପେକ୍ଷା କରିଥିଲି ।

ଦିନେ ମୁହଁ ସଞ୍ଜବେଳେ, ବାପା ମୋ ମାଙ୍କ ଘରକୁ ଡାକିଲେ । ଆଉ ଜଣେ

ମଧ୍ୟବୟସ୍କ ଭଦ୍ରଲୋକ ତାଙ୍କ ଘରେ ବସିଥିଲେ । ବାପା ମୋତେ ତାଙ୍କ ସହିତ ପରିଚୟ କରାଇଦେଲେ। : ଏହାଙ୍କ ନାଁ ମଦନ ପଟ୍ଟନାୟକ । ଆଜିଠାରୁ ଏ ତତେ ପଢ଼ାଇବେ ।

ଭଦ୍ରଲୋକ ମୋ ଆଡ଼କୁ କଣେଇ କଣେଇ ଚାହୁଁଥିଲେ । ପ୍ରଥମ ଦର୍ଶନରେ ହିଁ ମୋର ତାଙ୍କ ପ୍ରତି କିପରି ଅଶ୍ରଦ୍ଧା ଜାତହୋଇ ଯାଇଥିଲା । ସେହି ଅଶ୍ରଦ୍ଧାଭାବ କଟେଇବା ପାଇଁ ମଦନ ପଟ୍ଟନାୟକଙ୍କୁ ଭିନ୍ନ ପଥ ଧରିବାକୁ ପଡ଼ିଥିଲା ।

ସେ ନିତି ସଂଧ୍ୟାବେଳେ ଆମ ଘରକୁ ଆସନ୍ତି । ବାପାଙ୍କ ସହିତ ବସି ଅନେକ ସମୟ କଥାବାର୍ତ୍ତା କରନ୍ତି । ମୋତେ ପାଠ ପଢ଼ାନ୍ତି । ମୋ ସହିତ ହସି ହସି କଥା କହିବାକୁ ଚେଷ୍ଟା କରନ୍ତି, ମୁଁ କିନ୍ତୁ ଗମ୍ଭୀର ହୋଇ ପଢ଼ିବାକୁ ବସିଯାଏ । ବୋଧହୁଏ ସେ ମୋର ଏଇ ମାନ ଭଞ୍ଜନ ପାଇଁ ମନେ ମନେ ଦୃଢ଼ ପ୍ରତିଜ୍ଞ ହୋଇ ପଡ଼ିଥିଲେ ।

ତା'ପରେ ଦିନେ ଦିନେ ସେ ଅସମୟରେ ମଧ୍ୟ ଆମ ଘରକୁ ଆସିବାକୁ ଲାଗିଲେ । ଦେଖିଲି, ବାପାଙ୍କ ସହିତ ତାଙ୍କର ଯଥେଷ୍ଟ ବନ୍ଧୁତା । ଘଣ୍ଟା ଘଣ୍ଟା ଧରି ସେ ତାଙ୍କ ସହିତ କ'ଣ ଯେ କଥାବାର୍ତ୍ତା ହୁଅନ୍ତି, ମୁଁ କିଛି ବୁଝି ପାରେ ନାହିଁ ।

ଦିନେ ଖରାବେଳେ । ମୁଁ ଶୋଇଲା ଘରେ ଶୋଇ ଶୋଇ କ'ଣ ଖଣ୍ଡେ ବହି ପଢୁଥାଏ । ଚାକର ଆସି ଡାକିଲା : ଦେଈ ! ସାଆନ୍ତେ ଡାକୁଛନ୍ତି ।

ମୁଁ ସଙ୍ଗେ ସଙ୍ଗେ ଉଠିଗଲି ।

ବାପାଙ୍କ ପାଖରେ ମଦନ ବାବୁ ବସିଥିଲେ ।

ତିନିଗ୍ଲାସ ଲାଲ ସରବତ୍ ଟେବୁଲ୍ ଉପରେ ରଖା ହୋଇଥିଲା ।

ବାପା ମୋତେ ବସିବାକୁ କହିଲେ । ତା'ପରେ ଗୋଟିଏ ଗ୍ଲାସ୍ ଟେବୁଲ୍ ଉପରୁ ଉଠାଇ ମୋ ହାତକୁ ବଢ଼ାଇ ଦେଇ କହିଲେ, : ମଦନ ବାବୁଙ୍କର ଆଉ ଗୋଟିଏ ବିଶେଷ ଗୁଣ ହେଉଛି, ତାଙ୍କୁ ଖୁବ୍ ସୁନ୍ଦର ସରବତ୍ ତିଆରି କରି ଆସେ । ପିଇ ଦେଖିଲୁ କ'ଣ ଲାଗୁଛି ?

ସରବତ୍ ଗ୍ଲାସଟା ମୁଁ ଧରିଲି । ବାପା ଆଉ ଗୋଟିଏ ଗ୍ଲାସ ଏବଂ ମଦନ ବାବୁ ଶେଷ ଗ୍ଲାସଟି ଉଠାଇ ନେଲେ ।

ପ୍ରକୃତରେ ସରବତ୍ ଗ୍ଲାସ୍‌ଟି ଅନେକ ଦିନଯାଏ ମନେ ରହିଲା ଭଳି ।

ବାପା କହିଲେ : ମୁଁ ଟିକିଏ ଚେଞ୍ଜରେ ଯିବାକୁ ଠିକ୍ କରିଛି । ତୁ ମୋ ସଙ୍ଗରେ ଯିବୁ । ମଦନ ବାବୁ ମଧ୍ୟ ଯିବେ । କ'ଣ କହୁଚୁ ?

ମୁଁ କିଛି ଜବାବ ଦେଲିନାହିଁ । ସେଠାରୁ ଉଠି ମୋ ଶୋଇବା ଘରକୁ ଚାଲି ଆସିଲି ।

ବେଳ ଯେତେ ଗଡ଼ିବାକୁ ଲାଗିଲା, ମୋ ଦେହଟା ସେତେ ହାଲ୍‌କା ଲାଗୁଥିଲା । ମନ ଅତ୍ୟନ୍ତ ପ୍ରଫୁଲ୍ଲ ଜଣା ଯାଉଥିଲା । ମୁଁ ଯେପରି ପବନରେ ଭାସି ବୁଲୁଥିଲି ।

ସେଦିନ ଟିକିଏ ସଅଳ ସଅଳ ମଦନ ବାବୁ ଆସିଲେ ।

ମୁଁ ସେତେବେଳକୁ ଆମ ଉଦ୍ୟାନରେ ବସି ପକ୍ଷୀମାନଙ୍କର ଗୁଞ୍ଜନ ଶୁଣୁଥିଲି । ଫୁଲର· ମହକ ମୋତେ ବିମୋହିତ କରିଥିଲା ।

ମଦନ ବାବୁଙ୍କୁ ଦେଖି ସେଦିନ ମୁଁ ଖୁବ୍ ଗୋଟାଏ ବିରକ୍ତି ଭାବ ପ୍ରକାଶ କରି ପାରିଲି ନାହିଁ । ତାଙ୍କ ସହିତ ଏଣୁ ତେଣୁ ଦି'ଚାରିପଦ କଥା ମଧ୍ୟ ହୋଇଥିଲି ।

ଆରଦିନ ତିନିଟା ଚାରିଟା ବେଳକୁ ଚାକର ଆଣି ମୋ ହାତକୁ ଗୋଟିଏ ସରବତ୍ ଗ୍ଲାସ ବଢ଼େଇ ଦେଇଗଲା । କହିଲା : ବାପା ପଠାଇଛନ୍ତି ।

ଗ୍ଲାସ ଦେଖି ବୁଝି ପରିଥିଲି, ଏହା ମଦନ ବାବୁଙ୍କ କୃତି । ଇଚ୍ଛା ମଧ ହେଉଥିଲା କାଲିପରି ସରବତ୍ ଗ୍ଲାସେ ପିଇବା ପାଇଁ । ଅତ୍ୟନ୍ତ ଆଗ୍ରହରେ ସେତକ ନିଃଶେଷ କରି ଚାକରକୁ ପଚାରିଲି : ଆଉ ଅଛି ?

ସେ ଚାଲି ଯାଉଥିଲା । ଲେଉଟି ଆସି କହିଲା : ଆଉ ଆଣିବି ?

: ନା, ଥାଉ । ତୁ ଯା ।

ତିନି ଚାରିଦିନ ମଦନବାବୁ ଆମ ଘରେ ଆସି ସରବତ୍ ତିଆରି କରି ଖୁଆଇଲେ । ତା' ପରଠାରୁ ଚାରିଟା ବାଜିବା କ୍ଷଣି ମୋ ଅଜାଣତରେ ପାଦ ଧାଇଁଲା ସରବତ୍ ଗ୍ଲାସ ପାଖକୁ । ସେ କିନ୍ତୁ ପ୍ରତିଦିନ ମୋ ମନର ଚାହିଦା ପୂରଣ କରିବାକୁ ଲାଗିଲେ ।

ଆଠ ଦଶଦିନ ପରେ ଆମେ ଚେଞ୍ଜରେ ବାହାରିଲୁ ।

ଚେଞ୍ଜ ମାନେ କଲିକତା ।

ବାପା ଗୋଟାଏ ବିରାଟ ଦୋତାଲା କୋଠା ଭଡ଼ା ନେଇଥିଲେ । ଆମେ ଯାଇ ସେଇଠି ରହିଲୁ । ଆମର ପ୍ରତିଦିନର କାର୍ଯ୍ୟ ହେଲା, ସକାଳୁ ଉଠି ଖାଇ ପିଇ ବାହାରକୁ ବାହାରି ଯାଉ, ବୁଲି ବୁଲି ଫେରି ଆସୁ ଏଗାରଟା ବେଳକୁ। ତା'ପରେ କେଉଁଦିନ ଥିଏଟର, କେଉଁଦିନ ସିନେମା ।

ମଦନବାବୁ କିନ୍ତୁ ମୋତେ ରୋଜ ସରବତ୍ ପିଆଉଥାନ୍ତି । ମୁଁ ମଧ ସେ ସରବତ୍ ପିଇବାରେ ଏପରି ଅଭ୍ୟସ୍ତ ହୋଇଯାଇଥିଲି ଯେ, ଚାରିଟାରୁ ଟିକିଏ ଗଡ଼ିଗଲେ, ମୋ ମୁଣ୍ଡ ବୁଲେଇବାକୁ ଆରମ୍ଭ କରି ଦେଉଥିଲା ।

ସରବତ୍ ପିଇବା ପରେ କେତୋଟି ଘଣ୍ଟା ମୋର ବେଶ୍ ଆରାମରେ କଟି ଯାଉଥିଲା । ମନ ଏତେ ହାଲ୍‌କା ହୋଇଯାଉଥିଲା ଯେ, ମୋର କିଛି ମନେ ରହୁ ନଥିଲା । ଯେମିତି ମୋ ଦେହରେ ମୁଁ ରହୁ ନଥିଲି। ମୋ ଅବସ୍ଥିତି ମୁଁ ଅନୁଭବ କରୁ ନଥିଲି ।

ଦିନେ ମଦନବାବୁ ସରବତ୍ ତିଆରି କରୁଥିବାବେଳେ ମୁଁ ଅତର୍କିତ ଭାବରେ ଯାଇ ତାଙ୍କ ପାଖରେ ପହଞ୍ଚି ଗଲି । ସେ ମୋତେ ଦେଖି ପକାଇ ହଠାତ୍ ଗୋଟିଏ ଦୁଇଟି ବୋତଲ ଲୁଚେଇବାକୁ ଚେଷ୍ଟା କରୁଥିଲେ । କିନ୍ତୁ ସୁଯୋଗ ପାଇଲେ ନାହିଁ । ସେତେବେଳକୁ ବୋତଲ୍‌ଗୁଡ଼ିକର ଲେବଲ ଉପରେ ମୋର ଦୃଷ୍ଟି ପଡ଼ି ଯାଇଥିଲା । ସବୁଗୁଡ଼ିକ ବିଦେଶୀ ପାନୀୟ । ହୁଇସ୍କି, ବ୍ରାଣ୍ଡି, ଜିନ୍, ରମ୍ ଇତ୍ୟାଦି ।

ମୋ ମୁହଁକୁ ଚାହିଁ ସେ ଟିକେ ହସିଦେଲେ ।

ମୁଁ ମଧ ନ ହସି ରହିପାରିଲି ନାହିଁ ।

ସେତେବେଳକୁ ପ୍ରାୟ ଛ'ଟା ବାଜି ଯାଇଥିଲା । ମୋ ମୁଣ୍ଡ ଭିତରେ କିପରି ଏକ ଅସ୍ୱାଭାବିକ ଯନ୍ତ୍ରଣା ମୁଁ ଅନୁଭବ କରୁଥିଲି । ବୋଧହୁଏ ସେତେବେଳ ଯାଏ ସରବତ୍ ପିଇ ନ ଥିବାରୁ ।

: ଆଜି ଏତେ ଡେରି କାହିଁକି ? ମଦନବାବୁଙ୍କୁ ପଚାରିଲି ।

: ଆଜି ତୁମ ପାଇଁ ଏକ ନୂତନ ପାନୀୟ ପ୍ରସ୍ତୁତ କରୁଛି । ସେଇଥିପାଇଁ ଟିକିଏ ଡେରି ହୋଇ ଯାଇଛି ।

: ଏଗୁଡ଼ିକ ଭିତରୁ କିନ୍ତୁ ମୋତେ କିଛି ଦେବେ ନାହିଁ । ବୋତଲଗୁଡ଼ିକ ଆଡ଼େ ହାତ ଦେଖାଇ ମୁଁ କହିଲି ।

ସେ କେବଳ ହସିଲେ। କହିଲେ ମୁଁ ଯାହା ଦେଉଛି ଆପଣ ଆଜି ପିଅନ୍ତୁ, ଦେଖିବେ ପୃଥିବୀ କେଡ଼େ ସୁନ୍ଦର ଆଉ ଜୀବନ କିପରି ରସମୟ ।

ସେ ମୋ ହାତକୁ ଏକ ପୂର୍ଣ୍ଣ ଗ୍ଲାସ ବଢ଼ାଇ ଦେଲେ । ମୁଁ ଧୀରେ ଧୀରେ ପିଇବାକୁ ଆରମ୍ଭ କରିଦେଲି । ସ୍ୱାଦ ଓ ଗନ୍ଧରେ ଅତୁଳନୀୟ। ଆହୁରି ପିଇବାକୁ ଇଚ୍ଛା ହେଲା । ଗ୍ଲାସ୍‌ଟି ବଢ଼ାଇ ଦେଲି ତାଙ୍କ ଆଡ଼କୁ ।.

ସେ ଭରିଦେଲେ ।

ମୁଁ ପୁଣି ନିଃଶେଷ କରି ଦେଲି ।

ଆଉ ଥରେ ବଢ଼େଇ ଦେଲି ଗ୍ଲାସ୍‌ଟି । ଏଥର ସେ ମୋ ମୁହଁକୁ ଚାହିଁ ହସିଲେ । କହିଲେ : ନା ଆଉ ନୁହେଁ । ଆଉ ତୁମେ ସହ୍ୟ କରି ପାରିବ ନାହିଁ ।

ପାନୀୟର ସ୍ୱାଦ ଓ ଗନ୍ଧ ମୋ ପ୍ରାଣରେ ପ୍ରବଳ ତୃଷ୍ଣା ଜନ୍ମେଇ ଥିଲା । ମୁଁ ଅତ୍ୟନ୍ତ ବିନୟ ସହକାରେ କହିଲି : ଏଇ ଥରକ ଦିଅନ୍ତୁ। ଆଉ ମାଗିବି ନାହିଁ ।

ସେ ନିରାଶ କଲେ ନାହିଁ । ମୋର ପାନ ପାତ୍ର ଭରିଦେଲେ । ଧୀରେ ଧୀରେ ମୁଣ୍ଡଟା ମୋର ହାଲ୍‌କା ହୋଇ ଆସିଲା । ପାଦ ଯୋଡ଼ାକ ଅବଶ ଜଣାଗଲା । ମୁଁ ସେଇଠି, ମଦନବାବୁଙ୍କର ସେହି ରୁମ୍‌ରେ ଗୋଟାଏ ସୋଫା ଉପରେ ବସି ପଡ଼ିଲି ।

ମଦନବାବୁ ମୋ ଆଡ଼େ ଚାହିଁ ହସୁଥିଲେ ।

ମୁଁ ବି ତାଙ୍କ ମୁହଁକୁ ଚାହିଁ ହସିଲି ।

ସେ ଆସି ସୋଫା ଉପରେ ମୋ ପାଖକୁ ଲାଗିବସିଲେ । ମୁଁ ତାଙ୍କ ପାଖକୁ ଘୁଞ୍ଚିଗଲି । ସେ ମୋତେ କୋଳକୁ ଆଉଜାଇ ନେଲେ । ମୁଁ ବିନା ବାଧାରେ ତାଙ୍କ କୋଳ ଉପରେ ଆଉଜି ବସିଲି । ମୁହଁକୁ ଚାହିଁ କେବଳ ହସିଲି ।

ସେ ମୋ ଛାତି ଉପରେ ମୁହଁ ଗୁଞ୍ଜିଲେ ।

ମୁଁ ତାଙ୍କ ନାକରୁ ତତଲା ପବନର ସ୍ପର୍ଶ ଅନୁଭବ କଲି ।

ସମଗ୍ର ଦେହଟା ମୋର ଅବଶ ହୋଇ ଆସୁଥିଲା । ମଦନବାବୁ ଆହୁରି ପାଖକୁ ମୋତେ ଭିଡ଼ି ନେଇଗଲେ । ତା'ପରେ ମୋର ବୋଧହୁଏ ଚେତନା ଶକ୍ତି ହଜି ଯାଇଥିଲା । ମୁଁ ଆଉ କିଛି ମନେ ରଖି ପାରି ନ ଥିଲି ।

ଆରଦିନ ସକାଳେ ଯେତେବେଳେ ମୋର ନିଦ ଭାଙ୍ଗିଲା, ଦେଖିଲି, ମୁଁ ମୋ ଶୋଇଲା ଘର ଶେଯ ଉପରେ ଶୋଇଛି । ମୁଣ୍ଡଟା ଭୀଷଣ ହାଲ୍‌କା । ଦେହଟା ପବନରେ ଭାସିଲା ପରି ଲାଗୁଛି । ହାତ ଗୋଡ଼, ସବୁଗୁଡ଼ିକ ହଲାଇ ଦେଖିଲି । ସବୁ ରହିଛି, କିନ୍ତୁ କିଛି ନ ଥିଲା ପରି ଜଣା ଯାଉଥିଲା ।

ଚାକରାଣୀ ଆସି ଡାକିଲା : ବାବୁ ଡାକୁଛନ୍ତି ମା । ଚା' ଟେବୁଲ୍‌ରେ ସେମାନେ ଆପଣଙ୍କୁ ଅପେକ୍ଷା କରିଛନ୍ତି ।

ମୁଁ ଉଠିବାକୁ ଚେଷ୍ଟା କଲି, କିନ୍ତୁ ବିଛଣାରେ ପଡ଼ିଗଲି ।

ପୁଣି ଉଠିଲି ।

ଡ୍ରେସିଂ ଟେବୁଲ୍‌ର ଆଇନାରେ ମୋ ପ୍ରତିବିମ୍ବଟା ଝଲସି ଉଠିଲା । ସେଆଡ଼େ

ଚାହିଁ ମୁଣ୍ଡଟା ଲାଜରେ ଝୁଙ୍କି ପଡ଼ିଲା । କେଶବାସ ବିତ୍ରସ୍ତା ଛି, ମୋର ଅର୍ଦ୍ଧ ଉଲଙ୍ଗ ଦେହଆଡ଼େ ନିଜେ ମୁଁ ଚାହିଁ ପାରିଲି ନାହିଁ ।

ମନେ ପକେଇବାକୁ ଚେଷ୍ଟାକଲି ଗତ କାଲିର ରାତିକଥା ।

ମଦନଦାବୁଙ୍କ ରୁମ୍‌ରେ, ତାଙ୍କ ସୋଫା ଉପରେ ମୁଁ ବସିଥିଲି । ସେ ଆସି ମୋ ପାଖରେ ବସିଲେ । ଆଉ ଯେ କିଛି ମନେ ନାହିଁ । ମୁଁ ଶୋଇବା ଘରକୁ ଆସିଲି କିପରି ? ସେ କ'ଣ ତାଙ୍କର ଦୁଇ ବାହୁରେ ତୋଳି ମୋତେ ଆଣି ଏଠାରେ ଶୁଆଇ ଦେଇଗଲେ ! ଲୁଚି ଲୁଚି ଡ୍ରେସିଂ ଟେବୁଲ୍‌ର ଆଇନା ଆଡ଼େ ଚାହିଁ ଦେଉଥିଲି ।

ମୋ ନିଜର ଉଲଙ୍ଗ ଅବୟବଗୁଡ଼ିକ ଦେଖିବା ପାଇଁ ମାନରେ ଏକ ଉଗ୍ର କାମନା ଜାଗି ଉଠିଥିଲା । ମୋର ବିତ୍ରସ୍ତ କେଶ ବାସକୁ ସଜାଡ଼ିବା ପାଇଁ ହାତ ଚଳୁ ନଥିଲା । ସତରେ ମୁଁ ଏକ ଭିନ୍ନ ମଣିଷ ପାଲଟି ଯାଇଥିଲି ।

ମନେପଡ଼ିଲା ମଦନବାବୁଙ୍କ କଥା। ସେ କହିଥିଲେ : ଯାହା ଦେଉଛି ପିଅନ୍ତୁ, ଦେଖିବେ ପୃଥିବୀ କେଡ଼େ ସୁନ୍ଦର, ଆଉ ଜୀବନ କିପରି ରସମୟ !! ମଦନବାବୁଙ୍କ ପାଇଁ ମୋ ମନର ସମସ୍ତ ଶ୍ରଦ୍ଧା ଜମି ଆସିଲା ।

ଚାକରାଣୀ ପୁଣି ଘର ଭିତରକୁ ପ୍ରବେଶ କରୁଥିବାର ଦେଖି, ମୁଁ ସଚେତନ ହୋଇ ଉଠିଲି । ମୁହଁ ହାତ ଧୋଇ ଯେତେବେଳେ ଚା' ଟେବୁଲ୍‌ରେ ଯାଇ ପହଞ୍ଚିଲି, ଦେଖିଲି ମଦନବାବୁ ମୋର ପଥକୁ ଅପଲକ ନୟନରେ ଅନାଇ ବସିଛନ୍ତି । ତାଙ୍କ ଉପରେ ଦୃଷ୍ଟି ପଡ଼ିବାମାତ୍ରେ ଆଖିପତା ମୋର ବୁଜି ହୋଇ ଆସୁଥିଲା । ମୁଁ କୌଣସି ପ୍ରକାର ଯାଇ ବାପାଙ୍କ ପାଖରେ ଗୋଟିଏ ଚେୟାର ଉପରେ ବସି ପଡ଼ିଲି ।

ଚା' ପର୍ବ ଭିତରେ ବାପା ମୋତେ ଥରେ ପଚାରିଥିଲେ, : କଲିକତା କିପରି ଲାଗୁଛି ମା ?

ମୁଁ ମଦନ ବାବୁଙ୍କ ଆଡ଼େ ଚାହିଁଦେଇ, ଆଖି ବୁଜି ପକେଇ କହିଥିଲି : ଭଲ ।

ଆଉ ବାପା ମୋତେ କିଛି ପଚାରି ନ ଥିଲେ । ମଦନ ବାବୁଙ୍କ ସହିତ ବାପାଙ୍କର ଅନେକ କଥା ଆଲୋଚନା ହେଲା । ଆମର କଲିକତାରେ ଅବସ୍ଥାନ କାଳରେ ବାପା ସପ୍ତାଏ ଖଣ୍ଡେ ପାଇଁ ଗାଁକୁ ଯାଇ ପୁଣି ଫେରି ଆସିବାର ସିଦ୍ଧାନ୍ତ କଲେ ।

ମୋର ସମସ୍ତ ଦାୟିତ୍ୱ ସେ ମଦନ ବାବୁଙ୍କ ଉପରେ ଅର୍ପଣ କରି ସେଇଦିନ ପୁରୀ ଏକ୍ସପ୍ରେସ୍‌ରେ କଲିକତା ଛାଡ଼ିଲେ । ଷ୍ଟେସନକୁ ମୁଁ ଆଉ ମଦନବାବୁ ଯାଇଥିଲୁ ।

ଗାଡ଼ି ଅଦୃଶ୍ୟ ହେବାଯାଏ ବାପା ଆମ ଦୁହିଁକୁ ଚାହିଁ ବିଦାୟ ଅଭିବାଦନ ଗ୍ରହଣ କରୁଥିଲେ । ବାପାଙ୍କ ମୁହଁ ଲୁଚିଗଲା । ମଦନବାବୁ ବୁଲିପଡ଼ି ହସିଲା ମୁହଁରେ ମୋ ଆଡ଼କୁ ଚାହିଁଲେ ।

ମୋର ସମଗ୍ର ଶରୀରରେ କିପରି ଏକ ଶିହରଣ ଖେଳିଗଲା ।

: ଚାଲ ଲୀନା, ଆଜିଠାରୁ ତମର ସମସ୍ତ ଦାୟିତ୍ୱ ମୋ ଉପରେ । ତାଙ୍କ ମୁହଁରୁ ମୋର ନୂତନ ନାମକରଣ ଓ ନୂତନ ସମ୍ବୋଧନ ଶୁଣି ମୁଁ ସେଦିନ ଆଶ୍ଚର୍ଯ୍ୟ ହୋଇ ନ ଥିଲି ।

ଆମେ ଫେରିଲୁ ଖଣ୍ଡିଏ ଟ୍ୟାକ୍ସିରେ ।

ପାଖକୁ ପାଖ ଲାଗି ଦୁହେଁ ବସିଥିଲୁ । ଟ୍ୟାକ୍ସି ଚାଲିଥିଲା ।

: ଲୀନା !

: କୁଆଡ଼େ ଯିବା ?

: ତମ ଇଚ୍ଛା ।

ଟ୍ୟାକ୍ସି ଯାଇ କେଉଁଠି ଠିଆହେଲା ମୋର ମନେ ନାହିଁ । ସେ ମୋ ହାତଧରି ଓହ୍ଲାଇ ଆଣିଲେ । ଗୋଟିଏ ଉଜ୍ଜ୍ୱଳ ଗୃହମଧ୍ୟରେ ଆମେ ପ୍ରବେଶ କଲୁ ।

ଆମପରି ବହୁ ରଙ୍ଗିନ ପ୍ରଜାପତିର ଦଳ ସେ ଘର ଭିତରେ ଖଣ୍ଡିଉଡ଼ା ଦେଇ ବୁଲୁଥିଲେ ।

ମୁଁ ଦେଖି ଅବାକ୍ ହୋଇଗଲି । କାରଣ ମୋ ଜୀବନରେ ସେପରି ଅନୁଭୂତି ଥିଲା ପ୍ରଥମ ।

ମଦନ ବାବୁଙ୍କ ମୁହଁକୁ ଅନାଇଲି ।

ସେ କେବଳ ହସିଲେ । ମୋ ହାତ ଟିକିଏ ଚିପିଦେଇ କହିଲେ, : ଡରି ଯାଉଚ ? ମୋ ସହିତ ଆସ । ମୁଁ ତାଙ୍କ ହାତ ଧରି ଧରି ଆଗୋଉଥିଲି । ଗୋଟିଏ କ୍ଷୁଦ୍ର ପ୍ରକୋଷ୍ଠ ଭିତରେ ଯାଇ ଆମେ ଦୁହେଁ ବସିଲୁ । ସୁନ୍ଦର ସଜ୍ଜିତ ଗୃହ । ମଧୁର ପରିବେଶ । ଯନ୍ତ୍ର-ସଙ୍ଗୀତ ଧୀରେ ଧୀରେ ଆସି କର୍ଣ୍ଣ ଗୁହରରେ ପ୍ରବେଶ କରୁଥିଲା ।

ସୁଇଂଡୋର ଠେଲି ବୟ ଆସି ସାଲ୍ୟୁଟ ବଜାଇଲା । ମଦନବାବୁ ତାକୁ କ'ଣସବୁ ଆଣିବାକୁ କହିଲେ । ଆବହାଓ୍ୱାଟା ଯଦିଓ ମୋତେ ସାମାନ୍ୟ ଅସ୍ୱାସ୍ଥ୍ୟକର ଲାଗୁଥିଲା, ମୁଁ କିନ୍ତୁ ଦେହ ମନରେ କିପରି ଶୀତଳତା ଅନୁଭବ କରୁଥିଲି ।

: ଲୀନା !

: ଉଁ ।

: ତମେ ହଠାତ୍ ଏପରି ଗମ୍ଭୀର ହୋଇଗଲ କାହିଁକି ? ଜୀବନଟାକୁ ଲୁହା ସିନ୍ଦୁକ ଭିତରେ ଚାବି ଦେଇ ରଖିବାଟା ମନୁଷ୍ୟର ଧର୍ମ ନୁହେଁ । ଜୀବନକୁ ଉପଭୋଗ କର । ମଉଜ୍ ଫୂର୍ତ୍ତି...

ବୟ ଗୋଟାଏ ଟ୍ରେ'ରେ ଖାଦ୍ୟ ସାମଗ୍ରୀ ଆଣି ପ୍ରବେଶ କଲା । ମୁଁ 'ହରେକ୍ ରକମ' ଖାଦ୍ୟ ସରଞ୍ଜାମ ଆଡ଼େ ଚାହିଁ ରହିଥିଲି । : ମୁଁ ଜାଣେ ଲୀନା, ଏକା ତମେ କାହିଁକି, ତମ ଭଳି ଯେ କୌଣସି ଝିଅ ପ୍ରଥମେ ଏହିପରି ପରିବେଶ ଭିତରେ ନିଶ୍ଚୟ ଟିକିଏ ସ୍ତବ୍ଧ ହୋଇଯିବ । କିନ୍ତୁ ସାମାନ୍ୟ ଭାବରେ ଦେହସୁହା ହୋଇ ଯିବ । ପରେ, ଆଃ...

ମଦନବାବୁ ଦୁଇ ତିନୋଟି ବୋତଲରୁ କିଛି ପାନୀୟ ଢ଼ାଳି ଗୋଟିଏ ପାନ-ପାତ୍ରରେ ଭରିଲେ ! ସେଥିରେ ଦୁଇ ତିନି ଆଉନ୍ସ ପାଇନାପ୍ଲ ସ୍କ୍ୱାସ ମିଶେଇ କହିଲେ : ଏଇ ଆବିଷ୍କାରଟା ସଂପୂର୍ଣ୍ଣ ମୋର ନିଜସ୍ୱ । ଏତକ ପିଇ ସାରିଲେ ଦେଖିବ, ଏ ଜଡ଼ତା ତମର ଦୂର ହୋଇ ଯାଇଛି। ଆଉ ତୁମେ...

ହାତଟା ମୋର ଗ୍ଲାସ ଆଡ଼କୁ ଲମ୍ବି ଯାଇଥିଲା ।

ମଦନବାବୁ ହୋ ହୋ ହୋଇ ହସୁଥିଲେ ।

: ସାବାସ୍, ସାବାସ୍ ଲୀନା । ମୁଁ ଜାଣେ, ତୁମେ ମୋର ଏହି ଆବିଷ୍କାରକୁ ନିଶ୍ଚୟ ସମ୍ମାନ ଦେବ ।

ମୁଁ ଗ୍ଲାସ୍‌ଟି ନିଃଶେଷ କରି ଟିକିଏ ସ୍ୱସ୍ତି ଅନୁଭବ କଲି । ବୋଧହୁଏ ଏତେବେଳଯାଏ ମୋ ପେଟରେ କୌଣସି ପାନୀୟ ପଡ଼ି ନଥିବାରୁ ମୁଁ ଜଡ଼ ପାଲଟି ଯାଇଥିଲି ।

ପାନୀୟ ଗ୍ଲାସଟା ପୁଣି ମଦନବାବୁଙ୍କ ଆଡ଼କୁ ବଢ଼ାଇ ଦେଲି ।

ସେ ମୁଣ୍ଡ ହଲାଇ ବାରଣ କଲେ : ନା, ଏଥର ଖାଦ୍ୟ । ଖାଲି ପେଟରେ ଏ ସବୁ ପାନୀୟ ଭଲ ନୁହେଁ । ସେ ମୋ ଆଡ଼କୁ ଖାଦ୍ୟ ସାମଗ୍ରୀ ଗୋଟି ଗୋଟି କରି ବଢ଼ାଇ ଦେଲେ । ଦୁହେଁ ଖାଇ ବସିଲୁ ।

ନାନା ପ୍ରକାର ସୁସ୍ୱାଦୁଖାଦ୍ୟରେ ପେଟଟା ଭରି ଆସିଲା ।...

ଦେହ ମନରୁ ଜଡ଼ତା ଅପସରି ଯାଉଥିଲା ।

ମଦନବାବୁ ଆଉ ଦୁଇଟି ଗ୍ଲାସ୍‌ରେ ପୁଣି ପାନୀୟ ଢ଼ାଳୁଥିଲେ । ସବୁ ମିଶାମିଶି । ଏଥର ଅରେଞ୍ଜସ୍କ୍ୱାସ ଢ଼ାଳିଲେ ଗ୍ଲାସ୍‌ରେ ।

ନିଅ, ଏଇଟା ମୋର ସର୍ବଶ୍ରେଷ୍ଠ ଆବିଷ୍କାର । ଅତି ଅନ୍ତରଙ୍ଗ ଛଡ଼ା ଅନ୍ୟ କାହାକୁ ଦିଏ ନାହିଁ ।

ମୋ ଦେହ ମନ ସେତେବେଳକୁ ସତେଜ ହୋଇ ଆସୁଥିଲା । ମୁଁ ସିଟ୍‌ରୁ ଉଠି ଠିଆ ହୋଇଗଲି । ପାନୀୟ ଗ୍ଲାସ୍‌ଟି ଧରି କହିଲି-

: ମୁଁ ଆଜି ନିଜ ହାତରେ ପିଆଇଦେବି !

: ସତେ ! ସତ କହୁଚ ଲୀନା !!

: କାହିଁକି, ଆପଣ କ'ଣ ବିଶ୍ୱାସ କରିପାରୁ ନାହାନ୍ତି ?

: ପାରୁନାହିଁ ଲୀନା , ମୋର ଏତେବଡ଼ ସୌଭାଗ୍ୟର କଥା ମୁଁ କଳ୍ପନା କରି ପାରୁ ନାହିଁ ।

ମୁଁ ମଦନବାବୁଙ୍କ ଦେହ ଉପରେ ଆଉଜି ପଡ଼ିଲି । ସେ ମୋ ହାତରୁ ପାନ-ପାତ୍ରଟି ଛଡ଼ାଇ ନେଇ କହିଲେ : ଆଗ ତୁମକୁ ମୁଁ ପିଆଇ ଦିଏଁ, ତା'ପରେ ତୁମେ ମୋତେ ଦୟା କରି...

ମୋତେ ତାଙ୍କ ଛାତି ଉପରେ ଆଉଜାଇ ଧରି ସାନପିଲାକୁ ଗେଲ କଲାପରି ପିଆଇଦେଲେ । ମୋର ମୁଖମଣ୍ଡଳରେ ଆଙ୍ଗୁଳି ସଞ୍ଚାଳନ କରି ଥିରି ଥିରି କହିଲେ

: ଲୀନା ! ତମେ ମୋତେ ସାର୍ଥକ କଲ ।

ଏଥର ମୋର ପାଳି ।

ମୁଁ ମୋ ନିଜ ହାତରେ ପାନ-ପାତ୍ର ଭରିଲି ।

ତାଙ୍କୁ ମୋର ଛାତି ଉପରକୁ ଆଉଜାଇ କହିଲି : ମୋର ଏତିକି ଦାନରେ ଆପଣ ଯଦି ନିଜକୁ ସାର୍ଥକ ମଣନ୍ତି, ତେବେ ଜୀବନ ଭରି ମୁଁ ଆପଣଙ୍କୁ ସାର୍ଥକ କରିପାରିବି ।

: ଲୀନା !

ସେ ମୋ ମୁହଁକୁ କିପରି ଏକ ଭୋକିଲା ଆଖିରେ ଚାହିଁରହି, ମୋ ହାତରୁ ପେଗ୍ ପରେ ପେଗ୍ ନିଃଶେଷ କରି ଚାଲିଥିଲେ ।

ଛଅ ପେଗ୍ ପରେ ସେ ଯେତେବେଳେ ଆହୁରି ଚାହିଁଲେ, ମୁଁ ବାରଣ କଲି । କହିଲି

: ଏତେ ପିଇବା ଭଲ ନୁହେଁ ।

ସେ ହସିଲେ । ମୋ ଗାଲକୁ ଦୁଇ ହାତରେ ଚିପିଦେଇ କହିଲେ : ଛ'ପେଗ୍ ମୋ ପାଖରେ କିଛିନୁହେଁ ଲୀନା । ଏଗାର ବାର ପେଗ୍ ପର୍ଯ୍ୟନ୍ତ ହଜମ କରିଯିବାର ଶକ୍ତି ମଦନପଟ୍ଟନାୟକର ଅଛି । ଆଜି ପୁଣି ଲୀନା ହାତରୁ ପାନିୟ । ସତର ଅଠର ହେଲେ ବି କ୍ଷତି କ'ଣ !

: ଉଁ ହୁଁ !

: ନା ଲୀନା, ତମେ ବାରଣ କରନାହିଁ ।

ମୁଁ ଆହୁରି ଦୁଇପେଗ୍ ଢ଼ାଳିଦେଲି ।

ମଦନବାବୁ ସେତକ ନିଃଶେଷ କରି ପୁଣି ମାଗୁଥିଲେ । ସେତିକିବେଳେ ଦ୍ୱାରଦେଶରେ କାହାର କରାଘାତ ଶୁଣି ମଦନବାବୁ ଉଠି ବସିଲେ ।

: କିଏ ?

ବୟ ଭିତରକୁ ପ୍ରବେଶ କଲା । ବିନୀତ ସ୍ୱରରେ କହିଲା, : ଏଗାରଟା ବାଜି ଗଲାଣି ଆଜ୍ଞା ! ଆଉ ବେଶି ସମୟ ଏଠାରେ ରହିହେବ ନାହିଁ ।

ମଦନବାବୁଙ୍କ ମୁହଁରେ ବିରକ୍ତିର ଭାବ ଫୁଟି ଉଠିଲା ।

ସେ ସଙ୍ଗେ ସଙ୍ଗେ ଉଠି ଠିଆହୋଇ ପଡ଼ିଲେ । ମୋ ବାଁ ହାତଟା ଧରି କହିଲେ : ଅରସିକ ଲୋକଗୁଡ଼ା । ଚାଲିଆସ ।

ଆମେ ସେଠାରୁ ବାହାରି ଆସିଲୁ ।

ପୁଣି ଟ୍ୟାକ୍ସି ।

ଧୀର ପବନର ସ୍ପର୍ଶ ମୋ ଦେହରେ କାଉଁରୀ ବୋଳିଦେଇ ଯାଉଥିଲା ।

ମୁଁ ମଦନବାବୁଙ୍କ ପାଖକୁ ଗୁଞ୍ଜି ହୋଇ ଯାଉଥିଲି ।

ସେ ମୋ କାନ୍ଧ ଉପରେ ତାଙ୍କର ବାଁ ହାତଟି ଥାପି ଡାହାଣ ହାତରେ ସିଗାରେଟଟାଏ ଧରିଥିଲେ । ଆକାଶରେ ନକ୍ଷତ୍ରର ମେଳା ବସିଥିଲା । ଚାରି ପାଖରେ ଆଲୋକର ମାଳା ଝୁଲୁଥିଲା । ପବନ ମଝିରେ ଢେଉ କାଟି ଆମ ଟ୍ୟାକ୍ସିଟି ଛୁଟି ଚାଲିଥିଲା ।

ସେ ଆନନ୍ଦ, ସେ ଅନୁଭୂତି, ସେ ମାଦକତା ଆଉ କେବେଆସିବ ନାହିଁ ଜୀବନରେ ।

ଆଜି ମୁଁ ଲେଖି ବସିଲାବେଳେ ସେଇସବୁ ଅତୀତ ଆଡ଼େ ଚାହିଁ, ଅତୀତକୁ ମନେ ପକାଇ, ବହୁ କଷ୍ଟରେ କଲମ ଧରିବାକୁ କ୍ଷମ ହେଉଛି । କ'ଣ ହେଲା ମୋର । ଯାହା ମୋ ଜୀବନରେ ଚରମ ଆନନ୍ଦ ଆଣିଥିଲା, ଜୀବନକୁ ଧନ୍ୟ କରିଥିଲା, ସେଇ କ'ଣ ଆଜି ବ୍ୟର୍ଥ କରିଦେବ ?

ନା, ଆଉ ଆଜି କିଛି ମନେ ପଡୁନାହିଁ । ସମସ୍ତ ପାନୀୟ ନିଃଶେଷ କରି ଦେଇଛି । ଗ୍ଲାନି, ଆତ୍ମ-ବେଦନା, କାହିଁ, ସେଦିନ ପରି ତ ଅନ୍ତର୍ହିତ ହୋଇ ଯାଉନାହିଁ !!

ହଁ ମଦନ ବାବୁ !

ସେଦିନ ମଦନବାବୁଙ୍କ ସହିତ ମୁଁ ଆସି ଘରେ ପହଞ୍ଚିଲି ।

ମୋ ମନରେ ସଂପୂର୍ଣ୍ଣ ଚେତନା ଥିଲେ ମଧ, ଅଙ୍ଗ-ଅବୟବର ଅବଶତା ଭରି ଯାଉଥିଲା । ମଦନବାବୁ ମୋତେ ଏକ ପ୍ରକାର କୋଳ କରି ଟ୍ୟାକ୍ସିରୁ ଘରକୁ ଆଣିଲେ । ଶୋଇଲାଘର ଶେଯ ଉପରେ ମୋତେ ଶୁଆଇ ଦେଇ, ମୋ ମୁହଁକୁ ହସିଲା ମୁହଁରେ ଅନେକ ବେଳଯାଏ ଅନାଇ ରହିଲେ । ତା'ପରେ ଆଖି ଯୋଡ଼ାକରେ ଗଭୀର ଅଭିମାନ

କରି କହିଲେ : ମୁଁ ଯାଉଛି ଲୀନା ! ରାତି ଅନେକ ହେଲାଣି ! ତମେ ଶୋଇପଡ଼ ।

ସେ ମୋ ଶେଯରୁ ଉଠି ଯାଉଥିଲେ ।

ମୁଁ କିନ୍ତୁ ମୋର ଅବଶ ହାତ ଯୋଡ଼ାକୁ ବହୁ କଷ୍ଟରେ ସଚଳ କରି ତାଙ୍କ ଜାମାକୁ ଟାଣି ଧରିଲି ।

: ଉଁ ହୁଁ ।

: ଆଉ ? ସେ ମୋ ମୁହଁ ପାଖରେ ମୁହଁ ଥାପି ପଚାରିଲେ ।

ମୁଁ ହସିଲି, ଦୁଇ ହାତରେ ତାଙ୍କ ବେକକୁ ଜଡ଼େଇ ଧରିଲି । ସେ ଶାନ୍ତଶିଶୁଟି ପରି ମୋରି ଛାତି ଉପରେ ମୁଣ୍ଡ ରଖି ଶୋଇ ପଡ଼ିଲେ ।

ତା'ପରେ ଦିନ ଦିନ ହୋଇ ଦିନ ଗଡ଼ିଲା ।

ବାପା ଗାଁକୁ ସପ୍ତାହକ ପାଇଁ ଯାଇ ପ୍ରାୟ ଏକମାସ ରହିଗଲେ ।

ଚରମ ଆନନ୍ଦରେ ମଦନବାବୁଙ୍କ ସହିତ ମୁଁ ଜୀବନକୁ ଉପଭୋଗ କରିବାକୁ ଲାଗିଲି । କୌଣସି ବାଧା ନଥିଲା, ବନ୍ଧନ ନଥିଲା, ବୟସର ଉନ୍ମାଦନା ସହିତ କଲିକତାର ପ୍ରାଚୁର୍ଯ୍ୟ ମୋତେ ଦୁରନ୍ତ କରିପକାଇଲା ।

ମଦନବାବୁଙ୍କର ନିତି ନୈତି ଆବିଷ୍କୃତ ପାନୀୟ ପାଇଁ ମୋର ତୃଷା ବହୁ ପରିମାଣରେ ବଢ଼ି ଯାଉଥିଲା ।

ମୋଟ ଉପରେ ଆନନ୍ଦର ଚରମକୁ ଆମେ ଉଠି ଯାଇଥିଲୁ ।

ମାସକ ପରେ ବାପା ଆସି ପହଞ୍ଚିଲେ ।

ଆଉ କେତେଦିନ ପରେ ଆମେ ଘରକୁ ଫେରିଗଲୁ ।

କିନ୍ତୁ ମଦନବାବୁ ପାନୀୟର ଯେଉଁ ଅଭ୍ୟାସଟି ମୋତେ କରାଇ ଦେଇଥିଲେ, ତାହା ମୁଁ ଆଉ ଛାଡ଼ିପାରିଲି ନାହିଁ । ଛାଡ଼ିବାର କୌଣସି ଆବଶ୍ୟକତା ବି ପଡ଼ିଲା ନାହିଁ । ବାପା ମୋ ମନ କଥା ଜାଣିଲା ପରି ଘରେ ଆଣି ଯଥେଷ୍ଟ ପାନୀୟ ରଖିଦେଲେ ।

ମଦନବାବୁଙ୍କୁ ମୁଁ ଜୀବନରେ କେବେ ଭୁଲି ପାରିବି ନାହିଁ ।

ତାଙ୍କର ଦାନ ମୋ ଜୀବନକୁ ଚରମ ଆନନ୍ଦ ଦେଇଛି କି ନର୍କଗାମୀ କରିଛି, ଆଜି ବି ମୁଁ ବୁଝି ପାରୁନାହିଁ । ମଦନବାବୁ କିନ୍ତୁ ମୋ ଜୀବନ ପଥରୁ ବହୁ ଦିନରୁ ବିଦାୟ ନେଇ ଯାଇଛନ୍ତି ।

ତା'ପରେ ଯିଏ ଆସିଥିଲେ, ତାଙ୍କ ନାଁ ତପନ ସାମୁଏଲ ।

ତାଙ୍କ ସହ ମୋର ସାକ୍ଷାତ ହୋଇଥିଲା ଏକ ଗାର୍ଡେନ ପାର୍ଟିରେ। ଅତ୍ୟନ୍ତ ଅମାୟିକ ଲୋକ । ମୁହଁରେ ସବୁବେଳେ ହସ ଲାଗି ରହିଥାଏ । କଥା କଥାକେ ସେ ଜୀବନ ଦର୍ଶନର ବ୍ୟାଖ୍ୟା କରନ୍ତି ।

କିନ୍ତୁ ପାନୀୟରେ....ମଦନ ବାବୁଙ୍କୁ ସେ ଟପି ଯାଇଥିଲେ ।

ମଦନବାବୁଙ୍କ ପରି ମିଶ୍ରିତ ପାନୀୟ କୌଶଳ ତାଙ୍କୁ ଜଣା ନଥିଲା ।

ପ୍ରଥମେ ଯେଉଁଦିନ ମୁଁ ତାଙ୍କୁ ଏକ ମିଶ୍ରିତ ପାନୀୟ ପ୍ରସ୍ତୁତ କରି ପିଆଇଲି, ସେଦିନ ସେ ମୋତେ ମୁଣ୍ଡରେ ମୁଣ୍ଡେଇ ପ୍ରାୟ ଅଧଘଣ୍ଟା କାଳ ନାଚିଥିଲେ । ମୋ ପ୍ରଶଂସା ତାଙ୍କର ବନ୍ଧୁ ବାନ୍ଧବମାନଙ୍କ ପାଖରେ ଗାଇ ବୁଲିଥିଲେ ।

ଫଳରେ ଆମ ଘରେ ସନ୍ଧ୍ୟାବେଳେ ଭିଡ଼ ବଢ଼ିଲା ବହୁତ । ସେହି ସମୟରେ

ବାପା ଆମ କଟକ ଘରେ ରହୁ ନଥିଲେ । ତେଣୁ ସବୁ ପ୍ରକାର ସୁଯୋଗ ଆସି ଯୁଟିଲା ମୋ ଭାଗ୍ୟରେ। ଜୀବନକୁ ଉପଭୋଗ କରିବାର ନିଶା, ମୋ ପ୍ରାଣକୁ ଅସ୍ଥିର କରି ପକାଇଲା ।

ନିତି ନୂଆ ବନ୍ଧୁ। ନୂଆ କାମନା ।

ପୃଥିବୀର କୌଣସି କଥା ମୋ ମନକୁ ଆଉ ପ୍ରବେଶ କରିପାରିଲା ନାହିଁ। କେବଳ ରଙ୍ଗିନ୍ ସୁରାର ସ୍ୱପ୍ନ ମୋ ଅସ୍ଥି ମଜ୍ଜାକୁ ଅଧିକାର କରି ରହିଲା ।

ମୁଁ ଆମ କଟକ ଘରେ ଥିବାଯାଏ ବନ୍ଧୁମାନଙ୍କର ଅଭାବ ନଥିଲା । ବିଳାସ ବ୍ୟସନରେ ତ୍ରୁଟି ନଥିଲା । ଚାକର, ବାକର ଦାସ ଦାସୀ ସମସ୍ତେ ମୋର ପଦପାତକୁ ଚାହିଁ ବସିଥିଲେ । ମୁଁ ବାପାଙ୍କର ଏକମାତ୍ର ସନ୍ତାନ ହୋଇ ଥିବାରୁ ସେ ବୋଧହୁଏ ମୋର ସମସ୍ତ ପ୍ରକାର ମନସ୍କାମ ପୂରଣ ପାଇଁ ବ୍ୟବସ୍ଥା କରି ଦେଇଥିଲେ ।

କିନ୍ତୁ ଆଜି ମୋ ମନକୁ ଗୋଟିଏ ଭାବନା ଭାରାକ୍ରାନ୍ତ କରି ରଖିଛି । ବାପା ତ କାହିଁକି ମୋ ବିବାହ କଥା ଦିନେ ହେଲେ ଚିନ୍ତା କରି ନଥିଲେ ?

ସେ ଯଦି ମୋତେ ଜଣେ କାହା ସହିତ ବିବାହ କରେଇ ଦେଇ ଥାଆନ୍ତେ, ତେବେ ମୋର କ'ଣ ଏହି ଚରମ ଅଧଃପତନ ହୋଇ ଥାଆନ୍ତା !!

ବାପା କ'ଣ ଇଚ୍ଛାକରି ମୋର ଏହି ଅଧଃପନତ ଘଟାଇଥିଲେ ?

ନା ମୋର ଅଧପତନ କଥା ବୁଝି ପାରିନ ଥିଲେ ?

ହଠାତ୍ ଦିନେ ବାପା ଆମ କଟକ ଘରେ ପହଞ୍ଚି କହିଲେ : ତୋର ଆଉ ଏଠାରେ ରହିବା ମୁଁ ଉଚିତ ମଣୁନି । କାରଣ ମୁଁ ଏଠାରେ ଆଉ ରହିବା ସମ୍ଭବ ନୁହେଁ । ତୋତେ ମୋ ସହିତ ଯିବାକୁ ହେବ ।

ବାପାଙ୍କ କଥାରେ ମୁଁ କୌଣସି ପ୍ରତିବାଦ କେବେ କରେନାହିଁ । ସେ ଦିନ ମଧ ନୀରବ ରହିଥିଲି ।

ବାପାଙ୍କ ସହିତ ଚାଲିଆସିଲି ।

ବନ୍ଧୁମାନଙ୍କର ଆଡ୍ଡା ଭାଙ୍ଗିଲା ସତ, କିନ୍ତୁ ମୁଁ ଏଠାରେ ଟିକିଏ ନିରୋଳା ହେଲି । ବେଳେବେଳେ ଗତକଥାମାନ ମନେ ପଡ଼ିଲା ।

ଦିନେ ଦିନେ ପୁରାତନ ବନ୍ଧୁମାନଙ୍କ ମଧ୍ୟରୁ କେହି କେହି ମଧ ଆସି ପହଞ୍ଚିଲେ ।

ବାପାଙ୍କୁ ଦେଖିଲି, ସେ ଏଠାରେ ଖୁବ୍ ଗମ୍ଭୀର ହୋଇ ଯାଇଛନ୍ତି । ଏଠାରେ ପରିବେଶ ପ୍ରଥମେ ପ୍ରଥମେ ମୋତେ ଅଣନିଃଶ୍ୱାସୀ କରି ପକାଇଥିଲା । ତା'ପରେ ଧୀରେ ଧୀରେ ଦିହ ସୁହା ହୋଇ ଆସିଲା । ମୁଁ ଭାବୁଚି ପାନୀୟର ଅଭାବ ନଥିବା ଯାଏ ଦେହଟାକୁ ଭୁଲେଇ ଦେଇ ରଖିହେବ ।

କିନ୍ତୁ ମନ ?

ମନକୁ ଯେ ଆଉ ଆୟତ କରି ହେଉନାହିଁ । ସେ ଚାହୁଁଚି ଏକ ଆଶ୍ରୟ । ସ୍ଥାୟୀ ଆଶ୍ରୟ । ଯିଏ ସବୁଦିନ ପାଇଁ ମୋତେ ନିଜର କରି ରଖି ପାରିବ ।

ସବୁଠାରୁ ମୋତେ ଡର ଲାଗୁଛି, ହୁଏତ ଦିନେ ମୁଁ ପାଗଳ ହୋଇଯିବି । କାରଣ ଏଠାରେ ଯେଉଁମାନେ ଅଛନ୍ତି, ସେମାନଙ୍କ ମଧ୍ୟରୁ କେହି ଜଣେ ହେଲେ ସୁସ୍ଥ ନୁହନ୍ତି । ମୁଁ ମଧ ବେଳେ ବେଳେ ଅସ୍ୱସ୍ଥ ଅନୁଭବ କରୁଚି । ସ୍ମରଣ ଶକ୍ତି ଧୀରେ ଧୀରେ ମୋର

ଲୋପ ହୋଇ ଆସୁଛି । ସେଇଥିପାଇଁ ମୋର ଏ ଲେଖା ଆରମ୍ଭ ।

ତଥାପି କ'ଣ ସବୁ କଥା ମୁଁ ମନେ ପକାଇ ପାରୁଚି !!

ଆଉ ମନେ ନାହିଁ । କେବେ କ'ଣ ଆଉ ମନେ ପଡ଼ିବ ନାହିଁ ?

ଧୀରେ ଧୀରେ ମୋ ମୁଣ୍ଡର ଅବସ୍ଥା ଖରାପ ଦିଗକୁ ଗତି କରୁଛି !!

ଏଠାରେ ରହିଲେ ମୁଁ ପାଗଳ ହେଇଯିବି । ହଁ ମୋର ଶେଷ ପରିଣତି ପାଗଳୀ ଛଡ଼ା ଆଉ କ'ଣ ହୋଇ ପାରେ ?

କିନ୍ତୁ ଏଇଆ କ'ଣ ଜୀବନର ଶେଷ ପରିଣତି ?

ନା, ନା ଏଥିପାଇଁ ନିଜେ ମୋତେ ବାଟ ସଫା କରିବାକୁ ହେବ । ଜୀବନକୁ ମୁକ୍ତ କରିବାର ଆଜି ଏକମାତ୍ର ଉପାୟ ହେଉଛି ଏଠାରୁ ମୋତେ ଚାଲିଯିବାକୁ ହେବ । ସେଥିପାଇଁ ଏକ ମହତ୍ତର ଆଶ୍ରୟ ଲୋଡ଼ା ।

କିନ୍ତୁ କିଏ ଦେବ ମୋତେ ଆଶ୍ରୟ ?

ସତ୍ୟବ୍ରତ ଏଥର ଡାଇରୀର ପୃଷ୍ଠା ଓଲଟେଇବା ପୂର୍ବରୁ ଟିକିଏ ଚିନ୍ତା କଲେ । ସୁନ୍ଦର କାହାଣୀ ତ ! ଗଳ୍ପ ଉପନ୍ୟାସ ଠାରୁ ମଧ ଆକର୍ଷଣୀୟ ମନେ ହେଉଛି । କିନ୍ତୁ କାହାର ଏହି ଆତ୍ମ ଚରିତ ! କିଏ ଏହାର· ନାୟିକା !

ଲୀନା !

ଲୀନା, ମଳିନା ଛଡ଼ା କିଏ ହୋଇପାରେ ?

ସତ୍ୟବ୍ରତ ନିଜକୁ ବିଶ୍ୱାସ କରି ପାରୁ ନଥିଲେ । ମଦନ ରାୟଙ୍କ କନ୍ୟା ମଳିନା ଯେ ଏତେ ନିମ୍ନସ୍ତରକୁ ଖସିଯାଇ ପାରିଥାଏ, କିପରି ଚିନ୍ତା କରିହେବ !!

ସେତିକିବେଳେ ଦୁଆରେ କାହାର କରାଘାତ ଶୁଣି, ସତ୍ୟବ୍ରତ ଉଠି ଖୋଲିଦେଲେ ।

ଇନିସ୍ପେକ୍ଟର ସାହାଣୀ ।

: ଆସନ୍ତୁ ମି. ସାହାଣୀ ! ଅନେକ ଡେରିକରି ଦେଲେ ଯେ ! ମୁଁ ଆପଣଙ୍କ ପ୍ରତୀକ୍ଷା କରି ବସିଛି । କାଲି ରାତିରେ ନିଶ୍ଚୟ ସେ ସଇତାନଟା ଆସି ନାହିଁ ?

: ସେ କଥା ଆଉ କୁହନ୍ତୁ ନାହିଁ ମି: ମହାପାତ୍ର । କାଲି ରାତିଟା ଖାଲି ଘରେ ମଶା ଓ ଛାରପୋକଙ୍କ ଉପଦ୍ରବରେ ମୁଁ କଟାଇ ପାରିନାହିଁ । ମୁଁ ଟିକିଏ ହେଲେ ଆଖିବୁଜି ପାରି ନାହିଁ । ତା'ଛଡ଼ା ସବୁଠାରୁ କରୁଣ କଥା ହେଉଛି, ଯାହାପାଇଁ ମୋର ପ୍ରତୀକ୍ଷା, ସେ ଆସିଲା ନାହିଁ ।

: ମୁଁ ଖୁବ୍ ଦୁଃଖିତ ମି. ସାହାଣୀ । ମୋରି ପାଇଁ ଆପଣ କାଲି ଏପରି ଦୁର୍ଯୋଗ ଭୋଗିଲେ ।

: ନା, ନା ଆପଣ ସେଥିପାଇଁ କିଛି ମନେ କରନ୍ତୁ ନାହିଁ । ଏଥର କୁହନ୍ତୁ, ଉଦୟ ମହଲରେ କାଲି ରାତିରେ କୌଣସି ଅଘଟଣ ଘଟିଛି କି ନାହିଁ ।

: ଅଘଟଣ ଅବଶ୍ୟ କିଛି ଘଟିନାହିଁ କିନ୍ତୁ ଘଟଣା ସାମାନ୍ୟ ଘଟିଛି । ଏଠାରେ ମୋର ଦିନଯାକ ଆଉ ବସି ରହିବାର କୌଣସି ଆବଶ୍ୟକତା ଅନୁଭବ କରୁନାହିଁ । ବରଂ ଭାବୁଚି ଆପଣଙ୍କ ସଙ୍ଗରେ ଯାଇ କୁଆଡ଼େ ସମୟ କଟାଇ ଆସିବି ।

: କାହିଁକି, ଏଠାରେ କ'ଣ ସମସ୍ତ ପ୍ରକାର ଅନୁସନ୍ଧାନ କାର୍ଯ୍ୟ ଶେଷ ହୋଇ ଯାଇଚି ?

: ପ୍ରାୟ । ଯେଉଁମାନେ ଏଠାକାର ଅଧିବାସୀ, ସେମାନେ କେହି ଆମକୁ ସାହଯ୍ୟ କରିବାକୁ ଚାହାନ୍ତି ନାହିଁ । କିନ୍ତୁ ମୋର ମନେ ହେଉଛି, ମଦନ ରାୟଙ୍କ ହତ୍ୟା ରହସ୍ୟ ସମ୍ବନ୍ଧରେ ସମସ୍ତେ ଅଳ୍ପ ବହୁତେ ଜାଣିଛନ୍ତି । ସେମାନଙ୍କ ଠାରୁ କଥା ଆଦାୟ କରି ହେବ ନାହିଁ, କାର୍ଯ୍ୟକଳାପରୁ ଧରି ନେବାକୁ ହେବ ।

: ତା'ହେଲେ............

: ଆପଣ ବରଂ ଗୋଟାଏ କଥା କରନ୍ତୁ ମି. ସାହାଣୀ । ଆପଣ ଉଦୟ ମହଲରେ ଘୋଷଣା କରି ଦିଅନ୍ତୁ ଯେ ସତ୍ୟବ୍ରତ ମହାପାତ୍ର ଏଠାରୁ ଚାଲି ଯାଉଛନ୍ତି । ଉଦୟ ମହଲ ସଂପୂର୍ଣ୍ଣ ରୂପେ ପୋଲିସ୍ ଅଧିକାରରେ ରହିବ । ମଦନରାୟଙ୍କ ହତ୍ୟାକରୀ ଧରା ନପଡ଼ିବା ଯାଏ କେହି ଉଦୟ ମହଲ ଛାଡ଼ି ଯାଇ ପାରିବେ ନାହିଁ ।

: ତଦ୍ୱାରା ଲାଭ କ'ଣ ହେବ ?

: ଅଧିବାସୀମାନେ ଆହୁରି ଟିକିଏ ସ୍ୱାଧୀନତା ପାଇବେ । କେବଳ ଆମର ଲକ୍ଷ୍ୟ ରଖିବା କଥା, କେହି ଉଦୟ ମହଲ ଛାଡ଼ି ଚାଲି ଯାଉଛି କି ନାହିଁ ।

: ଆଜି ରାତିରେ କ'ଣ ପୋଲିସ୍ ପହରା ବସେଇବାକୁ ହେବ ?

: ନା, ତା'ର ମଧ୍ୟ ଆବଶ୍ୟକତା ନାହିଁ । ମୁଁ ଆଜି ରାତିରେ ଉଦୟ ମହଲରେ ରହିବି ଯେ, କିନ୍ତୁ ସମସ୍ତଙ୍କ ଅଲକ୍ଷ୍ୟରେ । ବର୍ତ୍ତମାନ ଚାଲନ୍ତୁ । ଅନେକ ରାତିରେ ସମସ୍ତଙ୍କ ଅଲକ୍ଷ୍ୟରେ ମୁଁ ଉଦୟ ମହଲରେ ପ୍ରବେଶ କରିବି । ତା'ହେଲେ ସମସ୍ତଙ୍କ କାର୍ଯ୍ୟକଳାପକୁ ଲକ୍ଷ୍ୟ କରିବା ସହଜ ହେବ ।

: ଉଦୟମହଲରେ କିଏ ଏପରି ଅଧବାସୀ ଅଛନ୍ତି ଯେ, ସେମାନଙ୍କ କାର୍ଯ୍ୟକଳାପକୁ ଆପଣ ଅନୁସରଣ କରି ପାରୁ ନାହାନ୍ତି ।

ଆପଣ ଜାଣି ନାହାନ୍ତି ମି: ସାହାଣୀ । ଖଣ୍ଡିଆ, କୁଢ଼ିଆ, ଛୋଟା, ଲେଙ୍ଗଡ଼ା ବୋଲି ଯେଉଁମାନଙ୍କୁ ଆପଣ ସନ୍ଦେହର ବାହାରକୁ ଟାଣି ନେଉଛନ୍ତି, ସେଇମାନେ ଗୋଟିଏ ଗୋଟିଏ ରତ୍ନ । ସମସ୍ତରଙ୍କର କିଛି ନା କିଛି ସ୍ୱତନ୍ତ୍ର ସତ୍ତା ଅଛି । ସେଗୁଡ଼ିକ ପୁଣି ଅତ୍ୟନ୍ତ ରହସ୍ୟମୟ ।

ପୋଲିସ୍ ଇନିସ୍ପେକ୍ଟର ସତ୍ୟବ୍ରତଙ୍କ ମୁହଁକୁ ଅବିଶ୍ୱାସୀ ଦୃଷ୍ଟିରେ ଚାହିଁ କହିଲେ: ଆପଣ ନିଶ୍ଚୟ ପରିହାସ କରୁଛନ୍ତି ମି: ମାହାପାତ୍ର । କାରଣ ଉଦୟ ମହଲରେ ତ ଆଙ୍ଗୁଠିରେ ଗଣିଦେଲା ପରି ମାତ୍ର କେଇଜଣ ଲୋକ । ସେଥିମଧ୍ୟରୁ ଦମୟନ୍ତୀ ଦେବୀଙ୍କୁ ପୂର୍ଣ୍ଣ ବାଦ୍ ଦିଅନ୍ତୁ, କାରଣ ସେ ପକ୍ଷାଘାତ ରୋଗୀ । ତାଙ୍କର ବିଛଣାରୁ ଉଠିବାର ଶକ୍ତି ନାହିଁ । ରତ୍ନମଞ୍ଜରୀ ଦେବୀଙ୍କର ତ ମୁଣ୍ଡ ଠିକ୍ ନାହିଁ, ତାଙ୍କୁ ମଧ୍ୟ ବାଦ୍ ଦେଇ ପାରନ୍ତି । ଆଉ ମଳିନା ତ ମଳିନା । ନିଜର ଅବସ୍ଥିତି ସମ୍ବନ୍ଧରେ ତା'ର କିଛି ଧାରଣ ରୁହେନାହିଁ । କେତେବେଳେ ହସୁଛି ତ ହସୁଛି, କେତେବେଳେ କାନ୍ଦୁଛି ତ କାନ୍ଦୁଛି । କିନ୍ତୁ ସୁସ୍ଥ ମଣିଷ ରହିଲେ ଆଉ ତିନିଜଣ। ଅଳକେଶ ପଟ୍ଟନାୟକ, ଉମାପତି ସାମନ୍ତ ଆଉ ରାମୁ । ଏଇମାନଙ୍କୁ କେନ୍ଦ୍ରକରି ଯଦି ସମସ୍ୟାଟା ବଢ଼ି ଉଠୁଥାଏ, ମୋ ମତରେ........

ବାହାରେ ଗୁଣୁ ଗୁଣୁ କଣ୍ଠସ୍ୱର ଶୁଣି ଇନିସ୍ପେକ୍ଟର ଚୁପ୍ ରହିଗଲେ ।

ରତ୍ନମଞ୍ଜରୀ ଦେବୀ ଦୁଆର ମୁହଁକୁ ଆସି ଘର ଭିତରକୁ ଭଲ ଭାବରେ ଚାହିଁଲେ । କାଛ, ଆଲମାରୀ, ଚେଆର, ଟେବୁଲ ତା'ପରେ ମଣିଷ । ସତ୍ୟବ୍ରତଙ୍କ ମୁହଁରେ ଆଖି

ପଡ଼ିବା ମାତ୍ରେ ଫିକ୍‌କିନା ହସି ଦେଇ ଲେଉଟି ଗଲେ । ସେଇଟା ତାଙ୍କର ନିତି ଦିନିଆ ଅଭ୍ୟାସ । ଉଦୟ ମହଲର ପ୍ରତିଟି ଘର ଦିନ ଭିତରେ ସେ ତିନି ଚାରିଥର କରି ତନଖି ଯାଆନ୍ତି ।

ସତ୍ୟବ୍ରତ କହିଲେ : ଆଉ ଡେରିକରି ଲାଭ ନାହିଁ ମି: ସାହାଣୀ । ପ୍ରାୟ ଦଶଟା ବାଜେ । ଆଉ ଘଣ୍ଟାକ ପରେ ପେଟ ଜ୍ୱାଳା ଆରମ୍ଭ ହୋଇଯିବ । ଆପଣ ଯଥାନ୍ତୁ ସମସ୍ତେ ଜାଣିଲାଭଳି କହିଦେଇ ଆସିବେ ସତ୍ୟବ୍ରତ ମହାପାତ୍ର ଆଜି ଲେଉଟି ଯାଉଛନ୍ତି । ଏ ଘର ସଂପୂର୍ଣ୍ଣ ପୋଲିସ ତତ୍ତ୍ୱାବଧାନରେ ରହିବ । ଆପଣ କାଲ, କଣା, ଛୋଟା ନିର୍ବିଶେଷରେ ସମସ୍ତଙ୍କ କାନରେ ଏ କଥାଟା ପହଞ୍ଚାଇଦେଇ ଆସିବେ ।

: ତା'ପରେ ?

: ଆମେ ଚାଲିଯିବା । ଦିନରେ ଏଠାରେ କୌଣସି ଘଟଣା ଘଟିବାର ନାହିଁ, ଘଟିବନାହିଁ ମଧ୍ୟ । ଏଠାରେ ସମସ୍ତେ ସମସ୍ତଙ୍କୁ ଲୁଚି, ନିଜର ଉଦ୍ଦେଶ୍ୟ ସାଧନ କରିବାକୁ ଚାହୁଁଛନ୍ତି : ତେଣୁ ସୂର୍ଯ୍ୟାଲୋକ କାହାରୀ ଉଦ୍ଦେଶ୍ୟ ସାଧନ ମୂଳରେ ଆଦୌ ଅନୁକୂଳ ହେବ ନାହିଁ ।

ମି. ସାହାଣୀ ଉଠିଲେ ।

ସତ୍ୟବ୍ରତ କହିଲେ : ମୁଁ ଆଗରେ ଚାଲି ଯାଉଛି। ମୋତେ ଆପଣ ଷ୍ଟେସନ ମାଷ୍ଟରଙ୍କ ଘରେ ଭେଟ କରିବେ ।

: ହଠାତ୍ ଷ୍ଟେସନ ମାଷ୍ଟର ଯେ !

: ଭଦ୍ରଲୋକ୍ ଆମକୁ ନିମନ୍ତ୍ରଣ କରିଥିଲେ ଯେ, ମନେ ନାହିଁ ?

ପୁଣି ଉଦୟ ମହଲରେ ରାତ୍ରିର ଗଭୀରତା ପକ୍ଷ ବିସ୍ତାର କଲା ।

ପ୍ରତି କକ୍ଷରୁ ଆଲୋକ ଲିଭିଗଲା । ରହସ୍ୟ ମହଲ ଆଜି ଯେପରି ଶାନ୍ତ, ନିଦ୍ରାମଗ୍ନ।

ସତ୍ୟବ୍ରତ ପ୍ରାୟ ଘଣ୍ଟାଏ ହେବ ଉଦୟ ମହଲର ପ୍ରମୋଦ ଗୃହରେ ଆତ୍ମଗୋପନ କରି ବସି ରହିଛନ୍ତି ।

ତାଙ୍କର ଧାରଣ ସବୁ ଦିନ ପରି ଆଜି ନିଶ୍ଚୟ କେହି ଏଠାକୁ ଆସିବ । ରଙ୍ଗିନ୍ ସୁରାର ରସ ଆସ୍ୱାଦନ କରିବା ପାଇଁ । କାରଣ ସେହି ଅସମାପ୍ତ ଡାଇରୀଟା ପଢ଼ି ତାଙ୍କର ଧାରଣା ଜନ୍ମିଥିଲା ଡାଇରୀର ଲେଖିକା ଏହି ଉଦୟମହଲରେ ରହୁଛନ୍ତି । ତାଙ୍କୁ ସୁରା ପାନରେ ଅଭ୍ୟସ୍ତ କରା ହୋଇଛି । ଆଉ ମଦନରାୟ ନିଜେ ତାହା କରାଇଛନ୍ତି ।

ସେହି ଡାଇରୀର ନାୟିକାକୁ ଆଜି ଏଠାକୁ ନିଶ୍ଚୟ ଆସିବାକୁ ପଡ଼ିବ । କାରଣ ବିନା ପାନୀୟରେ ସେ ସ୍ଥିର ରହି ପାରିବ ନାହିଁ ।

ଆଜି ସତ୍ୟବ୍ରତ ତାକୁ ଉଚିତ ଶିକ୍ଷା ଦେବେ ।

ପ୍ରତୀକ୍ଷା, ଖାଲି ପ୍ରତିକ୍ଷା ।

ରାତ୍ରି ଗଭୀରରୁ ଗଭୀର ହେଉଥିଲା ।

ମେଲ୍ ଟ୍ରେନ୍‌ଟାର ହୁଇସିଲ୍ ଶୁଣାଗଲା । ତା'ପରେ କାନ ଫଟା ଶବ୍ଦ ସତ୍ୟବ୍ରତ ଦୁଇ କାନରେ ହାତ ଚାପି ବସିଗଲେ ।

କିନ୍ତୁ ଠିକ୍ ପର ମୁହୂର୍ତ୍ତରେ, ମେଲ୍ ଟ୍ରେନଟାର ଶବ୍ଦ ମିଳେଇ ଯିବା ସଙ୍ଗେ ସଙ୍ଗେ ନାରୀ କଣ୍ଠର ଏକ ଆର୍ତ୍ତ ଚିତ୍କାର ରାତ୍ରିର ନିସ୍ତବ୍ଧତାକୁ ବିଦୀର୍ଣ୍ଣ କରି ଭାସି ଆସିଲା ।

ମନେହେଲା ଯେପରି ମଦନରାୟଙ୍କ ଶୟନ କକ୍ଷରୁ ସେହି ଚିତ୍କାରଟା ଭାସି ଆସୁଛି ।

ସତ୍ୟବ୍ରତ ଆଉ ସ୍ଥିର ହୋଇ ବସି ପାରିଲେ ନାହିଁ । ପ୍ରମୋଦ ଗୃହ ତ୍ୟାଗ କରି ମଦନ ରାୟଙ୍କ ଶୟନ କକ୍ଷଆଡ଼େ ଛୁଟି ଚାଲିଲେ ।

ମଦନରାୟଙ୍କ ଶୟନ କକ୍ଷଟା ଅନ୍ଧକାର । କେହି କୁଆଡ଼େ ନାହିଁ । ଶୟନକକ୍ଷକୁ ଲାଗି ପ୍ରାଇଭେଟ୍ ଚେମ୍ବରରେ ସାମାନ୍ୟ ଆଲୋକ ଦିଶୁଛି ।

ସତ୍ୟବ୍ରତ ସଙ୍ଗେ ସଙ୍ଗେ ଛୁଟିଗଲେ । ଗୋଟାଏ ଛୋଟ ଟର୍ଚ୍ଚ ଜଳନ୍ତା ଅବସ୍ଥାରେ ଚଟାଣ ଉପରେ ଗଡୁଛି । ସେଇଟାକୁ ଉଠାଇ ନେଲେ । ଗୋଟାଏ ଷ୍ଟିଲ୍ ଆଲମିରା ଖୋଲା ପଡ଼ିଥିବାର ତାଙ୍କ ଦୃଷ୍ଟିରେ ପଡ଼ିଲା । ଆଲୋକ ଟିକିଏ ନିମ୍ନଗାମୀ ହେବା ମାତ୍ରକେ ତାଙ୍କ ଦେହ ଶିହରୀ ଉଠିଲା ।

ରକ୍ତ ! ରକ୍ତର ତରଙ୍ଗ !

ମୁହଁମାଡ଼ି କିଏ ଜଣେ ଚଟାଣ ଉପରେ ପଡ଼ିଛି । ସତ୍ୟବ୍ରତ ନଇଁପଡ଼ି ଦେଖିଲେ । ଅଳକେଶ ଯେ ! ଶେଷରେ ଅଳକେଶ ଖୁଣହେଲା । କିନ୍ତୁ କିପରି ?

ଅଳକେଶ ପିଠିରେ ଛୁରା ଭୁସାଯାଇ ନାହିଁ, ବୁଲେଟ୍ ଭେଦିଛି ।

କିନ୍ତୁ ଗୁଳି ଚାଳନାର ଶବ୍ଦ ତ ସେ ଶୁଣି ପାରି ନାହାନ୍ତି ।

ମଦନ ରାୟଙ୍କ ହତ୍ୟା ସମ୍ବନ୍ଧରେ ତାଙ୍କ ଅନୁମାନ ସତ୍ୟ । ଆଜି ମଧ୍ୟ ମେଲ୍ ଟ୍ରେନ ବ୍ରିଜ୍ ଉପର ଦେଇ ପାସ୍ କଲାବେଳେ ଅଳକେଶ ଉପରକୁ ଗୁଳି ଚଳା ହୋଇଛି ।

ହତ୍ୟାକରୀ ହୁଏତ ବେଶି ଦୂର ଯାଇ ନଥିବ ।

କେଉଁ ଦିଗଟା ସେ ସମ୍ଭାଳିବେ ! ଏଣେ ଷ୍ଟିଲ ଆଲମାରୀ ଖୋଲା, ତେଣେ ହତ୍ୟାକାରୀକୁ ଅନୁସନ୍ଧାନ କରିବାକୁ ହେବ । ସେଇ ମୁହୂର୍ତ୍ତରେ ସେ ତଳକୁ ଛୁଟି ଆସିଲେ । ଅନ୍ତତଃ ମି. ସାହାଣୀଙ୍କୁ ଡାକିବାକୁ ହେବ ।

ବଗିଚାକୁ ଓହ୍ଲେଇ ଯାଇ ହାତର ରିଭଲଭରଟା ଆକାଶମୁଖୀ କରି, ଦୁଇ ରାଉଣ୍ଡ ଫାୟାର କଲେ । ଦରକାର ହେଲେ ଇନିସ୍ପେକ୍ଟରଙ୍କୁ ଏହିପରି ସଂକେତ ଦେବାର ଥିଲା ।

ସଙ୍ଗେ ସଙ୍ଗେ ହ୍ରେସାରବ ଶୁଣାଗଲା । ତା'ପରେ ଘୋଡ଼ାଟାପୁର ଶବ୍ଦ । ଆତତାୟୀ ବୋଧହୁଏ ପଳାଇ ଯାଉଛି । ମି. ସାହାଣୀ ଫାୟାରିଂ ସଂକେତ ଶୁଣି ପାରିଥିବେ । ତାଙ୍କ ଆସିବା ଯାଏ ଅପେକ୍ଷା କଲେ, ଏଣେ ହୁଏତ ହତ୍ୟାକରୀ ଖସି ପଳାଇବ ।

ସତ୍ୟବ୍ରତ ଛୁଟିଲେ ଉଦୟ ମହଲର ବାହାରକୁ । ଘୋଡ଼ାଟାପୁର ଶବ୍ଦ ସେତେବେଳେ ଯାଏ ତାଙ୍କ କର୍ଣ୍ଣକୁହରରୁ ଲିଭି ଯାଇ ନଥିଲା । ସେ ଧାଇଁଲେ, ତାଙ୍କ ପାଦରେ ଯେତେ ଶକ୍ତି ଥିଲା ସମସ୍ତ ପ୍ରୟୋଗ କରି ପବନ ବେଗରେ ସେ ଧାଇଁବାକୁ ଲାଗିଲେ । ଅବଶେଷରେ ତାଙ୍କର ଜୟ ହେଲା । ସେ ଯାଇ ଘୋଡ଼ାଗାଡ଼ିର ପଛପଟେ ଠିଆ ହୋଇଗଲେ । ଗମ୍ଭୀର କଣ୍ଠରେ କହିଲେ : ଅମିର ଆଲି, ଗାଡ଼ି ଅଟକାଅ ।

ଅମିର୍ ଆଲି ବୋଧହୁଏ ଲଗାମ ଭିଡ଼ିଲା ।

ସତ୍ୟବ୍ରତ ଦେଖିଲେ ସେହି ମୁହୂର୍ତ୍ତରେ କିଏ ଜଣେ ଘୋଡ଼ା ଗାଡ଼ିରୁ ଡେଇଁପଡ଼ି ପଳେଇବାକୁ ଚେଷ୍ଟା କରୁଛି । ସତ୍ୟବ୍ରତ ରିଭଲଭରଟା ବାଗେଇ ଧରି ସଙ୍ଗେ ସଙ୍ଗେ ଡେଇଁ ପଡ଼ିଲେ। ବଜ୍ର ଗମ୍ଭୀର କଣ୍ଠରେ କହିଲେ : ପଳେଇବାକୁ ଚେଷ୍ଟା କଲେ ମୁଁ ଗୁଳି ଚଳେଇବାକୁ ବାଧ ହେବି । ହାତ ଉପରକୁ ଟେକି ଯେଉଁଠି ଅଛ ସେଇଠି ଠିଆ ହୁଅ ।

ଲୋକଟି ବାଧ୍ୟହୋଇ ସତ୍ୟବ୍ରତଙ୍କ ଆଦେଶ ପାଳନ କଲା । ସତ୍ୟବ୍ରତ ପାଦେ ପାଦେ କରି ଲୋକଟି ପାଖକୁ ଆଗେଇ ଗଲେ । ସତ୍ୟବ୍ରତଙ୍କର ବାଁ ହାତରେ ଟର୍ଚ୍ଚ ଏବଂ ଡାହାଣ ହାତରେ ରିଭଲଭର ।

ଲୋକଟି ମୁହଁରେ ଟର୍ଚ୍ଚ ଫୋକସ୍ ପଡ଼ିବା ମାତ୍ରେ ସତ୍ୟବ୍ରତ ଅବାକ୍ ହୋଇଗଲେ । ସେ କିଛି ସମୟ ବିସ୍ମୟ ଦୃଷ୍ଟିରେ ଯୁବକଟି ଆଡ଼େ ଅନାଇ ରହି କହିଲେ : ତୁମରି ନାଁ ମନୋହର ?

ଯୁବକଟି ମୁଣ୍ଡ ହଲେଇ ସମ୍ମତି ଜଣାଇଲା ।

: ତୁମ ପାଖରେ କୌଣସି ଆଗ୍ନେୟାସ୍ତ୍ର ଅଛି ?

: ନା, ମନୋହରର କଣ୍ଠ ଗମ୍ଭୀର ଶୁଣାଗଲା ।

: ଅଳକେଶକୁ ହତ୍ୟା କରିବା ପରେ ଆଗ୍ନେୟାସ୍ତ୍ରଟି ତୁମେ କ'ଣ କଲ ?

: ଅଳକେଶକୁ ମୁଁ ହତ୍ୟା କରିନାହିଁ ।

: ତା'ହେଲେ ଉଦୟ ମହଲକୁ ଯାଇଥିଲ କାହିଁକି ?

: ମୁଁ ମଝିରେ ମଝିରେ ଯାଏ, ସେଇଟା ମୋର ପୁରୁଣା ଅଭ୍ୟାସ ।

: ଭଲ କରିଛ, ଏପରି ଅଭ୍ୟାସଟା ଛାଡ଼ିବ ନା ରହିଯିବ ?

: ଖୁଣ୍ ମୁଁ କରିନାହିଁ ।

ସେ କଥା ପୋଲିସ୍ ଆଗରେ କହିବା ବର୍ତ୍ତମାନ କିନ୍ତୁ ମୋ ସହିତ ଉଦୟ ମହଲକୁ ଫେରିବାକୁ ହେବ । ଆଉ ଡେରିକଲେ ଚଳିବ ନାହିଁ । ଶୀଘ୍ର ଯାଇ ପୁଣି ଘୋଡ଼ା ଗାଡ଼ିରେ ଉଠ ।

ମନୋହର ବାଧ୍ୟ ଶିଶୁଟି ପରି ଯାଇ ଘୋଡ଼ା ଗାଡ଼ିରେ ବସିଲା ।

ଅମିର ଆଲି ପୁଣି ଗାଡ଼ି ଲେଉଟାଇଲା ।

: ତୁମେ ମୃତ ମଦନରାୟଙ୍କୁ ନିଶ୍ଚୟ ଚିହ୍ନିଥିଲ ।

: ହଁ ।

: ସେ ତୁମର କ'ଣ ହୁଅନ୍ତି ?

: କିଛି ନୁହେଁ !

: ତୁମେ ତାଙ୍କୁ ହତ୍ୟା କରିଛ ?

: ତା'ର ଜବାବ୍ ପୋଲିସକୁ ଦେବି ।

: ଆଚ୍ଛା, ଖୁବ୍ ଦୁଃସାହସ ତ ! କିନ୍ତୁ ତୁମେ ଉଦୟ ମହଲକୁ କାହିଁକି ବାରମ୍ବାର ଆସ କହିବାକୁ ହେବ ।

: ଆପଣଙ୍କୁ ମୁଁ ସବୁ କଥାର ଉତ୍ତର ଦେବାକୁ ବାଧ୍ୟ ନୁହେଁ ।

: ତାହା ଅବଶ୍ୟ ସତ । କିନ୍ତୁ ତୁମେ ଯେ କ'ଣ ହୋଇପାର, ସେ କଥା ମୁଁ ତୁମର ମୁହଁ ଦେଖି ଚିହ୍ନି ପାରିଛି । ମି. ମଦନ ରାୟଙ୍କ ସହିତ ତୁମର ସମ୍ବନ୍ଧଟା ପଚାରୁଥିଲି ।

ମନୋହର କିଛି କହିଲା ନାହିଁ ।

ସତ୍ୟବ୍ରତ ମଧ୍ୟ ନୀରବ ରହିଲେ ।

ଖାଲି ଘୋଡ଼ାଟାପୁର ଶବ୍ଦ ରାତିର ଛାତି ଚିରି ଚିରି ଆଗୋଉଥିଲା । ତୁମେ ତେବେ ସତ୍ୟକଥା କହିବାକୁ ପ୍ରସ୍ତୁତ ନୁହଁ । ବେଶ୍ ଦେଖାଯିବ କେତେଦିନ ଯାଇ ତୁମେ ମୁହଁ ବୁଜି ରହି ପାର । ମନୋହର, ଶୁଣୁଛି ନା ନାହିଁ ? ସତ୍ୟବ୍ରତ ରିଭଲଭରର ମୁହଁଟା ମନୋହର, ବାହୁରେ ଠିକେଇ ପଚାରିଲେ ।

ମନୋହର ତଥାପି ମୁହଁ ଖୋଲିଲା ନାହିଁ ।

ଘୋଡ଼ାଗାଡ଼ି ଉଦୟମହଲ ଦୁଆରେ ଠିଆହେଲା ।

ଉଦୟ ମହଲରେ କଳରୋଳ ଆରମ୍ଭ ହୋଇ ଯାଇଥିଲା ।

ସତ୍ୟବ୍ରତ ମନୋହରକୁ ଗାଡ଼ିରୁ ଓହ୍ଲାଇ ଭିତରକୁ ନେଲେ । ପୋଲିସ୍ ଇନିସ୍ପେକ୍ଟର ମି. ସାହାଣୀ ତଳକୁ ଛୁଟି ଆସିଲେ ।

ସତ୍ୟବ୍ରତ ମନୋହରକୁ ଦେଖାଇ କହିଲେ : ପ୍ରଥମେ ଏହାକୁ ସର୍ଚ୍ଚକରି ନିଅନ୍ତୁ ।

ମି. ସାହାଣୀ ଯେପରି ହାତରେ ସ୍ୱର୍ଗ ପାଇଲେ । ତାଙ୍କ ତେଜିୟାନ୍ ଟର୍ଚ୍ଚଟା ମନୋହରର ମୁହଁକୁ ପକାଇ ସେ ମଧ୍ୟ ମୁହୂର୍ତ୍ତେ ସ୍ତବ୍ଧ ହୋଇ ଅନାଇ ରହିଲେ ।

: ସର୍ଚ୍ଚ କରନ୍ତୁ ମି: ସାହାଣୀ ଆଉ ଡେରିକଲେ ଚଳିବ ନାହିଁ ।

ମି. ସାହାଣୀ ସଙ୍ଗେ ସଙ୍ଗେ ସର୍ଚ୍ଚ ଆରମ୍ଭ କରିଦେଲେ ।

ମନୋହର ପକେଟରୁ ଗୋଟାଏ ବୃହତକାୟ ଖାମ୍ ବାହାରିଲା ।

ସତ୍ୟବ୍ରତ ସେଇଟା ହାତକୁ ନେଇ ଦେଖିଲେ ଗୋଟାଏ ଉଇଲ୍ ।

: ମନୋହରକୁ ଧରି ଉପରକୁ ଆସନ୍ତୁ ମି. ସାହାଣୀ । ଆଜି ବୋଧହୁଏ ଆମର ସାଫଲ୍ୟର ଦିନ । ଏଇ ଉଇଲ୍‌ଟା ବୋଧହୁଏ ମି. ମଦନରାୟଙ୍କ ଦାମୀ ପଦାର୍ଥ ଏବଂ ଏହାରି ପାଇଁ ହୁଏତ ଉଦୟ ମହଲରେ ଏହି ହତ୍ୟାର ବିଭୀଷିକା ।

ସତ୍ୟବ୍ରତ ଉପରକୁ ଉଠିଗଲେ ।

ମଦନ ରାୟଙ୍କ ଶୟନ କକ୍ଷରେ ପ୍ରାୟ ସମସ୍ତେ ରୁଣ୍ଡ ହୋଇଛନ୍ତି । ସମସ୍ତଙ୍କ ମୁହଁରେ ଆତଙ୍କ ଫୁଟି ଉଠିଛି । ପ୍ରାଇଭେଟ୍ ଚେମ୍ବର ଭିତରେ ଅଳକେଶ ତଳକୁ ମୁହଁମାଡ଼ି ପଡ଼ିଛି ।

ବିଚରା ହତଭାଗ୍ୟ ।

ହୁଏତ ମଦନ ରାୟଙ୍କର ଏହି ଷ୍ଟିଲ୍ ଆଲମିରା ଖୋଲିବାକୁ ଯାଇ ତାକୁ ମୃତ୍ୟୁ ବରଣ କରିବାକୁ ହୋଇଛି ।

କିନ୍ତୁ ସେ ଯେ ଏକ ନାରୀକଣ୍ଠର ଚିତ୍କାର ଶୁଣି ଉପରକୁ ଛୁଟି ଆସିଥିଲେ । କିଏ ସେହି ନାରୀ ! କାହିଁକି ବା ଚିତ୍କାର କରି ଉଠିଥିଲା କେଉଁଆଡ଼େ ବା ଅଦୃଶ୍ୟ ହୋଇଗଲା ?

ସତ୍ୟବ୍ରତ ଦେଖିଲେ, ଅଳକେଶ ପାଦ ପାଖରେ ଗୋଟିଏ ସଦ୍ୟ ରକ୍ତ ଗୋଲାପ ପଡ଼ି ରହିଛି । ସେଇଟାକୁ ସେ ଉଠାଇ ଆଣିଲେ । କାହାର ଏ ହୋଇପାରେ ? ଏଠାକୁ

ଆସିଲା ବା କିପରି ? ମଲିନା ବ୍ୟତୀତ ଅନ୍ୟକେହି ରକ୍ତ ଗୋଲାପ କବରୀରେ ତ ଲଗାନ୍ତି ନାହିଁ । ତେବେ କ'ଣ ମଲିନା ଏଠାକୁ ଆସିଥିଲା ? ସେ ଅଳକେଶର ମୃତ ଦେହ ଦେଖି ଚିତ୍କାର କରି ଉଠିଥିଲା, ନା ମନୋହରକୁ ଦେଖି ଭୟ ପାଇଥିଲା ?

ସତ୍ୟବ୍ରତ ମଦନ ରାୟଙ୍କ ଶୟନ କକ୍ଷରେ ଥିବା ରିଭଲଭିଂ ଚେଆରଟା ଉପରେ ବସିଲେ । ଗୋଟାଏ ପାଖରେ ଉମାପତି ସାମନ୍ତ ବିମର୍ଷ ମନରେ ବସି ରହିଛି । ରାମୁ କାନ୍ଥକୁ ଆଉଜି ଠିଆ ହୋଇଛି । ବୋଧହୁଏ ଗୋଟିପଣ ଥରୁଛି ।

ଇନିସ୍ପେକ୍ଟର ମନୋହରକୁ ଧରି ଗୃହରେ ପ୍ରବେଶ କଲେ ।

ରତ୍ନମଞ୍ଜରୀ ଦେବୀ ଗୁଣୁ ଗୁଣୁ ଗୀତଗାଇ ସମସ୍ତ କକ୍ଷଟା ଦୁଇଥର ବୁଲିଯାଇ ପୁଣି ବାହାରକୁ ବାହାରି ଗଲେ ।

ସତ୍ୟବ୍ରତ ମହାପାତ୍ର ନିବିଷ୍ଟ ଚିତ୍ତରେ ଉଇଲ୍‌ଟା ପାଠ କରୁଥିଲେ । ଘର ଭିତରେ ସଂପୂର୍ଣ୍ଣ ରୂପେ ନିସ୍ତବ୍ଧତା ବିରାଜମାନ କରୁଥିଲା । ସତ୍ୟବ୍ରତ ଉଇଲ୍‌ଟା ପଢ଼ିସାରି ଇନିସ୍ପେକ୍ଟରଙ୍କ ମୁହଁକୁ ଏବଂ ସଙ୍ଗେ ସଙ୍ଗେ ମନୋହର ମୁହଁକୁ ଚାହିଁଲେ ।

: ଜାଣିଲେ ମି. ସାହାଣୀ ! ଏହା ଏକ ଅଦ୍ଭୁତ ଧରଣର ଉଇଲ୍ ।

: କିପରି ?

: ସତ୍ୟଶେଖର ମହାପାତ୍ର, ଏ ଉଇଲ୍‌ରେ ତାଙ୍କର ସମସ୍ତ ଚଳନ୍ତି ଓ ଅଚଳନ୍ତି ସମ୍ପତ୍ତିର ମାର୍‌ଫତ୍‌ଦାର ନବଘନ ମଦନ ରାୟଙ୍କୁ କରି ଯାଇଛନ୍ତି । ସତ୍ୟଶେଖର ମହାପାତ୍ରଙ୍କର ଏକ ନାବାଳକ ପୁତ୍ର ଓ ନାବାଳିକା କନ୍ୟାସହ ପଙ୍ଗୁ ସ୍ତ୍ରୀଙ୍କୁ ମଧ୍ୟ ମଦନରାୟଙ୍କ ହେପାଜତରେ ଛାଡ଼ି ଯାଇଛନ୍ତି । ପିଲାମାନେ ସା ବାଳକ ହେଲେ ସତ୍ୟଶେଖର ମହାପାତ୍ରଙ୍କର ସମସ୍ତ ସମ୍ପତ୍ତି ସେମାନେ ଫେରି ପାଇବେ । ସତ୍ୟଶେଖର ମହାପାତ୍ରଙ୍କର ସମସ୍ତ ସମ୍ପତ୍ତି ତାଙ୍କ ପୁତ୍ର କନ୍ୟା ବ୍ୟତୀତ ଆଉ କାହାରି ଅଧିକାରରେ ରହିବ ନାହିଁ ।

: ତା'ପରେ ?

: ତା'ପରେ ଆଉ କ'ଣ ! ବର୍ତ୍ତମାନ ସ୍ପଷ୍ଟ ବୁଝା ଯାଉଛି ମଦନ ରାୟଙ୍କର କାରସାଦି । ସେ ହୁଏତ ସତ୍ୟଶେଖର ମହାପାତ୍ରଙ୍କର ସମସ୍ତ ସମ୍ପତ୍ତି ଭୋଗ କରିବା ପାଇଁ ଏକ ପରିକଳ୍ପନା କରିଥିଲେ ଏବଂ ସେହି ପରିପଳ୍ପନା ଅନୁସାରେ କାର୍ଯ୍ୟ କରି ଚାଲିଥିଲେ ।

: କିପରି ?

: ବିଚାରୀ ମଳିନାର ସେ ସର୍ବନାଶ କରିଛନ୍ତି ।

: ମଳିନା କିଏ ?

: ମୋର ମନେ ହୁଏ ସତ୍ୟଶେଖର ମହାପାତ୍ରଙ୍କର କନ୍ୟା । ତାକୁ ପାଖରେ ରଖି ମଦନ ରାୟ ଏପରି ଭାବରେ ଗଠନ କରି ଆଣିଛନ୍ତି ଯେ, ଜୀବନରେ କେବେ ଆଉ ସେ ସୁସ୍ଥ ମସ୍ତିଷ୍କରେ କୌଣସି କଥା ଚିନ୍ତାକରି ପାରିବ ନାହିଁ । ତେଣୁ ଉଇଲ୍‌ର ତ ଦୂରର

କଥା, ନିଜର ପିତାଙ୍କୁ ମଧ୍ଯ ସେ ମନେ ପକାଇ ପାରି ନ ଥାନ୍ତା ।

: ମୁଁ ସେ କଥା ଅନେକ ଦିନରୁ ଜାଣି ପାରିଥିଲି । ମନୋହର ଥିଲା ତାଙ୍କର ଏକମାତ୍ର ଆତଙ୍କ । ମନୋହର ବାବୁ । ଏଥର ତମର ପରିଚୟ ଆମ ପାଖରେ ସ୍ପଷ୍ଟ ହୋଇଗଲା । ତମେ ଯେ ମଳିନାର ଭାଇ, ସେ କଥା ମୁଁ ତମ ମୁହଁ ଦେଖିବା କ୍ଷଣି ବୁଝି ପାରିଥିଲି । ଏଥର କହିଲ, ତମେ କିପରି ମଦନ ରାୟଙ୍କ କବଳରୁ ଖସି ଯାଇଥିଲ?

ମନୋହର ଟିକିଏ ହସିବାକୁ ଚେଷ୍ଟା କରି ହସି ପାରିଲା ନାହିଁ । ବରଂ ତା' ଆଖିରୁ ଝର ଝର ହୋଇ ଲୁହ ଝରି ପଡ଼ିଲା ।

: ଏଇଟା କାନ୍ଦିବାର ବେଳ ନୁହେଁ ମନୋହର ବାବୁ ! ତମ ଜୀବନର ସଂକ୍ଷିପ୍ତ ଇତିହାସ ଟିକେ ଜାଣିବା ଆମର ଏକାନ୍ତ ପ୍ରୟୋଜନ ।

ମୋ ଜୀବନର କୌଣସ ଇତିହାସ ନାହିଁ । ଅତି ପିଲା ବେଳରୁ ବାପାଙ୍କୁ ହରେଇ ମୁଁ ମଦନ ରାୟଙ୍କ ତତ୍ତ୍ୱାବଧାନରେ ଥିଲି । ମୋର ଯେତେବେଳେ ସାମାନ୍ୟ ଜ୍ଞାନ ହେଲା, ମୁଁ ଜାଣିପାରିଲି ଯେ, ମୁଁ ଧୀରେ ଧୀରେ ଏକ ନଷ୍ଟଚରିତ୍ରର ମଣିଷ ହୋଇ ଗଢ଼ି ଉଠୁଛି ଏବଂ ମୋତେ ଗୁଣ୍ଡା, ବଦମାସ ଓ ମଦ୍ୟପ କରି ଗଢ଼ିବା ପାଇଁ ମଦନ ରାୟ ସମସ୍ତ ପ୍ରକାର ପ୍ରଚେଷ୍ଟା କରୁଛନ୍ତି ।

ମୋର ଆଉ ଉପାୟ ନ ଥିଲା ।

ମୁଁ ଧୀରେ ଧୀରେ ଏତେ ତଳକୁ ଓହ୍ଲେଇ ଯାଇଥିଲି ଯେ, ଆଉ ବାଟକୁ ଫେରି ଆସିବାର ସୁଯୋଗ ପାଇଲି ନାହିଁ ।

: କାହିଁକି ? ସତ୍ୟବ୍ରତ ପଚାରିଲେ ।

: ତା' ପରର ଘଟଣା ଅତି କରୁଣ । ମଦନ ରାୟ ମୋତେ ଗୋଟାଏ ମର୍ଡର କେସ୍‌ରେ ଜଡ଼ିତ କରି ପକାଇଲେ । ଏପରି ଭାବରେ ମୁଁ ସେଥିରେ ଜଡ଼ିତ ହୋଇ ପଡ଼ିଲି ଯେ, ବାଧ୍ୟ ହୋଇ ମୋତେ ଆତ୍ମଗୋପନ କରି ରହିବାକୁ ପଡ଼ିଲା । ଆଜକୁ ପ୍ରାୟ ସାତ ଆଠ ବର୍ଷ ହେବ ମୁଁ ପୋଲିସକୁ ଲୁଚି ଲୁଚି ଆତ୍ମଗୋପନ କରି ବୁଲୁଚି । ମୋର ସୂର୍ଯ୍ୟାଲୋକରେ ଠିଆ ହୋଇ, କାହାକୁ ପଦେ କଥା କହିବାର ଉପାୟ ନାହିଁ ।

: ହୁଁ, ସତ୍ୟବ୍ରତ ଗମ୍ଭୀର ହୋଇ ବସିଥିଲେ ।

: ତା'ହେଲେ ଗୋଟିଏ ଅପରାଧ ପରିବର୍ତ୍ତେ ତୁମେ ଆଜି ତିନୋଟି ଅପରାଧ କରି ବସିଚ ? ପୋଲିସ ଇନିସ୍ପେକ୍ଟର କହିଲେ ।

: ମାନେ ?

: ମି: ମଦନ ରାୟ ଓ ଅଳକେଶ ପଟ୍ଟନାୟକଙ୍କର ହତ୍ୟାକାରୀ ରୂପେ ମୁଁ ଆଜି ତୁମକୁ ଆରେଷ୍ଟ କରୁଛି ।

ମନୋହର ଏଥର ହୋ ହୋ ହୋଇ ହସି ଉଠିଲା । କହିଲା ମୁଁ ଜାଣେ, ଯେତେବେଳେ ଧରା ପଡ଼ିଲି, ସେତିକିବେଳୁ ବୁଝି ପାରିଛି ଆଉ ମୋର ନିସ୍ତାର ନାହିଁ । କିନ୍ତୁ ଆପଣ ଜାଣିରଖନ୍ତୁ, ଏ ହତ୍ୟାକାଣ୍ଡ ଦୁଇଟି ମୋ ଦ୍ୱାରା ହୋଇ ନାହିଁ ।

ତା'ହେଲେ ? ଏଥର ସତ୍ୟବ୍ରତ ପ୍ରଶ୍ନକଲେ ।

ମୁଁ ଜାଣିବି କିପରି ?

: ତମେ ତେବେ ଉଦୟ ମହଲକୁ ଆସୁଥିଲ କାହିଁକି ?

: ଏଇ ଉଇଲ୍‌ଟିକୁ ଉଦ୍ଧାର କରିବା ପାଇଁ ।

: ତୁମେ ଯେ ହତ୍ୟାକାରୀ ନୁହଁ, ସେ ସମ୍ବନ୍ଧରେ କୌଣସି ଶକ୍ତ ପ୍ରମାଣ ଦେଇ ପାରିବ ?

ମନୋହର ପୁଣି ହସି ଉଠିଲା । ହସି ହସି ସେ ନୀରବ ହୋଇଗଲା ।

: ଅଳକେଶ ଓ ମଦନ ରାୟଙ୍କ ହତ୍ୟା ଅପରାଧରେ ତୁମକୁ ମୁଁ ଆରେଷ୍ଟ କରୁଛି । ପୋଲିସ ଇନିସ୍ପେକ୍ଟର ଉଠି ଠିଆ ହୋଇ ମନୋହରର ଆଡ଼କୁ ଆଗେଇ ଗଲେ ।

: ସାବଧାନ, ମନୋହର ଦେହରେ ଆପଣ ହାତ ଦିଅନ୍ତୁ ନାହିଁ ।

ନୂତନ କଣ୍ଠସ୍ୱର ଶୁଣି ସତ୍ୟବ୍ରତ ଓ ପୋଲିସ୍ ଇନିସ୍ପେକ୍ଟର ଆଶ୍ଚର୍ଯ୍ୟ ହୋଇଗଲେ । କିନ୍ତୁ ଯେତେବେଳେ ଆସାମୀର ସ୍ୱରୂପ ଦେଖିଲେ, ଦୁଇଜଣଙ୍କ ଆଖି କପାଳକୁ ଉଠିଗଲା । ପକ୍ଷାଘାତ ରୋଗୀ ଦମୟନ୍ତୀ ଦେବୀ ହାତରେ ଗୋଟାଏ ରିଭଲଭର ଧରି ଧୀର ପଦକ୍ଷେପରେ ଗୃହ ମଧ୍ୟରେ ପ୍ରବେଶ କରୁଛନ୍ତି ।

: ମୁଁ ଜାଣେ, ଆପଣମାନେ ମୋର ଏହି ଚଳନ୍ତ, ଅବସ୍ଥା ଦେଖି ଆଶ୍ଚର୍ଯ୍ୟ ହୋଇଯିବେ । କିନ୍ତୁ ବିଶ୍ୱାସ କରନ୍ତୁ, ମଦନରାୟଙ୍କର ଏହି ରିଭଲଭର ସାହାଯ୍ୟରେ ମୁଁ ମଦନ ରାୟ ଓ ଅଳକେଶକୁ ହତ୍ୟା କରିଛି ।

: କିନ୍ତୁ ଆପଣ.......

ମୁଁ ସତ୍ୟଶେଖର ମହାପାତ୍ରଙ୍କର ସ୍ତ୍ରୀ । ପଙ୍ଗୁ, ପକ୍ଷାଘାତ ଗ୍ରସ୍ତ । ମୋତେ ଆରୋଗ୍ୟ କରିବାପାଇଁ ସ୍ୱାମୀ ମୋର ବହୁ ଚେଷ୍ଟା କରିଥିଲେ । ଅପର୍ଯ୍ୟାପ୍ତ ଟଙ୍କା ଖର୍ଚ୍ଚ କରିଥିଲେ । କିନ୍ତୁ କିଛି ଫଳ ହେଲାନାହିଁ । ଶେଷରେ ସେ ମୋତେ ଓ ମୋର ପୁତ୍ର-କନ୍ୟା ଦୁହିଁଙ୍କୁ ମଦନ ରାୟଙ୍କ ମାର୍ଫତରେ ରଖି ଆରପୁରକୁ ବାଟ କାଟିଥିଲେ । ମଦନ ରାୟ ଥିଲେ ତାଙ୍କର ପରମ ଆତ୍ମୀୟ । ତାଙ୍କର ଧାରଣା ଥିଲା ସେ ଆମର ଅବହେଳା କରିବେ ନାହିଁ । ପୁତ୍ର-କନ୍ୟାଙ୍କୁ ମଣିଷ କରିବେ ।

କିନ୍ତୁ ମଦନରାୟ ଆମର ବିଶାଳ ସମ୍ପତ୍ତିର ଅଧିକାର କରିବା ପାଇଁ ତାଙ୍କ ପାଟିରୁ ଲାଳ ଗଡ଼ିଲା । ଆମର ସମସ୍ତ ସମ୍ପତ୍ତିର ଏକମାତ୍ର ଉତ୍ତରାଧିକାରୀ ପାଇଁ ସେ ଲାଗିପଡ଼ିଲେ । ପୁତ୍ରକନ୍ୟାଙ୍କୁ ମୋର ଯେପରିଭାବରେ ମଣିଷ କରି ତୋଳିଲେ ଆପଣ ବୋଧହୁଏ ସେ କଥା ଜାଣି ପାରିଛନ୍ତି ।

ମୁଁ କେବଳ ଖଟ ଉପରେ ଶୋଇ ଶୋଇ ଆମର ସର୍ବନାଶର କଥା ଚିନ୍ତା କରୁଥାଏ ।

ମୋର ଆଉ ଉପାୟ କ'ଣ ଅଛି ? ପଙ୍ଗୁ ମୁଁ, ମୁହଁ ଖୋଲି କଥା କହିବାର ବି ଶକ୍ତି ନଥାଏ । ପୁତ୍ର କନ୍ୟାଙ୍କ ଉପରେ ସମସ୍ତ ଅତ୍ୟାଚାର ମୁଁ କେବଳ ନୀରବରେ ସହ୍ୟ

କରିଯାଏ ।

ମୁଁ ଯେ ମନୋହର ଆଉ ମଳିନାର ମା, ସେ କଥା ମନୋହର ଛଡ଼ା ମଳିନା ଆଜିଯାଏ ଜାଣି ପାରି ନାହିଁ ।

ହଠାତ୍ ଦିନେ ରାତିରେ ଖଟ ଉପରୁ ମୁଁ ତଳକୁ ଖସି ପଡ଼ିଲି । ମୋ ଅଜାଣତରେ ମୁଁ ପୁଣି ଖଟ ଉପରକୁ ଉଠିବାକୁ ଚେଷ୍ଟାକରି ଜାଣି ପାରିଲି ଯେ ମୋର ହାତଗୋଡ଼ ଚଳୁଛି। ମୁଁ ପଙ୍ଗୁ ନୁହେଁ। ସେଦିନ ମୋର ଆଉ ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ। ମୁଁ ବୁଝି ପାରିଲି ନାହିଁ, ମୁଁ ଆରୋଗ୍ୟ ହେଲି କିପରି ? ଏଇଟା କ'ଣ ଭଗବାନଙ୍କର ଆଶୀର୍ବାଦ ନା ପୂର୍ବରୁ ହୋଇଥିବା ଚିକିତ୍ସାର ଫଳ । ଯା'ହେଉ ମୁଁ ଠିକ୍ କଲି ଯେ, ମୋର ଆରୋଗ୍ୟ ସଂବାଦ କାହାରିକୁ ଜଣାଇବି ନାହିଁ। ପଙ୍ଗୁପରି ଶୋଇରହି, ମଦନରାୟଙ୍କଠାରୁ ସ୍ୱାମୀଙ୍କର ସମସ୍ତ ସମ୍ପତ୍ତି ଉଦ୍ଧାର କରିବାକୁ ଚେଷ୍ଟା କରିବି ଏବଂ ପିଲା ଦୁଇଟିଙ୍କୁ ଉଦ୍ଧାର କରିବି ।

ତା'ପରେ ମନୋହରକୁ ଖୋଜି ବାହାର କଲି । ମଳିନା କିନ୍ତୁ ଆୟତ୍ତର ବାହାରକୁ ଚାଲିଯାଇଥିଲା । ଦମୟନ୍ତୀଦେବୀ ନୀରବ ହେଲେ ।

: ଆପଣ ତା'ହେଲେ ମଦନ ରାୟଙ୍କୁ ହତ୍ୟା କଲେ କାହିଁକି ?

: ସେ ମୋର ସ୍ୱାମୀଙ୍କର ପ୍ରଦତ୍ତ ଉଇଲ୍‌ଟି ବାହାରକୁ ପଠାଇ ଦେବାକୁ ଚେଷ୍ଟା କରୁଥିଲେ ।

: ହୁଁ, ଆଉ ଅଳକେଶକୁ ?

: ସେ ଉଇଲ୍ ସହ ମଳିନାକୁ ନେଇ ଚାଲିଯିବାକୁ ବସିଥିଲା ।

: କିନ୍ତୁ ମଳିନା ଗଲା କୁଆଡ଼େ ? ହଠାତ୍ ସତ୍ୟବ୍ରତଙ୍କ ମନେ ପଡ଼ିଲା । ମଳିନା କ'ଣ ଉଦୟ ମହଲ ଛାଡ଼ି ଚାଲିଗଲା ନା କ'ଣ ?

ସଙ୍ଗେ ସଙ୍ଗେ ସତ୍ୟବ୍ରତ ଉଠି ଠିଆହେଲେ । ଏବଂ ଇନିସ୍ପେକ୍ଟରଙ୍କୁ କହିଲେ : ମୁଁ ଟିକିଏ ଆସୁଛି । ଆପଣ ଦମୟନ୍ତୀଙ୍କ ମୁହଁରୁ ସବୁ କଥା ଶୁଣୁଥାଆନ୍ତୁ ।

ସତ୍ୟବ୍ରତ ସିଧା ଓହ୍ଲାଇ ଗଲେ ପ୍ରମୋଦ ଗୃହକୁ ।

ଅନ୍ଧାର ।

ହାତର ଟର୍ଚ୍ଚଟା ତାଙ୍କର ଜଳି ଉଠିଲା । ଅନୁମାନ ସତ୍ୟ । ମଳିନା ପ୍ରମୋଦ ଗୃହରେ ଅଜ୍ଞାନ ହୋଇ ଗଡ଼ୁଛି । ମଳିନାର ହାତ ଦୁଇଟା ଯେପରି ଖୋଜୁଛି, ପାନ-ପାତ୍ରକୁ । ସେ ଆହୁରି ପିଇବ, ତୃଷା ଆଜି ତା'ର ମେଣ୍ଟୁନାହିଁ : ମେଣ୍ଟିବ ନାହିଁ ।

ସତ୍ୟବ୍ରତ ଡାକିଲେ : ମଳିନା ଦେବୀ ! ମଳିନା ଦେବୀ !!

ମଳିନା ବହୁ କଷ୍ଟରେ ଆଖି ଖୋଲି ସତ୍ୟବ୍ରତଙ୍କ ଆଡ଼କୁ ଚାହିଁଲା, ହାତ ବଢ଼େଇ ଇସାରାରେ କହିଲା: ଗୋଟାଏ ବୋତଲ ମୋ ହାତକୁ ଦେଇ ପାରିବେ ?

ବାହାରୁ ଗୁଣୁ ଗୁଣୁ କଣ୍ଠ ସଙ୍ଗୀତ ଭାସି ଉଠିଲା ।

ରତ୍ନମଞ୍ଜରୀ ଦେବୀ ଆସି ପ୍ରମୋଦଗୃହ ଦୁଆରେ ଠିଆହୋଇଗଲେ । ଭିତରକୁ

ଚାହିଁଲେ । କଣ୍ଠ-ସଙ୍ଗୀତ କ୍ଷଣକପାଇଁ ବନ୍ଦ ହୋଇଗଲା ।

ରତ୍ନମଞ୍ଜରୀ ଦେବୀ ! ସତ୍ୟବ୍ରତ ଡାକିଲେ । ସେ ସତ୍ୟବ୍ରତଙ୍କ ମୁହଁକୁ ଚାହିଁ ହସିଦେଲେ । ପୁଣି ଗୁଣୁ ଗୁଣୁ କଣ୍ଠ-ସଙ୍ଗୀତ ଫୁଟି ଉଠିଲା ।

ରତ୍ନମଞ୍ଜରୀ ଦେବୀ ବାଟ ଭାଙ୍ଗି ଚାଲିଗଲେ ।



ଗୌରୀଶଙ୍କର ଦାସ

# ସୁନେଲି ପ୍ରଜାପତି



ଅରଜନ ସିଂହ ସରାଇ ଖାନାରୁ ପାନ-ଭୋଜନ ଶେଷ କରି ଟ୍ରକ୍ ପାଖକୁ ଫେରି ଆସୁଥିଲା । ଏହା ଭିତରେ ଆକାଶର ରଙ୍ଗ ବଦଳିଛି । ଝିପି ଝିପି ବର୍ଷା ଝରୁଚି । ଅନ୍ଧକାର । ଅରଜନ ସିଂହ ଆକଶକୁ ଚାହିଁଲା, ଅବସ୍ଥା ଭଲ ନୁହେଁ । ତଥାପି ଏହି ଦୁର୍ଯୋଗକୁ ମୁଣ୍ଡରେ ମୁଣ୍ଡେଇ ଟ୍ରକ ଧରି ଆଗେଇ ଯିବାକୁ ହେବ । ଦୁଇ ଦିନ ଦୁଇ ରାତି ଅତିବାହିତ ହୋଇଛି, ଆହୁରି ଗୋଟିଏ ଦିନ ଗୋଟିଏ ରାତି ପରେ ସେ ଯାଇ ପହଞ୍ଚିବ ତା'ର ନିର୍ଦ୍ଦିଷ୍ଟ ସ୍ଥାନରେ । ରାତିଟା ଏଇ ସରାଇ ଖାନାରେ କଟାଇ ଗଲେ ହୁଅନ୍ତା, କିନ୍ତୁ ଉପାୟ ନାହିଁ । ବୋଝେଇ ଟ୍ରକଟାକୁ ଯେପରି ହେଉ ନିର୍ଦ୍ଦିଷ୍ଟ ସମୟରେ ନେଇ ପହଞ୍ଚେଇବାକୁ ହେବ ଯଥା ସ୍ଥାନରେ ।

ଅରଜନ ସିଂହ ଆଗେଇଲା । ଟ୍ରକଟା ବଡ଼ ରାସ୍ତାରେ ଅଛି । ଏହାଠାରୁ ବହୁ ଦୁର୍ଯୋଗ ପୂର୍ଣ୍ଣ ରାତିରେ ସେ ଟ୍ରକ ଚଳେଇ ଯାଇଛି । ଆଜି କିନ୍ତୁ ତାକୁ ପାହାଡ଼ିଆ ରାସ୍ତାରେ ଆଗେଇବାକୁ ହେବ। ଚଢ଼ାଇ, ଉତରାଇ । ତା'ର ସାଥୀ ହେଲପର୍‌ଟାକୁ ଜରା ସେ ପାଖରେ ଥିଲେ ହୁଏତ ଗଳ୍ପ କରି କରି ଆଗେଇ ପାରି ଥାଆନ୍ତା । ଯାହା ନାହିଁ, ତାହାପାଇଁ ଅରଜନ ସିଂହ କେବେ ଅନୁତାପ କରେ ନାହିଁ ।

ଟ୍ରକ ପାଖରେ ପହଞ୍ଚିଲା । ଡ୍ରାଇଭର୍ କେବିନ୍‌ର ଦରଜା ଖୋଲି ଭିତରେ ପଶିଲା । ସଂଗେ ସଂଗେ କି-ବୋର୍ଡ୍‌ରେ ଚାବି ଲଗେଇ ଷ୍ଟାର୍ଟ ଦେବାକ୍ଷଣି ଡ୍ୟାସ୍‌ବୋର୍ଡ୍‌ର କ୍ଷୀଣ ଆଲୋକରେ ଦେଖିଲା, ବାଁ ପାଖ ସିଟ୍‌ରେ ବିସିଚି ଗୋଟିଏ ତରୁଣୀ ।

: କିଏ ତମେ ? କୋଉଠିକି ଯିବ ?

ତରୁଣୀଟି ଡ୍ୟାସ୍‌ବୋର୍ଡ୍ ଉପରେ ମୁଣ୍ଡ ରଖି ଯେପରି ଆରାମରେ ଶୋଇ ଯାଇଥିଲା । କିଛି ଉତ୍ତର ଦେଲା ନାହିଁ ।

ଅରଜନ ସିଂହ ବଡ଼ ପାଟି କରି କହିଲା : ଶୁଣୁଚି ? ତମେ କିଏ ? କୋଉଠିକି

ଯିବ ?

ତରୁଣୀଟି ମୁଣ୍ଡ ଉଠେଇ ଚାହିଁଲା ଅରଜନ ସିଂହ ଆଡ଼କୁ । କହିଲା : ମୋ ନାଁ ଲିସା । ମୁଁ ତମ ସାଂଗରେ ଯିବି ।

: ମୋ ସାଂଗରେ ? ମୋ ସାଂଗରେ କୁଆଡ଼େ ଯିବ ?

: ଦେଖି ପାରୁନା ବାହାରର କାଳ ରାତ୍ରିକୁ ? ବର୍ଷା ହେଉଛି, ଝଡ଼ ଉଠେଇଲାଣି । ମୁଁ ଏକା ଏକା ଯାଇ ପାରିବି ନାହିଁ । ଲିସା ପୁଣି ଡ୍ୟାସ୍‌ବୋର୍ଡରେ ମୁଣ୍ଡ ଲଦିଦେଲା ।

ଅରଜନ ସିଂହ ଏଥର ଡ୍ରାଇଭର୍ କେବିନ୍‌ର ଲାଇଟ୍‌ଟି ଜଳେଇଲା । ଦେଖିଲା ଲିସା ପିନ୍ଧିଛି ପୁରୁଷଙ୍କର ଗୋଟାଏ ଟ୍ରେଞ୍ଚ କୋଟ୍ । ମୁଣ୍ଡରେ ଗୋଛାଏ ସୁନେଲିକେଶ । ଡାହାଣ ହାତର ମଣିବନ୍ଧରେ ଗୋଟାଏ ଗଭୀର କ୍ଷତ ଚିହ୍ନ ।

ସେ ଆଉ ଲିସାକୁ କିଛି ପଚାରିଲା ନାହିଁ । କେବିନ୍‌ର ଲାଇଟ୍ ବନ୍ଦ କରି ଗିଅର ବଦଳେଇ ଏକ୍‌ସିଲେଟରରେ ଚାପ ଦେଲା । କିପରି ଗୋଟାଏ ଉତ୍କଟ ଗର୍ଜନ କରି ଟ୍ରକ୍ ଆଗେଇ ଚାଲିଲା ଆଗକୁ ଆଗକୁ ।

ଅରଜନ ସିଂହ ମନରେ ହୁଏତ ଦ୍ୱନ୍ଦ୍ୱ ସୃଷ୍ଟି ହୋଇ ଯାଇଥିଲା । କିଏ ଏହି ଲିସା ? ହଠାତ୍ ଏତେ ରାତିରେ ସେ ବା କାହିଁକି ଆସି ଉଠିଲା ତା' ଗାଡ଼ିରେ । ହୁଏତ ପୋଲିସ୍ ଛୁଟିଥିବ ତା' ପଛେ ପଛେ । ଅଥବା...

ହଠାତ୍ ତା' ଭାବନାକୁ ସ୍ତବ୍‌ଧ କରି ଦୂରରୁ କେଉଁଠି ମୃଦୁ ଘଣ୍ଟାଧ୍ୱନି ଭାସିଆସି କାନରେ ବାଜିଲା । ଗାଡ଼ିଟା ଯେତେ ଆଗେଇ ଯାଉଥିଲା, ଘଣ୍ଟାଧ୍ୱନି ଆହୁରି ଯେପରି ସ୍ପଷ୍ଟ ହୋଇ ଉଠୁଥିଲା । ସେ ମନକୁ ମନ କହି ପକାଇଲା : ଏଇଟା ପୁଣି କି ଶବ୍ଦ ! ମନେ ହେଉଛି କେଉଁଠି ଯେପରି ଘଣ୍ଟା ବାଜୁଛି...

: ହଁ ସେଇଟା ପାଗଳା ଗାରଦର ଘଣ୍ଟା । ଲିସା ମୁଣ୍ଡ ଟେକି କହିଲା, କୌଣସି ପାଗଳ ହୁଏତ ପାଗଳ ଗାରଦରୁ ଖସି ପଳେଇଛି ।

ଅରଜନ ସିଂହ କାନରେ ଘଣ୍ଟାଧ୍ୱନି ଯେପରି ଉତ୍କଟ ହୋଇ ଶୁଣା ଯାଉଥିଲା । ଜୀବନରେ ବହୁତ ଥର ସେ ଏଇ ରାସ୍ତାରେ ଏହି ପାଗଳ ଗାରଦର ପାଖ ଦେଇ ଆହୁରି ଗଭୀର ରାତିରେ ଯା'ଆସ କରିଛି । କିନ୍ତୁ କେବେ ତ ତା' କାନରେ ଏପରି ଉତ୍କଟ ଘଣ୍ଟାଧ୍ୱନି ପ୍ରବେଶ କରିନାହିଁ ! ଷ୍ଟିଅରିଂଟା ଶକ୍ତ ହାତରେ ଧରି ଅରଜନ ସିଂହ କହିଲା : ଅର୍ଥାତ ତୁମେ କହିବାକୁ ଚାହଁ କୌଣସି ପାଗଳ ସେଠାରୁ ପଳାଇ ଯାଇଛି ? ଅନ୍ଧକାର ଆଡ଼େ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁଥିଲା ସେ। ପ୍ରତି ମୁହୂର୍ତ୍ତରେ ସେ ଆଶଙ୍କା କରୁଥିଲା, ହୁଏତ ରାସ୍ତା କଡ଼ର ଘନଜଙ୍ଗଲର ଡାଳ-ପତ୍ର ଆଡ଼େଇ କୌଣସି ଉଦ୍‌ଭ୍ରାନ୍ତ ହଠାତ୍ ଆସି ତା' ଟ୍ରକ ସାମ୍‌ନାରେ ଠିଆ ହୋଇ ପଡ଼ିବ ।

ଲିସା କହିଲା : ମୁଁ ବାଜି ମାରି କହିପାରେ, ଏପରି ପରିସ୍ଥିତିରେ ତମେ ମୋତେ ସଂଗରେ ପାଇ ନିଶ୍ଚୟ ଖୁସି ହୋଇଛ ।

: ଖୁସି ? ହଁ ଖୁସି ମୁଁ ହୋଇଥାନ୍ତି ଯଦି ତମ ସହିତ ଆଗରୁ ପରିଚୟ ଥାଆନ୍ତା । ସେ ଯା'ହେଉ, ବର୍ତ୍ତମାନ କହିଲ, ତମେ କିଏ ? କୁଆଡ଼େ ଯିବ...

ଲିସା ହସିଲା । ଗମ୍ଭୀର କଣ୍ଠରେ କହିଲା : ମୋର ପରିଚୟ ପଚାରୁଛ ? ମୁଁ କେହି ନୁହେଁ, କୁଆଡ଼କୁ ଯିବି ନାହିଁ ।

: ତା' ହେଲେ ମୋ ଗାଡ଼ି ତ ଯିବ...

: ହଁ ସେଇ ପର୍ଯ୍ୟନ୍ତ ଗଲେ ଚଳିବ ।

ଅରଜନ ସିଂହ ଆଉ କ'ଣ କହିବାକୁ ଯାଉଥିଲା, କିନ୍ତୁ ହଠାତ୍ ଝଡ଼ର ବେଗ ବଢ଼ି ଯିବାରୁ ଷ୍ଟିଅରିଂ ଶକ୍ତ ହାତରେ ଧରି ମୋଡ଼ ବାଙ୍କିଲା । ଆଉ କିଛିବାଟ ଆଗେଇ ଯିବା ପରେ ଅରଜନ ସିଂହ କିନ୍ତୁ ସ୍ଥିର ଭାବରେ ଗାଡ଼ି ଚଳେଇ ପାରିଲା ନାହିଁ । ଗତ ତିନି ରାତି ପ୍ରାୟ ଅନିଦ୍ରା ହୋଇ ଗାଡ଼ି ଚଳେଇଛି । ଆଜି କିନ୍ତୁ ତନ୍ଦ୍ରାକୁ ସେ ଘଉଡ଼େଇ ଦେଇ ପାରୁ ନାହିଁ । ରହି ରହି ଆଖି ବୁଜି ହୋଇ ଯାଉଛି । ଆରେ ଆରେ, ହଠାତ୍ ସେ ଯେ... ଖୁବ୍ ଜୋର୍‌ରେ ବ୍ରେକ୍ ଚାପି ଧରି ଡାହାଣ ଆଡ଼କୁ ଷ୍ଟିଅରିଂ ମୋଡ଼ି ବହୁ କଷ୍ଟରେ ପତନମୁଖୀ ଟ୍ରକ୍‌ଟାକୁ ପକ୍କା ରାସ୍ତା ଉପରକୁ ଉଠେଇଲା । ଚକ ଆଉ ସୂତାଏ ଖସି ଯାଇଥିଲେ ହୁଏତ ଟ୍ରକକୁ ଆଉ ବଞ୍ଚେଇ ହୋଇ ନଥାନ୍ତା । କିନ୍ତୁ ଉପରର କାଠପେଟି ଗୁଡ଼ାକ ଧକ୍କା ଲାଗି କିପରି ବିକଟ ଚିତ୍କାର କରି ଉଠିଲେ । ହୁଏତ ଉପରର ତେର୍‌ପାଲଟା ଛିଡ଼ିଗଲା । କିନ୍ତୁ ବର୍ତ୍ତମାନ ସେ ସବୁ ଦେଖିବାର ବେଳ ନାହିଁ । ଭାଗ୍ୟ ଭଲ ଯେ ଏ ଯାତ୍ରାରୁ ସେମାନେ ବଞ୍ଚିଗଲେ । ଗାଡ଼ି ପୁଣି ପକ୍କା ରାସ୍ତାରେ ଧୀରେ ଧୀରେ ଆଗେଇଲା ।

: ମୁଁ ଦୁଃଖିତ। ଟିକିଏ ତନ୍ଦ୍ରା ଲାଗି ଆସିଥିଲା । ଯାହା ଫଳରେ...

: ହୁଏତ ଆମର ମୃତ୍ୟୁ ହୋଇ ପାରି ଥାଆନ୍ତାତ ? ଲିସା ଶାନ୍ତ ସ୍ୱରରେ ପଚାରିଲା ।

: କ'ଣ କହିଲ, ତମକୁ ଡର ଲାଗିନି ?

: ତମେ କ'ଣ ମରିବାକୁ ଭୟ କର ?

ଛି, ଛି, ଟ୍ରକ୍‌ରେ ବସି ଏପରି ଅଲକ୍ଷଣା କଥା କହନ୍ତି ନାହିଁ । ଜାଣ ରୋଜ ରୋଜ ଏଇ ରାସ୍ତାରେ କେତେଟ୍ରକ ଦୁର୍ଘଟଣା ହେଉଛି, କେତେ ଲୋକ ମରୁଛନ୍ତି, ଖବର ରଖିଛ କିଛି ?

ଧୀରେ ଟ୍ରକ୍‌ର ଗତି ଶ୍ଳଥ ହୋଇ ଆସିଲା । ଏହାପରେ ଆରମ୍ଭ ହେବ ପାହାଡ଼ୀ ରାସ୍ତା ।

: ଏହିଠାରୁ ଉପରକୁ ଉଠିବାକୁ ପଡ଼ିବ ଆମକୁ । ନଜର କରି ଦେଖ, ରାସ୍ତାଟା କେମିତିକା। ଅରଜନ ସିଂହ ସଜାଡ଼ି ହୋଇ ବସିଲା । ମନେହେଲା ସେ ଯେପରି ଷ୍ଟିଅରିଂଟାକୁ ଶକ୍ତ ହାତରେ ଚାପି ଧରିଲା ।

ଖୁବ୍ ସାବଧାନରେ ଗାଡ଼ି ଉପରକୁ ଉଠୁଥିଲା । ରାସ୍ତାର ଗୋଟାଏ ପାଖରେ ଗ୍ରାନାଇଟ୍ ପଥରର ସୁଉଚ୍ଚ ପ୍ରାଚୀର, ଅନ୍ୟ ପାଖରେ ବିରାଟ ଗହ୍ୱରା ଟ୍ରକ ଉଠୁଥିଲା । କିନ୍ତୁ ପବନର ଗତି ବଢୁଥିଲା ଧୀରେ ଧୀରେ। ହଠାତ୍ କିପରି ଏକ ବିକଟ ଶବ୍ଦ କରି ପଥର ଖଣ୍ଡେ ଖସି ପଡ଼ିଲା ପାହାଡ଼ ଉପରୁ, ମାତ୍ର କେଇଫୁଟ ବ୍ୟବଧାନରେ ପଥର ଖଣ୍ଡିକ ଦ୍ରୁତ ଗଡ଼ିଯାଇ ପଡ଼ିଲା ଗହ୍ୱର ଭିତରେ। ଅରଜନ ସିଂହର ହୃତ୍‌କମ୍ପ ହେଲା । କହିଲା : ଜାଣ ଆଉ ଥରେ ଆମେ ମୃତ୍ୟୁ ମୁଖରୁ ବଞ୍ଚିଗଲେ। ଗତବର୍ଷ ଏହିପରି ଗୋଟାଏ ପଥର ଖସି ଆସି ମୋ ଯାତ୍ରା ବନ୍ଦ କରି ଦେଇଥିଲା ।

ଲିସା କିଛି କହିଲା ନାହିଁ । ଚାହିଁଲାନି ବି ତା' ଆଡ଼କୁ । ଅଜବ ଟୋକୀତ ! ତେବେ ମାଲଟା ଭଲ । ଟିକିଏ ଭଲ କରି ଦେଖିବାର ଫୁର୍‌ସତ୍ ମିଳୁଛି କାହିଁ । ଆଚ୍ଛା

ଦେଖାଯିବ, ବେଳ ତ ଅଛି ବହୁତ। ଅରଜନ ସିଂହ ଭାବନା ଶେଷ କରି ହାଇ ମାରି ପୁଣି ସଜାଡ଼ି ହୋଇ ବସିଲା । ଟ୍ରକ୍‌ର ଗତି ଟିକିଏ ଦ୍ରୁତ କରିବାକୁ ଚେଷ୍ଟା କଲା ।

କିନ୍ତୁ ଠିକ୍ ସେତିକିବେଳେ ଝଡ଼ଟା ଯେପରି ବନ୍ୟ ପଶୁର ହିଂସ୍ରତା ନେଇ ଡେଇଁ ପଡ଼ିଲା ଟ୍ରକ ଉପରକୁ । ମନେ ହେଲା ଇଞ୍ଜିନିଟା ଯେପରି ପିଟି ହୋଇଗଲା ଗୋଟାଏ ଶକ୍ତ ଦିଆଲରେ । ପ୍ରଚଣ୍ଡ ବେଗରେ ଥରି ଉଠିଲା ଟ୍ରକଟା । ସଙ୍ଗେ ସଙ୍ଗେ ଟ୍ରକ ଉପରୁ ଖସି ପଡ଼ିଲା କାଠ ପେଟି ଗୁଡ଼ାକ । ଟ୍ରକ୍‌ଟା ଖସି ଯାଉଥିଲା ଗହ୍ୱରର ଧାର ଆଡ଼କୁ । ଅରଜନ ସିଂହ ଭାବୁଥିଲା ଟ୍ରକ୍‌ରୁ ଡେଇଁ ପଡ଼ି ଆତ୍ମରକ୍ଷା କରିବ, କିନ୍ତୁ ଏତେ ଟଙ୍କାର ଜିନିଷ ପତ୍ରର ମାୟା ସେ ଛାଡ଼ି ପାରିଲାନି ବ୍ରେକ୍ ଖୁବ୍ ଯୋର୍‌ରେ ଚାପି ଧରି ବହୁ କଷ୍ଟରେ ଟ୍ରକ୍‌ଟାକୁ ବ୍ୟାକ୍ କରେଇ ରଖିଲା ନେଇ ଗ୍ରାନାଇଟ୍ ଦିଆଲ ଧାରରେ । ସେ ଯେପରି ବିଶ୍ୱାସ କରି ପାରୁ ନଥିଲା ସେମାନେ ବଞ୍ଚି ଯାଇଛନ୍ତି ।

ପଗଡ଼ିଟା ମୁଣ୍ଡରୁ ଖୋଲି ପକାଇ, କପାଳର ସ୍ୱେଦବିନ୍ଦୁ ପୋଛୁ ପୋଛୁ ଅରଜନ ସିଂହ କହିଲା : ଓଃ, ଏପରି ଦୁର୍ଘଟଣାର ସମ୍ମୁଖୀନ ଜୀବନରେ କେବେ ହୋଇ ନ ଥିଲି ।

: ଏଇକ୍ଷିଣା କ'ଣ କରିବା ? ଶାନ୍ତ କଣ୍ଠରେ ଲିସା ପଚାରିଲା ।

ଅରଜନ ସିଂହ କିଛି ଉତ୍ତର ଦେଲା ନାହିଁ । କ୍ଷୟ କ୍ଷତିର ପରିମାଣ ଦେଖିବା ପାଇଁ ସେ ଟ୍ରକରୁ ତଳକୁ ଓହ୍ଲେଇ ପଡ଼ିଲା । ହେଡ୍‌ଲାଇଟ୍‌ରେ ଦେଖିଲା ସମଗ୍ର ରାସ୍ତାଟାରେ ପେଟିଗୁଡ଼ା ଖସି ଜମା ହୋଇଛି । କେତେଟା ପେଟି ଭାଙ୍ଗି ଚୁର୍‌ମାର ହୋଇ ଯାଇଛି । କିନ୍ତୁ ଏଇ ଝଡ଼ ବର୍ଷା ଭିତରେ ଆଉ କରିବାର କ'ଣ ଅଛି ? ରାତି ପାହି ସକାଳ ହେଲେ ଯାହା ହେବାର ହେବ। ଅରଜନ ସିଂହ ଗୋଟାଏ ଦୀର୍ଘ ନିଶ୍ୱାସ ପକାଇ ଉପରକୁ ଉଠିଗଲା ।

ନା, ବର୍ତ୍ତମାନ ଆଉ କଥାବାର୍ତ୍ତା କିଛି ନୁହେଁ । ଅବଶ୍ୟ ଶରୀରଟାର ଟିକିଏ ବିଶ୍ରାମ ଆବଶ୍ୟକ । କିନ୍ତୁ ଲିସା ଯେ ଡ୍ୟାସ୍‌ବୋର୍ଡ଼ ଉପରେ ମୁଣ୍ଡରଖି ଶୋଇ ଯାଇଛି : ଝିଅଟା କ'ଣ ସତେ ! ଟିକିଏ ହେଲେ ଡର ଭୟ ତା'ର ନାହିଁ ।

ଅରଜନ ସିଂହ ଆରପାଖ ଦୁଆର ଖୋଲି ଡ୍ରାଇଭର କେବିନରେ ଉଠିଲା । ଅଶେଷ କ୍ଳାନ୍ତ। ସିଟ୍‌ରେ ବସିବା ପରେ ଯେପରି ତନ୍ଦ୍ରା ଘାରି ଆସିଲା । ଅରଜନ ସିଂହର ଆଖି ଦୁଇଟା ବୁଜି ହୋଇ ପଡ଼ିଲା । ସେ ଚେଷ୍ଟା କରି ବି ଆଖି ଫିଟାଇ ଚାହିଁ ପାରିଲା ନାହିଁ ଲିସା ଆଡ଼େ ।

ତା'ପରେ ନିଘୋଡ଼ ନିଦ ।

କିନ୍ତୁ କେତେବେଳେ କେଜାଣି ହଠାତ୍ ଅରଜନ ସିଂହର ନିଦଟା ଭାଙ୍ଗିଗଲା । ତା'ର ମନେ ହେଲା ଯେପରି ଇଞ୍ଜିନ୍‌ଟା ଗର୍ଜନ କରି ଗାଡ଼ିଟା ଅସମ୍ଭବ ଭାବରେ ହଲି ଓ ଦୋହଲି ଆଗେଇ ଚାଲିଛି । ସ୍ୱପ୍ନ ଦେଖୁନାହିଁ ତ ଆଉ। ଆଖି ମେଲି ଚାହିଁଲା ଅରଜନ ସିଂହ। ନା ସ୍ୱପ୍ନ ନୁହେଁ ବାସ୍ତବ । ପାହାଡ଼ର ଉଚ୍ଚ ରାସ୍ତା ଉପରେ ଗାଡ଼ିଟା ଉନ୍ମାଦଙ୍କ ପରି ଛୁଟି ଚାଲିଛି । ହେଡ୍‌ଲାଇଟର ତୀକ୍ଷ୍ଣ ଆଲୋକ ଅଗ୍ନିବାଣ ପରି ଛୁଟି ଯାଉଛି ଅନ୍ଧକାର ଆଡ଼କୁ । ଆତଙ୍କ ବିହ୍ୱଳ ଅରଜନ ସିଂହ ଅସ୍ଥିର ଭାବରେ ହାତ ବଢ଼େଇଲା ହ୍ୟାଣ୍ଡବ୍ରେକ୍ ଆଡ଼କୁ, ଶକ୍ତ ଭାବରେ ଚାପି ଧରିବାକୁ ଚାହିଁଲା ବ୍ରେକ୍ ପ୍ୟାଡ଼େଲ । କିନ୍ତୁ ହାତ ବା ଗୋଡ଼ରେ କିଛି ଠିକିଲା ନାହିଁ । ସେଇ ମୁହୂର୍ତ୍ତରେ ବିସ୍ମୟବିହ୍ୱଳ ହୋଇ ସେ

ବୁଝି ପାରିଲା ଗାଡ଼ି ସେ ଆଦୌ ଚଳଉ ନାହିଁ। ଗାଡ଼ି ଚଳଉଛି ଲିସା।

ଘଟଣାଟା ଭଲକରି ମୁଣ୍ଡରେ ପଶିବା ଆଗରୁ ଅରଜନ ସିଂହ ପଛକୁ ଚାହିଁ ଦେଖିଲା ଜଣେ ପୋଲିସ ମଟର ସାଇକେଲରେ ସାଇରେନ୍ ବଜାଇ ଛୁଟିଛି। ଅରଜନ ସିଂହ ଚିତ୍କାର କରି କହିଲା : ଏ କି ସର୍ବନାଶ କରୁଛ ତମେ। ମାଲପତ୍ର ଗୁଡ଼ାକ ମୋର ପଡ଼ିଲା ତେଣେ, ପଛରେ ପୋଲିସ୍। ଗାଡ଼ି ଅଟକାଅ। କ'ଣ ଶୁଭୁଚି ? ଅରଜନ ସିଂହ ଆହୁରି ଜୋର୍‌ରେ ଚିତ୍କାର କରି ଉଠିଲା।

କିନ୍ତୁ ଲିସା ନିର୍ବିକାର। ବରଂ ଗାଡ଼ିର ଗତିବେଗ ବଢ଼ି ଉଠୁଥିଲା ପୂର୍ବଠାରୁ। ଗାଡ଼ି ହଲି ଦୋହଲି ଚାଲୁଥିବାରୁ ବୋଝେଇ ପେଟିଗୁଡ଼ାକ ନଚାନଚି ଆରମ୍ଭ କରି ଅଦ୍ଭୁତ ଶବ୍ଦ ସବୁ ସୃଷ୍ଟି କରୁଥିଲେ।

: ତମେ କ'ଣ ପାଗଳ ହୋଇଗଲ ଲିସା ? ଅରଜନ ସିଂହ କଣ୍ଠ ଫଟା ଚିତ୍କାର କିର ଉଠିଲା। କିନ୍ତୁ ଲିସା ଦେହରେ ହାତ ଦେବାକୁ ସେ ଭରସା କରି ପାରୁ ନ ଥିଲା। ଗାଡ଼ିଟା ଯଦି ଓଲଟି ପଡ଼େ !!

ତଥାପି ଲିସା ନୀରବ। ସେ ଯେପରି ଗୋଟାଏ ପାଷାଣ ମୂର୍ତ୍ତି। ଗାଡ଼ିଟା କିନ୍ତୁ ଝଡ଼ ବର୍ଷା ଭିତର ଦେଇ ଛୁଟି ଚାଲିଛି ତୀର ବେଗରେ। ଅରଜନ ସିଂହ ବାହାରକୁ ମୁଣ୍ଡ ବାହାର କରି ପଛକୁ ଚାହିଁଲା। ଗୋଟାଏ ତୀବ୍ର ହେଡ୍ ଲାଇଟ୍ ତାଙ୍କୁ ଦ୍ରୁତଗତିରେ ଅନୁସରଣ କରୁଛି। ନିଶ୍ଚୟ ପୋଲିସ୍ ତାଙ୍କ ପିଛା ଧରିଛି।

ଅରଜନ ସିଂହ ତୀବ୍ର କଣ୍ଠରେ କହିଲା : ଆମ ପଛରେ ପୋଲିସ୍ ଛୁଟିଛି। ତାକୁ ଫାଙ୍କିଦେଇ ତମେ ପଳାଇ ଯାଇ ପାରିବ ନାହିଁ। ଶୁଣି ପାରୁଛ ?

: ମୁଁ ଠିକ୍ ପାରିବି।

ବୋଧହୁଏ ଗାଡ଼ିର ଗତି ଆହୁରି ଟିକିଏ ବଢ଼ିଗଲା।

: ବୋକାଙ୍କ ପରି କଥା କୁହ ନାହିଁ। ଅରଜନ ସିଂହ ଲିସା ପାଖକୁ ଟିକିଏ ଲାଗି ବସିଲା। ତମେ ଏତେ ବେଫିକ୍ର ଗାଡ଼ି ଚଳେଇଲେ ନିଶ୍ଚୟ କୋଉଠି ନା କୋଉଠି ଧକ୍କା ଲଗେଇବ। ଟ୍ରକ ଧରି ଦଉଡ଼ି ପୋଲିସ ହାତରୁ ଖସି ଯାଇ ହୁଏନା। ଗାଡ଼ି ବନ୍ଦ କର।

ଠିକ୍ ସାମନାରେ ରାସ୍ତାଟା ବେଶ୍ ଚଉଡ଼ା ହୋଇ ଆସିଲା। ହଠାତ୍ ଗୋଟାଏ ହେଡ୍ ଲାଇଟ୍ ପଛରୁ ଆଗକୁ ମାଡ଼ି ଆସିଲା। ବର୍ଷାତି ପିନ୍ଧା ଗୋଟାଏ ଲୋକ ମଟର ସାଇକେଲରେ ବସିଥିଲା। ମଟର ସାଇକେଲ୍ ପଛରେ ଲାଲ ଅକ୍ଷରରେ ଲେଖା ଥିଲା ପୋଲିସ୍। ଅରଜନ ସିଂହ ଦେଖିଲା ପୋଲିସ୍‌ଟା ତା' ମଟର ସାଇକେଲର ଗତି କ୍ରମଶଃକମେଇ ଆଣୁଛି। ଟ୍ରକ୍‌ଟା କିନ୍ତୁ ଦ୍ରୁତ ଗତିରେ ମାଡ଼ି ଯାଉଛି ମଟର ସାଇକେଲ ଆଡ଼କୁ।

କ୍ୟାବିନ୍‌ରୁ ମୁଣ୍ଡ ବାହାର କରି ଅରଜନ ସିଂହ ଚିତ୍କାର କରି ଉଠିଲା : ପାଖେଇ ଯାଅ, ପାଖେଇ ଯାଅ। ନ ହେଲେ ଟ୍ରକ୍ ମାଡ଼ି ଚାଲିଯିବ ତମ ଉପରେ।

କିନ୍ତୁ ଝଡ଼-ବର୍ଷାରେ କିଏ କାହା କଥା ଶୁଣି ପାରୁଛି।

ହାୟ ହାୟ, ଟ୍ରକଠାରୁ ମଟର ସାଇକେଲର ଦୂରତ୍ୱ କ୍ରମଶଃ ଯେ କମି ଆସୁଛି। ଆଉ କେଇ ମିନିଟ୍‌ରେ ଯେ ସର୍ବନାଶ ଘଟିଯିବ। ନିଶ୍ଚୟ ଟ୍ରକଟା ମାଡ଼ି ଚାଲିଯିବ ମଟର

ସାଇକେଲ ଉପରେ ।

ଅରଜନ ସିଂହ ନିରୁପାୟ ହୋଇ ପାଗଳଙ୍କ ପରି ଇଂଜିନ ବନ୍ଦ କରିବା ଚାବି ଆଡ଼କୁ ହାତ ବଢ଼ାଇଲା । କିନ୍ତୁ ତା' ପୂର୍ବରୁ ଲିସା ତା' ବଢ଼ନ୍ତ ତୀକ୍ଷ୍ଣ ନଖ ସାହାଯ୍ୟରେ ଅରଜନ ସିଂ ଗାଲରେ ଗଭୀର କ୍ଷତ ଚିହ୍ନ ଆଙ୍କିଦେଲା । ଝର ଝର ହୋଇ ରକ୍ତ ଝରି ପଡ଼ିଲା ଅରଜନ ସିଂହ ମୁହଁରୁ । ଭୟରେ ସେ ଘୁଞ୍ଚିଗଲା ଲିସା ପାଖରୁ । ସେଇ ମୁହୂର୍ତ୍ତରେ ଟ୍ରକ୍‌ଟା ଧକ୍‌କା ମାରିଲା ଯାଇ ମଟର ସାଇକେଲକୁ । ମଟର ସାଇକେଲଟା ଡିଆସିଲି ଖୋଳ ଝଡ଼ରେ ଉଡ଼ିଲା ପରି ପାହାଡ଼ ଉପରୁ ଖସି ପଡ଼ିଲା ଗହ୍ୱର ଭିତରକୁ ।

: ହାରାମ୍‌ଜାଦୀ ଶାଳୀ ଟୋକୀ, ତୁ ମାରି ପକେଇଲୁ ଲୋକଟାକୁ । ଅରଜନ ସିଂହ କଣ୍ଠ ଫଟେଇ ଚିତ୍କାର କରି ଉଠିଲା । ତା'ପରେ ହଠାତ୍ ସେ ଡେଇଁପଡ଼ି ଟାଣି ଆଣିଲା ଇଂଜିନ୍‌ର ଚାବିଟାକୁ । କୌଣସି ପ୍ରକାର ଲିସାକୁ ଠେଲିଦେଇ ଷ୍ଟିଅରିଂଟାକୁ ଚାପି ଧରିଲା ନିଜ ହାତରେ । ଇଚ୍ଛା ଥିଲା ଗାଡ଼ିଟା ଡାହାଣ ଆଡ଼କୁ ଘୁରେଇ ନେଇ ପାହାଡ଼ ସଂଗରେ ଧକ୍‌କା ଲଗେଇ ଅଟକେଇ ଦେବି । କିନ୍ତୁ ଷ୍ଟିଅରିଂର ଦଖଲ ପାଇଁ ରୀତିମତ ଗୋଟାଏ ଖଣ୍ଡଯୁଦ୍ଧ ହୋଇଗଲା ଗାଡ଼ି ଭିତରେ । ଲିସା ତା' ଆଙ୍ଗୁଳିର ତୀକ୍ଷ୍ଣ ନଖ ସାହାଯ୍ୟରେ ଆକ୍ରମଣ କଲା ଅରଜନ ସିଂହକୁ । ଅରଜନ ସିଂହର ମନେ ହେଲା ଯେପରି କୌଣସି ଶାଣିତ ଅସ୍ତ୍ର ତା' ଗଳାର ମାଂସପେଶୀ ମଧ୍ୟରେ ପ୍ରବେଶ କରି ତାକୁ ଶ୍ୱାସରୁଦ୍ଧ କରି ପକାଉଛି । ସେ ଆପ୍ରାଣ ଚେଷ୍ଟା କଲା ଲିସାକୁ ଦୂରକୁ ଫିଙ୍ଗିଦେବା ପାଇଁ ।

ଠିକ୍ ସେତିକିବେଳେ ଟ୍ରକ୍‌ଟା ସିଧା ରାସ୍ତା ଛାଡ଼ି ବାଙ୍କିଗଲା ବାଁ ଆଡ଼କୁ । ବାଁ ଆଡ଼ର ପ୍ରଚଣ୍ଡ ଗହ୍ୱର ଭୟଙ୍କର ରୂପ ପରଗ୍ରହ କରି ଦେଖା ଯାଉଥିଲା ହେଡ୍ ଲାଇଟ୍ ସାମ୍‌ନାରେ । ଚକାଗୁଡ଼ାକ ପଥରରେ ଘଷି ହେବାର ଶବ୍ଦ କାନରେ ବାଜୁଥିଲା । ତା'ପରେ ଏକ ପ୍ରଚଣ୍ଡ କାନଫଟା ଶବ୍ଦ ପରେ ସବୁ ସ୍ଥିର ହୋଇଗଲା ।

•

ପାଗଳ ଗାରଦର ସତର୍କ ଘଣ୍ଟି ବନ୍ଦ ହେବା ପୂର୍ବରୁ ପୋଲିସ୍ ଇନିସ୍ପେକ୍ଟର ରଣଧୀର ଶର୍ମା ଆସି ପହଞ୍ଚି ଯାଇଥିଲେ । ଜଣେ ନର୍ସ ତାଙ୍କୁ ଡାକ୍ତର ଚଉଧୁରୀଙ୍କ ଘରକୁ ନେଇଗଲା ।

: ଆସନ୍ତୁ ଆସନ୍ତୁ ଇନିସ୍ପେକ୍ଟର ଶର୍ମା । ଆପଣ ଏତେ ଶୀଘ୍ର ଆସି ଏଠାରେ ପହଞ୍ଚି ଯିବେ ମୁଁ ଆଶା କରି ନ ଥିଲି । ଡାକ୍ତର ଚଉଧୁରୀ କହିଲେ ।

: ନ ଆସି ଉପାୟ କ'ଣ କୁହନ୍ତୁ । ଘଟଣା କ'ଣ କହିଲେ ? ଶୁଣିଲି ଆପଣଙ୍କର ଜଣେ ରୋଗୀ କୁଆଡ଼େ ପାଗଳ ଗାରଦରୁ ଖସି ପଳେଇଛି ?

: ହଁ ଆପଣ ଠିକ୍ ଶୁଣିଛନ୍ତି । ଏହା ଭିତରେ ଅବଶ୍ୟ ଆମ ଲୋକମାନେ ତାକୁ ଖୋଜିବା ପାଇଁ ବାହାରି ଯାଇଛନ୍ତି । କିନ୍ତୁ ସେତିକିରେ ମୁଁ ସନ୍ତୁଷ୍ଟ ନୁହେଁ । ମୁଁ ଚାହେଁ ଯେପରି ହେଉ ତାକୁ ଧରି ଆଣିବାକୁ ହେବ ! କାରଣ ଝିଅଟା ସାଂଘାତିକ ।

: ଓଃ ବୁଝିଲି ।

: ନା, ମିଷ୍ଟର ଶର୍ମା । ଆପଣ ଯେତେ ସହଜ ମନେ କରୁଛନ୍ତି ଘଟଣାଟା କିନ୍ତୁ ସେତେ ସହଜ ନୁହେଁ। ଏଇଟା ଯଦି ଖବର କାଗଜରେ କୌଣସି ପ୍ରକାର ପ୍ରକାଶିତ ହୁଏ,

ତେବେ ଗୋଟାଏ ଅଘଟଣ ଘଟିଯିବ ।

ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ ଡାକ୍ତର ଚଉଧୁରୀ । ମୁଁ ଆପଣଙ୍କୁ ଯଥାସମ୍ଭବ ସାହାଯ୍ୟ କରିବି । ଆପଣ ମୋ ଉପରେ ଭରସା କରି ପାରନ୍ତି ।

: ଭରସା ନ କରି ମୋର ଅନ୍ୟ ଉପାୟ ନାହିଁ ମିଷ୍ଟର ଶର୍ମା । ମୋର ଅସୁବିଧାଟା କେଉଁଠି ଜାଣନ୍ତି ? ରୋଗିଣୀଟି ହେଉଛି ଅମୃତଲାଲ ବରିହାଙ୍କର ଉତ୍ତରାଧିକାରିଣୀ । ଏଥର ମୋ ପରିସ୍ଥିତିଟା ବୁଝି ପାରୁଛନ୍ତି ?

: ଅମୃତଲାଲ ବରିହା ? ଇନିସ୍ପେକ୍ଟରଙ୍କ ଭ୍ରୂକୁଞ୍ଚିତ ହେଲା । ସେ ମୁହୂର୍ତ୍ତେ ନୀରବ ରହି ଆଖିରେ ବିସ୍ମୟ ଫୁଟାଇ ପଚାରିଲେ, ଅଚ୍ଛା, ଇଏ କ'ଣ ସେଇ କୋଟିପତି ଅମୃତଲାଲ ବରିହା ଯାହାଙ୍କ ଝିଅ ପ୍ରାୟ କୋଡ଼ିଏ ବର୍ଷ ପୂର୍ବରୁ ହରଣଚାଳ ହୋଇ ଯାଇଥିଲା ?

: ହଁ ହଁ । ଆପଣ ଠିକ୍ ଧରି ପାରିଛନ୍ତି । କେହି କିଛି ଜାଣିବା ପୂର୍ବରୁ ମୋତେ କିନ୍ତୁ ରୋଗିଣୀକୁ ଧରି ଆଣିବାକୁ ହେବ । ଗତବର୍ଷ ଅମୃତଲାଲ ବରିହାଙ୍କ ମୃତ୍ୟୁ ସଂପର୍କରେ ଖବର କାଗଜରେ କିପରି ଲେଖା ଲେଖି ହୋଇ ଦେଶସାରା ଚହଳ ପଡ଼ି ଯାଇଥିଲା, ସେକଥା ଆପଣଙ୍କର ନିଶ୍ଚୟ ମନେ ଥିବ । ବର୍ତ୍ତମାନ ଯଦି ଏଇ ଘଟଣାଟା ବାହାରେ ପ୍ରକାଶିତ ହୋଇଯାଏ, ତେବେ ପୁଣି ପ୍ରଳୟଙ୍କରୀ କାଣ୍ଡ ଆରମ୍ଭ ହୋଇଯିବ । ହୁଏତ ଏହି ପ୍ରଳୟ ତାଣ୍ଡବରେ ମୋତେ ହିଁ ମୃତ୍ୟୁ ବରଣ କରିବାକୁ ପଡ଼ିବ ।

: ଆପଣ ଏତେ ବ୍ୟସ୍ତ ହେଉଛନ୍ତି କାହିଁକି ଡାକ୍ତର ଚଉଧୁରୀ, ଆମେ ରୋଗିଣୀକୁ ଖୋଜି ବାହାର କରି ଆଣିବୁ । କିନ୍ତୁ ଗୋଟାଏ କଥା ମୁଁ ବୁଝି ପାରୁ ନାହିଁ ଅମୃତଲାଲ ବରିହା ତାଙ୍କର ସମସ୍ତ ସମ୍ପତ୍ତି ଗୋଟାଏ ପାଗଳୀ ନାମରେ ଉଇଲ୍ କରିଗଲେ କାହିଁକି ?

: ଝିଅଟା କିନ୍ତୁ ତାଙ୍କର ଅବୈଧ ଦୌହିତ୍ରୀ, ଏ ସଂବାଦଟା କେହି ଜାଣନ୍ତି ନାହିଁ । ମୁଁ କେବଳ ଆପଣଙ୍କୁ କହିଲି ।

: କ'ଣ କହିଲେ ? ଝିଅଟା ତା'ହେଲେ...

: ହଁ । ଗୋଟାଏ ମାନସିକ ବିକାରଗ୍ରସ୍ତ ଖୁଣୀ । ଅମୃତଲାଲ ବରିହାଙ୍କର ଏକମାତ୍ର କନ୍ୟାକୁ ହରଣଚାଳ କରି କିଏ ନେଇ ଯାଇଥିଲା ବର୍ଷେ ଦେଢ଼ବର୍ଷ ପରେ ଯେତେବେଳେ ଅମୃତଲାଲ ଝିଅର ସନ୍ଧାନ ପାଇଲେ ଏବଂ ତାକୁ ଉଦ୍ଧାର କରିବାକୁ ଗଲେ, ସେତେବେଳେ ଝିଅଟା କୋଠା ଉପରୁ ଡେଇଁପଡ଼ି ଆତ୍ମହତ୍ୟା କଲା । ତା' ପୂର୍ବରୁ ସେ ଏକ କନ୍ୟା ସନ୍ତାନର ଜନନୀ ହୋଇ ସାରିଥିଲା । ଯେଉଁ କନ୍ୟା ସନ୍ତାନର ସେଇ ଥିଲା ଜନକ । ସେ ସମ୍ବାଦ ଆପଣ ସେତେବେଳେ ଖବର କାଗଜରୁ ନିଶ୍ଚୟ ପଢ଼ିଥିବେ । ଅବଶ୍ୟ ଆଜି ଆଉ ଆପଣଙ୍କର ସେ କଥା ମନେ ନ ଥିବ ।

ତା'ହେଲେ... ଇନିସ୍ପେକ୍ଟର ଶର୍ମା ଟିକିଏ ଚିନ୍ତା କରି କହିଲେ, ତା'ହେଲେ ସେଦିନର ସେଇ ଶିଶୁ କନ୍ୟାଟି ଆଜି ଆପଣଙ୍କର ପେସେଣ୍ଟ୍ ?

ମୁଣ୍ଡ ହଲେଇ ସମ୍ମତି ଜଣେଇଲେ ଡାକ୍ତର । କହିଲେ,

: ସେଦିନର ସେଇ ଶିଶୁ, ମାନେ ଲିସା, ଦେଖିବାକୁ ଠିକ୍ ତା' ମା' ପରି । ସେଦିନ ଅମୃତଲାଲ ଲିସାକୁ ଉଦ୍ଧାର କରିଥିଲେ ସତ, କିନ୍ତୁ ନିଜ ପାଖରେ ସେ ତାକୁ ରଖିପାରି ନ ଥିଲେ । ପାଳକ ପିତା-ମାତାଙ୍କ ପାଖରେ ଲିସା ବଡ଼ ହୋଇଥିଲା । ଅମୃତଲାଲ

ଯଦିଓ କେବେ ତା' ପାଖକୁ ଯାଇ ନ ଥିଲେ କିନ୍ତୁ ତା'ର କିଛି ଅଭାବ ସେ ରଖି ନ ଥିଲେ। ବିକାରଗ୍ରସ୍ତ ପିତାର ସନ୍ତାନ ଯୋଗୁଁ ଲିସା ଉପରେ ଖୁବ୍ ସତର୍କ ଦୃଷ୍ଟି ରଖା ହୋଇଥିଲା । କିନ୍ତୁ ଆଠବର୍ଷ ଯାଏ ଲିସା ଥିଲା ସ୍ୱାଭାବିକ । ଦଶବର୍ଷ ପରଠାରୁ ଦେଖାଗଲା, ତା'ର ସ୍ୱଭାବ କିପରି ଖାପଛଡ଼ା ହେବାକୁ ଲାଗିଲା । ଅନ୍ୟ ପିଲାମାନଙ୍କ ସହିତ ସାଙ୍ଗ ହେଲା ନାହିଁ । ସବୁବେଳେ କିପରି ମନମରା ହୋଇ ରହୁଥିଲା । ତା'ଛଡ଼ା ତା'ର ପ୍ରକୃତିଟା ବି ଧୀରେ ରୁକ୍ଷ ହୋଇ ଉଠିଲା ।

ଲିସାର ଏହିସବୁ ଲକ୍ଷଣ ଅମୃତଲାଲଙ୍କୁ ଜଣାଇ ଦିଆ ଯିବାରୁ, ସେ ଜଣେ ମାନସିକ ରୋଗର ନର୍ସକୁ ତା' ଉପରେ ଲକ୍ଷ୍ୟ ରଖିବା ପାଇଁ ନିଯୁକ୍ତ କଲେ । କିନ୍ତୁ ଲିସାର କୌଣସି ଉନ୍ନତି ହେଲା ନାହିଁ । ବରଂ ଦିନକୁ ଦିନ ସେ ଭୟଙ୍କର ହୋଇ ଉଠିଲା । ଉନ୍ମାଦିନୀର ବିଭିନ୍ନ ଲକ୍ଷଣ ତା'ଠାରେ ପରିସ୍ଫୁଟିତ ହେବାକୁ ଲାଗିଲା । ନାନା ସ୍ଥାନରେ ତା'ର ଚିକିତ୍ସା କରିବାପରେ ଗତ ତିନିବର୍ଷ ହେବ ଅମୃତଲାଲ ଲିସାକୁ ଆଣି ମୋ ଜିମାରେ ଏଇଠି ଛାଡ଼ି ଯାଇଛନ୍ତି ।

: ଆଚ୍ଛା, ଝିଅଟା କ'ଣ ଖୁବ୍ ଦୁର୍ଦ୍ଦାନ୍ତ ?

: ଠିକ୍ କହି ହେବନି । ତାକୁ ସବୁବେଳେ ନଜର ଉପରେ ରଖିବାକୁ ହୁଏ । ତା'ଛଡ଼ା ସେ ଯେଉଁସବୁ ବିଶେଷଜ୍ଞମାନଙ୍କ ଅଧୀନରେ ଚିକିତ୍ସିତ ହେଉଛି, ସେମାନେ ସବୁବେଳେ ତା'ଠାରୁ ଦୂରେଇ ରୁହନ୍ତି । ମୁଁ ଅବଶ୍ୟ କହୁନାହିଁ ଯେ ଝିଅଟା ସବୁବେଳେ ଭୀଷଣ ମୂର୍ତ୍ତି ଧାରଣ କରିଥାଏ । ବରଂ ସେ ଅଧିକାଂଶ ସମୟରେ ଖୁବ୍ ଶାନ୍ତ ଓ ସରଳ। ମାସ ପରେ ମାସ ସେ ଏପରି ସ୍ୱାଭାବିକ ଜୀବନ ଯାପନ କରେ ଯେ, ଅନେକ ସମୟରେ ତାକୁ ଘର ଭିତରେ ଚାବି ବନ୍ଦ କରି ରଖିବାକୁ ଲାଜ ଲାଗେ । ପୁଣି ଦିନେ ଦିନେ କୌଣସି ସଂକେତ ନ ଦେଇ ହଠାତ୍ ସେ ରୁଦ୍ରମୂର୍ତ୍ତି ଧାରଣ କରେ । ହାତ ପାଖରେ ଯାହାକୁ ପାଏ ତା' ଉପରେ ଆକ୍ରମଣ କରି ବସେ । ଏଇଟା ଗୋଟାଏ ପ୍ରକାର ସିକୋଫେନିୟା ।

ଇନିସ୍ପେକ୍ଟର ଶର୍ମା ହତଭମ୍ବ ହୋଇ ଚାହିଁ ରହିଥିବାର ଦେଖି ଡାକ୍ତର ଚଉଧୁରୀ ପୁଣି କହିଲେ : ଏଇଟା ମନର ଦୁଇଟି ଅଂଶର କଥା । ଏଇଟାକୁ ଜେକିଲ-ହାଇଡ୍‌ର ମାନସିକତା ଆଖ୍ୟା ଦେଇ ପାରନ୍ତି । ମୋର ମନେହୁଏ ତା' ମୁଣ୍ଡ ଭିତରେ ଗୋଟାଏ ଦରଜା କୌଣସି ସଂକେତ ନ ଦେଇ ହଠାତ୍ ବନ୍ଦ ହୋଇଯାଏ, ଯାହା ଫଳରେ ସେ ଭୟଙ୍କର ମୂର୍ତ୍ତି ଧାରଣ କରି ଗୋଟାଏ ଆକ୍ରମଣ କାରୀ ହୋଇଯାଏ । ଅସୁବିଧା କେଉଁଠି ହୁଏ ଜାଣନ୍ତି ? ଝିଅଟା କାହାକୁ ଆକ୍ରମଣ କରିବା ପୂର୍ବ ମୁହୂର୍ତ୍ତ ପର୍ଯ୍ୟନ୍ତ ତା'ଠାରେ ଆକ୍ରମଣର କୌଣସି ଲକ୍ଷଣ ଫୁଟେ ନାହିଁ । କିନ୍ତୁ ଆକ୍ରମଣଟା ହୁଏ ହଠାତ୍ ଏବଂ ପ୍ରଚଣ୍ଡ ଭାବରେ । ଆଉ ସେତେବେଳେ ତା'ଦେହରେ ମାଡ଼ିଆସେ ଅସୁର-ବଳ ।

: ଆଚ୍ଛା ଝିଅଟା ଆଜି ପର୍ଯ୍ୟନ୍ତ କେବେ କାହାକୁ କେଉଁଠି ଖୁଣ୍ କରିଛି କି ?

: ନା, କିନ୍ତୁ ଦୁଇଟି ଅଶୋଭନୀୟ ଘଟଣା ଘଟିଯିବାରୁ ତାକୁ ଗାରଦରେ ବନ୍ଦୀ କରି ରଖିବାକୁ ପଡ଼ୁଛି । ଶେଷ ଘଟଣାଟି ହେଉଛି, ଜଣେ ଭଦ୍ରଲୋକ ତାଙ୍କ ନିଜ କୁକୁରଟାକୁ ମାରୁଥିଲେ । ଲିସା ନର୍ସ ସହିତ ସେହିବାଟେ ଯାଉଥିଲା । ହଠାତ୍ ଲିସା ଛୁଟିଯାଇ ତା' ନଖ ସାହାଯ୍ୟରେ ଭଦ୍ରଲୋକଙ୍କୁ ଆକ୍ରମଣ କରେ, ମୁହଁ ଓ ନାକରୁ ରକ୍ତ

ବାହାରେ । ଭଦ୍ରଲୋକ ଆପ୍ରାଣ ଚେଷ୍ଟା କରି ଲିସା କବଳରୁ ମୁକ୍ତ ହୋଇ ପାରନ୍ତି ନାହିଁ । ଫଳରେ ଭଦ୍ରଲୋକଙ୍କୁ ତାଙ୍କର ଆଖି ଦୁଇଟି ହରାଇବାକୁ ପଡ଼େ । ନର୍ସଟି ପଥଚାରୀଙ୍କ ସାହାଯ୍ୟରେ ବହୁ କଷ୍ଟରେ ଲିସାକୁ ଆୟତ୍ତକୁ ଆଣେ । ତା' ନ ହୋଇଥିଲେ ସେଦିନ ଲିସା ସେଇ ଭଦ୍ରଲୋକଙ୍କ ପ୍ରାଣ ନେଇ ଯାଇ ଥାଆନ୍ତା ।

: ହୁଁ, ବୁଝିଲି । ବାହାରେ ମୁକ୍ତ ଆକାଶ ତଳେ...

: ନା ମିଷ୍ଟର ଶର୍ମା । ମୁକ୍ତ ଆକାଶ ତଳେ ସ୍ୱାଧୀନ ଭାବରେ ଲିସା ବୁଲାଚଲା କରିବା ମୋଟେ ନିରାପଦ ନୁହେଁ ।

: ତା' ସତ ଯେ, ତେବେ ଆଜିର ଏହି ଝଡ଼ ତୋଫାନ ରାତିରେ ତାକୁ ଖୋଜି ବାହାର କରିବା ବି କ'ଣ ଏତେ ସହଜ ହେବ !

: ଅସହଜକୁ ସହଜ କରିବାକୁ ହେବ ମିଷ୍ଟର ଶର୍ମା । ଡାକ୍ତର ଚଉଧୁରୀ ବ୍ୟଥିତ କଣ୍ଠରେ କହିଲେ । କାରଣ ଖବରଟା ଲୋକଙ୍କ କାନରେ ପହଞ୍ଚିବା ପୂର୍ବରୁ ଯେ କୌଣସି ଉପାୟରେ ଲିସାକୁ ଖୋଜି ବାହାର କରିବାକୁ ହେବ । କାରଣ ଆପଣ ହୁଏତ ଜାଣିଛନ୍ତି ଅମୃତଲାଲ ବରିହା ତାଙ୍କର ସମସ୍ତ ବିଷୟ ସମ୍ପତ୍ତି ଲିସା ନାମରେ ଉଇଲ୍ କରିଦେଇ ଯାଇଛନ୍ତି ଏବଂ ଜଣେ ସଲିସିଟର ତା'ର ମାର୍ଫତଦାର । ଉଇଲ୍‌ରେ କିନ୍ତୁ ଗୋଟାଏ ମଜାର ସର୍ତ୍ତ ଅଛି । ଲିସା ଯଦି ପାଗଳ ଗାରଦରୁ ବାହାରି ପନ୍ଦର ଦିନ ମୁକ୍ତ ଆକାଶ ତଳେ ସ୍ୱାଧୀନ ଭାବରେ ବିଚରଣ କରି ପାରିବ, ତେବେ ଷୋଳଦିନ ସକାଳୁ ସେ ହେବ ଅମୃତଲାଲଙ୍କର ସମସ୍ତ ବିଷୟ ସମ୍ପତ୍ତିର ମାଲିକ । ଆଉ କୌଣସି ମାର୍ଫତଦାର ରହିବେ ନାହିଁ । ଏହି ସମ୍ପତ୍ତିର ମୂଲ୍ୟ ପ୍ରାୟ ଷାଠିଏ ସତୁରି ଲକ୍ଷ ଟଙ୍କା ହେବ। ଅମୃତଲାଲଙ୍କର ଏହି ଉଇଲ୍‌ର ସର୍ତ୍ତ କଥା ଅନ୍ଦେ ବହୁତେ ଅନେକେ ଜାଣନ୍ତି । ଯଦି କେହି ଦୁଷ୍ଟବୁଦ୍ଧି ସମ୍ପନ୍ନ ଲୋକ ଲିସାକୁ ପନ୍ଦରଦିନ ବାହାରେ କେଉଁଠି ଅଟକେଇ ରଖିଦେଇ ପାରେ ତାହା ହେଲେ ସେ ତା'ର ସମସ୍ତ ବିଷୟ ସମ୍ପତ୍ତି ଭୋଗ କରି ପାରିବ। ତେଣୁ ବିପଦ ଚାରିଆଡ଼େ । ବର୍ତ୍ତମାନ ଏକମାତ୍ର ପନ୍ଥା ହେଉଛି ଲିସାକୁ ଯେ କୌଣସି ପ୍ରକାରେ ଖୋଜି ଆଣି ଗାରଦରେ ଭର୍ତ୍ତି କରିବା ।

: ଆଚ୍ଛା ତା'ପାଖରେ ଟଙ୍କା ପଇସା କିଛି ଥିଲା କି ?

: ବୋଧହୁଏ ନଥିଲା ।

: ତା'ର ଫଟୋ ଅଛି ଆପଣଙ୍କ ପାଖରେ ?

: ନା ।

: ତେବେ ଲିସାର ଗୋଟାଏ ବର୍ଣ୍ଣନା ଦିଅନ୍ତୁ ।

ପକେଟରୁ କଲମ ବାହାର କରୁ କରୁ କହିଲେ,

: ବର୍ଣ୍ଣନା ? କ'ଣ ବର୍ଣ୍ଣନା ଦେବି ? ତେବେ ହଁ ଝିଅଟାର ମୁଣ୍ଡର ବାଳ ବେଶ୍ ସୁନେଲି । ଉଚ୍ଚତା ପାଞ୍ଚଫୁଟ ଛ'ଇଞ୍ଚ : ଆଖିରେ ଅଦ୍ଭୁତ ଭାବରେ ଚାହେଁ। ସ୍ନାୟବିକ ଦୁର୍ବଳତା ପାଇଁ ବେଳେବେଳେ ମୁହଁର ଡାହାଣ ପାଖଟା କମ୍ପେ ।

: ତା ଦେହରେ ଚିହ୍ନି ପାରିଲା ଭଳି କିଛି ବିଶେଷ ଚିହ୍ନ ? ମୁହଁର ଗୋଟାଏ କଟା ଦାଗ ଅଛି । ତେବେ ସବୁଠୁଁ ଆଗେ ଆଖିରେ ପଡ଼େ ତା' ମୁଣ୍ଡର ସୁନେଲି ବାଳ । ଏକଦମ୍ ସୁନେଲି । ସାଧାରଣତଃ ଏହିପରି ବାଳ ଖୁବ୍ ଗୋଟାଏ କାହାରି ମୁଣ୍ଡରେ

ଦେଖାଯାଏ ନାହିଁ ।

: ହଁ । ଏଥର ତା'ହେଲେ ଆମେ ଖୋଜା ଆରମ୍ଭ କରି ଦେଉଛୁ । ଇନିସ୍ପେକ୍ଟର ଶର୍ମା ଉଠି ଠିଆହେଲେ । ମୁଁ ରାଜ୍ୟର ଟହଲଦାରୀ ପୋଲିସ୍‌ମାନଙ୍କୁ ଚାରିଆଡ଼େ ନଜର ରଖିବାକୁ କହୁଛି । ଆଉ ଗୋଟାଏ ଅନୁସନ୍ଧାନ ଦଳ ନିକଟବର୍ତ୍ତୀ ବଣ ଜଙ୍ଗଲ ଓ ପାହାଡ଼ମାନଙ୍କୁ ପଠାଉଛି । ସେମାନେ ତନ୍ନ ତନ୍ନ କରି ଖୋଜି ଲିସାକୁ ନିଶ୍ଚୟ ଧରି ଆଣିବେ । ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ ଡାକ୍ତର ଚଉଧୁରୀ । ମୁଁ ଆଶା କରୁଛି ଲିସା ଖୁବ୍ ଶୀଘ୍ର ଆମ ହାତରେ ଧରା ପଡ଼ିଯିବ ।

ଇନିସ୍ପେକ୍ଟର ରଣଧୀର ଶର୍ମା ବାହାରି ଚାଲିଗଲେ । ତାଙ୍କ ଗାଡ଼ିର କ୍ରମଶଃ ବିଲୀୟମାନ ଶବ୍ଦ ଶୁଣୁ ଶୁଣୁ ଡାକ୍ତର ଚଉଧୁରୀଙ୍କର ମନେ ହେଲା, ଲିସାକୁ ସେମାନେ କେବେହେଲେ ଖୋଜି ପାଇବେ ନାହିଁ ।

ସକାଳର ସୂର୍ଯ୍ୟାଲୋକ ଛାପି ଛାପି ହୋଇ ପଡ଼ିଥିଲା ପାହାଡ଼ିଆ ରାସ୍ତା ଉପରେ । ଶଙ୍କର ତା' ଜିପ୍‌ଟାକୁ ଚଳେଇ ନେଉଥିଲା ସେଇ ଚଢ଼ାଇ ଉତରାଇ ରାସ୍ତା ଉପର ଦେଇ। ବାଁ ପାଖରେ ବସିଥିଲା ଅରିନ୍ଦମ। ଶଙ୍କରର ବଡ଼ଭାଇ । ବହୁତ ବର୍ଷ ପରେ ଭାଇ ଭାଇର ଦେଖା ହେଲା ଆଜି । କାରଣ ଅରିନ୍ଦମ କେବେ କେଉଁଠି ଥାଏ, କ'ଣ କରେ ଶଙ୍କରକୁ କିଛି ଜଣା ନାହିଁ । ତେବେ ଶଙ୍କର ଜାଣେ ତା' ବଡ଼ଭାଇ ଅରିନ୍ଦମ ଦିଲ୍ଲୀରେ ରୁହେ । ହଠାତ୍ ସେ ଦୁଇଦିନ ତଳେ ଗୋଟାଏ ଟେଲିଗ୍ରାମ ପାଇଲା ଅରିନ୍ଦମଠାରୁ । ସେ ଆସୁଛି ଏବଂ ଶଙ୍କର ପାଖରେ କିଛିଦିନ ବିଶ୍ରାମ କରିବା ପାଇଁ ଆସୁଛି ।

ଶଙ୍କର ଅରିନ୍ଦମକୁ ଆଣିବାକୁ ଯାଇଥିଲା ଷ୍ଟେସନକୁ । ଫେରୁଛି ତା' ଫାର୍ମ ହାଉସ୍‌କୁ । ଷ୍ଟେସନଠାରୁ ପଚିଶ ତିରିଶ କିଲୋମିଟର ଦୂରରେ ପାହାଡ ଜଙ୍ଗଲ ଘେରା ଗୋଟିଏ ନିରୋଳା ଜାଗାରେ ଶଙ୍କରର ଫାର୍ମ ହାଉସ୍ । ସେଇଠି ସେ ଏକା ରୁହେ। ଚାଷବାସ କରି, ଗାଈ ଗୋରୁ ପାଳନ କରି, ଜୀବନଟାକୁ ଅତି ସହଜ ଓ ସରଳ ଭାବରେ କଟାଇ ଆସୁଚି ସେ ।

ହଠାତ୍ ଭାଇର ଟେଲିଗ୍ରାମ ତାକୁ ବିସ୍ମିତ କରିଥିଲା । ଭାଇ ଯେ ତା' ପାଖକୁ ବିଶ୍ରାମ କରିବା ପାଇଁ ଆସିବ, ଏ କଥା କେବେ ସ୍ୱପ୍ନରେ ସୁଦ୍ଧା ଭାବିପାରି ନ ଥିଲା ଶଙ୍କର ।

ଜିପ୍ ଚାଲିଛି । ଦୁଇଭାଇ ବସିଛନ୍ତି । ଷ୍ଟେସନ ଠାରୁ ଦୁଇ ତିନି କିଲୋମିଟର ଆଗେଇ ଆସି ସାରିଲେଣି । କିନ୍ତୁ କାହାରି ମୁହଁରେ ଯେପରି କିଛି କଥା ନାହିଁ । ବରଂ ଅରିନ୍ଦମ ବେଳେ ବେଳେ ଜିପ୍‌ରୁ ମୁଣ୍ଡ ବାହାର କରି ପଛକୁ ଚାହୁଁଛି ।

ଶଙ୍କର ଭାଇକୁ କ'ଣ ପଚାରିବ ନ ପଚାରିବ ହୋଇ କହିଲା : ତା'ହେଲେ ଦିଲ୍ଲୀରେ ତମେ ବେଶ୍ ଆରାମରେ ଅଛ, ନା ଭାଇ ?

: ହଁ, ଅଛି ଏକ ପ୍ରକାର । ଅରିନ୍ଦମ ଯେପରି ଶଙ୍କର କଥାର ଉତ୍ତର ଏଡ଼େଇ ଯିବାକୁ ଚାହୁଁଥିଲ ।

ପୁଣି ନୀରବତା ।

ଆଚ୍ଛା ଭାଇ, ଶଙ୍କର ଛେପଢୋକି କହିଲା, ହଠାତ୍ ତମେ ବିରାଟ ସହର, କୋଳାହଳ ଛାଡ଼ି ମୋ ପାଖକୁ ବିଶ୍ରାମ କରିବାକୁ ଚାଲି ଆସିଲ ଯେ...

: ହଁ, ଆସିଲି । ଭାବିଲି ଅନେକ ଦିନ ହେବ ତୋ'ସଙ୍ଗରେ ଦେଖା ହୋଇନାହିଁ, ତା'ଛଡ଼ା ଜଳବାୟୁ ପରିବର୍ତ୍ତନ...

ଅରିନ୍ଦମ ଚୁପ୍ ହୋଇଗଲା । ସେ ଯେପରି ଭୀଷଣ ଅନ୍ୟମନସ୍କ । ବାହାରକୁ ଚାହିଁ ଦେଖୁଥିଲା, ପାହାଡ଼ ଆଉ ପାହାଡ଼ । ଯେତେଦୂର ଆଖିଯାଏ ଖଣ୍ଡ ଖଣ୍ଡ ଭସା ମେଘପରି ଖାଲି ପାହାଡ଼ ମାଳା ।

: ଜାଗାଟା ଖୁବ୍ ନିର୍ଜନ, ନା ଶଙ୍କର ?

: ଚମତ୍କାର ଜାଗା । ତେବେ ତମେ ଦିଲ୍ଲୀରୁ ଆସିଚ ତ, ଏଠି ତମକୁ ଖୁବ୍ ନିର୍ଜନ ଆଉ ନିସ୍ତବ୍ଧ ଲାଗିବ । ଜାଣ ମୋ ନିକଟତମ ପ୍ରତିବେଶୀ ମୋଠାରୁ ପାଞ୍ଚକିଲୋମିଟର ଦୂରରେ ରହେ । ଭାଗ୍ୟ ଭଲଥିଲେ ସପ୍ତାହରେ ବାହାରର ଜଣେ ଦି'ଜଣ ଲୋକ ସହିତ ଦେଖାହୁଏ ।

: ମୋ ପକ୍ଷରେ ସେଇଟା ଭଲ । କାରଣ ମୁଁ ବିଶ୍ରାମ କରିବାକୁ ଆସିଚି । କିନ୍ତୁ ଏ ଆଡ଼ର ପରିସ୍ଥିତି ଯାହା ଦେଖୁଛି, ଏ ଅଞ୍ଚଳରେ ମାସେ ପନ୍ଦର ଦିନରୁ ବେଶୀ ରହିବା ସମ୍ଭବ ପର ନୁହେଁ, ତୁ ବର୍ଷବର୍ଷ ଧରି ରହିଛୁ କିପରି?

: ମୋର ଅଭ୍ୟାସ ହୋଇଗଲାଣି । ତା'ବୋଲି ବେଳେ ବେଳେ ଯେ ନିଃସଙ୍ଗ ମନେ ହୁଏନା, ସେକଥା କହୁନାହିଁ, ତେବେ ନିଃସଙ୍ଗତା ଅନୁଭବ କରିବାର ବେଳ ମିଳୁଛି କେତେବେଳେ : କହିବାକୁ ଗଲେ ମୁଁ ଜଣେ ସ୍ୱ ନିର୍ଭରଶୀଳ ବ୍ୟକ୍ତି । ତେଣୁ...

ହଠାତ୍ ସେମାନେ ଗୋଟାଏ ଦୋ' ଛକିରେ ଆସି ପହଞ୍ଚିଗଲେ । ରାସ୍ତାଟା ଦୁଇ ଭାଗ ହୋଇ ଯାଇଛି । ସେମାନେ ଡାହାଣ ଆଡ଼କୁ ଯିବା କଥା, କିନ୍ତୁ ହଠାତ୍ ଅରିନ୍ଦମ ଚିତ୍କାର କରି ଉଠିଲା : ଦେଖିଲୁଣି ଶଙ୍କର, ବାଁ ପାଖରେ ଗୋଟାଏ ଟ୍ରକ୍ କିମିତି ରାସ୍ତା ତଳକୁ ଗଡ଼ି ପଡ଼ୁ ପଡ଼ୁ ଗୋଟାଏ ଗଛରେ ଧକ୍କା ଖାଇ ଓହଳି ରହିଛି ।

ଶଙ୍କର ଅଟକି ଗଲା । ଚାହିଁଲା ସେହି ଅର୍ଦ୍ଧବିଧ୍ୱସ୍ତ ଟ୍ରକ୍‌ଟା ଆଡ଼କୁ । ଆମ ବାଟରେ ଆମେ ଆଗେଇଯିବା । କିଏ କୋଉଠି ମଲା ଗଲା ଏତେ ଖବର ନେବା ଦରକାର ନାହିଁ ।

: ଛି ଛି, ଏ କ'ଣ କହୁଛ ତମେ । ଗୋଟାଏ ଦୁର୍ଘଟଣା ଆଖି ଆଗରେ ଦେଖି ବି ଆମେ ପଳେଇଯିବା । କାଳେ ଯଦି କେହି ସଙ୍କଟାପନ୍ନ ଅବସ୍ଥାରେ ପଡ଼ିଥାଏ, ଆମର ସାହାଯ୍ୟ ପାଇଲେ ହୁଏତ ବଞ୍ଚିଯାଇ ପାରିବ ।

: ଓଃ, ତୁ ତା'ହେଲେ ଯା ଭିତରେ ଗୋଟାଏ ଧର୍ମପ୍ରାଣ ବ୍ୟକ୍ତି ହୋଇ ଉଠିଛୁ । ହଉ ଯା ଯା, ଦେଖି ଆସିବୁ ଯା, ମୁଁ ଏଇଠି ଏଇ ଜିପ୍‌ରେ ବସିଛି । ପରିହାସ କଣ୍ଠରେ ଅରିନ୍ଦମ କହିଲା ।

ଶଙ୍କର ନୀରବରେ ଆଗେଇ ଗଲା ବାଁ ଆଡ଼କୁ । ଟ୍ରକଟା ରାସ୍ତା ଉପରୁ ଗଡ଼ି ପଡ଼ୁ ପଡ଼ୁ ଗୋଟାଏ ବିରାଟ ଗଛ ସହିତ ଧକ୍କା ଖାଇ ଏକେବାରେ ଚେପ୍‌ଟି ଯାଇଛି । ବହୁ କଷ୍ଟରେ ଟ୍ରକ ଉପରକୁ ଉଠି ଶଙ୍କର ଦେଖିଲା, ଭିତରେ ଡ୍ରାଇଭର, ଆଉ ଗୋଟାଏ ଝିଅପିଲା, ନାଁ ଏମାନଙ୍କୁ ଉଦ୍ଧାର କରିବାକୁ ହେଲେ ଆଉ ଜଣକର ସହଯୋଗ ଆବଶ୍ୟକ ।

ସେ ସେଉଠୁ ଥାଇ ଡାକ ପକାଇଲା ଅରିନ୍ଦମକୁ ।

ଅରିନ୍ଦମ ଆସିଲା ପରେ ଦୁଇଜଣ ଚେଷ୍ଟା କରି, ବହୁ କଷ୍ଟରେ ଟ୍ରକର ଦରଜାଟା ଖୋଲିଲେ ।

ପ୍ରଥମେ ଡ୍ରାଇଭରର ହାତଟା ଧରି ଟାଣିଲା ଅରିନ୍ଦମ। ଥଣ୍ଡା, ମୁହଁ ବିକୃତ କରି କହିଲା : ନା, ଯା'ର ଲୀଳା ଖେଳା ସାଙ୍ଗ ହୋଇ ଯାଇଛି ।

ଡ୍ରାଇଭର ଉପରେ ନଦି ହୋଇ ପଡ଼ିଥିବା ଝିଅଟିକୁ ସ୍ପର୍ଶ କଲା ଶଙ୍କର : ନା ନା, ଝିଅଟା ବୋଧହୁଏ ବଞ୍ଚିଛି । ଧର ଟିକେ । ଝିଅଟାକୁ ଟାଣି ବାହାର କରିବାକୁ ହେବ ।

: ଧେତ୍ ତେରି ଝିଅ । ସେ ବଞ୍ଚିଥିଲେ ବି ଆଉ ଟିକକ ପରେ ମରିବ । ତାକୁ ଉଦ୍ଧାର କରି ଲାଭ କ'ଣ ?

: ନା ନା, ତମେ ଧର । ଡ୍ରାଇଭରଟାକୁ ଟିକିଏ ଟାଣି ଧରିଲେ ମୁଁ ଝିଅଟାକୁ ବାହାର କରି ଆଣିବି ।

ଅରିନ୍ଦମ ଡ୍ରାଇଭରଟାକୁ ଟାଣିଧରିବା ମାତ୍ରକେ ତା' ମୁହଁଟା ବୁଲିଗଲା ଶଙ୍କର ଆଡ଼କୁ । ଶଙ୍କର ଚିତ୍କାର କରି ଉଠିଲା ଏ କ'ଣ ଡ୍ରାଇଭରର ମୁହଁଟାକୁ ଏମିତି ବିରାଡ଼ିପରି ଆମ୍ପୁଡ଼ିଚି କିଏ ?

ଅରିନ୍ଦମ ଝିଅଟାର ହାତ ଧରି ଗାଡ଼ି ଭିତରୁ ଟାଣି ଆଣୁ ଆଣୁ କହିଲା : ଏଇ ଦେଖ ସେଇ ବିରାଡ଼ି । ଦେଖୁଛୁ ଝିଅଟା ହାତରେ କେଡ଼େ କେଡ଼େନଖ । ଏ ପର୍ଯ୍ୟନ୍ତ ରକ୍ତ ଲାଗିଛି ନଖରେ । ବୋଧହୁଏ ଡ୍ରାଇଭରଟା ଝିଅଟା ପ୍ରତି ଅସଦବ୍ୟବହାର କରିବାକୁ ଯାଇଥିଲା, ଝିଅଟା ଡ୍ରାଇଭର ଆଖିରେ ନଖ ପୂରେଇ ଦେଇଛି । ଫଳରେ ଗାଡ଼ିଟା ଗଡ଼ି ଯାଇଛି ରାସ୍ତା ଉପରୁ । ଏ ଝିଅଟା କିନ୍ତୁ ବଢ଼ିଆ । ଲୋଭ ହେବାର କଥା ।

ଶଙ୍କର ଝିଅଟାକୁ ଟାଣି ବାହାର କରି ନେଇ ରାସ୍ତା କଡ଼ର ଘାସ ଉପରେ ଶୁଆଇ ଦେଲା । ଦେଖିଲା, ମୁଣ୍ଡରେ ଆଘାତ ଲାଗିଛି । କହିଲା : ଏଇ ମୁହୂର୍ତ୍ତରେ କିଛି କିରିବା ଦରକାର ।

: ଧେତ୍‌ତେରି । ସେସବୁ ମାଇଚିଆ କଥା ଛାଡ଼ିଲୁ । ସେ ଏଇଠି ଶୋଇଥାଉ । ବଳେ ଠିକ୍ ହୋଇ ଚାଲିଯିବା ଆସିଲୁ ଆମ ବାଟରେ ଆମେ ଆଗେଇଯିବା ।

: ନା ନା, ଯା କ'ଣ ସମ୍ଭବା ଝିଅଟାକୁ ଏପରି ଗୁରୁତର ଆହତ ଅବସ୍ଥାରେ ଛାଡ଼ି ଚାଲିଯିବା ଉଚିତ ହେବ ନାହିଁ ।

: ତା'ହେଲେ ଗୋଟାଏ କାମ କର । ରାସ୍ତାଯାଏ ଟାଣିନେଇ ସେଇଠି ଶୁଆଇ ଦିଏ । ରାସ୍ତାରେ ନିଶ୍ଚୟ କେହି ନା କେହି ଆସିବା ସେତେବେଳେ...

: ନା ନା, ଝିଅଟାକୁ ଡାକ୍ତର ଦେଖେଇବାକୁ ହେବ । ଏଠି ଆଖ ପାଖରେ କୋଉଠି ଡାକ୍ତରଖାନା ନାହିଁ । ତେଣୁ ଆମ ସଙ୍ଗରେ ମୁଁ ତାକୁ ଘରକୁ ନେଇଯିବି । ଡାକ୍ତର ଆଣି ଦେଖେଇବି । ଏ ସମ୍ବନ୍ଧରେ ତମର କିଛି କହିବାର ଅଛି ?

ଅରିନ୍ଦମ ଚିଡ଼ି ଉଠିଲା । କହିଲା : ମୁଁ ଜାଣେ ପରା ! ଯେଉଁମାନେ ନିର୍ଜନ ଦ୍ୱୀପରେ ବାସ କରନ୍ତି, ସେମାନେ ମାଇକିନା ଦେଖିଲେ ତା' ଦେହରେ ଅଠାପରି ଲାଗିଯିବାକୁ ଚାହାନ୍ତି । ତୋତେ ସେଇ ରୋଗ ଧରିଛି ।

ଶଙ୍କରର ମୁହଁ ଲାଲ ହୋଇ ଉଠିଲା । ଆଉ କିଏ ହୋଇଥିଲେ ସଙ୍ଗେ ସଙ୍ଗେ ହାତ

ଚଳେଇ ଦେଇ ଥାଆନ୍ତା । କିନ୍ତୁ ବହୁ କଷ୍ଟରେ ସେ ଆତ୍ମ ସମ୍ବରଣ କଲା । ଅରିନ୍ଦମ କଥାର କୌଣସି ଉତ୍ତର ନ ଦେଇ ଝିଅଟା ଦେହରେ ହାତ ବୁଲେଇ ପରୀକ୍ଷା କରିବାରେ ଲାଗିଲା, ହାଡ଼ ଫାଡ଼ କେଉଁଠି ଭାଙ୍ଗିଛି କି ନାହିଁ । ଝିଅଟା ଟିକିଏ ହଲଚଲ ହୋଇ ପୁଣି ନିଶ୍ଚଳ ହୋଇଗଲା ।

ଅରିନ୍ଦମ ପୁଣି କହିଲା  ଝିଅଟା ଦେହରେ ସେମିତି ହାତ ନ ବୁଲେଇ, ତା' ପୋଷାକ ପତ୍ର ଟାଣି ଖୋଲିଦେଲେ ଆହୁରି ଭଲ ବୁଝି ପାରନ୍ତୁ ।

ଶଙ୍କର ରୋଷକଷାୟିତ ନୟନରେ ଖାଲି ଥରେ ଚାହିଁଲା ଅରିନ୍ଦମ ମୁହଁକୁ । ତା'ପରେ ଦୃଷ୍ଟି ଫେରେଇ ନେଇ ଝିଅଟାର ନାଡ଼ି ପରୀକ୍ଷା କରିବାରେ ମନ ଦେଲା । ଗତି ଖୁବ୍ କ୍ଷିପ୍ର । ଜର ହୋଇଛି ବୋଧହୁଏ ।

: ଶଙ୍କର ! ଏବେ ବି ବେଳଅଛି, ତୁ ଛାଡ଼ିଦେ ତାକୁ । ଅରିନ୍ଦମ ପୁଣି କହିଲା ।

: ତମେ ଚୁପ୍ କର ତା ମୋ କାମ ମୁଁ କରୁଛି । ଶଙ୍କର ଗମ୍ଭୀର ହୋଇ କହିଲା । ଝିଅଟାକୁ ଦୁଇ ହାତରେ ଉଠାଇ କାନ୍ଧରେ ପକାଇ ଜିପ୍ ଆଡ଼କୁ ମୁହାଁଇଲା ।

: ବେଶ୍, ମୋର କିନ୍ତୁ କିଛି ଦୋଷ ନାହିଁ କହି ଦେଉଛି ଶଙ୍କର । ପରେ ତୁ କହି ପାରିବୁ ନାହିଁ ଯେ ମୁଁ ତୋତେ ସାବଧାନ କରେଇ ଦେଇନାହିଁ । ମୁଁ ଏବେ ବି କହୁଛି ଶୁଣି ରଖ, ଏ ଝିଅକୁ ନେଇ ତୁ ମହା ଝାମେଲାରେ ପଡ଼ିବୁ ।

ଶଙ୍କର ସବୁ ଶୁଣି ବି କିଛି ଶୁଣିଲା ନାହିଁ । ସେ ଧୀରେ ଧୀରେ ଦୃଢ଼ ପଦରେ ଝିଅଟାକୁ କାନ୍ଧରେ ପକାଇ ଆଗେଇ ଯାଉଥିଲା ଜିପ୍ ଆଡ଼କୁ ।

ଶଙ୍କରର ଫାର୍ମ ହାଉସ୍ ରତନ ଗଡ଼ରେ । ସମୁଦ୍ରଠାରୁ ପାଞ୍ଚ ଛ' ହଜାର ଫୁଟ ଉଚ୍ଚରେ ପାହାଡ଼ଘେରା ଏକ ରମଣୀୟ ସ୍ଥାନରେ । ହାଇୱେରୁ ଏକ ସରୁ ଧୂଳି ଧୂସରିତ ପଥ ଲମ୍ବି ଯାଇଛି ଶଙ୍କରର ଫାର୍ମ ହାଉସ ଆଡ଼କୁ । ଆଖ ପାଖରେ ଘଞ୍ଚ ଜନବସତି କିଛି ନାହିଁ ।

ଶଙ୍କର ପ୍ରଥମ ଜୀବନରେ ଥିଲା ଇନ୍ସୁରେନ୍ସ ଏଜେଣ୍ଟ । କିନ୍ତୁ ସହରୀ ଜୀବନ୍ ଭଲ ଲାଗିଲା ନାହିଁ ତାକୁ । ଏଜେନ୍ସୀ କରି କିଛି ଟଙ୍କା ସଞ୍ଚୟ କରିଥିଲା । ଦିନେ କାଗଜରେ ପଢ଼ିଲା ରତନଗଡ଼ର ଏହି ଫାର୍ମ ହାଉସଟି ବିକ୍ରୟ ହେଉଥିବାର କଥା । ସିଧା ସେ ଛୁଟିଗଲା ସେଇଠିକି । ଭଲ ଲାଗିଲା ଜାଗାଟା ତାକୁ । ନିରୋଳାରେ ଅଜ୍ଞାତବାସ କରିବାକୁ ତା'ମନ ଚାହିଁଲା । ସହରର ସମସ୍ତ ମାୟା ଜଳାଞ୍ଜଳି ଦେଇ ସେ ଛୁଟି ଆସିଲା ପାହାଡ଼ ପର୍ବତ ଘେରା ଏହି ନିକାଞ୍ଚନ ସ୍ଥାନକୁ ।

ଫାର୍ମ ହାଉସ୍‌ରେ ସେ ପ୍ରାୟ ଏକା କହିଲେ ଚଳେ । କାରଣ ଯେଉଁ କେତେଜଣ ଲୋକ ଚାଷବାସ ପାଇଁ ଅଛନ୍ତି, ସେମାନେ ରୁହନ୍ତି ଶଙ୍କର ଠାରୁ ପ୍ରାୟ ଦୁଇ ତିନି କିଲୋମିଟର ଦୂରରେ । ହଳ ବଳଦ ସବୁ ସେଇମାନଙ୍କ ଜିମାରେ । ଶଙ୍କର ଏକା ଥାଏ । ଚାଷବାସ ଦେଖେ । ସପ୍ତାହରେ ଥରେ ଅଧେ ଜିପ୍‌ଟି ଧରି ଷ୍ଟେସନ ଆଡ଼େ ଘୂରି ଆସେ । ସେଇଥିରେ ତା'ର ଆନନ୍ଦ ।

ହଠାତ୍ ବଡ଼ଭାଇ ଅରିନ୍ଦମ ଆସି ପଡ଼ିବାରୁ ସେ ଆଶ୍ଚର୍ଯ୍ୟ ହୋଇଛି ଯେତିକି,

ବିବ୍ରତ ହୋଇଚି ସେତିକି। କାରଣ ଅରିନ୍ଦମ କିପରି ଗୋଟାଏ ଭିନ୍ନ ଧରଣର ମଣିଷ। ସବୁବେଳେ ସେ ହୋ ହୋ କରି ସମୟ କଟାଏ। ଭାଇର ଏଇ ଚରିତ୍ର ସହିତ ସେ ନିଜକୁ କେବେ ଖାପ ଖୁଆଇ ପାରିନାହିଁ। କିନ୍ତୁ ଆଜି ହଠାତ୍ ସେଇ ଅରିନ୍ଦମ ଆସି ତା'ପାଖରେ ନିର୍ଜନ ବାସ କରିବ, ସେ ମୋଟେ ଚିନ୍ତା କରି ପାରୁ ନଥିଲା। ଯାହାହେଉ, ଗାଡ଼ି ଯାଇ ପହଞ୍ଚିଲା ଫାର୍ମ ହାଉସରେ।

ଶଙ୍କର ଝିଅଟାର ଅଚେତ ଦେହଟାକୁ କାନ୍ଧରେ ପକେଇ ଆଗେଇ ଗଲା ଘର ଭିତରକୁ। ଆଉ ଅରିନ୍ଦମ ? ସଙ୍ଗେ ସଙ୍ଗେ ସେ ଜିପ୍ ଇଞ୍ଜିନ୍‌ର ଢାଙ୍କଣା ଖୋଲି ଆକ୍‌ସିଲେଟରର ସୁଇଚ୍‌ର ମୁଣ୍ଡଟା ଖୋଲି ନେଇ ପକେଟରେ ରଖିଲା। ତା'ପରେ ଢାଙ୍କଣା ବନ୍ଦ କରି ଫେରି ଆସିଲା ପ୍ରଶସ୍ତ ବାରଣ୍ଡା ଉପରକୁ। ଟିକେ ତନ୍ନ ତନ୍ନ କରି ବୁଲି ବୁଲି ଦେଖୁଥିଲା ଘରର ଚାରିଆଡ଼େ।

ଶଙ୍କର ଘରେ ଝିଅଟାକୁ ଶୁଆଇ ଦେଇ ବାହାରି ଆସିଲା ବାହାରକୁ। ଅରିନ୍ଦମ ବିଦ୍ରୂପ ସ୍ୱରରେ କହିଲା  ଟୋକୀକି ତୂଳିତଳ୍ପ ଶଯ୍ୟାରେ ଶୁଆଇ ପକାଇ ଆସିଲୁ ବୋଧହୁଏ ?

: ତମେ ଚୁପ୍ କର ତ ! ଏପରି କଥା ସବୁ ମୋତେ ଭଲ ଲାଗେନା କହିଦେଉଛି। ଶଙ୍କର କଣ୍ଠରେ ବିରକ୍ତି ଭାବ ଫୁଟି ଉଠିଥିଲା।

: ବେଶ୍, ମୁଁ ତେବେ କିଛି କହିବି ନାହିଁ। ତୁ ତୋର ଯାହା କରୁଛୁ କର। ଅରିନ୍ଦମ ଗୋଟାଏ ସିଗାରେଟରେ ଅଗ୍ନି ସଂଯୋଗ କଲା।

ଶଙ୍କର କହିଲା  ମୁଁ ବର୍ତ୍ତମାନ ଡାକ୍ତର ପାଖକୁ ଯାଉଛି। ଡାକ୍ତର ସାରଖେଳ ରୁହନ୍ତି ଅନେକ ଦୂରରେ। ତାଙ୍କୁ ସାଙ୍ଗରେ ଧରି ଫେରୁ ଫେରୁ ଅନ୍ତତଃ ଦୁଇଘଣ୍ଟା ଡେରି ହୋଇ ପାରେ। ତୁମେ ଝିଅଟା ପ୍ରତି ଟିକେ ନଜର ରଖିଥିବ।

: ନଜର ମାନେ ? ତା' ପାଖରେ ବସି ତାକୁ ବିଞ୍ଚିବାକୁ ହେବ ନା କ'ଣ ?

: ପୁଣି ସେଇ ବାଜେ କଥା। ଝିଅଟା ବିପଦରେ ପଡ଼ିଛି। ତା'ର ପ୍ରାଣରକ୍ଷା ମାନବିକତା ଦୃଷ୍ଟିରୁ ଆମର କର୍ତ୍ତବ୍ୟ ନୁହେଁ ?

ଅବଶ୍ୟ କର୍ତ୍ତବ୍ୟ। ତୁ ଶୀଘ୍ର ଚାଲି ଯା ଡାକ୍ତର ପାଖକୁ। ମୁଁ ତା'ର ତତ୍ତ୍ୱ ନେଉଛି। ତା'ଛଡ଼ା ଝିଅମାନେ ମୋତେ ଖୁବ୍ ପସନ୍ଦ କରନ୍ତି।

ଶଙ୍କର କିପରି ଏକ ଉଭଟ ଚାହାଣିରେ ଅରିନ୍ଦମ ମୁହଁକୁ ମୁହୂର୍ତ୍ତେ ଚାହିଁ ଜିପ୍ ପାଖକୁ ଫେରିଗଲା। କିନ୍ତୁ ଗାଡ଼ି ଯେ ଆଗେଇବାକୁ ଚାହେନା ? ଶଙ୍କର ରାଗରେ ଜଳି ଉଠି ଫେରି ଆସିଲା।

: କ'ଣ, ତମେ ଭାବିଛ କ'ଣ କହିଲ ? ମୋତେ କ'ଣ ତମେ ଗୋଟାଏ ବୋକା ଭାବିଛ ?

: ନା ନା, ଗାଡ଼ିର ଆକସିଲେଟରର ମୁଣ୍ଡଟା ମୁଁ ରଖିଛି ଏବଂ ସେଇଟାକୁ ମୁଁ ଫେରେଇବି ନାହିଁ। କାରଣ ଯେତେଦିନ ଯାଏ ମୁଁ ଏଠାରେ ଅଛି, ସେତେଦିନ ଯାଏ କୌଣସି ବାହାରର ଲୋକ ଏଠାକୁ ଆସି ପାରିବ ନାହିଁ। କିମ୍ବା ଏଠାରୁ କେହି ବାହାରକୁ ଯାଇ ପାରିବ ନାହିଁ। ଶଙ୍କରର ହାତ ମୁଠା ମୁଠା ହୋଇ ଆସିଲା। ସେ ନିଜକୁ ଖୁବ୍ ସଂଯତ କରି କହିଲା : ତମ ମନରେ କ'ଣ ଅଛି ମୋତେ ଜଣା ନାହିଁ। ତେବେ ଏଠି

ତମର କରାମତି କିଛି ଚଳିବ ନାହିଁ । ମୋତେ ଆକ୍‌ସିଲେଟରର ସୁଇଚ୍‌ଟା ଫେରେଇ ଦିଅ । ନହେଲେ ମୁଁ ବାଧ ହୋଇ ତମଠାରୁ ଛଡ଼େଇ ନେବି ।

: ସତେ ? ଦୁଇପାଦ ପଛେଇଗଲା ଅରିନ୍ଦମ । ହଠାତ୍ ପ୍ୟାଣ୍ଟ ପକେଟରୁ ଗୋଟାଏ ରିଭଲଭର ବାହାର କରି ଶଙ୍କର ଛାତିକୁ ଲକ୍ଷ୍ୟ କରି କହିଲା, ମୁଁ ସବୁଠି ସମାନ । ମୋ ପାଖରେ କାହାରି ବେଆଦପି ଚଳିବ ନାହିଁ । ସେ ଭାଇ ହେଉ, ବାପ ହେଉ ଯିଏ ହେଉ ।

: ତମେ କ'ଣ ପାଗଳ ହେଲ ଭାଇ ! ଦୁଇପାଦ ପଛେଇ ଯାଇ ଶଙ୍କର କହିଲା, ସେଇଟା ପକେଟ୍‌ରେ ରଖ ।

ହଁ, ସେଇକଥା କହ । ତୁ ହୁଏତ ଜାଣିନାହୁଁ ମୁଁ ଗୋଟାଏ ଝାମେଲାରେ ପଡ଼ି ତୋ ପାଖକୁ ଆସିଛି ଗୋପନରେ ଦିନ କେଇଟା କଟେଇ ଯିବାପାଇଁ । ମୁଁ ଚାହେନା ଡାକ୍ତର ଫାକ୍ତର ଏଠିକି କେହି ଆସୁ । ଯିଏ ଆସିଲେ ବି ସେ ମୋତେ ଦେଖି ଯାଇ ବାହାରେ କଥା ପ୍ରସଙ୍ଗରେ କାହାକୁ ନା କାହାକୁ ମୋ କଥା କହିବ । ସେଇଥିପାଇଁ ମୁଁ ଚାହେ ତୁ ବି ଏଇ ଫାର୍ମ ହାଉସ୍ ଛାଡ଼ି ପାଦେହେଲେ କୁଆଡ଼େ ବାହାରି ପାରିବୁ ନାହିଁ । ସେ ଝିଅଟା ବି ନୁହେଁ । ଆଉ ଶୁଣ୍, ମୋ ଆଜ୍ଞାର ଅବଜ୍ଞା ହେଲେ, କାହାରି ମଙ୍ଗଳ ହେବ ନାହିଁ । ଆଉ ତୁ ଯଦି ମୋ ସାଙ୍ଗରେ ଚାଲାଖି କରୁ, ଜାଣିରଖ ମୋ ହାତର ଲକ୍ଷ୍ୟ ଅବ୍ୟର୍ଥ । ଆଉ ତୋ ଠାରୁ ବହୁ ବଡ଼ ବଡ଼ ମସ୍ତାନମାନେ ମୋତେ ଦେଖିଲେ ବାଟଭାଙ୍ଗି ଚାଲିଯାଆନ୍ତି ।

ଶଙ୍କର ସବୁ ଶୁଣି ଅବାକ୍ ହେଲା । ତଥାପି କିଛି ନ ଜାଣିଲାପରି ହସରେ ଉଡ଼େଇ ଦେବାକୁ ଯାଇ କହିଲା : ଝିଅଟାକୁ ତ ନିଶ୍ଚୟ ଡାକ୍ତର ଦେଖେଇବାକୁ ହେବ । ତେଣୁ ସୁଇଚ୍‌ଟା ମୋତେ ଦିଅ । ତମେ ନିଶ୍ଚିତ ରୁହ ଯେ ତମ ସମ୍ବନ୍ଧରେ ମୁଁ କାହାରିକୁ କିଛି କହିବି ନାହିଁ ।

: ଦୁର୍ ବୋକା । ମୁଁ ଦେଖୁଛି ସତରେ ତୁ ଗୋଟାଏ ନିପଟ ମଫସଲି ହୋଇ ରହି ଯାଇଛୁ । ଏବେ ବି ତୋ ମୁଣ୍ଡରେ କିଛି ପଶି ନାହିଁ ? ତେବେ ଶୁଣ, ମୁଁ ହେଉଛି ଜଙ୍ଗଲ ସର୍ଦ୍ଦାର ଦଳର ଲୋକ। ଏବେ ବୁଝି ପାରିଲୁ କିଛି ?

: ହଁ, ସେଇ ଜଙ୍ଗଲ ସର୍ଦ୍ଦାର । ଗତବର୍ଷ ଆମେ ବ୍ୟାଙ୍କ୍ ଲୁଟ୍ କରି ପ୍ରଚୁର ଅର୍ଥ ରୋଜଗାର କରିଛୁ । ବୁଝିଲୁ ଧନା ଅରିନ୍ଦମ ଗର୍ବିତ ଭଙ୍ଗୀରେ କହିଲା ।

: ଶେଷରେ ତମେ ଯେ ଯାଇ ଗୋଟାଏ ଗୁଣ୍ଡାଦଳରେ ସାମିଲ୍ ହୋଇ ଦେଶ ସାରା ବୁଲି ବୁଲି ଖୁଣ ଜଖମ କରିବ, ସେ କଥା ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲି ।

: ଭାବିଥିଲେ ତୁ କ'ଣ କରିଥାନ୍ତୁ ? ମୁଁ ଯାହା କରିଛି ଠିକ୍ କରିଛି । ଅବଶ୍ୟ ବର୍ତ୍ତମାନ ଟିକିଏ ଝାମେଲାରେ ପଡ଼ି ଯାଇଛି । ତେବେ ଏ ଝାମେଲା ବେଶିଦିନ ରହିବ ନାହିଁ । ତା'ପରେ ପୁଣି ମୁଁ ମନ ଆନନ୍ଦରେ ଫୂର୍ତ୍ତି କରି ବୁଲିବି । ତୋ ଭଳିଆ ମୁଁ ତ ଆଉ ମଫସଲି ନୁହେଁ, ଘରଦ୍ୱାର, ସହର ବଜାର ଛାଡ଼ି ନିର୍ଜନରେ ନିର୍ବାସିତଙ୍କ ପରି ବିଳାପ କରିବି !

: ହଉ ହେଲା । ମୁଁ ସବୁ ବୁଝିଲି । କିନ୍ତୁ ସେ ପିସ୍ତଲଟା ମୋ ଆଡ଼କୁ ଦେଲ । ଶଙ୍କର ଆଗେଇ ଯାଉଥିଲା ଅରିନ୍ଦମ ଆଡ଼କୁ ।

କିନ୍ତୁ ସହସା ଅରିନ୍ଦମର ପିସ୍ତଲଟା ଗର୍ଜନ କରି ଉଠିଲା । ଝଲକାଏ ନିଆଁ ।

ବାହାରି ପଡ଼ିଲା ହଠାତ୍, ଆଉ ଶଙ୍କରର କାନ ପାଖ ଦେଇ ତୀବ୍ର ଗତିରେ ଗୁଳିଟା ଛୁଟି ଚାଲିଗଲା ।

: ଦେଖିଲୁ ? ଅରିନ୍ଦମ କହିଲା । ଏମିତି ଅତି ସହଜରେ ମୁଁ ତୋ କପାଳକୁ ଲକ୍ଷ୍ୟକରି ଗୁଳି ଚଳେଇ ଦେଇ ପାରେ । ଆଉ ତୁ ଯଦି ମୋ କଥା ନ ମାନି ବୋକାଙ୍କ ପରି କିଛି କରିବସୁ, ତା'ହେଲେ ମୁଁ ସେଇଆ କରିବି । ତେଣୁ...

ମୁହୂର୍ତ୍ତେ ନୀରବତା ଭିତରେ କଟିଗଲା । ଶଙ୍କର ସ୍ତବ୍ଧତା କଟାଇ ଦେଖିଲା, ଅରିନ୍ଦମ ଯାଇ ବୈଠକ ଖାନାରେ ଗୋଟାଏ ଚେଆର ଉପରେ ଗୋଡ଼ ଦେଇ ଠିଆ ହୋଇ ସିଗାରେଟ ଟାଣୁଛି । ଯେମିତି ପରିସ୍ଥିତି ଅତି ସ୍ୱାଭାବିକ ।

ଶଙ୍କର ବୁଝିପାରିଲା ସେ ଆଉ ଡାକ୍ତର ପାଖକୁ ଯାଇ ପାରିବ ନାହିଁ । ତା' ହେଲେ ସେଇ ଝିଅଟିର ଅବସ୍ଥା କ'ଣ ହେବ ?

ଶଙ୍କର କ୍ଷିପ୍ର ପାଦରେ ଫେରିଗଲା ସେଇ ଝିଅଟି ପାଖକୁ । ଶୋଇବା ଘରେ ଝିଅଟି ସେମିତି ଅଜ୍ଞାନ ହୋଇ ଶୋଇଛି । ଶଙ୍କର ଷ୍ଟୋଭ୍ ଲଗାଇ ଗରମ ପାଣି କଲା । ଫାଷ୍ଟଏଡ୍ ଚିକିତ୍ସା ବାକ୍ସଟା ବାହାର କରି ନିଜେ ବସି ପଡ଼ିଲା ଝିଅଟିର ଚିକିତ୍ସା କରିବା ପାଇଁ । ମୁଣ୍ଡରେ ଯେଉଁ ଜାଗାରେ ଆଘାତଟା ବେଶି ଲାଗିଥିଲା, ଶଙ୍କର ଗରମ ପାଣିରେ ସେଇ ଜାଗାଟା ଧୋଇଦେଲା, ଔଷଧ ଲଗାଇ ଦେଲା । ମୁଣ୍ଡରେ ବ୍ୟାଣ୍ଡେଜ୍ ବାନ୍ଧି ସେଫ୍ଟିପିନ୍ ଲଗାଇଲା ବେଳକୁ ଝିଅଟି ଆଖି ଖୋଲି ଚାହିଁଲା ।

: କ'ଣ ! ଟିକିଏ ଭଲ ଲାଗୁଛି ? ହସି ହସି ଶଙ୍କର ଝିଅଟିକୁ ପଚାରିଲା ।

ଝିଅଟି ମୁଣ୍ଡ ପାଖକୁ ହାତ ନେଇ କହିଲା : ମୁଣ୍ଡଟାରେ ଭୀଷଣ କଷ୍ଟ ଲାଗୁଛି । କିନ୍ତୁ ମୁଁ କେଉଁଠି ? ମୋର କ'ଣ ହୋଇଥିଲା ?

: ଆପଣ ବ୍ୟସ୍ତ ହୁଅନ୍ତୁନି । ଗୋଟାଏ ଟ୍ରକ ଦୁର୍ଘଟଣାରେ ଆପଣ ସଂଜ୍ଞା ହରାଇଥିଲେ । ଆପଣ ସୁସ୍ଥ ହୋଇ ଉଠନ୍ତୁ । ତା'ପରେ...

: ଟ୍ରକ୍ ! ମାନେ ? ମୋର ତ କିଛି ମନେ ପଡୁନାହିଁ । ସହସା ଝିଅଟି ଧଡ଼ପଡ଼ ହୋଇ ଉଠିବାକୁ ଚେଷ୍ଟା କଲା । ଶଙ୍କର କିନ୍ତୁ ଧରି ପକାଇ ପୁଣି ଶୁଆଇ ଦେଲା ।

: ନା ନା । ମୁଁ କିଛି ମନେ କରି ପାରୁ ନାହିଁ । ମୋର କିଛି ମନେ ପଡୁନାହିଁ । ମୋ ମୁଣ୍ଡଟା କିପରି ଗୋଳମାଳ ହୋଇ ଯିବା ପରି ଲାଗୁଛି ।

: ସେ କିଛି ନୁହେଁ, ସବୁ ଠିକ୍ ହୋଇଯିବ । ଆପଣ ଆଗ ସୁସ୍ଥ ହୋଇ ଉଠନ୍ତୁ । ତା'ପରେ ସବୁ ଠିକ୍ ହୋଇଯିବ ।

: କିନ୍ତୁ ମୋର କ'ଣ ହୋଇଥିଲା ମୁଁ ଜାଣେନା । ମୁଁ କିଏ ତା' ବି ମୋର ମନେ ପଡୁନି । ମୋର ଭୟ ହେଉଛି...

: ନା, ଭୟର କିଛି କାରଣ ନାହିଁ । ଆପଣଙ୍କର ବିଶ୍ରାମ ଆବଶ୍ୟକ । ଆପଣ ଟିକେ ଶୋଇ ପଡ଼ନ୍ତୁ । ଉଠି ଦେଖିବେ ସବୁ ଠିକ୍ ହୋଇ ଯାଇଛି ।

: ବାଃ, ତମେ କେତେ ଭଲ ସତେ । ମୋ ପାଖରେ ରୁହ, ମୋତେ ଛାଡ଼ି କୁଆଡ଼େ ଯାଅନାହିଁ ।

: ନା ନା, ମୁଁ ତ ଏଇଠି ଅଛି । କୁଆଡ଼େ ଯାଉନାହିଁ । ତମେ ଟିକେ ଚୁପ୍‌ଚାପ୍ ଶୋଇଲ ।

କିଛି ସମୟ ପରେ ସତକୁ ସତ ଝିଅଟି ଶୋଇ ପଡ଼ିଲା ।

ଆରଘରେ ଚିନ୍ତିତ ହୋଇ ବସିଥିଲା ଅରିନ୍ଦମ । ଏଇ ଟୋକୀଟା କେଉଁଠୁ ଆସି ସବୁ ବିଗାଡ଼ି ଦେଲା । ନହେଲେ ସେ ଶଙ୍କରକୁ କିଛି ନଜଣାଇ ମଧ୍ୟ ଆରାମରେ ଏଠି ରହି ଯାଇ ପାରି ଥାଆନ୍ତା, କିନ୍ତୁ ପରିସ୍ଥିତି ଯେଉଁ ଆକାର ଧାରଣ କଲା, ତାକୁ ଟିକେ ଜଗିରଖି ଚଳିବାକୁ ହେବ । ନହେଲେ...

ଦରଜାରେ ମୃଦୁ ଶବ୍ଦ ଶୁଣି ପିସ୍ତଲ ହାତରେ ଧରି ତଡ଼ିତ୍ ବେଗରେ ଉଠି ପଡ଼ିଲା ଅରିନ୍ଦମ । ପର ମୁହୂର୍ତ୍ତରେ ଦେଖିଲା ଗୋଟାଏ ବିରାଟ କଳା କୁକୁର ଜିଭ ଲହ ଲହ କରି ଘରେ ପଶିଲା ।

ଶଳା ବେଜନ୍ମା କୋଉଠିକାର । ବାହାର ଏଠୁ । ସେ କୁକୁରଟାକୁ ପାଦରେ ଠେଲି ଦେବାରୁ କୁକୁରଟା ତା' ପ୍ରଭୁର ଅନ୍ୱେଷଣରେ ବାହାରକୁ ବାହାରିଗଲା ।

ଶଙ୍କର କିନ୍ତୁ ମହା ଅସୁବିଧାରେ ପଡ଼ି ଯାଇଥିଲା । ଝିଅଟାକୁ ତ ଏମିତି ଆଉ ବିଛଣାରେ ପକେଇ ରଖି ହେବନାହିଁ । ତା'ର ଲୁଗାପଟା ଚିରି ଯାଇଛି, ରକ୍ତାକ୍ତ । ସେଗୁଡ଼ିକ ବଦଳେଇବା ଦରକାର । କିନ୍ତୁ କେମିତି ବଦଳେଇବ ସୋ ଆଖ ପାଖରେ କେହି ଝିଅପିଲା ନାହିଁ ଯେ, ଡାକି ଆଣି ତା' ସାହାଯ୍ୟରେ ବଦଳେଇ ଦେଇ ହେବ । ତଥାପି କିଛି ଗୋଟାଏ କରିବାକୁ ହେବ । ଏହି ପରି ଭାବୁ ଭାବୁ ସେ ତା' ଆଲମାରୀ ଖୋଲି ତା'ର ସବୁଠାରୁ ପ୍ରିୟ ପାଇଜାମା ସୁଟ୍‌ଟା ବାହାର କରି ଆଣିଲା । ଜାମାର ହାତ, ଆଉ ପାଇଜାମାର ପାଦ ସାମାନ୍ୟ ଟିକିଏ ବଡ଼ ହେବ ହୁଏତା ସେ ଯାଇ ଝିଅଟି ଦେହରେ ମାପିବାକୁ ଲାଗିଲା । ହଁ ଏଇଥିରେ କାମ ଚଳିଯିବ ।

କିନ୍ତୁ ସେ ତାକୁ ପିନ୍ଧେଇବ କିପରି ? ଯଦି ତା'ଦେହର ପୁରୁଣା ପୋଷାକ ଖୋଲୁ ଖୋଲୁ ଝିଅଟିର ଚେତା ଫେରି ଆସେ ! ତଥାପି ସେ ତା' ପୋଷାକର ବୋତାମ ଖୋଲିବାକୁ ହାତବଢ଼ାଇଲା । ବୋତାମ ଖୋଲିବାକୁ ଯାଇ ସେ ତା' ଛାତି ପକେଟରୁ ଗୋଟାଏ ରୁମାଲ ପାଇଲା । ରୁମାଲର ଗୋଟିଏ କୋଣରେ ଲାଲ ସୂତାରେ ଲେଖା ଥିଲା ଲିସା । କିଏ ଏଇ ଲିସା ? କ'ଣ ଏହାର ପରିଚୟ ? କେଉଁଠୁ ଆସିଥିଲା, କେଉଁଠାକୁ ଯାଉଥିଲା, ତା'ର କ'ଣ ହୋଇଥିଲା, ଏବେ ହୁଏତ ସ୍ପଷ୍ଟ ସେ ସବୁକଥା କହି ପାରିବ ନାହିଁ। ତା'ର ସ୍ମୃତି ଶକ୍ତି ହୁଏତ ନଷ୍ଟ ହୋଇ ଯାଇଛି। କିନ୍ତୁ ସତରେ କ'ଣ ସେ ତା'ର ପରିଚୟ ମନେ ପକେଇ ପାରୁନାହିଁ ?

ଆଖି ନଇଁ ଝିଅଟି ଆଡ଼କୁ ଚାହିଁଲା ଶଙ୍କର । କି ଅପରୂପ ରୂପ ! ଟ୍ରକରେ ଚଢ଼ି ଆଉ ପାଞ୍ଚଟା ଶସ୍ତା ଝିଅ ଭଳି ଏଣେ ତେଣେ ଘୂରି ବୁଲିବା ପରି ଝିଅ ଏ ହୋଇ ପାରେନା । ନିଶ୍ଚୟ ଏହା ପଛରେ କିଛି ରହସ୍ୟ ଅଛି ।

ଝିଅଟିର ଜୋତା ଯୋଡ଼ାକ କାଢ଼ି ଆସ୍ତେ ଆସ୍ତେ ତାକୁ ଉଠେଇ ବସେଇଲା ଶଙ୍କର । ତା'ପରେ ଅତି ସନ୍ତର୍ପଣରେ ତା'ଦେହର ପୋଷାକଟା ମୁଣ୍ଡବାଟେ ଗଳେଇ ଖୋଲି ପକାଇଲା । ତଳେ ଛିଟର ଏକ ସାଧାରଣ ଅଙ୍ଗାବରଣର ଆଢୁଆଳରୁ ତା'ର ସୁରଭିତ ଯୌବନର ପ୍ରତିଟି ରେଖା ପରିସ୍ଫୁଟ ହୋଇ ଉଠିଥିଲା । କେତୋଟି ମୁହୂର୍ତ୍ତ ସେଇ ଆଡ଼େ ଅନାଇ ରହିଲା ଶଙ୍କର । ତା'ର ମନେ ହେଲା ଏ ଯେପରି କୌଣସି ପ୍ରାଣମୟୀ ନାରୀ ଦେହ ନୁହେଁ । ଏ ହେଉଛି ଏକ ଅପରୂପ ଶିଳ୍ପ ସୁଷମାର ପ୍ରତିମୂର୍ତ୍ତି ।

ଆତ୍ମବିଲୁପ୍ତିର ସେଇ ସ୍ୱପ୍ନିଳ ମୁହୂର୍ତ୍ତରେ ଶଙ୍କର ବୁଝି ପାରି ନାହିଁ, ଅରିନ୍ଦମ କେତେବେଳେ ଆସି ପଛରେ ଠିଆ ହୋଇଛି । ଅର୍ଦ୍ଧନଗ୍ନ ସେଇ ଝିଅଟାକୁ ପାଇଜାମା ସାର୍ଟ ପିନ୍ଧାଇ ଦେବାକୁ ଯିବାବେଳକୁ ଅରିନ୍ଦମ କହି ଉଠିଲା : ଆରେ ରହ ରହ । ଆଉ ଟିକିଏ ମୁଁ ଦେଖିନିଏ, ଆହାରେ ଜିନିଷଟା ବଡ଼ ବଢ଼ିଆ କିନ୍ତୁ । ମାଲ୍‌ଟା ସମ୍ବନ୍ଧରେ ମୁଁ ଯାହା ଭାବିଥିଲି ବର୍ତ୍ତମାନ ଦେଖୁଛି ସେ ତା'ଠାରୁ ଆହୁରି ଅନେକ, ଅନେକ ସରସ ।

: ତମେ ବାହାରି ଯାଅ ଏଠୁ କହୁଛି । ଶଙ୍କର ଝିଅଟାକୁ ବିଛଣାରେ ଶୁଆଇ ଦେଉ ଦେଉ କ୍ରୁଦ୍ଧ ସ୍ୱରରେ କହିଲା ।

: ଯା ବାବ୍‌ବା, ତୁ ଏମିତି ରାଗୁଛୁ କାହିଁକି ? ଝିଅଟି ଆଡୁ ଆଖି ନ ଫେରେଇ ଦାନ୍ତ ନିକିଟି ହସିଲା ଅରିନ୍ଦମ । କହିଲା, ତୁ ଭାବିଛୁ ଏକା ଏକା ସବୁ ମଜା ଲୁଟିବୁ ! ଧର ମୁଁ ଯଦି ତୋତେ ଟିକିଏ ସାହାଯ୍ୟ କଲି, ସେଥିରେ ତୋର ଆପତ୍ତି କରିବାର କ'ଣ ଅଛି ? ଶଙ୍କର କିପରି ଏକ ଜ୍ୱଳନ୍ତ ଚାହାଣିରେ ଅରିନ୍ଦମ ଆଡ଼େ ଚାହିଁ କହିଲା: ତମେ ଏଠୁ ଯିବ ନା ନାହିଁ ?

ସାମାନ୍ୟ ଇତସ୍ତତଃ କରି ଦୁଇ କାନ୍ଧ ହଲେଇ ହସିଲା ଅରିନ୍ଦମ । କହିଲା : ବେଶ୍, ମୁଁ ଆଜି ବାହାରି ଯାଉଛି । ଯେତେଦିନ ସେ ସୁସ୍ଥ ନ ହୋଇଛି, ସେତେଦିନ ତା' ଖବର ଅନ୍ତର ତୁ ବୁଝୁଥା । ତା'ପରେ ନ'ହେଲେ ମୁଁ ମୋର ଦଖଲ ବୁଝିନେବି । ସେତେବେଳେ କୌଣସି ବାଧା ବନ୍ଧନ ମୁଁ ମାନିବି ନାହିଁ। ତୁ ଦେଖିବୁ ସେଇ ରସକଦମ୍ବଟିଠାରୁ ମୁଁ କିମିତି ମଜା ଲୁଟୁଛି ।

ଏହା ଭିତରେ ପ୍ରାୟ ଏକ ସପ୍ତାହ କଟି ଯାଇଛି । ଏହି ସପ୍ତାହକ ମଧ୍ୟରେ ଶଙ୍କର ନିଜ ହାତରେ ତା' କୃଷିଫାର୍ମର ସମସ୍ତ କାର୍ଯ୍ୟକ୍ରମ କରିବା ଛଡ଼ା ଲିସାର ସେବା ଶୁଶ୍ରୂଷାଠାରୁ ଆରମ୍ଭ କରି ଖୋଇବା ପେଇବା ସମସ୍ତ କାର୍ଯ୍ୟ ତାକୁ କରିବାକୁ ହୋଇଥାଏ । ଅରିନ୍ଦମ ଟିକିଏ ହେଲେ ସାହାଯ୍ୟ କରିବାର ମନବୃତ୍ତି ଦେଖାଏ ନାହିଁ । ବରଂ ଅଧିକାଂଶ ସମୟରେ ପାହାଡ଼ ଉପରେ ଗୋଟିଏ ଉଚ୍ଚ ଜାଗାରେ ବସି ସେ ରାସ୍ତା ଆଡ଼କୁ ଚାହିଁ ବସିଥାଏ । ମନେହୁଏ ଯେପରି ସେ ଆତଙ୍କିତ ହୋଇ କାହାର ଆଗମନ ପଥକୁ ପ୍ରତୀକ୍ଷା କରି ରହିଛି । ତିନି ଚାରିଦିନ ଏହିପରି କଟିଯିବା ପରେ ଅରିନ୍ଦମ ମଧ୍ୟ ଧୀରେ ପ୍ରକୃତିସ୍ଥ ହୋଇ ଆସିଲା । ବ୍ୟବହାରଟା ମଧ୍ୟ ବଦଳି ଯାଇ ହୃଦ୍ୟତାପୂର୍ଣ୍ଣ ମନେ ହେଲା । କିନ୍ତୁ ଅରିନ୍ଦମ ତା' ଜିଦ୍ ଛାଡ଼ିଲା ନାହିଁ। ଯେତେଦିନ ପର୍ଯ୍ୟନ୍ତ ସେ ଏଠାରେ ଅଛି, ଶଙ୍କର ଜାଗା ଛାଡ଼ି ଅନ୍ୟ କୁଆଡ଼େ ଯାଇ ପାରିବ ନାହିଁ। ପରିସ୍ଥିତି ବିଚାର କରି ଶଙ୍କର କଥାମାନି ଚଳୁଥିଲା ।

ଲିସା ଶଙ୍କର ଘରଟି ଅଧିକାର କରି ଥିବାରୁ ଅନ୍ୟ ଘରଟିରେ ଦୁଇଭାଇ ଏକତ୍ର ରାତ୍ରିଯାପନ କରୁଥିଲେ । ଅରିନ୍ଦମ କିନ୍ତୁ ରାତିରେ ଆଦୌ ସୁଖ ନିଦ୍ରାରେ ଶୋଇ ପାରୁ ନଥିଲା । ସେ ଏପରି ସ୍ନାୟବିକ ଦୁର୍ବଳତା ଭୋଗୁଥିଲା ଯେ, ବାହାରେ କେଉଁଠି ଟିକିଏ

ମାତ୍ର ଖଡ଼ ଖାଡ଼ ହେବାକ୍ଷଣି ଅରିନ୍ଦମ ଚମକି ଉଠୁଥିଲା ଏବଂ ବିଛଣାରେ ଉଠି ବସୁଥିଲା ।

ଲିସା କିନ୍ତୁ ଦ୍ରୁତ ଆରୋଗ୍ୟ ଲାଭ କରି ଚାଲିଥିଲା । ପ୍ରଥମ ଦୁଇତିନି ଦିନ ଖୁବ୍ ଅସୁସ୍ଥ ଥିଲା ଲିସା । ତା'ପରେ ଶଙ୍କରର ଅକ୍ଳାନ୍ତ ସେବା ଶୁଶ୍ରୁଷା ଫଳରେ ଦ୍ରୁତ ଶକ୍ତି ସଞ୍ଚୟ କରିବାକୁ ଲାଗିଲା । କ୍ଷତସ୍ଥାନ ଗୁଡ଼ିକ ମଧ୍ୟ ଧୀରେ ଧୀରେ ଶୁଖି ଆସିଲା । କିନ୍ତୁ ଦୁର୍ଘଟଣା ପରଠାରୁ ଲିସାର ମନଟା କିପରି ସ୍ମୃତିହୀନତା ଓ ଶୂନ୍ୟତାରେ ରିକ୍ତ ହୋଇପଡ଼ିଥିଲା । ପୂର୍ବାପର ଘଟଣା, କେଉଁଠୁ ସେ ଆସିଛି, ନିଜେ ସେ କିଏ ଏସବୁ କଥା କିଛି ସେ ମନେ ପକାଇ ପାରୁ ନଥିଲା । ଶଙ୍କର ପ୍ରତି ତା'ର କିପରି ଏକ ଆକର୍ଷଣ ସୃଷ୍ଟି ହୋଇ ଯାଇଥିଲା । ଦିନ ଯେତେ ଗଡ଼ିବାକୁ ଲାଗିଲା ଶଙ୍କର ପ୍ରତି ତା'ର ସେତେ ସରଳ ବିଶ୍ୱାସ ଜନ୍ମିବାକୁ ଲାଗିଲା । ନାରୀର ସ୍ୱାଭାବିକ ଦୂରତ୍ୱ ଦୂରେଇ ଯାଇ ଏକ ବିଚିତ୍ର ଅନ୍ତରଙ୍ଗ ସଂପର୍କ ଗଢ଼ି ଉଠିଲା ଦୁହିଙ୍କ ମଧ୍ୟରେ ।

ଶଙ୍କର ସବୁଦିନ ଟିକିଏ ଲଜ୍ଜାଶୀଳା ବିଶେଷ କରି ଝିଅମାନଙ୍କ ସଂପର୍କରେ ସେ ସବୁବେଳେ ଦୂରେଇ ରୁହେ । କିନ୍ତୁ ଲିସା ଯେତେଦିନ ଅସୁସ୍ଥ ଥିଲା ଶଙ୍କର ତା'ର ସେବା ଶୁଶ୍ରୁଷା କରିଥିଲା ଅତି ସରଳ ଭାବରେ, ନିଜର ଭଉଣୀର ସେବା କଲାପରି । କିନ୍ତୁ ଧୀରେ ଲିସା ଯେତେବେଳେ ସୁସ୍ଥ ହୋଇ ଆସିଲା ଏବଂ ଶଙ୍କର ଅନୁଭବ କଲା ଲିସା ମନରେ ତା'ପ୍ରତି ପ୍ରେମଭାବ ଜାଗ୍ରତ ହୋଇଛି, ସେତେବେଳେ ଶଙ୍କର ଦେହ ମନରେ ଜଡ଼ତା ପ୍ରବେଶ କଲା । ସେ ଭାବି ପାରୁ ନଥିଲା, କିପରି ପରିସ୍ଥିତିର ମୁକାବିଲା କରିବ ।

ବିଛଣା ଛାଡ଼ି ଉଠିବା ପରଠାରୁ ଲିସା ସବୁବେଳେ ଶଙ୍କରକୁ ଚାହିଁଲା । ତା'ର ଇଚ୍ଛା ଶଙ୍କର ସବୁବେଳେ ତା' ପାଖେ ପାଖେ ରହୁ, ତା' ଚାରିପାଖରେ ଘୂରିବୁଲୁ । ଶଙ୍କର କ୍ଷଣକ ପାଇଁ ଅନ୍ତର ହୋଇଗଲେ ବି ଲିସାକୁ କିପରି ଅସୁଖୀ ମନେ ହେଉଥିଲା । ଶଙ୍କରକୁ ଘେରି ଲିସାର ଜୀବନ ଚକ୍ର ଆବର୍ତ୍ତିତ ହୋଇ ଉଠୁଥିଲା ।

ଶଙ୍କର ଲିସାର ମାନସିକ ଇତିହାସ ସମ୍ବନ୍ଧରେ ଅଜ୍ଞ ଥିବାରୁ ଲିସାର ଆଚରଣରେ ତା'ର ମନେ ହେଉଥିଲା, ହୁଏତ ମୁଣ୍ଡରେ ଆଘାତ ପାଇ ଲିସାର କେବଳ ସ୍ମୃତିଶକ୍ତି ଲୋପ ହୋଇ ନାହିଁ, ସେ ତା'ର ସ୍ୱଭାବିକ ରକ୍ଷଣଶୀଳତାର ମନୋଭାବକୁ ଭାଙ୍ଗିଦେଇ କିପରି ଏକ ଶିଶୁ ସୁଲଭ ମନୋବୃତ୍ତିରେ ପରିଣତ କରି ଦେଇଛି । ଶଙ୍କର ନିଜକୁ ବୁଝାଇଲା- ନା ତା' ପ୍ରେମ ନିବେଦନରେ ସଜାଗ ହେବାର ବା ସୁଯୋଗ ନେବାର ପ୍ରଶ୍ନ ଉଠୁନାହିଁ, ଏଇଟା ଏକ ସାମୟିକ ବିହ୍ୱଳତା ମାତ୍ର, ସ୍ମୃତି ଶକ୍ତି ଫେରି ପାଇବା ପରେ ପରେ ତା'ର ଏ ବିହ୍ୱଳତା ମିଳେଇ ଯିବ ।

ତେଣେ ଅରିନ୍ଦମ ଚିନ୍ତା କରୁଥିଲା । ଏଥର ଝିଅଟାକୁ ଅତି ସହଜରେ ଶିକାର କରି ହେବ ହୁଏତ । ପ୍ରାୟ ସବୁବେଳେ ତା' ମନରେ ସେଇ ଗୋଟାଏ ଚିନ୍ତା ପୂରି ରହିଥିଲା । ଯଦିଓ ଲିସାର ଏକମାତ୍ର ଧ୍ୟାନ ଧାରଣା ଶଙ୍କର । ଅରିନ୍ଦମ ପ୍ରତି ତା'ର ତିଳେ ହେଲେ ଆସକ୍ତି ନାହିଁ । ତଥାପି ସୁବିଧା ସୁଯୋଗ ପାଇଲେ ତାକୁ ସେ ଆତ୍ମସମର୍ପଣ କରିବା ପାଇଁ ବାଧ୍ୟ କରେଇବ ।

ଦିନେ ସକାଳେ ଜଳାଶୟ ନିକଟରେ ଲିସା ବୁଲୁଥିଲା । ଶଙ୍କର ଘର ଭିତରେ ନିଜ କାମରେ ବ୍ୟସ୍ତ ଥିଲା । ସେଇ ସୁଯୋଗରେ ଅରିନ୍ଦମ ପହଞ୍ଚିଲା ଯାଇ ଲିସା ପାଖରେ ।

: କି ସୁନ୍ଦରୀ, ଏଠି କ'ଣ କରୁଛ ? ସକାଳର କୋମଳ ସୂର୍ଯ୍ୟ କିରଣରେ ଦୀପ୍ତିମୟୀ ମନେ ହେଉଥିଲା ଲିସାକୁ । ଲିସାର ଅପରୂପ ସୌନ୍ଦର୍ଯ୍ୟ ଅରିନ୍ଦମ ପ୍ରାଣରେ ଆଲୋଡ଼ନ ସୃଷ୍ଟି କରିଥିଲା ।

: ଏମିତି ବୁଲି ବୁଲି ପ୍ରକୃତିର ସୌନ୍ଦର୍ଯ୍ୟ ଦେଖୁଛି । ସ୍ୱାଭାବିକ ଗଳାରେ ଉତ୍ତର ଦେଲା ଲିସା । ପ୍ରଶ୍ନକଲା, ଶଙ୍କର କାହିଁ ? ତୁମେବା ଏଠାକୁ କାହିଁକି ଆସିଛ ?

: ମୁଁ ତୁମ ସହିତ ଆଳାପ କରିବାକୁ ଆସିଛି । ଅରିନ୍ଦମ ଆଉ ଟିକିଏ ଆଗେଇ ଗଲା ପାଖକୁ । କହିଲା, ଏଇତ ଆମେ ପରସ୍ପରକୁ ଚିହ୍ନି ନେବାର ସମୟ ।

କିନ୍ତୁ ମୁଁ ଶଙ୍କରକୁ ଖୋଜୁଛି ଯେ...ଲିସା ଅରିନ୍ଦମକୁ କଟେଇ ଆଗେଇ ଯାଉଥିଲା ।

: ଶଙ୍କର ! ଧେତ୍ ତା'କଥା ବାଦ୍ ଦିଅ। ଅରିନ୍ଦମ ଲିସାର ପଥ ଓଗାଳି କହିଲା, ଶୁଣ, ତମକୁ ମୋତେ ଭୀଷଣ ଭଲ ଲାଗେ । ତମ ପାଇଁ ମୁଁ ସବୁକିଛି କରିବାକୁ ପ୍ରସ୍ତୁତ । ତା'ର ଦୁଇବାହୁକୁ ଧରି ନିଜ ପାଖକୁ ଟାଣି ଆଣିଲା ଅରିନ୍ଦମ । ଲିସା ମୋଟେ ବାଧା ଦେଲାନାହିଁ, ଉତ୍ସାହ ବି ଦେଖେଇଲା ନାହିଁ। ଏକ ଦୃଷ୍ଟିରେ ଶଙ୍କରର ଘର ଆଡ଼କୁ ଅନାଇ ରହିଲା । ଅରିନ୍ଦମ ତା' ମୁହଁରେ ଲିସାର କୋମଳ କେଶର ସ୍ପର୍ଶ ଅନୁଭବ କରୁଥିଲା । ତା' ନିବିଡ଼ ଆଲିଙ୍ଗନ ଭିତରେ ଲିସାର ଶରୀର-କିନ୍ତୁ ସେଥିପାଇଁ ତା'ର କିଛି ଅନୁଭବ ନାହିଁ । ଗତ ତିନି ସପ୍ତାହ ହେବ ସେ ନାରୀ ସଙ୍ଗରୁ ବଞ୍ଚିତା ହାତ ମଧ୍ୟରେ ଉଷ୍ଣ ନାରୀ ଶରୀର ମିଳିଲେ ହିଁ ଯଥେଷ୍ଟ, ଉଦାସ ଅନିଚ୍ଛା ପାଇଁ ତା' ମୁଣ୍ଡ ବଥାଏନି ।

: ମତେ ଛାଡ଼ି ଦିଅ, ମୁଁ ଶଙ୍କରକୁ ଖୋଜିବାକୁ ଯିବି ।

: ଶଙ୍କରତ କୁଆଡ଼େ ପଳାଉନି, ଗମ୍ଭୀର ଗଳାରେ କହି । ଲିସାକୁ ତା'ଆଡ଼କୁ ବଙ୍କେଇ ଟାଣି ଆଣିଲା । ତା'ର ବିଷର୍ଣ୍ଣ ଶୂନ୍ୟ ଦୃଷ୍ଟି ଆଡ଼େ ଚାହିଁ ଲିସା ମୁହଁରେ ମୁହଁ ରଖିଲା ଅରିନ୍ଦମ । କିନ୍ତୁ କୌଣସି ଭାବାନ୍ତର ସୃଷ୍ଟି ହେଲା ନାହିଁ ଲିସାର । ସେଆଡ଼େ ଦୃଷ୍ଟି ନ ଦେଇ ଲିସାକୁ ବାହୁବନ୍ଧନରେ ଆବଦ୍ଧ କଲା ଅରିନ୍ଦମ । ସର୍ବ ଶରୀରରେ ତା'ର ନିଦାରୁଣ ଆଲୋଡ଼ନ । ଲିସାକୁ ଆହୁରି ଟିକେ ବଙ୍କେଇ ଆଲିଙ୍ଗନର ବନ୍ଧନ ସୁଦୃଢ଼ କରି ତା'ଶରୀରରେ ହାତ ରଖିଲା ଅରିନ୍ଦମ ।

ଠିକ୍ ସେତିକିବେଳେ ସେ ବାଧା ପାଇଲା ପଛରୁ । କିଏ ଯେପରି ଦୁଇ ହାତରେ ଟାଣି ଧରିଲା ତାକୁ । ଏକ ବଜ୍ର ନିର୍ଘୋଷ ଆଦେଶ ଶୁଣି ପଛକୁ ବୁଲି ଚାହିଁ ଶଙ୍କରର କ୍ରୋଧିତ ମୁଖ ଦେଖିଲା ସେ । ଅରିନ୍ଦମ ପିସ୍ତଲ ବାହାର କରିବା ଆଗରୁ ଶଙ୍କରର ସୁତୀବ୍ର ଘୁଷି ଖାଇ ପାଇନ୍ ଗଛ ସେ ପାଖରେ ଓଲଟି ପଡ଼ିଲା ଅରିନ୍ଦମ ।

: ଆଉ କେବେ ଏପରି ଦୁଃସାହସ କଲେ ବେକ ଭାଙ୍ଗି ଦେବି ଜାଣିଥା । ଗୋଟାଏ ହାତରେ ଲିସାକୁ ଧରି ସାମ୍ନାକୁ ଟାଣି ଆଣି ଶଙ୍କର କହିଲା, ଚାଲ ଆମେ ଘରକୁ ଯିବା ।

: ତାକୁ ତମେ ମାରିଲ କାହିଁକି ? ଶଙ୍କର ସହିତ ପାଦ ମିଳେଇ ଚାଲୁ ଚାଲୁ ଖୁସି ମନରେ ପ୍ରଶ୍ନ କଲା ଲିସା । ତା' ବ୍ୟବହାରରେ ମୁଁ କିଛି ମନେ କରିନି ।

: ସେ ତୁମକୁ ଭୟ ଦେଖାଉ, ଏହା ମୁଁ ଚାହେନି, ଶଙ୍କର ଗମ୍ଭୀର ଗଳାରେ କହିଲା ।

: ମୁଁ କିନ୍ତୁ ଭୟ କରିନି । ତେବେ ତାକୁ ମୋତେ ଭଲ ଲାଗେନି । ତମକୁ ଯଦି ଭଲ ନ ଲାଗେ ତେବେ ତାକୁ ମୁଁ ଆଉ କେବେ ମୋ ମୁହଁରେ ମୁହଁ ରଖିବାକୁ ଦେବିନି । କିନ୍ତୁ ତୁମେ ସେଇଆ ଚାହଁକି ନାହଁ ମୁଁ ଜାଣେନି । ଲିସା କହିଲା ।

ଲିସାର ଯୁକ୍ତି ଶୁଣି ଅବାକ୍ ହୋଇଗଲା ଶଙ୍କର ।

: ନା ନା, ତା'ର ତୁମ ପ୍ରତି ସେପରି ବ୍ୟବହାର ମୁଁ ପସନ୍ଦ କରେ ନାହିଁ ।

: ଠିକ୍ ଅଛି । ଲିସା ଶଙ୍କରର ହାତଧରି ଘରଆଡ଼କୁ ଆଗେଇ ଚାଲିଲା । ଦୁହେଁ ଅଦୃଶ୍ୟ ହେବାଯାଏ ଅରିନ୍ଦମ ତାଙ୍କରି ଆଡ଼େ ଚାହିଁ ରହିଥିଲା । ତା'ପରେ ଉଠିଲା । ଲିସାର ଏପରି ସହଜ ଆତ୍ମସମର୍ପଣରେ ସେ ବିଭୋର ହୋଇ ପଡ଼ିଥିଲା ।

ସେଦିନ ରାତିରେ ଶଙ୍କର ଯେତେବେଳେ ତା'ଶୋଇବା ଘରର କବାଟ ବନ୍ଦକଲା, ଅରିନ୍ଦମ ତା'ଆଗରୁ ବିଛଣାରେ ଶୋଇ ପଡ଼ିଥିଲା । ଶଙ୍କରକୁ ଘରେ ପଶିବାର ଦେଖି, ତା' ରାଗ ମୁଣ୍ଡକୁ ଚଢ଼ିଗଲା । ହଠାତ୍ କ'ଣ କରିବ ନ କରିବ ସ୍ଥିର କରି ନପାରି ଚଢ଼ା ଗଳାରେ କହିଲା : ଦେଖ୍ ଶଙ୍କର। ଘୁଷି ମୋତେ ବି ଚଳେଇ ଆସେ । ତତେ ସାବଧାନ କରି ଦେଉଚି ତୋ ଘୁଷି ଫୁଷି ଟିକିଏ ସମ୍ଭାଳି ରଖ । ନହେଲେ ସିଧା ସଳଖ ତୋ ପେଟରେ ଗୁଳି ଭରିଦେବି ।

: ତା'ହେଲେ ଲିସା ପିଛା ତମେ ଛାଡ଼ିଦିଅ । ଶଙ୍କର ବିଛଣା ଉପରେ ବସୁ ବସୁ କହିଲା, ତମେ ଜାଣ ଝିଅଟା ସ୍ୱାଭାବିକ ନୁହେଁ । ସେଇ ଆକ୍ସିଡେଣ୍ଟ ପରେ ମୁଣ୍ଡ ତା'ର ବିଗିଡ଼ି ଯାଇଚି । ବର୍ତ୍ତମାନ ସେ ଗୋଟାଏ ଶିଶୁପରି ଅବୋଧ । ତୁମେ ତା' ଉପରେ ନଜର ଦିଅନାହିଁ । ଏପରି ଝିଅମାନଙ୍କ ସହିତ ଫୁର୍ତ୍ତି କରିବା ଅପରାଧ ।

: ଆହା ହା । ତୁ ଦେଖୁଛି ଧର୍ମପୁତ୍ର ଯୁଧିଷ୍ଠିର । ମୁଁ କିନ୍ତୁ ବାବୁ ତୋ ଧର୍ମ କର୍ମର ମାହାତ୍ମ୍ୟ ବୁଝେ ନାହିଁ । ମୋ ଥିଓରୀ ହେଲା ଅନ୍ଧକାରରେ ସବୁଝିଅ ସମାନ । ସେ କାଳୀ ହେଉ କି ଗୋରୀ ହେଉ, ପାଗିଳୀ ହେଉ କି ସ୍ୱାଭାବିକ ହେଉ । ତା'ଛଡ଼ା ତୁ'ତ ଜାଣୁ ଝିଅମାନଙ୍କୁ ମୁଁ ଖୁବ୍ ପସନ୍ଦ କରେ ।

: ବୁଝିଲି । କିନ୍ତୁ ଲିସା ଆଡ଼କୁ ହାତ ବଢ଼େଇଲେ ଭଲ ହେବନାହିଁ କହିଦେଉଚି ।

: ଅଯଥା ଆସ୍ଫାଳନ କରନାହିଁ ଶଙ୍କର । ମୋତେ ତ ତୁ ଚିହ୍ନୁ । ତା'ଛଡ଼ା ତତେ ଯଦି ମୁଁ ଏଠି ଖୁନ୍ କରି ଫୋପାଡ଼ି ଦିଏ, କେହି କିଛି ବୁଝି ପାରିବେ ନାହିଁ । ତେଣୁ ମୋ ଇଙ୍ଗିତଟା ବି ତୋର ବୁଝିବା ଉଚିତ ।

ଶଙ୍କର ଜୋତା ଯୋଡ଼ାକୁ ଲାଥିମାରି ଦୂରକୁ ଫିଙ୍ଗିଦେଇ କହିଲା : କିନ୍ତୁ ମୋର ସେଇ ଗୋଟାଏ କଥା, ତୁମେ ଲିସା ଆଡ଼େ ହାତ ବଢ଼ାଅ ନାହିଁ ।

: କିନ୍ତୁ ଝିଅଟା ଯେ ମୋତେ ଭଲପାଏ । ଏମିତିକି ଚୁମ୍ବନ ପର୍ଯ୍ୟନ୍ତ ମୋତେ ଦେଇଛି । ଆଉ ସେତେବେଳେ ତୁ ଯଦି ନଆସି ଥାଆନ୍ତୁ, ତା'ହେଲେ...

: ମୁଁ ତମ ସମ୍ବନ୍ଧରେ ଆଉ କିଛି ଜାଣିବାକୁ ଚାହେ ନାହିଁ । ମୋର ସେହି ଗୋଟାଏ କଥା। ଲିସା ଆଡ଼େ ତୁମେ ହାତ ବଢ଼ାଇଲେ ମୁଁ ତୁମକୁ ଛାଡ଼ିଦେବି ନାହିଁ ।

ଦୁହେଁ ଦୁହିଁଙ୍କ ମୁହଁକୁ ଅନେକ ସମୟଯାଏ ନୀରବରେ ଅନାଇ ରହିଲେ । ଶଙ୍କର ବିଛଣା ଉପରେ ଶୋଇପଡ଼ି ଶାନ୍ତ ସ୍ୱରରେ କହିଲା : କିନ୍ତୁ ତୁମେ ଏତେ ଭୟ କରୁଛ

କାହାକୁ ? କିଏ ତମ ପଛରେ ଲାଗିଛି ?

: ଭୟ ? ଅରିନ୍ଦମ ହଠାତ୍ ଚମକି ଉଠି କହିଲା, ଭୟ ମୁଁ କାହାରିକୁ କରେ ନାହିଁ ।

: କିନ୍ତୁ ମୁଁ ଜାଣେ ତୁମେ କାହାକୁ ଭୟ କରୁଛ ଏବଂ ତା'ରି ଭୟରେ ତୁମେ ମାଛି ପରି ଏଣେ ତେଣେ ଉଡ଼ି ବୁଲୁଛ। କାହାକୁ ତୁମେ ଭୟ କରୁଛ, ପୁଲିସ୍ ?

ହଠାତ୍ ଅରିନ୍ଦମ ତା' ରିଭଲଭରଟା ବାହାର କରି ଗର୍ଜନ କରି ଉଠିଲା ଖବରଦାର । ତୁ ଚୁପ୍ କର। ନହେଲେ ତୋତେ ଖୁଣ୍ କରିଦେବି ।

ହସି ଉଠିଲା ଶଙ୍କର । କହିଲା : ମୁଁ ଜାଣେ ତୁମେ ମୋତେ ଖୁଣ୍ କରି ପାରିବ ନାହିଁ । କାରଣ ତୁମେ ଜାଣି ସାରିଛ ଯେ ତମ ବିରୁଦ୍ଧରେ ଗୋଟାଏ କିଛି ଘଟିବାକୁ ଯାଉଛି । ଯଦି କିଛି ଘଟେ ସେତେବେଳେ ମୁଁ ତମକୁ ସହାୟ ହେବି ।

: ହୁଁ, ତୁ ସେଇ ଆନନ୍ଦରେ ଥା । ଅରିନ୍ଦମ ଆଉ କଥା ନ ବଢ଼େଇ ବିଛଣାରେ ଶୋଇ ପଡ଼ିଲା । କହିଲା, ମୁଁ ଏଥର ଶୋଇଲି ।

ଅନେକ ବେଳଯାଏ ଏପାଖ ସେପାଖ ହୋଇ ଆଖିକୁ କିନ୍ତୁ ନିଦ ଆସିଲା ନାହିଁ ଅରିନ୍ଦମର । ସେ ମୁଣ୍ଡ ଉଠେଇ ଦେଖିଲା ଶଙ୍କର ନିଶ୍ଚିନ୍ତରେ ଶୋଇ ଗଲାଣି ।

ଏଇତ ସୁଯୋଗ । ସେ ଯଦି ଶଙ୍କରର ଅଜାଣତରେ ଲିସା ପାଖକୁ ଯାଇପାରେ, ତା'ହେଲେ ଲିସାକୁ ସେ କାବୁ କରି ପାରିବ । ନା, ଏ ସୁଯୋଗ ହରେଇବାର ନୁହେଁ ।

ଧୀରେ ନିଃଶବ୍ଦରେ ବିଛଣାରୁ ଉଠିଲା ଅରିନ୍ଦମ । ଚାହିଁଲା ଶଙ୍କର ଆଡ଼କୁ । ସେ ନିଘୋଡ଼ ନିଦରେ ଶୋଇ ଯାଇଛି । ପାଦ ଚିପି କାବାଟ ଖୋଲି ବାହାରକୁ ବାହାରିଗଲା, ଦରଜାଟା ଟାଣି ବନ୍ଦକରି ଦେଲା ବାହାରୁ । କି ଆନନ୍ଦ ଅରିନ୍ଦମର। ସେଦିନ ଲିସା ତାକୁ ଚୁମ୍ବନ କରିବାକୁ ପ୍ରଶ୍ରୟ ଦେଇଥିଲା । ଆଜି...

ଲିସାର ଘର ଶେଷ ମୁଣ୍ଡରେ । ଚାରିଆଡ଼ ନିସ୍ତବ୍ଧ । ପାଦ ଚିପି ଚିପି ଲିସା ଦୁଆରେ ଆସି କାନ ଡେରିଲା ଅରିନ୍ଦମ । ନା, ସୋର ଶବ୍ଦ କିଛି ନାହିଁ । ଘରର ଦରଜା ଖୋଲି ସେ ଭିତରକୁ ପଶିଗଲା । ବିଛଣାରେ ଶୋଇଛି ଲିସା । ବାହୁ ଦୁଇଟି ସଂପୂର୍ଣ୍ଣ ଅନାବୃତ । ଜହ୍ନ ଆଲୁଅରେ ଲିସାର ମୁହଁଟିରେ ଫୁଟି ଉଠିଛି ଅପରୂପ ଲାବଣ୍ୟ ।

ଅରିନ୍ଦମର ପାଦ ଶବ୍ଦ ଶୁଣି ଅଳସ ଚାହାଣିରେ ଲିସା ଚାହିଁଲା ତା' ଆଡ଼େ । ସେ ଚାହାଣି ଥିଲା ଶାନ୍ତ, କମନୀୟ ।

: ତମେ ଏତେବେଳଯାଏ ଶୋଇନ ଲିସା । ଏଇବାଟେ ଯାଉଥିଲି, ଭାବିଲି ତୁମକୁ ଥରେ ଦେଖିଯାଏ । ଅରିନ୍ଦମ କଥା କହିଲାବେଳେ ଅନୁଭବ କରୁଥିଲା, ତା'ର ସମଗ୍ର ଦେହଟା ଯେପରି ଉତ୍ତାପରେ ଭରିଯାଇଛି । ଜିଭଟା ମୋଟା ହୋଇଯାଇଛି ।

କିଛି ଉତ୍ତର ଦେଲା ନାହିଁ ଲିସା । କେବଳ ଅନେଇ ରହିଥିଲା ଶାନ୍ତ ଦୃଷ୍ଟିରେ ।

: ମୋତେ ଦେଖି ତମେ ଡରି ଯାଇନ ତ ଲିସା ? ଅରିନ୍ଦମ ହସି ହସି ପଚାରିଲା ।

: ନା ନା, ମୁଁ ଜାଣିଥିଲି ତୁମେ ଆଜି ଆସିବ। ମୁଁ ଶୋଇ ଶୋଇ ସେଇ ସ୍ୱପ୍ନ ଦେଖୁଥିଲି। ଶାନ୍ତଗଳାରେ ଲିସା ଉତ୍ତର ଦେଲା ।

ଅରିନ୍ଦମ ଅବାକ୍ ଭଙ୍ଗୀରେ ତା' ଆଡ଼େ କିଛି ସମୟ ଅନାଇ ରହି କହିଲା ତା'ହେଲେ ତୁମେ ମୋର ଆଗମନ କାମନା କରୁଥିଲ ? ଲିସା ପାଖରେ ବିଛଣା ଉପରେ ବସି ପ୍ରଶ୍ନ କଲା ଅରିନ୍ଦମ ।

: ହଁ, ମୁଁ ଆଜି ସନ୍ଧ୍ୟାବେଳରୁ ତୁମର ଚାଲିଚଳଣ, ହାବଭାବରୁ ବୁଝି ପାରିଥିଲି ଆସିବ । ଶୀତଳ କଣ୍ଠରେ ଉତ୍ତର ଦେଲା ଲିସା ।

ସ୍ମିତ ହସି, ଲିସା ହାତ ଉପରେ ହାତ ରଖି ଅରିନ୍ଦମ କହିଲା ।

: ତୁମେ ଠିକ୍ କହିଛ ଲିସା । ଆଜି ଦିନସାରା ମୁଁ କେବଳ ତୁମରି କଥା ଭାବିଛି । ମୁଁ ଆଉଥରେ ତୁମକୁ ଚୁମ୍ବନ ଦେବାକୁ ଚାହେ ।

: ଶଙ୍କର କିନ୍ତୁ ତାହା ଚାହେଁ ନାହିଁ ।

: ସେ ଶୋଇଛି, କିଛି ଜାଣି ପାରିବ ନାହିଁ । ତା'ଛଡ଼ା ତୁମକୁ ତ ଭଲ ଲାଗୁଛି, ନୁହେଁ କି ?

ଲିସା ମୁହଁର ଖୁବ୍ ନିକଟରେ ଥିଲା ଅରିନ୍ଦମ ମୁହଁ । ଧୀରେ ଧୀରେ ଲିସାର ସ୍ତନ ଉପରେ ହାତ ରଖିଲା ସେ । ଲିସା କିଛି କହିଲା ନାହିଁ କିମ୍ବା ସଙ୍କୁଚିତ ହେଲାନାହିଁ । କେବଳ ଏକ ଶୂନ୍ୟ ଦୃଷ୍ଟିରେ ଚାହିଁଥିଲା ।

ଏଇଟା ଖୋଲିଦିଅ । ଲିସାର ରେଶମୀ ଜ୍ୟାକେଟଟାର ବୋତାମରେ ହାତଦେଇ କହିଲା ଅରିନ୍ଦମ । ତମେ ଭୟ କରନି ଲିସା । ଚିନ୍ତା କରନି ।

ଲିସା କିଛି ଉତ୍ତର ଦେବା ପୂର୍ବରୁ ଅରିନ୍ଦମ ତା' ଜ୍ୟାକେଟ୍‌ର ବୋତାମ ଗୁଡ଼ିକ ଟପାଟପ୍ ଖୋଲି ପକାଇଲା । ତା'ର ନଗ୍ନ ସ୍ତନ ଉପରେ ହାତ ଥାପି କହିଲା : ଆଃ, ତୁମେ କି ସୁନ୍ଦର, କି ମଧୁର !

ଅରିନ୍ଦମ ନିଜେ ବି ବୁଝି ପାରୁ ନଥିଲା ସେ କ'ଣ କହୁଛି । ଲିସା ବି କିପରି ଏକ ବିଚିତ୍ର ଦୃଷ୍ଟିରେ ଅରିନ୍ଦମ ଆଡ଼େ ଅର୍ଥହୀନ ଭାବରେ ଚାହିଁ ଶୁଣିଯାଉଥିଲା ସବୁ କଥା । ଅରିନ୍ଦମ ଏଥର ଦୁଇ ହାତରେ ଲିସାକୁ ଭିଡ଼ି ଆଣିଲା ତା'ଆଡ଼କୁ । ଠିକ୍ ସେଇ ମୁହୂର୍ତ୍ତରେ କିପରି ଏକ ଧାତବ ହାସ୍ୟଧ୍ୱନିରେ ଚମକି ଉଠିଲା ଅରିନ୍ଦମ ।

ଏଥିରେ ହସିବାର କ'ଣ ଅଛି ? ଅରିନ୍ଦମ ଚଡ଼ା ଗଳାରେ ପ୍ରଶ୍ନ କଲା । ତା'ପରେ କ୍ଷୁଧାର୍ତ୍ତ ବ୍ୟାଘ୍ର ପରି ଲମ୍ଫ ପ୍ରଦାନ କଲା ଲିସା ଉପରକୁ ।

ଅରିନ୍ଦମର ନିବିଡ଼ ଆଲିଙ୍ଗନ ମଧ୍ୟରେ ଏକ ସଂକ୍ଷିପ୍ତ ମୁହୂର୍ତ୍ତ ପାଇଁ ନିଷ୍ପନ୍ଦ ହୋଇ ରହିଯାଇଥିଲା ଲିସା । ପର ମୁହୂର୍ତ୍ତରେ ତା'ର ଇସ୍ପାତ କଠିନ ହାତରେ ଅରିନ୍ଦମର ବେକ ଓ କାନ୍ଧ ଆମ୍ପୁଡ଼ି ତା'ର ସୁତୀକ୍ଷ୍ଣ ଦାନ୍ତ ବସେଇ ଦେଲା ଅରିନ୍ଦମର ଓଠ ଉପରେ ।

ଅନ୍ୟ ଘରେ ହଠାତ୍ ନିଦ ଭାଙ୍ଗିଗଲା ଶଙ୍କରର । ସେ ବିଛଣା ଉପରେ ଅରିନ୍ଦମକୁ ନ ଦେଖିପାରି ଏଣେ ତେଣେ ଚାହୁଁଥିଲା । ଗଲା କୁଆଡ଼େ ? ତେବେ କ'ଣ....

ଠିକ୍ ସେଇ ମୁହୂର୍ତ୍ତରେ ସେ ଏକ ଭୟାର୍ତ୍ତ ଆର୍ତ୍ତନାଦ ଶୁଣି ପାରିଲା ପାଖ ଘରୁ । କିଏ ଯେପରି ଚିତ୍କାର କରି କହୁଛି: ବଞ୍ଚାଅ, ବଞ୍ଚାଅ ଶଙ୍କର, ଶୀଘ୍ର ଆସି ମୋତେ ବଞ୍ଚାଅ ।

ଏ ଯେ ଅରିନ୍ଦମର କଣ୍ଠସ୍ୱର । ଶଙ୍କର ଦରଜା ଖୋଲି ଛୁଟି ଯାଉଥିଲା ପାଖ ଘରକୁ । କିନ୍ତୁ ବାରଣ୍ଡାରେ ଭେଟ ହୋଇଗଲା ଅରିନ୍ଦମ ସହିତ । କିନ୍ତୁ ଅରିନ୍ଦମର ଏ କି ବିଭତ୍ସ ମୂର୍ତ୍ତି ! ଦୁଇ ହାତ ମୁଠାରେ ମୁହଁ ଢାଙ୍କି ଅରିନ୍ଦମ ଛୁଟି ଆସୁଛି ତା'ରି ଆଡ଼କୁ । ଆଙ୍ଗୁଳି ଫାଙ୍କରୁ ଟପ୍ ଟପ୍ ହୋଇ ଝରି ପଡୁଚି ଲାଲ ରକ୍ତ ।

କ'ଣ, ହେଲା କ'ଣ ? ହେମ-ଶୀତଳ କଣ୍ଠରେ ପ୍ରଶ୍ନକଲା ଶଙ୍କର ।

: ମୋ ଆଖି । ସେ ଝିଅଟା ମୋର ଆଖି ଖୋଳି ନେଇଛି । ମୋତେ ଅନ୍ଧ କରି ଦେଇଛି । ମୋତେ ବଞ୍ଚାଅ ଶଙ୍କର । ମୋତେ...

: ତମେ ତା'ଘରେ ଯାଇ କ'ଣ କରୁଥିଲ ? ଶଙ୍କର ଉତ୍ତରକୁ ଅପେକ୍ଷା ନ କରି ଅରିନ୍ଦମକୁ ବାରନ୍ଦାରେ ଗୋଟିଏ କୋଣକୁ .ଠିଆ କରି ଦେଇ ଛୁଟିଗଲା ଲିସା ଘରକୁ ।

...କିନ୍ତୁ, ସେତ ଏପରି ଆଶା କରି ନଥିଲା । ବାରଣ୍ଡା ଉପରେ ଶିଡ଼ିରେ ଠିଆ ହୋଇଛି ଲିସା । ଅଣ୍ଟା ପର୍ଯ୍ୟନ୍ତ ତା'ର ଉର୍ଦ୍ଧ୍ୱାଙ୍ଗ ସଂପୂର୍ଣ୍ଣ ଅନାବୃତ । ଜହ୍ନ ଆଲୁଅରେ ତା' ଆଖି ଦିଟା ଚକ୍ ଚକ୍ କରୁଚି ବିରାଡ଼ି ଆଖିଭଳି । ଅବାକ୍ ହୋଇ ଶଙ୍କର ଅନେଇ ରହିଲା ସେଇ ଆଡ଼େ । ଏପରି ବନ୍ୟସୌନ୍ଦର୍ଯ୍ୟ ଏହା ଆଗରୁ କେବେ ସେ ଦେଖି ନଥିଲା । ଶୁଭ୍ର ଜ୍ୟୋସ୍ନାରେ ମନେ ହେଉଥିଲା ସେ ଗୋଟିଏ ବ୍ରୋଞ୍ଜ ମୂର୍ତ୍ତି । ଘର ଦିଆଲ ଘନ ଛାୟାରେ ପ୍ରତିଫଳିତ ହେଉଥିଲା ତା' ମସୃଣ ତ୍ୱକର ଶୀତଳ ଲାବଣ୍ୟ । ଦୁଇ ସ୍ତନର ବଙ୍କିମ ରେଖା, ବଣ ବିରାଡ଼ି ପରି ଉତ୍ତେଜିତ ଦେହ ଭଙ୍ଗିମା- ଏସବୁ ଦେଖି ଶଙ୍କର ବିଚଳିତ ହୋଇଥିଲେ ବି ଏକ ଆଶ୍ଚର୍ଯ୍ୟ ଉତ୍ତେଜନା ଅନୁଭବ କରୁଥିଲା । ଠିକ୍ ପର ମୁହୂର୍ତ୍ତରେ ଲିସା ଶିଡ଼ି ଉପରୁ  ଡେଇଁପଡ଼ି, ତଳକୁ ଓହ୍ଲେଇ ଦଉଡ଼ିବାକୁ ଆରମ୍ଭ କରିଦେଲା ।

: ଲିସା, ଲିସା, ଫେରି ଆସ ଲିସା । ଶଙ୍କର ଲିସାର ପଛେ ପଛେ ଡାକ ଛାଡ଼ି ଦଉଡ଼ି ଥିଲା ।

କିନ୍ତୁ ଅଟକାଇ ପାରିଲା ନାହିଁ ଶଙ୍କର । ପାଇନ୍ ବଣ ଭିତରେ ଅଦୃଶ୍ୟ ହୋଇଗଲା ଲିସା । କ'ଣ କରିବ ସେ ଆଉ ! ମୁହୂର୍ତ୍ତେ ଦ୍ୱିଧାଗ୍ରସ୍ତ  ଭାବରେ ଠିଆ ହୋଇ ଫେରି ଆସିଲା ଅରିନ୍ଦମ ପାଖକୁ । ଅରିନ୍ଦମ ବିକଳ ଆର୍ତ୍ତନାଦ କରି ଚାଲିଛି ।

: କ'ଣ ଏମିତି ଗୋଟାଏ ହୋଇଛି ଯେ, ସେତିକିବେଳୁ ଚିତ୍କାର କରି ଚାଲିଛ । ବିରକ୍ତି ମିଶା ସ୍ୱରରେ ଶଙ୍କର ଅରିନ୍ଦମକୁ କହିଲା ।

ତୁ ମୋ ଆଡ଼େ ଭଲ କରି ଥରେ ଚାହିଁ ଦେଖ ଶଙ୍କର । ସେ ଟୋକୀଟା ମୋର ସର୍ବନାଶ କରି ଦେଇଛି । ମୋତେ ଅନ୍ଧ କରିଦେଇଛି । ଅରିନ୍ଦମ ସଙ୍ଗେ ସଙ୍ଗେ ହାତଦୁଇଟା କାଢ଼ି ଦେଲା ମୁହଁ ଉପରୁ ।

ଶଙ୍କର ଦୁଇହାତ ପଛେଇ ଆସିଲା । ଏ କି ଦୃଶ୍ୟ ସେ ଦେଖୁଛି ! ଅରିନ୍ଦମ ଦୁଇ ଆଖିରେ ରକ୍ତ ସମୁଦ୍ର । ନିଷ୍ଠୁର ଦୀର୍ଘ ନଖ ଆଘାତରେ ତା' କପାଳରୁ ଆଖିଡୋଳା ବାହାରି ଲମ୍ବି ଆସିଛି ଗାଲ ପର୍ଯ୍ୟନ୍ତ । ସମସ୍ତ ଶରୀରଟା ତା'ର ଶୀତଳ ହୋଇ ଆସୁଥିଲା ।

: ମୋର ଆଖି ଦୁଇଟାକୁ ବଞ୍ଚେଇବାକୁ ହେବ ଶଙ୍କର, ତା'ନହେଲେ, ତା'ନହେଲେ...ସେ ଗୋଟାଏ ପାଗଳ, ଖୁଣୀ । ଦେଖୁଛୁ ତ କି ଦଶା ହୋଇଛି ମୋର । ଅରିନ୍ଦମ କଣ୍ଠସ୍ୱର ରହି ରହି ଥରି ଉଠୁଥିଲା ।

ଅରିନ୍ଦମ ହାତ ଧରି, ତାକୁ ଟାଣି ଓଟାରି, ତା'ଦେହର ଭାର ବହନ କରି ଶଙ୍କର କୌଣସି ପ୍ରକାର ଆଣି ତାକୁ ଶୁଆଇଲା ବିଛଣା ଉପରେ ।

: ତୁମେ ଟିକିଏ ଥୟ ଧର, ଟିକିଏ ଶାନ୍ତ ହୁଅ । ତା'ପରେ ମୁଁ ସବୁ ଠିକ୍ କରିଦେବି । ଶଙ୍କର ଚାଲିଗଲା ଗରମ ପାଣି ଓ ଔଷଧ ବାକ୍ସ ଆଣିବା ପାଇଁ ।

: ମୋତେ ଏକା ଛାଡ଼ି ଯାଅ ନାହିଁ ଶଙ୍କର । ମୁଁ କିଛି ଦେଖି ପାରୁନାହିଁ । ସେ ହୁଏତ ପୁଣି ଫେରି ଆସିବ ।

: ଟିକିଏ ଚୁପ୍ କର ତ ! ଆର୍ତ୍ତ ଘରୁ ପାଟି କଲା ଶଙ୍କର । ସେ ଫେରିଆସିଲା ଶୋଇବା ଘରକୁ । ଏଥର ଆସିଲା ମୁଁ ତୁମ ଆଖି ଦୁଇଟା ଧୋଇ ଦିଏ । ହୁଏତ ଆଖି ଭିତରେ ରକ୍ତ ଜମିଯାଇ ଥିବାରୁ ତୁମେ କିଛି ଦେଖି ପାରୁ ନାହଁ ।

: ନା ନା ଶଙ୍କର । ମୁଁ ଅନ୍ଧ ହୋଇ ଯାଇଛି । ମୁଁ ଜାଣେ ମୁଁ ଅନ୍ଧ ହୋଇ ଯାଇଛି । ତୁ କିନ୍ତୁ ମୋ ପାଖେ ପାଖେ ରହ । ମୋତେ ଛାଡ଼ି ଯାଆ ନାହିଁ । ସେମାନେ ମୋ ପଛରେ ଲାଗିଛନ୍ତି...ମୋତେ ଖୋଜି ପାଇଲେ ହିଁ ଖୁନ୍ କରିଦେବେ । ଏଇନେ ମୁଁ ଅସହାୟ । ନିଜକୁ ମୁଁ ରକ୍ଷା କରିପାରିବି ନାହିଁ ।

: କିଏ ତମ ପଛେ ପଛେ ଲାଗିଛନ୍ତି ? କେଟ୍‌ଲୀରୁ ଗରମ ପାଣି ଢାଳୁ ଢାଳୁ ପ୍ରଶ୍ନ କଲା ଶଙ୍କର ।

: ତାଳ-ବେତାଳ ।

: ତାଳ-ବେତାଳ ? ସେ ପୁଣି କିଏ ? ଆଶ୍ଚର୍ଯ୍ୟ ହୋଇ ପ୍ରଶ୍ନକଲା ।

: ହଁ ତାଳ-ବେତାଳ । ସେମାନେ ଦୁଇବନ୍ଧୁ । ତୋ'ପାଖରେ ହୁଏତ କଥାଟା ପରିହାସ ପରି ମନେ ହେଉଥିବ । କିନ୍ତୁ ସେମାନେ ପେଶାଦାର ଖୁଣୀ । ନିଃଶବ୍ଦରେ କାମ ସାରି ଚାଲିଯିବେ । କେହି ଚିହ୍ନନ୍ତିନି ସେମାନଙ୍କୁ । ମୋତେ ଖୁଣ୍ କରିବା ପାଇଁ ଜଙ୍ଗଲ ସର୍ଦ୍ଦାର ସେମାନଙ୍କୁ ନିଯୁକ୍ତ କରିଛି ।

: ବେଶ୍ କରିଛି, ଚୁପ୍ କରତ । ସେମାନେ ତୁମକୁ ଏଠି ଖୋଜି ପାଇବେ ନାହିଁ । ମନେକର ତୁମେ ଏଠାରେ ସଂପୂର୍ଣ୍ଣ ନିରାପଦ । ମୋତେ ଦେଖାଅ, ଆଗ ମୁଁ ତମ ଆଖି ଦୁଇଟା ଧୋଇଦିଏ ।

: ନା ନା, ମୋତେ ତୁ ଛୁଉଁନାହିଁ । ମୁଁ ଆଉ ଯନ୍ତ୍ରଣା ସହି ପାରୁନାହିଁ ।

ଟିକିଏ ଅପେକ୍ଷା କରିଲା ଶଙ୍କର । ତା'ପରେ ପଚାରିଲା : ଆଚ୍ଛା, ତମେ ସେ ଝିଅଟାର କ'ଣ କରିଥିଲ ?

: ମୁଁ କିଛି କରିନାହିଁ । ସେ ଚାହିଁଥିଲା ମୁଁ ତା'ପାଖକୁ ଯାଏ । ମୋତେ ସେ ଡାକିଥିଲା । ମୁଁ ଯାଇଥିଲି । ଚୁମ୍ବନ କରିଥିଲି । କିନ୍ତୁ ତା'ପରେ ମୁଁ ଆଉ ନିଜକୁ ଆୟତ କରି ପାରି ନଥିଲି । କିନ୍ତୁ ଝିଅଟା ଦେହରେ ଆସୁରିକ ଶକ୍ତି । ମୋତେ ସେ ଦୁଇହାତରେ ଜାବୁଡ଼ି ଧରି ମୁହଁ କାମୁଡ଼ି ଦେଇଥିଲା । ଓଃ ସେ କି ବିଭତ୍ସ ଦୃଶ୍ୟ । ତା'ର ଆଖି ଦି'ଟା ନିଆଁ ପରି ଜଳୁଥିଲା । ଜୋର୍ କରି ତାକୁ ଛଡ଼େଇ ଦେବାକୁ ଯାଇ ମୋତେ ପାରିଲି ନାହିଁ । ସେ ମୋ ଆଖି ଦୁଇଟା...

: ସେ ହୁଏତ ଡରି ଯାଇଥିଲା । ମୁଁ ତ ତମକୁ ସାବଧାନ କରି ଦେଇଥିଲି । ତା' ସଙ୍ଗରେ ଲାଗିବାକୁ ବାରଣ କରି ଦେଇଥିଲି ।

: କିନ୍ତୁ ଏଇକ୍ଷିଣା ଯଦି ତାଳ-ବେତାଳ ଆସି ଯାଆନ୍ତି ମୁଁ କ'ଣ କରିବି ଶଙ୍କର । ମୋତେ ତୁ ସେମାନଙ୍କ ହାତରେ ଖୁଣ୍ ହେବାକୁ ଦେବୁ ନାହିଁ ତ ! ବିଛଣାରୁ ଉଠିବସି ଅଣ୍ଡାଳି ତକିଆ ତଳୁ ପିସ୍ତଲଟା ଖୋଜି ବାହାର କଲା ଅରିନ୍ଦମ । ହେଇ ନେ, ଏଇଟା ତୁ ରଖ୍ । ସେମାନଙ୍କୁ ଦେଖିବା ମାତ୍ରକେ ଗୁଳି କରିବୁ । ସେମାନଙ୍କୁ ଦେଖିଲେ ତୁ ଚିହ୍ନି ପାରିବୁ । ହଁ ଠିକ୍ ଚିହ୍ନି ପାରିବୁ ।

ତୁମେ ଟିକିଏ ଚୁପ୍‌କରତ ! ମୁଁ କହୁଛି ଏଠାରେ ତୁମେ ସଂପୂର୍ଣ୍ଣ ନିରାପଦ ।

କେହି ତୁମକୁ ଖୋଜି ପାଇବେ ନାହିଁ ।

ନା ନା, ତୁ ସେମାନଙ୍କୁ ଜାଣୁନା ଶଙ୍କର । ସେମାନେ ପେଶାଦାର ଖୁଣୀ । କାହାକୁ ଖୁଣ୍ କରିବା ପାଇଁ ସେମାନଙ୍କୁ ଭଡ଼ା କରାହେଲେ ସେମାନେ ସେ କାମ ଶେଷ ନକରିବାଯାଏ ସ୍ଥିର ହୁଅନ୍ତି ନାହିଁ । ଜଙ୍ଗଲ ସର୍ଦ୍ଦାର ସେମାନଙ୍କୁ ବହୁତ ପଇସା ଦେଇଛି। ଠିକ୍ ଖୋଜି ବାହାର କରିବେ। ମୁଁ ଜାଣେ ସେମାନେ ମୋତେ...

କିନ୍ତୁ କାହିଁକି ? ସେମାନେ କାହିଁକି ତୁମକୁ ଖୁଣ୍ କରିବେ ?

: ଜଙ୍ଗଲ ସର୍ଦ୍ଦାର ଆଉ ମୁଁ ଦୁଇଜଣ ମିଶି ଗୋଟାଏ ବଡ଼ ଧରଣର ବ୍ୟାଙ୍କ୍ ଡକେଇତି କରିଥିଲୁ । ସବୁ ଟଙ୍କାଯାକ ଧରି ମୁଁ ପଳେଇ ଆସିଛି । ସେ ମୋତେ ଅନେକ ଦିନଯାଏ ଖୋଜି ଖୋଜି ନ ପାଇବାରୁ ତାଳ-ବେତାଳଙ୍କୁ ମୋ ପଛରେ ଲଗାଇ ଦେଇଛି । ସେ ଜାଣିଛି, ମୁଁ ଯେଉଁଠି ଥିଲେ ବି ସେମାନେ ନିଶ୍ଚୟ ମୋତେ ଖୋଜି ବାହାର କରିବେ ।

: ଏଠି କିନ୍ତୁ ସେମାନେ ତମକୁ ଖୋଜି ପାଇବେ ନାହିଁ ।

ନା ନା, ସେମାନେ ଠିକ୍ ମୋତେ ପାଇବେ । ତୁ ପିସ୍ତଲଟା ସଙ୍ଗରେ ରଖ, ସେମାନଙ୍କୁ ଦେଖିବା ମାତ୍ରକେ ଗୁଳି ଚଳେଇବୁ । ସେମାନେ ଦେଖିବାକୁ ଦୁଇଟି କଳା କାକ ପରି । ଠିକ୍ ଯୋଡ଼ିଏ କଳା କାକ ।

: ଆଚ୍ଛା ଦେଖାଯିବ । ମୁଁ ସେମାନଙ୍କ କଥା ବୁଝିବି । ତମେ ଏଥର ଶୋଇଲ । ମୁଁ ତମ ଆଖି ଦୁଇଟା ଧୋଇଦିଏ । ଏକ ପ୍ରକାର ଜୋର୍‌କରି ଶଙ୍କର ବିଛଣା ଉପରେ ଶୁଆଇ ପକାଇଲା ।

ଦୁଇଟି କୃଷ୍ଣ କାକ ।

ହଁ, ତାଳ-ବେତାଳ ଦୁଇଜଣଙ୍କୁ ଦୁଇଟି 'କଳାକାଉ'ର ଆଖ୍ୟା ଦିଆଯାଇ ପାରେ । ସେମାନଙ୍କ ପୋଷାକ ପରିଚ୍ଛଦ ସବୁ କଳା । ପ୍ୟାଣ୍ଟ, କୋଟ୍, ସ୍କାଉଚ ଟୋପି, ଜୋତା ସବୁ କଳା ରଙ୍ଗର । ତା'ଛଡ଼ା ଦୁଇଜଣ ଦୁଇଟି ରେଶମୀ ରଙ୍ଗର କଳାରୁମାଲ ବି ବେକରେ ବାନ୍ଧନ୍ତି । ଯଦିଓ ସେମାନେ ତାଳ-ବେତାଳ ନାମରେ ପରିଚିତ, ତଥାପି ସେମାନଙ୍କ ମଧ୍ୟରୁ ଜଣକର ନାମ ଜଗୁ ଓ ଅନ୍ୟ ଜଣକର ନାମ ମଙ୍ଗୁ ।

ଗୋଟିଏ କଳା ରଙ୍ଗର ଅଷ୍ଟିନ୍ ଗାଡ଼ି ଚଢ଼ି ବୁଲୁ ଥାଆନ୍ତି ଚାରିଆଡ଼େ ।

ନିଃଶବ୍ଦରେ ମୃତ୍ୟୁଦଣ୍ଡ ଧରି ଚାଲିଥାଆନ୍ତି, ଯେଉଁ ମୃତ୍ୟୁ ରହସ୍ୟ କେବେ କେହି ଉଦ୍‌ଘାଟନ କରି ପାରନ୍ତି ନାହିଁ । ପୋଲିସ୍ ସେମାନଙ୍କ ସମ୍ବନ୍ଧରେ ବିନ୍ଦୁ ବିସର୍ଗ କିଛି ଜାଣି ପାରେ ନାହିଁ । ଉଦ୍ଦିଷ୍ଟ ବ୍ୟକ୍ତି ଆଗରୁ ସମ୍ବାଦ ପାଇଯାଏ ତାଳ-ବେତାଳ ଯାଉଛନ୍ତି ତା ପାଖକୁ । ସେତିକିରେ ସେ ଅର୍ଦ୍ଧମୃତ ହୋଇଯାଏ । ସେ ଲୁଚିବୁଲେ ଦେଶସାରା । କିନ୍ତୁ ତାଳ-ବେତାଳ ଠିକ୍ ତା' ପାଖରେ ଯାଇ ପହଞ୍ଚି ଯାଆନ୍ତି ମୃତ୍ୟୁଦଣ୍ଡ ଧରି ।

ବ୍ୟାଙ୍କ୍ ଡକେଇତିର ଟଙ୍କା ଧରି ଅରିନ୍ଦମ ଯେଉଁଦିନ ଲୁଚି ପଳେଇଲା, ଠିକ୍ ତା'ପରଦିନ ଜଙ୍ଗଲ ସର୍ଦ୍ଦାର ଯୋଗାଯୋଗ କଲା ତାଳ-ବେତାଳଙ୍କ ସହିତ । ପାଞ୍ଚହଜାର ଟଙ୍କା ପାରିଶ୍ରମିକ ଏବଂ ଅନ୍ୟାନ୍ୟ ଆନୁସଙ୍ଗିକ ସମସ୍ତ ଖର୍ଚ୍ଚ ଜଙ୍ଗଲ ସର୍ଦ୍ଦାରର । ତାଳ-ବେତାଳ ସର୍ତ୍ତରେ ରାଜି ହୋଇ ଅରିନ୍ଦମ ସନ୍ଧାନରେ ବାହାରି ପଡ଼ିଲେ ।

ଅରିନ୍ଦମ କାନରେ ସେ ଖବର ପହଞ୍ଚିବା ମାତ୍ରକେ, ସେ ସହର ଛାଡ଼ି, ପରିଚିତ ସମସ୍ତ ଜାଗାର ମାୟା ତ୍ୟାଗ କରି ଖସି ପଳେଇ ଆସିଲା ବହୁତ ବହୁତ ଦୂରକୁ, ପାହାଡ଼ ପର୍ବତ ଘେରା ଜଙ୍ଗଲ ଭିତରକୁ ।

କିନ୍ତୁ ତାଳ-ବେତାଳଙ୍କ ଆଖିରେ ଧୂଳି ଫିଙ୍ଗିବା ଏତେ ସହଜ ନୁହେଁ । ସେମାନେ ସମଗ୍ର ଦେଶଟାକୁ ଓଲଟପାଲଟ କରି ଖୋଜି ଖୋଜି ଠିକ୍ ଆସି ପହଞ୍ଚିଗଲେ ନିକଟବର୍ତ୍ତୀ ସହରରେ ।

ତାଳ-ବେତାଳଙ୍କ ଚାଲିଚଳନ, ପୋଷାକ ପରିଚ୍ଛଦ, ଚଲାର ଢଙ୍ଗ, କଥା କହିବାର ଭଙ୍ଗୀ ଦେଖି ଯେ କୌଣସି ଲୋକ ସେମାନଙ୍କ ଆଡ଼କୁ ମୁହୂର୍ତ୍ତେ ଚାହିଁବ । ସେମାନେ ପଶିଲେ ଯାଇ ଗୋଟିଏ ରେଷ୍ଟୁରେଣ୍ଟରେ । ଦୋକାନଦାର ସେମାନଙ୍କୁ ଭଲ ଆଖିରେ ଦେଖି ପାରୁ ନଥିଲା । ତା' ମନରେ ଯଦିଓ ଲୋକ ଦୁଇଟି ପ୍ରତି'ମନ୍ଦ ଧାରଣା ଜନ୍ମିଥିଲା, ତଥାପି ସେ ମୁହଁ ଖୋଲି କିଛି କହିପାରୁ ନ ଥିଲା । ପାଖକୁ ଆସି ହସି ହସି କହିଲା,
: କୁହନ୍ତୁ ଆପଣମାନଙ୍କ ପାଇଁ କ'ଣ କରିପାରେ ?

: ଦୁଇଟି ଡବଲ ସେଭେନ ।

ଲୋକଟି ଦୁଇବୋତଲ ଡବଲ ସେଭେନ୍ ଖୋଲି ଆଣି ସେମାନଙ୍କ ଟେବୁଲ ଉପରେ ଥୋଇ ଫେରି ଯାଉଥିଲା । ସେମାନଙ୍କ ଭିତରୁ ଜଣେ ତାକୁ ଇଙ୍ଗିତରେ ପାଖକୁ ଡାକିଲା । କହିଲା : ଆମେ ଏ ସହରରେ ନୂଆ ଲୋକ । କିଛି ଖବରାଖବର ଅଛି ?

: ଖବର ! ଆରେ ବାବା, ଖବର ତ ଖୁବ୍ ଗରମାଗରମ । କାଲି ଖବରକାଗଜରେ ଦେଖିବେ, ଦେଶସାରା ଖବରଟା ପ୍ରଚାରିତ ହୋଇ ସାରିଛି । ଏଇ ଟିକକ ଆଗରୁ ମୁଁ ଖବର କାଗଜରେ ଜଣେ ଲୋକ ମୁହଁରୁ ଶୁଣିଲି।

: କ'ଣ ଶୁଣିଲ ?

: ପାଗଳ ଗାରଦରୁ ଗୋଟିଏ ପାଗଳୀ ଖସି ପଳାଇ ଯାଉଥିଲା । ବର୍ତ୍ତମାନ ଜଣାଗଲା ଯେ ସେଇ ପାଗଳୀଟା କୁଆଡ଼େ କୋଟିଏ ଟଙ୍କାର ମାଲିକ ।

: ପାଗଳ ଗାରଦ, ମାନେ କୋଉ ପାଗଳ ଗାରଦ କଥା କହୁଛ ?

: ଏଇ ସହର ସେପାଖରେ । ଏଠୁ ମାତ୍ର ୧୫/୨୦ କିଲୋମିଟର ଦୂରରେ । ସେ ପାଗଳୀଟି କୁଆଡ଼େ ଗୋଟାଏ ଟ୍ରକ୍‌ରେ ଚଢ଼ି ଏପର୍ଯ୍ୟନ୍ତ ଚାଲି ଆସିଥିଲା । ଏଉଠୁ ଖଣ୍ଡେ ଦୂରରେ କେଉଁଠି ଟ୍ରକ୍‌ଟା ଭଙ୍ଗାରୁଜା ଅବସ୍ଥାରେ ମିଳିଚି । ସେମାନଙ୍କର ଧାରଣା ସେଇ ଝିଅଟା ଡ୍ରାଇଭରଟାକୁ ଖୁଣ୍ କରିଚି ।

କିନ୍ତୁ ସେଇ ପାଗଳୀଟି ମିଳିଛି କି ? ଜଗୁ ଡବଲ ସେଭେନ ବୋତଲଟା ନିଃଶେଷ କରି ପଚାରିଲା ।

: ବୋଧହୁଏ ମିଳିନାହିଁ । ମନେ ହେଉଛି ଖୋଜା ଚାଲିଛି । ଆଜି ସକାଳୁ ଏଠାରେ ପୋଲିସ ଭର୍ତ୍ତି ହୋଇଯାଇଛନ୍ତି । ଏତେ ପୋଲିସ୍ ଏ ସହରରେ କେବେ ମୁଁ ଦେଖି ନଥିଲି ।

: କିନ୍ତୁ ଗୋଟାଏ ପାଗଳୀ ମାଇକିନାର ଏତେ ଟଙ୍କା ଆସିଲା କେଉଁଠୁ ? ମଙ୍ଗୁ ପ୍ରଶ୍ନ କଲା ।

ସବୁ ଟଙ୍କା ପଇସା ତାକୁ ଦେଇଥିଲେ ଅମୃତଲାଲ ବରିହା । ଏ ଟୋକୀ

ତୁଆଡ଼େ ତାଙ୍କରି ନାତୁଣୀ। ବରିହାଙ୍କ ଝିଅର ହରଣଚାଳ କାହାଣୀ ଆପଣ ଜାଣି ନାହାନ୍ତି ?

: ହଁ ଜାଣିଛି ଯେ, ସେ ତ କୋଡ଼ିଏ ବାଇଶ ବର୍ଷ ତଳର ଘଟଣା। ସେତେବେଳେ ଧନ କୁବେର ଅମୃତଲାଲ ବରିହାଙ୍କ କନ୍ୟା କଥା ପ୍ରତ୍ୟେକ ଖବର କାଗଜରେ ବାହାରିଥିଲା କିନ୍ତୁ ଏଇ ପାଗଳୀର...

ସଂପର୍କ ଅଛି ମିଷ୍ଟର। ଘନିଷ୍ଠ ସଂପର୍କ ଅଛି। ଯେଉଁ ଲୋକଟି ବରିହାଙ୍କ ଝିଅକୁ ହରଣଚାଳ କରିନେଇଥିଲା, ବର୍ତ୍ତମାନ ଏଇ ପାଗଳୀ ଟୋକୀ ହେଉଛି ତା'ରି ଝିଅ। ସେ ଲୋକଟାର ମୁଣ୍ଡ ଗୋଳମାଳ ଥିଲା। ଫଳରେ ଏ ଟୋକୀ...

: ହଁ, ଜଗୁ ଟେବୁଲ ଉପରେ ଜୋର୍‌ରେ ଗୋଟାଏ ବିଧା ମାରି କହିଲା, ଟୋକୀଟା କ'ଣ ସତରେ ପାଗଳୀ ? ମାନେ ଭୟଙ୍କର ଧରଣର କିଛି ?

: ନିଶ୍ଚୟ। ତା'ମୁଣ୍ଡ ଯେତେବେଳେ ଖରାପ ହୁଏ, ସେ ଜ୍ଞାନଶୂନ୍ୟ ହୋଇଯାଏ। ଯାହାକୁ ସାମନାରେ ପାଏ ତାକୁ ଖୁଣ୍ କରେ।

: ଆଚ୍ଛା ଧର, ହଠାତ୍ ସେ ପାଗଳୀ ସହିତ ଆମର ଦେଖା ହୋଇଗଲା, ଆମେ ତାକୁ ଚିହ୍ନିବୁ କେମିତି ?

: ଶୁଣିଛି, ଟୋକୀଟା ତୁଆଡ଼େ ଦେଖିବାକୁ ଭାରି ସୁନ୍ଦରୀ। ତା'ମୁଣ୍ଡର ବାଳଯାକ ସୁନେଲି ରଙ୍ଗର। ଆଉ ବାଁ ହାତ ମଣୀ ବନ୍ଧରେ ଗୋଟାଏ କଟା ଦାଗ ଅଛି।

: ହଁ ବୁଝିଲି। ଦେଖା ହେଲେ ଠିକ୍ ଚିହ୍ନି ପାରିବି। ମଙ୍ଗୁ ଉଠି ଠିଆ ହେଲା। ପକେଟ୍‌ରୁ ଗୋଟାଏ ଶହେ ଟଙ୍କାର ନୋଟ୍ ବାହାର କରି ଟେବୁଲ ଉପରେ ଥୋଇ ପଚାରିଲା, ଆଚ୍ଛା ଏଠି ଆଖ ପାଖରେ କୋଉଠି ଗୋଟାଏ ଫାର୍ମ ହାଉସ୍ ଅଛିକି ?

: ଫାର୍ମ ହାଉସ୍ ? ଲୋକଟି ଟିକିଏ ଚିନ୍ତା କଲା। କହିଲା, ହଁ ଗୋଟାଏ ଅଛି, ସେ କିନ୍ତୁ ଅନେକ ଦୂରରେ ପାହାଡ଼ ପର୍ବତ ଘେରା ଘନ ଅରଣ୍ୟ ସେ ପାଖରେ।

: କେତେବାଟ ହେବ ?

: କୋଡ଼ିଏ ପଚିଶ ମାଇଲ ତ ନିଶ୍ଚୟ ହେବ। କିନ୍ତୁ ପଥଟା ଅଗମ୍ୟ।

: ବୁଝିଲି। ଆଚ୍ଛା ତମେ ସେ ଫାର୍ମ ହାଉସର ମାଲିକକୁ ଚିହ୍ନ ?

ଦୋକାନୀ ମୁହଁରେ ସାମାନ୍ୟ ବିରକ୍ତି ଫୁଟାଇ ବାକି ପଇସା ଫେରାଇ ଦେଉଥିଲା। ଜଗୁ କିନ୍ତୁ ପଇସାତକ ତା'ହାତରେ ଗୁଞ୍ଜିଦେଇ ମହୁରି ଦି'ଟା ଡିସ୍‌ରୁ ଉଠାଇ ଆଣି ପାଟିରେ ପକାଇ ପାଦ ବଢ଼ାଉଥିଲା।

ଦୋକାନୀଟି ଏଥର ମୁହଁରେ ହସ ଫୁଟାଇବାକୁ ଚେଷ୍ଟା କରି କହିଲା : ମୁଁ ତାକୁ ଚିହ୍ନେ ଯେ, କିନ୍ତୁ ତା'ସହିତ ମୋର କିଛି ଆନ୍ତରିକତା ନାହିଁ।

ତାଳ-ବେତାଳ ପୁଣି ଲେଉଟି ଆସିଲେ ଟେବୁଲ ପାଖକୁ। ମଙ୍ଗୁ କହିଲା: ସେଇ ଅଗମ୍ୟ ଅରଣ୍ୟ ସେ ପାଖରେ ଲୋକଟି କ'ଣ ଏକା ରୁହେ ?

: ହଁ, ଏତେଦିନଳ ଯାଏ ତ ଏକା ଦେଖୁଥିଲି। କିନ୍ତୁ ଗତ ପାଞ୍ଚ ଛଅ ଦିନ ତଳେ ଦେଖିଲି ତା'ସଙ୍ଗରେ ଆଉ ଜଣେ ଲୋକ। ଦୁହେଁ ସାଙ୍ଗ ହୋଇ ଯାଉଥିଲେ।

ମଙ୍ଗୁ କ'ଣ କହିବାକୁ ଯାଇ ଚୁପ୍ ହୋଇଗଲା। ଦୋକାନୀଟି ଅନ୍ୟ ଖରିଦାରଠାରୁ ପଇସା ଆଦାୟ କରିବାରେ ବସିଗଲା। ତାଳ-ବେତାଳ ସେଠାରୁ ବାହାରି ଚାଲିଗଲେ।

ଦୂରରେ ଗୋଟାଏ ଗଛରେ ଭରା ଦେଇ ଠିଆ ହୋଇଥିଲେ ରଜତ ମାଲହୋତ୍ରା । ସେ ଲକ୍ଷ୍ୟ କରୁଥିଲେ ତାଳ-ବେତାଳଙ୍କୁ । ସେମାନେ ପାନ ଶାଳାରୁ ବାହାରିଯିବା ପରେ ଧୀରେ ଧୀରେ ନିଜେ ସେ ପ୍ରବେଶ କଲେ ପାନ ଶାଳାରେ ।

: ଆଉ ସବୁ ଖବର କ'ଣ ଦୟାଲା ଦିଅତ ଗୋଟାଏ ହଜମୀ ବିଅର-କହି ସେ ଗୋଟାଏ ଟୁଲ ଟାଣି ବସିଲେ ।

: ଆରେ ମିଷ୍ଟର ମାଲହୋତ୍ରା ଯେ ! ମନେ ମନେ ମୁଁ ଆପଣଙ୍କୁ ଖୋଜୁଥିଲି । ଆପଣଙ୍କ ଖବରକାଗଜ ବାସ୍ତବିକ ପ୍ରତିଦିନ ସକାଳୁ ଏପରି ଖବର ମାନ ପରିବେଷଣ କରୁଛି, ଆମକୁ ନିଶା ଧରି ଗଲାଣି । ଆପଣ ବୋଧହୁଏ କାଲିପାଇଁ ଖବର ସଂଗ୍ରହ କରିବାକୁ ବାହାରିଛନ୍ତି । ଦୋକାନୀଟି ମନ ଭରି ହସି ଆଖିର ଡୋଳା ନଚାଇ ପଚାରିଲା, : କ'ଣ ଆପଣ ସେଇ ପାଗଳୀଟାର ଆଉ କିଛି ଖବର ପାଇଲେ ?

ମିଷ୍ଟର ମାଲହୋତ୍ରା ଦୋକାନୀ ହାତରୁ କଳା ବିଅର ବୋତଲଟି ନେଇ ଗ୍ଲାସରେ ଢାଳୁ ଢାଳୁ କହିଲେ: ନା, ଆଉ ସେପରି କିଛି ପାଇ ନାହିଁ ।

: ମୁଁ କିନ୍ତୁ ଆପଣଙ୍କର ସେଇ ଗଳ୍ପଟା ସେଇ ଲୋକ ଦି'ଟାଙ୍କୁ ଶୁଣାଉଥିଲି । ଆପଣତ ଦେଖିଛନ୍ତି ସେ ଲୋକ ଦି'ଟାଙ୍କୁ । ଦେବଦାରୁ ଗଛରେ ଭରାଦେଇ ଆପଣ ସେମାନଙ୍କୁ ଦେଖୁଥିଲେ । ଲୋକ ଦି'ଟା କି ବିଶ୍ରୀ । ରାତିରେ କେହି ତାଙ୍କୁ ଦେଖିଲେ ଭେଟଣା ହୋଇଯିବ ।

: ହଁ ଦୟାଲ, ଆଜି ପ୍ରଥମ ନୁହେଁ, ଏହା ପୂର୍ବରୁ ମୁଁ ସେମାନଙ୍କୁ ଆହୁରି ଥରେ ଦି'ଥର ଦେଖିଚି । ଆଉ କ'ଣ ଅନୁଭବ କରିଚି ଜାଣ ? ସେମାନଙ୍କୁ ଯେଉଁ ସହରରେ ଯେତେବେଳେ ମୁଁ ଦେଖିଛି, ଦୁଇ ତିନି ଦିନ ମଧ୍ୟରେ ଶୁଣିଚି ସେହି ସହରରେ ଜଣେନା ଜଣେ ନୃଶଂସ ଭାବରେ ଖୁଣ୍ ହୋଇଛି । କିଛି ବୁଝିଲ ଦୟାଲ ?

ବିହ୍ୱଳ ଦୃଷ୍ଟିରେ ମାଲହୋତ୍ରାଙ୍କ ଆଡ଼େ କିଛି ସମୟ ଅନାଇ ରହି ଦୟାଲ କହିଲା : ଆପଣଙ୍କ କଥା ମୁଁ ଠିକ୍ ବୁଝି ପାରୁନାହିଁ ।

: ବୁଝି ପାରୁନାହଁ ? ତମେ କେବେ ତାଳ-ବେତାଳଙ୍କ ନାମ ଶୁଣିଛ ?

: ଗଳ୍ପ ତ ? ତାଳ-ବେତାଳ କାହାଣୀ କଥା ଆପଣ ପଚାରୁଛନ୍ତି ?

: ଆରେ ନା ନା । ଏ ଦି'ଜଣ ଲୋକଙ୍କ ନାମ । ଏମାନେ ପେଶାଦାର ଖୁଣୀ । ଏ ଦୁହେଁ ହୁଏତ...ହଠାତ୍ କଥା ଅସମାପ୍ତ ରଖି ମାଲହୋତ୍ରା କହିଲେ, ହଁ ସେମାନେ ଆଉ କ'ଣ କହୁଥିଲେ ?

: ନା କିଛି କହି ନାହାନ୍ତି । ତେବେ ଏଠି କୋଉଠି ଗୋଟାଏ ଫାର୍ମହାଉସ ଅଛିକି ବୋଲି ପଚାରୁଥିଲେ ।

: ସେଉଠୁ ?

: ମୁଁ ଶଙ୍କରର ଫାର୍ମହାଉସ କଥା କହିଲି । ସେମାନେ ବୋଧହୁଏ ସେଇଠିକି ଗଲେ । ଶଙ୍କର କିନ୍ତୁ ଭଲ ଲୋକ । ଆମ ଦୋକାନକୁ ପନ୍ଦର ଦିନେ ଥରେ ସେ ଆସେ । ଏଇ ତ ପାଞ୍ଚ ଛ' ଦିନ ଆଗରୁ ତାକୁ ଦେଖିଥିଲି । ସେ କିନ୍ତୁ ଆଉଜଣକ ସହିତ କଥା କହି କହି ଯାଉଥିଲା ।

: ଆଉ ଜଣେ ମାନେ ? ମାଲହୋତ୍ରା ପଚାରିଲେ ।

: ମୁଁ ତାକୁ ଚିହ୍ନିନାହିଁ । ତେବେ ସେମାନେ ଫାର୍ମହାଉସ୍ ବାଟରେ ଯାଉଥିଲେ ।

: ତମେ ଠିକ୍ ଦେଖିଛତ ଦୟାଳ ?

: ହଁ ମୁଁ ତ ଦେଖିଲି ସେମାନେ...

ଦୋକାନଦାରର କଥା ଶେଷ ହେଲା ନାହିଁ । ରଜତ ମାଲହୋତ୍ରା ତାପୂର୍ବରୁ ଝଡ଼ ବେଗରେ ସେଠାରୁ ବାହାରି ଚାଲିଗଲେ ।

ଅରିନ୍ଦମ ଆଖିପତା ଦୁଇଟି ଏତେ ଫୁଲି ଉଠିଥିଲା ଯେ, ଭିତରେ ଆଘାତ କେତେ ବେଶି ବୁଝି ହେଉ ନଥିଲା । ଶଙ୍କର ବହୁ କଷ୍ଟରେ ଆଖିର ରକ୍ତପାତ ବନ୍ଦ କରାଇ, ତାକୁ ଆରାମରେ ଶୋଇବାର ବନ୍ଦୋବସ୍ତ କରାଇ ଦେଇ କହିଲା: ତମେ ଟିକିଏ ବିଶ୍ରାମ କର, ମୁଁ ଦେଖେ ଲିସା କୁଆଡ଼େ ଗଲା?

: ନା ନା, ସେ କଥା ହେଇ ପାରିବନି । ତୁ ମତେ ଏପରି ଅସହାୟ ଅବସ୍ଥାରେ ଛାଡ଼ି ଦେଇ ଯାଇ ପାରିବୁନି । ଲିସା ହୁଏତ ଏଇଠି କୋଉଠି ଆତ୍ମଗୋପନ କରି ବସି ରହିଛି। ତୁ ଚାଲିଯିବା ମାତ୍ରକେ ସେ ଆସି ମୋ ତଣ୍ଟି ଫୁଟେଇ ରକ୍ତ ପିଇଯିବ। ଅରିନ୍ଦମ ଚିତ୍କାର କରି କହୁଥିଲା ।

: ତମେ ଚୁପ୍ କରତ ! ମୁଁ ସଙ୍ଗେ ସଙ୍ଗେ ଆସୁଛି ।

: ତୁ ଲିସାକୁ ଚିହ୍ନିନୁ ଶଙ୍କର । ଟୋକୀଟା ସାଂଘାତିକ । ଦେହରେ ତା'ର ଅସୁରର ବଳ । ମୋ ପରି ସେ ତୋତେ ବି ଖୁଣ୍ କରିବାକୁ ପଶ୍ଚାଦ୍‌ପଦ ହେବନାହିଁ । ସେ ହୁଏତ ତୋତେ ଆମ୍ପୁଡ଼ି କାମୁଡ଼ି ଛିନ୍ନଭିନ୍ନ କରିଦେବ ।

ଶଙ୍କର ବାହାରକୁ ଚାହିଁଲା । ଜହ୍ନରାତି । ଚାରିଆଡ଼େ ନିଝୁମ । ଏତେ ରାତିରେ ବାହାରିବାକୁ ଇଚ୍ଛା ନ ଥିଲା । କିନ୍ତୁ ଲିସା ପାଇଁ ତା' ଅନ୍ତରଟା ବିକଳି ଉଠୁଥିଲା । ବିଚାରୀ ! ସତରେ କ'ଣ ସେ ପାଗଳୀ ଦୁର୍ଘଟଣାରେ ମୁଣ୍ଡରେ ଶକ୍ତ ଆଘାତ ପାଇ ସେ କ'ଣ ରାତାରାତି ଖୁଣୀର ସ୍ୱଭାବ ଅର୍ଜନ କରିଛି । ନା ନା, ପ୍ରଥମେ ଡ୍ରାଇଭର, ତା'ପରେ ଅରିନ୍ଦମ । ଏଇ ଦୁଇଜଣ ତା' ଶିକାର ହୋଇଛନ୍ତି । କିନ୍ତୁ ଦୋଷ ତ ଲିସାର ନୁହେଁ । ଏମାନେ ତା' ଶରୀର ଉପରେ ଅତ୍ୟାଚାର କରିବାକୁ ଚେଷ୍ଟା କରିଛନ୍ତି, ତେଣୁ ଉପଯୁକ୍ତ ଫଳ ପାଇଛନ୍ତି !! ଏ କ୍ଷେତ୍ରରେ ଲିସାର ଦୋଷ ଦେବା ଉଚିତ ନୁହେଁ । ତା'ଛଡ଼ା ସେ ପାଗଳୀ ହେବ ବା କାହିଁକି ?

: ମୁଁ ଆସୁଛି, ଶୀଘ୍ର ଫେରି ଆସିବି । ତମେ ମୋଟେ ବ୍ୟସ୍ତ ହୁଅନାହିଁ ।

: ନା ନା, ମୋତେ ଏକା ଛାଡ଼ି ତୁ ଯାଇ ପାରିବୁ ନାହିଁ । ମୁଁ ଜାଣେ ତୁ ଗଲେ ଆଉ ଫେରିବୁ ନାହିଁ । ମୋ କଥା ମାନ ଶଙ୍କର। ସେ ପାଗଳୀ ଟୋକୀଟା ପଛରେ...

ଶଙ୍କର କିନ୍ତୁ ଚାଲି ଯାଇଥିଲା । ହାତରେ ଗୋଟାଏ ଟର୍ଚ୍ଚ ଧରି ସେ ବାହାରି ଯାଇଥିଲା । ଚାରିଆଡ଼େ ସେହିପରି ନୀରବ ନିଷନ୍ଦ । ଶଙ୍କର ଆଗେଇ ଯାଇ ହ୍ରଦ ନିକଟରେ ଠିଆ ହେଲା । ଉତ୍କର୍ଣ୍ଣ ହୋଇ ଚାହିଁ ରହିଲା ଘନ ଅରଣ୍ୟ ଆଡ଼କୁ । ଝିଅଟା ତେବେ ଗଲା କୁଆଡ଼େ ?

ଗୋଟିଏ ସରୁ ଚଲାପଥ ଧରି ହ୍ରଦ ତୀରେ ତୀରେ ଆଗେଇ ଚାଲିଲା ଘନ

ଅରଣ୍ୟ ଆଡ଼କୁ ! କିଛି ବାଟ ଆଗେଇ ଯାଇ ପଥଟା ଯେଉଁଠି ବାଁ ଆଡ଼କୁ ଭାଙ୍ଗି ଯାଉଛି, ସେଉଠୁ ଆରମ୍ଭ ହୋଇଛି ଘନ ଅରଣ୍ୟ, ଡୀରେ ଡୀରେ ଆଗେଇ ଚାଲିଲା ଘନ ଅରଣ୍ୟ ଆଡ଼କୁ । କିଛି ବାଟ ଆଗେଇ ଯାଇ ପଥଟା ଯେଉଁଠି ବାଁ ଆଡ଼କୁ ଯାଇଛି ସେଠାରେ ନିବିଡ଼ ଅନ୍ଧକାର ଶଙ୍କର ଠିଆ ହୋଇ ପଡ଼ିଲା ଜମାଟ ବନ୍ଧା କଳା ଅନ୍ଧକାର ଭିତରେ । ଆଉ ସେ ଆଗେଇବାକୁ ସାହସ ପାଉ ନଥିଲା ।

: ଲିସା... ଚିତ୍କାର କରି ଡାକିଲା ସେ । ମୁଁ ଶଙ୍କର । ତୁ ଗଲୁ କୁଆଡ଼େ?

"ତୁ ଗଲୁ କୁଆଡ଼େ ? ତୁ ଗଲୁ କୁଆଡ଼େ ?" ହ୍ରଦ ସେପାଖରୁ ପ୍ରତିଧ୍ୱନି ଫେରି ଆସୁଥିଲା କେବଳ ।

ଶଙ୍କର ଆହୁରି ଟିକିଏ ଆଗେଇବାକୁ ଚେଷ୍ଟା କଲା । କିନ୍ତୁ ପଥ କାହିଁ ? କେବଳ ଅନ୍ଧକାର । ନିବିଡ ଅରଣ୍ୟ ଭିତରେ ନିଗଡ଼ ଅନ୍ଧକାର । ସେ ଦୂରକୁ ଟର୍ଚ୍ଚ ପକାଇଲା । ପୁଣି ଡାକିଲା : ଲିସା ! ତୁ କ'ଣ ଏଠି କୋଉଠି ଲୁଚି ବସିଛୁ ? ମୁଁ ଶଙ୍କର ତୋତେ ଖୋଜୁଛି । ବାହାରିଆ । ଅରିନ୍ଦମ ଉପରେ ଅଭିମାନ କରି କିଛି ଲାଭ ନାହିଁ ।

ଠିକ୍ ସେଇ ମୁହୂର୍ତ୍ତରେ ଗୋଟାଏ ବୁଦା ମୂଳରୁ ଯେପରି ଏକ ଛାୟାମୂର୍ତ୍ତି ବାହାରି ଆସିବାର ଦେଖିଲା ଶଙ୍କର । ଟର୍ଚ୍ଚଆଲୁଅଟା ସେଇ ଆଡ଼େ ବୁଲେଇ ଦେବା କ୍ଷଣି ଶିହରୀ ଉଠିଲା ସେ । କିଏ ଗୋଟାଏ ଲୋକ କଳା ପୋଷାକରେ ଅଙ୍ଗ ଆବୃତ କରି ତାରି ଆଡ଼କୁ ଚାହିଁ ଠିଆ ହୋଇଛି, ହାତରେ ଧରିଛି ଗୋଟାଏ ୪୫. ରିଭଲଭର । ପର ମୁହୂର୍ତ୍ତରେ ସେ ଅନୁଭବ କଲା ଆଉ ଜଣେ ପଛଆଡୁ ତା' ପକେଟ୍‌ରେ ହାତ ଭରି ଯେପରି ସର୍ଚ୍ଚ କରୁଛି । ବୁଲି ଅନେଇଲା ଶଙ୍କର । ସେ ବି କଳା ପୋଷାକ ପରିହିତ ।

ଶଙ୍କର ଯେପରି କାଠ ପାଲଟି ଗଲା । ଏଇମାନେ ତା'ହେଲେ ତାଳ-ବେତାଳ । ଅରିନ୍ଦମର ଆତଙ୍କ ? ତଥାପି କଣ୍ଠରେ ଦାମ୍ଭିକତା ଫୁଟେଇ ପ୍ରଶ୍ନକଲା : କିଏ ତମେମାନେ । ଏଇ ନିବିଡ଼ ଅରଣ୍ୟ ଭିତରେ କ'ଣ କରୁଛ ?

: ପ୍ରଶ୍ନ ଆମେ କରିବୁ, ତମେ ନୁହଁ । ଶଙ୍କର ଛାତିରେ ରିଭଲଭରଟା ଠିକେଇ ଜଗୁ ପଚାରିଲା, ଲିସା କିଏ ? ତମେ ବା ଏତେ ରାତିରେ ଏଠି କ'ଣ କରୁଥିଲ ?

: ଲିସା ମୋ ବାନ୍ଧବୀ । ଆମେ ଏକାଠି ରହୁ। ସେଇଆକୁ ମୁଁ ଖୋଜୁଛି । ଶଙ୍କର ଉତ୍ତର ଦେଲା ।

: ଆଉ ଅରିନ୍ଦମ ? ସେ କ'ଣ ଘରେ ଶୋଇଛି ?

ଅରିନ୍ଦମ ନାଁ ଶୁଣି ଶଙ୍କର ଟିକିଏ ଅଟକି ଯାଇଥିଲା । ପୁଣି ଭାବିଲା ଏମାନଙ୍କୁ ମିଛ କହି ଲାଭ ନାହିଁ । କାରଣ ଆଉ ମୁହୂର୍ତ୍ତକ ପରେ ଏମାନେ ଅରିନ୍ଦମକୁ ଆବିଷ୍କାର କରି ପାରିବେ ।

: ହଁ, ଶଙ୍କରର ସଂକ୍ଷିପ୍ତ ଉତ୍ତର ।

: ତୁ ଯା ଉପରେ ନଜର ରଖିଥା, ମୁଁ ଅରିନ୍ଦମକୁ ଦେଖୁଛି । ଜଗୁ ତା ସଙ୍ଗୀକୁ କହି ଆଗେଇ ଯାଉଥିଲା ।

: ଆଉ ଟୋକୀଟା ?

: ଟୋକୀଟା ପାଇଁ ଚିନ୍ତା କରିବାର କିଛି ନାହିଁ, ସେ ଯଦି ଦୈବାତ୍ ଆସିଯାଏ ତାକୁ ସମ୍ଭାଳି ନେବୁ ।

: ତା' ଅପେକ୍ଷା ଏଇଟାକୁ ଆମ ସାଙ୍ଗରେ ନେଇଗଲେ ହୁଅନ୍ତା ନାହିଁ ?

: ଠିକ୍ କହୁଛୁ । ସଙ୍ଗେ ସଙ୍ଗେ ଜଗୁ ଶଙ୍କର ଆଡ଼େ ରିଭଲ୍‌ଭର ଉଞ୍ଚାଇ କହିଲା ଆମ ସଙ୍ଗରେ ଚାଲେ । ବେଶି ଚାଲାକି ଫାଲାକି ଆମ ସାଙ୍ଗରେ କରିବୁ ନାହିଁ କହି ଦେଉଛି । ତା'ହେଲେ ପୈତୃକ ପ୍ରାଣଟି ଯେକୌଣସି ମୁହୂର୍ତ୍ତରେ ଚାଲିଯିବ ।

ଅପରାଧୀଟି ପରି ଆଗେଇ ଚାଲିଲା ଶଙ୍କର । ସେ ଭାବୁଥିଲା, ଅରିନ୍ଦମକୁ ହତ୍ୟାକରି ସାରି, ତାକୁ ବି ସେମାନେ ହତ୍ୟା କରିବେ । ତା'ପରେ ଲିସା ।

: କିନ୍ତୁ ଆମେ ତ ତମର କିଛି ଅନିଷ୍ଟ କରିନାହୁଁ । ତମେ ଏପରି...

: ଚୁପ୍ କରତ ! ବେଶି ଭଟ ଭଟ ହେବାକୁ ମୁଁ ମନା କରିଛି ନା ! ଅବଶ୍ୟ ତୋ ପାଇଁ ଆମର ଚିନ୍ତା ନାହିଁ, ଆମେ ଖୋଜୁଚୁ ଅରିନ୍ଦମକୁ ।

: ସେ ବା ତମର କ'ଣ କିଛି ଅନିଷ୍ଟ କଲା : ଯଦି କିଛି ଟଙ୍କା ପଇସା ଅଡୁଆ ଥାଏ, ତେବେ କୁହ ମୁଁ ପରିଶୋଧ କରି ଦେଇ ପାରିବି । ଅଯଥାରେ ଗୋଟାଏ ଲୋକର ଜୀବନ ନଷ୍ଟ କରି କିଛି ଲାଭ ହେବ ?

: ଟଙ୍କା ? ନା ନା ଆମ ଟଙ୍କା ଆମେ ପାଇ ଯାଇଛୁ । ଆଉ ଯାହାଠୁ ଆମେ ଟଙ୍କା ନେଉ, ତାକୁ ଖୁସି କରିବା ହେଲା ଆମର ଧର୍ମ ।

ଶଙ୍କର ତାଳ-ବେତାଳଙ୍କର କଥାବାର୍ତ୍ତାରୁ ବୁଝି ପାରିଥିଲା, ଏମାନେ ଅନୁରୋଧ ଉପ୍ରୋଧ କିଛି ରଖିବାର ପାତ୍ର ନୁହନ୍ତି । ତେଣୁ ଅରିନ୍ଦମକୁ ଏମାନଙ୍କ ହାତରୁ ବଞ୍ଚେଇ ପାରିବା ପରି ମନେ ହେଉ ନଥିଲା । ମନ ଭିତରେ ଗୋଟାଏ ଭୀଷଣ ଅସ୍ୱସ୍ତି ଧରି ଆଗେଇଥିଲା ଶଙ୍କର ।

ବର୍ତ୍ତମାନ ଆଉ ଅରିନ୍ଦମ ପାଇଁ କିଛି କରିବାର ଉପାୟ ନାହିଁ ମୋ କପାଳରେ ।

ତାଳ-ବେତାଳ ଆଗେଇ ଯାଉଥିଲେ । ଜଗୁ ଗୋଟିଏ ଘର ସାମନାରେ ଠିଆ ହୋଇପଡ଼ି ଝରକାରେ ଉଙ୍କିମାରି ଦେଖିଲା, ଜଣେ ଶୋଇଛି ଖଟରେ । ହାତରେ ମୁଠେଇ ଧରିଛି ଗୋଟାଏ ପିସ୍ତଲ । ଆଖିରେ ପଟି ବନ୍ଧା ହୋଇଛି । ସେ ସେଇଠି ଠିଆ ହୋଇ ଜାଣି ପାରିଲା ଯେ ଅରିନ୍ଦମ, ଚିହ୍ନିବାକୁ ଡେରିହେଲା ନାହିଁ ।

ଅରିନ୍ଦମ ବିଛଣାରେ ଶୋଇ ଶୋଇ, ଆତଙ୍କର ପ୍ରତୀକ୍ଷାରେ ଉଦ୍‌କର୍ଣ୍ଣ ହୋଇ ବିବ୍ରତ ହୋଇ ପଡ଼ିଥିଲା । ମୁଣ୍ଡରେ ଯନ୍ତ୍ରଣା ହେଉଥିଲା । ସେ ଭାବୁଥିଲା ହୁଏତ ଏଇ ମୁହୂର୍ତ୍ତରେ ଲିସା ଆସି ତା'ଗଳା ଚିପି ଧରିବ । ତାକୁ ହତ୍ୟା କରିବା ତାଳ-ବେତାଳଙ୍କ କଥା ସେ ଏକ ପ୍ରକାର ଭୁଲି ଯାଇଥିଲା । କାରଣ ସେ ଜାଣିଥିଲା ସେମାନେ ସବୁ କାର୍ଯ୍ୟ ଅତି ଦ୍ରୁତବେଗରେ ସମ୍ପନ୍ନ କରିଥାଆନ୍ତି । ଦୀର୍ଘଦିନ ଅତିବାହିତ ହୋଇଯାଇଥିଲେ ସୁଦ୍ଧା ସେମାନେ ଯେତେବେଳେ ଆଜିଯାଏ ତାକୁ ଖୋଜି ପାଇନାହାନ୍ତି, ଆଉ ହୁଏତ ପାଇବେ ନାହିଁ । ଏଇ କଥା ଭାବି ସେ ଏକ ପ୍ରକାର ନିଶ୍ଚିନ୍ତ ଥିଲା । କିନ୍ତୁ ଶଙ୍କର ଗଲା କୁଆଡ଼େ ? ସେ ଏତେବେଳଯାଏ ଫେରିଲା ନାହିଁ କାହିଁକି ?

ଏଣେ ଜଗୁ ନିଃଶବ୍ଦରେ ଅରିନ୍ଦମର ଘରେ ପ୍ରବେଶ କଲା । ତା' ହାତର ପିସ୍ତଲ ଆଡ଼େ ଚାହିଁ ହସିଲା ଟିକିଏ । ତା'ପରେ ଭାବିଲା ଏଇ ମୁହୂର୍ତ୍ତରେ ଅତି ସହଜରେ ସେ ଅରିନ୍ଦମକୁ ଶେଷ କରିଦେଇ ପାରିବ । କିନ୍ତୁ ଏତେ ସହଜରେ କୌଣସି କାର୍ଯ୍ୟ ହାସଲ କରିବା ପାଇଁ ସେ ଚାହେନାହିଁ । ଧୀରେ ଧୀରେ ଅରିନ୍ଦମର ବିଛଣା ପାଖକୁ ଆଗେଇ

ଆସିଲା ।

ଅରିନ୍ଦମର ଆଖିରେ ଯନ୍ତ୍ରଣା ବଢ଼ିଯାଇଥିଲା । ପିସ୍ତଲଟାକୁ ବିଛଣା ଉପରେ ଥୋଇଦେଇ ଦୁଇହାତରେ ଆଖିକୁ କିଛି ସମୟ ଚାପି ଧରିଲା ଅରିନ୍ଦମ । ସଙ୍ଗେ ସଙ୍ଗେ ଜଗୁ ପିସ୍ତଲଟି ସେଠାରୁ ଉଠାଇ ନେଇ ଟ୍ରାଉଜରର ପଛ ପକେଟରେ ଗୁଞ୍ଜି ଦେଲା । ତା'ପରେ ଅରିନ୍ଦମର ପ୍ରତିକ୍ରିୟା କ'ଣ ହେବ ଦେଖିବା ପାଇଁ ଅପେକ୍ଷା କଲା ଅଧୀର ଆଗ୍ରହରେ । ଟିକକ ପରେ ଅରିନ୍ଦମ ଖୋଜିଲା ପିସ୍ତଲଟାକୁ । ଖୋଜିଲା ଭଲକରି । ତା'ର ମନେହେଲା ଯେଉଁଠି ରଖିଥିଲା ସେଠି ନାହିଁ । ବୋଧହୁଏ କମ୍ବଳ ସଂଗରେ ଲାଗି ଖସି ଯାଇଚି ଅନ୍ୟ ଆଡ଼କୁ । ଦୁଇହାତରେ ଅଣ୍ଡାଳି ଅଣ୍ଡାଳି ଚାରିଆଡ଼େ ଖୋଜିଲା ପିସ୍ତଲଟାକୁ । କିନ୍ତୁ କାହିଁ ? ଗଲା କୁଆଡ଼େ ? କପାଳରେ ସ୍ୱେଦବିନ୍ଦୁ ଫୁଟି ଉଠିଲା ଅରିନ୍ଦମର ।

ଧୀରେ ଧୀରେ ଗୋଟାଏ ଚେଆର ଉଠାଇ ଆଣି ନିଃଶବ୍ଦରେ ଅରିନ୍ଦମର ବିଛଣା ପାଖରେ ପକାଇ ବସିଲା ଜଗୁ । ଅରିନ୍ଦମର କ୍ରମବର୍ଦ୍ଧମାନ ଆତଙ୍କ ଅନୁଭବ କରି ମନେ ମନେ ଆନନ୍ଦିତ ହେଉଥିଲା ସେ, ଅଥଚ ତା'ର ଶିକାର ସେ ସଂପର୍କରେ ସଂପୂର୍ଣ୍ଣ ଅଜ୍ଞ ।

'ନିଶ୍ଚୟ ତଳେ ପଡ଼ିଯାଇଛି' ଅସ୍ପଷ୍ଟ ସ୍ୱରରେ ଉଚ୍ଚାରଣ କଲା ଅରିନ୍ଦମ। ବିଛଣାରୁ ଓହ୍ଲାଇ ପଡ଼ି ତଳେ ଅଣ୍ଡାଳିଲା ସେ । ଧୀରେ ଧୀରେ ଆଗେଇ ଗଲା ଅଣ୍ଡାଳି ଅଣ୍ଡାଳି । ଶେଷରେ ହାତରେ ବାଜିଲା ଜଗୁର ମୁନିଆ ଜୋତାଟା । ସେଇଠି ଅଟକି ଗଲା । ଧୀରେ ଧୀରେ ହାତଟା ତା'ର ଉଠିଗଲା ଉପରକୁ । ଛିଣ୍ଡା ଟ୍ରାଉଜରଟା ହାତରେ ବାଜିଲା । ସଙ୍ଗେ ସଙ୍ଗେ ସମଗ୍ର ଶରୀରରେ କିପରି ଏକ ଶୀତଳକମ୍ପନ ଖେଳିଗଲା ଅରିନ୍ଦମର । ସେ ଜଡ଼ ପାଲଟିଗଲା । ଅନୁଭବ କଲା ତା' ବିଛଣା ପାଖରେ କିଏ ଜଣେ ବସି ରହିଛି ।

ଅରିନ୍ଦମ ଘୁଞ୍ଚି ଆସିଲା ସେଠାରୁ । ଚିତ୍କାର କରି ଉଠିଲା : କିଏ ? କିଏ ଏଠି ବସି ରହିଛି ?

ହସିଲା ଜଗୁ । କହିଲା : ଚିହ୍ନି ପାରୁନୁ ମୋତେ ? ଆମେ ଆସି ଠିକ୍ ଜାଗାରେ ପହଞ୍ଚି ଯାଇଛୁ ।

ଅରିନ୍ଦମର ସମସ୍ତ ଶରୀରରୁ ପରସ୍ତେ ଝାଳ ବୋହିଗଲା । ସେ ବୁଝିପାରିଥିଲା, ତାଳ-ବେତାଳ ଆସି ଏଠାରେ ପହଞ୍ଚି ଯାଇଛନ୍ତି । ଆଉ ତା'ର ତ୍ରାହି ନାହିଁ । ତଥାପି ସେ ଚିତ୍କାର କରି କହିଲା : ମୁଁ ଅନ୍ଧ ହୋଇ ଯାଇଛି । ଗୋଟାଏ ଅନ୍ଧ ଲୋକକୁ ତମେମାନେ ନିଶ୍ଚୟ ହତ୍ୟା କରିବ ନାହିଁ । ଦେଖ ଦେଖ, ଭଲକରି ମୋ ଆଡ଼କୁ ଚାହିଁ ଦେଖ, ସତରେ ମୁଁ ଶେଷ ହୋଇଯାଇଛି ।

ଅରିନ୍ଦମର ବ୍ୟାଣ୍ଡେଜ ଆଡ଼କୁ ଚାହିଁଥିଲା ଜଗୁ । କହିଲା : ମୁଁ କିନ୍ତୁ ବିଶ୍ୱାସ କରି ପାରୁନାହିଁ । ଆଗେ ଆଖିର ବ୍ୟାଣ୍ଡେଜ ଖୋଲି ପକାଅ । ତା'ପରେ...

: ନା ନା, ଏଟାକୁ ଖୋଲି ପାରିବି ନାହିଁ । ଖୋଲିବା ମୋ ପକ୍ଷରେ ସମ୍ଭବ ନୁହେଁ । ଏଇ ପଟିଟା ଖୋଲିଦେଲେ ବର୍ତ୍ତମାନ ରକ୍ତଗଙ୍ଗା ବହିଯିବ ।

: ବହିଯାଉ ରକ୍ତଗଙ୍ଗା । ଜଗୁ ଉଠିଯାଇ ଅରିନ୍ଦମର ଆଖିର ବ୍ୟାଣ୍ଡେଜ ଭିତରେ ଆଙ୍ଗୁଳି ଭର୍ତ୍ତି କରିଦେଲା ।

ଆର୍ତ୍ତ ଚିତ୍କାର କରି ଉଠିଲା ଅରିନ୍ଦମ ।

ମଙ୍ଗୁ ଝରକା ସେପଟରେ ଠିଆ ହୋଇ ସବୁ ଲକ୍ଷ୍ୟ କରୁଥିଲା । ତାକୁ ଲକ୍ଷ୍ୟ କରି କହିଲା : ବୁଝିଲ ବନ୍ଧୁ, ମୋର ମନେ ହେଉଛି ଏ ଶଳା କିଛି ଗୋଟାଏ ଝାମେଲାରେ ପଡ଼ିଥିଲା । ତା' ନ ହୋଇଥଲେ... ଇସ୍ ଶଳାର ଆଖିଟା କିଏ ଏକବାର ତାଡ଼ି ପକେଇଚିରେ । ଅରିନ୍ଦମ ଆଡ଼େ ଚାହିଁ କହିଲା, କି ହେ ନଟବର, ତମକୁ ଏତେ ଘରି କିଏ କଲା ?

ଅରିନ୍ଦମ ଜଗୁର ହାତଟା ଜୋର୍ କରି ତା' ଆଖି ଉପରୁ ଛଡ଼ାଇ ନେଇ ଶଙ୍କିତ କଣ୍ଠରେ କହିଲା : ସେଇ ସଇତାନ ଟୋକୀଟା ।

: କୋଉ ସଇତାନ ଟୋକୀ ସେ ?

: ଲିସା, ତା' ନାଁ ଲିସା । ଏକଦମ ବଦ୍ଧ ପାଗଳ । ଟ୍ରକ୍ ଦୁର୍ଘଟଣାରୁ ଶଙ୍କର ତାକୁ ବଞ୍ଚେଇଥିଲା । ସେଇ ଟୋକୀଟା...

: ସେ ଦେଖିବାକୁ କିମିତିକା ? ଜଗୁ ଅତି ଆଗ୍ରହରେ ପ୍ରଶ୍ନ କଲା ।

: ତା' ମୁଣ୍ଡରେ ସୁନେଲି ବାଳ । ମାନେ ଅନେକଟା.... ବହୁ କଷ୍ଟରେ ଏତକ କହିଲା ଅରିନ୍ଦମ । ଆଉ କିଛି କହିପାରିଲା ନାହିଁ । ମୁହଁ ସାରା ତା'ର ରକ୍ତ ଛୁଡ଼୍ ବୁଡୁ ହୋଇ ଯାଇଥିଲା ।

ଜଗୁ ବାହାରିଗଲା ବାହାରକୁ । ତା' ସାଙ୍ଗକୁ ଯାଇ କହିଲା, : ବୁଝିଲୁ ସାଙ୍ଗ, ସେଇ ଯୋଉ ଟୋକୀଟା କଥା ଆମେ ସରାଇ ଖାନାରେ ଶୁଣି ନ ଥିଲେ, ଯିଏ କୋଟିଏ ଟଙ୍କାର ମାଲିକ । ପାଗଳ ଗାରଦରୁ ପଳାଇ ଆସିଛି, ସେଇ ଟୋକୀଟା ଏଇଠି ଅଛି ।

: କ'ଣ କହୁଛୁ ବେ ? ତା'ହେଲେ ତ ଦେଖୁଛି ଜୋର୍ କପାଳ ଆମର, ଏକାଥରକେ ରାଜକନ୍ୟା, ତା' ସହିତ ରାଜସିଂହାସନ ? ଏଥର ସେ ଶଙ୍କର ଆଡ଼କୁ ବୁଲି, ତା'ଦେହରେ ପିସ୍ତଲ ଖୁଞ୍ଚାମାରି କହିଲା, ବୁଝିଲ ବଂଧୁ ! ଏଥର ରାଜକନ୍ୟାକୁ ବାହାର କର । ତମେ ଭାବିଛ ରାଜକନ୍ୟାକୁ ଧରି ରାଜସିଂହାସନ ଏକା ଏକା ଭୋଗ କରିବ ? ସେ କଥା ଚଳିବ ନାହିଁ ।

: ମାନେ ? କିଏ ରାଜକନ୍ୟା, କାହାକଥା କହୁଛ ତମେ ?

: ଆହାରେ... ଜଗୁ ଶଙ୍କରର ଗାଲ ଚିପି ଦେଇ ବିଦ୍ରୂପ ସ୍ୱରରେ କହିଲା, ବଂଧୁଟି ଆମର ମା' କ୍ଷୀର ଖାଉଛି । କିଛି ଜାଣିନାହିଁ । ଠାଏକରି ଗାଲରେ ଗୋଟାଏ ଚାପୁଡ଼ା କଷିଦେଇ କହିଲା, ତମେ ଜାଣିନା ସେ ପାଗଳୀ ଟୋକୀଟା କଥା ? ଯାହାକୁ ତୁମେ ଟ୍ରକ ଦୁର୍ଘଟଣାରୁ ବଞ୍ଚାଇ ଥିଲ ?

: ସେ ପଳେଇ ଯାଇଛି । ଶାନ୍ତ ସ୍ୱରରେ କହିଲା ଶଙ୍କର । ମୁଁ ତ ସେଇଆକୁ ଜଙ୍ଗଲ ଭିତରେ ଖୋଜୁଥିଲି ।

: ହୁଁ, ସେଇ ଟୋକୀଟା ତା'ହେଲେ ଯାର ଆଖି ଖୋଳି ପକାଇଛି ?

: ହଁ, ସେ କିନ୍ତୁ ପାଗଳ ନୁହେଁ ।

: ବୁଝିଲି, କିନ୍ତୁ ସେ ଟୋକୀଟାକୁ ଯେ ଖୋଜି ବାହାର କରିବାକୁ ହେବ । ଜଗୁ ଦୃଢ଼ କଣ୍ଠରେ କହିଲା ।

ସେତିକିବେଳେ ମଙ୍ଗୁ ଚିତ୍କାର କରି ଉଠିଲା: ଆରେ, ଏ ଯେ ପଳାଇଲା । ଛୁଟି ପଳାଉଛି ଜଙ୍ଗଲ ଆଡ଼କୁ ।

ବେତାଳ ଓ ଶଙ୍କର ଲକ୍ଷ୍ୟ କଲେ ଅରିନ୍ଦମ ରକ୍ତ ଜୁଡୁ ବୁଡୁ ହୋଇ ଅଣ୍ଡାଳି ଅଣ୍ଡାଳି ପଡ଼ି ଉଠି ଦଉଡ଼ି ପଳାଇ ଯିବାକୁ ଚେଷ୍ଟା କରୁଛି । ଶଙ୍କର ଛୁଟି ଯାଉଥିଲା ସେଇ ଆଡ଼େ । ଜଗୁ ବାଁ ହାତରେ ଶଙ୍କରର ହାତଟାକୁ ଧରି ପକାଇ ନିଜେ ସେଇଠି ସ୍ଥିର ଭାବରେ [illegible] ହୋଇ କହିଲା: ଶାନ୍ତ ହୁଅ ବଂଧୁ । ଅରିନ୍ଦମକୁ ତମେ ବଞ୍ଚାଇ ପାରିବ ନାହିଁ । ଅ[illegible] । ହାତର ଲକ୍ଷ୍ୟ ଅବ୍ୟର୍ଥ, ଦେଖିବ ?

ସଙ୍ଗେ ସଙ୍ଗେ ଜଗୁ ହାତର ପିସ୍ତଲଟା ଗର୍ଜି ଉଠିଲା । ଶଙ୍କର ଆଖି ବୁଜି ପକାଇଲା । ଅରିନ୍ଦମର କେବଳ କ୍ଷୀଣ ଆର୍ତ୍ତନାଦ ଟିକେ ବାଜିଲା ଆସି ତା' କାନରେ ।

ହଠାତ୍ ଏକ କାନଫଟା ଶବ୍ଦରେ ଲିସା ସଜାଗ ହୋଇ ଉଠିଲା । ସେ ଯେପରି ବାସ୍ତବ ଜଗତକୁ ଫେରି ଆସିଲା । ଚାହିଁଲା ଚାରିଆଡ଼କୁ । ଛାୟା ଘନ ତରୁଲତା ଭିତରେ ସେ ପଇଁତରା ମାରୁଛି । ପାଇନ୍ ଗଛର ଘନ ଜଙ୍ଗଲ । ଚନ୍ଦ୍ର କିରଣ ଠାଏ ଠାଏ ଝରି ପଡୁଛି । ମୁଣ୍ଡଟେକି ଚାହିଁଲା ସେ ଉପରକୁ । ପୁଣି ଚାହିଁଲା ଚାରି ପାଖକୁ । ଘଟଣା କଣ ? ସେ ଏଠାକୁ ଆସିଲା କିପରି ? କାହିଁକି ବା ଆସିଲା ସବୁ କଥା ମନେ ପକେଇବାକୁ ଚେଷ୍ଟା କଲା । କିନ୍ତୁ କିଛି ମନେ ପଡ଼ିଲା ନାହିଁ । ଖାଲି ଅସ୍ପଷ୍ଟ ଭାବରେ ତା' ଆଖି ଆଗରେ ଭାସି ଉଠିଲା, ଅରିନ୍ଦମର ମୁହଁ । ଲିସା ତା'ଘରେ ଶୋଇଥିଲା । କିଏ ଅରିନ୍ଦମ ନା? ହଁ ଅରିନ୍ଦମ ପ୍ରବେଶ କରିଥିଲା ବୋଧହୁଏ ତା' ଘରେ । ତା'ପରେ ମୁଣ୍ଡଟା ହଠାତ୍ କିମିତି ତାତି ଉଠିଥିଲା । ନା, ଆଉତ କିଛି ମନେ ପଡୁନାହିଁ । ଆହୁରି ଚିନ୍ତା କଲା ଲିସା ।

ଅସ୍ପଷ୍ଟ କିଛି କିଛି ସ୍ମୃତି ତା' ମାନସପଟରେ ଖଣ୍ଡିଉଡ଼ା ଦେବାକୁ ଲାଗିଲା । କ'ଣ ସେଇଟା, ହଁ ଗୋଟାଏ ଘର ତ । ବେଶ୍ ସୁନ୍ଦର ଭାବରେ ସଜ୍ଜିତ ଖଟ, ଟେବୁଲ, ଚେଆର, କିନ୍ତୁ ଖଟ ବାଡ଼କୁ ଆଉଜି ଠିଆ ହୋଇଚି ସେଇଟା କିଏ ? ମଣିଷ ବୋଧେ, ଝିଅଟିଏ, ସାଦା ପୋଷାକରେ ତା'ର ସମସ୍ତ ଅଙ୍ଗ ଆବୃତ । ଆରେ ସେ ଗୋଟାଏ ନର୍ସ ଯେ !

ଏମିତି ଅସ୍ପଷ୍ଟ । ସବୁ ସ୍ୱପ୍ନ ପରି, ଆସୁଚି ମିଳେଇ ଯାଉଚି । କେତେ ମଣିଷ, କେତେ ବଣ ଜଙ୍ଗଲ । କେଉଁଠି ଗୋଟାଏ ଜାଗାରେ ଅଟକି ପାରୁନାହିଁ ତା'ର ଭାବନା ।

ଲିସା ଠିକ୍ କରି ପାରୁ ନଥିଲା, କାହିଁକି ସେ ଘରୁ ବାହାରି ଆସି ଥିଲା ଏଇ ପାଇନ୍ ବଣ ଭିତରକୁ । ତା'ର ମନେ ପଡ଼ିଲା ଶଙ୍କର କଥା । ଶଙ୍କର ହୁଏତ ଚିନ୍ତିତ ହୋଇ ପଡ଼ିଥିବା ସେ ହୁଏତ ଉଦ୍‌ବିଗ୍ନ ହୋଇ ଉଠିଥିବା ତାକୁ ଚାରିଆଡ଼େ ଖୋଜା ଆରମ୍ଭ କରି ଦେଇଥିବା ଠିକ୍ ସେଇ ମୁହୂର୍ତ୍ତରେ ସେ ବୁଝି ପାରିଲା ସେ ଅର୍ଦ୍ଧନଗ୍ନ, ତା' ଦେହର ଉପର ଅଂଶ ଆବୃତ କରି ରଖିଥିବା ଜାମାଟା ଗଲା କୁଆଡ଼େ ? ହୁଏତ ଘରେ ଫିଙ୍ଗି ଦେଇ ଆସିଛି । ଲିସା ସେଇ ମୁହୂର୍ତ୍ତରେ ଘରକୁ ଫେରିବା ପାଇଁ ବାଟ ଖୋଜିଲା ।

ଅଚ୍ଛବାଟ ଆଗେଇ ଯିବା ପରେ ତା' ଆଖିରେ ପଡ଼ିଲା ତାଳ-ବେତାଳଙ୍କର ଛାୟା । ହଁ ଖାଲି ଦୁଇଟା କଳା ଛାୟା କହିଲେ ଚଳିବ । ହ୍ରଦ ନିକଟରେ ଠିଆହୋଇ ଅନ୍ୟ ଆଡ଼କୁ ଚାହିଁ ସେମାନେ କ'ଣ କଥାବାର୍ତ୍ତା ହେଉଥିଲେ । ଲିସା ଖାଲି ସେମାନଙ୍କର

ଦେହର କଳା ରେଖା ଗୁଡ଼ାକ ଦେଖିବାକୁ ପାଉଥିଲା । ସେମାନେ ଅପରିଚିତ । ତଥାପି ସେମାନଙ୍କୁ ଦେଖିବାକ୍ଷଣି କିପରି ଏକ ଭୟର ଶୀତଳ ସ୍ପର୍ଶ ଅନୁଭବ କଲା ଲିସା । ତା'ର ମନେ ହେଲା ଏ ଲୋକ ଦୁଇଟି ଯିଏ ହୁଅନ୍ତୁ ନିଶ୍ଚୟ ସେମାନଙ୍କର ଉଦ୍ଦେଶ୍ୟ ସାଧୁ ନୁହେଁ । କିନ୍ତୁ... ହଠାତ୍ ଲିସାର ଚିନ୍ତାଧାରା ଭିନ୍ନ ପଥଗାମୀ ହେଲା । ଏଇ ସଇତାନ ଲୋକ ଦୁଇଟା ଶଙ୍କରର କିଛି ଅନିଷ୍ଟ କରି ନାହାନ୍ତି ତା କିଏ ଜାଣେ ?

ଲିସା ଲୁଚି ଲୁଚି ଘର ମୁହାଁ ହୋଇ ଦଉଡ଼ିଲା । ଶଙ୍କରର ନିରାପତ୍ତା ପାଇଁ ସେ ଉଦ୍‌ବିଗ୍ନ ହୋଇ ଉଠିଥିଲା । କିନ୍ତୁ ଏ କ'ଣ ? ଅରିନ୍ଦମ ଏଠାରେ ଅର୍ଦ୍ଧଦଗ୍ଧ ଅବସ୍ଥାରେ ପଡ଼ି ରହିଛି ଯେ ! ତା' ହେଲେ କ'ଣ ଶଙ୍କର....ନା, ପ୍ରଥମେ ସେ ଶଙ୍କରକୁ ନିଜ ଆଖିରେ ଦେଖିବାକୁ ଚାହେଁ । ଘର ଭିତରେ ଚଟାଣ ଉପରେ ଶଙ୍କର କୁଜା ହୋଇ ବସିଛି । ତା' ଗୋଡ଼ହାତ ସବୁ ଦଉଡ଼ିରେ ବନ୍ଧା ହୋଇଛି । ଲିସାକୁ ଦେଖିବା ମାତ୍ରକେ ଶଙ୍କର ଉଠିବାକୁ ଚେଷ୍ଟା କଲା । ଲିସା ଛୁଟି ଗଲା ତା'ପାଖକୁ । ସେତେବେଳେ ସେ ଭୁଲି ଯାଇଥିଲା ତା' ଅର୍ଦ୍ଧନଗ୍ନ ଦେହର ଅବସ୍ଥାର କଥା । ଶଙ୍କର କିନ୍ତୁ ନିର୍ନିମେଷ ନୟନରେ ଅନାଇ ରହିଥିଲା ଲିସାର ସେହି ବନ୍ୟ ସୌନ୍ଦର୍ଯ୍ୟ ଆଡ଼େ । ତା'ର ମନେ ହେଉଥିଲା ସବୁ ସୌନ୍ଦର୍ଯ୍ୟର ଶେଷ ଏଇଠି । ହଁ ହଁ ଲିସାକୁ ସେ ଭଲପାଏ । ଯେଉଁଦିନ ପାହାଡ଼ରେ ଧକ୍‌କା ଖାଇ ଚୁର୍‌ମାର୍ ହୋଇ ଯାଇଥିବା ଟ୍ରକରୁ ଲିସାକୁ ସେ ଉଦ୍ଧାର କରିଥିଲା, ସେଇଦିନଠାରୁ ସେ ତାକୁ ଭଲ ପାଇ ବସିଛି । ଲିସା ଛଡ଼ା ଆଉ କୌଣସି ନାରୀକୁ ସେ ଭଲ ପାଇ ପାରିବ ନାହିଁ ।

: ଆରେ ଲିସା ! ତମେ ଫେରି ଆସିଛ । ଆସ ଆସ, ମୋର ଏଇ ବନ୍ଧନଟା କାଟିଦେଲ ।

ଲିସା ଦଉଡ଼ି ଆସି ଶଙ୍କର ପାଖରେ ଆଣ୍ଠୁମାଡ଼ି ବସିଲା । ଦୁଇ ହାତରେ ଜାବୁଡ଼ି ଧରିଲା ତାକୁ ।

: ତମେ କିଛି ଆଘାତ ପାଇନ ତ !

: ନା ନା, କିଛି ହୋଇନି ଲିସା । ତମେ ମତେ ଶୀଘ୍ର ବନ୍ଧନ ମୁକ୍ତ କର। ଆମ ଚାରି ପାଖରେ ବିପଦର ପାଚେରି ଘେରି ରହିଛି ।

: ଶଙ୍କର...ଉଁ, ମୁଁ ଯା ଭୟ ପାଇଲି ନା ! ଲିସା ଶଙ୍କର ମୁହଁରେ ମୁହଁ ଘଷି ଆଖି ବୁଜି ଶଙ୍କର ଦେହରେ ହାତ ବୁଲାଉଥିଲା ।

: ନା, ନା, ମୋର ଏଯାଏ କିଛି ହୋଇନି ଲିସା । କିନ୍ତୁ ଏହା ପରେ ବହୁତ କ୍ଷତି ହୋଇ ପାରେ । ମୋ ସୁନାଟା ପରା, ମୋତେ ଆଗ ବନ୍ଧନମୁକ୍ତ କରିଦିଅ ।

ଏଥର ଲିସା ଶଙ୍କରକୁ ବନ୍ଧନ ମୁକ୍ତ କରିବାକୁ ଚେଷ୍ଟା କଲା । କିନ୍ତୁ ହାତରେ ଗଣ୍ଠି ଖୋଲିବା ତା' ପକ୍ଷରେ ସହଜ ହେଲାନାହିଁ । ସେ ରୋଷେଇ ଘରକୁ ଯାଇ ଗୋଟାଏ ଛୁରି ଆଣି, ଶଙ୍କରର ଗୋଟାଏ ସାର୍ଟ ଦେହରେ ଗଳେଇ ପକେଇ ଫେରି ଆସିଲା ।

: ଶୀଘ୍ର ଲିସା । ଯେତେ ଶୀଘ୍ର ପାର ଦଉଡ଼ି ଗୁଡ଼ା କାଟି ପକାଅ । ହୁଏତ ସେମାନେ ପୁଣି ଏଇ ମୁହୂର୍ତ୍ତରେ ଫେରି ଆସିବେ ।

ଲିସା ଶଙ୍କରକୁ ବନ୍ଧନ ମୁକ୍ତ କଲା । ଶଙ୍କର ନିଜ ମଣିବନ୍ଧକୁ ଆଉଁସୁ ଆଉଁସୁ କହିଲା : ସବୁ ଠିକ୍ ହୋଇଯିବ, କିନ୍ତୁ ଆମକୁ ଶୀଘ୍ର ପ୍ରସ୍ତୁତ ହେବାକୁ ପଡ଼ିବ ।

ମୁଁ ତମକୁ ଭଲପାଏ ଶଙ୍କର । ତୁମ ଛଡ଼ା ମୁଁ ବଞ୍ଚି ପାରିବି ନାହିଁ । ଲିସା ଶଙ୍କରର ଗଳା ଦୁଇ ହାତରେ ଜଡ଼େଇ ଧରି ଅନୁନୟ ସ୍ୱରରେ କହିଲା ।

ଶଙ୍କର ଲିସାକୁ ନିଜ ଆଡ଼କୁ ଆହୁରି ନିବିଡ଼ ଭାବରେ ଟାଣିନେଇ କାନ ପାଖରେ ଧୀରେ ଧୀରେ କହିଲା ! ମୁଁ ଜାଣେ ଲିସା, ଆଉ ତମେ ବି ଜାଣିରଖ ମୁଁ ତୁମକୁ ଦେଖିଲା ଦିନଠାରୁ  ଭଲ ପାଇ ଆସୁଛି । କିନ୍ତୁ ବର୍ତ୍ତମାନ ଆମେ ଆଉ ସମୟ ନଷ୍ଟ କରି ପାରିବା ନାହିଁ । ଆମକୁ ଏଠୁ ପଳେଇବାକୁ ହେବ । ତୁମେ ଯାଅ ପୋଷାକପତ୍ର ପିନ୍ଧି ଆସ ।

ଲିସା ଛୁଟିଗଲା ଶୟନ କକ୍ଷ ଆଡ଼କୁ । ଶଙ୍କର ଯାଇ ବାହାରେ ଠିଆ ହେଲା । ତାଳ-ବେତାଳ ଦୁହିଁଙ୍କର ଆଉ ଚିହ୍ନ ଦିଶୁନାହିଁ । କିଛି ସମୟ ପରେ ପୋଷାକପତ୍ର ପିନ୍ଧି ଫେରି ଆସିଲା ଲିସା ।

ଶଙ୍କର କହିଲା : ସେମାନଙ୍କର ଗାଡ଼ିଟାରେ ଯାଇ ଆମକୁ ଉଠିବାକୁ ହେବ । ସେ ଲିସାର ହାତ ଧରି ଅନ୍ଧକାରରେ ଦୌଡ଼ିବାକୁ ଲାଗିଲା ।

ସେମାନେ ଅଳ୍ପକିଛି ବାଟ ଆଗେଇଯିବା ପରେ ଦେଖିଲେ, ଦୂରରେ ସେଇ କଳା ଗାଡ଼ିଟା ଠିଆ ହୋଇଛି । ସେଇ ଦିଗକୁ ଦ୍ରୁତ ଗତିରେ ଧାଇଁଲେ ସେମାନେ ।

ଠିକ୍ ସେତିକିବେଳେ ତାଳ-ବେତାଳ ଜଙ୍ଗଲରୁ ବାହାରି ଆସୁଥିଲେ ।

: ଖୁବ୍ ଶୀଘ୍ର ଲିସା । ସେମାନେ ଆମକୁ ଦେଖି ସାରିଲେଣି । ତୁମେ ଗାଡ଼ି ଚଳେଇ ଜାଣ ତ ? ଶଙ୍କର କଣ୍ଠରେ ଉତ୍‌କଣ୍ଠା ଫୁଟି ଉଠିଥିଲା ।

: ଜାଣେ, କିନ୍ତୁ ତୁମକୁ ଛାଡ଼ି ମୁଁ ଏକା ଯିବିନାହିଁ ।

: ଆରେ ଚାଲ, ମୁଁ ବି ଯାଉଛି । ତମେ ଆଗରେ ଯାଇ ଇଞ୍ଜିନ୍‌ଟା ଚାଲୁକର। ସେତେବେଳଯାଏ ମୋତେ ସେମାନଙ୍କୁ ଅଟକେଇ ରଖିବାକୁ ହେବ ।

ଆଗେଇ ଯାଇଥିଲା ଲିସା । କିନ୍ତୁ ତାଳ-ବେତାଳ ଛୁଟି ଆସୁଥିଲେ ଦ୍ରୁତ ଗତିରେ । ଚିତ୍କାର କରି କହିଲେ ଅପେକ୍ଷା କର ।

ଶଙ୍କର କାନରେ ଗାଡ଼ି ଷ୍ଟାର୍ଟ ହେବାର ଶବ୍ଦ ଆସି ବାଜିଥିଲା । ସେ ତାଳ-ବେତାଳଙ୍କ କଥା ନଶୁଣି ଗାଡ଼ି ଆଡ଼କୁ ଛୁଟିବାକୁ ଲାଗିଲା । ଜଗୁ ସଙ୍ଗେ ସଙ୍ଗେ ଗୁଳି ଚଳେଇଲା  କିନ୍ତୁ ଶଙ୍କର ଟଳି ଟଳି ଯାଇ ଗାଡ଼ିର ଦରଜା ପାଖରେ ପହଞ୍ଚି ଯାଇଥିଲା । ଖୋଲା ଦରଜା ଭିତରକୁ ପଶିଯାଇ ଲିସା ଉପରେ ଟଳି ପଡ଼ିଲା ଶଙ୍କର  ମୋ ଦେହାରେ ଗୁଳି ଲାଗିଛି ଲିସା । ଶୀଘ୍ର ଚାଲ ।

ଲିସା ଶଙ୍କରକୁ ପାଖରେ ବସାଇ ବାହାରକୁ ଚାହିଁ ଦେଖିଲା, ତାଳ ବେତାଳ ଦ୍ରୁତ ବେଗରେ ଆଗେଇ ଆସୁଛନ୍ତି ତାଙ୍କରି ଆଡ଼େ । ପର ମୁହୂର୍ତ୍ତରେ କ୍ଲାଚ ଛାଡ଼ିଦେଇ ଦ୍ରୁତବେଗରେ ଗାଡ଼ି ଛୁଟେଇ ଦେଲା ଲିସା ।

ଜଗୁ  ଥମକି ଠିଆ ହୋଇ ଯାଇ ରିଭଲ୍‌ଭର ଉଠେଇଲା ବେଳକୁ ମଙ୍ଗୁ ଜଗୁର ହାତଧରି ପକାଇ କହିଲା : ଟିକେ ଦୟା ଧର୍ମ କର ବନ୍ଧୁ । ସେ ଝିଅଟାକୁ ଗୁଳି କଲେ ଯେ ଆମର କ୍ଷତି । ତା'ର ମୂଲ୍ୟ ପରା କୋଟିଏ ଟଙ୍କା !!

: କିନ୍ତୁ ସେମାନେ ପଳେଇଲେ ଯେ ! ବିରକ୍ତି ଭାବ ଫୁଟି ଉଠିଲା ଜଗୁ ସ୍ୱରରେ ।

: ସେଥିପାଇଁ ଚିନ୍ତା କରୁଚ । ଆମେ କ'ଣ ସେମାନଙ୍କୁ ଆଉଥରେ ଖୋଜି ବାହାର କରି

ପାରିବା ନାହିଁ । ସେହି ଝିଅଟା ଆଉ ତା' ଟଙ୍କା ଆଡ଼କୁ ଚାହିଁ ସେତିକି କଷ୍ଟ ସ୍ୱୀକାର କରିବାରେ ଦୁଃଖ ପାଇବାର ନୁହେଁ ।

ସେଇ କଳାଗାଡ଼ିଟା ପଛରେ ନାଲି ଆଲୁଅଟା କ୍ରମଶଃ ସେମାନଙ୍କ ଆଖି ଆଗରୁ ଅଦୃଶ୍ୟ ହୋଇଗଲା ।

ଚତୁର୍ଥ ହାଇୱେର ଆରମ୍ଭ ଯେଉଁଠି, ତା' ଡାହାଣ ପାଖକୁ ଯେଉଁ ଉପନଗରୀଟି ଗଢ଼ି ଉଠୁଚି, ଏବେ ସେଇଠି ବିତ୍ତବାନ ମଣିଷମାନେ ଭିଡ଼ କରିଛନ୍ତି । ସେଇଠି ଏକ ସୁଦୃଶ୍ୟ ଘରେ ରହେ ରଞ୍ଜିତା । ରଞ୍ଜିତାର ସୁନାମ ନାହିଁ । ସେଠିକା ଲୋକେ ତାକୁ ବଙ୍କା ଆଖିରେ ଚାହାନ୍ତି । ତା'ର କିନ୍ତୁ ପୈତୃକ ସଂପତ୍ତି ଅଗାଧ । ତେଣୁ ସେ କାହାରିକୁ ଖାତିର୍ କରେ ନାହିଁ । ନିଜ ମନ ଖୁସିରେ ମଉଜ୍ କରି ବୁଲେ । ତା'ର ଅନେକ ପୁରୁଷ ବନ୍ଧୁମାନଙ୍କ ମଧ୍ୟରୁ ରଜତ ମାଲହୋତ୍ରାଙ୍କୁ ସେ ସବୁଠାରୁ ଭଲପାଏ ଏବଂ ତାକୁହିଁ ବିବାହ କରିବା ପାଇଁ ସେ ସ୍ଥିର କରିଛି ।

ସେଦିନ ଅନେକ ରାତ୍ରିରେ ଆସି ମାଲହୋତ୍ରାଙ୍କ ଗାଡ଼ି ଲାଗିଲା ରଞ୍ଜିତାର ସୁସଜ୍ଜିତ ଦୁଆର ସାମ୍ନାରେ । ଗାଡ଼ିର ଦରଜା ଖୋଲି ଭିତରକୁ ପଶିଲେ ରଜତ ମାଲହୋତ୍ରା । ସେ ରଞ୍ଜିତାର ଖାସ୍ ଲୋକ । ତେଣୁ ମାଲହୋତ୍ରାଙ୍କ ପାଇଁ କୌଣସି ବାଧା ବନ୍ଧନ ନାହିଁ ।

ରଜତ ମାଲହୋତ୍ରା ରଞ୍ଜିତାର ଶୋଇବା ଘର ଚିହ୍ନନ୍ତି । ପ୍ରଥମତଃ ଯାଇ ସେ ଦରଜା ପାଖରେ ଠିଆ ହେଲେ । ଏତେ ରାତିରେ ଦରଜାରେ ନକ୍ କରିବେକି ନାହିଁ ଭାବି ଦରଜାକୁ ଟିକିଏ ଠେଲିଦେଲେ । ଖୋଲିଗଲା । ଆଉ ଆଗ ପଛ କିଛି ଚିନ୍ତା ଭାବନା ନ କରି ମାଲହୋତ୍ରା ସିଧା ଯାଇ ରଞ୍ଜିତାର ଶୋଇବା ଖଟ ଉପରେ ବସିଲେ । ଧୀରେ ଚାଦର ଭିତର ଦେଇ ଗୋଟାଏ ହାତ ଗଳେଇ ରଞ୍ଜିତାର ଦେହ ସ୍ପର୍ଶ କଲେ ।

ସଙ୍ଗେ ସଙ୍ଗେ ଚାପା ଆର୍ତ୍ତନାଦ କରି ରଞ୍ଜିତା ଉଠିପଡ଼ି ଘରର ଆଲୋକ ଜଳାଇ ଦେଲା । ହତଚକିତ ହୋଇ କହିଲା : ହେ ଭଗବାନ, ତୁମେ । ଏଇଟା କିନ୍ତୁ ତମର ଖୁବ୍ ଅନ୍ୟାୟ । କୋଉ ସାହସରେ ଏତେ ରାତିରେ ତମେ ସିଧା ସଳଖ ଆସି...ନା ନା, ଏଇଟା କିନ୍ତୁ ଅତିରିକ୍ତ ହୋଇ ଯାଉଚି ।

: ଅତିରିକ୍ତ, ନା ? ରଜତ ମାଲହୋତ୍ରା ହସି ହସି କହିଲେ । ତୁମେ ଯେ ସବୁବେଳେ କୁହ ମତେ ଦେଖିଲେ ତୁମେ ଖୁସି ହେବ । ହେଇ ମୁଁ ତମ ସାମ୍ନାରେ । ଏଥର ଖୁସି ହୁଅ ।

ଅଳସ ଭାଙ୍ଗି, ହାଇ ତୋଳି ସଳଖ ହୋଇ ବସିଲା ରଞ୍ଜିତା । କହିଲା : ହଁ, ଖୁସିତ ନିଶ୍ଚୟ ହେବି । ତେବେ ତମେ ଆଚରଣଟା ଟିକିଏ ଭଦ୍ର କର । ଏପରି ରାତି ଅଧରେ ଲୁଚି ଲୁଚି ଆସି ଜଣେ ଭଦ୍ର ମହିଳାଙ୍କ ଶୋଇବା ଘରେ...

: ହଉ ଥାଉ ଥାଉ । ମାଲହୋତ୍ରା ରଞ୍ଜିତାର କଥା ଥମେଇ କହିଲେ, ଦେଖ ରଂଜୁ ତମେ ଯେ ମନ ପ୍ରାଣରେ ମୋର ଆଚରଣରେ ଅସନ୍ତୁଷ୍ଟ ନୁହଁ, ସେ କଥା ମୁଁ ବେଶ୍ ବୁଝି ପାରିଛି । ରାତି ଅନେକ ହେଲାଣି । ମୁଁ ଗୋଟାଏ ଶୁଭ ସଂବାଦ ଶୁଣେଇବାକୁ

ଆସିଛି ତୁମ ପାଖକୁ ।

ରଞ୍ଜିତା ମୁହଁରେ କୌଣସି ପରିବର୍ତ୍ତନର ଲକ୍ଷଣ ଦେଖାଗଲା ନାହିଁ । ସେ ହାତ ବଢ଼େଇ ପାଖ ଟେବୁଲରୁ ଗ୍ଲାସ୍‌ରେ କିଛି ପାନୀୟ ଢାଳି ମାଲହୋତ୍ରା ଆଡ଼କୁ ବଢ଼େଇ ଦେଇ କହିଲା : ମୋତେ ଆଉ ଶୁଭ ସମ୍ବାଦ କିଛି ଶୁଣାଅ ନାହିଁ । ତମ ମୁହଁର ଶୁଭ ସମ୍ବାଦ ଶୁଣି ଶୁଣି ମୋ କାନ ଧୀରେ ଧୀରେ ବଧିରା ହୋଇ ଆସିଲାଣି ।

ରଜତ ମାଲହୋତ୍ରା ସିଗାରେଟ୍ ଲଗେଇଲେ । ଗ୍ଲାସଟା ହାତକୁ ନେଇ କହିଲେ : ନା ରଂଜୁ ! ଏଥର କିନ୍ତୁ ମୁଁ ବାଜିମାତ୍ କରିବି । ଏଥର ଚାନ୍‌ସଟା ଖୁବ୍ ଫେଆର । ମୁଁ ବରିହା ପରିବାରର ସେଇ ଝିଅଟାକୁ ଖୋଜୁଛି ।

: କୋଉ ଝିଅକୁ ? ରଂଜିତା ଯେପରି ଚିତ୍କାର କରି ଉଠିଲା ।

: ଆରେ ନା ନା, ଝିଅ ମାନେ ପ୍ରେମ ଫ୍ରେମର କଥା କିଛି ନୁହେଁ । ଇଏ ଖାସ୍ ଏକ ବ୍ୟବସାୟିକ ସଂପର୍କ । ଝିଅଟା ଅଗାଧ ସମ୍ପତ୍ତିର ମାଲିକ । ତାକୁ ପାଗଳ କହି ତା' ସମ୍ପତ୍ତିତକ ଅନ୍ୟମାନେ ମାରି ନେବାର କାଇଦାରେ ଅଛନ୍ତି । ମୁଁ କିନ୍ତୁ ଚାହେଁ ତାକୁ ସାହାଯ୍ୟ କରିବି ସେ ନିଶ୍ଚୟ ମୋ ପ୍ରତି କୃତଜ୍ଞ ରହିବ ।

: ତା'ପରେ ?

: ତା'ପରେ ଅବଶ୍ୟ ତମକୁ ଟିକିଏ କଷ୍ଟ ସ୍ୱୀକାର କରିବାକୁ ହେବ । ମୁଁ ଭାବିଛି ତାକୁ ଆଣି ଏଇଠି ତମ ପାଖରେ ରଖିବି । ତମ ସଙ୍ଗ ସୁଖ ପାଇଲେ ସେ ନିଶ୍ଚୟ ବଦଳି ଯିବ ।

: ତା'ପରେ ? ରଞ୍ଜିତା ଗମ୍ଭୀର ହୋଇ ପଚାରିଲା ।

: ତା'ପରେ ତ ସବୁ ଅତି ସହଜ । ସଂପତ୍ତି ଆମର ହେବ । ତା'ପରେ ଆମେ ଘର କିଣିବା, ଗାଡ଼ି କିଣିବା, ପୋଷାକ ପତ୍ର ସବୁ କିଣିବା । ତା'ପରେ ଜଣେ କ୍ୟାମରାମ୍ୟାନକୁ ସାଙ୍ଗରେ ଧରି ବାହାରି ପଡ଼ିବା ଦେଶ ବିଦେଶ ଭ୍ରମଣରେ । କି ମଜା, କିଛି ହୃଦୟଙ୍ଗମ କରୁଛ ରଂଜୁ ।

: ହଁ, ବୁଝି ପାରୁଛି ।

: କ'ଣ ବୁଝି ପାରୁଛ କହିଲ ? ମାଲହୋତ୍ରା ଉତ୍ସାହିତ ହୋଇ ପଚାରିଲେ ।

: ତମର ଅନେ ଅର୍ଥହୀନ ପରିକଳ୍ପନା ମଧ୍ୟରୁ ଏଇଟା ସବୁଠାରୁ ବେଶି ଅର୍ଥହୀନ । କିନ୍ତୁ ଯେଉଁ ଝିଅଟା କଥା ତୁମେ କହୁଛ, ସେ ଝିଅଟାର ଯେ ମୁଣ୍ଡ ଖରାପ । ସେ କଥା ତମର ମନେ ଅଛିଟି ! ଝିଅଟା ଯେ ସାଂଘାତିକ ହିଂସ୍ର । ଆମକୁ ସେ ଖୁଣ୍ ବି କରିପାରେ । ତୁମେ କ'ଣ ଭାବିଛ ଧାରୁଆ ଛୁରୀ ଆଗକୁ ମୁଁ ଗଳାଟା ଜାଣି ଜାଣି ବଢ଼ାଇ ଦେବି ?

ନା ନା, ରଂଜୁ ! ତମେ ଯାହା ଭାବିଛ ତାହା ନୁହେଁ । ମୁଁ ଝିଅଟାକୁ ଅତି ସହଜରେ କାବୁ କରି ପାରିବି । ତମର ମନେ ନାହିଁ? ଗୋଟାଏ ଚାଞ୍ଚଲ୍ୟକର ଗଳ୍ପର ପ୍ଲଟ୍ ପାଇଁ ଥରେ ମୁଁ ଓରାଂ ଓଟାଂ ପଞ୍ଜୁରିରେ ଦୁଇଘଣ୍ଟା କଟେଇ ଦେଇଥିଲି ।

: ହଁ, ସେ କଥା ମୋର ମନେ ଅଛି ଏବଂ ଆହୁରି ମନେ ଅଛି ଯେ ସେଇ ଦୁଇଘଣ୍ଟା ଓରାଂ ଓଟାଂ ସେ ପଞ୍ଜୁରୀରେ ନ ଥିଲା ।

: ସେ ଯା ହେଉ । କିନ୍ତୁ ଏଇ ଝିଅଟାକୁ ଭୟ କରିବାର କିଛି ନାହିଁ। ଝିଅଟ । ଯେଉଁ ହସ୍‌ପିଟାଲରେ ଥିଲା, ସେଠାକାର ନର୍ସ ସହିତ ମୁଁ କଥା କହି ଦେଖିଛି ଝିଅଟା

ଖୁବ୍ ସରଳ। କିନ୍ତୁ ତା' ମନରେ ଦୁଇଟା ଭାଗ ଅଛି। ମଝିରେ ମଝିରେ ରୋଗଟା ଆକ୍ରମଣ କରେ ସେ ଝିଅଟାକୁ। ସେତେବେଳେ ସେ ଉଗ୍ର ହୋଇ ଉଠେ। ଅବଶ୍ୟ ଆଗେ ଏ ରୋଗଟା ତାକୁ ବେଶି ଆକ୍ରମଣ କରୁଥିଲା। ଏବେ ସେ ଅନେକଟା ସ୍ୱାଭାବିକ। ସେ ଯେତେବେଳେ ଭଲ ରୁହେ, ସେତେବେଳେ ତା'ର ସ୍ୱଭାବ ଅତ୍ୟନ୍ତ ସରଳ ଓ ଆଚରଣ ଖୁବ୍ ଆନ୍ତରିକ। ଖାଲି ତା' ଉପରେ ଟିକିଏ ଦୃଷ୍ଟି ରଖିବା ଛଡ଼ା ତମକୁ ତା'ପାଇଁ ଆଉ କିଛି କରିବାକୁ ହେବନାହିଁ।

: ତମେ ତା' ସମ୍ବନ୍ଧରେ ଯେତେ ଯାହା କୁହ ପଛେ, ଝିଅଟା କିନ୍ତୁ ସାଂଘାତିକ। ଟ୍ରକ ଡ୍ରାଇଭରଟାର ସେ କି ଦଶା କରିଥିଲା, ତମର ମନେ ନାହିଁ ?

: ସେଇଟା ତା'ନିଜ ଇଜ୍ଜତ ବଞ୍ଚେଇବା ପାଇଁ। ଦରକାର ବେଳେ ତମେ ସିମିତି କରିବ।

ରଂଜିତାକୁ ଅଯଥା ତର୍କ ଆଉ ଭଲ ଲାଗୁନଥିଲା। ସେ ଅନ୍ୟଆଡ଼େ ମୁହଁ ବୁଲେଇ କହିଲା : ହଉ ତମ ଇଚ୍ଛା, ଯା' କରୁଛ କର। ଝିଅଟାକୁ ତ ଏ ଯାଏ ଖୋଜି ପାଇନାହଁ।

: ପ୍ରାୟ ପାଇଛି। ମାଲହୋତ୍ରା କହିଲେ : ଝିଅଟା ଗତ କେତେ ଦିନ ହେବ ଯେଉଁଠି ଲୁଚି ରହିଥିଲା, ସେଠାକାର ସନ୍ଧାନ ମୁଁ ପାଇଛି।

: କ'ଣ ହେଲା ? ତମେ ସେ ଝିଅଟାର ସନ୍ଧାନ ପାଇଛ ? ରଂଜିତା ଉଠିପଡ଼ି କହିଲା, ଦେଖୁଛି ମୋତେ ଏଥର ଟିକେ ହୁଇସ୍କି ପିଇବାକୁ ହେବ।

: ହୁଇସ୍କି ପିଅ, ଯାହାକର, ମୁଁ ସେ ଝିଅଟାକୁ ଆଣି ତମ ପାଖରେ ଛାଡୁଛି। ଏଠାରେ ସେ ରହିଲେ କାହା ବାପର ସାଧ ନାହିଁ, କିଏ ଜାଣି ପାରିବ।

ରଂଜିତା ରଜତ ମାଲହୋତ୍ରାଙ୍କୁ ନିଜ ଆଡ଼କୁ ଟାଣିନେଇ ଆଦର କରି କହିଲା: ତମେ କାହିଁକି ଏସବୁ ଗୋଳମାଳ ଭିତରକୁ ପଶୁଛ। ମୋ କଥା ଶୁଣ। ମୁଁ ମୋର ସମସ୍ତ ସମ୍ପତ୍ତି ତମ ନାଁରେ ଉଇଲ୍ କରି ଦେଉଛି। ତମେ ଏଇଠି ଆରାମରେ ଗୋଡ଼ ଉପରେ ଗୋଡ଼ ପକେଇ ବସିଥାଅ।

ରଜତ ମାଲ୍‌ହୋତ୍ରା ବିଦ୍ରୁପର ହସ ହସିଲେ। କହିଲେ : ତମେ ଜାଣ ରଂକୁ, ମୁଁ ଜଣେ ସାମ୍ବାଦିକ। ମୋର ମାନ ଇଜ୍ଜତ ବୋଲି ଗୋଟାଏ ପଦାର୍ଥ ଅଛି। ମୁଁ ଯଦି ତମ ସମ୍ପତ୍ତି ନେଇ ତମକୁ ବାହା ହୁଏ, ତେବେ ଲୋକେ କହିବେ ମୁଁ ସମ୍ପତ୍ତି ଲୋଭରେ ତମକୁ ବାହା ହୋଇଛି। ଏତେ ଛୋଟ ମୁଁ ହୋଇ ପାରିବି ନାହିଁ। ସେ ସବୁ କଥା ବର୍ତ୍ତମାନ ଥାଉ। ରାତି ପାହିବାକୁ ଆଉ ଅଳ୍ପ ସମୟ ବାକି ଅଛି। ମୋର ବର୍ତ୍ତମାନ ଟିକେ ବିଶ୍ରାମ ଦରକାର। ବିଶ୍ରାମ ମାନେ କ'ଣ ବୁଝି ପାରୁଛ ତ !

•

ପାହାଡ଼ୀ ସର୍ପିଳ ପଥ ମଧ୍ୟରେ ଗାଡ଼ି ଚଳାଇ ଶ୍ରାନ୍ତ କ୍ଳାନ୍ତ ଅବସ୍ଥାରେ ଲିସା ଯେତେବେଳେ ଆସି ତୃତୀୟ ହାଇୱେରେ ପହଞ୍ଚିଲା, ସେତେବେଳେ ସେ ପଛକୁ ଚାହିଁଲା। ଶଙ୍କର ଗାଡ଼ିରେ ଅଚେତନ ହୋଇ ଶୋଇଛି। ତାଳ-ବେତାଳଙ୍କଠାରୁ ସେ ହୁଏତ ବହୁତ ପଥ ଅତିକ୍ରମ କରି ଚାଲି ଆସିଛି। କିନ୍ତୁ ବର୍ତ୍ତମାନ ଉପାୟ କ'ଣ ? ଶଙ୍କର ଜୀବିତ ଅଛି ତ ?

ହାଇୱ୍ୱେରେ କିଛିଦୂର ଦ୍ରୁତ ଗତିରେ ଗାଡ଼ି ଚଳେଇ ନେଇ ଗୋଟାଏ ନିରାପଦ ସ୍ଥାନରେ ଗାଡ଼ି ଠିଆ କଲା ଲିସା । ବାଁ ପାଖରେ ଗୋଟାଏ ପରିତ୍ୟକ୍ତ ଘର ତା' ଦୃଷ୍ଟି ଗୋଚର ହେଲା । ଆଖ ପାଖରେ କେତେ ଗୁଡ଼ାଏ ଛୋଟ ଛୋଟ କୁଡ଼ିଆ ଘର । ବୋଧହୁଏ ଏଇ ହାଇୱ୍ୱେ ମରାମତି ପାଇଁ ଯେଉଁ ଶ୍ରମିକମାନେ କାମ କରୁଥିଲେ । ସେମାନେ ଏଇଠି ଆସି ଆଶ୍ରୟ ନେଉଥିଲେ । ବର୍ତ୍ତମାନ ସେଗୁଡ଼ା ଖାଲି ପଡ଼ିଛି ।

ଲିସା ଭାବିଲା ଏଇଟା ହେବ ତା'ପାଇଁ ନିରାପଦ ଆଶ୍ରୟ । ସେ ଗାଡ଼ିଟାକୁ ହାଇୱ୍ୱେରୁ ତଳ ଆଡ଼କୁ ଗଡ଼େଇ ନେଇ ଠିଆକଲା । ଏଥର ସେ ଚାହିଁଲା ଶଙ୍କର ଆଡ଼କୁ । ତା' ଛାତିଟା ଥରି ଉଠିଲା । ଶଙ୍କର ଦେହରେ ହାତ ମାରିବା ପାଇଁ ତା'ର ସାହସ ହେଉ ନ ଥିଲା । ଧୀରେ ଧୀରେ ଡାକିଲା : ଶଙ୍କର । ଶଙ୍କର !! ଶୁଣୁଛ । ମୁଁ ଲିସା । ଆମେ ଆସି ନିରାପଦ ସ୍ଥାନରେ ପହଞ୍ଚି ଯାଇଛେ । କେମିତି ଅଛ ତମେ ?

ଶଙ୍କର ଶୁଣିଲା ନାହିଁ କିମ୍ବା ଟିକେ ବି ହଲିଲା ନାହିଁ । ଏଥର ଲିସା ଶଙ୍କର ଦେହରେ ହାତ ମାରିଲା । ତା' ମୁଣ୍ଡଟା ଉଠାଇବାକୁ ଯାଇ ଲିସାର ମନେ ହେଲା ଶଙ୍କର ବୋଧହୁଏ ତାକୁ ଛାଡ଼ି ଚାଲି ଯାଇଛି । ଧୈର୍ଯ୍ୟର ବନ୍ଧ ତା'ର ଭାଙ୍ଗିଗଲା । ସେ ଗାଡ଼ିର ଦରଜା ଖୋଲି ତଳକୁ ଓହ୍ଲେଇ ପଡ଼ିଲା । କ'ଣ କରିବ ସେ ? ମାଟି ଉପରେ ପାଦ ଦେଇ ଗାଡ଼ିର ଖୋଲା ଦରଜାଟା ଧରି ସ୍ତବ୍ଧ ହୋଇ ମୁହୂର୍ତ୍ତେ ଠିଆ ହେଲା । ନିଜକୁ ସାନ୍ତ୍ୱନା ଦେଲା । ବିପଦ ବେଳେ କାତର ହେଲେ ଚଳିବ ନାହିଁ । ସେ ପୁଣି ଗଲା ଶଙ୍କର ପାଖକୁ । ଗାଡ଼ିର ଡାହାଣ ପାଖ ଦରଜା ଖୋଲି ବହୁ କଷ୍ଟରେ ଶଙ୍କରକୁ ତଳକୁ ଓହ୍ଲେଇ ଆଣି ନରମ ପତ୍ର ଉପରେ ଶୁଆଇ ଦେଲା । ଗାଡ଼ିର ସ୍ପଟ୍ ଲାଇଟ୍ ଜଳେଇ ଦେଖିଲା, ଶଙ୍କରର ଜାମାପଟା ରକ୍ତରେ ଭିଜି ଯାଇଛି ।

ଲିସା ଶଙ୍କର ଛାତିରେ ହାତ ରଖିଲା । ହୃତ୍‌ପିଣ୍ଡର ଗତି ଅତି କ୍ଷୀଣ... ଅନିୟମିତ। ତେବେ ଏପର୍ଯ୍ୟନ୍ତ ଶଙ୍କର ବଞ୍ଚିଛି । ସେତିକି ଜାଣି ଆଶ୍ୱସ୍ତ ହେଲା ଲିସା । କିନ୍ତୁ ରକ୍ତପାତ ଯେ ବନ୍ଦ ହେଉନାହିଁ, ପ୍ରଥମେ ସେଇଟାକୁ ବନ୍ଦ କରିବାକୁ ହେବ ।

ଗାଡ଼ି ପାଖକୁ ଫେରି ଆସିଲା ଲିସା । ଗାଡ଼ିର ଲଗେଜ୍ କେରିଅର ଉଠାଇ ଦେଖିଲା ଗୋଟାଏ ଆଟାଚି କେସ ରହିଛି । କ୍ଷିପ୍ର ହସ୍ତରେ ଖୋଲି ପକାଇଲା । ଭିତରେ କେଇଖଣ୍ଡ ଜାମାପ୍ୟାଣ୍ଟ । ଲିସାର ଆଖି ଉଜ୍ଜ୍ୱଳ ହୋଇ ଉଠିଲା । ଏଇ ଜାମା ପ୍ୟାଣ୍ଟ ଛିଣ୍ଡେଇ ସେ ବ୍ୟାଣ୍ଡେଜ କରିବ ଶଙ୍କର ଛାତିରେ । ଚେଷ୍ଟା କରିବ ରକ୍ତପାତ ବନ୍ଦ କରିବାପାଇଁ । ଲିସା ପୁଣି ଫେରିଗଲା ଶଙ୍କର ପାଖକୁ । ଗାଡ଼ିର ସ୍ପଟ୍‌ଲାଇଟ୍ ପଡ଼ିଥିଲା ଶଙ୍କର ଦେହରେ । ଲିସା ଦେଖିଲା ଖୁବ୍ କ୍ଲାନ୍ତ ଆଖିମେଲି ଶଙ୍କର ଚାହିଁବାକୁ ଚେଷ୍ଟା କରୁଚି ।

: ମୁଁ ଏଇକ୍ଷଣି କ'ଣ କରିବି କୁହ । ତମର ଖୁବ୍ କଷ୍ଟ ହେଉଛି ନିଶ୍ଚୟ ? ଲିସା ଶଙ୍କର ପାଖରେ ଆଣ୍ଠୁମାଡ଼ି ବସିପଡ଼ିଲା । ଛିଣ୍ଡା କାମିଜର ପଟି ନେଇ ଶଙ୍କର ଛାତିରେ ବାନ୍ଧୁ ବାନ୍ଧୁ କହିଲା, ଦେଖେ ଯଦି ରକ୍ତଟା ବନ୍ଦ କରିପାରେ ।

: ସ୍ୱୁନା ଝିଅଟି । ଶଙ୍କରର ଅସ୍ପଷ୍ଟ ସ୍ୱର ଶୁଣାଗଲା । ତା'ପରେ ଯନ୍ତ୍ରଣାରେ ମୁହଁଟା ତା'ର ଭରି ଉଠିଲା । ଖୁବ୍ କଷ୍ଟ ହେଉଛି... ପୁଣି ସେମିତି ଅସ୍ପଷ୍ଟ ଭାଷା ।

ଲିସା ବିଚଳିତ ହୋଇ ପଡ଼ିଥିଲା । ପରିସ୍ଥିତି ତାକୁ ଅସହାୟ କରି ପକାଇଥିଲା ।

ସେ କାନ୍ଦ କାନ୍ଦ ହୋଇ ପଡ଼ିଥିଲା । ତଥାପି ମନରେ ସାହସ ବାନ୍ଧି କହିଲା : ତମ କଷ୍ଟ ମୁଁ ବୁଝି ପାରୁଛି । ତଥାପି ତୁମେ ଧୈର୍ଯ୍ୟ ହରାଅ ନାହିଁ । ହୁଏତ ଏଇକ୍ଷଣି ରକ୍ତପାତ ବନ୍ଦ ହୋଇଯିବ । ତା'ପରେ... ତା'ପରେ.... ଓଃ ତା'ପରେ କ'ଣ ଯେ କରିବି...

ଲିସା ଜାମା ଚିରି ବ୍ୟାଣ୍ଡେଜ୍ କରି ବାନ୍ଧି ଯେତେ ଚେଷ୍ଟା କଲା, ରକ୍ତ କିନ୍ତୁ ବନ୍ଦ ହେଲାନାହିଁ । ଗୁଳି ଭେଦିଥିବା ସ୍ଥାନରୁ ଜକେଇ ଜକେଇ ରକ୍ତ ବାହାରୁଥିଲା । ଏଥର ଲିସା ଧୈର୍ଯ୍ୟ ହରାଇ ବସିଲା । ତା'ର ଧାରଣା ହେଲା ଶଙ୍କରକୁ ସେ ଆଉ ବଞ୍ଚାଇ ପାରିବ ନାହିଁ । ଦି' ହାତରେ ମୁଣ୍ଡକୁ ଚାପି ଧରି ସେଇ ମାଟି ଉପରେ ବସି ପଡ଼ିଲା ।

: ଭୟ କରନା । ବହୁ କଷ୍ଟରେ ଏତକ ଉଚ୍ଚାରଣ କରି ଶଙ୍କର ନିଜର କ୍ଷତ ସ୍ଥାନ ଆଡ଼କୁ ଚାହିଁଲା । ସେ ଯାହା ଭାବିଥିଲା, ଆଘାତ ତା'ଠାରୁ ଯଥେଷ୍ଟ ବେଶି । ଗୋଟାଏ ଶୀତଳ ଅନୁଭୂତି ତାକୁ ଯନ୍ତ୍ରଣା କାତର କରି ପକାଇଥିଲା ।

: ଆସ, ଆସ ଲିସା । ରକ୍ତଟା ବନ୍ଦ କରିଦିଅ ।

ମୁଁ ପାରୁନାହିଁ । ବର୍ତ୍ତମାନ ଅନ୍ୟର ସାହାଯ୍ୟ ପ୍ରୟୋଜନ, କିନ୍ତୁ କେଉଁଠାକୁ ଯିବି ? କାହା ପାଖକୁ ତୁମକୁ ନେଇଯିବି !

ନିସ୍ପନ୍ଦ ହୋଇ ଶୋଇଥିଲା ଶଙ୍କର । ମନେ ହେଉଥିଲା ତା' ଛାତି ଉପରେ ସତେକି ଲୁଣି ପବନ ବହି ଯାଉଛି ।

: ଡାକ୍ତର ମୋହନଲାଲ । ଅସ୍ପଷ୍ଟ ସ୍ୱରରେ କହିଲା ଶଙ୍କର । କେନାଲ ବ୍ରିଜ୍‌ରୁ ବାଁହାତି ଗଡ଼ିଗଲେ, ଗୋଟିଏ ଛୋଟ ହଳଦିଆ କୋଠା । ରାସ୍ତା ଉପରେ । ପ୍ରାୟ କୋଡ଼ିଏ ପଚିଶ ମାଇଲ... ଆଉ କିଛି କହି ପାରିଲା ନାହିଁ ଶଙ୍କର ।

: କୋଡ଼ିଏ ପଚିଶ ମାଇଲ... ସେ ତ ଅନେକ ବାଟ । ଅନେକ ସମୟ ବ୍ୟୟ । ଫେରି ଆସିବାଯାଏ ଶଙ୍କର ବଞ୍ଚି ଥିବତ ! ତା'ଛଡ଼ା ତାକୁ ଏକା ଛାଡ଼ି ସେ ଯିବ ବା କିପରି ? ନା ନା ଶଙ୍କରକୁ ସେ ଗାଡ଼ିରେ ଉଠାଇ ନେଇଯିବ ସଙ୍ଗରେ ।

ଚେଷ୍ଟା କଲା ଲିସା । ଶଙ୍କର ପୁଣି ଅଳସ ଆଖି ମେଲି ଚାହିଁଲା । ସେହିପରି ଅସ୍ପଷ୍ଟ ସ୍ୱରରେ କହିଲା : ମୋତେ ଏଠୁ ଉଠାଅନି । ରକ୍ତପାତ ବଢ଼ିଯିବ । ତୁମେ ଏକା ଯାଅ । ବରଂ ଡାକ୍ତରକୁ ଧରି...

ପୁଣି କଥା ବନ୍ଦ ହୋଇଗଲା ଶଙ୍କରର ।

ଲିସା ଭାବିଲା ଆଉ ଡେରି କରିବା ଉଚିତ ହେବନାହିଁ । ନଇଁପଡ଼ି, ଶଙ୍କର ଛାତିରେ ବ୍ୟାଣ୍ଡେଜ୍‌ଟା ଶକ୍ତକରି ବାନ୍ଧିଦେଇ ବାହାରି ପଡ଼ିଲା, ଯାହାଥିବ କପାଳରେ ।

ଗାଡ଼ି ଛୁଟେଇ କେତେ ସମୟ ଭିତରେ ଯେ ସେ କେନାଲବ୍ରିଜ୍ ପାଖରେ ପହଞ୍ଚିଲା, ତା'ର କିଛି ମନେ ନଥିଲା । କେନାଲ ବ୍ରିଜ୍‌ର ବାଁପାଖ ରାସ୍ତାରେ ଟିକିଏ ଆଗେଇ ଯାଇ ସେ ଛୋଟ ହଳଦିଆ ରଙ୍ଗର ଗୋଟିଏ କୋଠା ଦେଖିଲା । ଗାଡ଼ିଟା ବାହାରେ ରଖି ଛୁଟିଗଲା ସେଇ କୋଠା ଭିତରକୁ । ଦରଜାରେ କ୍ରମାଗତ ଆଘାତ କରିବାକୁ ଲାଗିଲା ଲିସା । ତା'ର ସେତେବେଳେ ହିତାହିତ ଜ୍ଞାନ ନଥିଲା । ସେ ହୁଏତ ଜାଣି ପାରୁନଥିଲା, ସେ କ'ଣ କରୁଛି ।

କିଛି ସମୟ ପରେ ଜଣେ ମଧ୍ୟ ବୟସୀ ଭଦ୍ରମହିଳା ଦରଜା ଖୋଲି ରୁକ୍ଷ କଣ୍ଠରେ କହିଲେ: କିଏ ତୁମେ ? ରାତି ଅଧରେ ଦରଜାରେ ଏପରି ଆଘାତ କରୁଛ କାହିଁକି ?

: ଡାକ୍ତର ବାବୁ ଅଛନ୍ତି ? ମୋର ଖୁବ୍ ଦରକାର, ଆପଣ ଟିକେ ଦୟାକରି...

: ନା ନା, ଡାକ୍ତର ବାବୁ ଶୋଇଲେଣି, ତାଙ୍କ ଦେହ ଭଲ ନାହିଁ। ସେ ବର୍ତ୍ତମାନ କୁଆଡ଼େ ଯାଇ ପାରିବେ ନାହିଁ। ଭଦ୍ରମହିଳା ଏତକ କହିସାରି ଦରଜା ବନ୍ଦ କରିବାକୁ ଉଦ୍ୟତ ହେଲେ।

: କିନ୍ତୁ ଶୁଣନ୍ତୁ। ସେ ଖୁବ୍ ବଡ଼ ଆଘାତ ପାଇଛନ୍ତି। ହୁଏତ ଡେରି କଲେ ଆଉ ବଞ୍ଚିବେ ନାହିଁ। ଆପଣ ଟିକେ ଦୟା କରନ୍ତୁ, ଥରେ ଖାଲି ଡାକ୍ତର ବାବୁଙ୍କୁ କୁହନ୍ତୁ।

: ଏତେ ରାତିରେ ସେ ବାହାରି ପାରିବେ ନାହିଁ। ତମେ ବରଂ ଅନ୍ୟ ଡାକ୍ତର ଦେଖ।

: ଅନ୍ୟ ଡାକ୍ତର ! କିନ୍ତୁ ଜଣେ ରକ୍ତପାତ ଫଳରେ ମରିବାକୁ ବସିଛି, ଆପଣ ପ୍ରୟୋଜନଟା ବୁଝି ପାରୁ ନାହାନ୍ତି ?

: ବୁଝୁଛି, ସବୁ ବୁଝୁଛି। ଦୁନିଆରେ ଅନେକଙ୍କର ଏହାଠାରୁ ଆହୁରି ବେଶି ପ୍ରୟୋଜନ ଥାଏ, କିନ୍ତୁ ସବୁବେଳେ ସମସ୍ତଙ୍କର ପ୍ରୟୋଜନ ମେଣ୍ଟାଇବା ସମ୍ଭବ ହୁଏ ନାହିଁ। ତମେ ଗଲ ଏଠୁ। ରାତି ଅଧରେ ମୁଁ ତମ ସାଙ୍ଗରେ ବକ୍ ବକ୍ କରି ପାରିବି ନାହିଁ। ଭଦ୍ରମହିଳା ଏଥର ପୁଣି ଦରଜା ବନ୍ଦ କରିବାକୁ ଉଦ୍ୟତ ହେଲେ।

ଲିସା ଘୁଞ୍ଚିଯାଇ ଦରଜାର ଗୋଟାଏ ପାଲା ଧରି ଭଦ୍ରମହିଳାଙ୍କୁ ଦରଜା ବନ୍ଦ କରିବାରୁ ବିରତ କରି ଅନୁନୟ ସ୍ୱରରେ କହିଲା : ଆପଣ ମୋର ମନର ଅବସ୍ଥା ବୁଝିବାକୁ ଚେଷ୍ଟା କରନ୍ତୁ। ମୁଁ ଯାହାକଥା କହୁଛି ସେ ମୋ ମନର ମଣିଷ, ମୁଁ ତାକୁ ଭଲ ପାଏ। ଆପଣ ଦୟା କରି ଟିକିଏ ଡାକ୍ତରବାବୁଙ୍କ ପାଖକୁ ମୋତେ ନେଇ ଚାଲନ୍ତୁ।

ଭଦ୍ରମହିଳାଙ୍କ ଦୃଷ୍ଟି ହଠାତ୍ ଲିସା ଡାହାଣ ହାତର ମଣିବନ୍ଧ ଉପରେ ନିବଦ୍ଧ ହୋଇଗଲା। ଗୋଟାଏ ବିରାଟ କଟାଦାଗ। ତା' ପରେ ତାଙ୍କ ଦୃଷ୍ଟି ଛୁଟିଗଲା ଲିସାର ମୁଣ୍ଡବାଳ ଆଡ଼କୁ। ହଁ ଗୋଛାଏ ସୁନେଲି ବାଳ। ଭଦ୍ରମହିଳା କିପରି ସ୍ତବ୍ଧ ହୋଇଗଲେ। ଏଥର ସେ ଲିସାର କରୁଣ ଚାହାଣି ସହିତ ଦୃଷ୍ଟି ମିଳାଇ କହିଲେ : ହଁ କ'ଣ କହୁଥିଲ ତୁମେ, ଯିଏ ଆଘାତ ପାଇଛନ୍ତି ସେ ତମ ମନର ମଣିଷ, ତମେ ତାକୁ ଭଲ ପାଅ। ତା'ହେଲେ ତ, ତା'ହେଲେ ତ, ହଁ ହଁ ନିଶ୍ଚୟ ଡାକ୍ତର ବାବୁଙ୍କର ଯିବା ଉଚିତ। ତମେ ଭିତରକୁ ଆସ, ଏଇଠି ବସ। ମୁଁ ଯାଉଛି ଡାକ୍ତର ବାବୁଙ୍କୁ ଡାକୁଚି। ବୁଢ଼ା ମଣିଷ ତ ! ଶୋଇ ପଡ଼ିଛନ୍ତି। ସେଇଥିପାଇଁ ନାହିଁ କରୁଥିଲି, କିନ୍ତୁ ତମର ଯେତେବେଳେ ଏତେବଡ଼ ଗୋଟାଏ ବିପଦ...

ପାଦ ଉଠାଇ ଲିସା ଘର ଭିତରକୁ ଗଲା। ଗୋଟିଏ ଚେଆର ଉପରେ ବସୁ ବସୁ କହିଲା : ଦୟା କରି ଟିକିଏ ଶୀଘ୍ର ଡାକିବେ। ଡେରି କଲେ ମୋର ସର୍ବନାଶ ହୋଇଯିବ।

: ନା ନା, ମୋତେ ଡେରି ହେବନାହିଁ। ତମେ ବସ ସେଇଠି। ମୁଁ ସଙ୍ଗେ ସଙ୍ଗେ ତାଙ୍କୁ ପଠାଇ ଦେଉଚି। ଭଦ୍ରମହିଳା ଦରଜାଟା ଆଉଜେଇ ଦେଇ ଭିତରକୁ ପଶିଲେ। ବୋଧହୁଏ ସେ ଶିଡ଼ିରେ ଉପରକୁ ଉଠିଲେ। ଦ୍ରୁତ ପାଦଶବ୍ଦ ଶୁଣି ଲିସାର ମନେ ହେଲା ବୋଧହୁଏ ଭଦ୍ରମହିଳା ତାକୁ ଚିହ୍ନି ପାରିଛନ୍ତି।

ଲିସା ଧୀରେ ଧୀରେ ଉଠିଲା। ଆସ୍ତେ ଦରଜାଟା ଟିକିଏ ଫାଙ୍କ କରିବାକ୍ଷଣି ତା' କାନରେ ବାଜିଲା : ଆରେ ପାଗଳ ଗାରଦର ସେଇ ପାଗଳୀଟା ମ ! କ'ଣ ତମେ ବୁଝି

ପାରୁନା ?

ତା'ପରେ ଗୋଟାଏ ପୁରୁଷ କଣ୍ଠସ୍ୱର ଶୁଣାଗଲା : କ'ଣ ଫୁସ୍‌ଫୁସ୍ କରି କହୁଚ। ପାଗଳ ଗାରଦରୁ କିଏ ଆସିଛି ?

: ଓ ହୋ, ଏକ୍‌ଦମ ବନ୍ଦ କାଲ ପାଲଟି ଗଲଣି ତମେ। ପାଗଳ ଗାରଦରୁ ଯେଉଁ ଝିଅଟା ପଳେଇ ଯାଇଚି, ଲିସା, ଯାହାକୁ ମିଳିମିଶି ସମସ୍ତେ ଖୋଜୁଛନ୍ତି।

: ଏତେ ରାତିରେ ସେ କାହିଁକି ଆସିଛି ?

: ତମ ସହିତ ତା'ର ଦରକାର। ତମେ ଯିବଟି। ତଳକୁ ଯାଇ ତା' ସଙ୍ଗରେ କଥାବାର୍ତ୍ତା କର। ଇତ୍ୟବସରରେ ମୁଁ ଥାନାକୁ ଫୋନକରି ଖବରଟା ଦେଇଦିଏ।

: କିନ୍ତୁ ଝିଅଟା ଯେ ସାଙ୍ଘାତିକ। ନା ବାବା। ତମେ ବରଂ ଯାଇ ତା'ସହିତ କଥାବାର୍ତ୍ତା କର।

: ଯାଅ କହୁଛି, ଭଦ୍ରମହିଳା ଗର୍ଜି କରି ଉଠିଲେ। ତମେ ତ ଜାଣିଛ ଝିଅଟାକୁ ଧରେଇ ଦେଇ ପାରିଲେ ଗୋଟାଏ ମୋଟା ଅଙ୍କର ପୁରସ୍କାର ମିଳିବ। ଏ ସୁଯୋଗ ଛାଡ଼ିବାକୁ ଅଛି।

: ଓଃ, ହଁ ହଁ, ପୁରସ୍କାର କଥାଟା ଭୁଲି ଯାଇଥିଲି। ଠିକ୍ ଅଛି, ମୁଁ ଯାଉଛି। ତୁମେ ଶୀଘ୍ର ଆସିବ।

ଲିସା କାନରେ ଉପରର ସବୁକଥା ବାଜିଲା। ତା'ର ମନେହେଲା ସେ ଯେପରି ଗୋଟାଏ ଦୁଃସ୍ୱପ୍ନ ଦେଖୁଛି। ଅନ୍ୟ ପାଞ୍ଚଟା ଦୁଃସ୍ୱପ୍ନପରି ଏ ବି ଗୋଟାଏ। କିନ୍ତୁ ବର୍ତ୍ତମାନ ପରିସ୍ଥିତିରେ ତା'ର ଉପାୟ କ'ଣ ?

ଶିଡ଼ିରେ କାହାର ପାଦ ଶବ୍ଦ ସେ ଶୁଣିଲା। ଫୋନ୍‌ର ଗୋଟାଏ ଦୁଇଟା 'ଟିଂ' ଶବ୍ଦ ତା' କାନରେ ବାଜିଲା, ସେ ପ୍ରକୃତିସ୍ଥ ହେଲା। ନା, ଯାହାହେଉ ଏ ଘର ଛାଡ଼ି ତାକୁ ପଳେଇଯିବାକୁ ହେବ। ତା' ନହେଲେ ସେ ଶଙ୍କରକୁ ବଞ୍ଚେଇ ପାରିବ ନାହିଁ।

କିନ୍ତୁ ଲିସାର ଭାବନା ଶେଷ ହେବା ପୂର୍ବରୁ ଧୀରେ ଧୀରେ ଦରଜାଟା ଖୋଲିଗଲା ଏବଂ ଏକ ବିଶାଳକାୟ ଲୋକ ଘର ଭିତରେ ପ୍ରବେଶ କଲା।

ଭଦ୍ରଲୋକଙ୍କର ଏକ ବିରାଟ ବଙ୍କା ନାକ। ମୁଣ୍ଡ ଚନ୍ଦା। ଚାହାଣିରେ ତୀବ୍ର ଲାଳସା।

ଲିସାର ସମଗ୍ର ଶରୀର ଭୟରେ ଥରି ଉଠିଲା। ସେ ଦେଖିଲା ସେହି ଦୈତ-ରୂପୀ ଭଦ୍ରଲୋକ ଘର ଭିତରେ ପ୍ରବେଶ କରି ଦରଜାଟା ବନ୍ଦକରି, ଦରଜାକୁ ଆଉଜି ଠିଆ ହୋଇ ଲିସାକୁ କହିଲେ : ଶୁଣିଲି ତମେ କୁଆଡ଼େ ଖୁବ୍ ବିପଦରେ ପଡ଼ି ମୋ ପାଖକୁ ଛୁଟି ଆସିଛ। ତମର ହେଇଛି କ'ଣ ?

: କିନ୍ତୁ ମୁଁ ଡକ୍ଟର ମୋହନଲାଲଙ୍କ ପାଖକୁ ଆସିଛି, ଲିସାର ସ୍ୱର କମ୍ପି ଉଠୁଥିଲା।

ମୁଁ ସ୍ୱୟଂ ଡକ୍ଟର ମୋହନଲାଲ। ତମର କ'ଣ ହେଇଛି କୁହ। ତମକୁ ମୁଁ ସାହାଯ୍ୟ କରିବି।

ଲିସା କିନ୍ତୁ ଡାକ୍ତରଙ୍କ ଚେହେରା ଦେଖି ଶଙ୍କିତ ହୋଇ ପଡ଼ିଥିଲା। ଏଭଳି ଜଣେ ଲୋକକୁ ଶଙ୍କର ପାଖକୁ ନେଇଯିବା ତାର ଉଚିତ ହେବନାହିଁ। ନା ନା, ଏ ଡାକ୍ତର ମୋହନଲାଲ ନୁହେଁ, ହୋଇ ପାରେନା। ଲିସାର ଭିତରଟା କିପରି ଥରି ଉଠୁଥିଲା। ତା'

ଅଜାଣତରେ ସେ କହି ପକାଇଲା : ଆପଣଙ୍କଠାରେ ମୋର କିଛି କାମ ନାହିଁ । ଏଠାକୁ ମୁଁ ଭୁଲ୍‌ରେ ଚାଲି ଆସିଚି । ହଁ ଭୁଲ୍ କରି ଚାଲି ଆସିଛି ।

: ମୋତେ ଦେଖି ତମେ ଡରି ଯାଇଛ ବୋଧେ । ମୋ ଚେହେରାଟା ଯାହା ହେଲେ ବି ମୁଁ କିନ୍ତୁ ଭଲ ଡାକ୍ତର । ତମେ ବସ, ତମର କ'ଣ ହୋଇଛି କୁହ । ମୁଁ ତମ ସଙ୍ଗରେ ଯିବି ।

: ନା, ଆପଣଙ୍କୁ ଏତେ ରାତିରେ ଆଉ କଷ୍ଟ ଦେବି ନାହିଁ । ମୁଁ ଯାଉଛି । ଦରକାର ହେଲେ କାଲି ଆସି...

: ସେ କିପରି କଥା । ପୂର୍ବର ସେହି ଭଦ୍ରମହିଳା ଘର ଭିତରେ ପ୍ରବେଶ କରି କହିଲେ । ତୁ ଝିଅ କହୁଥିଲୁ ନା, ତୋର ପରମବନ୍ଧୁ, ଯାହାକୁ ତୁ ଭଲ ପାଉ ସେ ମୃତ୍ୟୁ ମୁଖରେ, ଭଦ୍ରମହିଳା ସଙ୍ଗେ ସଙ୍ଗେ ଲିସାର ଆତ୍ମୀୟ ଭଳି କଥା ଆରମ୍ଭ କରିଦେଲେ । ତୁ ଆଉ ଟିକିଏ ବସିଯା ଝିଅ । ଡାକ୍ତରଙ୍କଆଡ଼େ ଚାହିଁ କହିଲେ, ତମେ ଏତେବେଳଯାଏ ଏଠି କ'ଣ କରୁଚ ! ଶୀଘ୍ର ଯାଇ ଲୁଗାପଟା ପିନ୍ଧି ଓହ୍ଲେଇ ଆସ । ଝିଅଟା ବିପଦରେ ପଡ଼ି ଆମ ଦୁଆରକୁ ଆସିଚି : ଦେଖୁଛି ବୁଢ଼ା ହେବା ସଙ୍ଗେ ସଙ୍ଗେ ତମେ ଦୟା ଧର୍ମ ସବୁ ଭୁଲି ଯାଇଚ । ଯାଅ, ଶୀଘ୍ର ପ୍ରସ୍ତୁତ ହୋଇ ଆସ ।

: ନା, ମୋତେ ଆଉ ସାନ୍ତ୍ୱନା ଦେବାକୁ ହେବନାହିଁ । ମୁଁ ବୁଝି ପାରୁଛି ଏଠାକୁ ଆସି ରାତି ଅଧରେ ଆପଣମାନଙ୍କୁ ବିରକ୍ତ କରି ବଡ଼ ଅନ୍ୟାୟ କରିଛି । ମୁଁ ଏବେ ମୋ ବାଟରେ ଚାଲି ଯାଉଛି । ଆପଣମାନେ ମୋତେ କ୍ଷମା କରନ୍ତୁ । ଲିସା ବାହାରକୁ ବାହାରି ଯିବାପାଇଁ ପାଦ ଉଠାଇଲା ।

ଭଦ୍ରମହିଳା ତା'ର ପଥରୋଧ କରି ଏଥର କଠିନ ସ୍ୱରରେ କହିଲେ : ତୁ କିଏ, ଆମେ ତୋତେ ଚିହ୍ନି ପାରିଚୁ ।

: ମାନେ ? ଲିସା କଠିନ ସ୍ୱରରେ ପ୍ରଶ୍ନ କଲା ।

: ମାନେ ଫାନେ କିଛି ନାହିଁ । ଅତି ସହଜ ଓ ସରଳ ଭାଷାରେ କହୁଛି, ତୁ ଏଠାରୁ ବାହାରି ବାହାରକୁ ଯାଇ ପାରିବୁ ନାହିଁ ।

ଲିସା କିନ୍ତୁ ସେଠାରୁ ବାହାରି ପଳାଇ ଯାଉଥିଲା । କିନ୍ତୁ ଆଶ୍ଚର୍ଯ୍ୟ ହୋଇ ଦେଖିଲା, ସଦର ଦରଜାରେ ତାଲା ପଡ଼ିଚି । ସେ ଭଦ୍ରମହିଳାଙ୍କ ପାଖକୁ ଫେରିଆସି ଉତ୍ତ୍ୟକ୍ତ କଣ୍ଠରେ କହିଲା : ଦରଜାଟା ଖୋଲି ଦିଅନ୍ତୁ ।

ଭଦ୍ରମହିଳା କଣ୍ଠରେ କୋମଳତା ଫୁଟାଇବାକୁ ଚେଷ୍ଟା କରି କହିଲେ : ଆହା ଝିଅ, ତୁ ଏମିତି ବ୍ୟସ୍ତ ହେଉଛୁ କାହିଁକି । ଚାଲେ ଭିତରକୁ ଚାଲେ, ମୁଁ ତୋତେ କଫି କରିଦେଉଛି, ବସି ବସି ପିଇବୁ ।

କିନ୍ତୁ ଲିସା ଭଦ୍ରମହିଳାଙ୍କର କୌଣସି କଥା ଶୁଣି ପାରୁ ନଥିଲା । ସେ ଛୁଟିଯାଇ ଆଉ ଗୋଟାଏ ଦରଜାବାଟେ ପଳାଇବାକୁ ଚେଷ୍ଟା କରୁଥିଲା, କିନ୍ତୁ ସେଇଟା ବି ବନ୍ଦ । ଦୁଇ ଦରଜା ମଝିରେ ଏକ ସଂକୀର୍ଣ୍ଣ ସ୍ଥାନରେ ଏକପ୍ରକାର ବନ୍ଦୀ ହୋଇ ଠିଆହୋଇଥିଲା ଲିସା । ତା' ମୁଣ୍ଡଟା ସହସା କିପରି ଝିମି ଝିମି ହୋଇ ଉଠିଲା ।

: ଦେଖିଲୁ ତ ଝିଅ, ତୋର ବାହାରି ଯିବାର ବାଟ ସବୁ ବନ୍ଦ । ଆଉ ଅଳ୍ପ ସମୟ ପରେ ତୋ ବନ୍ଧୁମାନେ ବି ଆସି ପହଞ୍ଚିଯିବେ ।

ହଠାତ୍ ଲିସାର ଆଖି ପଡ଼ିଲା ସେଠାରୁ ଗଜେ ଖଣ୍ଡ ଦୂରରେ କାନ୍ଥରେ ଗୋଟାଏ ପର୍ଦ୍ଦା ଝୁଲୁଛି । ଲିସା ଛୁଟିଯାଇ ପର୍ଦ୍ଦାଟା ଆଡ଼େଇଦେବା ମାତ୍ରକେ ତା' ଆଖିରେ ପଡ଼ିଲା ଗୋଟାଏ ଛୋଟ ଦରଜା । ଠେଲିଦେବା ସଙ୍ଗେ ସଙ୍ଗେ, ଖୋଲିଗଲା ଦରଜାଟା । ଲିସା ପଶିଗଲା ସେଇ ଦରଜା ଭିତରେ । ମୁହୂର୍ତ୍ତକ ମଧ୍ୟରେ ସବୁ ହୋଇଗଲା । ମହିଳା ଜଣକ ଛୁଟିଯାଇ ଲିସାକୁ ବାଧା ଦେବାକୁ ବି ସମୟ ପାଇଲେ ନାହିଁ, କିନ୍ତୁ ସେ ଗୋଟାଏ ଧକ୍କା ମାରିଲେ ଲିସାକୁ । ସେଇ ଧକ୍କା ଖାଇ ଲିସାର ମନେ ହେଲା ତା' ଗୋଡ଼ ତଳରୁ ଯେପରି ମାଟି ଅଲଗା ହୋଇ ଯାଉଚି ।

ଟେଲିଫୋନ୍‌ଟା ଝନ୍ ଝନ୍ ହୋଇ ବାଜି ଉଠିଲା ।

: ବାଜୁଥାଉ, ରଂଜିତା କହିଲା । ଏତେ ରାତିରେ ବି ଟିକିଏ ଶୁଆଇ ଦେବେ ନାହିଁ । ଏ ପୁରୁଷ ଜାତିଟା ନା...

: ଧେତ୍ । ରଜତ ମାଲହୋତ୍ରା ଚିତ୍କାର କରି ଉଠିଲେ । ମୁଁ ଏଠି ଟିକିଏ ନିଶ୍ଚିନ୍ତରେ ଶୋଇବାକୁ ଆସିଥିଲି ଯେ, ଦେଖୁଚି ଏଠି ବି...

: ତମେ ଏତେ ରାଗୁଛ କାହିଁକି କହିଲ ! ତମର ଯାହା ଅବସ୍ଥା ଆଉ ଟିକିଏ ପରେ ତ ଘୁଙ୍ଗୁଡ଼ି ମାରିବ । ତମର ସୁଖ ନିଦ୍ରାରେ ପୁଣି ଏଇ ଟେଲିଫୋନ ଘଣ୍ଟି ବ୍ୟାଘାତ ସୃଷ୍ଟି କରୁଚି !

: ତମେ ଚୁପ୍ କରତ । ରଜତ ମାଲୋହୋତ୍ରା ବିଛଣାରେ ଉଠି ବସି ଟେଲିଫୋନ ଆଡ଼କୁ ହାତ ବଢ଼ାଇଲେ । ଫୋନ୍‌ଟା ମୋର ବି ତ ହୋଇପାରେ ।

: କିନ୍ତୁ ତମ ଫୋନ୍ ଏଠିକି ଆସିବ କେମିତି ? ତମେ ଯେ ଏଠି ରାତ୍ରିଯାପନ କରୁଚ, ସେ କଥା କ'ଣ ଅନ୍ୟ କେହି ଜାଣେ ?

: ହଁ ଗୋ, ଆମ ସଂପାଦକ ମହାଶୟଙ୍କୁ ସବୁ କଥା ଜଣା । ରିସିଭରଟା ଉଠାଇ କାନରେ ଦେଇ କହିଲେ, ହ୍ୟାଲୋ ।

: ରଜତ ମାଲହୋତ୍ରା ତ ! ଅପର ପାର୍ଶ୍ୱରୁ ଶୁଣାଗଲା ।

ରଜତ ମାଲହୋତ୍ରା ସଂପାଦକଙ୍କ ଗଳା ଚିହ୍ନିପାରି ହାତତୋଳି କହିଲେ : ସେହିପରି ତ ମନେ ହେଉଛି, ହେଲେ ଆପଣଙ୍କର ଧାରଣା କ'ଣ ?

: ସେଇ ଝିଅଟା ପାଖରେ ଶୋଇଛି ବୋଧେ ।

: ତା'ଛଡ଼ା କରିବି କ'ଣ ? ଆପଣମାନେ ତ...

: ହେଉ ଚୁପ୍ କରୁଚି । କିନ୍ତୁ ରାତି ଅଧରେ ଆପଣଙ୍କ ଆଦେଶ ପାଳନ କରିବା...

ମାଲହୋତ୍ରାଙ୍କର କଥା ଶେଷ ହେଲାନାହିଁ । ଅପର ପାର୍ଶ୍ୱରୁ ଶୁଣାଗଲା : ସେଇ ଝିଅଟା ଧରା ପଡ଼ିଛି ।

: କୋଉ ଝିଅଟା ? ହଠାତ୍ ମାଲହୋତ୍ରା କିଛି ବୁଝି ନ ପାରି ପ୍ରଶ୍ନ କଲେ ।

: ସେଇ ପାଗଳୀଟା ହେ, ଯିଏ ପାଗଳ ଗାରଦରୁ ଖସି ପଳାଇ ଯାଇଥିଲା । ତା' ନାଁଟା କ'ଣ ଟି...

: କିଏ ଲିସା ? ଲିସା କଥା ଆପଣ କହୁଛନ୍ତି ।

: ହଁ ହଁ ଲିସା । ଡକ୍ଟର ମୋହନଲାଲ ଲିସାକୁ କୌଶଳ କରି ତାଙ୍କ ଚୋରା କୋଠରିରେ ବନ୍ଦ କରି ପୋଲିସକୁ ଖବର ଦେଇଛନ୍ତି । ତମେ ଏଥର ଉଠିପଡ଼ି ସିଧା ଛୁଟିଯାଅ ଘଟଣା ସ୍ଥଳୀକୁ । ଲିସା ଆରେଷ୍ଟ ହେବ । ସମୟରେ ତା'ର ଫଟୋ ଉଠାଅ । କ'ଣ ଶୁଭୁଛି ନା ନାହିଁ ? ମୋର ତ ମନେ ହେଉଛି ତମ ଛଡ଼ା ସହରର ସବୁଲୋକ ଏହି ଘଟଣା ଜାଣି ଗଲେଣି ।

ପ୍ରକୃତରେ ସଂବାଦଟା ଶୁଣି ମାଲହୋତ୍ରା ଅବାକ୍ ହୋଇ ଯାଇଥିଲେ । ଲିସା ସମ୍ବନ୍ଧରେ ତାଙ୍କ ଚିନ୍ତା ଭାବନାର ଯେପରି ଅବସାନ ଘଟିଗଲା । ସେ ବିରକ୍ତ ହୋଇ କହିଲେ : ହଁ ଶୁଣୁଛି, ଆପଣଙ୍କ କଥା ସବୁ ମୋ କାନରେ ବାଜୁଛି । ହେଇ ମୁଁ ବାହାରିଲି । ଆପଣତ ଜାଣନ୍ତି କର୍ତ୍ତବ୍ୟରେ କେବେ ମୁଁ ଅବହେଳା କରେନାହିଁ । ମାଲହୋତ୍ରା ଟେଲିଫୋନ୍‌ଟା କଚାଡ଼ି ଦେଇ ବାହାରିବାକୁ ପ୍ରସ୍ତୁତ ହେଲେ ।

ରଂଜିତା ତା'ର ଉଲଗ୍ନ ଦେହ ଉପରକୁ ଖଣ୍ଡିଏ ଚଦର ଟାଣି ନେଉ ନେଉ କହିଲା : ମୁଁ ତମର ଶୁଭକାମନା କରୁଚି ।

ରଜତ ମାଲହୋତ୍ରା ହଠାତ୍ ଚିଡ଼ି ଉଠିଲେ । କିପରି ବିକୃତ ସ୍ୱରରେ କହିଲେ : ମୋର ଆଉ ଶୁଭ କାମନା କରିବାକୁ ହେବନାହିଁ । ସେମାନେ ଝିଅଟାକୁ ଧରିନେଇ ପୁଣି ପାଗଳ ଗାରଦରେ ଭରିଦେବେ । ମୁଁ ବଲ ବଲ କରି ଚାହିଁଥିବି ।

: ନା ବଂଧୁ ନା, ଏତେ ଅଧୈର୍ଯ୍ୟ ହୁଅ ନାହିଁ । ହୁଏତ ଶେଷରେ ଯାଇ ଦେଖିବ ସବୁ ଠିକ୍ ଠିକ୍ ଘଟି ଯାଉଛି । ରଂଜିତା ମୁହଁ ବୁଲେଇ ଶୋଇଲା ।

ରଜତ ମାଲହୋତ୍ରା କବାଟ ଖୋଲି ଦ୍ରୁତ ପଦରେ ଘରୁ ବାହାରି ଗଲେ ।

ଡାକ୍ତର ମୋହନଲାଲଙ୍କ ଦରଜାରେ ବିରାଟ ଭିଡ଼ ଜମିଯାଇଥିଲା । ପୋଲିସ୍ ଜନସାଧାରଣ ଅନେକ ଜମି ଯାଇଥିଲେ । ସସ୍ତ୍ରୀକ ଡାକ୍ତର ମୋହନଲାଲ ଶିଡ଼ି ମଝିରେ ଠିଆହୋଇଥିଲେ । ରଜତ ମାଲହୋତ୍ରା କ୍ୟାମେରା ସହ ପହଞ୍ଚିବା କ୍ଷଣି ପ୍ରଶ୍ନ କଲେ, : ଝିଅଟା ଧରା ପଡ଼ିଚି ?

: ନା, ଧରା ହୋଇନାହିଁ । ପୋଲିସ୍ ଅଫିସର ଉତ୍ତର ଦେଲେ । ଚୋରା କୋଠରି ଆଡ଼େ କେହି ଯାଇନାହୁଁ, ତା'ଛଡ଼ା ମୁଁ ମନେ ମନେ ଆପଣଙ୍କୁ ପ୍ରତୀକ୍ଷା କରିଥିଲି । ଝିଅଟାକୁ ଧରିବା ବେଳେ ଆପଣ ଫଟୋ ଉଠାଇବେ । ଆଉ ଜନସାଧାରଣଙ୍କ ଉଦ୍ଦେଶ୍ୟରେ କହିଲେ, ବଂଧୁଗଣ ! ଆପଣମାନେ ଯେଉଁମାନେ ଏଠାରେ ଉପସ୍ଥିତ ଅଛନ୍ତି, ସମସ୍ତଙ୍କୁ ମୁଁ ନିବେଦନ କରୁଛି । ସମସ୍ତେ ଯେପରି ନିଜ ନିଜର ନିରାପତ୍ତା ସମ୍ବନ୍ଧରେ ସଚେତନ ରୁହନ୍ତି । କାରଣ ଝିଅଟା ଭୀଷଣ ସାଙ୍ଘାତିକ । କେତେବେଳେ କେଉଁ ଫାଙ୍କରେ ଯେ କାହାର ସେ କ'ଣ ଅନିଷ୍ଟ କରି ବସିବ, କହିହେବ ନାହିଁ ।

: କିନ୍ତୁ ଆପଣ ନିଜ ସମ୍ବନ୍ଧରେ ସେହି ଭାବନା କରିଛନ୍ତି ତ ?

: ମୁଁ, ମୋ କଥା ଆପଣ କହୁଛନ୍ତି ? ପୋଲିସ୍ ଅଫିସର ରଣଧୀର ଏଥର ଛୁଟିଗଲେ ସେଇ ଚୋରା କୋଠରି ପାଖକୁ । ଦରଜାରେ କରାଘାତ କରି କହିଲେ,

ଶୁଣୁଛ ଲିସା ଆମେ ଜାଣୁ ତମେ ଭିତରେ ଅଛ । ତୁମେ ଏକପ୍ରକାର ବନ୍ଦୀ । ଇଚ୍ଛା କରି ବି ପଳାଇ ଯାଇ ପାରିବ ନାହିଁ । ତେଣୁ ମୁଁ ତମକୁ ଆଇନର ନାମ ଧରି କହୁଛି, ତୁମେ ବାହାରକୁ ବାହାରି ଆସ ।

ଅନ୍ଧକାରର ଚୋରା କୋଠରିରେ ଆହୁରି ଟିକେ ଜଡ଼ସଡ଼ ହୋଇ ପଡ଼ିଲା ଲିସା । ଏ କୋଠରିରୁ ବାହାରିବା ପାଇଁ ସେଇ ଗୋଟିଏ ବାଟ । ସେ ବାଟେ ବାହାରିବାର ଆଉ ଉପାୟ ନାହିଁ । ତା'ହେଲେ ? ନା ତାକୁ ବାଧ ହୋଇ ଆତ୍ମସମର୍ପଣ କରିବାକୁ ପଡ଼ିବ । ହୁଏତ ସେ ଆତ୍ମସମର୍ପଣ କରିବା ପାଇଁ ପ୍ରସ୍ତୁତ ହୋଇ ଥାଆନ୍ତା କିନ୍ତୁ ହଠାତ୍ ତା'ର ମନେ ପଡ଼ିଗଲା ଶଙ୍କର କଥା । ତାକୁ ସେ ଅସହାୟ ଅବସ୍ଥାରେ ଛାଡ଼ି ଦେଇ ଆସିଚି । ତା' ପ୍ରାଣରକ୍ଷା କରିବା ଲିସାର କର୍ତ୍ତବ୍ୟ । ତେଣୁ ଯେପରି ହେଉ, ଏ ଚୋରା କୋଠରିରୁ ତାକୁ ବାହାରିବାକୁ ହେବ ।

ସେ ସଚେତନ ହୋଇ ଉଠିଲା । ସେଇ ଚୋରା କୋଠରିର କାନ୍ଥଯାକ ହାତମାରି ସେ ଅଣ୍ଡାଳିବାକୁ ଲାଗିଲା । ଭିତରେ କେଉଁଠି ନା କେଉଁଠି ଗୋଟିଏ ବତି ସୁଇଚ୍ ଥିବା ଏବଂ କିଛି ସମୟ ପରେ ପାଇଲା ମଧ୍ୟ । ସୁଇଚ୍ ଟିପି ଆଲୋକ ଜଳାଇଲା । ଇସ୍ ତା' ଦେହ ଶିହରୀ ଉଠିଲା । ଗୋଟାଏ ଛୋଟ ସନ୍ତସନ୍ତିଆ ଘର, ଆବର୍ଜନାରେ ଭର୍ତ୍ତି । କିନ୍ତୁ...ହଁ ଏଇଟା ଘରର ମେନ୍ ସୁଇଚ୍ ନିଶ୍ଚୟ । ଘରର ମେନ୍ ସୁଇଚ୍ ଏବଂ ଫିଉଜ ବାକ୍ସ ସେଇ ଘର ଭିତରେ । ଏଥର ତା' ଆଖିରେ ଆଶାର ଆଲୋକ ଫୁଟି ଉଠିଲା ।

ବାହାରୁ ଦରଜାରେ ସେମାନେ ଧକ୍କା ମାରି ଲିସାକୁ ବାହାରି ଯାଇ ଆତ୍ମସମର୍ପଣ କରିବାକୁ ଡାକୁଥିଲେ । ଲିସା ଏଥର ସେଇ ଘରର ଆଲୋକଟି ଲିଭେଇ ଦେଇ ମେନ୍ ସୁଇଚ୍‌ରେ ହାତ ରଖି ଚୁପ୍‌ଚାପ୍ ଠିଆ ହୋଇ ରହିଲା । ଦେଖାଯିବ କପାଳରେ ଯାହାଥିବ ।

ପୁଣି ସେ ବାହାରୁ ଶୁଣିଲା : ବାହାରି ଆସ କହୁଛି । ତମର ଆତ୍ମ ରକ୍ଷାର ଆଉ କୌଣସି ଉପାୟ ନାହିଁ । ଏଇବାଟେ ତୁମକୁ ବାହରିବାକୁହିଁ ହେବ ।

କିନ୍ତୁ ଲିସା ନୀରବ, ନିଶ୍ଚଳ ।

ପୁଣି ଲିସା ଶୁଣିଲା, କିଏ ଜଣେ କହୁଛି : ଆପଣ ପୁରୁଷ ମଣିଷ, ପୁଣି ପୁଲିସ ଲୋକ ହୋଇ ଭୟ କରୁଛନ୍ତି ? ଚାଲନ୍ତୁ ମୁଁ ଆପଣଙ୍କ ସଙ୍ଗରେ ଯାଉଛି ।

: ଯିବେ ଆପଣ ?

: ହଁ ମୁଁ ପ୍ରସ୍ତୁତ । ଆପଣ ଆଗେ ଆଗେ ଚାଲନ୍ତୁ, ମୁଁ ପଛେ ପଛେ ଯାଉଛି । ରଜତ ମାଲହୋତ୍ରା ଆଗେଇ ଆସିଲେ ।

ପୋଲିସ ଅଫିସର ମିଃ ରଣଧୀର ମାଲହୋତ୍ରାଙ୍କ ମୁହଁକୁ ଚାହିଁ ଟିକିଏ ସାହସ ପାଇଲେ ବୋଧହୁଏ । ଦରଜା ଖୋଲି ସେଇ ଅନ୍ଧକାର ଶିଡ଼ି ଭିତରକୁ ଗୋଟିଏ ପାଦ ବଢ଼ାଇ ପୁଣି ଫେରାଇ ଆଣି କହିଲେ : ଆପଣମାନଙ୍କ କାହା ପାଖରେ ଟର୍ଚ୍ଚ ଅଛି କି ?

ନା, ଟର୍ଚ୍ଚ କାହାରି ପାଖରେ ନ ଥିଲା । ସେ ବାଧ ହୋଇ ସେହି ଅନ୍ଧକାର ଭିତରେ ପାଦ ବଢ଼ାଇଲେ ଭିତରକୁ । ପାହାଚେ ଦୁଇ ପାହାଚ ଓହ୍ଲେଇଛନ୍ତି କି ନାହିଁ ହଠାତ୍ ଘରର ଚତୁର୍ଦ୍ଦିଗ ଅନ୍ଧକାରରେ ଭରିଗଲା ଏବଂ ମିଷ୍ଟର ରଣଧୀର ଅନୁଭବ କଲେ କିଏ ଯେପରି ତାଙ୍କର ହାତ ଧରି ଖୁବ୍ ଜୋର୍‌ରେ ଟାଣି ଏକା ଝିଙ୍କାକେ ତଳକୁ ଫୋପାଡ଼ି ଦେଲା ।

ସେ ଆର୍ତ୍ତ ଚିତ୍କାର କରି ଉଠିଲେ । ସଙ୍ଗେ ସଙ୍ଗେ ଦୁଆର ମୁହଁରେ ଜମା ହୋଇଥିବା ଲୋକମାନେ ଗୋଟାଏ କିଛି ଦୁର୍ଘଟଣା ଘଟିଲା ଭାବି ସେହି ଅନ୍ଧକାର ଭିତରେ କିଏ କୁଆଡ଼େ ଦଉଡ଼ିବାରେ ଲାଗିଲେ । ଧକ୍କା ଧକ୍କାରେ କିଏ ଆଣ୍ଠେଇ ପଡ଼ିଲା, କିଏ କାନ୍ଥରେ ପିଟି ହୋଇଗଲା । କିପରି ଏକ ଆତଙ୍କିତ ପରିସ୍ଥିତି ସୃଷ୍ଟି ହୋଇଗଲା କେଇଟା ମୁହୂର୍ତ୍ତ ପାଇଁ ।

ଏହିପରି ଏକ ବିକଟ ପରିସ୍ଥିତି ମଧ୍ୟରେ ରଜତ ମାଲହୋତ୍ରା ଗଳାଫଟାଇ ଚିତ୍କାର କରି କହିଲେ: ସାବଧାନ, ସେଇ ପାଗଳୀଟା କିନ୍ତୁ ଆମ ମଝିକି ଚାଲି ଆସିଛି । ଯେ କୌଣସି ମୁହୂର୍ତ୍ତରେ ସେ ଯାହାର ହେଲେ ଆଖି ଫୁଟେଇ ଦେଇପାରେ, ରକ୍ତର ହୋରି ଖେଳିପାରେ । ତା'ପରେ ସେଠାରେ ଆତ୍ମରକ୍ଷା ପାଇଁ ଯେପରି ଏକ ଖଣ୍ଡ ଯୁଦ୍ଧ ଲାଗିଗଲା । ନିଜ ନିଜ ଭିତରେ ଟଣାଓଟରା ଭିଡ଼ାଭିଡ଼ି ଲାଗିଗଲା । ସମସ୍ତେ ସର୍ବାଗ୍ରେ ବାହାରକୁ ବାହାରି ଯିବାପାଇଁ ଚେଷ୍ଟା କରିବାକୁ ଲାଗିଲେ ।

ଏଇ କେତୋଟି ମୁହୂର୍ତ୍ତ ଲିସାକୁ ଚରମ ସୁଯୋଗ ଆଣିଦେଇଥିଲା । ସେଇ ସରୁ ବାରଣ୍ଡାଟିରେ ବାହାରି ମେନ୍ ଗେଟ୍ ଆଡ଼େ ଭୀଷଣ ହଟ୍ଟଗୋଳ ଶୁଣି, ପାଖ ଘର ଭିତରେ ପଶି ଗୋଟାଏ ଝରକା ଦୁଆର ଖୋଲି ସେ ଡେଇଁପଡ଼ିଲା ପଛ ବଗିଚା ଭିତରକୁ ।

ରଜତ ମାଲହୋତ୍ରା କିନ୍ତୁ ଲିସାକୁ ଅନୁସରଣ କରୁଥିଲେ । ସେ ବି ଛୁଟିଲେ ଲିସାର ପଛେ ପଛେ ।

କିନ୍ତୁ ଲିସା ଯେପରି ପବନରେ ମିଶି ଯାଇଥିଲା, ସେ ଏତେ ଦ୍ରୁତ ବେଗରେ ଛୁଟି ଯାଉଥିଲା ଯେ, ରଜତ ମାଲହୋତ୍ରା ପନ୍ଦରମିନିଟ୍ ଦଉଡ଼ି ବି ତା' ପାଖରେ ପହଞ୍ଚି ପାରିନଥିଲେ । ପାରି ନଥାନ୍ତେ ବି କିନ୍ତୁ ହଠାତ୍ ଲିସା ଗୋଟାଏ କଣ୍ଟା ବୁଦାକୁ ଝୁଣ୍ଟି ତଳେ ପଡ଼ିଗଲା । ସେ ନିସ୍ତେଜ ହୋଇ ପଡ଼ି ରହିଲା କେଇ ମୁହୂର୍ତ୍ତ । ଯେତେବେଳେ ସେ ଶକ୍ତି ସଞ୍ଚୟ କରି ପୁଣି ଥରେ ଉଠିବାକୁ ଚେଷ୍ଟାକଲା, ଦେଖିଲା ରଜତ ମାଲହୋତ୍ରା ନଇଁପଡ଼ି ତାକୁ ତଳୁ ଉଠାଇବାକୁ ହାତ ବଢ଼ାଉଛନ୍ତି ।

ଦୁହେଁ ଦୁହିଁଙ୍କ ଆଡ଼କୁ ଚାହିଁରେ ମୁହୂର୍ତ୍ତେ ।

ମାଲହୋତ୍ରା କହିଲେ : ମୋତେ ଭୟ କରନାହିଁ, ମୁଁ ତୁମକୁ ସେଠାରୁ ପଳେଇ ଆସିବାକୁ ସାହାଯ୍ୟ କରିଛି ।

ମାଲହୋତ୍ରାଙ୍କ ମୁହଁକୁ କିଛି ସମୟ ନୀରବରେ ଅନାଇରହି ମନେ ମନେ ଟିକିଏ ସାହସ ପାଇଲା ଲିସା । ତଥାପି ପଚାରିଲା : କିଏ ଆପଣ ? ଅଯାଚିତ ଭାବରେ ମୋତେ ସାହାଯ୍ୟ କରିବାକୁ ଆପଣ ବା କାହିଁକି ଆଗେଇ ଆସିଲେ ?

: ମୁଁ ରଜତ ମାଲହୋତ୍ରା । ଖବର କାଗଜର ସାମ୍ବାଦିକ । ତମ ନାଁ ଲିସା ତ ! ମୁଁ ଠିକ୍ କହିଛି ନା ?

: ଜାଣେନି । ମୋର ନାଁ ଗାଁ ଠିକଣା ମୋତେ କିଛି ଜଣାନାହିଁ । ଗୋଟାଏ ଦୁର୍ଘଟଣାରେ ପଡ଼ି ମୁଁ ସବୁ ଭୁଲି ଯାଇଛି । ଆପଣ କ'ଣ ସତରେ ମୋତେ ସାହାଯ୍ୟ କରିବାକୁ ଆସିଛନ୍ତି ? ଯଦି ଆସି ଥାଆନ୍ତି... ଆପଣ ଜାଣନ୍ତି ଶଙ୍କର ବର୍ତ୍ତମାନ ମୃତ୍ୟୁ ଶଯ୍ୟାରେ, ଆପଣ ମୋ ସହିତ ତା'ପାଖକୁ ଯାଇ ପାରିବେ ?

: ଶଙ୍କର, କ'ଣ ହେଇଛି ଶଙ୍କରର ?

: ଶଙ୍କରକୁ ଆପଣ ଚିହ୍ନନ୍ତି ?

: ହଁ ଚିହ୍ନିଛି, କିନ୍ତୁ ତା'ର ହୋଇଛି କ'ଣ ?

: ଗୁଳି ଲାଗିଛି ।

· ଗୁଳି ? ଗୁଳିମାନେ ? ଶଙ୍କରକୁ କ'ଣ ସେଇ କଳାପୋଷାକ ପରିହିତ ଲୋକ ଦି'ଜଣ...

: ଗୁଳି କରିଛନ୍ତି । ମୁଁ ଡାକ୍ତର ମୋହନଲାଲ ପାଖକୁ ଯାଇଥିଲି । ସେମାନେ ମୋତେ ଚୋରା କୋଠରିରେ ବନ୍ଦୀ କରିଦେଲେ ।

ମାଲହୋତ୍ରା ଭଲକରି ଚାହିଁଲେ ଲିସା ଆଡ଼କୁ । ସେ ବିଶ୍ୱାସ କରି ପାରୁ ନଥିଲେ ପାଗଳ ଗାରଦରୁ ଖସି ପଳାଇ ଆସିଥିବା ଲିସା ଇଏ । ଏ ଲିସା ହୋଇପାରେନା । କାରଣ ଯାର କଥାବାର୍ତ୍ତା ଆଉ ଆଚରଣ ଏତେ ସ୍ୱାଭାବିକ ଯେ...କିନ୍ତୁ ହଠାତ୍ ଲିସା ଡାହାଣ ହାତର ମଣିବନ୍ଧ ଉପରେ ନଜର ପଡ଼ି ଯିବାରୁ ମାଲହୋତ୍ରାଙ୍କ ଭାବନା ସ୍ଥିର ହୋଇଗଲା । ଗୋଟାଏ ପ୍ରକାଣ୍ଡ କଳାଦାଗ । ତା'ହେଲେ ନିଶ୍ଚୟ ଏ ସେଇ ଲିସା । ସତରେ କ'ଣ ଦୁର୍ଘଟଣାରେ ପଡ଼ି ଲିସା ତା'ର ପୂର୍ବକଥା ସବୁ ଭୁଲିଯାଇଛି ?

: ତମେ ସତରେ ଜାଣନି ତମେ କିଏ ? ମାଲହୋତ୍ରା ସନ୍ଦିଗ୍ଧ ହୋଇ ପ୍ରଶ୍ନ କଲେ ।

: ନା, ମୁଁ ଜାଣେନି । ତେବେ ଯଦି ଆପଣ ସାହାଯ୍ୟ କରିବାକୁ ଚାହାନ୍ତି ଆଉ ସମୟ ନଷ୍ଟ କରନ୍ତୁ ନାହିଁ । ଶଙ୍କର ବିଶେଷ ଭାବରେ ଆହତ । ଆପଣ ତାହେଲେ ମୋ ସଙ୍ଗରେ ଆସିବେକି ? ମୋତେ ସାହାଯ୍ୟ କରିବେ ?

: ନିଶ୍ଚୟ, ମୁଁ ତମ୍ଭକୁ ନିଶ୍ଚୟ ସାହାଯ୍ୟ କରିବି । ମାଲହୋତ୍ରା ଉଠିଲେ ଏବଂ ଲିସାର ହାତଧରି ତଳୁ ଉଠାଇ ଦେଇ କହିଲେ, ଶଙ୍କରକୁ କେଉଁଠି ରଖି ଆସିଛ ?

: ସେ ଅନେକ ଦୂରରେ । ତିନି ନମ୍ବର ହାଇୱେ କଡ଼ରେ ଗୋଟାଏ ପରିତ୍ୟକ୍ତ ଚଟି ଘରେ ।

: ଠିକ୍ ଅଛି । ତମେ ଗୋଟାଏ କାମ କର । ଆଉ ଟିକକ ପରେ ସକାଳ ହୋଇଯିବ । ତମକୁ କେହି ଦେଖି ପକାଇଲେ ମହା ବିପଦ । ଏଇ ପାଖ ଜଙ୍ଗଲର ଗଛଲତା ଉହାଡ଼ରେ କିଛି ସମୟ ପାଇଁ ଆତ୍ମଗୋପନ କରି ରୁହ । ଜଙ୍ଗଲ ସେ ପାଖରେ ହିଁ ବଡ଼ ରାସ୍ତା । ମୁଁ ଯାଉଛି ଦଶ ମିନିଟ୍ ଭିତରେ ମୋ ଗାଡ଼ିଟା ଧରି ଚାଲି ଆସିବି । ତମେ ସେଇ ସମୟତକ ଏଇଠି ଲୁଚି ବସିଥାଅ ।

ଲିସା ଦ୍ୱିଧା ଜଡ଼ିତ କଣ୍ଠରେ କହିଲା : ହଁ ମୁଁ ଏଇଠି ଅପେକ୍ଷା କରୁଛି । ଆପଣ କିନ୍ତୁ ଆଉ ଟିକିଏ ଚଞ୍ଚଳ ଆସିବାକୁ ଚେଷ୍ଟା କରିବେ । କାରଣ ଶଙ୍କରର ଅବସ୍ଥା ତେଣେ ଅତ୍ୟନ୍ତ ଖରାପ ହୋଇ ଉଠିଥିବ ।

: କିଛି ଚିନ୍ତାକର ନାହିଁ । ତମେ ଖାଲି ମୋ କଥା ମାନି ଟିକିଏ ଉହାଡ଼ିଆ ଜାଗାରେ ମୋ ପାଇଁ ଅପେକ୍ଷା କର । ମାଲହୋତ୍ରା ଲିସା ପିଠିରେ ସାହସିକ ମୃଦୁଚାପୁଡ଼ା ଦୁଇଟି ଲଗେଇ ଦ୍ରୁତ ପଦରେ ସେଠାରୁ ବାହାରି ଗଲେ ।

ଲିସା ଏକା ରହିଗଲା । ବର୍ତ୍ତମାନ ସେ ସଂପୂର୍ଣ୍ଣ ଏକା । ରାତି ଶେଷ ହୋଇ ଆସୁଛି । ଦିନର ଆଲୋକ ଧୀରେ ଧୀରେ ଫୁଟି ଉଠୁଛି ବନଭୂଇଁ ଉପରେ । କିପରି ଗୋଟାଏ ଛାୟା କୁହେଳିରେ ବନଭୂଇଁ ଘେରା । ଲିସା ଜଙ୍ଗଲ ଭିତରକୁ ପଶିବାକୁ ଭୟ କରୁଥିଲା । ମନେ ମନେ ଭାବୁଥିଲା । କିନ୍ତୁ...

ସହସା ଲିସାର ଗତି ସ୍ଥିର ହୋଇଗଲା । ଗୋଟାଏ ଗଛ ଉହାଡ଼ରୁ କ'ଣ ଯେପରି ଗୋଟାଏ ହଲଚଲ ହେବାର ସେ ଦେଖିଲା । ତା'ପରେ ପରେ ଗୋଟାଏ ମୁନିଆ ଟୋପି, ଏବଂ...

ଲିସା ଶିହରୀ ଉଠିଲା । ସେ ଗୋଟାଏ ମେରୁ ପାଲଟି ଯାଇଥିଲା । ଅପଲକ ଆଖିରେ ଚାହିଁଥିଲା ସେଇଆଡ଼େ ।

କଳା କୋଟ୍ ଓ କଳା ଟ୍ରାଉଜର ପିନ୍ଧା ଗୋଟିଏ ଲୋକ ଗଛ ଉହାଡ଼ରୁ ବାହାରି ଆସି ସାମ୍‌ନାରେ ଠିଆ ହେଲା । ମୁହଁରେ ବିଜୟର ହସ ।

ମୋତେ ଚିହ୍ନି ପାରୁଛ ? ସ୍ୱରରେ ତା'ର ମୁହଁରୁ କଥା ବାହାରୁ ନଥିଲା । ଛାତିରେ କେହି ପଥର ନଦି ଦେଲା ପରି ସେ ଅନୁଭବ କରୁଥିଲା ।

ଲିସା ମନେ ମନେ ଭାବୁଥିଲା, ସେ ଥରେ ଆତ୍ମରକ୍ଷା କରିବା ପାଇଁ ଚେଷ୍ଟା କରିବା ତା'ର ସମସ୍ତ ଶକ୍ତି ଖଟାଇ  ସେ ବାଁ ଆଡ଼କୁ ଦଉଡ଼ି ପଳାଇବାକୁ ଚେଷ୍ଟା କରିବ । କିନ୍ତୁ ଚାହିଁ ଦେଖିଲା, ବାଁ ପାଖ ଗଛ ଉହାଡ଼ରୁ ଆଉଜଣେ କଳାପୋଷାକ ଲୋକ ବାହାରି ଆସୁଛି । ସେ ସିଧାସଳଖ ଆସି ଲିସା ସାମନାରେ ଠିଆ ହେଲା : ସୁନ୍ଦରୀ ! ଏଥର ଅଠାକାଠିରୁ ମୁକୁଳିବାର ଉପାୟ ନାହିଁ । ଭଲରେ ଭଲରେ ଆମ ସଙ୍ଗରେ ଚାଲିଆସ । ସେ ଲିସାକୁ ଧରିବା ପାଇଁ ହାତ ବଢ଼ାଇଲା ।

: ଖବରଦାର । ମୋତେ ଛୁଅଁନି । ନା ମୋତେ ଛୁଅଁନି କହୁଛି । ଲିସା ଅନୁଭବ କରୁଥିଲା, ତା' ଶରୀରର ସମସ୍ତ ମାଂସପେଶି ଗୁଡ଼ିକ ଯେପରି ଗୋଟେଇ ହୋଇ ଆସୁଛି । ମୁହଁଟା ଏକ ବିଦେହୀ ପରି ପାଂଶୁଳ । ଲିସା ସେଇ ଅବସ୍ଥାରେ କହିଲା : ଦୟାକରି ଆପଣମାନେ ଚାଲି ଯାଆନ୍ତୁ । ମୁଁ ଏଠାରେ ଜଣଙ୍କ ପାଇଁ ଅପେକ୍ଷା କରିଛି । ସେ ଏଇ ମୁହୂର୍ତ୍ତରେ ଆସିଯିବ ।

: କ'ଣ କହିଲ ସୁନ୍ଦରୀ ? ଆମେ ଚାଲିଯିବୁ । ତମର ବଂଧୁ ଆସି ତମକୁ ନେଇଯିବ।  ଅନ୍ୟ ଲୋକଟି ଲିସାର ସାମନାରେ ଆସି ଠିଆ ହେଲା । ଆମ ଦୁହିଁଙ୍କୁ ଚିହ୍ନିଚ ତୁମେ ? ମୋ ନାଁ ଜଗୁ ତା' ନାଁ ମଙ୍ଗୁ, ଆମେ ଦୁହେଁ ମିଶି ତାଳ-ବେତାଳ । ଆମ ଇଚ୍ଛାରେ ବାଧା ଦେଲାଭଳି ଲୋକ ଆଜିଯାଏ ଏ ମହି ମଣ୍ଡଳରେ ଜନ୍ମିନାହିଁ ।

ମଙ୍ଗୁ ଆଗେଇ ଆସି କହିଲା : ଶଙ୍କର କାହିଁ ? ତାକୁ ଆମର ଦରକାର ।

: ମୁଁ ଜାଣି ନାହିଁ । ଲିସା ବିରକ୍ତି କଣ୍ଠରେ କହିଲା ।

: ଜାଣିବ, ଧୀରେ ଧୀରେ ସବୁ ଜାଣିବ । ମାଇକିନିଆଙ୍କ ମୁହଁରେ କେମିତି କଥା ଫୁଟେଇବାକୁ ହୁଏ, ସେ କାଇଦା ମୋତେ ଜଣା ଅଛି । ଜଗୁ ଚିତ୍କାର କରି ଉଠିଲା, : କୋଉଠି ଅଛି ସେ ?

: କହିଲି ତ ମୁଁ ଜାଣିନାହିଁ ।

: ଜାଣିନାହୁଁ ନା ? ଲିସା ଆଡ଼କୁ ଉହୁଙ୍କି ଆସିଲା ଜଗୁ । ଲିସାର ସୁନେଲି ବାଳ

ଗୋଛାକ ଟାଣି ଧରି ଝିଙ୍କି ନେଇ ମଙ୍ଗୁକୁ କହିଲା, ଶାଳୀକୁ ପିଟ୍‌ତ ଦି'ଚାରି ପାହାର ।

ମଙ୍ଗୁ ଗୋଟାଏ ବେତ ଧରି ଆଗେଇ ଆସିଲା ଲିସା ଆଡ଼କୁ । ଲିସା ମୁଣ୍ଡ ବାଳକୁ ଭିଡ଼ି ଧରିଥିଲା ଜଗୁ । ମଙ୍ଗୁ ଆଗେଇ ଆସୁଥିଲା ବେତଟା ଲକ୍ ଲକ୍ କରି । ଲିସା ଆତ୍ମରକ୍ଷା ପାଇଁ ପ୍ରାଣପଣେ ଚିତ୍କାର କରି ଉଠିଥିଲା ।

ରଜତ ମାଲହୋତ୍ରା ବସିଥିଲେ ରଂଜିତାର ବାରଣ୍ଡାରେ, ଗୋଟାଏ ଇଜି ଚେଆର ଉପରେ । ବାହାରେ ପ୍ରଚଣ୍ଡ ରୌଦ୍ର । ମାଲହୋତ୍ରା ଅତ୍ୟନ୍ତ କ୍ଳାନ୍ତ ମନେ ହେଉଥିଲେ । ରଂଜିତା ତାଙ୍କ ପାଖକୁ ଆସୁଥିବାର ଦେଖି କହିଲେ : ଏଇକ୍ଷଣି ଯଦି ବ୍ରାଣ୍ଡି ସଙ୍ଗରେ ଟିକେ କଳା କଫି ମିଶେଇ ପିଇବାକୁ ମିଳନ୍ତା, ତା'ହେଲେ ଜମନ୍ତା ଭଲ ।

: ମିଳିବ ମିଳିବ । ଯାହା ଚାହିଁବ ତାହା ମିଳିବ । କିନ୍ତୁ ଘଟଣାଟା ମୋତେ ଟିକିଏ ବୁଝେଇ ନକହିବା ଯାଏ ମୁଁ କିଛି ଦେଇ ପାରିବି ନାହିଁ । ମୋ ଘରଟାକୁ ତ ହସ୍‌ପିଟାଲରେ ପରିଣତ କରି ସାରିଲଣି । ଅବଶ୍ୟ ତମର ଏପରି କାର୍ଯ୍ୟ କରିବା ପଛରେ କୌଣସି ଉଦ୍ଦେଶ୍ୟ ଅଛି । ସେଥିପାଇଁ ମୁଁ ବ୍ୟସ୍ତ ନୁହେଁ । କିନ୍ତୁ ମୋତେ ସବୁ କଥା ବୁଝେଇ କହିବାକୁ ହେବ । ରଞ୍ଜିତା କହିସାରି ବସିଲା ଗୋଟାଏ ଚେଆର ଉପରେ ।

ମାଲହୋତ୍ରା ଭଲ କରି ଥରେ ଚାହିଁଲେ ରଂଜିତା ମୁହଁକୁ । ଦେଖିଲେ ରଂଜିତା ମୁହଁରେ ଖୁସି ଖୁସି ଭାବ । କହିଲେ: ସେମାନେ ଲିସାକୁ ଡକ୍ଟର ମୋହନଲାଲଙ୍କ ଚୋରା କୋଠରିରେ ବନ୍ଦ କରି ରଖିଥିଲେ । ରଣଧୀର ଭିତରକୁ ପଶିବା ମାତ୍ରକେ ଝିଅଟା ଘରର ମେନ୍ ସୁଇଚ୍ ବନ୍ଦ କରିଦେଲା । ଚାରିଆଡ଼େ ଅନ୍ଧକାର ଛାଇଗଲା । ତା'ରି ଭିତରେ ମୋର ବି ଗୋଟାଏ ଭୂମିକା ଥିଲା । ମୁଁ ଏପରି ଚିତ୍କାର ଆରମ୍ଭ କରିଦେଲି ଯେ ସମସ୍ତେ ଆତଙ୍କଗ୍ରସ୍ତ ହୋଇ ପଡ଼ିଲେ । ସେଇ ସୁଯୋଗରେ ଲିସା ଖସି ଚାଲିଗଲା । ମୁଁ ବି ଛୁଟିଲି ତା' ପଛେ ପଛେ । ଧରିଲି ତାକୁ । ତା' ସହିତ କଥା ହେଲି । ମୁଁ ଗାଡ଼ି ଧରି ଆସିବା ଯାଏ ସେ ଅପେକ୍ଷା କରିବା ଆମେ ସାଙ୍ଗ ହୋଇ ଯାଇ ଶଙ୍କରର ଚିକିତ୍ସା ବ୍ୟବସ୍ଥା କରିବୁ । କିନ୍ତୁ ମୁଁ ଗାଡ଼ି ନେଇ ଯାଇ ଦେଖେ ଲିସା ଚମ୍ପଟ ଦେଇଛି । ଫଳରେ ମୁଁ ବାଧ ହୋଇ ଶଙ୍କରକୁ ଖୋଜି ଆଣି ଏଠାରେ ରଖିଛି । ବର୍ତ୍ତମାନ ଡାକ୍ତର ଚଉଧୁରୀ କହି ପାରନ୍ତି ଶଙ୍କରକୁ ତୁମେ ହସ୍‌ପିଟାଲରେ ଭର୍ତ୍ତି ନକରି ଏଠାକୁ ଘେନି ଆସିଲ କାହିଁକି ?

: କାରଣ ଅନେକ । ସେ ବର୍ତ୍ତମାନ ବିପର୍ଦ୍ଦ ସମୁଦ୍ର ମଧରେ ଭାସୁଛି । ତା'ଛଡ଼ା ସେଇ ଦସ୍ୟୁ ଦି'ଟା ଯେ କିପରି ସାଂଘାତିକ, ତମେ ବୁଝି ପାରିବ ନାହିଁ ।

: ଦସ୍ୟୁ ? ସେମାନେ ପୁଣି କିଏ ? ଆଶ୍ଚର୍ଯ୍ୟ ହୋଇ ରଂଜିତା ପଚାରିଲା ।

: ତାଳ-ବେତାଳ । ତାଳ-ବେତାଳ ନାଁ ଶୁଣିନା ତମେ ? ସେମାନେ ପେଶାଦାର ଖୁଣୀ । କେହି ଉଦ୍ଦେଶ୍ୟ ସାଧନ ପାଇଁ ସେମାନଙ୍କୁ ଟଙ୍କା ଦେଲେ, ସେମାନେ ବିଶ୍ୱବ୍ରହ୍ମାଣ୍ଡ ପରିକ୍ରମା କରି ଆସାମୀକୁ ଖୁଣ୍ କରିପାରିବେ । ମୁଁ ଯେତେଟା ସେମାନଙ୍କ ସମ୍ପର୍କରେ ଶୁଣିଛି, ସେଥିରୁ ଅଧେ ଯଦି ସତ୍ୟ ହୁଏ, ତେବେ ଧରି ନେବାକୁ ହେବ ସେମାନେ ଅନ୍ତତଃ ଅଧ ଡଜନ ଲୋକଙ୍କୁ ଖୁଣ୍ କରିଛନ୍ତି । ଏପରିକି ଶଙ୍କରର ଭାଇକୁ ସେମାନେ ଖୁଣ୍ କରିଛନ୍ତି ଏବଂ ଶଙ୍କର ତା'ର ପ୍ରତ୍ୟକ୍ଷ ଦର୍ଶୀ । ତେଣୁ ସେମାନେ ଶଙ୍କରର ମୁହଁ

ଚିରଦିନ ପାଇଁ ବନ୍ଦ କରିବାକୁ ଚାହାନ୍ତି । ଫଳରେ ଶଙ୍କରର ଚେତା ଫେରିଆସିବା ଯାଏ ତାକୁ ଆମକୁ ଜାବୁଡ଼ି ଧରି ରଖିବାକୁ ହେବ ।

: ହୁଁ, ତମକଥା ବୁଝିଲି ଯେ, କିନ୍ତୁ ସେମାନେ ଯେ ଏଠାରେ ଆସି ନ ପହଞ୍ଚିବେ ସେ ସମ୍ବନ୍ଧରେ ତମେ କିପରି ନିଶ୍ଚିତ ହୋଇ ବସିବ ?

: ମୁଁ ନିଶ୍ଚିତ ହୋଇ ବସିବି ନାହିଁ ଯେ, ତେବେ ଏତିକି ଭାବି ନିଶ୍ଚିତ ଯେ ଶଙ୍କର ସହିତ ତମର କୌଣସି ସୂତ୍ରରୁ ଆଦୌ ଯୋଗାଯୋଗ ନାହିଁ, ତେଣୁ ସେମାନେ ଏଠାକୁ ଆସିବାର ସମ୍ଭାବନା କମ୍ ।

: ଆଚ୍ଛା ତମ କଥା ମୁଁ ମାନିନେଲି । ରଂଜିତା କହିଲା । ଏଥର ଲିସା ଖବର କୁହ, ତା'ର କ'ଣ ହେଲା ?

: ଜାଣେନି । ହୁଏତ ସେ ମୋତେ ବିଶ୍ୱାସ କରି ପାରିନାହିଁ, ଅଥବା...ମାଲହୋତ୍ରା କଥା ଅସମାପ୍ତ  ରଖି ଚିନ୍ତିତ ହୋଇ ପଡ଼ିଲେ । କିଛି ସମୟର ନୀରବତା ପରେ କହିଲେ, ହୁଏତ ଲିସା ପୁଣି ତାଳ-ବେତାଳର ଶିକାର ହୋଇଛି ।

: ଧେତ୍ ! ମୁଁ ଦେଖୁଛି ତାଳ-ବେତାଳ ତମ ଅସ୍ଥି ମଜ୍ଜାଗତରେ ବସା ବାନ୍ଧି ସାରିଲେଣି । ସବୁଠିତ ସେମାନେ ପହଞ୍ଚି ପାରିବେ ନାହିଁ !

: ହଁ ରଂକୁ ! ସେମାନେ ପାରନ୍ତି । ସେମାନେ ସବୁ ପାରନ୍ତି । ମୁଁ ଏତେବେଳଯାଏ ସେ ଦିଗଟା ଚିନ୍ତା କରି ପାରି ନଥିଲି । ପୋଲିସ ଇନିସ୍‌ପେକ୍ଟର ରଣଧୀରକୁ ଘଟଣାଟା କହିବାକୁ ହେବ । ହୁଏତ ଏଠାରେ ପୋଲିସ ପୋଷ୍ଟିଂ କରିବାକୁ ପଡ଼ିପାରେ । ଲିସା ଯଦି ସେମାନଙ୍କ ହାତରେ ପଡ଼ିଥାଏ ନା, ତା'ହେଲେ ଭଗବାନଙ୍କ ଛଡ଼ା ଆଉ କେହି ତାକୁ ରକ୍ଷା କରି ପାରିବେ ନାହିଁ ।

: ଦେଖୁଛି ଝିଅଟା ପ୍ରତି ତମର ଭାରି ଦରଦ । କିନ୍ତୁ ଝିଅଟା ସମ୍ବନ୍ଧରେ ତମେ ତ କିଛି କହିଲ ନାହିଁ । ତମେ କ'ଣ ସତରେ ତା' ସହିତ କଥାବାର୍ତ୍ତା କରିବ ?

: ତମ ଦେହ ଛୁଇଁ କହୁଛି ରଂକୁ । ଝିଅଟା ତମରି ଭଳି ଦେଖିବାକୁ ସୁସ୍ଥ ସବଳା ଅତ୍ୟନ୍ତ ସ୍ୱାଭାବିକ । ଅପୂର୍ବ ସୁନ୍ଦରୀ । ତା' କଥାରୁ ମନେହେଲା ଶଙ୍କର ତା'ର ଦିବାରାତ୍ରିର ଜପାମାଳି ।

ଠିକ୍ ସେତିକିବେଳେ ଡାକ୍ତର ଚଉଧୁରୀ ବାହାରକୁ ବାହାରି ଆସିଲେ। କହିଲେ : ଅବସ୍ଥା କିଛି ଭଲ ନୁହେଁ । ଅନ୍ତତଃ ତିନିଦିନ ନ କଟିବା ଯାଏ କିଛି ବୁଝି ହେବନି । ମୋ ମତରେ ତାକୁ ହସ୍‌ପିଟାଲକୁ ପଠାଇ ଦେଲେ ଭଲ ହୁଅନ୍ତା ।

: ନା ନା, ସେଇଟା ମୋତେ ନିରାପଦ ହେବନାହିଁ ଡକ୍ଟର ଚଉଧୁରୀ । ପଛଆଡ଼େ ଅନେକ କାରଣ ଅଛି । ସେ ଯାହା ହେଉ, ଆପଣ ଟଙ୍କା ପଇସା ପାଇଁ କିଛି ଚିନ୍ତା କିରବେ ନାହିଁ । ଶଙ୍କର ଏଇଠି ରହିବା ତାକୁ ଆରୋଗ୍ୟ କରିବାର ପୂର୍ଣ୍ଣ ଦାୟିତ୍ୱ ଆପଣଙ୍କର । ଆଚ୍ଛା, ଆପଣ ବର୍ତ୍ତମାନ ରୋଗୀ ପାଖରେ ରହି ପାରିବେ ନାହିଁ ?

: ନା, ସେଇଟା ସମ୍ଭବ ନୁହେଁ । ତେବେ ଦିନରେ ଦୁଇଥର ମୁଁ ଆସି ଦେଖିଯିବି । ତା' ଛଡ଼ା ନର୍ସ ମାଧୁରୀ ତ ରହୁଛି । ଭଲ ମନ୍ଦ ସେ ସବୁ ବୁଝିବ। ସତ କହିବାକୁ ଗଲେ, ବର୍ତ୍ତମାନ କାହାରି କିଛି କରିବାର ନାହିଁ । ସବୁ ନିର୍ଭର କରୁଛି ରୋଗୀର ସହ୍ୟ ଶକ୍ତି ଉପରେ । ଅବଶ୍ୟ ରୋଗୀର ସେ ଶକ୍ତି ଖୁବ୍ ପ୍ରବଳ । ତଥାପି ବହୁତ ରକ୍ତପାତ ଜନିତ

ଯାହା ଟିକିଏ ଅସୁବିଧା । କିନ୍ତୁ ମିଷ୍ଟର ମାଲହୋତ୍ରା, ଘଟଣାଟା ମୋତେ ଯଥା ସ୍ଥାନରେ ଜଣାଇବାକୁ ହେବ ।

: ଠିକ୍ ଅଛି, ମୁଁ ବି ଯାଉଛି ପୋଲିସ୍ ଷ୍ଟେସନକୁ । ଇନିସ୍‌ପେକ୍ଟର ରଣଧୀରଙ୍କୁ ମୁଁ ବି ସବୁକଥା କହିବି । ତେବେ ଏତିକି ଅନୁରୋଧ ଘଟଣାଟାକୁ ପାଞ୍ଚକାନ କରିବେ ନାହିଁ ।

: ନା ନା, ସେଦିଗରୁ ଆପଣ ନିଶ୍ଚିନ୍ତ ରୁହନ୍ତୁ । ଡକ୍ଟର ଚଉଧୁରୀ ହାତ ହଲେଇ ବିଦାୟ ନେଲେ ।

ଇନିସ୍‌ପେକ୍ଟର ରଣଧୀର ତାଙ୍କ ଅଫିସ୍ ଘରେ ଚିନ୍ତିତ ହୋଇ ବସିଥିଲେ । ଏହା ଭିତରେ କେତେକ ଲୋକ ଆସି ତାଙ୍କୁ କହି ଯାଇଛନ୍ତି ଯେ ଲିସାର ପଳାୟନ ପାଇଁ ରଜତ ମାଲହୋତ୍ରା ଅନେକାଂଶରେ ଦାୟୀ । ସେ ଯା' ହେଉ ନହେଉ ଲିସାର ବାହାରେ ରହିବାର ଅନେକଦିନ ହୋଇଗଲାଣି । ଆଉ ପାଞ୍ଚ ଛଅଦିନପରେ ତା'ର ପନ୍ଦର ଦିନ ପୂର୍ଣ୍ଣ ହୋଇଯିବ । ଉଇଲିର ସର୍ତ୍ତ ଅନୁଯାୟୀ ସେ ଯଦି ପାଗଳ ଗାରଦର ବାହାରେ ପନ୍ଦରଦିନ କଟାଇପାରେ ତା'ହେଲେ ଅମୃତଲାଲ ବରିହାଙ୍କର ସମସ୍ତ ସମ୍ପତ୍ତିର ଉତ୍ତରାଧିକାରିଣୀ ହୋଇ ପାରିବ । ଯେଉଁଟା ହେବା ଉଚିତ ନୁହେଁ । ଉପର ମହଲରୁ ଏଥିପାଇଁ ଜୋର୍ ଚାପ ଆସୁଛି । କିନ୍ତୁ ଲିସାକୁ କେଉଁଠୁ ସେ ଖୋଜି ବାହାର କରିବେ ।

ହଠାତ୍ ରଜତ ମାଲହୋତ୍ରାଙ୍କୁ ଘରେ ପ୍ରବେଶ କରିବାର ଦେଖି ଇନିସ୍‌ପେକ୍ଟର ରଣଧୀର ଯେପରି ଚଞ୍ଚଳ ହୋଇ ଉଠିଲେ । ସେ ଏକ ପ୍ରକାର ଗର୍ଜନ କରି ଉଠି କହିଲେ : ତମରି ପାଇଁ ମୋର ସର୍ବନାଶ ହୋଇଗଲା । ତମେ କୁଆଡ଼େ ସେଇ ପାଗଳୀ ଟୋକୀଟାକୁ ପଳେଇ ଯିବାପାଇଁ ସାହାଯ୍ୟ କରିଛ ।

ରଜତ ମାଲହୋତ୍ରାଙ୍କ ମୁହଁରେ କୌଣସି ପରିବର୍ତ୍ତନର ଚିହ୍ନ ଫୁଟିଲା ନାହିଁ । ସେ ଘରେ ଆଉ ଗୋଟିଏ ଚେଆର ଅଧିକାର କରି ଶାନ୍ତ ସ୍ୱରରେ କହିଲେ : ମୁଁ ଇଚ୍ଛା କରି ଲିସାକୁ ଛାଡ଼ି ଦେଇନାହିଁ । ଘଟଣାର ପରିପ୍ରେକ୍ଷୀରେ ହୁଏତ ମୁଁ କେଇ ମୁହୂର୍ତ୍ତପାଇଁ ସ୍ତବ୍ଧ ହୋଇ ଯାଇଥିଲି । କିନ୍ତୁ ଆପଣଙ୍କର ଲୋକମାନେ ବା କ'ଣ କଲେ ? ସେମାନେ ତ ଲିସାକୁ ଅଟକାଇ ପାରିଥାନ୍ତେ ? ଖାଲି ଆପଣ ମୋର ଦୋଷଦେଲେ ଚଳିବ କିପରି ?

: କିନ୍ତୁ ଏ କ୍ଷେତ୍ରରେ କ'ଣ କରାଯାଇ ପାରେ କହିଲ ? ଟୋକୀଟାକୁ ଖୋଜି ନ ପାଇଲେ ତ ମୁଁ ସଙ୍କଟରେ ପଡ଼ିଯିବି । ବର୍ତ୍ତମାନ ଉପାୟ କ'ଣ ! ଗୋଟାଏ କିଛି ବାଟ ତ ବାହାର କରିବାକୁ ପଡ଼ିବ ? ଇନିସ୍‌ପେକ୍ଟର ରଣଧୀରଙ୍କ ସ୍ୱରରେ ହତାଶା ଫୁଟି ଉଠିଲା ।

: କିନ୍ତୁ ମୁଁ ଗୋଟାଏ ଅନ୍ୟ କଥା ଶୁଣୁଛି । ମାଲହୋତ୍ରା ଗମ୍ଭୀର ହୋଇ କହିଲେ ।

: ଅନ୍ୟକଥା ମାନେ ?

: ଆପଣ ତାଳ-ବେତାଳଙ୍କ ନାମ ଶୁଣିଛନ୍ତି ?

ଇନିସ୍‌ପେକ୍ଟର ରଣଧୀର ହସି ଉଠିଲେ। କହିଲେ : ବୁଝିଲି । ତମେ ତା' ହେଲେ ରୂପକଥା ଶୁଣିବାକୁ ଭଲପାଅ । ତାଳ-ବେତାଳ କାହାଣୀ ଗୋଟାଏ କପୋଳ କଳ୍ପିତ

ରୂପକଥା ହୋଇପାରେ, କିନ୍ତୁ ସେମାନଙ୍କର କିଛି ଅସ୍ତିତ୍ୱ ନାହିଁ । ଯେଉଁସବୁ ହତ୍ୟାକାଣ୍ଡର କୌଣସି ପ୍ରମାଣ ମିଳେ ନାହିଁ, ସେଗୁଡ଼ାକ ତାଳ-ବେତାଳ ନାଁରେ ଚଳେଇ ଦିଆହୁଏ ।

: ନା ସାର୍ । ଆପଣଙ୍କ ଧାରଣା ଭ୍ରାନ୍ତ । ତାଳ-ବେତାଳଙ୍କର କେବଳ ଯେ ଅସ୍ତିତ୍ୱ ଅଛି ତା' ନୁହେଁ, ସେମାନେ ଆମ ଏଠାରେ ଆସି ହାଜିର ହୋଇ ସାରିଲେଣି । ଗତକାଲି ରାତିରେ ସେମାନେ ଶଙ୍କରର ଭାଇକୁ ଖୁଣ୍ କରିଛନ୍ତି । ଶଙ୍କର ବି ସେମାନଙ୍କ ଗୁଳିରେ ଭୀଷଣ ଭାବରେ ଆହତ ହୋଇଛି ।

: ଶଙ୍କର, କୋଉ ଶଙ୍କର କଥା ତମେ କହୁଛ ? ଯିଏ ବିରାଟ କୃଷିଫାର୍ମ କରିଛି ? ସେଇ ଯଦି ହୋଇଥାଏ, ତା'ର ଯେ ଗୋଟାଏ ଭାଇ ଅଛି ସେ କଥା ତ ମୋତେ ଜଣା ନଥିଲା ।

: ଆପଣ ଯଦି ସବୁକଥା ଜାଣି ଥାଆନ୍ତେ, ତା'ହେଲେ ତ ପ୍ରଧାନମନ୍ତ୍ରୀ ହୋଇ ବସିଥାଆନ୍ତେ । ଶଙ୍କରର ଗୋଟାଏ ଭାଇ ଥିଲା । ଜଙ୍ଗଲ ସର୍ଦ୍ଦାର ସହିତ ଗୋଟାଏ ଗୁଣ୍ଡାଦଳ ସହିତ ସଂପୃକ୍ତ ଥିଲା । ଜଙ୍ଗଲ ସର୍ଦ୍ଦାର ସହିତ ବିରୋଧ ହେବାରୁ, ଜଙ୍ଗଲ ସର୍ଦ୍ଦାର ତାକୁ ଶେଷ କରିଦେବା ପାଇଁ ତାଳ-ବେତାଳଙ୍କୁ ନିଯୁକ୍ତି କରିଥିଲା । ଅରିନ୍ଦମ ଭୟରେ ଆସି ତା'ଭାଇ ପାଖରେ କୃଷିଫାର୍ମ ଭିତରେ ଆତ୍ମଗୋପନ କରି ରହିଥିଲା । କିନ୍ତୁ ଏଠି ଆଉ ଗୋଟାଏ କଥା ଅଛି । ତାଳ-ବେତାଳମାନେ ଏଠାରେ ଆସି ପହଞ୍ଚିବାର ଠିକ୍ ସପ୍ତାହକ ଆଗରୁ, ଶଙ୍କର ଗୋଟାଏ ଟ୍ରକର ଧ୍ୱଂସାବଶେଷ ଭିତରୁ ଲିସାକୁ ଦେଖିପାରି ଆଣି ନିଜ ଘରେ ଆଶ୍ରୟ ଦେଇଥିଲା । ଲିସା ସେଇଦିନରୁ ସେଇଠି ଥିଲା ।

: କ'ଣ କହିଲ ? ଇନିସ୍‌ପେକ୍ଟର ରଣଧୀର ହଠାତ୍ ଚେଆର ଛାଡ଼ି ଠିଆ ହୋଇ ପଡ଼ିଲେ ।

: ହଁ ଲିସାକୁ ଶଙ୍କର ଆଣି ତା'ଘରେ ରଖିଥିଲା । କିନ୍ତୁ ଲିସା ଯେ କିଏ ହୋଇପାରେ ଶଙ୍କରର ସେ ସମ୍ବନ୍ଧରେ କିଛି ଧାରଣା ନଥିଲା । ସେ ତାକୁ ତା' କୃଷିଫାର୍ମ ଭିତରୁ ବାହାରକୁ ଛାଡୁ ନଥିଲା, ତେଣୁ ଝିଅଟା ଯେ ପଳେଇ ଆସିଛି ସେ କଥା ଜାଣିବାକୁ କିଛି ବାଟ ନଥିଲା । ତା'ଛଡ଼ା ମନେ ହୁଏ ଲିସା ମୁଣ୍ଡରେ ଆଘାତ ପାଇ ତା'ର ସ୍ମୃତିଶକ୍ତି ହରେଇ ବସିଛି, ତା'ନିଜର ପରିଚୟ ପର୍ଯ୍ୟନ୍ତ ତା'ର ମନେ ନାହିଁ ।

: ହଁ, ସବୁ ବୁଝିଲି ଯେ, କିନ୍ତୁ ତମେ ଏତେ ସବୁ ଘଟଣା ଜାଣିଲ କିପରି ?

: ସେଇଠି ତ ଆପଣ ଆଉ ମୋ ଭିତରେ ତଫାତ୍ ଇନିସ୍‌ପେକ୍ଟର ସାହେବ । ମୋତେ ଏସବୁ କଥା ଶଙ୍କର କହିଛି । କାଲି ରାତିରେ ତାଳ-ବେତାଳମାନେ ତା' କୃଷି ଫାର୍ମରେ ଯାଇ ପହଞ୍ଚି ଯାଇଥିଲେ । ସେ ତାଳ-ବେତାଳଙ୍କ ଅଷ୍ଟିନ୍ ଗାଡ଼ି ଖଣ୍ଡିକର ବର୍ଣ୍ଣନା ଦେଲେ ଏବଂ ଗାଡ଼ିର ନମ୍ବର ଦେଇ କହିଲେ : ଆପଣ ଅନୁସନ୍ଧାନ ଆରମ୍ଭ କରିଦିଅନ୍ତୁ । ହଁ ଆଉ ଗୋଟିଏ କଥା, ରଂଜିତା ଘରେ ମୁଁ ଟିକିଏ ନିରାପତ୍ତା ମୂଳକ ବ୍ୟବସ୍ଥା ଆପଣଙ୍କଠାରୁ ଆଶା କରୁଛି । ତେବେ ଶଙ୍କର ଯେ ସେଠାରେ ରହିଛି, ଅବଶ୍ୟ ସେ ଖବର ସେମାନେ ପାଇବା ସମ୍ଭବ ନୁହେଁ । ତଥାପି କେତେବେଳେ କୋଉ କଥା...

: ସେଥିପାଇଁ ତମେ ଚିନ୍ତା କରନି ମାଲହୋତ୍ରା । ସେ ଦାୟିତ୍ୱ ମୋର । ପୋଲିସ୍ ଇନିସ୍‌ପେକ୍ଟର ଯେପରି ପଥ ଖୋଜି ପାଇଛନ୍ତି । ହଠାତ୍ ସେ ଚେଆରରୁ ଉଠିପଡ଼ି କହିଲେ, ଠିକ୍ ଅଛି । ମୁଁ ଏଇ ମୁହୂର୍ତ୍ତରେ ସବୁ କାମ ଆରମ୍ଭ କରିଦେଉଛି । ଜଣେ

ପୋଲିସ ଅଫିସର ସହ କେତେଜଣ କନେଷ୍ଟବଳ ତମ ସେଠାକୁ ପଠାଇ ଦେଉଛି । ଆଉ ମୁଁ ଏପରି ଭାବରେ ଜାଲ ବିସ୍ତାର କରିଦେବି ଯେ, ଜାଲ ଟାଣିଲା ବେଳକୁ ତାଳ-ବେତାଳ ଲିସା ସମସ୍ତେ ଟାଣି ହୋଇ ଆସିବେ ।

ହାଇଓ୍ୱେ ଉପରେ ଗାଡ଼ି ଛୁଟିଥିଲା ପବନ ଗତିରେ । ଲିସାର ଦୁଇହାତ ଓ ଦୁଇଗୋଡ଼ ବନ୍ଧା ହୋଇଥିଲା ଶକ୍ତ ଦଉଡ଼ିରେ । ମୁହଁରେ ଲଗା ହୋଇଥିଲା ଅଠାଳିଆ ମୋଟା ପଟି । ସେ ଅର୍ଦ୍ଧଚେତନ ଅବସ୍ଥାରେ ପଡ଼ି ରହିଥିଲା ଗାଡ଼ି ଭିତରେ । ପ୍ରାୟ ସାତ ଆଠଘଣ୍ଟା ଉନ୍ମତ୍ତଙ୍କ ପରି ଗାଡ଼ି ଚଳେଇବା ପରେ ସେମାନେ ହାଇଓ୍ୱେ ଉପରୁ ଗାଡ଼ିଟାକୁ ବାଁ ହାତି ଗୋଟିଏ ସରୁ ଜଙ୍ଗଲିଆ ରାସ୍ତା ଆଡ଼କୁ ମୁହାଁଇଲେ । ସମଗ୍ର ରାସ୍ତା ଜଗୁ ଗାଡ଼ି ଚଳେଇଲାବେଳେ ଖୁବ୍ କମ କଥା କହିଛି, ଆଉ ମଙ୍ଗୁ ସଜାଗ ଦୃଷ୍ଟି ରଖିଛି ଲିସା ଉପରେ । ବାଟଯାକ ଜଗୁର କେବଳ ମନେ ହୋଇଛି ଶଙ୍କର ଯଦି ବଞ୍ଚିଯାଏ ଏବଂ ସେ ଯଦି ଅଦାଲତରେ ଆମ ବିରୁଦ୍ଧରେ ସାକ୍ଷ୍ୟ ଦେଇ ଆମକୁ ଚିହ୍ନଟ କରିବସେ, ତେବେ ଆମ ଦୁହିଁଙ୍କୁ ଫାଶି ଖୁଣ୍ଟରୁ କେହି ବଞ୍ଚାଇ ପାରିବେ ନାହିଁ । ତେଣୁ ବର୍ତ୍ତମାନ ଏକମାତ୍ର ପଥ ହେଉଛି ଶଙ୍କରକୁ ଖତମ୍ କରିବା । ତେବେ ତା' ଆଗରୁ ଲିସାର ଗୋଟାଏ ବ୍ୟବସ୍ଥା କରିବାକୁ ହେବ । ଆଉ ଛ' ସାତଦିନ ଲିସା ବାହାରେ ରହି ପାରିଲେ ଅମୃତଲାଲ ବରିହାଙ୍କର ସମସ୍ତ ସମ୍ପତ୍ତିର ସେ ଅଧିକାରିଣୀ ହୋଇ ପାରିବ । ତା'ପରେ ଲିସାକୁ ଶ୍ରୀଖଣ୍ଡି କରି ସମସ୍ତ ସମ୍ପତ୍ତି ଭୋଗ ଦଖଲ କରିବାରେ କିଛି ଅସୁବିଧା ରହିବ ନାହିଁ । ତେବେ ଏଇ ଛଅ ସାତ ଦିନ ଲିସା ରହିବ କେଉଁଠି ? ତେଣେ ଶଙ୍କରର ଚେତା ଏତେଶୀଘ୍ର ଫେରିବ ନାହିଁ । କାରଣ ଶଙ୍କର ତା' ଗୁଳିରେ ଯେପରି ଭାବରେ ଆହତ ହୋଇଛି ଚାରି ପାଞ୍ଚଦିନ ପୂର୍ବରୁ ତା'ର ଚେତା ଫେରିବ ବୋଲି ମନେ ହୁଏ ନାହିଁ । ତେବେ ଲିସାକୁ ସେ ରାଘବନ ଘରେ ରଖିଯିବେ । ତା'ପରେ ଯାଇ ଶଙ୍କରକୁ ହତ୍ୟାକରି ସେମାନେ ନିର୍ବିଘ୍ନରେ ବଞ୍ଚିବାର ପଥ ସୁଗମ କରି ଆସିବେ ।

ଗାଡ଼ିଟା ସେ ରାଘବନ ଘର ଆଡ଼କୁ ମୁହାଁଇଲା । ସେମାନେ ଯେତେବେଳେ ଗୋଟାଏ ସର୍କସ ପାର୍ଟି ସହିତ ସଂପୃକ୍ତ ଥିଲେ, ରାଘବନ ଥିଲା ସେହି ସର୍କସ ଦଳର ରିଂମାଷ୍ଟର । ବାଘ-ସିଂହମାନେ ତା' ନିର୍ଦ୍ଦେଶରେ ଖେଳ ଦେଖାଉଥିଲେ । ସର୍କସ ପାର୍ଟି ଭାଙ୍ଗିଯିବା ପରେ କିଏ କୁଆଡ଼େ ଛିନଛତ୍ର ହୋଇ ଯାଇଥିଲେ । କିନ୍ତୁ ତାଳ-ବେତାଳ ନିଜର ସୁବିଧା ପାଇଁ ରାଘବନ୍‌କୁ ଖୋଜି ବାହାର କରିଥିଲେ । ରାଘବନର ବୟସ ବର୍ତ୍ତମାନ ହେବ ପ୍ରାୟ ଷାଠିଏ । ସେ ଜଙ୍ଗଲ କଡ଼ରେ ଗୋଟାଏ ପରିତ୍ୟକ୍ତ କୋଠାକୁ କିଣି ସେଠାରେ ଚୋରାଇ ମଦର କାରବାର କରୁଛି । କୋଠାଟା ଭଙ୍ଗା ହେଲେ କ'ଣ ହେବ ବେଶ୍ ବଡ଼ ଏବଂ ଅନେକ ଗୁଡ଼ାଏ ଘର ଅଛି । ତାଳ-ବେତାଳ ଅସୁବିଧାରେ ପଡ଼ିଲେ ସେଇଠି ଆସି ଆତ୍ମଗୋପନ କରନ୍ତି ।

ଜଗୁ ଗାଡ଼ିଟା ସେଇ କୋଠା ଦୁଆରେ ଲଗାଇ ହର୍ଣ୍ଣ ବଜାଇଲା । ଭିତରୁ ରାଘବନ ବାହାରି ଆସି ତାଳ-ବେତାଳଙ୍କ ଗାଡ଼ିକୁ ଏକଲୟରେ ଅନାଇରହି କହିଲା କିହେ ମାଣିକଯୋଡ଼ି, ଘଟଣା କ'ଣ ?

ରାଘବନଙ୍କୁ କିଛି ଉତ୍ତର ନଦେଇ ଜଗୁ ଓ ମଙ୍ଗୁ ଦୁହେଁ ଲିସାକୁ ଧରାଧରି କରି ବାହାରକୁ ଉଠାଇ ଆଣିଲେ । ସିଧାନେଇ ବାରଣ୍ଡାର ଗୋଟାଏ କାଠବେଞ୍ଚ୍ ଉପରେ ଶୁଆଇ ଦେଲେ ।

ଲିସାକୁ ହସ୍ତପଦ ଓ ମୁଖ ବନ୍ଧନ ଅବସ୍ଥାରେ ଦେଖି ରାଘବନର ଦେହରେ ରକ୍ତ ଶୀତଳ ହୋଇଗଲା । ଜଡ଼ିତ କଣ୍ଠରେ କହିଲା : ୟାକୁ କେଉଁଠୁ ଚୋରାଇ ଆଣିଲ ନା କ'ଣ ?

: ନା ନା, ଚୋରି ଫୋରି କିଛି ନୁହେଁ । ମିସ୍ ରୀତା କାହିଁ ? ଜଗୁ ଘର ଭିତରକୁ ପଶି ଯାଉଥିଲା ।

: ରୀତା ବାଡ଼ି ବଗିଚାରେ କେଉଁଠି ଥିବ । ମୁଁ କିନ୍ତୁ ଏ ଚୋରୀ ମାଲକୁ ଏଠାରେ ରଖି ପାରିବି ନାହିଁ । ରାଘବନ ଜଗୁର ପଥ ଓଗାଳି କହିଲା ।

: କହୁଛି ତ ଚୋରି ମାଲ ଏ ନୁହେଁ । ତମେ ମୋ ସହିତ ଆସ । ମୁଁ ସବୁକଥା କହୁଛି । ଜଗୁ ରାଘବନର ହାତଧରି ଭିତରକୁ ଟାଣି ନେଇଗଲା ।

ଏତିକିବେଳେ ଲିସା ଥରେ ମୁଣ୍ଡ ଉଠାଇବାକୁ ଚେଷ୍ଟା କରିଥିଲା । ମଙ୍ଗୁ କିନ୍ତୁ ତା' ମୁଣ୍ଡକୁ ଚାପିଧରି କହିଲା : ସୁବୋଧ ବାଳିକାଟି ପରି ଚୁପ୍ ଚାପ୍ ଶୋଇ ରହ । ମନେ ରଖ ମୁଁ ତୋର ଜଣେ ବିଶେଷ ବନ୍ଧୁ । ଜଗୁକଥା ଛାଡ଼ିଦେ । ସିଏ ଝିଅମାନଙ୍କୁ ମୋଟେ ପସନ୍ଦ କରେ ନାହିଁ । ତେବେ ତୋର ଯେପରି କିଛି କ୍ଷତି ନ ହୁଏ, ମୁଁ ସେଥିପାଇଁ ସଦାବେଳେ ସଜାଗ ରହିଛି । ମୋତେ ତୋର ବନ୍ଧୁ ମନେ କରି ପାରୁ । ମୁଣ୍ଡରୁ ଟୋପି ଖୋଲି ହିପ୍ ପକେଟରୁ ଗୋଟାଏ ଛୋଟ ପାନିଆ ବାହାର କରି ସେ ତାର ତେଲଚିକିଟା ବାଳତକ କୁଣ୍ଡେଇବାରେ ଲାଗିଲା । ମୁଣ୍ଡ କୁଣ୍ଡେଇ ସାରି କହିଲା, ଜଗୁକୁ କିଛି କହିବା ଦରକାର ନାହିଁ । ତୁ ମୋର ପ୍ରେମିକା ହେବାକୁ ରାଜି ଅଛୁ ତ ?

: କିନ୍ତୁ ଝିଅଟା କିଏ ? ରାଘବନ ପ୍ରଶ୍ନ କଲା ।

: ଝିଅଟା ଯିଏ ହେଉ, ତମର ସେଥିରେ ଯାଏ ଆସେ କ'ଣ ? ଆମେ ତମକୁ ଏ ଘର ପାଇଁ ଯଥେଷ୍ଟ ଭଡ଼ା ଦେଉଛୁ ।

: ତା'ବୋଲି ଚୋରି, ନାରୀ ଏ ସବୁକୁ ମୁଁ ପ୍ରଶ୍ରୟ ଦେବି ?

: ଆରେ ନା ନା, ତମେ ଏପରି ଚିତ୍କାର କରନାହିଁ କହୁଛି । ଝିଅଟାକୁ ମୁଁ ଚୋରି କରି ଆଣିନାହିଁ । ଝିଅଟାର ନାଁ ହେଉଛି ଲିସା...

: ଲିସା ? ମାନେ ପାଗଳ ଗାରଦରୁ ପଳାଇ ଆସିଥିବା ସେଇ ଝିଅଟା ?

: ହଁ ହଁ ସେଇ ଝିଅଟା । ତମେ ତା'ହେଲେ ସବୁ ଖବର ରଖିଛ ।

: ରଖିବି ନାହିଁ ? ଖବର କାଗଜରେ ତା' ସମ୍ବନ୍ଧରେ ଏତେ କଥା ବାହାରିଲା । ଦେଶସାରା କିଏ ଜାଣିନି କହିଲ ? ତା'ଛଡ଼ା ତୁମେ ସେଇ ଝିଅଟାକୁ କାହିଁକି ଧରି ଆଣିଛ ?

: କିଛି ବୁଝି ପାରୁନା ତମେ ? ଖବର କାଗଜରେ ତ ସବୁ ପଢ଼ିଛ, ଆଉ ଅସଲ ରହସ୍ୟଟି ଜାଣିନାହଁ ? ବୁଝିଲ ରାଘବନ ଚଚ୍ଚା, ସମୟ ମାତ୍ର ଆଉ ସାତଦିନ । ଆମେ ଯଦି ଆଉ ସାତ ଦିନ ଲିସାକୁ ଲୁଚାଇ ରଖିଦେଇ ପାରୁ, ସେ ଯଦି ଏଇ ସାତଦିନ ଭିତରେ ପାଗଳା ଗାରଦକୁ ଫେରି ଯାଇ ନପାରେ, ତେବେ ଅମତ ଲାଲ ବରିହାଙ୍କର

ଏକକୋଟି ଟଙ୍କା ମୂଲ୍ୟର ସମ୍ପତ୍ତିର ସେ ଉତ୍ତରାଧିକାରିଣୀ ହୋଇଯିବ ।

: ବୁଝିଲି, ସେ ଏକକୋଟି ଟଙ୍କାର ମାଲିକ ହେବ । ସେଥିରେ ତମର ଲାଭ କ'ଣ ହେବ ?

: କିଛି ଲାଭ ହେବନାହିଁ ? ଆମ୍ଭେ ସେ ଝିଅଟାକୁ ଲୁଚାଇରଖି ତାକୁ ଏତେ ଟଙ୍କାର ମାଲିକ ବନେଇ ଦେଲୁ । ସେଥିପାଇଁ ସେ ଆମ ପାଖରେ କୃତଜ୍ଞ ହୋଇ ରହିବ ନାହିଁ ?

: କୃତଜ୍ଞ, ଏମିତି ବାନ୍ଧି ରଖିବା ପରେ ବି ? ରାଘବନ ବିଦ୍ରୂପ ସ୍ୱରରେ କହିଲା ।

: ତମେ ବୁଝିବନି ଚାଚା, ଝିଅଟା ଯେ ବଦ୍ଧ ପାଗଳ । ପରେ ଏ ସବୁ କଥା ତା'ର ମନେ ରହିବ ନାହିଁ । ତା'ଛଡ଼ା ପାଗଳମାନଙ୍କୁ ବାନ୍ଧି ରଖିବାକୁ ହୁଏ । ଠିକ୍ ସମୟରେ ଗଣ୍ଡେ ଖାଇବାକୁ ଦେଲେ ହିଁ ସେମାନେ କୃତଜ୍ଞ ରହିବେ ।

: ବୁଝିଲି, ସିଏ ତୁମପ୍ରତି କୃତଜ୍ଞ ରହିଲା । କିନ୍ତୁ ଏଥିରେ ମୋର ଲାଭ କ'ଣ ହେବ ?

: ଆମେ ଯାହା ପାଇବୁ ତା'ର ଚାରି ଭାଗରୁ ଏକ ଭାଗ ତୁମକୁ ଦେବୁ ।

ତା'ମାନେ ପାଇଲେ ମେଞ୍ଚାଏ ନ ପାଇଲେ କେଞ୍ଚାଏ । ସେ ସବୁ କଥା ଛାଡ଼ ବାବୁ । ମୋତେ ଆଉ ସମ୍ପତ୍ତିର ଲୋଭ ଦେଖାଅ ନାହିଁ । ମୋ ମତରେ ଝିଅଟାକୁ ଏଠାକୁ ଆଣି ନଥିଲେ ଭଲ କରି ଥାଆନ୍ତା ରାଘବନ କହିଲା ।

: ସେ ସବୁ ଚିନ୍ତା ଛାଡ଼ ତ ଚାଚା । ଦସ୍ତାନା ଦୁଇଟା ହାତରୁ ଖୋଲି ପ୍ୟାଣ୍ଟ ପକେଟ୍‌ରେ ରଖୁ ରଖୁ ଜଗୁ କହିଲା ।

ରାଘବନ ବାରଣ୍ଡା ଉପରୁ ତଳକୁ ମେଞ୍ଚାଏ ଛେପ ଫୋପାଡ଼ି କହିଲା: ମୁଁ ଯାହା ଶୁଣିଛି ଝିଅଟା କୁଆଡ଼େ ସାଂଘାତିକ । ଖୁଣ୍‌ଖରାପ ଆଡ଼େ ତା'ର ପ୍ରବଳ ଝୁଙ୍କ୍ ।

ଆରେ ଚଚ୍ଚା, ତମ ମୁହଁରେ ଏସବୁ ଭୟ ଭୀତିର କଥା ଶୋଭା ପାଏନା । ଏକଦା ତମେ ବାଘ ସିଂହଙ୍କ କାନମୋଡ଼ି ପିଠିରେ ବସୁଥିଲଟି । ମୋର ବି ମନେ ହେଉଛି ତମେ ଆଉ ମିସ୍ ରୀତା ଅକ୍ଲେଶରେ ଝିଅଟାକୁ ସମ୍ଭାଳି ନେବ ।

ମିସ୍ ରୀତା ଏ ପ୍ରସ୍ତାବରେ ହୁଏତ ରାଜି ହେବ ନାହିଁ । କାରଣ ଆଜିକାଲି ତା'ର ଚାଲିଚଳନ ହାବଭାବ ଅଦ୍ଭୁତ ଧରଣର ହୋଇ ଉଠିଲାଣି । ବୋଧହୁଏ କିଛି ଦିନ ପରେ ନିଜେ ସେ ପାଗଳ ହୋଇଯିବ ।

: ଧେତ୍‌ତେରି, କିଏ କେବେ ପାଗଳ ହେବ ନ ହେବ ତା'ପାଇଁ ଅନୁତାପ କରିବାର ପାତ୍ର ଏ ଜଗୁ ନୁହେଁ । ଆଛା ତମେ କହିଲ, ଏ କୋଠାରେ ଝିଅଟାକୁ ଚାବି ବନ୍ଦ କରି ରଖିବା ପାଇଁ ଗୋଟାଏ ଅଲଗା ଘର ଅଛି ?

: ଅଛି, ଉପର ମହଲାରେ ଗୋଟାଏ ନିରୋଳା ଘର ଅଛି । ସେଇଠି ରଖିପାର ।

ଠିକ୍ ଅଛି । ଚାଲ ସେ ଘରଟା ମୋତେ ଦେଖାଇ ଦିଅ । ମୋତେ ପୁଣି କେନାଲ ବ୍ରିଜ୍ ଯାଏ ଫେରି ଯିବାକୁ ହେବ । ହାନରେ ବହୁତ କାମ ।

: ଏଁ, ତୁମେ ରହିବିନି ? ରାଘବନ ଆଶ୍ଚର୍ଯ୍ୟ ହୋଇ ପ୍ରଶ୍ନ କଲା ।

: ନା ନା, ରହି ପାରିବିନି । ହାତରେ କାମ ସବୁ ଶେଷ କରିବାକୁ ହେବ । ତେବେ କଥା ଦେଉଛି ଖୁବ୍ ଶୀଘ୍ର ଫେରି ଆସିବି ।

ଜଗୁ ମଙ୍ଗୁକୁ କହିଲା, ଲିସା ମୁହଁରୁ ପଟିଟା ଖୋଲିଦେବା ପାଇଁ ।

ମଙ୍ଗୁ ଲିସା ମୁହଁରୁ ପଟିଟା ଖୋଲିଦେଲା । ଶାନ୍ତ କ୍ଲାନ୍ତ ହୋଇ ଗୋଟାଏ ଚେଆର ଉପରେ ମୁଣ୍ଡ ଦେଇ ଅଧା ଶୁଆ ଅବସ୍ଥାରେ ପଡ଼ିଥିଲା ଲିସା । ମୁହଁରୁ ପଟି ଖୋଲିଦେବା ମାତ୍ରକେ ସେ ତୀକ୍ଷଣ ଦୃଷ୍ଟିରେ ଚାହିଁଲା ସେମାନଙ୍କୁ ।

: ଏଥର କହ ଶଙ୍କର କୋଉଠି ? ଜଗୁ ସ୍ୱରରେ କାଠିନ୍ୟ ଫୁଟି ଉଠିଥିଲା ।

: ଶଙ୍କର ? ତା'କଥା କହିବିନି ।

: କହିବୁନି ମାନେ ? ତୋତେ କହିବାକୁ ହିଁ ହେବ । କେମିତି ନ କହିବୁ ମୁଁ ଦେଖିବି । ଧରତ ମଙ୍ଗୁ । ଉପରକୁ ନେଇ ପାନେ ଔଷଧ ଦେଲେ, ଟୋକୀ ତା' ବାପର ଠିକଣା ପର୍ଯ୍ୟନ୍ତ ବତେଇ ଦେବ, ଆଉ ଇଏ ଶଙ୍କର....

ଠିକ୍ ସେତିକିବେଳେ ପଛରୁ କାହାର ମୃଦୁ ପାଦ ଶବ୍ଦ କାନରେ ବାଜିଲା । ସେମାନେ ଚାହିଁ ଦେଖିଲେ ଜଣେ ମହିଳା କିନ୍ତୁ ଠିକ୍ ଭାବରେ କହିବାକୁ ଗଲେ ମହିଳା ମାନଙ୍କ ପୋଷାକ ଆବୃତ କରା ଗୋଟିଏ ଦେହ । ତା' ନହେଲେ ମହିଳାତ୍ୱର କିଛି ଚିହ୍ନ ନାହିଁ ସେ ଦେହଟିରେ । ବରଂ ମୁହଁରେ ଲମ୍ବା ଲମ୍ବା ରେଶମୀ ଦାଢ଼ୀ ଉଠି ମୁହଁଟାର କେତେକ ଅଂଶ ଘୋଡ଼େଇ ରଖିଛି । ପିନ୍ଧିଛି ବହୁ ବର୍ଷ ତଳର ଗୋଟାଏ ମଇଳା ଛିଣ୍ଡା ପୋଷାକ । ନିଃସଙ୍ଗ ଜୀବନର ସବୁଠୁଁ ବେଶୀ ସମୟ କଟିଛି ଭ୍ରାମ୍ୟମାନ ସର୍କସ ଦଳରେ । ଏକ ସମୟରେ ସର୍କସର ନାମୀ ଖେଳୁଆଡ଼ ଥିଲା ମିସ୍ ରୀତା, ହଜାର ହଜାର ଦର୍ଶକ ତା' ଦଉଡ଼ି ଡିଆଁ ଖେଳଆଡ଼େ ହାଁ କରି ଅନେଇ ରହୁଥିଲେ । ରୀତାର ବୟସ ବର୍ତ୍ତମାନ ପଇଁଚାଳିଶି, ରାଘବନଙ୍କ ଆଶ୍ରୟରେ ସେ ରହିଛି । ବାଟଭାଙ୍ଗି ଅନ୍ୟଆଡ଼େ ଚାଲିଗଲା ରୀତା ।

ଜଗୁ ଲିସା ମୁଣ୍ଡ ଧରିଲା । ମଙ୍ଗୁ ଗୋଡ଼ ଆଡୁ ଧରିଲା, ଚାଲେ ଉପରକୁ ନେଇଚାଲ, ଟୋକୀ କିପରି ମୁହଁ ଖୋଲିବନି ଦେଖିବା ।

ସେମାନେ ଧରାଧରି କରି ଉପରକୁ ନେଇଗଲେ । ଲିସା ଛାଟିପିଟି ହେଉଥିଲା । କିନ୍ତୁ କରିବାର କିଛି ନଥିଲା । ମିସ୍ ରୀତା ଟିକିଏ ଅଟକି ଯାଇ ଚାହିଁଲା ସେ ଆଡ଼େ । ମନକୁ ମନ କହିଲା, ଏଇ ସୁନ୍ଦରୀ ଝିଅଟିକୁ ନେଇ ଏମାନେ କରିବେ କ'ଣ ! ବିଧର୍ମୀ, ବେଜନ୍ମା, ଏଇ ଲୋକ ଗୁଡ଼ାଙ୍କର ମା' ଭଉଣୀ ନାହିଁ ।

ମିସ୍ ରୀତା ଚାଲିଗଲା ରୋଷେଇ ଘରକୁ । ଜଗୁ ଆଉ ମଙ୍ଗୁ ମଝିରେ ମଝିରେ ପ୍ରାୟ ଆସନ୍ତି ସେଠାକୁ । ମିସ୍ ରୀତା କିନ୍ତୁ ଦି'ଆଖିରେ ଦେଖି ପାରେନାହିଁ ସେମାନଙ୍କୁ ।

କିନ୍ତୁ ଏଇ ଝିଅଟି, କିଏ ଏହି ଝିଅଟି ! ଅନିନ୍ଦ୍ୟ ସୁନ୍ଦରୀ । କେଉଁଠାରୁ ଉଠେଇ ଆଣିଛନ୍ତି ଏମାନେ...

ହଠାତ୍ ଗୋଟାଏ ଆର୍ତ୍ତଚିତ୍କାର ଶୁଣି ରୀତା ଶିହରୀ ଉଠିଲା । ବୋଧହୁଏ ତାଳ-ବେତାଳ ତା' ଉପରେ ଅତ୍ୟାଚାର ଆରମ୍ଭ କରି ଦେଇଛନ୍ତି । ତା'ର ନାରୀହୃଦୟ ବିଦ୍ରୋହ କରି ଉଠୁଥିଲା । ସେ ରୋଷେଇ ଘର ବାହାରକୁ ବାହାରି ଆସି ଦେଖିଲା ରାଘବନ ଠିଆ ହୋଇଛି ।

ରାଘବନ କହିଲା : ସେମାନେ ଯାହା କରିବାର କରନ୍ତୁ । ତମେ ଯାଅନି ସିଆଡ଼େ । ତାଙ୍କ କାର୍ଯ୍ୟକଳାପରେ ବାଧାଦେବାର ଶକ୍ତି ଆମର ନାହିଁ ।

: କିନ୍ତୁ କିଏ ସେହି ଝିଅଟି ? ମିସ୍ ରୀତା ପଚାରିଲା ।

: ଆରେ ସେ ଲିସା ମ ? ଯୋଉ ଝିଅଟା ପାଗଳ ଗାରଦରୁ ଖସି ପଳେଇଚି । ଯାହାକୁ ଦେଶସାରା ପୋଲିସ ବାହିନୀ ଖୋଜୁଛନ୍ତି । ଯାହାକଥା ଆଜି ସକାଳେ ଆମେ ଖବର କାଗଜରେ ପଢୁଥିଲେ । ହଠାତ୍ ମିସ୍ ରୀତା ଯେମିତି ଶିହରୀ ଉଠିଲା । ଦୁଇପାଦ ପଛକୁ ଘୁଞ୍ଚିଯାଇ ଅସ୍ପଷ୍ଟ ସ୍ୱରରେ କହିଲା : ତା'ହେଲେ ଏ ନିଶ୍ଚୟ ସେଇ ଝିଅଟା ?

: ହଁ ।

: କିନ୍ତୁ ଏମାନେ ତାକୁ ଏଠାକୁ ଧରି ଆଣିଛନ୍ତି କାହିଁକି ? ମୋର ମନେ ହେଉଛି ଝିଅଟାର ବର୍ତ୍ତମାନ ଯାହା ଅବସ୍ଥା ତା'ର ସେବା ଶୁଶ୍ରୂଷାର ପ୍ରୟୋଜନ । କିନ୍ତୁ...

ପୁଣି ଆଉଥରେ ଗୋଟାଏ ଭୟାର୍ତ୍ତ ଆର୍ତ୍ତଚିତ୍କାର ଭାସି ଆସିଲା ଦୂରରୁ । ମିସ୍ ରୀତା ଆଉଥରେ ଚମକି ଉଠି କହିଲା : କ'ଣ ଏସବୁ ହେଉଛି ? ଗୋଟାଏ ଝିଅକୁ ଆମରି ସାମନାରେ ସେମାନେ ମାରି ପକାଇବେ ?

ରାଘବନ ରୀତାର ଡିଆସିଲି କାଠିପରି ସରୁହାତ ଦୁଇଟାକୁ ଟାଣିଧରି କହିଲା : ତମେ ସିଆଡ଼େ ଯାଅନି ରୀତା । ସେମାନଙ୍କ କାମରେ ବାଧାଦେଲେ ପରିଣତି ଯାହା ହେ'ବ, ତମକୁ ତ ଅଜଣା ନାହିଁ ।

: ପରିଣତି ଫରିଣତି ମୁଁ ଭାବୁନାହିଁ । ମୁଁ ଭାବୁଛି ଆମ ଆଖି ଆଗରେ, ଗୋଟାଏ ଅସହାୟ ଝିଅକୁ...

ରାଘବନ ରୀତାର ହାତଧରି ଟାଣି ଟାଣି ବଗିଚା ଆଡ଼କୁ ନେଇଗଲା, କହିଲା : ଚାଲିଆସ ରୀତା ! ଆମେ ଦୂରକୁ ଚାଲିଯିବା । ଏମାନଙ୍କ କଥା ଯେପରି ଆମ କାନରେ ନ ବାଜେ । ସେମାନେ ଯାହା କରୁଛନ୍ତି କରନ୍ତୁ ।

ମିସ୍ ରୀତାର ଆଖି ଦୁଇଟା ଛଳ ଛଳ ହୋଇ ଆସିଲା । ସେ ରୁମାଲରେ ଆଖିର ଲୁହ ପୋଛୁ ପୋଛୁ କହିଲା : ଆହା ବିଚାରୀ, କି ସୁନ୍ଦର ଝିଅଟା, ଏମାନେ...

ରୀତାର କଥା ଶେଷ ହେଲାନାହିଁ । ତାଳ-ବେତାଳ ଦି'ଜଣ ତାଙ୍କରି ଆଡ଼େ ଆଗେଇ ଆସୁଥିଲେ । ଇତ୍ୟବସରରେ ସେମାନେ କଳାପୋଷାକ ବଦଳେଇ ଧୂସର ରଙ୍ଗର ହାଲ୍‌କା ସୁଟ୍, ମୁଣ୍ଡରେ ଧୂସର ରଙ୍ଗର ଟୋପି ଓ ପାଦରେ ବାଦାମୀ ରଙ୍ଗର ଜୋତା ପିନ୍ଧି ବାହାରି ଆସିଥିଲେ। ଦେଖିଲେ ମନେ ହେଉଥିଲା ଯେପରି ସେମାନେ ଛୁଟି ଉପଭୋଗ କରିବାକୁ ଯାଉଛନ୍ତି ।

ତମେମାନେ କ'ଣ ଏବେ ଚାଲି ଯାଉଛ ? ରାଘବନ ପଚାରିଲା ।

: ହଁ, ଆମେ ଲୋକଟାର ଖବର ପାଇଛୁ । ଏଠାରୁ ଅନେକ ଦୂରରେ ସେ ଅଛି । ତାକୁ ଯାଇ ଧରିବାକୁ ହେବ ।

କୋଉଲୋକ କୋଉଠି ଅଛି ସେ କଥା କିଛି ପଚାରିଲା ନାହିଁ ରାଘବନ । ଗରମ ବାଲିରେ ତା'ଗୋଡ଼ ପୋଡ଼ି ଯାଉଥିଲା । ପାଦ ଦୁଇଟା ଧଦଳ ବଦଳ କରୁ କରୁ କହିଲା : ଝିଅଟା ତା'ହେଲେ ଶେଷ ପର୍ଯ୍ୟନ୍ତ ମୁହଁ ଖୋଲିଲା ?

: ନଖୋଲି କରିଥାନ୍ତା କ'ଣ ? ଯା'ହେଉ ଆମେ ଚାଲିଲୁ । ଝିଅଟାର ଦାୟିତ୍ୱ ରହିଲା ତମ ଉପରେ ।

: କେବେ ଫେରିବ ?

ଫେରିବାକୁ ଦୁଇ ତିନିଦିନ ଡେରି ହେବ । ଲୋକଟାକୁ ପାଇଲେ ହିଁ ଆମେ ଫେରି ଆସିବୁ । ତମ ଉପରେ କିନ୍ତୁ ଝିଅଟାର ଦାୟିତ୍ୱ ରହିଲା । ଫେରିଆସି ଯଦି ଝିଅଟାକୁ ଆମେ ଦେଖିବାକୁ ନ ପାଉ, ତା'ହେଲେ ତୁମେ ବି ଏଠାରେ ନଥିବା ଭଲ । କ'ଣ ମୋ କଥାର ମର୍ମ ବୁଝିଲ ଚାଳା ?

: ନା ନା, ସେ ଝିଅଟା ଏଇଠି ଥିବ ।

: ମୁଁ ବି ସେଇଆ ଚାହେଁ ।

ତାଳ-ବେତାଳ ଘରୁ ବାହାରି ଚାଲିଗଲେ ।

ମିସ୍ ରୀତା ଚାଲିଗଲା ତା' ଶୟନ କକ୍ଷକୁ । ତା' ଦେହଟା ଗୋଟିପଣ ଥରୁଥିଲା । ସେ ଯାଇ ପ୍ରଥମେ ବିଛଣା ଉପରେ ଲମ୍ୱହୋଇ ଶୋଇଗଲା କିଛିକ୍ଷଣ । ତା'ପରେ ଧୀରେ ଧୀରେ ଉଠି ଆଇନା ସାମନାରେ ବସି ମୁଣ୍ଡ କୁଣ୍ଡେଇଲା । ଦାଢ଼ିରେ ପାନିଆ ବୁଲେଇ ଦେଲା । ପୁଣି ଧୀରେ ଧୀରେ ଉଠି ବାହାରି ଆସିଲା ବାହାରକୁ । ଦେଖିଲା ରାଘବନ ଶିଡ଼ି ଉପରେ ଚୁପ୍‌ଚାପ୍ ଠିଆ ହୋଇଛି ।

: କୁଆଡ଼େ ବାହାରିଲକି ରୀତା ? କର୍କଶ କଣ୍ଠରେ ରାଘବନ ପଚାରିଲା ।

ଝିଅଟାକୁ ଟିକେ ଦେଖିଆସେ । ଦୃଢ଼ କଣ୍ଠରେ କହିଲା ରୀତା । ତା'ର ଏଇକ୍ଷିଣା ଟିକେ ଯତ୍ନ ନେବା ଦରକାର । ଯେତେହେଲେ ଝିଅଟାତ, ଆଉ ଜଣେ ସ୍ତ୍ରୀ ଲୋକର ଆଦର ପାଇଲେ...

: ନିଜକୁ ତୁ ଆଉ ସ୍ତ୍ରୀ ଲୋକ କହନାହିଁ ରୀତା । ବରଂ ସେ ତୋତେ ଦେଖିବା ମାତ୍ରକେ ଭୟରେ କମ୍ପି ଉଠିବ ।

: ସେ ଯାହାଭାବୁ, ତଥାପି ମୁଁ ତାକୁ ଦେଖା କରିବି ।

:ହଉ ଯାଅ, ଦେଖାକର ମୋର କିଛି ଆପତ୍ତି ନାହିଁ । କିନ୍ତୁ ବୋକାଙ୍କ ପରି ଯେପରି କିଛି କରି ନ ବସ । ଜଗୁ କ'ଣ କହିଯାଇଛି ମନେ ଅଛି ତ ?

: ହଁ ହଁ, ମୋର ସବୁ ମନେ ଅଛି । ମୁଁ ଖାଲି ଝିଅଟାକୁ ଟିକିଏ ସାନ୍ତ୍ୱନା ଦେଇ ଫେରି ଆସିବି ।

: କଥାବାର୍ତ୍ତା ଶେଷ ହେଲେ ଘରେ କିନ୍ତୁ ଚାବି ଦେଇ ଆସିବୁ । ପକେଟରୁ ଗୋଟାଏ ଚାବି ବାହାର କରି ମିସ୍ ରୀତା ହାତରେ ଦେଇ ଅନ୍ୟଆଡ଼େ ଚାଲିଗଲା ରାଘବନ ।

ମିସ୍ ରୀତା ଧୀର ପାଦରେ ଆଗେଇ ଗଲା ଲିସା ଯେଉଁ ଘରେ ବନ୍ଦୀ ଥିଲା, ସେଇଠିକି । ଘର ଦୁଆରେ ଠିଆହେଲା ମୁହୂର୍ତ୍ତେ । ଛାତି ଭିତରଟା ତା'ର ଥରୁଥିଲା । ଖୋଲିବ ନା ନାହିଁ ?

ଶେଷରେ ମନ ଦମ୍ଭ କରି ଚାବି ଖୋଲି ଭିତରେ ପଶିଲା ରୀତା । ଚାକଚକ୍ୟ ବିହୀନ ଗୋଟିଏ ଛୋଟ ଘର । ମଇଳା । କାନ୍ଥର ଏକ ଅନ୍ଧାରୁଆ ଘର ଭିତରେ ଗୋଟିଏ ଦଉଡ଼ିଆ ଖଟ ଉପରେ ଶୋଇଛି ଲିସା । ଶବ୍ଦ ଶୁଣି ଫେରି ଚାହିଁଲା ମୁହୂର୍ତ୍ତେ । ଚାହାଣି ଭାବଲେଶ ହୀନ । ପୁଣି ଦୃଷ୍ଟି ଫେରେଇ ନେଲା ଲିସା । ଆରପାଖ କାନ୍ଥର ମାଙ୍କଡ଼ସା ଜାଲ ଉପରେ ଦୃଷ୍ଟି ନିବଦ୍ଧ କରି ଶୋଇ ରହିଲା ।

: ମୁଁ... ମାନେ ମୁଁ ମିସ୍ ରୀତା । ଶାନ୍ତ ଅଥଚ ସଂକୁଚିତ ସ୍ୱରରେ ରୀତା କହିଲା ।

ଲିସାର ଦେହ ଯେପରି ମୁହୂର୍ତ୍ତକ ପାଇଁ ଶିହରୀ ଉଠିଲା । ସେ ପୁଣି ଥରେ ମୁହଁ ବୁଲେଇଲା ରୀତା ଆଡ଼କୁ । ସେ ଦେଖିଲା ଏକ ଦରଦୀ ବିବ୍ରତ ମୁଖ । ସହାନୁଭୂତିରେ ଭରି ରହିଚି । ଆଖି ଯୋଡ଼ାକ ଢଳ ଢଳ ହେଉଚି ।

: ନା ନା, ଆପଣ ଦୟା କରନ୍ତୁ । ଆପଣ ଚାଲି ଯାଆନ୍ତୁ ଏଠୁ । ମୁଁ ଆଉ ପାରୁନାହିଁ । ଶେଷରେ କାନ୍ଦି ଉଠିଲା ଲିସା ।

ରୀତା ଆଗେଇ ଆସିଲା ଦି'ପାଦ । ଚାରିଆଡ଼େ ନିସ୍ତବ୍‌ଧତା । କେବଳ ବଗିଚା ଭିତରେ ରାଘବନ କାଠ ଚିରିବାର ଶବ୍ଦ ଶୁଭୁଚି । କେଉଁଠି ବହୁତ ଦୂରରେ ଗୋଟାଏ କୁକୁର ଭୁକୁଛି ।

: ମୁଁ ତମର କିଛି କ୍ଷତି କରିବାକୁ ଆସିନି । ଶାନ୍ତ ସ୍ୱରରେ ରୀତା କହିଲା । ମୁଁ ବି ଜଣେ ମଣିଷ । ମୋତେ ଏଗୁଡ଼ା ସବୁ କିଛି ଭଲ ଲାଗୁନାହିଁ । ତମେ ବିଶ୍ୱାସ କର, ମୁଁ ଦିନେ ସେମାନଙ୍କ ସଙ୍ଗରେ ସର୍କସ ଦଳରେ ଥିଲି ।

: ମୁଁ ଆପଣଙ୍କୁ ଦେଖି ଭୟ କରୁନି । ମୁଁ ଚାହୁଁଚି କେବଳ ଟିକେ ନିରୋଳାରେ ରହିବାକୁ । ଅନ୍ତତଃ କିଛି ସମୟ ପାଇଁ ମୋର ଟିକେ ନିରୋଳାରେ ରହିବାକୁ ଇଚ୍ଛା ।

: ଟିକେ କଫି ଖାଇଲେ ହୁଏତ ତୁମକୁ ଭଲ ଲାଗିବ, ନା ଚା କରି ଆଣିବି ? ତମ ପାଇଁ ମୋର ଦୁଃଖ ହୁଏ । ଏ ପୁରୁଷ ଲୋକ ଗୁଡ଼ାକ ଅଦ୍ଭୁତ । ଆମେ ଝିଅମାନେ କେବଳ ସେମାନଙ୍କ ପାଇଁ ତ୍ୟାଗ ସ୍ୱୀକାର କରି ଯାଆନ୍ତି । ଜାଣ, ମୋର ବି ଜଣେ ପ୍ରେମିକ ଥିଲେ, ତୁମେ ହୁଏତ ବିଶ୍ୱାସ କରି ପାରିବ ନାହିଁ । କିନ୍ତୁ... ଛାଡ଼, ସେ ସବୁ କଥା ଭାବି କିଛି ଲାଭ ହେବ ନାହିଁ । କିନ୍ତୁ ସେମାନେ ତମକୁ ଏଠିକି ଧରି ଆଣିବାଟା ଉଚିତ୍ ହୋଇନି । ତୁମ ପରି ଏଡ଼େ ସୁନ୍ଦରୀ ଝିଅ...

: ଆପଣ କିଏ ? ମୋଠାରୁ କ'ଣ ଚାହାନ୍ତି ? ଲିସା ଖଟ ଉପରେ ଉଠି ବସିଲା ।

ପାଦେ ପାଦେ ଯାଇ ରୀତା କହିଲା : ମୋ ନାଁ ମିସ୍ ରୀତା । ତମର ବୟସ ଖୁବ୍ କମ୍, ସେଇଥିପାଇଁ ମୋ ନାଁ ଶୁଣି ନାହଁ । ମୁଁ ଜଣେ ଶିଳ୍ପୀ । ଏକ ସମୟରେ ମୋର ଖୁବ୍ ଖ୍ୟାତି ଥିଲା । ନାନା, ତୁମଠାରୁ ମୁଁ କିଛି ଚାହେଁନି । କେବଳ ତୁମକୁ ମୋର ସ୍ନେହ ଜଣାଇବାକୁ ଆସିଚି । ସ୍ନେହ ଯେ କି ଅମୂଲ୍ୟ ସମ୍ପଦ ମୁଁ ସେ କଥା ଜାଣେ । ଯେତେବେଳେ ତୁମର ଚିତ୍କାର ଶୁଣିଲି, ଦେଖିଲି ତମେ ଏତେ ସୁନ୍ଦର । ଭାବିଲି, ଦେଖେ ତମକୁ ଯଦି କିଛି ସାହାଯ୍ୟ କରିପାରେ । ତେବେ ବେଶି କିଛି ହୁଏତ କରି ପାରିବି ନାହିଁ । କିନ୍ତୁ...ଆମେ ଝିଅମାନେ ଜଣକ ବିପଦ ବେଳେ ଯଦି ଅନ୍ୟ ଜଣକୁ ସାହାଯ୍ୟ କରି ନ ପାରୁ...

: ଶଙ୍କର କେଉଁଠି ଅଛି ମୁଁ ସେମାନଙ୍କୁ କହି ଦେଇଛି । ଭାବିଥିଲି କହିବି ନାହିଁ । କିନ୍ତୁ ସେମାନେ ମୋତେ ଏତେ ଯନ୍ତ୍ରଣା ଦେଲେ ଯେ, ନ କହି ରହି ପାରିଲି ନାହିଁ । ମୁଁ ତାଙ୍କୁ ଖୁବ୍ ଭଲ ପାଏ । ଅଥଚ ମୁଁ ସେମାନଙ୍କୁ କହିଦେଲି । ସେମାନେ ଠିକ୍ ତାଙ୍କୁ ଖୋଜି ବାହାର କରିବେ । ଲିସା ଏତକ କହି ସାରି ପୁଣି ବିଛଣାରେ ଶୋଇ ପଡ଼ିଲା ।

ରୀତା ଆଉ ଟିକିଏ ଲାଗି ଆସିଲା ଲିସା ପାଖକୁ । ଧୀରେ ଧୀରେ କହିଲା : ତୁମେ ଏତେ ଉତ୍ତେଜିତ ହୁଅ ନାହିଁ । ଟିକିଏ ଧୈର୍ଯ୍ୟ ଧର । ଶାନ୍ତ ହୁଅ । ମୁଁ ତମ ପାଇଁ କପେ ଚା' କରି ଆଣୁଚି ।

ଚା' ଦରକାର ନାହିଁ । ଆପଣ ବରଂ ମୋତେ ଏଠାରୁ ଚାଲିଯିବା ପାଇଁ

ସାହାଯ୍ୟ କରନ୍ତୁ। ପୁଣି ଉଠି ବସିଲା ଲିସା । ମୋତେ ଶଙ୍କର ପାଖକୁ ଫେରି ଯିବାକୁ ହେବ । ସେମାନେ ତାଙ୍କୁ ଗୁଳି କରିଥିଲେ । ମୁଁ ତାଙ୍କୁ ଜଙ୍ଗଲ ଭିତରେ ଛାଡ଼ି ଆସିଥିଲି । ସେମାନେ ହୁଏତ ଯାଇ ତାଙ୍କୁ ଶେଷ କରିଦେବେ ।

: କିନ୍ତୁ ମୁଁ ତୁମକୁ ଏଠାରୁ ଛାଡ଼ିଦେଇ ପାରିବି ନାହିଁ । ତା'ହେଲେ ମୋର ସେଇଟା ଅନଧିକାର ଚର୍ଚ୍ଚା ହେବ । ମୁଁ କେବଳ ଏଠାରେ ତୁମକୁ ଟିକିଏ ଆରାମରେ ରଖିବାକୁ ଚାହେଁ । ଏହାଛଡ଼ା ଅଧିକା ଆଉ ତୁମେ କିଛି ଆଶାକର ନାହିଁ ।

: ଆପଣ ନିଶ୍ଚୟ ମୋର ଅବସ୍ଥା କଥା ବୁଝି ପାରୁଛନ୍ତି । ଟିକିଏ ଆଗରୁତ କହୁଥିଲେ, ଆପଣଙ୍କର ଜଣେ ପ୍ରେମିକ ଥିଲେ । ତେଣୁ ଆପଣ ବୁଝୁଥିବେ ଆପଣାର ଲୋକ ପାଇଁ କିପରି ତ୍ୟାଗ ସ୍ୱୀକାର କରିବାକୁ ହୁଏ । ମୁଁ ସେମାନଙ୍କୁ କହି ଦେଇଚି ଶଙ୍କର କେଉଁଠି ଅଛି । ନ କହିବା ପାଇଁ ଅନେକ ଚେଷ୍ଟା କିରିଥିଲି କିନ୍ତୁ ପାରିଲି ନାହିଁ । ଆପଣ ଜାଣି ନାହାନ୍ତି ସେମାନେ ମୋତେ କ'ଣ କରିଛନ୍ତି । ଲିସା ଦି'ହାତରେ ଆଖି ଢାଙ୍କି ପକାଇଲା ।

: ଆହାରେ ବିଚାରୀ... ତୁମେ ତାକୁ ଖୁବ୍ ଭଲ ପାଅ ବୋଧେ । ଯା ହେଉ, ମୁଁ ଆସୁଚି । ତମ ପାଇଁ ଚା'କପେ କରି ଆଣୁଛି । ଚା ଖାଇଲେ ତମକୁ ଟିକିଏ ଭଲ ଲାଗିବ । ତା'ଛଡ଼ା ବଡ଼ ରାସ୍ତାଟା ଏଠାରୁ ଅନେକ ଦୂର । ଚାଲି ଚାଲି ଯିବା ଛଡ଼ା ଉପାୟ ନାହିଁ । ହଲ ଘରେ ଟଙ୍କା ଅଛି... ବୁଝିଲୁ ଝିଅ । ରୀତା ଏହିପରି ଏଣୁ ତେଣୁ କହୁ କହୁ ଦ୍ରୁତ ସେଠାରୁ ଅପସରିଗଲା । ଶିଡ଼ିବାଟେ ତଳକୁ ଓହ୍ଲାଇବାର ଶବ୍ଦ ଲିସା କାନରେ ବାଜିଲା । କିନ୍ତୁ ଦୁଆରେ ତାଲା ଦେବାର ଶବ୍ଦ ତ ସେ ଶୁଣିଲା ନାହିଁ ?

କିଛି ସମୟ ପରେ ସ୍ତବ୍ଧ ହୋଇ ବସି ଚିନ୍ତା କଲା ଲିସା । ତା' ହେଲେ ଆକାର ଇଙ୍ଗିତରେ ମିସ୍ ରୀତା ତା'ହେଲେ....ହଁ ହଁ । ଲିସା ଠିଆ ହେଲା । ଅତି ସନ୍ତର୍ପଣରେ ଆଗେଇବାକୁ ଚେଷ୍ଟା କଲା କବାଟ ପାଖକୁ । କିନ୍ତୁ ଗୋଡ଼ ଦୁଇଟା ଯେପରି ନିର୍ଜୀବ । ବହୁ କଷ୍ଟରେ ସେ କବାଟ ଯାଏ ଆଗେଇ ଯାଇ କବାଟର ପିତଳ ହ୍ୟାଣ୍ଡେଲଟା ଘୂରେଇ ଦେଖିଲା, ନା, ତାଲା ଦିଆହୋଇନାହିଁ । କବାଟଟା ଧୀରେ ଖୋଲି ସାମ୍ନାରେ ଅଳିଆ ଗଦା ଆଡ଼େ କେଇ ମୁହୂର୍ତ୍ତ ଚାହିଁ ଠିଆହେଲା ଲିସା । ସେ ବିଶ୍ୱାସ କରି ପାରୁ ନଥିଲା । ତା' ସାମନାରେ ଉନ୍ମୁକ୍ତ ପଥ। ଇଚ୍ଛା କଲେ ସେ ଏଠାରୁ ବାହାରି ଚାଲିଯାଇ ପାରେ । ଆଉ ଦି'ପାଦ ଆଗେଇ ଗଲା । ଘର ବାହାରେ ଠିଆ ହୋଇ କାନଡେରି ଶୁଣିଲା, ରୋଷେଇ ଘରେ ଠନ୍ ଠନ୍ ଶବ୍ଦ । ହୁଏତ ମିସ୍ ରୀତା ରୋଷେଇ କାମରେ ଲାଗି ପଡ଼ିଲାଣି । ବାହାରେ ବଗିଚା ଭିତରେ ରାଘବନ କାଠ ଚିରୁଛି । ନା ନା, ଏଇତ ସୁବର୍ଣ୍ଣ ସୁଯୋଗ । ଏ ସୁଯୋଗ ହରେଇଲେ ଆଉ ମିଳିବ ନାହିଁ ।

ନିଶ୍ୱାସ ବନ୍ଦ କରି କମ୍ପିତ ପାଦରେ ଶିଡ଼ିର ପାହାଚ ଗୋଟିକ ପରେ ଗୋଟିଏ ଅତିକ୍ରମ କରିବାକୁ ଲାଗିଲା ଲିସା ।

ଶିଡ଼ିର ଶେଷ ପାହାଚ ପରେ ଅନ୍ଧକାର ହଲଘରେ ପହଞ୍ଚି ମୁହୂର୍ତ୍ତେ ଠିଆ ହେଲା । କାନଡେରି ଚାହିଁଲା ଚାରିଆଡ଼େ । ହଲଘର ଶେଷରେ ସଦର ଦରଜା ।

ହଲଘରର ଖୋଲା ଝରକା ବାଟେ ବାହାରର ମୁକ୍ତ ଆକାଶ ଦେଖୁଥିଲା ଲିସା । ଆହୁରି ଦେଖୁଥିଲା ମିସ୍ ରୀତା ରୋଷେଇ ଘରେ କେଟ୍‌ଲୀରେ ଚା' ଭରି ଟ୍ରେ' ଉପରେ

ସଜାଇ ରଖୁଚି । ଦୁଧ, ଚିନି ଭରୁଚି ପାତ୍ରରେ ଆଉ ଟିକକ ପରେ ଟ୍ରେ'ଟି ଧରି ସେ ହୁଏତ ଆଗେଇ ଆସିବ । ତା'ପରେ ହୁଏତ ସୁବର୍ଣ୍ଣ ସୁଯୋଗଟି ନଷ୍ଟ ହୋଇଯିବ । କିନ୍ତୁ ହଲ ଘରେ କେଉଁଠି ଟଙ୍କା ଥିବା କଥା ରୀତା କହିଥିଲା । ନାଁ ! ହଁ ସାମ୍ନାରେ ଏଇ ଥାକ ଉପରେ କେଉଁଠି ଥିବ ହୁଏତ । ଲିସା ଆଗେଇ ଗଲା । ସତକୁ ସତ ଥାକ ଉପରେ ଗୋଟାଏ ଖୋଲା ପାତ୍ରରେ ଗୋଟିଏ ମଇଳା ଦଶଟଙ୍କାର ନୋଟ୍ । ନୋଟ୍‌ଟା ଶକ୍ତ ହାତରେ ଉଠାଇ ନେଲା ଲିସା । ଆଗେଇଗଲା ଦରଜା ପାଖକୁ । ପୁରୁଣା ଭାରି ଦରଜାଟା ଖୋଲିବା ମାତ୍ରକେ କିପରି ଗୋଟାଏ ବିକଟ ଶବ୍ଦ କରି ଉଠିଲା । ସେ ପୁଣି ପ୍ରକୃତିସ୍ଥ ହୋଇ ଯେତେବେଳେ ଦରଜା ବାହାରକୁ ବାହରିଗଲା, ଦେଖିଲା ମିସ୍ ରୀତା ହାତରେ ଟ୍ରେଟା ଧରି ସ୍ତବ୍ଧ ହୋଇ ତାରି ଆଡ଼କୁ ଚାହିଁ ରହିଛି । ଚାରି ଚକ୍ଷୁର ମିଳନ ହେଲା । ଲିସା ଅନୁଭବ କଲା ଯେପରି ମିସ୍ ରୀତା ଆଖିରେ ଭରି ରହିଛି ଅଶ୍ରୁ ।

ଦୁହେଁ ଦୁହିଁଙ୍କ ଆଡ଼େ ଚାହିଁ ରହିଲେ ଅନେକ ବେଳଯାଏ । ଯେପରି ସହାନୁଭୂତିରେ ଗୋଟାଏ ବିଚିତ୍ର ସେତୁବନ୍ଧ ଗଢ଼ି ଉଠିଛି । ଦୁଇଜଣଙ୍କ ଭିତରେ ।

ନା, ଆଉ ସମୟ ନଷ୍ଟ କରିବା ଉଚିତ ନୁହେଁ । ଲିସା ବୁଝି ପାରିଥିଲା ମିସ୍ ରୀତା ତାକୁ ଇଙ୍ଗିତରେ ଏଠାରୁ ଚାଲିଯିବା ପାଇଁ କହି ଆସିଚି ଏବଂ ଚାଲିଯିବାର ସମସ୍ତ ପଥ ସୁଗମ କରିଦେଇଛି । ଏଠାରୁ ବଡ଼ ରାସ୍ତାରେ ପହଞ୍ଚିବା ପାଇଁ ଅନେକ ବାଟ ପାଦରେ ଚାଲି ଯିବାକୁ ହେବ ସେ କଥା ମଧ୍ୟ ରୀତା କହି ରଖିଛି । ତେଣୁ ଆଉ ଡେରି କରିବା ଉଚିତ ନୁହେଁ ।

ଲିସା ଆଗେଇ ଗଲା । ହଲ୍ ଘର ପାଖ ହୋଇ ସେ ବଗିଚା ଭିତରେ ମାଦ ଦେଲା । କିଛି ପଥ ଅତିକ୍ରମ କରି ଗଲେ ସେ ବାହାରକୁ ବାହାରି ଯାଇ ପାରିବା ବଗିଚ । ଶେଷରେ ଗୋଟାଏ କାଠ କବାଟ । ସେଇ କବାଟ ଠେଲି ସେ ଯେତେବେଳେ ମୁକ୍ତି ପଥରେ ପାଦ ପକାଇବ, ଦେଖିଲା ତା'ପଥ ରୋଧ କରି ଠିଆ ହୋଇଛି ରାଘବନ ।

: ଘରକୁ ଫେରିଯାଅ । ରାଘବନର କର୍କଶ କଣ୍ଠସ୍ୱର ଶୁଣିଲା ଲିସା ।

: ନା, ମୁଁ ଆଉ ଫେରିଯିବା ପାଇଁ ଆସିନାହିଁ । ମୋତେ ତୁମେ ଅଟକାଇ ରଖି ପାରିବ ନାହିଁ । ହିଂସ୍ର ସ୍ୱରରେ ଲିସା ଉତ୍ତର ଦେଲା ।

: ତୁ ଯିବୁନି ? ନିଶ୍ଚୟ ତୋତେ ଫେରି ଯିବାକୁ ହେବ । ମୁଁ ଭଲରେ କହୁଛି ଫେରିଯା ତୋ ଘରକୁ । ନ ହେଲେ ମୁଁ ବାଧ୍ୟ ହୋଇ ହାତ ଲଗେଇବି ।

: ଖବରଦାର । ଆଉ ଆଗାଅନି କହୁଛି । ମୋ ଦେହରେ ହାତ ଦେଇଛତ...

କିନ୍ତୁ ସେତେବେଳେ ରାଘବନ ଆସି ଲିସାର ବାହୁକୁ ଜାବୁଡ଼ି ଧରି ସାରିଥିଲା । କିନ୍ତୁ ଲିସା ଆଉ ସମୟ ନଷ୍ଟ ନ କରି ରାଘବନ ଗାଲରେ ଏପରି ଏକ ଘୁଷି ବସେଇ ଦେଇଥିଲା ଯେଉଁଥିପାଇଁ ଆଦୌ ପ୍ରସ୍ତୁତ ନଥିଲା ରାଘବନ । ସେ ମୁହୂର୍ତ୍ତକ ପାଇଁ ସ୍ତବ୍ଧ ହୋଇ ଯାଇଥିଲା । ସେଇ ସୁଯୋଗରେ ଲିସା ବିଧା ଚାପୁଡ଼ାରେ ଛାଇ ଦେଇ ଯାଇଥିଲା ରାଘବନକୁ । କିନ୍ତୁ ରାଘବନ ସେଥିରେ ଦବିବାର ପାତ୍ର ନୁହେଁ । ସେ ଏପରି ଏକ ଆଘାତ ହାଣିଲା ଲିସା ବେକ ଷଣ୍ଢା ଉପରେ ଯେଉଁ ଆଘାତର ଧକ୍କା ସହି ନପାରି ଲିସା ଲୋଟି ପଡ଼ିଲା ତଳେ । ସେହି ସୁଯୋଗରେ ରାଘବନ ଲିସାର ହାତ ଦୁଇଟାକୁ ଧରି ଟାଣି ଟାଣି ନେଉଥିଲା ବଗିଚା ଭିତରକୁ ।

କିନ୍ତୁ ଏ କ'ଣ ? ରାଘବନ ଦେଖିଲା ଗୋଟାଏ ଦୋ'ନଳିଆ ବନ୍ଧୁକ ଧରି ତା'ର ପଥରୋଧ କରି ଠିଆହୋଇଛି ମିସ୍ ରୀତା ।

: ତାକୁ ଛାଡ଼ିଦିଅ କହୁଛି । ଦୃଢ଼ ସ୍ୱରରେ ମିସ୍‌ରୀତା କହିଲା ।

: ତୁ କ'ଣ ପାଗଳ ହୋଇଗଲୁ ରୀତା । ମୁଁ କହୁଛି ତୁ ଏଠୁ ଚାଲିଯା । ଗର୍ଜନ କରି ଉଠିଲା ରାଘବନ ।

ସହସା ରାଘବନ ହାତରୁ ହାତ ଛଡ଼େଇ ନେଇ ଘୁଞ୍ଚିଯାଇ ଖଣ୍ଡେ ଦୂରେ ଠିଆହେଲା ଲିସା । ନାକରୁ ତା'ର ଖରଶ୍ୱାସ ଛୁଟୁଥିଲା ।

: ମୋତେ ତୁମେ ଗୁଳି ଚଳେଇବାକୁ ବାଧ କରନାହିଁ ରାଘବନ ଚାଚ୍ଚା, ରାଘବନ ଛାତିରେ ବନ୍ଧୁକଟା ଠିକେଇ ଧରି ରୀତା କହୁଥିଲା । ତାକୁ ଆମକୁ ଛାଡ଼ିଦେବାକୁହିଁ ହେବ । ଆମେ ତାକୁ ଏଠାରେ ଅଟକାଇ ରଖିବାର କୌଣସି ଅଧିକାର ନାହିଁ ଆମର ।

ରାଘବନ ରୀତାକୁ ଅଶ୍ରାବ୍ୟ ଭାଷାରେ ଗାଳିମନ୍ଦ ଦେବାକୁ ଲାଗିଲା । କିନ୍ତୁ ଲିସା ଧୀରେ ଧୀରେ ଖସି ପଳାଇ ଯାଉଥିବା ପଥ ଆଡ଼େ ଚାହିଁ ସେ ତା'ର ପଥରୋଧ କରିବା ପାଇଁ କୌଣସି ଆଗ୍ରହ ପ୍ରକାଶ କରୁ ନଥିଲା ।

: ତୁ ଏଇ ମୁହୂର୍ତ୍ତରେ କ'ଣ କଲୁ ଜାଣୁତ ? ବୁଢ଼ୀ କାଳରେ ଢଙ୍ଗ ଦେଖାଉଚୁ । ତୋତେ ମୋର ବିଶ୍ୱାସ କରିବା ଉଚିତ ହୋଇନି ।

ଦରଜା ସାମନାରେ ଠିଆ ହୋଇ ରାଘବନ ହିଂସ୍ର ଆଖିରେ ଚାହିଁ ଥିଲା ଲିସା ଆଡ଼େ । ସେ ଅତି ଦ୍ରୁତ ପାଦରେ ଛୁଟି ଯାଉଥିଲା ଦୂରରୁ ଦୂରକୁ । ବର୍ତ୍ତମାନ ଆଉ ତା'ର ପଥରୋଧ କରିବା ପାଇଁ ଅନ୍ୟ କିଛି ବାଟନାହିଁ । କିନ୍ତୁ ସେ ଏଠାକାରର ଏଇ ଉଚ୍ଚ ଖାଲ ରାସ୍ତାରେ କିପରି ସ୍ୱଚ୍ଛନ୍ଦରେ ଛୁଟି ଯାଉଛି ? ତା'ଗତି ପଥକୁ ଚାହିଁ ଅବାକ୍ ବିସ୍ମୟରେ ଚାହିଁ ଠିଆ ହୋଇଥିଲା ରାଘବନ । ତା'ର ଆଉ କରିବାର କିଛି ଉପାୟ ନଥିଲା । ଲିସା ଦୃଷ୍ଟି ପଥରୁ ଅନ୍ତର ହେବା ପରେ ରାଘବନର ସେହି କ୍ରୁଦ୍ଧ ଚାହାଣି ପଡ଼ିଲା ମିସ୍ ରୀତା ଉପରେ । ରୀତା କିନ୍ତୁ ସେହିପରି ବନ୍ଧୁକଟା ଉଞ୍ଚେଇ ଠିଆ ହୋଇଥିଲା ରାଘବନ ଛାତିକୁ ଲକ୍ଷ୍ୟକରି ।

ଲିସା କିନ୍ତୁ ଛୁଟି ଚାଲିଥିଲା । ଅଣନିଶ୍ୱାସୀ ହୋଇ ସେ ଧାଇଁଥିଲା ଆଗକୁ ଆଗକୁ । ପଛକୁ ଚାହିଁବାର ସତ୍‌ସାହସ ବି ତା'ର ନଥିଲା । କିନ୍ତୁ ଆଉ ସେ ପାରୁ ନଥିଲା ଯେମିତି । ବଡ଼ ରାସ୍ତା ଆଉ କେତେ ଦୂରରେ ? କେଉଁଠି ସେ ପାଇବ ବସ୍-ଟ୍ରକ୍‌ର ସନ୍ଧାନ ?

ବହୁତ ବେଳଯାଏ ମିସ୍ ରୀତାର ଦୋନଳିଆ ବନ୍ଧୁକଟା ଲକ୍ଷ୍ୟକରି ରହିଥିଲା ରାଘବନର ଛାତିକୁ । ଯେତେବେଳେ ରୀତା ବୁଝିଲା ଏହାପରେ ରାଘବନ ଆଉ ଲିସାର କିଛି କ୍ଷତି କରି ପାରିବ ନାହିଁ, ସେତେବେଳେ ସେ ବନ୍ଧୁକଟି ତଳକୁ ନୁଆଁଇ କହିଲା : ତମେ ଏଥର ଯାଇପାର ରାଘବନ ଚଚ୍ଚା ।

: ହଁ ମୋତେ ଏଥର ସବୁଦିନ ପାଇଁ ଏଠାରୁ ଚାଲିଯିବାକୁ ହେବ ।

: ସବୁଦିନ ପାଇଁ ଚାଲିଯିବାକୁ ହେବ ମାନେ ? ତମର ଘର ଦୁଆର ବିଷୟ ସମ୍ପତ୍ତି ଛାଡ଼ି କୁଆଡ଼େ ଚାଲିଯିବ ?

ତୁ ଆହୁରି ସେ କଥା କହୁଛୁ ମୋତେ । ଲାଜ ନାହିଁ ତୋ ମୁହଁକୁ । ବୁଢ଼ୀ

 

ଖୋକଢ଼ୀ, ତୁ ନ ମରି ବଞ୍ଚିଥିଲୁ ମୋରି ସର୍ବନାଶ କରିବା ପାଇଁ ।

: ନା ରାଘବନ ଟାଙ୍କା, ତମେ ମୋ ଉପରେ ରାଗ ନାହିଁ । ଝିଅଟାର ଅପରାଧ କ'ଣ ! ତାକୁ ଅଟକେଇ ରଖିଥିଲେ ଆମର ପାପ ହୋଇ ଥାଆନ୍ତା । ବିଚାରୀ ହତଭାଗିନୀ । ସେ ଯଦି ମୁକ୍ତ ଆକାଶ ତଳେ ପ୍ରଜାପତି ପରି ଉଡ଼ିବୁଲି ପାରିଲା, ଭଗବାନ ନିଶ୍ଚୟ ଆମର ମଙ୍ଗଳ କରିବେ ।

: ଆରେ ରଖ୍ ତୋ ଭଗବାନଙ୍କୁ ।

ଜଗୁ-ମଙ୍ଗୁ ଦି'ଟା ଫେରି ଆସି ଯେତେବେଳେ ଦେଖିବେ ଲିସା ନାହିଁ ସେମାନେ ଯେ ଦେହର ଛାଲ ଉତ୍ରେଇ ଦେବେ । ସେତେବେଳେ ତୋର କୋଉ ଭଗବାନ ଆସି ପିଠିରେ ପଡ଼ିବ?

ମିସ୍ ରୀତା ଆଉ କିଛି ଉତ୍ତର ଦେଲା ନାହିଁ । ସେ ଚାହିଁଥିଲା ଗୋଟିଏ ସୁନେଲି ପ୍ରଜାପତି ଆଡ଼େ । ପ୍ରଜାପତିଟି କିପରି ମନଖୁସିରେ ଫୁଲରୁ ଫୁଲକୁ ଉଡ଼ି ମଧୁ ସଂଗ୍ରହ କରୁଛି ।

ରାଘବନ କହିଲା : ମୁଁ ଯାଉଛି ଗାଡ଼ି ଆଣିବି । ତୁ ଯା' ଜିନିଷପତ୍ର ସଜଡ଼ା ସଜଡ଼ି କର। ସେମାନେ ଏଠାରେ ଯେକୌଣସି ମୁହୂର୍ତ୍ତରେ ଆସି ପହଞ୍ଚି ଯାଇ ପାରନ୍ତି ।

: ମୁଁ ଏଇଠି ରହିବି । ରୀତା ଆନମନା ହୋଇ କହିଲା । ଏ ଘରଛାଡ଼ି କୁଆଡ଼େ ଆଉ ମୁଁ ଯିବିନାହିଁ । ତମେ ଯଦି ସେମାନଙ୍କୁ ଡରୁଥାଅ, ଚାଲିଯାଇ ପାର ।

: ହଁ ମୋତେ ଚାଲିଯିବାକୁହିଁ ହେବ । ତୁ ମୋର ଏଠାରେ ରହିବାର ସମସ୍ତ ପଥ ବନ୍ଦ କରି ଦେଇଛୁ । ମୋତେ ଏଠାରୁ ଚାଲିଯିବାକୁ ହେବ, ହଁ ଚାଲିଯିବାକୁ ହେବ ।

ରୀତା କାନରେ ରାଘବନର ଶେଷକଥା କେଇପଦ ବାଜିଲା କି ନାହିଁ କେଜାଣି, ସେ କିନ୍ତୁ ସେଇ ପ୍ରଜାପତିଟିର ସ୍ୱଚ୍ଛନ୍ଦ ଗତି ବିଧି ଆଡ଼େ ଚାହିଁ ରହି ମନେ ମନେ ଉଲ୍ଲସିତ ହେଉଥିଲା । ବିଚାରୀ ଲିସା । ସେ ଯଦି ଏମାନଙ୍କ ଖାପଚରୁ ଖସି ଯାଇପାରେ, ତା'ହେଲେ ସେ ବି ଏଇ ସୁନେଲି ପ୍ରଜାପତିଟି ପରି ମୁକ୍ତ ଆକାଶ ତଳେ ମନ ଖୁସିରେ ଉଡ଼ି ବୁଲିବ। ଭଗବାନ ତା'ର ମଙ୍ଗଳ କରନ୍ତୁ ।

ମିସ୍ ରୀତା ଚାହିଁ ଦେଖିଲା ରାଘବନ କାନ୍ଧରେ ଦୁଇଟା ବ୍ୟାଗ ଝୁଲେଇ ଘରୁ ବାହାରି ଚାଲି ଯାଉଚି । ସେ ଚାଲି ଯାଉଚି ଏକମୁହାଁ ହୋଇ । ପଛକୁ ଚାହୁଁ ନାହିଁ । ରୀତା ତା' ପଛେ ପଛେ କିଛିବାଟ ଆଗେଇଗଲା । ମନ ହେଉଥିଲା ଗୋଡ଼ହାତ ଧରି ରାଘବନ ଟାଙ୍କାକୁ ଫେରେଇ ଆଣିବା କିନ୍ତୁ ନା, କାହାରି ସ୍ୱାଧୀନତାରେ ବାଧାଦେବା ଉଚିତ ନୁହେଁ ।

ରୀତାର ଆଖି ଆଗରୁ ରାଘବନ ଅଦୃଶ୍ୟ ହେବାଯାଏ ସେ ସେଇ ଆଡ଼େ ଚାହିଁ ଠିଆ ହୋଇଥିଲା ।

ଲିସା ଏକା ନିଶ୍ୱାସରେ ଛୁଟିଥିଲା । ସେ ବୁଝି ପାରୁ ନଥିଲା କୁଆଡ଼କୁ ଯାଉଛି ଏବଂ ରାସ୍ତାଟା ଏଠାରୁ କେତେ ଦୂରରେ ପଡ଼ିବ । ସେ ପଛକୁ ଚାହିଁବାକୁ ବି ସାହସ କରିପାରୁ ନଥିଲା । କାଳେ ଯଦି ରାଘବନ ତା' ପଛେ ପଛେ ଛୁଟୁଥାଏ ! ଅନେକ ସମୟ

ପରେ ସେ ଯେତେବେଳେ ବେଦମ୍ ହୋଇ ପଡ଼ିଲା, ଗୋଟିଏ ଛୋଟ ଝାମ୍ପୁରା ଗଛମୂଳରେ ବସି ପଡ଼ିଲା । ନାକରୁ ଉର୍ଦ୍ଧ୍ୱ ଶ୍ୱାସ ଛୁଟୁଥିଲା । ଗଛକୁ ଆଉଜି ସ୍ଥିର ହୋଇ ବସି ପଡ଼ିଲା କିଛି ସମୟ । ତା'ର ମନେ ପଡ଼ିଲା ଶଙ୍କର କଥା । ଶଙ୍କରକୁ ସେ ତୃତୀୟ ହାଇୱେ ଉପରେ ଗୋଟିଏ ଭଙ୍ଗା ଘର ଭିତରେ ଶୁଆଇ ଦେଇ ଆସିଥିଲା ଡାକ୍ତର ପାଖକୁ । ଧୀରେ ଧୀରେ ତା'ର ସବୁକଥା ମନେ ପଡ଼ିଲା । ଯା ଭିତରେ ହୁଏତ ତାଳ-ବେତାଳମାନେ ସେଠାରେ ଯାଇ ପହଞ୍ଚି ସାରିଥିବେ । ସେମାନେ ହୁଏତ ଶଙ୍କରକୁ...

ଲିସା ଆଉ ଚିନ୍ତା କରି ପାରିଲା ନାହିଁ । ତା' ଅଜାଣତରେ ସେ ଉଠି ଠିଆ ହୋଇ ପଡ଼ିଥିଲା । ସେ ବର୍ତ୍ତମାନ କେଉଁଠି ? ଏଠାରୁ ତୃତୀୟ ହାଇୱେ କେତେଦୂର ?

ଲିସାର ହଠାତ୍ ଆଖିରେ ପଡ଼ିଲା, ଖଣ୍ଡେ ଦୂରରେ ଯେପରି ଗୋଟାଏ ଟ୍ରକ୍ ଧୂଳି ଉଡ଼େଇ ଛୁଟି ଯାଉଚି । ଛାପି ଛାପିକିଆ ଜଙ୍ଗଲ ସେପାଖରେ ବୋଧହୁଏ ବଡ଼ ରାସ୍ତାଟା । ଲିସା ଚଞ୍ଚଳ ହୋଇ ଉଠିଲା । ତା' ଗୋଡ଼ ଦୁଇଟା ଛୁଟି ଚାଲିଲା ସେଇ ଆଡ଼େ । କଣ୍ଟା ଝଟା ଆଡ଼େଇ, ମଡ଼ା ଅମଡ଼ା ବାଟ ଦେଇ ଲିସା ଏକ ସମୟରେ ଯାଇ ପହଞ୍ଚିଲା ବଡ଼ ରାସ୍ତା ଉପରେ। ହଁ, ଏଇଠୁ ସେ ଯାହାହେଉ ଗୋଟାଏ କିଛି ଯାନ ପାଇବ ।

କିନ୍ତୁ ତା' ଗନ୍ତବ୍ୟ ପଥ କେଉଁଆଡ଼େ ?

ପୂର୍ବକୁ ନା ପଶ୍ଚିମକୁ ?

ସେ ରାସ୍ତା ମଝିରେ ଠିଆ ହୋଇ ଅପେକ୍ଷା କରିଥିଲା ।

ଗୋଟାଏ ବୋଝେଇ ଟ୍ରକ୍ ପୂର୍ବଆଡୁ ଆସୁଥିଲା । ଲିସାର ସମଗ୍ର ଶରୀର କିପରି ରୋମାଞ୍ଚିତ ହୋଇ ଉଠିଲା । ସେ ଯେପରି ହେଉ ଏଇ ଟ୍ରକ୍କୁ ଅଟକାଇ ଏଇଥିରେ ବସି ଲକ୍ଷ୍ୟସ୍ଥଳକୁ ଯିବ । ଲିସା ରାସ୍ତା ମଝିରେ ଠିଆ ହୋଇ ଟ୍ରକ୍କୁ ଅଟକାଇବା ପାଇଁ ହାତ ଦେଖାଇଲା ।

ଟ୍ରକ୍ ଆସି ଲିସା ପାଖରେ ଠିଆହେଲା । ଡ୍ରାଇଭର ଜଣେ ବୟସ୍କ ଲୋକ । ଲିସା ତା' ପାଖକୁ ଛୁଟିଯାଇ ବିକଳ ହୋଇ କହିଲା, : ମଉସା ମୁଁ ବଡ଼ ବିପଦରେ ପଡ଼ିଛି, ମୋତେ ଟିକେ ତମ ଟ୍ରକ୍‌ରେ ନେଇ ତିନିନମ୍ବର ହାଇୱେ ପାଖରେ ଛାଡ଼ିଦେଇ ଯିବାକୁ ହେବ ।

ଲିସାର କରୁଣ କଣ୍ଠସ୍ୱର ବୋଧହୁଏ ଡ୍ରାଇଭର ମନରେ କରୁଣା ସଞ୍ଚାର କରିଥିଲା, ସେ କହିଲା : ମୁଁ କିନ୍ତୁ ତିନି ନମ୍ବର ହାଇୱେ ଆଡ଼େ ଯାଉନାହିଁ । ମୁଁ ସିଧା ପଶ୍ଚିମକୁ ଯିବି । ଏ ରାସ୍ତା ତିନିନମ୍ବର ହାଇୱେକୁ ସଂଯୋଗ କରୁଥିବା ରାସ୍ତାମୁଣ୍ଡରେ ଛାଡ଼ିଦେଇ ଯାଇପାରେ, ତୁ ସେଉଠୁ ଅନ୍ୟ କେଉଁଥିରେ...

ଲିସାର ଆଉ ଅପେକ୍ଷା କରିବାକୁ ଧୈର୍ଯ୍ୟ ନଥିଲା । ସେ ଟ୍ରକ୍‌ର ଫୁଟ୍‌ବୋର୍ଡ଼ ଉପରକୁ ଉଠିଯାଇ କହିଲା : ଠିକ୍ ଅଛି ମଉସା, ମୋତେ ସେଇଠି ଛାଡ଼ିଦେଲେ ମୁଁ ଅନ୍ୟ ଗାଡ଼ିରେ ଚାଲିଯିବି ।

ଟ୍ରକ୍ ଡ୍ରାଇଭର କିପରି ଦ୍ୱିଧାଜଡ଼ିତ ହାତରେ ଦରଜା ଖୋଲିଲା । ଲିସା ଆସି ବସିଲା ଡ୍ରାଇଭର କେବିନରେ । ପଚାରିଲା ତିନିନମ୍ବର ହାଇୱେ ଏଠୁ କେତେବାଟ ହେବ ?

: ଚାଳିଶ ପଇଁଚାଳିଶ ମାଇଲ ହେବ ।

: ମୋତେ ଯେଉଁଠୁ ତମେ ଛାଡ଼ିଦେଇ ଯିବ, ସେଠୁ ?

: ତିରିଶ୍ ପଇଁତ୍ରିଶ୍ ମାଇଲ ହେବ ।

: ସେ ରାସ୍ତାରେ ଗାଡ଼ିଘୋଡ଼ା ମିଳିବ ତ ? ଲିସାର ସ୍ୱରରେ ଚଞ୍ଚଳତା ଫୁଟି ଉଠୁଥିଲା । ଡ୍ରାଇଭର କିନ୍ତୁ ଆଉଥରେ ଲିସା ଆଡ଼େ ଚାହିଁ ନୀରବ ହୋଇ ଯାଇଥିଲା । ସେ ରାସ୍ତାକୁ ଚାହିଁ ଏକଧ୍ୟାନରେ ଗାଡ଼ି ଚଳାଉଥିଲା ।

ଲିସା ଡ୍ରାଇଭରଠାରୁ ତା'ପ୍ରଶ୍ନର କୌଣସି ଉତ୍ତର ନପାଇ ଧୀରେ ଧୀରେ ଚୁପ୍ ହୋଇଗଲା । ସାରାଦିନର କ୍ଳାନ୍ତି କ୍ରମଶଃ ତାକୁ ଆଚ୍ଛନ୍ନ କରି ପକାଉଥିଲା । ସୁଲୁସୁଲିଆ ପବନ ବାଜି ତା' ଆଖିକୁ ନିଦ ଘୋଟି ଆସିଲା । ସେ ଶୋଇପଡ଼ିଲା ।

କେତେବେଳଯାଏ ଟ୍ରକ୍‌ରେ ଶୋଇଥିଲା ତା'ର ମନେନାହିଁ, କିନ୍ତୁ ଡ୍ରାଇଭର ଡାକରେ ତା' ନିଦ ହଠାତ୍ ଭାଙ୍ଗିଗଲା । ସେ ଦେଖିଲା ଗୋଟାଏ ଦୋଛକି ରାସ୍ତାରେ ଗାଡ଼ି ଠିଆ ହୋଇଛି ।

: ଏଇଠି ଓହ୍ଲେଇ ଯାଅ । ବାଁ ଆଡ଼କୁ ଯେଉଁ ରାସ୍ତାଟା ଯାଇଚି, ସେଇ ରାସ୍ତା ଧରି ଗଲେ, ତିନି ନମ୍ବର ହାଇୱେରେ ଯାଇ ପହଞ୍ଚିବୁ ।

ଲିସା କୃତଜ୍ଞ ଦୃଷ୍ଟିରେ ଡ୍ରାଇଭର ମୁହଁକୁ ଚାହିଁ ଧୀରେ ଧୀରେ ରାସ୍ତା ଉପରକୁ ଓହ୍ଲେଇ ଗଲା । ସେତେବେଳେ ତା' ପେଟରେ ନିଆଁ ଲାଗି ଯାଇଥିଲା । ସେ ଚାରିଆଡ଼କୁ ଚାହିଁ ଦେଖୁଥିଲା, କେଉଁଠି ଖାଇବା ପାଇଁ କିଛି ଜିନିଷ ମିଳୁଛି କି ନାହିଁ ।

କିଛି ବାଟ ଆଗେଇ ଯିବା ପରେ ଗୋଟିଏ ଗଛ ମୂଳରେ ଦେଖିଲା ଗୋଟିଏ ଦୋକାନ ଅଛି । ଶସ୍ତା ଖାଇବା ଜିନିଷ ଲୋକଟା ବିକ୍ରି କରୁଚି । ଲିସା ସେଇଠି ଯାଇ ଗୋଟିଏ ନଡ଼ବଡ଼ିଆ ବେଞ୍ଚ ଉପରେ ବସି ପଡ଼ିଲା । ବରା ଗୁଲ୍‌ଗୁଲା ସାମ୍‌ନାରେ ଦେଖି ତା'ପେଟରେ ଭୋକ ଯେପରି ଦି'ଗୁଣ ବଢ଼ି ଉଠିଲା ।

ଦୋକାନୀଠାରୁ ଖାଦ୍ୟପଦାର୍ଥ ମାଗି ଲିସା ଖାଇ ବସିଲା । ରାସ୍ତା ଉପରକୁ ଚାହିଁଥିଲା ଗାଡ଼ିର ପ୍ରତୀକ୍ଷାରେ । ପ୍ରାୟ ଦଶ ମିନିଟ୍ ଅତିବାହିତ ହୋଇ ଯାଇଥିଲେ ମଧ୍ୟ ସେ ରାସ୍ତା ଦେଇ ଗୋଟିଏ ହେଲେ ଗାଡ଼ି ଯାଇନଥିଲା ।

ଲିସା ଦୋକାନୀକୁ ପଚାରିଲା : ମୁଁ ତିନିନମ୍ବର ହାଇୱେକୁ ଯିବି, ଏଠାରୁ ଯିବାର ସୁବିଧା କ'ଣ ଅଛି ?

ଦୋକାନୀଟି ଏତେବେଳଯାଏ ତା' କାମରେ ବ୍ୟସ୍ତ ଥିଲା । ଏଥର ସେ ଲିସା କଥା ଶୁଣି ତା' ଆଡ଼େ ଚାହିଁଲା । ମୁହୂର୍ତ୍ତେ ନୀରବରେ ଅନାଇ ରହିଲ । ଲିସା ଆଡ଼ୋ ତା'ପରେ କହିଲା: ଏଠୁ ତିନିନମ୍ବର ଆଡ଼େ ଯିବାକୁ ସେମିତି କିଛି ତ ବ୍ୟବସ୍ଥା ନାହିଁ । ତେବେ ଲୁହାପଥର ନେଇ ଟ୍ରକ ବେଳେ ବେଳେ ଯାଏ ।

ଲିସା ଦେଖିଲା ଗୋଟାଏ ବନ୍ଦ ମାଟାଡୋର ଗାଡ଼ି ଆସି ସେଇଠି ଠିଆହେଲା ଏବଂ ଗାଡ଼ିରୁ ଡ୍ରାଇଭର ଓହ୍ଲେଇ ଆସିଲା ବୋଧହୁଏ ତା' ଖାଇବା ପାଇଁ ।

ଦୋକାନୀ ବୋଧହୁଏ ଲୋକଟିକୁ ଚିହ୍ନିଥିଲା । ସଙ୍ଗେ ସଙ୍ଗେ କହିଲା : ଆପଣ ତ ତିନିନମ୍ବର ରାସ୍ତାଆଡ଼େ ଯିବେ, ଏ ବିଚାରୀ ବିପଦରେ ପଡ଼ିଚି, ଟିକିଏ ନେଇ ଯାଆନ୍ତୁନା !

ଲୋକଟି ଲିସା ଆଡ଼େ ଚାହିଁଲା । ହଠାତ୍ ଲୋକଟିର ଚାହାଣି ଲିସା ଉପରେ

ଗଭୀର ହୋଇଗଲା । ସେ ଚାହାଣି ଲିସାକୁ ଯଦିଓ ଭଲ ଲାଗୁ ନଥିଲା, ତଥାପି ବିପଦବେଳେ କାଳେ ଲୋକଟି ତାକୁ ସାହାଯ୍ୟ କରିବ, ସେଇଆ ଭାବି ସେ ସହିନେଲା ।

ଦୋକାନୀ ଲୋକଟି ହାତକୁ ଚା' ଗ୍ଲାସ ବଢ଼ାଇ ଦେଲା ।

ଲୋକଟି ଗ୍ଲାସ ହାତକୁ ନେଇ କହିଲା : ତମେ ଏ ଝିଅଟିକୁ ଚିହ୍ନିଚ ?

ନା, ତେବେ ଚିହ୍ନା ଅଚିହ୍ନାରେ କ'ଣ ଅଛି ? ଜଣକର ଉପକାର କରିବା ସେଥିପାଇଁ ଏତେ ପଚରା ଉଚରା କ'ଣ ?

: ହୁଁ, ଝିଅଟି ଆଡ଼େ ଚାହିଁ କହିଲା, ତମେ ତିନିନମ୍ବର ଯାଏ ଯିବ ?

: ହୁଁ, ଲିସାର ଆଖି ଆଶାର ଆଲୋକରେ ଉଜ୍ଜ୍ୱଳ ହୋଇ ଉଠିଥିଲା ।

: ମୁଁ ନେଇ ଯାଇପାରେ, କିନ୍ତୁ ଗୋଟାଏ ଅସୁବିଧା କ'ଣ ଜାଣ ? ମୋର ଏଇ ମାଲବାହୀ ଗାଡ଼ିଟାର ପଛରେ ବସିଯିବାକୁ ହେବ ।

ଲିସା କହିଲା : ମୋର ସେଥିରେ ଆପତ୍ତି ନାହିଁ । କିନ୍ତୁ ମୋତେ ଟିକିଏ ତିନିନମ୍ବର ହାଇୱେ ଉପରେ ପହଞ୍ଚାଇ ଦେଇ ପାରିଲେ ମୁଁ ଆପଣଙ୍କ ପାଖରେ କୃତଜ୍ଞ ରହିବି ।

: ନା ନା, କୃତଜ୍ଞତା ମୋର କିଛି ଦରକାର ନାହିଁ । ତେବେ ଆସ। ମୁଁ ଦରଜା ଖୋଲି ଦେଉଛି । ଭିତରେ ଯାଇ ବସ । ଲୋକଟି ଆଗେ ଆଗେ ଉଠିଗଲା, ତା' ପଛେ ପଛେ ଗଲା ଲିସା ।

ଚାବି ଲଗାଇ ଲୋକଟି ପଛପାଖ କବାଟ ଖୋଲିଲା । ଲିସା ଯେମିତି ସେ ଦରଜା ପାଖକୁ ଯାଇଚି ତାକୁ ଏକ ପ୍ରକାର ଜୋର୍ କରି ଭିତରକୁ ଉଠାଇ କଚାଡ଼ି ଦେଇ ଦରଜା ବନ୍ଦ କରିଦେଲା । ଘଟଣାଟା ମୁହୂର୍ତ୍ତକ୍ ମଧ୍ୟରେ ଏପରି କ୍ଷିପ୍ର ଗତିରେ ଘଟିଗଲା ଯେ, ଲିସା ସଂପୂର୍ଣ୍ଣଟା ଜାଣିବା ଆଗରୁ ସେ ଗାଡ଼ି ଭିତରେ ବନ୍ଦୀ ହୋଇ ସାରିଥିଲା ।

ଗାଡ଼ି ପରମୁହୂର୍ତ୍ତରେ ଚାଲିବାକୁ ଆରମ୍ଭ କରିଦେଲା । ଲିସା ଦେଖିଲା ଗାଡ଼ି ଭିତରେ ଆଉ ଗୋଟିଏ ଝିଅ ଗୋଟାଏ ମୋଟା ଷ୍ଟ୍ରେଚର ଉପରେ ଶୋଇଚି ଏବଂ ତା'ର ହାତ ଗୋଡ଼ ସବୁ ମୋଟା ଦଉଡ଼ିରେ ଭିଡ଼ା ହୋଇ ବନ୍ଧା ହୋଇଛି । ସେ ଟିକିଏ ହେଲେ ହଲଚଲ ହୋଇ ପାରୁନାହିଁ ।

ହଠାତ୍ ସେ ଲିସାକୁ ତା' ଭିତରେ ପ୍ରବେଶ କରିବାର ଦେଖି ହସି ଉଠି କହିଲା : ତମେ ପୁଣି କିଏ ଆସିଲ ?

: ମୁଁ, ମୋ ନା ଲିସା । କିନ୍ତୁ ତମେ କିଏ ଭଉଣୀ, ତମର ଏ ଅବସ୍ଥା କାହିଁକି ?

ଝିଅଟା ଆହୁରି ଜୋର୍‌ରେ ହୋ ହୋ ହୋଇ ହସି ଉଠି କହିଲା, : ତମେ ଲିସା ! ମୁଁ ହେଉଛି, ମୋନାଲିସା । ମୋତେ ଏମାନେ ଧରି ନେଉଛନ୍ତି ସିଂହାସନରେ ବସାଇବା ପାଇଁ ।

ଲିସା ଅନୁଭବ କଲା, ହଠାତ୍ ଗାଡ଼ିଟା ଅଟକି ଗଲା ଏବଂ ବାହାରୁ କାହାର ମୋଟା କଣ୍ଠର ସ୍ୱର ଶୁଣାଗଲା : ଖୁବ୍ ସାବଧାନ ଲିସା, ମୁଁ ତତେ ଚିହ୍ନି ପାରିଛି । ସେ ଯେଉଁ ଝିଅଟା ସେଠି ବନ୍ଧା ହୋଇଛି ତା' ସଙ୍ଗରେ ମୋଟେ ଲାଗିବୁ ନାହିଁ । ସେ ଗୋଟିଏ ବଦ୍ଧ ପାଗଳୀ । କଞ୍ଚା ଖାଇଯିବା ପାଗଳ ଗାରଦରୁ ଖସି ପଳାଇ ଯାଇଥିଲା, ମୁଁ ପୁଣି ତାକୁ ଧରି ନେଉଛି । ତୁ ବି ସେଇ ଏକ ପଥର ଯାତ୍ରୀ ତୋତେ ସମଗ୍ର ଦେଶର

ପୋଲିସ ବାହିନୀ ଖୋଜୁଛନ୍ତି । ମୁଁ ଯେ ଏତେ ସହଜରେ ବାଜିମାତ୍ କରି ପାରିବି, ଚିନ୍ତା କରି ପାରିନଥିଲି ।

କିଛି ସମୟର ନୀରବତା ପରେ ପୁଣି ଗାଡ଼ିଟା ଚାଲିବାକୁ ଲାଗିଲା । ଲିସା କିନ୍ତୁ ତା' ଦୁର୍ଭାଗ୍ୟକୁ ବିଶ୍ୱାସ କରି ପାରୁ ନଥିଲା । ଶେଷରେ ସେ ପାଗଳ ଗାରଦର ଗୋଟାଏ ଡ୍ରାଇଭର ହାତରେ ଧରା ପଡ଼ି ପୁଣି ପୂର୍ବସ୍ଥାନକୁ ଫେରି ଯାଉଛି, ଗୋଟାଏ ବନ୍ଧ ପାଗଳୀ ସହିତ ।

ଚାଳକ ରାମ ଅବତାର ମନ ଖୁସିରେ ଗାଡ଼ି ଚଳାଉ ଥିଲା । ଭାଗ୍ୟ ଲକ୍ଷ୍ମୀ ଯେ ତା'ପ୍ରତି ଏତେ ସୁ ପ୍ରସନ୍ନ ସେ ଆଦୌ ବୁଝି ପାରୁ ନଥିଲା । ଲିସାକୁ ଧରି ଦେବାପାଇଁ ଦଶ ହଜାର ଟଙ୍କା ପୁରସ୍କାର ଘୋଷଣା ହୋଇଛି । ସେଇ ଦଶ ହଜାର ଟଙ୍କା ଯେ ନିଶ୍ଚିତ ଭାବରେ ତା'ପାଇଁ ଥୁଆ ହୋଇଛି, ସେଇ ଆନନ୍ଦରେ ରାମ ଅବତାର ଗୀତ ଗାଇ ଗାଡ଼ି ଚଳାଉଥିଲା ।

ଲିସା କ୍ଳାନ୍ତ ହୋଇ ବସି ପଡ଼ିଥିଲା । ଏହା ପରର କାର୍ଯ୍ୟପନ୍ଥା ସେ ସ୍ଥିର କରି ପାରୁ ନଥିଲା ।

ଷ୍ଟ୍ରେଚରରେ ବନ୍ଧା ହୋଇ ଶୋଇଥିବା ପାଗଳୀଟି ଡ୍ରାଇଭରର ଗଳା ଶୁଣି ଚୁପ୍‌ହୋଇ ଯାଇଥିଲା । କିଛି ସମୟ ପରେ ଲିସାକୁ ତା'ପାଖରେ ବସିବାର ଦେଖି ଧୀରେ ଧୀରେ କହିଲା: ତମକୁ ତା'ହେଲେ ସେ ଧରି ପକାଇଲା ? ଲୋକଟା ଚାଲାକ ଅଛି । ତମକୁ ଦେଖି ସେ ଠିକ୍ ଚିହ୍ନି ପାରିଛି । ତମକୁ ଧରି କୋଉଠିକି ନେଇଯିବ ଜାଣ ? ପାଗଳ ଗାରଦକୁ । ପାଗଳ ଗାରଦଟା ଖୁବ୍ ଭଲ ଜାଗାରେ । ଦେଖିବାକୁ ବୁଲିବାକୁ ଖୁବ୍ ଭଲ । ତମେ କେବେ ଦେଖିଛ ପାଗଳ ଗାରଦ ? ମୋତେ ସେଠି ସବୁ ଭଲ ଲାଗେ ଯେ କିନ୍ତୁ ଗୋଟାଏ ଘରେ ବନ୍ଦୀ ହୋଇ ରହିବାକୁ ମୁଁ ମୋଟେ ସହି ପାରେନାହିଁ ।

ଲିସା ସେଇ ପାଗଳୀଟା କଥା ଶୁଣୁଥିଲା । ତା' ଆଖି ଆଗରେ ଭାସି ଉଠୁଥିଲା ପାଗଳ ଗାରଦର ସେଇ ନିର୍ଜନ କୋଠରି । ନର୍ସଙ୍କ ଯିବା ଆସିବା । ଡାକ୍ତରର ଇଞ୍ଜେକ୍‌ସନ୍, ଇଲେକ୍‌ଟ୍ରିକ୍ ସକ୍ । ନା ନା....ଲିସାର ସାରା ଦେହ ଥରି ଉଠିଲା : ନା ନା, ମୁଁ ସେଠାକୁ ଯିବି ନାହିଁ । ମୋତେ ପଳାଇବାକୁ ହେବ । ଲିସା କିପରି ତା' ଅଜାଣତରେ ଚିତ୍କାର କରି ଉଠିଲା ।

ପାଗଳୀଟା ହସିଲା ।

ଆଖିଠାରି ତାକୁ ପାଖକୁ ଡାକିଲା ।

ଲିସା କେତୋଟି ମୁହୂର୍ତ୍ତ ଚାହିଁଲା ତା' ଆଡ଼େ । ତା'ପରେ ଧୀରେ ଧୀରେ ତା'ପାଖକୁ ଆଗେଇ ଯାଇ କହିଲା, କ'ଣ ?

: ଆଉ ତୁମର ପଳାଇ ଯିବାର ଉପାୟ ନାହିଁ । ପାଗଳୀଟି କହିଲା ।

ଲିସା ଉଠିଯାଇ ଦରଜାରେ ହାତ ବୁଲେଇଲା । ଖୋଲିବାକୁ ଚେଷ୍ଟା କଲା । କିନ୍ତୁ ଚାରିଆଡ଼ ଏତେ ମସୃଣ ଯେ କେଉଁଠି ହେଲେ ହାତ ଅଟକିଲା ନାହିଁ । ସେ ପୁଣି ନିରାଶ ହୋଇ ଫେରି ଆସିଲା ସେଇ ପାଗଳୀ ପାଖକୁ ।

ସେ ଏଥର ପୁଣି ହସିଲା, କହିଲା : ଏଠାରୁ ଖସି ପଳାଇବାକୁ ହେଲେ ମୋର ସାହାଯ୍ୟ ନେବାକୁ ହେବ ।

: ମାନେ ? ଲିସା କଣ୍ଠରେ ବିସ୍ମୟ ଫୁଟି ଉଠିଲା ।

ମାନେ ଆଉ କ'ଣ, ମୋତେ ବନ୍ଧନ ମୁକ୍ତ କରିବାକୁ ହେବ । ପାଗଳୀଟି ନିର୍ବିକାର ସ୍ୱରରେ କହିଲା ।

ଲିସା ହସି ଉଠିଲା । କହିଲା : ତୋର ବନ୍ଧନ ମୁକ୍ତ କରି ମୋର ବିପଦ ଡାକିଆଣେ ଆଉ କ'ଣ ।

: ବିପଦତ ଦୁହିଁଙ୍କର ସମାନ । ମୋତେ ଯେପରି ସେମାନେ ଧରି ଆଣିଛନ୍ତି, ତୁମେ ବି ସେମିତି ଧରା ପଡ଼ିଛ, ଆମ ଦୁଇଜଣଙ୍କୁ ନେଇ ପୁଣି ପାଗଳ ଗାରଦରେ ଭରିଦେବେ । ସେ ଏକ ବିଚିତ୍ର ଆନନ୍ଦରେ ହସି ଉଠି କହିଲା, ତୁମେ ତ ମୋରି ପରି ପାଗଳ । ତୁମର ଆଉ ଖସି ଯିବାର ଉପାୟ ନାହିଁ ।

: ନା ନା, ମୁଁ ପାଗଳ ନୁହେଁ । ମୁଁ କାହିଁକି ପାଗଳ ହେବି ? ଲିସା ମୁହଁ ବୁଲେଇ ଦରଜା ଉପରେ ଦେହଭାର ରଖି ବଙ୍କେଇ ଠିଆ ହେଲା ।

: ପାଗଳ ନୁହଁ ଆଉ କ'ଣ ? ମୁଁ ଜାଣେ ଗୋ ଜାଣେ । ମୋତେ ତୁମେ ଫାଙ୍କି ଦେଇ ପାରିବ ନାହିଁ ।

: ନା ନା, ମୁଁ ପାଗଳ ନୁହେଁ । ଦୁଇ ହାତରେ ମୁହଁ ଘୋଡ଼େଇ ପାଟିକରି ଉଠିଲା ଲିସା ।

: ହଁ ତୁମେ ପାଗଳ, ଝିଅଟା ଦୃଢ଼ ସ୍ୱରରେ କହିଲା । ଆଉ ଯିଏ ଯାହା କହୁ ପଛକେ ମୁଁ କହିବି ତୁମେ ମୋରି ପରି ପାଗଳ ପାଗଳ !! ପାଗଳ !!!

: ନା ମୁଁ ପାଗଳ ନୁହେଁ, ମୁଁ ପାଗଳ ନୁହେଁ । କଣ୍ଠଫଟା ଚିତ୍କାର କରି ଲିସା ଶାନ୍ତ ହୋଇଗଲା । ତା'ପରେ ସ୍ତବ୍ଧ ନିର୍ବାକ । ସାରା ଦେହରେ ତା'ର କିପରି ଏକ ହିମଶୀତଳ ପ୍ରବାହ ଖେଳିଗଲା । ସତରେ କ'ଣ ସେ ପାଗଳ ? ନିଜକୁ ନିଜେ ସେ ପ୍ରଶ୍ନକଲା । ସେଇଥିପାଇଁ କ'ଣ ତା' ଜୀବନରେ ଏପରି ସବୁ ଅଦ୍ଭୁତ ଘଟଣା ଘଟି ଚାଲିଛି ? ସବୁଗୁଡ଼ା କ'ଣ ତାର ଅସୁସ୍ଥ ମନର ଅଳିକ ଭ୍ରାନ୍ତି ? ସେଇଥିପାଇଁ କ'ଣ ତାଁ' ନିଜର ପରିଚୟ ଟିକକ ବି ତାର ମଡ଼େ ପଡ଼େ ନାହିଁ ? ସେଇଥିପାଇଁ କ'ଣ ମଝି ମଝିରେ ତା' ମୁଣ୍ଡ ଭିତରେ ଗୋଟାଏ ଦୁଃସ୍ୱପ୍ନ ଖେଳିଯାଏ ।

: କ'ଣ ହେଲା ? ସବୁ ଆଶା ଭରସା ହରେଇଲା ନା କ'ଣ ? ଆର ଝିଅଟା ପଚାରିଲା ।

: ରହ ରହ, ଟିକିଏ ଚୁପ ରହ । ଲିସା ବଡ଼ ପାଟିରେ କହିଲା ଏବଂ ଉଠିପଡ଼ି ପୁଣି ଦରଜା ଖୋଲିବାକୁ ଚେଷ୍ଟା କଲା ।

: ଦୁର୍ ବୋକୀ । ସେମିତି କିଛି କରି ପାରିବନି । ତମେ ପାଗଳ ଗାରଦରେ ନ ପହଞ୍ଚିବା ଯାଏ ସେମାନେ ତମକୁ ଦରଜା ଖୋଲିବେନି । ଆଉ ସେଠି ଯାଇ ପହଞ୍ଚିଲେ କାମ ଶେଷ । ଆଚ୍ଛା କହିଲ, ତମେ କ'ଣ ସତରେ ପଳାଇବାକୁ ଚାହଁ ?

: ଯେମିତି ହେଉ ମୁଁ ପଳେଇବି । ଲିସା କହିଲା ।

: ପାରିବନି, ଝିଅଟି କହିଲା । କିନ୍ତୁ ସମ୍ଭବ ହୋଇ ପାରେ । ଡ୍ରାଇଭରଟା ଚାଲାଖ । ତା'ର ନିଜ ଉପରେ ଆସ୍ଥା ଖୁବ୍ ବେଶି । କିନ୍ତୁ ପଳେଇବାକୁ ହେଲେ ମୋତେ ବନ୍ଧନମୁକ୍ତ କରିବାକୁ ହେବ ।

: ନା...ନା, ଚମକି ଉଠିଲା ଲିସା ।

: ମତେ ତମେ ଭୟ କରୁଚ ? ଝିଅଟି ହସିଲା । ଆମେ ଦି'ଜଣ ତ ଗୋଟିଏ ଦଳର, ଜଣେ ଅନ୍ୟ ଜଣର ଅନିଷ୍ଟ କରିବ କାହିଁକି ?

: ଦୟାକରି ସେମିତି କଥା କୁହନି । ମୁଁ ପାଗଳୀ ନୁହେଁ । ଦୁଷ୍ଟ ଲୋକମାନେ ମୋତେ ପାଗଳ କହୁଛନ୍ତି ।

: ଆରେ ରାଗନି ତମେ । ତେବେ ଏଠୁ ପଳେଇବାକୁ ହେଲେ ମୋତେ ବନ୍ଧନମୁକ୍ତ କରିବାକୁ ହେବ ଏବଂ ଶୀଘ୍ର କରିବାକୁ ହେବ । କାରଣ ପାଗଳ ଗାର୍‌ଦ ପାଖେଇ ଆସିଲାଣି । ସେମାନେ ତମକୁ ଭିତରେ ଭରିଦେଇ ପାରିଲେ ଆଉ ତମେ ସେଠୁ ବାହାରି ଆସି ପାରିବ ନାହିଁ ।

ଲିସା ମୁହୂର୍ତ୍ତେ ଚିନ୍ତା କଲା । ତା'ପରେ ଧୀରେ ଧୀରେ ଆଗେଇ ଗଲା ତା'ପାଖକୁ । ଚାହିଁଲା ତା'ଆଡ଼େ । କହିଲା : ତମକୁ ବନ୍ଧନ ମୁକ୍ତ କରିଦେଲେ ମୁଁ ବା ପଳାଇବି କିପରି ?

: ପାରିବ, ପାରିବ । ମୋ ପାଖରେ ବସ, ମୁଁ କହୁଛି । ସେ ମୁହୂର୍ତ୍ତେ ନୀରବ ରହି ଚୁପି ଚୁପି କହିଲା, ମୋତେ ଖୋଲିଦେଇ, ତମେ ଦରଜାରେ ଧକ୍‌କା ମାରି ଚିତ୍କାର କରିବ । କାରଣ ଭିତରେ କ'ଣ ହେଉଛି ସେ କିଛି ଜାଣି ପାରୁନାହିଁ । ଘଟଣାଟା କ'ଣ ଘଟୁଛି ସେ ଲୋକଟା ଗାଡ଼ି ବନ୍ଦ କରି ଦେଖିବାକୁ ଛୁଟି ଆସିବ । ସେ ଆସି ଦରଜା ଖୋଲି ଯେତେବେଳେ ତମ ସହିତ କଥାବାର୍ତ୍ତା କରିବ ମୁଁ ସେତେବେଳେ ତା' ପାଖକୁ ଆଗେଇଯିବି । ତା'ପରେ ଦି'ଜଣ ମିଳି ତାକୁ ଅତି ସହଜରେ କାବୁ କରି ପାରିବା ।

ଲିସା ମନକୁ ହୁଏତ କଥାଟି ପାଇଲା । ସେ ଧୀରେ ଧୀରେ ଝିଅଟିକୁ ବନ୍ଧନମୁକ୍ତ କଲା । ତା'ପରେ ଗାଡ଼ି ଭିତରେ ଠିଆହୋଇ ଦୁଇହାତରେ ଗାଡ଼ି ବାଡ଼େଇବା ସଙ୍ଗେ ସଙ୍ଗେ ଚିତ୍କାର ଆରମ୍ଭ କରିଦେଲା । ରାମ ଅବତାର କାନରେ ବାଜିଲା ସବୁ । ଟିକିଏ ଇତସ୍ତତଃ କରି ଗାଡ଼ି ଠିଆ କଲା ରାମ ଅବତାର । ଲିସା ଆହତ ହେଉ ମନ ପ୍ରାଣରେ ଚାହୁଁ ନଥିଲା ସୋ ତାକୁ ଅବିକୃତ ଅବସ୍ଥାରେ ପାଗଳ ଗାରଦରେ ପହଞ୍ଚାଇ ପାରିଲେ ସେ ଦଶହଜାର ଟଙ୍କା ପୁରସ୍କାର ପାଇବ, ସେଇଆ ଥିଲା ତା'ର ମୂଳ ଲକ୍ଷ୍ୟ ।

ରାମ ଅବତାର ଗାଡ଼ି ବନ୍ଦ କରି ବିଡ୍ ବିଡ୍ କରି କ'ଣ କହୁ କହୁ ତା' କେବିନ୍‌ରୁ ଓହ୍ଲାଇ ପଡ଼ିଲା । ପଛକୁ ଯାଇ ଝାପ୍‌ସା ଆଲୋକରେ ପଛ ଦରଜା ଖୋଲି ଭିତରକୁ ଚାହିଁଲା ।

ଦେଖିଲା ବିପରୀତ ଦିଗରେ ଲିସା ଗାଡ଼ିର ଲୁହାଚାଦରକୁ ଦୁଇ ହାତରେ ବାଡ଼େଇ ଚିତ୍କାର କରି ଚାଲିଛି । କମ୍ବଳ ତଳେ ପୂର୍ବପରି ଶୋଇଛି ଆର ପାଗଳୀଟା । ରାମ ଅବତାରକୁ ଦେଖି ସେଇ ଝିଅଟା ଖିଲ୍ ଖିଲ୍ ହୋଇ ହସି ଉଠିଲା । ତେଣୁ ଏ ଦିଗରୁ ରାମଅବତାର ନିଶ୍ଚିନ୍ତ । ସେ ଗାଡ଼ି ଉପରକୁ ଉଠି ଦରଜାଟା ଅଳ୍ପ ଟାଣିଦେଇ ଲିସାର ହାତଦୁଇଟା ପଛଆଡ଼କୁ ଭିଡ଼ିଆଣି ଜୋର୍‌ରେ ମୋଡ଼ି ଧରିଲା ।

: ଚୁପ୍‌ଚାପ୍ ରହି ପାରୁନ୍ ? ରାମ ଅବତାର ଶାସନଭଙ୍ଗୀରେ ଲିସାକୁ କହିଲା । ଏମିତି ରାଗୁଛୁ କାହିଁ ?

ଲିସା ରାମ ଅବତାର ଶକ୍ତି ପାଖରେ ହାର ମାନି ଯାଉଥିଲା । ସେ ତା'ର

କାଣ୍ଡକାରଖାନା ଦେଖି ଆତଙ୍କିତ ହୋଇ ପଡ଼ିଥିଲା । ସେ ପ୍ରାଣପଣେ ତା'ହାତରୁ ମୁକ୍ତି ପାଇବାକୁ ଚେଷ୍ଟା କରି ମଧ୍ୟ ପାରୁ ନଥିଲା, ବରଂ ରାମ ଅବତାର ତାକୁ ପାଖରେ ରଖାହୋଇଥିବା ଗୋଟାଏ ଷ୍ଟ୍ରେଚର ଆଡ଼କୁ ଟାଣିନେଇ ଯାଉଥିଲା ।

: ମୋତେ ଛାଡ଼ିଦିଅ, ଛାଡ଼ିଦିଅ କହୁଚି । ଲିସା ଚିତ୍କାର କରି ଉଠିଲା ।

: ଉଁ ହୁଁ, ଭୟର କାରଣ କିଛି ନାହିଁ । ଚୁପ୍‌ଚାପ୍ ଏଇଠି ଶୋଇ ଟିକିଏ ଆରାମ କର ତ ! ରାମଅବତାର ଶକ୍ତ ହାତରେ ଲିସାକୁ ଟାଣି ଷ୍ଟ୍ରେଚର ଉପରେ ଶୁଆଇ ଦେଇଥିଲା ।

ଠିକ୍ ସେଇ ମୁହୂର୍ତ୍ତରେ ଦେହରୁ କମ୍ବଳ କାଢ଼ିଦେଇ ଉଠି ବସିଲା ଆଉ ଝିଅଟା । ରାମ ଅବତାରର ତା'ଉପରେ ଆଖି ପଡ଼ିବାକ୍ଷଣି, ଲିସାକୁ ସେ ଦୁଇହାତରେ ସେହିପରି ଧରି କହିଲା: ତୁ ଷ୍ଟ୍ରେଚରରୁ ଓହ୍ଲାଅନି କହୁଛି । ସୁନା ଝିଅଟି ପରା ତୁ ଯେମିତି ଶୋଇଥିଲୁ, ସେମିତି ଶୋଇପଡ଼ ।

କିନ୍ତୁ ଝିଅଟି ତା' କଥା ଶୁଣିଲା ନାହିଁ ।

ରାମ ଅବତାର ଅନୁଭବ କଲା, ଦୁଇଜଣଙ୍କ ସହିତ ଏକା ହୁଏତ ସେ ପାରିବ ନାହିଁ । ଦ୍ରୁତ ଏଠାରୁ ବାହାରିଯିବା ବାଞ୍ଛନୀୟ ।

: ଯାଅ, ଷ୍ଟ୍ରେଚରରେ ଶୁଅ ଯା କହି ରାମ ଅବତାର ଲିସାକୁ ଛାଡ଼ିଦେଇ ଦରଜା ଆଡ଼କୁ ଆଗେଇଗଲା ।

କିନ୍ତୁ ଯାଇ ପାରିଲା କୋଉଠି । ଆଉ ଝିଅଟି ଷ୍ଟ୍ରେଚରରୁ ଉଠିପଡ଼ି ରାମ ଅବତାରର କାନ୍ଧ ଧରି ଓହଳି ପଡ଼ିଲା । ଖାଲି ସେତିକି ନୁହେଁ, ଏକ ବିକଟ ଆନନ୍ଦରେ ସେ ଝିଅଟି ହସି ଉଠି ରାମ ଅବତାର ଗଳା ଆଡ଼କୁ ହାତ ବଢ଼ାଇଲା । ଏଇ ସୁଯୋଗରେ ଲିସା ରାମଅବତାରକୁ ଠେଲି ଦେଇ ବାହାରି ଯିବାକୁ ଚେଷ୍ଟା କରୁଥିଲା । କିନ୍ତୁ ରାମ ଅବତାର ଆଉ ଝିଅଟାକୁ ଟାଣି ଫୋପାଡ଼ି ଦେଇ ଲିସା ହାତକୁ ଟାଣି ଧରିଲା । କିନ୍ତୁ ଆଉ ଝିଅଟି ପୁଣି କୁଦିପଡ଼ିଲା ରାମ ଅବତାର ଉପରକୁ । ଏଥର ସେ ତାଳ ସମ୍ଭାଳି ନପାରି କଚାଡ଼ି ହୋଇ ପଡ଼ିଲା ଷ୍ଟ୍ରେଚର ଉପରେ । ସଙ୍ଗେ ସଙ୍ଗେ ଝିଅଟି ଆଉଥରେ ତା'ଗଳା ଚିପି ଧରିଲା ।

ଏତେ ବିପଦରେ ପଡ଼ି ବି ବୁଦ୍ଧି ହରେଇ ନଥିଲା ରାମଅବତାର । ସେ ନିଜର ସମସ୍ତ ଶକ୍ତି ଠୁଳକରି ଗୋଡ଼ରେ ଠେଲି ଝିଅଟାକୁ ଫୋପାଡ଼ି ଦେଲା ଦରଜା ଆଡ଼କୁ । ଠିକ୍ ସେତିକିବେଳେ ଲିସା ଗାଡ଼ିରୁ ତଳକୁ ଡେଇଁପଡ଼ି ଦଉଡ଼ ଆରମ୍ଭ କରି ଦେଇଥିଲା । କିନ୍ତୁ ମାତ୍ର କେଇପାଦ ଆଗେଇ ଯାଇ ସେ ଅନୁଭବ କଲା ତା' ପଛଗୋଡ଼ଟା ଆଉ ଚଳୁନାହିଁ । କିଏ ଯେପରି ଭିଡ଼ି ଧରିଛି ।

ସେ ଛୁଟିଯାଇ ଲିସାର ଗୋଟାଏ ଗୋଡ଼ ଟାଣି ଧରିଥିଲା ସତ କିନ୍ତୁ ପରମୁହୂର୍ତ୍ତରେ ପୁଣି ଝିଅଟା ଛୁଟି ଆସିଲା ତା'ପାଖକୁ । ରାମ ଅବତାର ଏଥର ଝିଅଟାକୁ ଗୋଇଠା ମାରି ଦୂରକୁ ଫୋପାଡ଼ି ଦେଇ ଭାବିଲା ସେ ଯଦି ସେଇ ଝିଅଟା ଆଡ଼େ ଲକ୍ଷ୍ୟ ନରଖେ, ତେବେ ସେ ଏଠାରୁ ପଳାଇଯିବ । ସେ ଯିବ ଯାଉ କିନ୍ତୁ ଲିସାକୁ ସେ ଛାଡ଼ିବ ନାହିଁ । କାରଣ ଲିସାକୁ ଧରି ନେଇ ଯାଇ ପାରିଲେ ସେ ଦଶହଜାର ଟଙ୍କା ପୁରସ୍କାର ପାଇବ । ତେଣୁ ଲିସାକୁ ସେ ଟାଣିଓଟାରି ଜାବୁଡ଼ି ଧରିଲା । ଆଉ ଝିଅଟି କିନ୍ତୁ ଖସି ପଳାଇଲା ନାହିଁ । ସେ ରାସ୍ତାକଡ଼ରୁ କ'ଣ ଗୋଟାଏ ପଦାର୍ଥ ଖୋଜୁଥିଲା ।

ରାମ ଅବତାର ଲିସାକୁ ପରାସ୍ତ କରି ଦୁଇହାତରେ ଟାଣି ଘୋଷାଡ଼ି ଗାଡ଼ି ଆଡ଼କୁ ନେଇ ଯାଉଥିଲା । ଆଉ ଝିଅଟି କଥା ସେ ଏକପ୍ରକାର ଭୁଲି ଯାଇଥିଲା । ଲିସା କେବଳ କଣ୍ଠଫଟା ଚିତ୍କାର କରିବା ଛଡ଼ା ସେ ଆଉ ରାମଅବତାର ଖାପଚରୁ ମୁକୁଳି ଯିବାର କୌଣସି ବାଟ ଖୋଜି ପାଉ ନଥିଲା । ଶେଷରେ ଯେତେବେଳେ ରାମ ଅବତାର ଗାଡ଼ିର ଦରଜା ଖୋଲି ଲିସାର ପ୍ରତିରୋଧ ସତ୍ତ୍ୱେ ଦୁଇହାତରେ କୁଣ୍ଢେଇ ଧରି ସେ ଗାଡ଼ି ଭିତରେ ପୂରେଇବାକୁ ଚେଷ୍ଟା କରୁଥିଲା ଏବଂ ପ୍ରାୟ ସଫଳତାର ଚିହ୍ନ ତା'ଦେହ ମୁହଁରେ ଫୁଟି ଉଠୁଥିଲା, ଠିକ୍ ସେତିକିବେଳେ ଆଉ ଝିଅଟି ହାତରେ ଗୋଟିଏ ମସ୍ତବଡ଼ ପଥର ଉଠାଇ ଆଣି ରାମ ଅବତାର ମୁଣ୍ଡରେ କଚାଡ଼ି ଦେଲା ।

ହେଡ୍ ଜମାଦାର ସିଉନାରାୟଣ ମେନ୍‌ଗେଟ୍‌ରେ ବସି ପହରା ଦେଉଥିଲା । ବନ୍ଧୁକଟା ଚେଆର ଉପରେ ଡେରିଦେଇ ଚିନ୍ତା କରୁଥିଲା ଏଠାରେ ଡିଉଟିଟା ମନ୍ଦ ନୁହେଁ : ରଂଜିତା ପରି ସୁନ୍ଦରୀ ନାରୀ ପୁଣି ଅତିଥି ପରାୟଣା । ଖାଲି ବସି ଖାଅ ଆଉ ସୂର୍ଯ୍ୟସ୍ନାନ କର। କାମ ହେଉଚି ତାଳ-ବେତାଳ ! କଳ୍ପିତ ଗୋଟାଏ ନାଆଁ । ଯାହାର କିଛି ଅସ୍ତିତ୍ୱ ନାହିଁ । ଉପରବାଲାମାନେ ଏତେ ଚାଲାକ ଚତୁର ହୋଇ ବି ଏପରି ଗୋଟିଏ କଳ୍ପିତ କାହାଣୀରେ ବିଶ୍ୱାସ କଲେ କିପରି !

କିନ୍ତୁ ସିଉନାରାୟଣ ଯଦି ଘୁଣାକ୍ଷରେ ଜାଣି ପାରି ଥାଆନ୍ତା ଯେ ଦୁଇଜଣ ଖଣ୍ଡେ ଦୂରରେ ଲମ୍ୱା ଲମ୍ୱା ଘାସ ଆଢୁଆଳରେ ଦିହ ଲୁଚେଇ ତାଳ ବେତାଳ ବହୁତ ସମୟ ହେଲା ବସି ରହିଛନ୍ତି, ଆଉ ଏହି ଘରର ପ୍ରତିଟି କାର୍ଯ୍ୟ କଳାପ ଉପରେ ନଜର ରଖିଛନ୍ତି, ତାହେଲେ ସିଉନାରାୟଣ ନିଶ୍ଚିନ୍ତ ମନରେ ବସି ରହି ପାରି ନଥାନ୍ତା ।

: ମୋର ମନେ ହେଉଛି ଲୋକଟା ଏଇଠି ଅଛି, ତା' ନ ହେଲେ ପହରାର ବନ୍ଦୋବସ୍ତ ହୋଇ ଥାଆନ୍ତା କାହିଁକି ? ଜଗୁ କହିଲା ।

ମଙ୍ଗୁ ସୂର୍ଯ୍ୟକିରଣରେ ବସି ବସି ବିବ୍ରତ ହୋଇ ପଡ଼ିଥିଲା । ତାକୁ ଶୋଷ କରୁଥିଲା । ବିରକ୍ତ ହୋଇ କହିଲା : ଏହାପରେ କ'ଣ କରିବା ? ମୁଁ ଦେଖିବାକୁ ଚାହେଁ ଏଠାରେ କେତେଜଣ ପହରାବାଲା ଅଛନ୍ତି ।

: ଘର ଭିତରଟା ବେଶ୍ ଥଣ୍ଡା ମନେ ହେଉଥିଲା । ଏକ ଗ୍ଲାସ ହୁଇସ୍କି ହାତରେ ଧରି ସୋଫା ଉପରେ ବସିଥିଲେ ମାଲହୋତ୍ରା ।

: ଆରେ, ତମେ କେତେବେଳେ ? ସ୍ମିତ ହସି ରଞ୍ଜିତା କହିଲା, ଏତେ ସକାଳୁ ତମେ ଆସିଯିବ, ମୁଁ ମୋଟେ ଭାବି ପାରିନି । ତା'ପରେ ଆଉ ଖବର କ'ଣ ? ଯାହା ଖୋଜୁଥିଲ ସବୁ ପାଇଛ ?

: ଏଇ ଗ୍ଲାସଟା ଟିକିଏ ଭରିଦେଲ । ଗ୍ଲାସଟା ରଞ୍ଜିତା ହାତକୁ ବଢ଼ାଇ ଦେଇ ମାଲହୋତ୍ରା କହିଲେ : ଭାବିଥିଲି ଭିତରେ ଯାଇ ରୋଗୀକୁ ଟିକିଏ ଦେଖି ଆସିବି । କିନ୍ତୁ ନର୍ସ କହିଲା, କାଲି ରାତିଟା କୁଆଡ଼େ ଖୁବ୍ ଭଲରେ କଟିଛି ।

: ଆଗ ଅପେକ୍ଷା ଏଇକ୍ଷିଣା ସେ ଢେର ଭଲ ଅଛି । ମାଲହୋତ୍ରା ହାତକୁ ଭରା

ଗ୍ଲାସଟା ବଢ଼ାଇଦେଲା ରଂଜିତା ।

: ଲିସାର କିଛି ଖବର ପାଇଲ ?

: ତାଳ-ବେତାଳର ଅସ୍ତିତ୍ୱ ଅଛି ବୋଲି ଇନିସ୍‌ପେକ୍ଟର ରଣଧୀର ଆଦୌ ବିଶ୍ୱାସ କରିବାକୁ ଚାହେନାହିଁ ।

: ସେମାନେ ତ କିଛି ବିଶ୍ୱାସ କରିବାକୁ ଚାହାନ୍ତି ନାହିଁ । ତେବେ ତାଳ-ବେତାଳ ଏଠାରେ ଯଦି ଆସି ପହଞ୍ଚି ଯାଆନ୍ତି । ଅବଶ୍ୟ ସେମାନେ ଏଠାକୁ ଆସିବେ ନାହିଁ । ହଲଘରେ ଟେଲିଫୋନ୍‌ଟା ବାଜି ଉଠିଲା । ପରିଚାରିକା ଲାଇନ୍‌ଟା ଆଗେଇ ଦେଲା । ରଂଜିତା ମାଲହୋତ୍ରା ଆଡ଼େ ରିସିଭରଟା ବଢ଼େଇ ଦେଇ କହିଲା : ତମର ।

ଇନିସ୍ପେକ୍ଟର ରଣଧୀର କଥା କହୁଥିଲେ । ତାଙ୍କର ଗମ୍ଭୀର କଣ୍ଠସ୍ୱର ଶୁଣି ମାଲହୋତ୍ରା କହିଲେ : ଠିକ୍ ଅଛି । ଧନ୍ୟବାଦ ଇନିସ୍ପେକ୍ଟର । ମୁଁ ଏଇ ମୁହୂର୍ତ୍ତରେ ଯାଉଛି ।

ରିସିଭରଟା ରଖିଦେବା ମାତ୍ରକେ ରଞ୍ଜିତା ପଚାରିଲା : ପୁଣି କ'ଣ ହେଲା ? ମୁଁ ଯେତେବେଳେ ଭାବେ ତମ ସାଙ୍ଗରେ ବସି ନିରୋଳାରେ ଟିକିଏ କଥା ହେବି, ସଙ୍ଗେ ସଙ୍ଗେ ତମର ଡକରା ଆସିଯାଏ ।

: ପୁଣି ଗୋଟାଏ ପାଗଳି ପଳେଇଛି । ବିରକ୍ତ ହୋଇ ମାଲହୋତ୍ରା କହିଲେ । ତାକୁ ଯୋଉ ହସପିଟାଲରୁ ପାଗଳ ଗାରଦକୁ ନିଆ ହେଉଥିଲା, ସେ ବାଟରେ କିପରି କେଜାଣି ପରିଚାରକଟିକୁ ଖୁଣ୍ କରି ପଳେଇ ଯାଇଛି । ସେମାନେ ଭାବୁଛନ୍ତି ଖବର କାଗଜ ପାଇଁ ମୁଁ ହୁଏତ ଏ ସମ୍ବନ୍ଧରେ ସବୁକଥା ଜାଣିବା ପାଇଁ ଆଗ୍ରହୀ । ଯାହାହେଉ, ମୋର ଇଏ ରୁଜି ରୋଜଗାର ବ୍ୟାପାର । ମୋତେ ଯିବାକୁହିଁ ହେବ । ତଥାପି କଥା ଦେଇ ଯାଉଛି, ସିଆଡ଼େ ମୁଁ ଯଦି ଖୁବ୍ ବ୍ୟସ୍ତ ହୋଇ ନ ପଡ଼େ ତେବେ ଆଜି ଆସି ଏଇଠି ରାତ୍ରିଯାପନ କରିବି । କ'ଣ ଖୁସିତ ।

: ହୁଁ, ତମେ ତ ଆସିଛ ! ରଂଜିତା ମେନ୍ ଗେଟ୍ ଯାଏ ମାଲହୋତ୍ରା ସଙ୍ଗରେ ଗଲା ଛାଡ଼ି ଆସିବା ପାଇଁ ।

: କ'ଣ ଏଠି ଭଲରେ ଅଛ ତ ? ସିଉନାରାୟଣକୁ ମାଲହୋତ୍ରା ପଚାରିଲେ ।

: ହଁ, ଭଲ ଅଛି ।

: ଦେଖିବ । ଚାରିଆଡ଼େ ଟିକେ ନଜର ରଖିଥିବ । ତମର କାମ ହେଉଛି ତାଳ-ବେତାଳଙ୍କର ଗତିବିଧି ଆଡ଼େ ଲକ୍ଷ୍ୟ ରଖିବା ।

: ଅବଶ୍ୟ । ମୃଦୁ ହସି ସିଉନାରାୟଣ ଉତ୍ତର ଦେଲା ।

ମାଲହୋତ୍ରା ଗାଡ଼ିରେ ଉଠିଲା ବେଳକୁ ରଂଜିତା କହିଲା, : ସେମାନେ ସତରେ କ'ଣ ଏଯାଏ ଆସିବେ ? ତମେ ନିଶ୍ଚୟ ସେମାନଙ୍କର ଏଠାକୁ ଆସିବା କଥା ଭାବୁନାହଁ ।

: ନା, ତଥାପି ଟିକେ ସାବଧାନରେ ରହିବା ଭଲ । ତମେ ଯାଅ । ପୁଣି ରାତିରେ ଦେଖାହେବ ।

ମାଲହୋତ୍ରା ଚାଲିଗଲେ । କିନ୍ତୁ ତାଙ୍କ ଯିବା ପଥକୁ ସ୍ଥିର ଦୃଷ୍ଟିରେ ଚାହିଁ ରହିଥିଲେ ତାଳ-ବେତାଳ। ଦୂରବୀକ୍ଷଣ ଆଖିରେ ଦେଇ ମଙ୍ଗୁ ରଞ୍ଜିତା ଆଡ଼େ ଚାହିଁ ରହିଥିଲା, କହିଲା : ମାଇକିନାଟା ଦେଖୁଛି ଖୁବ୍ ଚୌକଷ ।

ଜଗୁ ଦୂରବୀକ୍ଷଣଟା ତା' ହାତରୁ ଟାଣି ନେଇ ଉତପ୍ତ କଣ୍ଠରେ କହିଲା : ସେ

ଆଡ଼କୁ ଚାହୁଁଛୁ କାହିଁକି ? ମୁଁ ଦେଖୁଛି ମାଇକିନାଙ୍କ କଥା ତୁ ଅତି ବେଶି ଚିନ୍ତା କରୁଚୁ ।

: କ'ଣ ଗୋଟାଏ ନେଇ କିଛି ଚିନ୍ତା କରିବାକୁ ହେବତ ! ବିଷଣ୍ଣ କଣ୍ଠରେ ମଙ୍ଗୁ କହିଲା । ତମେ କ'ଣ ସେଇ ଲୋକଟାକୁ ଖୁଣ୍ କରିବାକୁ ଚାହ ?

: ନିଶ୍ଚୟ । ସେଇଥିପାଇଁତ ଏତେବାଟ ଛୁଟି ଆସିଲେ । ଆଉ ସେ ଲୋକଟା ଯଦି ଏଠାରେ ଥାଏ, ତା'ହେଲେ ଛାଡ଼ିଯିବା ? ଅବଶ୍ୟ ତୁ ଯଦି ଜେଲଖାନାରେ ବସି ଫାଶିଖୁଣ୍ଟରେ ଝୁଲିବାର ଦୁଃସ୍ୱପ୍ନ ଦେଖୁ ତା'ହେଲେ ଅଲଗା କଥା ।

ମଙ୍ଗୁ ମୁହଁ ପିତା ହୋଇଗଲା । ସେ ଡର ଡର ହୋଇ କହିଲା: ଏଇଟା କିନ୍ତୁ ଆମର ଶେଷ ଅଭିଯାନ ହେଉ । ଏହାପରେ ଆମେ ଏ ଲାଇନ୍ ଛାଡ଼ିଦେବା । ଟଙ୍କା ପଇସାତ ଆମର ଅନେକ ଜମିଗଲାଣି, ଆଉ ଏତେ ଝାମେଲା କରି ଲାଭ କ'ଣ ।

: ନା ନା, ବର୍ତ୍ତମାନ ଆମର ଏ କାମ ଛାଡ଼ିବାର ସମୟ ହୋଇ ନାହିଁ । ସେଥିପାଇଁ ମୁଁ ପ୍ରସ୍ତୁତ ନୁହେଁ । ଜଗୁ କହିଲା ।

: ମୁ କିନ୍ତୁ ପ୍ରସ୍ତୁତ । ମଙ୍ଗୁ କହିଲା ।

: ଏ ଦଳଟା ମୁଁ ତିଆରି କରିଛି । ଭାଙ୍ଗିବା ଦାୟିତ୍ୱ ମୋର । ତେଣୁ ବର୍ତ୍ତମାନ ତୁ ନୀରବରେ କାମ କରିଯା ।

ମଙ୍ଗୁ ଆଉ କିଛି ଉତ୍ତର ଦେଲାନାହିଁ । ଦୂରରେ ବନ୍ଧୁକ ଧରି ସିଉନାରାୟଣ ଠିଆ ହୋଇଥିଲା ତା' ଆଖିରେ ପଡ଼ିଲା । ମୁହଁଟା ତା'ର ଭାରି ହୋଇ ଉଠିଲା ।

ପାହାଡ଼ୀ ରାସ୍ତା ଉପରେ ଦ୍ରୁତ ବେଗରେ ଗାଡ଼ିଛୁଟେଇ ଚାଲିଥିଲେ ମାଲହୋତ୍ରା । ମନରେ ତାଙ୍କର ନାନା ଭାବନା । ହଠାତ୍ ତାଙ୍କର ମନେ ହେଲା ସେ ଯଦି ରଂଜୁର ବିଷୟ ସମ୍ପତ୍ତିର ବୁଝାସୁଝା କରନ୍ତି ଏବଂ ତା'ର ଚାଷବାସ ଦେଖନ୍ତି, ତା'ହେଲେ ଆରାମରେ ରଂଜୁ ପାଖରେ ରହିହେବ । ଯଦିଓ ଚାଷବାସ ସମ୍ବନ୍ଧରେ ତାଙ୍କର ଆଦୌ ଧାରଣା ନାହିଁ, ତଥାପି ସେଥିପାଇଁ ତାଙ୍କୁ ମୁଣ୍ଡ ଖେଳେଇବାକୁ ହେବନାହିଁ । ରଂଜିତା ସେ ସବୁ ବିଷୟରେ ଦକ୍ଷ ଏବଂ ସବୁଆଡ଼େ ତା'ର ନଜର ଥାଏ । ସେ ଖାଲି ଘୋଡ଼ାରେ ଚଢ଼ି ଚାରିଆଡ଼େ ବୁଲି ତଦାରଖ କରିବେ । କର୍ମଚାରୀମାନଙ୍କୁ ଆହୁରି କର୍ମପ୍ରେରଣା ଯୋଗାଇବେ । ଏ ପ୍ରସ୍ତାବରେ ରଂଜିତା ରାଜି ହେବ କି ନାହିଁ କିଏ ଜାଣେ । ସେ ଯେତେବେଳେ ସବୁବେଳେ ତା'ର ସଂଗ-ସୁଖ ଚାହେଁ । ରାଜି ନହେବ କାହିଁକି ?

କିନ୍ତୁ ଏ ପ୍ରସ୍ତାବ ଦେବା ପୂର୍ବରୁ ଲିସାକୁ ତାଙ୍କର ପ୍ରୟୋଜନ । ଲିସାକୁ ପାଇଗଲେ, ତାକୁ ଥଇଥାନ କରି ସାରିବା ପରେ ରଂଜୁକୁ ଏଇ ପ୍ରସ୍ତାବଟା ସେ ଦେବେ । କିନ୍ତୁ ତା'ଆଗରୁ ଲିସାକୁ ଖୋଜି ବାହାର କରିବାକୁ ହେବ । ସେ ପାଗଳ ଗାରଦରୁ ଖସି ପଳେଇବାର ଆଜିକି ତେରଦିନ ହେଲା । ଆଉ ଦୁଇଦିନ ପରେ ସେ ଅମୃତଲାଲ ବରିହାଙ୍କର ସମସ୍ତ ସମ୍ପତିର ଉତ୍ତରାଧିକାରିଣୀ ହେବ । ମାତ୍ର ଆଉ ଦିନ ଦୁଇଟା । ତା'ରି ଭିତରେ ଲିସାକୁ ଖୋଜି ବାହାର କରିବାକୁ ହେବ ।

କିନ୍ତୁ ହଠାତ୍ ମାଲହୋତ୍ରା ଗାଡ଼ିର ବ୍ରେକ୍ କଷିଲେ । ଗୋଟାଏ ବିକଟ ଚିତ୍କାର କରି ଗାଡ଼ିଟା ଠିଆ ହୋଇଗଲା । ଆଉ ମୁହୂର୍ତ୍ତେ ଡେରି ହୋଇଥିଲେ ଗାଡ଼ିଟା ଗୋଟାଏ

ଗଭୀର ଖାଲ ଭିତରେ ଗଡ଼ି ଯାଇ ଥାଆନ୍ତା । କିନ୍ତୁ ଏ କ'ଣ ! ଏ ଯେ ଏକ ଅବିଶ୍ୱାସ୍ୟକର ଘଟଣା। ମାଲହୋତ୍ରା ସ୍ୱପ୍ନ ଦେଖୁ ନାହାନ୍ତି ତ! ତାଙ୍କରି ସାମ୍‌ନାରେ ତାଙ୍କରି ଆଡ଼କୁ ଦୁଇହାତ ପ୍ରସାରିତ କରି ଝଡ଼ବେଗରେ ଛୁଟି ଆସୁଛି ଲିସା । ତା'ର ପୋଷାକ ପରିଚ୍ଛଦ ଛିନ୍ନ-ବିଛିନ୍ନ । ମୁଣ୍ଡର ବାଳ ଆଲୁରା ବାଲୁରା । ସାରା ଦେହରେ ପରିଶ୍ରମର ସୁସ୍ପଷ୍ଟ ଚିହ୍ନ ।

ମାଲହୋତ୍ରା ଲିସାକୁ ଗାଡ଼ିରେ ବସାଇଲେ । କହିଲେ : ଠିକ୍ ଅଛି, ଏଇକ୍ଷଣି ତମକୁ ଆଉ କିଛି କହିବାକୁ ହେବନାହିଁ । ତୁମେ ବର୍ତ୍ତମାନ ସଂପୂର୍ଣ୍ଣ ନିରାପଦ ।

: ଶଙ୍କର, ଶଙ୍କର କୋଉଠି ? ସେ କେମିତି ଅଛି ? ସେ ଭଲ ଅଛି ତ ? ମୋତେ ତା' କଥା ଟିକେ କୁହନ୍ତୁ । ଲିସା ସ୍ୱରରେ ବ୍ୟାକୁଳତା ଫୁଟି ଉଠିଥିଲା ।

: ହଁ ସେ ଭଲଅଛି । ବର୍ତ୍ତମାନ ଅବଶ୍ୟ ସେ ଅସୁସ୍ଥ କିନ୍ତୁ ତା'ର ବିପଦ କଟି ଯାଇଛି । ମୁଁ ତୁମକୁ ସିଧାସଳଖ ତା'ପାଖକୁ ନେଇଯାଉଛି । ତମେ ବ୍ୟସ୍ତ ହୁଅନି । ଗାଡ଼ିରେ ବସା ମାଲହୋତ୍ରା ଗାଡ଼ିର ଦରଜା ଖୋଲି ଲିସାକୁ ବସାଇଲେ ।

: ମୁଁ ଆଉ କେବେହେଲେ ତା'ପାଖରେ ପହଞ୍ଚି ପାରିବି ବୋଲି ଭାବି ନଥିଲି । ଗାଡ଼ି ଭିତରେ ବସି ଲିସା କାନ୍ଦି ଉଠିଲା ।

ମାଲହୋତ୍ରା ଆଉ ବେଶି କଥାବାର୍ତ୍ତା ନକରି ଦ୍ରୁତବେଗରେ ଗାଡ଼ି ଛୁଟାଇ ଦେଇଥିଲେ ।

ମାଲହୋତ୍ରା ବାହାରେ ଟହଲ ମାରୁଥିଲେ। ସ୍ଥିର ହୋଇ ଗୋଟାଏ ଜାଗାରେ ବସି ପାରୁ ନଥିଲେ। ଲିସାକୁ ସେ ଶଙ୍କର ପାଖକୁ ପଠାଇ ଦେଇଛନ୍ତି । ରଂଜିତା ଫେରିଆସି ସଂବାଦ ନଦେବାଯାଏ ସେ ସ୍ଥିର ହୋଇ ପାରୁ ନଥିଲେ ।

କିଛି ସମୟ ପରେ ରଂଜିତା ଫେରି ଆସିଲା । କହିଲା : ଝିଅଟା ମୋତେ କିନ୍ତୁ ଖୁବ୍ ଭଲ ଲାଗିଲା । ଶଙ୍କର ସାଙ୍ଗରେ ତା'ର ଅଳ୍ପ ସମୟ ପାଇଁ ଦେଖା ହୋଇଥିଲା । ଶଙ୍କର ସେତେବେଳେ ଶୋଇଥିଲା । କିନ୍ତୁ ସେ ଯେଉଁପରି ବ୍ୟାକୁଳ ହୋଇ ଶଙ୍କର ଆଡ଼କୁ ଚାହିଁ ରହିଲା, ସତରେ ତାହା ହୃଦୟଗ୍ରାହୀ । ମୁଁ କେବଳ ଭାବୁଚି, ତୁମେ ଯଦି କେବେ ଅସୁସ୍ଥ ହୁଅ, ମୁଁ ଯେପରି ତମ ଆଡ଼େ ସେହିପରି ଅନାଇ ରହିପାରେ ।

: ତମ ଭାବନାଟା ଅବଶ୍ୟ ସମୟୋପଯୋଗୀ । ତେବେ ମୋ ଅସୁସ୍ଥତା ଯେପରି ଗଭୀର ନହୁଏ । ତା'ହେଲେ ତମ ମନର ଅଭିବ୍ୟକ୍ତିକୁ ମୁଁ ଠିକ୍ ଉପଭୋଗ କରି ପାରିବି ନାହିଁ । ମାଲହୋତ୍ରା ଅଳ୍ପ ହସି ଅନ୍ୟ ପ୍ରସଙ୍ଗ ଉଠାଇଲେ, ତା'ପରେ ଲିସା ଭଲ ଅଛି ତ?

: ତା' ଉପରେ ଯେଉଁ ଝଡ଼ ବହି ଯାଇଛି...ତେବେ ଭଲକରି ବିଶ୍ରାମ କରି ପାରିଲେ ଧୀରେ ଧୀରେ ସେ ସୁସ୍ଥ ହୋଇ ଉଠିବ। ରଂଜିତା ମାଲହୋତ୍ରାଙ୍କ ଆରାମ ଚେଆରର ହାତ ଉପରେ ବସିଲା ।

: ସେ ଏଇକ୍ଷଣି କ'ଣ କରୁଛି ?

: ଗାଧେଇ ଯାଇଛି । ସେ ହୁଏତ ତାକୁ ଟିକିଏ ଶୁଆଇ ପକାଇ ପାରନ୍ତେ ।

: ତା' ଆଖିରେ ନିଦ ଆଣିବା ପାଇଁ କାହାରି ସାହାଯ୍ୟର ପ୍ରୟୋଜନ ହେବନାହିଁ ।

ମୋର ଇଚ୍ଛା ନୁହେଁ କୌଣସି ଡାକ୍ତର ବା ନର୍ସ ତାକୁ ବିରକ୍ତ କରୁ । ମାଲହୋତ୍ରା କହିଲେ ।

: ମୁଁ ତା'ସହିତ କଥାବାର୍ତ୍ତା କରିଥିଲି ତା'ସମ୍ବନ୍ଧରେ ତମର ଯାହା ଧାରଣା ମୋର ବି ସେଇଆ । ସେ ମୋ ପାରି ସ୍ୱଭାବିକ । ଆଉ ଭାରି ସୁନ୍ଦର, ମିଠା ଝିଅଟିଏ । ରଂଜିତା କହିଲା ।

: ତମେ ଠିକ୍ କହିଛ ରଂଜୁ । ସେ ଝିଅଟିକୁ ଗୋଟିଏ ଭୟଙ୍କର ଝିଅ ବୋଲି ଚିନ୍ତା କରି ହୁଏ ନାହିଁ । ଅଳ୍ପ ହସିଲେ ମାଲହୋତ୍ରା କହିଲେ, ତଥାପି ଟିକିଏ ନଜର ରଖିଲେ କ୍ଷତି କ'ଣ !

: ନା କ୍ଷତି କିଛି ନୁହେଁ ଯେ, ତେବେ ବର୍ତ୍ତମାନ ତମେ ଏତେ ଭାବୁଛ କ'ଣ ? ରଂଜିତା ପଚାରିଲା ।

: ନା, ସେମିତି କିଛି ନୁହେଁ । ତେବେ ମୁଁ କେବଳ ଭାବୁଛି ସେହି ତାଳ-ବେତାଳଙ୍କ କଥା। ସବୁଆଡ଼େ ଚଉକଷ ପହରା ବସେଇ ଦିଆ ହୋଇଛି । ତାଳ-ବେତାଳ ସେଇ ଚକ୍ରବ୍ୟୂହ ଭେଦକରି କ'ଣ ଏଠାରେ ଆସି ପହଞ୍ଚି ପାରିବେ ?

: କିନ୍ତୁ ଶଙ୍କର ଯେ ଏଠାରେ ଅଛି ସେମାନେ ଆଦୌ ଜାଣି ପାରିବେ ନାହିଁ । ତମେ କ'ଣ କହୁଛ ? ତେବେ ତମର ଦୁଶ୍ଚିନ୍ତାର କିଛି କାରଣ ନାହିଁ ।

: ଦୁଶ୍ଚିନ୍ତାରେ ପଡ଼ିଛି ସତ, ତେବେ ସେମାନେ ଏଠାକୁ ଆସିବେ ବୋଲି ମନେ ହୁଏ ନାହିଁ । ତା'ବୋଲି ଏକଦମ୍ ନିଶ୍ଚିନ୍ତ ହୋଇ ବସି ରହିବା ଉଚିତ ନୁହେଁ । ମୁଁ ଯାଉଛି ଟିକିଏ ଚାରିଆଡ଼େ ତଦାରଖ କରିଆସେ । ସିଉନାରାୟଣର ସାଙ୍ଗସାଥୀମାନେ ଠିକ୍ ଠିକ୍ ପହରା ଦେଉଛନ୍ତି କି ଆଖି ବୁଜି ଘୁଙ୍ଗୁଡ଼ି ମାରୁଛନ୍ତି ସେମାନଙ୍କୁ ଟିକିଏ ଦେଖିଆସେ । ମାଲହୋତ୍ରା ଉଠି ଠିଆହେଲେ ।

ହଠାତ୍ ଟେଲିଫୋନ୍‌ଟା ବାଜି ଉଠିଲା । ରଂଜିତା କହିଲା, : ଏଇଟା ନିଶ୍ଚୟ ତମର ଫୋନ୍ । ଆମେ ଯେ ଏକାଠି ଦୁହେଁ ଅବୈଧ ଭାବରେ ରହିଛେ, ଏକଥା ଏ ଅଞ୍ଚଳରେ ସମସ୍ତେ ଜାଣିଗଲେଣି ।

: ଖାଲି ଜାଣି ନାହାନ୍ତି ନୁହେଁ, ହିଂସାରେ ଜଳିଗଲେଣି । ମାଲହୋତ୍ରା କହିସାରି ଟେଲିଫୋନ୍ ରିସିଭର୍‌ଟା ଉଠାଇଲେ। ଲାଇନ୍‌ର ଅପରପ୍ରାନ୍ତରୁ ଇନିସ୍‌ପେକ୍ଟର ରଣଧୀରଙ୍କ ମୋଟା ଗଳା ଶୁଣାଗଲା, : ମୁଁ ତମପାଇଁ ଗୋଟିଏ ସୁନ୍ଦର ଛବି ଉଠେଇବାର ବନ୍ଦୋବସ୍ତ କରି ରଖିଥିଲି, ତମର ଦେଖାନାହିଁ । କି ସାମ୍ବାଦିକ ହୋ ତମେ ?

: କିନ୍ତୁ ଘଟଣା କ'ଣ ? କ'ଣ ଘଟିଛି କହିଲେ । ଛବିଟା ନହେଲେ ଆପଣଙ୍କର ପରେ ଯାଇ ଉଠାଇ ଦେଇ ଆସିବି । ମାଲହୋତ୍ରା କହିଲେ ।

: ଖବର ପାଇଲି ଲିସା କୁଆଡ଼େ ପୁଣି ସହରକୁ ଫେରି ଆସିଛି । ଆଉ ଗୋଟାଏ ପାଗଳୀ ଝିଅ ପଳାଇ ଯାଇଥିଲା । ଧରା ପଡ଼ିଛି । ସେ କହୁଛି ଲିସା ତା'ସାଙ୍ଗରେ କିଛି ସମୟ ପାଇଁ ଥିଲା । ପାଗଳ ଗାରଦର ଜଣେ ଡ୍ରାଇଭର ରାମ ଅବତାର ତାକୁ ଧରି ଗାଡ଼ିରେ ଭର୍ତ୍ତି କରି ନେଇ ଯାଉଥିଲା । କିନ୍ତୁ ଲିସା ଆଉ ଝିଅଟା ମିଶି ରାମଅବତାରକୁ ହତ୍ୟାକରି ପଳାଇ ଯାଇଥିଲେ। ଆଉ ଝିଅଟା ଧରା ପଡ଼ି ସବୁ କଥା କହିଛି । ଲିସା ସମ୍ବନ୍ଧରେ ତମ ପାଖରେ କିଛି ଖବର ଅଛି ?

: ଆପଣ ନୂଆ ଆଉ କ'ଣ କହୁଛନ୍ତି ?

: ଆମେ ପୁଣି ଥରେ ତଲାସି ଆରମ୍ଭ କରିବାକୁ ଯାଉଛୁ । ସେ ହୁଏତ ଶଙ୍କରକୁ ଖୋଜି ଖୋଜି ତମ ପାଖରେ ଯାଇ ହାଜିରି ହୋଇପାରେ, ସେଇଥିପାଇଁ ମୁଁ ଭାବିଲି ତମକୁ ବି ସତର୍କ କରେଇ ଦିଏ ।

: ଆପଣ ଠିକ୍ କରିଛନ୍ତି । ସେଥିପାଇଁ ଧନ୍ୟବାଦ ।

: ତମେ କ'ଣ ସେଠି ମୋର ସହକାରୀମାନଙ୍କୁ ରଖିବାକୁ ଚାହଁ ?

: ନିଶ୍ଚୟ । ଶଙ୍କର ସାକ୍ଷ୍ୟଦେବାଭଳି ସୁସ୍ଥ ହୋଇ ନଉଠିବାଯାଏ, ଆପଣଙ୍କ ଲୋକମାନେ ଏଇଠି ରହିବେ ।

: ହଉ, ସେମାନେ ଥାଆନ୍ତୁ । ମୋର ଅବଶ୍ୟ ଟିକିଏ ଅସୁବିଧା ହେବ। ତା'ହେଲେବି ସେମାନେ ସେଇଠି ରୁହନ୍ତୁ ।

: ଧନ୍ୟବାଦ । ମାଲହୋତ୍ରା ଟେଲିଫୋନ୍ ରିସିଭରଟା ରଖିଦେଲେ। କହିଲେ, ଲୋକଟା ବୋଧହୁଏ ମୋ ଗଳାର ସ୍ୱର ଶୁଣିବାକୁ ଭଲପାଏ । ତା'ନହେଲେ ବେଳ ଅବେଳରେ ଏମିତି ଅଯଥା ଫୋନ୍ କରନ୍ତା କାହିଁକି ?

: କ'ଣ କହୁଥିଲେ ସେ ? ପୁଣି କିଛି ଗଣ୍ଡଗୋଳ ହୋଇଛି ନା କ'ଣ ? ରଂଜିତା ପଚାରିଲା ।

: ନା, ଆଉ କିଛି ଘଟିନି । ତୁମେ ଯାଅ ଲିସା ପାଖରେ ଟିକେ ରୁହ । ତାକୁ ଟିକେ ଲକ୍ଷ୍ୟ ରଖ । ମୁଁ ଶିଉନାରାୟଣ ଆଉ ତା ଗ୍ରୁପ୍ ସହିତ କଥା କହୁଛି । ସେମାନେ କ'ଣ କହୁଛନ୍ତି ଦେଖାଯାଉ ।

ତାଳ-ବେ    ତାଳ ଦେଖିଲେ ମାଲହୋତ୍ରା ଆସି ସିଉନାରାୟଣ ପାଖରେ ବସିଲେ । ଶଙ୍କର ଯେ ଏଇଠି ଏଇ କୋଠାରେ ଅଛି ଜଗୁ ସେ ବିଷୟରେ ନିଶ୍ଚିତ ହୋଇ ସାରିଲାଣି । କୋଉ ଘରେ ରହିଛି ତା' ବି ସେ ଅନୁମାନ କରି ସାରିଲାଣି । ତିନିତାଲାର ଗୋଟିଏ ଘରେ ମଝିରେ ମଝିରେ ଜଣେ ନର୍ସର ଉପସ୍ଥିତି ଲକ୍ଷ୍ୟ କରିଚି ସେ । କିନ୍ତୁ ଏତେ ସତର୍କ ଦୃଷ୍ଟି ରଖିବା ସତ୍ତ୍ୱେ ମାଲହୋତ୍ରା କେଉଁବାଟେ କେତେବେଳେ ଲିସାକୁ ଆଣି ସେଠାରେ ଛାଡ଼ିଛନ୍ତି ଜଗୁ ତାହା ଜାଣି ପାରି ନାହିଁ। ଅବଶ୍ୟ ମାଲହୋତ୍ରା ସେଥିପାଇଁ ଚେଷ୍ଟା କରିଥିଲେ ଏବଂ ଘରର ପଛବାଟେ ଗୋଟିଏ ସଂକୀର୍ଣ୍ଣ ଜଙ୍ଗଲିଆ ପଥଦେଇ ସେ ଲିସାକୁ ଆଣିଥିଲେ ।

: ଟିକିଏ ଅନ୍ଧାରୁଆ ହୋଇ ଆସିଲେ ଆମେ ଏଥର ସେ ଘର ଭିତରେ ପଶିଯିବା । ପହରାବାଲାଙ୍କୁ କାବୁ କରିବା ପାଇଁ ଆମକୁ ବେଶି ସମୟ ଲାଗିବ ନାହିଁ, ଘାସ ଉପରେ ଶୋଇରହି ଜଗୁ କହିଲା ।

: ତା'ମାନେ ସେମାନଙ୍କୁ ଖୁଣ୍ କରିବାକୁ ହେବ ? ମଙ୍ଗୁ ପଚାରିଲା ।

: ଖୁଣ୍ କରିବା ନ କରିବା ପରିସ୍ଥିତି ଉପରେ ନିର୍ଭର କରୁଛି । ମୋଟାମୋଟି କାମଟା ଆମକୁ ଖୁବ୍ ବିଚକ୍ଷଣତାର ସହିତ ହାସଲ କରିବାକୁ ହେବ । ଠିକ୍ ଭାବରେ ମନପ୍ରାଣ ଦେଇ ପାରିଲେ ହୁଏତ ଆମର ଏଇଟା ଶେଷ କାର୍ଯ୍ୟ ହେବ। ଜଗୁ କହିଲା ।

: ହୁଁ । ମଙ୍ଗୁ କେବଳ ହୁଁ ଟିଏ ମାରି କିଛି ସମୟ ନୀରବ ରହିବା ପରେ କହିଲା,

ଖୁବ୍ ଭୋକ କଲାଣି । ଚାଲ ଏଥର ଯାଇ କୋଉଠି କିଛି ଖାଇ ଆସିବା । ତା'ପରେ କାମ ଆରମ୍ଭ କରିବାକୁ ପଡ଼ିବ ଯେ !

ଗୋଧୂଳି ଲଗ୍ନରେ ନିଦ ଭାଙ୍ଗିଲା ଲିସାର । ସେ ଚମକି ଉଠି ବସିଲା ଏକ ଅସ୍ୱସ୍ତିକର ଭୀତିପ୍ରଦ ଅନୁଭୂତି ତା'ର ସମସ୍ତ ଚେତନାରେ ଭରି ଯାଇଥିଲା । ସେ ନିଜକୁ ସୁସ୍ଥ ମନେ କରି ପାରୁ ନଥିଲା । ସେ ଭାବି ପାରୁ ନଥିଲା କେଉଁଠିକି ଆସିଚି, କ'ଣ କରୁଚି । କିପରି ଏକ ଆଶଙ୍କା ଜଡ଼ିତ ଆଖିରେ ସେ ସେହି ସୁସଜ୍ଜିତ ବିଳାସ-ବହୁଳ କକ୍ଷଟି ଭିତରେ ଚାରିଆଡ଼କୁ ଚାହୁଁଥିଲା ଅସହାୟଙ୍କ ପରି । ତା'ପରେ ତା'ର ଧୀରେ ଧୀରେ ମନେ ପଡ଼ିଲା ସବୁକଥା। ଶଙ୍କର, ତାଳ-ବେତାଳ, ସବୁକଥା । ସଙ୍ଗେ ସଙ୍ଗେ ସେ ସଚେତନ ହୋଇ ଉଠିଲା ।

ଶଙ୍କର ପାଇଁ ଯାହା କରିବାର କଥା, ଯେତେଟା ସମ୍ଭବ ସବୁ କରା ହୋଇଛି । ଯଦିଓ ତା'ର ବିପଦ କଟି ଯାଇଛି, ତଥାପି ସେ ଭୀଷଣ ଦୁର୍ବଳ । ଏଥର ସେ ଶଙ୍କର ପାଖକୁ ଗଲେ ଶଙ୍କର ତାକୁ ନିଶ୍ଚୟ ଚିହ୍ନି ପାରିବ । ସେ ତା' ପାଖରେ ରହିଲେ ଶଙ୍କର ହୁଏତ ଶୀଘ୍ର ସୁସ୍ଥ ହୋଇ ଉଠିବ ।

ଶୋଇ ଶୋଇ ବିକ୍ଷିପ୍ତ ମନରେ ଏଇସବୁ ଚିନ୍ତା କରୁଥିଲା ଲିସା । କିନ୍ତୁ ସେହି ଅସ୍ୱସ୍ତିକର ଭୀତିପ୍ରଦ ଅନୁଭୂତିନ୍ତ ଏକ ଅଜ୍ଞାତ ବିପଦର ଆଶଙ୍କା ତଥାପି ତା' ଚାରିପାଖରେ ପକ୍ଷ ବିସ୍ତାର କରି ରହିଥିଲା । ଏଠାରେ କୌଣସି ବିପଦର ଆଶଙ୍କା ନାହିଁ, ଏହିପରି ଏକ ଭାବନାରେ ମନକୁ ସେ ଦୃଢ଼ କରିବାକୁ ଚେଷ୍ଟା କରୁଥିଲା । ମାଲହୋତ୍ରା କହିଛନ୍ତି, ଏଠି ଯେ ଶଙ୍କର ଅଛି ସେ କଥା ତାଳ-ବେତାଳ ଘୁଣାକ୍ଷରେ ବି ଜାଣି ପାରିବେ ନାହିଁ । ଆହୁରି କହିଛନ୍ତି, ଏଠାରେ ଦିନରାତି ପହରାର ବନ୍ଦୋବସ୍ତ କରାହୋଇଛି । ତଥାପି ତାଳ-ବେତାଳଙ୍କ ଆଶଙ୍କା ଲିସା ମନରୁ ଦୂର ହେଉ ନ ଥିଲା । ତା'ର ମନେ ହେଉଥିଲା, ସେମାନଙ୍କର ଅସାଧ କିଛି ନାହିଁ ।

ସେହିପରି ଶୋଇ ଶୋଇ ଅଳସ ଭାଙ୍ଗୁ ଭାଙ୍ଗୁ ସନ୍ଧ୍ୟାର ଅନ୍ଧକାର ଗାଢ଼ରୁ ଗାଢ଼ ହେଉଥିବାର ଦେଖୁଥିଲା ଲିସା । ତା'ପରେ ସେ ଧୀରେ ଧୀରେ ଉଠିଲା । ରଂଜିତା ଦେଇଥିବା ଚାଦରଟା ଦେହରେ ଗୁଡ଼େଇ ସେ ଯାଇ ଗୋଟାଏ ଝରକା ପାଖରେ ଠିଆ ହେଲା । ସାମନାରେ ବିରାଟ ଫଳ ବଗିଚା । ଗଛଗୁଡ଼ା ଆକାଶକୁ ମୁଣ୍ଡଟେକି ଠିଆ ହୋଇଛନ୍ତି । ଝରକାର ଠିକ୍ ତଳକୁ ହତା ଭିତରେ ବନ୍ଧୁକ ହାତରେ ଧରି ଟହଲ ମାରୁଛି ଜଣେ ପ୍ରହରୀ । ଆଉ ଟିକିଏ ଆଗକୁ ସଦର ଦରଜା । ଝରକାର ଠିକ୍ ସାମ୍ନାକୁ ଠିଆ ହୋଇ ଦୂରର ଘନ ଅନ୍ଧକାର ଆଡ଼େ ଚାହିଁଲା ଲିସା । କିନ୍ତୁ ହଠାତ୍ କେଜାଣି କାହିଁକି ଏକ ଅଜ୍ଞାତ ବିପଦର ଆଶଙ୍କାରେ ଛାତିଟା ତା'ର ଧଡ଼ପଡ଼ କରି ଉଠିଲା ।

ଠିକ୍ ସେତିକିବେଳେ ଘରର ଦରଜା ଖୋଲି ଭିତରେ ପଶିଲା ରଂଜିତା । : ଏ କ'ଣ,, ତମେ ଉଠି ପଡ଼ିଲ ଯେ ଲିସା । ଝରକା ସାମ୍ନାରେ ଠିଆ ହୋଇଥିବାର ଦେଖି ପଚାରିଲା, ଆଲୁଅ ଜଳେଇ ଦେବିକି ?

: ନା, ଆଲୁଅ ଜଳାନ୍ତୁ ନାହିଁ । ତୀକ୍ଷ୍ଣ ଦୃଷ୍ଟିରେ ଲିସା ବାହାରକୁ ଚାହିଁରହି ଉତ୍ତର

ଦେଲା ।

: କିଛି ଦେଖି ଭୟ ପାଇଲ ନା' କ'ଣ ? ତା' ପାଖକୁ ଲାଗିଯାଇ ରଂଜିତା ପଚାରିଲା ।

: ସେଠି ବିପଦ ଅପେକ୍ଷା କରି ରହିଛି । ପଥରମୂର୍ତ୍ତିପରି ଠିଆହୋଇ କରୁଣ କଣ୍ଠରେ ଲିସା କହିଲା ।

: ପ୍ରହରୀକି ଡାକିବି ନା କ'ଣ ? ନା କହିବି ସେଠି ଯାଇ ଦେଖି ଆସିବା ରଂଜିତା ବିବ୍ରତ କଣ୍ଠରେ କହିଲା ।

: ରୁହନ୍ତୁ-ହେଇ ଦେଖନ୍ତୁ , ଦେଖି ପାରୁଛନ୍ତି ? ସେଇତ ସେଇ ଗଛ ଗୁଡ଼ାକ ଉହାଡ଼ରେ...କିଛି ଦେଖି ପାରୁ ନାହାନ୍ତି ?

ଲିସା ଭୟରେ କମ୍ପି ଉଠିଥିଲା ।

ଅନ୍ଧକାର ଆଡ଼େ ରଂଜିତା ଚାହିଁଲା । କିନ୍ତୁ କିଛି ସେ ଦେଖି ପାରିଲା ନାହିଁ । କୋଉଠି କିଛି ଆଶଙ୍କାର ଚିହ୍ନ ସେ ବାରି ପାରିଲା ନାହିଁ । ଗଛପତ୍ର, ସବୁ ସ୍ଥିର ହୋଇ ରହିଛି ।

: କାହିଁ, କିଛି ନାହିଁତ । ତମ ମନରେ ଭୟ ଅଛି ତ, ସେଇଥିପାଇଁ ସେମିତି ମନେ ହେଉଛି । ତଳକୁ ଚାଲ । ଏଠାରୁ ଅନେକ ଭଲ ଲାଗିବ ତମକୁ । ଶାନ୍ତ କଣ୍ଠରେ ରଂଜିତା କହିଲା ।

: କିନ୍ତୁ ସେମାନେ ସେଠି ଲୁଚି ରହିଛନ୍ତି । ସେହି ତାଳ-ବେତାଳ ମୁଁ ଠିକ୍ ବୁଝି ପାରିଛି । ଦୃଢ଼ କଣ୍ଠରେ ଲିସା କହିଲା ।

ମୁଁ ସିଉନାରାୟଣକୁ କହୁଛି । ଗଳାର ସ୍ୱର ଯଥାସମ୍ଭବ ଶାନ୍ତ ରଖି ରଂଜିତା କହିଲା । ତମ ପାଇଁ ମୁଁ ଲୁଗାପଟା ବାହାର କରି ରଖିଛି । ବୋଧହୁଏ ତମ ଦେହ ମାପକୁ ହୋଇଯିବ । ସେ ସବୁ ପିନ୍ଧିନିଅ । ତା'ଭିତରେ ମୁଁ ସିଉନାରାୟଣକୁ ଖବର ଦେଉଛି । ରଂଜିତା ଲିସା ପିଠି ଥାପୁଡ଼ି ଦେଇ ତା' ମନରେ ସାହସ ସଞ୍ଚାର କରି ଦରଜା ଆଡ଼କୁ ଆଗେଇଗଲା ।

ତଳକୁ ଓହ୍ଲେଇଯାଇ ଡାକିଲା : ସିଉନାରାୟଣ !

ବୈଠକଖାନାରୁ ବାହାରି ଆସି ମାଲହୋତ୍ରା ରଂଜିତା ମୁହଁରେ ଉଦ୍‌ବେଗର ଚିହ୍ନ ଦେଖି ପଚାରିଲେ : ଖବର କ'ଣ ?

: ଖବର ଭଲ ନୁହେଁ । ଲିସାର ମନେ ହେଉଛି ତାଳ-ବେତାଳମାନେ ଏଠାକୁ ଆସିଗଲେଣି ।

ମାଲହୋତ୍ରା ଏକା ସଙ୍ଗରେ ଶିଡ଼ିର ଦୁଇଟା କରି ପାହାଚ ଡେଇଁ ଡେଇଁ ଉପରକୁ ଉଠୁ ଉଠୁ ପଚାରିଲେ : ଲିସାର ଏପରି ମନେ ହେବାର କାରଣ ?

: ସେ କହୁଛି ସେ ସେମାନଙ୍କୁ ଦେଖିଛି । ସତରେ ଦେଖିଛି କି ନାହିଁ କହି ପାରିବି ନାହିଁ । ତେବେ ମୁଁ କିଛି ଦେଖିନାହିଁ । ସେ କିନ୍ତୁ ଭୀଷଣ ଡରି ଯାଇଛି ।

: ଠିକ୍ ଅଛି, ମୁଁ ପହରାବାଲାମାନଙ୍କ ସହିତ କଥା କହିବାକୁ ଯାଉଛି । ତୁମେ ତାକୁ ଲୁଗାପଟା ପିନ୍ଧାଇ ତଳ ବୈଠକଖାନାକୁ ନେଇଆସ । ମାଲହୋତ୍ରା ପୁଣି ଶିଡ଼ିରୁ ଦ୍ରୁତବେଗରେ ଓହ୍ଲେଇବାକୁ ଲାଗିଲେ ।

ବାହାରେ ଘନ ଅନ୍ଧକାର ଭିତରେ ଦୁଇଟି କଳା ଛାଇପରି ତାଳ-ବେତାଳ ଘରଆଡ଼କୁ ଆଗେଇ ଆସୁଥିଲେ । ସିଉନାରାୟଣ ଠିକ୍ ସେତିକିବେଳେ ଖିଆ ଶେଷ କରି ତନ୍ଦ୍ରା ଜଡ଼ିତ ଆଖିରେ ଚେଆର ଉପରେ ବସିଥିଲା । ସେତିକିବେଳେ ହଠାତ୍ ସେଠାରେ ମାଲହୋତ୍ରାଙ୍କ ଆବିର୍ଭାବରେ ତା' ତନ୍ଦ୍ରା ତୁଟିଗଲା ।

: ମୋତେ ଆପଣ ଖୋଜୁଛନ୍ତି ନା କ'ଣ ? ସିଉନାରାୟଣ ଉଠି ଠିଆ ହୋଇ ପଡ଼ିଲା ।

: ହଁ, ତୁମକୁ ଖୋଜୁଛି । ତମ ଲୋକମାନେ ଯାହାର ଯେଉଁଠି ଡିଉଟି ଠିକ୍ ଠିକ୍ ଜାଗାରେ ସବୁ ଅଛନ୍ତି ତ ?

: ନିଶ୍ଚୟ । କିନ୍ତୁ କେଉଁଠି କିଛି ହୋଇଛି ନା କ'ଣ ?

: କିଛି ହୋଇଛି ହୁଏତ । ଗୋଟାଏ କାମ କର । ମୋ ସାଙ୍ଗରେ ତମେ ଆସ । ବାହାରଟା ବୁଲିଚାଲି ଟିକିଏ ଦେଖି ଆସିବା ।

: ଏଇକ୍ଷିଣା ? କ'ଣ ଯେ ଭାବୁଛନ୍ତି ଆପଣମାନେ । ମୁଁ ଏଇମାତ୍ର ଖାଇ ଉଠିଛି । ତା'ଛଡ଼ା କ'ଣ ଯାଇ ଦେଖିବା ? କାହାକୁ ଦେଖିବା । ବେଳେ ବେଳେ ଆପଣମାନେ ଏପରି ସବୁ କାଣ୍ଡକାରଖାନା କରି ବସୁଛନ୍ତି, ମନେ ହେଉଛି ଯେପରି ପୃଥିବୀ ପ୍ରଳୟ ହୋଇଯିବ। ଶୁଣନ୍ତୁ ମୁଁ ପୁଣି କହୁଛି ତାଳ-ବେତାଳ ଏ ପୃଥିବୀରେ କେହି ନାହାନ୍ତି । ଆପଣ ଯଦି ସେଇମାନଙ୍କ କଥା ଭାବି ଉଦ୍‌ବିଗ୍ନ ହେଉ ଥାଆନ୍ତି, ତା'ହେଲେ ମୁଁ କହିବି ଆପଣ ବୃଥା ମନସ୍ତାପ ଭୋଗୁଛନ୍ତି । ଅଯଥା ସମୟ ନଷ୍ଟ କରୁଛନ୍ତି । ତା'ସଙ୍ଗେ ସଙ୍ଗେ ମୋର ବି ସମୟ ନଷ୍ଟ ହେଉଛି ।

: ଶୁଣ ସିଉନାରାୟଣ । ଏଠାରେ ମୁଁ ତମଠାରୁ ଉପଦେଶ ଶୁଣିବାକୁ ଆସିନାହିଁ । ତମେ ଯଦି ଘଟଣାଟା ଉପରେ ଗୁରୁତ୍ୱ ନଦିଅ, ତା'ହେଲେ ମୁଁ ଇନିସ୍‌ପେକ୍ଟରର ରଣଧୀରକୁ ରିପୋର୍ଟ କରିବାକୁ ବାଧ ହେବି । ଏଠାରେ ସେ ଅନ୍ୟଲୋକ ଦିଅନ୍ତି । ମାଲହୋତ୍ରା ରାଗି ଯାଇଥିଲେ ।

ସିଉନାରାୟଣର ଦେହ ମୁହଁ ଲାଲ ହୋଇ ଉଠିଲା । ସେ ତୀକ୍ଷ୍ଣ ଦୃଷ୍ଟିରେ ମାଲହୋତ୍ରା ଆଡ଼େ ଚାହିଁ କହିଲା : ଦେଖନ୍ତୁ ମୁଁ କୌଣସି ଅଯଥା କଥାରେ ଡେଇଁବା ଲୋକ ନୁହେଁ । ଆପଣମାନେ ବା ଆମ ସାହେବମାନେ ଯାହା ଭାବନ୍ତୁ ପଛକେ, ମୁଁ ଆପଣଙ୍କୁ ପୁଣି ଥରେ କହୁଛି, ତାଳ-ବେତାଳଙ୍କର କୌଣସି ଅସ୍ତିତ୍ୱ ନାହିଁ । ଅନ୍ତତଃ ଆପଣଙ୍କ ପରି ଜଣେ ସମଝଦାର ଲୋକ ପକ୍ଷରେ ଏଇ ଉଡ଼ା କଥାରେ କାନ ନଦେଇ ଟିକିଏ ଚିନ୍ତା କରି ଦେଖିବା ଉଚିତ ।

: ତମେ ଯଦି ସେଇଆ ଭାବୁଥାଅ, ତା'ହେଲେ ତମେ ଯେତେ ଶୀଘ୍ର ଏଠାରୁ ଚାଲିଯିବ, ମୁଁ ଖୁସି ହେବି । ସଂକ୍ଷେପରେ ମାଲହୋତ୍ରା କହିଲେ ।

: ମୁଁ ତ ଆପଣଙ୍କ କଥାରେ ଚାଲିଯାଇ ପାରିବି ନାହିଁ । ଯେତେବେଳଯାଏ ମୁଁ ଏଠାକାର ଦାୟିତ୍ୱରେ ରହିଛି, ସେତେବେଳଯାଏ ମୁଁ ମୋର ମାଲିକ ।

ରାଗରେ ଜଳି ଉଠିଲେ ମାଲହୋତ୍ରା : ଠିକ୍ ଅଛି, ମୁଁ ଇନିସ୍‌ପେକ୍ଟର ରଣଧୀରଙ୍କ ସହିତ କଥା କହୁଛି, ଦେଖେ ମୁଁ କ'ଣ କରିପାରେ ।

ମାଲହୋତ୍ରା ଛୁଟିଗଲେ ଟେଲିଫୋନ୍ ପାଖକୁ । ରିସିଭରଟା କାନରେ ଦେଇ

ମୁହୂର୍ତ୍ତେ ଠିଆହେବା ପରେ ଆଖି ଯୋଡ଼ାକ କପାଳକୁ ଉଠିଗଲା । ଘଟଣା କ'ଣ ? ଲାଇନ୍‌ଟାରେ କିଛି ସୋର ଶବ୍ଦ ନାହିଁ । ଟେଲିଫୋନ୍‌ର ବୋତାମ ଚିପି ଚିପି ଆହୁରି କିଛି ସମୟ ଚେଷ୍ଟା କଲେ । କିନ୍ତୁ ନା, ମନେ ହେଉଛି ଲାଇନ୍‌ଟା ଅଚଳ ହୋଇଯାଇଛି। ରିସିଭରଟ । ଯଥାସ୍ଥାନରେ ରଖିଦେଇ ଶଙ୍କିତ କଣ୍ଠରେ କହିଲେ : ତା'ହେଲେ...ତା'ହେଲେ କ'ଣ...

: ହଁ, କୁହନ୍ତୁ ଏଥର କୁହନ୍ତୁ ତାଳ-ବେତାଳମାନେ ଲାଇନ୍‌ଟା କାଟି ଦେଇଛନ୍ତି । ସିଉନାରାୟଣ ପରିହାସ କଲା ପରି କହିଲା ।

: ଅସମ୍ଭବ ନୁହେଁ । ମାଲହୋତ୍ରା ସ୍ନାୟୁତନ୍ତ୍ରୀରେ ଏକ ପ୍ରବଳ ଉତ୍ତେଜନା ଅନୁଭବ କରୁଥିଲେ । ଚିତ୍କାର କରି କହିଲେ, ଶୁଣ ସିଉନାରାୟଣ ମୋର ଏହି ମୁହୂର୍ତ୍ତରେ ଗୋଟିଏ ବନ୍ଧୁକ ଦରକାର । ତମର ଯଦି କାମ କରିବାରେ ଇଚ୍ଛା ନାହିଁ, ତା'ହେଲେ ତମରି ବନ୍ଧୁକଟା ମୋତେ ଦେଇଦିଅ ।

: କିଏ କହିଲା ମୁଁ ମୋ କାମ କରୁନାହିଁ ? ସିଉନାରାୟଣର କଣ୍ଠସ୍ୱର ଉତ୍ୟକ୍ତ ହୋଇ ଉଠିଥିଲା । କହିଲା, ଆପଣ ଟିକେ ବୁଝି ଶୁଝି କଥା କୁହନ୍ତୁ । ମୋ ବନ୍ଧୁକ ମୁଁ ଆପଣଙ୍କୁ ଦେଇ ପାରିବି ନାହିଁ ।

: ତମ ବନ୍ଧୁକ ନଦିଅ, କିନ୍ତୁ ତମେ ମୋ କଥାକୁ ଏପରି ଅବିଶ୍ୱାସ କରନାହିଁ । ଏଇ କିଛି ସମୟ ପୂର୍ବରୁ ରଂଜିତାଦେବୀ ଦୂରରେ ସେଇ ଘାସ ବଣରେ ଦୁଇଜଣ ଲୋକ ଦେଖିଲେ । ସେମାନେ ତାଳ-ବେତାଳ ନ ହୋଇ ପାରନ୍ତି, କିନ୍ତୁ କିଏ ସେମାନେ ? ଆମେ ଟିକିଏ ଆଗେଇ ଯାଇ ଜାଗାଟାତ ଦେଖି ଆସି ପାରନ୍ତେ । ମାଲହୋତ୍ରା ଶାନ୍ତ ଅଥଚ ଗମ୍ଭୀର ସ୍ୱରରେ କହିଲେ ।

: ସେକଥା ଆପଣ ମୋତେ ଆଗରୁ କହୁ ନାହାନ୍ତି କାହିଁକି ? ଘାସବଣଆଡ଼େ ସିଉନାରାୟଣ ଆଗେଇ ଯାଉ ଯାଉ କହିଲା । ମୋ ଇଲାକା ଭିତରକୁ କେହି ଯଦି ଅସତ୍ ଉଦ୍ଦେଶ୍ୟରେ ପ୍ରବେଶ କରେ ତା'ହେଲେ ଆପଣ ଦେଖିବେ ମୁଁ ତାକୁ କିପରି ଶାସ୍ତି ଦେବି । ପୁଣି ଅଟକି ଯାଇ କହିଲା, ଆଚ୍ଛା ଟେଲିଫୋନ୍ ଲାଇନଟା କ'ଣ କିଏ କାଟି ଦେଇଛି ବୋଲି ଆପଣଙ୍କର ମନେ ହେଉଛି ?

: ହଁ, ମୋର ତ ସେଇଆ ମନେ ହେଉଛି । ମାଲହୋତ୍ରା ଉଦ୍‌ବିଗ୍ନ ହୋଇ ସିଉନାରାୟଣ ପଛେ ପଛେ ଚାଲିଥିଲେ ।

ଦୂରରେ ଆଉ ଜଣେ ପ୍ରହରୀ, ଅସ୍‌ଗର ହାତରେ ହାଲକା ଭାବରେ ବନ୍ଧୁକ ଧରି ସିଗାରେଟ ଟାଣୁଥିଲା । ସିଉନାରାୟଣକୁ ଦେଖି କହିଲା, ରାତିର ଭୋଜନଟା କେତେବେଳେ ମିଳିବ ?

: ମିଳିବ ମିଳିବ । ଏ ଆଡ଼େ କେହି ଲୋକ ଯିବା ଆସିବା କରିବାରେ ଦେଖିଛ ? ସିଉନାରାୟଣ ପଚାରିଲା ।

: କୋଉ ଲୋକ କଥା କହୁଚ । ତାଳ-ବେତାଳ ? ଅସ୍‌ଗର ବିଦ୍ରୂପର ହସ ହସି କହିଲା, ନା, ସେମାନେ ଏଯାଏ ଏଠାରେ ଆସି ପହଞ୍ଚିପାରି ନାହାନ୍ତି ।

ରଂଜିତା ଦେବୀ କୁଆଡ଼େ ଏଇ ଘାସବଣ ଭିତରେ ଦୁଇଜଣ ଲୋକଙ୍କୁ ଦେଖିଛନ୍ତି । ତମ ଆଖିରେ କେହି ପଡ଼ିନାହିଁ । ଭଦ୍ରମହିଳା ବୋଧହୁଏ ଭୁଲ୍ କହିଛନ୍ତି ।

ମୋର ତ ସେଇଆ ମନେ ହେଉଛି । ମାଲହୋତ୍ରାଙ୍କ ଆଡ଼େ ଚାହିଁ କହିଲା, ଶୁଣିଲେ ତ ?

: ନା ନା, ଅସ୍‌ଗର ତ ଢୋଳାଉଥିଲା । ମୁଁ କହୁଛି ଏଠାରେ ଦୁଇଜଣ ଲୋକ ଦେଖା ଯାଉଛନ୍ତି । ଅସ୍‌ଗର ପାଖକୁ ଆଗେଇଯାଇ ମାଲହୋତ୍ରା କହିଲେ, ତମେ ସଜାଗ ହୋଇ ପହରା ଦିଅ ବନ୍ଧୁ । ଏମିତି ଆଖି ମିଞ୍ଜି ମିଞ୍ଜି କରି ଚାହିଁଲେ ଚଳିବ ନାହିଁ ।

ମାଲହୋତ୍ରା ଆଉ କିଛି ବାଟ ଆଗେଇ ଯାଇ କହିଲେ, : ଆଉଜଣେ ପହରାବାଲା କୁଆଡ଼େ ଗଲା ?

ସିଏତ ଘର ପଛଆଡ଼ ରହିଚି । ତା'ସାଙ୍ଗରେ ବି କ'ଣ ଦେଖା କରିବେ ?

: ନିଶ୍ଚୟ । ମାଲହୋତ୍ରାଙ୍କୁ ଏମାନଙ୍କ ଆଚରଣ ଭଲ ଲାଗୁ ନଥିଲା । ଏମାନେ ବିପଦକୁ ବିପଦ ବୋଲି ମନେ କରୁ ନାହାନ୍ତି ଯେତେବେଳେ ଯେକୌଣସି ମୁହୂର୍ତ୍ତରେ ବିପଦ ଘଟିଗଲେ ଏମାନେ ବାଧାଦେଇ ପାରିବେ ନାହିଁ ।

ତାଳ-ବେତାଳ ଇତି ମଧରେ ହତା ଭିତରେ ପହଞ୍ଚିଯାଇ ଥିଲେ । ଜଗୁ ହାତରେ ଗୋଟାଏ ଲମ୍ବା ଇସ୍‌ପାତର ବାଡ଼ି ଧରିଥିଲା ଆଉ ସେଇ ବାଡ଼ି ମୁଣ୍ଡରେ ଲଗା ହୋଇଥିଲା ସରୁ ଶକ୍ତ ତାରରେ ତିଆରି ଗୋଟାଏ ଫାଶ । କିଛି ସମୟଯାଏ ସେଇ ପ୍ରହରା ରତ ଲୋକଟାକୁ ସେମାନେ ଲକ୍ଷ୍ୟକଲେ । ଲୋକଟା ପାଖ ଦିଆଲରେ ବନ୍ଧୁକଟା ଡେରିଦେଇ ଗୋଟାଏ ଛୋଟ ସ୍ତମ୍ଭ ଉପରେ ବସି ଗୋଡ଼ ହଲେଇ ଗୁଣୁ ଗୁଣୁ ଗୀତ ଗାଉଥିଲା । ଆଉ ମଝିରେ ମଝିରେ ଅଧୀର ହୋଇ ହାତ ଘଡ଼ି ଦେଖୁଥିଲା । ବୋଧହୁଏ ସିଏ ବି ରାତିର ଭୋଜନ ପାଇଁ ପ୍ରତୀକ୍ଷା କରୁଥିଲା ।

ଖଣ୍ଡେ ଦୂରରେ ମଙ୍ଗୁ ବନ୍ଧୁକଟା ଧରି ଲୋକଟାର କପାଳକୁ ଲକ୍ଷ୍ୟକରି ଠିଆ ହୋଇ ରହିଲା । ଜଗୁ ଆସ୍ତେଇ ଆସ୍ତେଇ ଧୀରେ ଧୀରେ ଆଗେଇ ଆସିଲା ପ୍ରହରୀ ପାଖକୁ । କିନ୍ତୁ ହାତରେ ସେ ଧରିଥିଲା ସେଇ ଇସ୍ପାତ ଦଣ୍ଡଟି । ପ୍ରହରୀଟାର ଅଳ୍ପ କେତେଗଜ ଦୂରରେ ପହଞ୍ଚି ଜଗୁ ତା' ହାତର ଇସ୍ପାତ ଦଣ୍ଡଟି ବଢ଼େଇଦେଲା ପ୍ରହରୀ ଆଡ଼େ । ଇସ୍ପାତ ଦଣ୍ଡ ଆଗରେ ଥିବା ତାରର ଫାଶଟି ଧୀରେ ଧୀରେ ଲମ୍ବିଗଲା ପ୍ରହରୀଟିର ବେକ ଚାରି ପାଖରେ । ତା'ଗଳାରେ କ'ଣ ସଲ ସଲ ହେଉଛି ସେକଥା ଜାଣିବା ଆଗରୁ ଜଗୁ ଇସ୍ପାତ ଦଣ୍ଡଠି ଟାଣି ଧରିଥିଲା କ୍ଷିପ୍ର ହସ୍ତରେ ।

ଗଳାରେ ଫାଶ ପିଇଯାଇଥିବାରୁ ପ୍ରହରୀର ମୁହଁରୁ ଆଉ କଥା ବାହାରିଲା ନାହିଁ । ମଙ୍ଗୁ ଛୁଟି ଆସି ତା' ବନ୍ଧୁକଟି ଛଡ଼ାଇନେଲା । ତା'ପରେ ପ୍ରହରୀଟିର ନିଶ୍ୱାସ ପ୍ରଶ୍ୱାସ ବନ୍ଦ ହୋଇ ଧୀରେ ଧୀରେ ସେ ଧରାଶାୟୀ ହୋଇପଡ଼ିଲା । ମୁହଁରୁ ରକ୍ତ ଝଲକାଏ ଝରି ପଡ଼ିଲା ।

ସେମାନେ ବୁଝିଲେ ସବୁ ଶେଷ ହୋଇ ଯାଇଛି । ଆଉ ମୁହୂର୍ତ୍ତେ ଡେରି ନ କରି ଜଗୁ ସହ ମଙ୍ଗୁ ପ୍ରହରୀଟିକୁ ଧରାଧରି କରି ଅନ୍ଧକାର ବଗିଚା ଭିତରକୁ ନେଇଗଲେ ।

ଟିକକ ପରେ ସେଇଠି ଆସି ପହଞ୍ଚିଲେ ମାଲହୋତ୍ରା ଓ ସିଉନାରାୟଣ ।

: କାହିଁ, ଲୋକଟା ଗଲା କୁଆଡ଼େ ? ଆଖ ପାଖରେ କେଉଁଠି ତ ଦିଶୁନାହିଁ ? ମାଲହୋତ୍ରା ପଚାରିଲେ ।

: ଏଇଠିତ ଥିଲା । ମୁଁ ନକହିବା ଯାଏ ସେ ତ ଜାଗାଛାଡ଼ି କୁଆଡ଼େ ଯିବାକଥା

ନୁହେଁ । ସିଉନାରାୟଣ ଚିତ୍କାର କରି ଡାକ ଛାଡ଼ିଲା, ରସିକଲାଲ, ରସିକଲାଲ !

ଅନ୍ଧକାରରରେ ଠିଆ ହୋଇ କିଛି ସମୟ ଯାଏ ଅପେକ୍ଷା କଲେ । କୁଆଡୁ କିଛି ଉତ୍ତର ଆସିଲା ନାହିଁ ।

ଇତ୍ୟବସରରେ ତାଳ-ବେତାଳ ଅନ୍ଧକାର ଭିତରେ ଚଳନ୍ତଯଛାୟା ପରି ଆଗେଇ ଯାଇଥିଲେ୍ ସଦର ଦରଜା ଆଡ଼େ । ଅସଗ୍ର ବନ୍ଧୁକଟା ଚେଆରରେ ଡେରି ଆଉ ଗୋଟାଏ ସିଗାରେଟ ଲଗାଉଥିଲା ।

ମାଲହୋତ୍ରା ରାଗି ଲାଲ ହୋଇ ଯାଉଥିଲେ । ଚିତ୍କାର କରି କହୁଥିଲେ : ଇନ୍‌ସ୍ପେକ୍ଟର ରଣଧୀରଙ୍କୁ ନିହାତି କହିବାକୁ ହେବ । ଯେତେସବୁ ଅକର୍ମା ଲୋକଗୁଡ଼ାଙ୍କୁ ଏଠାକୁ ପଠାଉଛନ୍ତି...

ସିଉନାରାୟଣ କିନ୍ତୁ ଏହା ଭିତରେ ଉଦ୍‌ବିଗ୍ନ ହୋଇ ଉଠିଥିଲା ମନକୁ ମନ କହିଲା : ତା'ର ତ ଏଇଠି ରହିବାର କଥା । ତା'ପରେ ଆଉ ଟିକିଏ ଦୂରକୁ ଆଗେଇ ଯାଇ ବଡ଼ପାଟିରେ ଡାକିଲା, : ରସିକଲାଲ ! ରସିକଲାଲ

: ମନେ ହେଉଛି ତମେ ତାକୁ ରୋଷେଇ ଘରେ ଖୋଜି ପାଇବ । ମାଲହୋତ୍ରା ରାଗ ସମ୍ଭରଣ କରି ନପାରି ପଛକୁ ପାଦ ଫେରାଇଲେ ।

ତାଳ-ବେତାଳମାନେ ଇତ୍ୟବସରରେ କେବଳ ମାତ୍ର ଅସ୍‌ଗରର ଦେହଟାକୁ ସେଠାରୁ ଦୂରେଇ ନେଇ ପାରିଥିଲେ । ସେମାନେ ତା'ର ବନ୍ଧୁକ ଆଉ ଟୋପିଟାକୁ ଉଠେଇ ନେବାକୁ ସମୟ ପାଇନଥିଲେ ।

: ଏଥର ବୋଧେ ଅସ୍‌ଗର ବି ଚମ୍ପଟ ଦେଇଛି । ତା'ର ସିଗାରେଟ୍‌ର ନିଆଁ ଦେଖି ନପାରି ମାଲହୋତ୍ରା କହିଲେ । ଚିତ୍କାର କରି ଡାକିଲେ ଅସ୍‌ଗରର ସାହେବ । ତମେ କୋଉଠି ?

: ଆପଣ କ'ଣ କହିବାକୁ ଚାହାନ୍ତି ଅସଗରବି କାମ ଛାଡ଼ି ପଳେଇ ଯାଇଚି ? ସିଉନାରାୟଣ କହିଲା ।

: ସେଇ ରକମତ ମନେ ହେଉଛି । କାହିଁ ସେ ତ ଏଠି କୋଉଠି ଥିଲାପରି ଦିଶୁନାହିଁ ।

ସିଉନାରାୟଣ ତା' ଶକ୍ତିଶାଳୀ ଟର୍ଚ୍ଚଟା ବାହାର କରି ଜଳେଇଲା । ସେ ଆଶ୍ଚର୍ଯ୍ୟ ହୋଇ ଦେଖିଲା ଅସ୍‌ଗରର ବନ୍ଧୁକଟା ଚେଆରକୁ ଲାଗି ଡେରା ହୋଇଛି, ଟୋପିଟା ତଳେ ପଡ଼ିଚି । କିନ୍ତୁ ଅସ୍‌ଗର ?

: ଅସ୍‌ଗର ! ଅସ୍‌ଗର ! ଚିତ୍କାର କରି କିରି ସିଉନାରାୟଣ ଆଗେଇ ଗଲା। ତା' କଣ୍ଠସ୍ୱର ହଠାତ୍ କିପରି ବେସୁରା ହୋଇ ଉଠିଥିଲା ।

: ଟର୍ଚ୍ଚଟା ବନ୍ଦ କରିଦିଅ । ଅସ୍‌ଗରର ବନ୍ଧୁକଟା ମାଲହୋତ୍ରା ଉଠେଇ ନେଇ କହିଲେ । ତମେ ଶୀଘ୍ର ଭିତରକୁ ଆସ ।

ମାଲହୋତ୍ରା ଭିତରେ ପଶି ସଦର ଦରଜା ବନ୍ଦ କରିଦେବା ପରେ ସିଉନାରାୟଣ କହିଲା: ସେମାନଙ୍କର କ'ଣ ହେଲା ?

: ମୁଁ ତ ତୁମକୁ ସେତେବେଳୁ କହୁଛି ତାଳ-ବେତାଳ ଏଠାକୁ ଆସି ଯାଇଛନ୍ତି । ଏହାପରେ କ'ଣ ତମେ ଆହୁରି ପ୍ରମାଣ ଚାହ ?

: ସିଉନାରାୟଣଙ୍କୁ ଦୂରକୁ ଠେଲିଦେଇ ରୋଷେଇଘରେ ପଶିଲେ ମାଲହୋତ୍ରା । ଭିତରେ କେହିନାହିଁ । ଦରଜା ବନ୍ଦକରି ହଲଘରକୁ ଫେରି ଆସିଲେ ସେମାନେ । ସିଉନାରାୟଣଙ୍କୁ କହିଲେ: ତମେ ଏଇଠି ଥାଅ । ଆଖି ଦୁଇଟା କିନ୍ତୁ ଖୋଲା ରଖିବ । ମୁଁ ଉପରକୁ ଯାଉଛି । ସେମାନଙ୍କର ଲକ୍ଷ୍ୟ ହେଲା ଶଙ୍କର । କିନ୍ତୁ ତାକୁ ସେମାନେ ପାଇବେ ନାହିଁ । ପ୍ରତିରୋଧର ପ୍ରଥମ ସ୍ଥାନରେ ତମେ ରହିଲ । ସାବଧାନ । ସେମାନେ ପୁଣି ତମକୁ ଯେପରି କାବୁ କରି ନ ବସନ୍ତି ।

ହତଚକିତ ସିଉନାରାୟଣଙ୍କୁ ସେଠାରେ ଛାଡ଼ିଦେଇ ମାଲହୋତ୍ରା ଉପରକୁ ଉଠିଗଲେ । ଶିଡ଼ି ମୁଣ୍ଡରେ ରଂଜିତା ସହିତ ଦେଖା ହୋଇଗଲା ।

: ସବୁ ଠିକ୍ ଅଛି ତ ? ରଂଜିତା ପ୍ରଶ୍ନକରି ମାଲହୋତ୍ରା ଆଡ଼େ ଚାହିଁଲା । କିନ୍ତୁ ମନେ ହେଲା ତାଙ୍କ ମୁହଁର ଭାବ ସ୍ୱାଭାବିକ ନୁହେଁ । କ'ଣ ହୋଇଚି ?

: ଅନେକ କିଛି । ସେମାନେ ଆମ ଏଇଠି ଥିଲେ । ଦି'ଟା ପହରାବାଲାଙ୍କୁ କାବୁ କରି ସାରିଲେଣି । ବର୍ତ୍ତମାନ ବାକି ଅଛ ତମେ, ମୁଁ, ସିଉନାରାୟଣ, ଲିସା ଆଉ ନର୍ସଟି । ସେମାନେ ଟେଲିଫୋନ୍‌ର ତାର କାଟି ଦେଇଛନ୍ତି । ତେଣୁ ଆମେ ଏଠୁ ବାହାରକୁ ଯାଇ ନ ପାରିଲେ...

: ମୁଁ ଯିବି, ସଙ୍ଗେ ସଙ୍ଗେ ରଂଜିତା କହିଲା । ଆମ ଖମାର ଘରୁ ଯାଇ ଲୋକମାନଙ୍କୁ ଡାକି ଆଣିବି ।

: ଭଲ କଥା । କିନ୍ତୁ ବର୍ତ୍ତମାନ ନୁହେଁ । ମାଲହୋତ୍ରା କହିଲେ, ଆମେ ଏତେ ସହସା ଝୁଙ୍କି ନେଇ ପାରିବା ନାହିଁ । ସେମାନେ ତମକୁ ଯଦି ଧରି ନିଅନ୍ତି, ତା'ହେଲେ ଆମେ ସମସ୍ତେ ଅସହାୟ ହୋଇ ପଡ଼ିବୁ । ତା'ଠାରୁ ବୁଦ୍ଧିମାନର କାମ ହେବ ବର୍ତ୍ତମାନ ଆମକୁ ଅପେକ୍ଷା କରିବା । ସେମାନେ ଘରଭିତରକୁ ପଶିବାକୁ ଚେଷ୍ଟାକଲେ ତମେ ପଛ ଦରଜା ଦେଇ ବାହାରିଯିବ ।

: ତା'ହେଲେ ଅନେକ ଡେରି ହୋଇଯିବ । ଖମାର ଘରେ ପହଞ୍ଚିବାକୁ ମୋତେ ଅନ୍ତତ ଦଶ ମିନିଟ୍ ସମୟ ଲାଗିବ । ମୁ ବରଂ ଏଇ ମୁହୂର୍ତ୍ତରେ ବାହାରି ଯାଏ ।

: ସେମାନେ ଠିକ୍ କୋଉଠି ଅପେକ୍ଷା କରିଛନ୍ତି ଆମେ ତ ଜାଣି ନାହାନ୍ତି । ତେଣୁ ତମେ ଯାଇ ପାରିବ ନାହିଁ । ମାଲହୋତ୍ରା ଦୃଢ଼ ସ୍ୱରରେ କହିଲେ। ଲିସା କୋଉଠି ?

: ଶଙ୍କର ପାଖରେ ।

: ଠିକ୍ ଅଛି । ସେ ଶଙ୍କର ପାଖରେ ଥାଉ । ଶଙ୍କର ହିଁ ସେମାନଙ୍କର ଲକ୍ଷ୍ୟ । ତେଣୁ ସେମାନେ ଯଦି ଘରେ ପଶି ପାରନ୍ତି, ପ୍ରଥମେ ଯିବେ ଶଙ୍କର ପାଖକୁ ।

ଆପଣମାନେ ମୋତେ ଏଠି ଏକା ଛାଡ଼ି ଯାଉ ନାହାନ୍ତି ତ ? ଆବେଦନ ସ୍ୱରରେ ତଳୁ କହିଲା ସିଉନାରାୟଣ ।

: ଯିବୁନି କାହିଁକି ? ତାଳ-ବେତାଳ ପିଲାମାନଙ୍କୁ ଡରେଇବାର ଗୋଟାଏ ଗଳ୍ପ । ମନେ ଅଛିତ ? ଆଉ ତମେ ତ ପିଲା ନୁହଁ, ତମର ଡର କ'ଣ ? କଣ୍ଠରେ ବିରକ୍ତି ଫୁଟାଇ ମାଲହୋତ୍ରା କହିଲେ । ରଂଜିତାର ହାତ ଧରି ସେ ଆଗେଇ ଗଲେ ଶଙ୍କର ଯେଉଁ ଘରେ ଶୋଇଥିଲା ।

ଏମାନେ ଘରେ ପ୍ରବେଶ କରିବା ଆଗରୁ ଲିସା ଇଂଗିତରେ ସେମାନଙ୍କୁ କଥା

କହିବା ପାଇଁ ବାରଣ କଲା । କିନ୍ତୁ ମାଲହୋତ୍ରା ଶଙ୍କରର ବିଛଣା ପାଖରେ ଯାଇ ଠିଆ ହେବାକ୍ଷଣି, ଶଙ୍କର ନିସ୍ତେଜ ଆଖିରେ ଚାହିଁଲା ତାଙ୍କ ଆଡ଼େ ।

: ଖବର କ'ଣ ? ମାଲହୋତ୍ରା ଶାନ୍ତ ଗଳାରେ ପ୍ରଶ୍ନ କଲେ । ଲିସାକୁ ପାଇ ଖୁସି ତ ?

ଶଙ୍କର ହସିବାକୁ ଚେଷ୍ଟା କଲା ଟିକିଏ । ହାତ ବଢ଼େଇଲା ଲିସା ଆଡ଼େ । କ୍ଷୀଣ କଣ୍ଠରେ କହିଲା  ଆପଣଙ୍କୁ ଧନ୍ୟବାଦ । ଲିସାକୁ ପାଇ ମୁଁ ବାରଣ୍ଣା ସୁସ୍ଥ ହୋଇ ଉଠିଛି ।

: ଶଙ୍କରର କିନ୍ତୁ କଥା କହିବା ଉଚିତ ନୁହେଁ । ମାଲହୋତ୍ରାଙ୍କ ଆଡ଼େ ଚାହିଁ ନର୍ସ କହିଲା ।

: ଆପଣ ଠିକ୍ କହିଛନ୍ତି । କେଇପାଦ ଆଗେଇ ଯାଇ ମାଲହୋତ୍ରା ଲିସାକୁ ଇଂଗିତରେ ପାଖକୁ ଡାକିଲେ । କହିଲେ : ମୁଁ ଟିକେ ବାହାରୁ ଆସୁଛି । ତୁମେ ଶଙ୍କର ପାଖରେ ଥାଅ ।

ମାଲହୋତ୍ରା ଘରୁ ବାହାରି ଆସି ରଂଜିତା ପାଖରେ ଠିଆ ହେଲେ ।

: ଶୁଣ, ତମେ ଠିକ୍ କହିଥିଲ । ସେମାନେ ବାହାରେ ଅଛନ୍ତି । ଦୁଇଜଣ ପହରାବାଲାଙ୍କୁ କାବୁ କରି ସାରିଲେଣି । ତୁମେ ଶଙ୍କର ଆଡ଼େ ଦୃଷ୍ଟି ରଖିଥାଅ । ମୁଁ ଠିକ୍ ଦରଜା ବାହାରେ ରହିଛି । ସିଉନାରାୟଣ ଶିଡ଼ି ମୁଣ୍ଡରେ ପହରା ଦେଉଛି । ତୁମେ ଘରର ଦରଜା ବନ୍ଦକରି ବସିରୁହ । ଭୟର କିଛି କାରଣ ନାହିଁ । ସେମାନେ ଶଙ୍କର ପାଖକୁ ଆସି ପାରିବେ ନାହିଁ ।

: ନା, ସେମାନେ ଶଙ୍କରକୁ ଆଦୌ ପାଇବେ ନାହିଁ । ଲିସା ଆଖିରେ ନିଆଁ ଜଳୁଥିଲା, ମୁହଁରେ ଦୃଢ଼ତା ଫୁଟି ଉଠିଥିଲା ।

: ସୁନା ଝିଅଟି ପ୍ରା । ତମେ ଶଙ୍କର ପାଖକୁ ଯାଅ । ଲିସାକୁ ପୁଣି ଘର ଭିତରକୁ ପଠାଇ ଦେଇ ମାଲହୋତ୍ରା ରଂଜିତା ମୁହଁକୁ ଚାହିଁଲେ । ବର୍ତ୍ତମାନ ପରିସ୍ଥିତିରେ ଏହାଛଡ଼ା ଆମର ଆଉ କିଛି କରିବାର ନାହିଁ । ସେମାନେ କ'ଣ କରିବାକୁ ଚାହାନ୍ତି ତାଙ୍କ ତରଫରୁ ଆରମ୍ଭ କରନ୍ତୁ ।

: କିନ୍ତୁ ମୁଁ ଯାଉଚି, ଖମାର ଘରକୁ ଯିବାକୁ ହେଲେ ଆଉ ଡେରି କରିବା ଉଚିତ ନୁହେଁ । ଅନ୍ଧକାର ହେଲେ ବି ସେଠାକାର ପ୍ରତି ଇଞ୍ଚ ରାସ୍ତା ମୋତେ ଭଲ ଭାବରେ ଜଣା ଅଛି । ଆଉ ବେଶି ସମୟ ଅପେକ୍ଷା କିରବା ଉଚିତ ହେବନାହିଁ ।

: ତା'ହେଲେ ବରଂ ମୁଁ ଯାଉଛି । ମାଲହୋତ୍ରା କହିଲେ । ଏପରି ଏକ ବିପଦ ସଂକୁଳ ପରିସ୍ଥିତିରେ ତମକୁ ଏକା ଛାଡ଼ିଦେବାକୁ ମୋର ଭରସା ହେଉନାହିଁ ।

: ଆଉ ବେଶି ଯୁକ୍ତି କରନାହିଁ । ତମେ ଆସ । ମୋତେ ଟିକେ ଆଗେଇ ଦେଇ ଆସିବ ।

ଟାଲ-ବେତାଳ ଠିକ୍ ଏହିପରି ଏକ ସୁଯୋଗର ଅପେକ୍ଷାରେ ଥିଲେ । ଝରକା କବାଟ ପାଖରେ ଅନ୍ଧକାର ଭିତରେ ଲୁଚି ଠିଆ ହୋଇଥିଲା ମଙ୍ଗୁ, ଜଗୁ ଅପେକ୍ଷା କରିଥିଲା ସଦର ଦରଜା ପାଖରୁ ଅଳ୍ପ କେଇଫୁଟ ଦୂରରେ । ଦିଆଲ ସହିତ ସେ ଏକ ପ୍ରକାର ମିଶି ଯାଇଥିଲା ।

: ଝରକା ବାଟେ ଚେଷ୍ଟା କରି ମୁଁ ଆଗ ଦେଖେଁ, ମାଲହୋତ୍ରା କହିଲେ । ଯଦି ମନେହୁଏ ରାସ୍ତା ବିପଦମୁକ୍ତ ତା'ହେଲେ ତମେ ଆଖି ବୁଜି ଦଉଡ଼ି ଚାଲିଯିବ ଖମାର ଘର ଆଡ଼େ ।

: ହଁ ମୁଁ ଦଉଡ଼ି ପାରିବି । ଶିଡ଼ିରେ ଓହ୍ଲଉ ଓହ୍ଲଉ ରଂଜିତା କହିଲା ।

ଶିଡ଼ିତଳେ ସିଉନାରାୟଣ ପହରା ଦେଉଥିଲା । ଝାଳରେ ତା' ମୁହଁ ଚିକ୍ ଚକ୍ କରୁଥିଲା । ମାଲହୋତ୍ରା କହିଲେ : ରଂଜିତା ଦେବୀ ଖମାର ଘରକୁ ଯାଉଛନ୍ତି ଲୋକ ଡାକିବା ପାଇଁ । ତମେ ଏଇଠୁ ପାଦେ ହଲଚଲ ହେବନାହିଁ । ମୁଁ ତାଙ୍କୁ ଛାଡ଼ିଦେଇ ସଙ୍ଗେ ସଙ୍ଗେ ଫେରି ଆସୁଛି ।

ମାଲହୋତ୍ରା ରଂଜିତାକୁ ନେଇ ରୋଷେଇ ଘର ଭିତରେ ପଶିଲେ । ଗୋଟାଏ ଝରକା ଖୋଲି ଉଙ୍କିମାରି ଚାହିଁଲେ ଚାରି ଆଡ଼କୁ । ସବୁଆଡ଼ ଅନ୍ଧକାର। ନିଶୂନ । ଅନ୍ଧକାରରେ ଆଖି ସହିବା ଯାଏ ଦୁହେଁ ଚାହିଁଲେ ବାହାରକୁ । ବାହାରେ କିଛି ବିପଦର ସଂକେତ ଥିଲାପରି ମନେ ହେଉ ନାହିଁ ।

କିନ୍ତୁ ସେଇ ଅନ୍ଧକାର ଭିତରେ ଗୋଟାଏ ଖମ୍ବ ଆଢୁଆଳରେ ଠିଆ ହୋଇ ଏମାନଙ୍କୁ ଲକ୍ଷ୍ୟ କରୁଥିଲା ମଙ୍ଗୁ । ମନେ ମନେ ହସୁଥିଲା ଆଉ ସୁଯୋଗର ପ୍ରତୀକ୍ଷା କରୁଥିଲା ।

ଧୀରେ, ରୋଷେଇ ଘର ଦରଜା ଖୋଲି ମାଲହୋତ୍ରା ବାହାରକୁ ଆସିଲେ। ଚାରିଆଡ଼େ ଥରେ ଭଲକରି ଆଖି ବୁଲେଇ ନେଲେ । ତା'ପରେ ଧୀରେ ଧୀରେ ରଂଜିତା କାନ ପାଖରେ କହିଲେ : ସୋମାନେ ବୋଧହୁଏ ସଦର ଦରଜା ଆଡ଼େ ଯାଇଛନ୍ତି । ତୁମେ ପାଦ ଚିପି ଚିପି ଏଇବାଟେ ବାହାରିଯାଅ । ଖୁବ୍ ସାବଧାନ । ଯେପରି କିଛି ଶବ୍ଦ ନ ହୁଏ ।

ରଂଜିତା ଆଗେଇ ଯାଉଥିଲା । ମାଲହୋତ୍ରା ରଂଜିତାକୁ ନିଜ ଆଡ଼କୁ ଭିଡ଼ିଆଣି ଟିକିଏ ଆଦର କଲେ । ତା'ପରେ ରଂଜିତା ଧୀରେ ଧୀରେ ବାହାରିଗଲା । ପରମୁହୂର୍ତ୍ତରେ ଘନ ଅନ୍ଧକାର ଗ୍ରାସ କରିନେଲା ରଂଜିତାକୁ ।

ବିଶାଳ ପ୍ରାସାଦ ପୁରୀ ଏକ ପ୍ରକାର ନିର୍ଜ୍ଜନ, ନିସ୍ତବ୍ଧ ।

ଲିସାକୁ ଶଙ୍କର ଉପରେ ଦୃଷ୍ଟି ରଖିବାକୁ କହି ନର୍ସଟି ଆର ଘରକୁ ଚାଲି ଯାଇଚି । ଆଣ୍ଠୁ ଉପରେ ବନ୍ଧୁକ ରଖି ଶିଡ଼ି ପାଖରେ ବସି ରହିଛି ସିଉନାରାୟଣ । ହଲଘର ସିଡ଼ି ସର୍ବତ୍ର ଆଲୋକର ବନ୍ୟା । ହଲଘର ଘଡ଼ିଟା ଏଗାରଟା ବାଜିବାର ସଙ୍କେତ ଘୋଷଣା କଲା । ପ୍ରାୟ ପନ୍ଦର ମିନିଟ୍ ହେବ ରଂଜିତା ଏଠାରୁ ଯାଇଛି । ମାଲହୋତ୍ରା ଭାବୁଛନ୍ତି ହୁଏତ ଆଉ କେତେ ମିନିଟ୍ ପରେ ଖମାର ଘରୁ ଦଳବଳ ନେଇ ରଂଜିତା ଫେରି ଆସିବ । ସେତେବେଳେ ଆଉ ତାଳ-ବେତାଳଙ୍କର ଆକ୍ରମଣ ଆଶଙ୍କାରେ ଏମିତି ଭୀତଚକିତ ହୋଇ ପ୍ରତୀକ୍ଷା କରିବାକୁ ପଡ଼ିବ ନାହିଁ ।

ଶୋଇବାଘରେ ହଠାତ୍ ଆଖିମେଲି ଶଙ୍କର ଚାହିଁଲା । ଏତେବେଳଯାଏ ସେ ନିଶ୍ଚିନ୍ତରେ ଶୋଇଥିଲା । ଏଥର ତା' ମୁହଁରେ ହସ ଫୁଟିଲା । ସେ ସତେଜ ମନେ ହେଉଥିଲା । ଗୋଟିଏ ହାତ ପ୍ରସାରିତ କଲା ଲିସା ଆଡ଼କୁ ।

: ତମପାଇଁ ମୋର ଯାହା ଦୁଶ୍ଚିନ୍ତା ହେଉଥିଲାନା ! ଶଙ୍କର କହିଲା, ଅସୁସ୍ଥ ହୋଇ ପଡ଼ିବା ପରଠାରୁ ମୋର ସମଗ୍ର ଚେତନା ଭିତରେ କେବଳ ତୁମରି ରୂପ । ମୁଁ ତୁମକୁ ଭଲପାଏ ଲିସା... ତୁମେ କ'ଣ ସେ କଥା ଜାଣ ? ତୁମକୁ ମୋର ଦେବାପାଇଁ ଆଜି କିଛି ନାହିଁ କିନ୍ତୁ ଲିସା ମୋର କ'ଣ  ମନେ ହେଉଚି ଜାଣ ? ଏଇ ମୁହୂର୍ତ୍ତରେ ମୁଁ ତମକୁ...

: ଚୁପ୍ କର ଶଙ୍କର । ଲିସା ଶଙ୍କରର ମୁଣ୍ଡରେ ହାତ ବୁଲେଇଲା । ଏପରି ଅବସ୍ଥାରେ ତମର କଥା କହିବା ପାଇଁ ମନା ତମେ ବିଶ୍ରାମ କର । ମୁଁ ଚାହେ ତମେ ଶୀଘ୍ର ଆରୋଗ୍ୟ ଲାଭ କର । ଲିସା ଶଙ୍କରର ଦେହ ସାରା ହାତ ବୁଲେଇବାକୁ ଲାଗିଲା ।

ମୁଁ ଠିକ୍ ଅଛି ଲିସା । ଅନେକ ଭଲହୋଇ ଉଠିଲିଣି । ଦେହରେ ଜୋର୍ ପାଇଲିଣି । ଆଉ କେତେଦିନ ପରେ ମୁଁ ଭଲ ହୋଇଗଲେ ତମେ କିଏ, ତମର ପରିଚୟ ଖୋଜି ବାହାର କରିବାକୁ ହେବ । ଜାଣିବାକୁ ହେବ, ତମେ କାହିଁକି ସେଇ ଟ୍ରକ୍‌ଟାରେ ଚଢ଼ିଥିଲ, କୁଆଡ଼କୁ ଯାଉଥିଲ...

: ନା ନା ଶଙ୍କର, ଲିସା ଚିତ୍କାର କରି ଉଠିଲା । କିପରି ଏକ ବିଶାଳ ଆତଙ୍କର ଛାୟା ତା'ଦେହ ମୁହଁରେ ଫୁଟି ଉଠିଲା । ସେ ବିଚଳିତ କଣ୍ଠରେ କହିଲା, ସେ କଥା କୁହନାହିଁ ଶଙ୍କର, ମୋତେ ଡର ଲାଗୁଛି । ନିଜର ପରିଚୟ ଜାଣିବା ପାଇଁ ମୋତେ ଡର ଲାଗୁଛି । ସେ ଝିଅଟା ମୋତେ କହିଚି ପାଗଳ । ଆଚ୍ଛା କହିଲ ଶଙ୍କର, ମୁଁ କ'ଣ ସତରେ ପାଗଳ ? ବେଳେ ବେଳେ ମୋତେ ଏତେ ଡର ଲାଗେ ଯେ, ମୋର ମନେ ହୁଏ ମୁଁ ତୁମକୁ ବାହା ହେଇ ପାରିବି ନାହିଁ ।

: ଆରେ ନା ନା, ତୁମେ କାହିଁକି ପାଗଳ ହେବ । ତୁମେ ମୋଟେ ପାଗଳ ନୁହଁ । ତମ ମୁଣ୍ଡରେ କିଛି ଗୋଟାଏ ବଡ଼ ଧରଣର ଆଘାତ ଲାଗିଥିଲା, ଯୋଉଥିପାଇଁ ତମେ ସବୁ ଭୁଲି ଯାଇଛ । ମୁଁ ଜାଣେ ସେଇ ଆଘାତ ସ୍ଥାନଟା ଚିକିତ୍ସା କଲେ ଭଲ ହୋଇଯିବ । ତୁମେ ତମର ସ୍ମୃତି ଶକ୍ତି ଫେରି ପାଇବ । ସେଥିପାଇଁ ତୁମେ ମୋଟେ ଚିନ୍ତାକର ନାହିଁ । ଶଙ୍କର ଲିସାକୁ ସାନ୍ତ୍ୱନା ଦେଲା ।

ଲିସା ଶଙ୍କରକୁ ଏତେ ପାଖରେ ଏବଂ ଏତେ ନିବିଡ଼ଭାବରେ ପାଇ ମଧ୍ୟ ହଠାତ୍ ତା'ର କାହିଁକି ମନେହେଲା ବାହାର ଅନ୍ଧକାରରେ ତାଳ-ବେତାଳ ପ୍ରତୀକ୍ଷା କରିଛନ୍ତି । ସେମାନେ ହୁଏତ... ଲିସା ଆଉ ଚିନ୍ତାକରି ପାରିଲା ନାହିଁ । ତା'ର ସମସ୍ତ ଶରୀର କିପରି ଏକ ଅଜଣା ଆଶଙ୍କାରେ ଶିହରୀ ଉଠିଲା ।

: ତମେ ଡରୁଛ ଲିସା ? କାହାକୁ ତମର ଡର ? ଆଉ କେଇଦିନ ପରେ ସବୁ ଠିକ୍ ହୋଇଯିବ । ମୁଁ ଖାଲି ଟିକିଏ ସୁସ୍ଥହୋଇ ଉଠେ ।  ତା'ପରେ ଖାଲି ତମେ ଆଉ ମୁଁ । ମୁକ୍ତ ଆକାଶ ତଳେ ଆମେ ଦୁଇଟି ପ୍ରଜାପତି । ଉଡ଼ି ବୁଲିବା, ଘୂରିବୁଲିବା, ଘୂରିବୁଲିବା । ବାଧା ବନ୍ଧନ କିଛି ନଥିବ । ମୁଁ ଅସୁସ୍ଥ ହୋଇ ପଡ଼ିଥିବା ବେଳେ ଯେତେବେଳେ ମୋର ଟିକିଏ ଜ୍ଞାନ ଫେରିଚି, ମୁଁ ଖାଲି ଦେଖିଚି ତମରି ମୁହାଁ ଅନୁଭବ କରିଛି ତମରି ସାନ୍ନିଧ । ହଁ ତମେ ଆଉ ମୁଁ । ମୁଁ ଆଉ ତମେ। ଦୁଇଟି ମୁକ୍ତ ଆକାଶର ବିହଙ୍ଗ । ତମେ ଚିନ୍ତା କରନି ଲିସା । ଭୟ କରନି । ସବୁ ଠିକ୍ ହୋଇଯିବ ।

ଶଙ୍କରର ଦୃଷ୍ଟିରୁ ନିଜର ଅଶ୍ରୁ ଲୁଚେଇବା ପାଇଁ ଲିସା ଶଙ୍କରର ଛାତି ଉପରେ ମୁହଁ ଗୁଞ୍ଜି ଦେଲା ।

: ଆଉଥରେ ଟେଲିଫୋନ୍ କରି ଦେଖ । ମୁଁ ଜାଣେ ସେଠି ନିଶ୍ଚୟ କେହି ଥିବ । ସବ୍‌ଇନିସ୍‌ପେକ୍ଟର ଜାନକୀ ନନ୍ଦନ ଟେଲିଫୋନ୍ ଅପରେଟରକୁ କହିଲେ । ତା'ପରେ ଇନିସ୍‌ପେକ୍ଟର ରଣଧୀରଙ୍କ ଆଡ଼େ ଚାହିଁ କହିଲେ, ଝିଅଟା କହୁଛି, ସେଠି କେହି କୁଆଡ଼େ ଟେଲିଫୋନ୍ ଧରୁନାହାନ୍ତି ।

ଇନିସ୍‌ପେକ୍ଟର ରଣଧୀର ଫାଇଲ ଉପରୁ ମୁହଁ ଉଠାଇ କହିଲେ : ତମେ ଏଇ ଅପରେଟରମାନଙ୍କ କଥା ଜାଣି ନାହଁ ! ସେ କେତେବେଳେ କୋଉ ନମ୍ବର ଡାଏଲ କରନ୍ତି, ସେ ଖବର କେବଳ ଭଗବାନଙ୍କୁ ଗୋଚର ।

ପୁଣି ଟେଲିଫୋନ୍‌ଟା ବାଜି ଉଠିଲା । ରିସିଭର ଉଠାଇ ଜାନକୀନନ୍ଦନ ଶୁଣିଲେ : ସେ ଫୋନଟା କୁଆଡ଼େ ଖରାପ ହୋଇ ଯାଇଛି ।

: ଭଲକରି ପରୀକ୍ଷା କରି ପୁଣି ଖବର ଦିଅ । ଇଏ ଗୋଟାଏ ଜରୁରୀ ସମସ୍ୟା । ଜାନକୀ ନନ୍ଦନ ଅପରେଟରଙ୍କୁ ନିର୍ଦ୍ଦେଶ ଦେଲେ ।

: କିଛି ଆଉ ଘଟିଲାକି...ସିଉନାରାୟଣଟା ସେମିତି କିଛି ଚାଲାକ ଚତୁର ନୁହେଁ । ମୁଁ ତାକୁ କହିଥିଲି ପ୍ରତି ଦୁଇ ଘଣ୍ଟାରେ ସେ ମୋତେ ସେଠିକା ପରିସ୍ଥିତି ସମ୍ବନ୍ଧରେ ଫୋନ୍ କରିବା ପାଇଁ କିନ୍ତୁ...କ'ଣ ହେଲା । କିଛି ତ ଖବର ଦେଲାନାହିଁ । ତେଣେ ତାଳ-ବେତାଳମାନେ କ'ଣ ତା'ହେଲେ ...

: କିନ୍ତୁ ମିସ୍ ରଂଜିତା ଘରେ କିଛି ଗୋଟାଏ ଅଘଟଣ ଘଟିଲେ ଅସୁନ୍ଦର କଥା ହେବ । ଥରେ ଯାଇ ଦେଖି ଆସିଲେ କେମିତି ହୁଅନ୍ତା ? ଜାନକୀ ନନ୍ଦନ କହିଲେ ।

: ବହୁତ ଦୂର ଯେ ! ରଣଧୀର କହିଲେ । ତା'ଛଡ଼ା ରାତି ଢେର୍ ହେଲାଣି । ତା'ପରେ ମୁଁ ଭୀଷଣ କ୍ଳାନ୍ତ ।

ପୁଣି ଟେଲିଫୋନ୍‌ଟା ବାଜି ଉଠିଲା । ଅପରେଟର୍‌ର କଥା ଶୁଣି ଗର୍ଜନ କରି ଉଠିଲେ ରଣଧୀର ।

: ସେ କହୁଛି ରଂଜିତାର ଲାଇନ୍ ଖରାପ ହୋଇ ଯାଇଛି ।

: ତା'ହେଲେ ତ ଥରେ ଯିବା ଉଚିତ । ରିଭଲଭର ବେଲ୍‌ଟ ଆଡ଼େ ହାତ ବଢ଼େଇ ଜାନକୀନନ୍ଦନ କହିଲେ ।

ହଁ ଯିବା ଉଚିତ । ରଣଧୀର ଉଠି ଠିଆ ହେଲେ । ଟେବୁଲ୍ ପଛ ଥାକରୁ ଗୋଟାଏ ରାଇଫଲ ଉଠାଇ ଆଣି କହିଲେ, ମନେ ହେଉଛି ସେଠାରେ କିଛି ଗୋଟାଏ ଗଣ୍ଡଗୋଳ ହୋଇଛି ।

ସେଦିନ ଚନ୍ଦ୍ର ବିହୀନ ଅନ୍ଧକାର ରାତ୍ରି ।

ସଂକୀର୍ଣ୍ଣ ପଥ ଉପରେ ଧାନ କିଆରି ପାଖ ଦେଇ ରଂଜିତା ଛୁଟୁଥିଲା ଖମାର ଘର

ଆଡ଼େ । ତା'ର ମାନେ ହେଉଥିଲା ଭୂଗର୍ଭ ଭିତରେ ଯେପରି ଏକ ଗୁହା ପଥଦେଇ ସେ ଛୁଟିଚି ଅଣନିଶ୍ୱାସୀ ହୋଇ । ମୁହୂର୍ତ୍ତକ ପାଇଁ ଥମକି ଠିଆ ହୋଇପଡ଼ି ରଂଜିତା ପଛକୁ ଚାହିଁଲା, ଛାଡ଼ି ଆସିଥିବା ତିନିତାଲା ଘରଟା ଆଡ଼େ । ଆଉ ଠିକ୍ ସେଇ ମୁହୂର୍ତ୍ତରେ ସେ ଦେଖିବାକୁ ପାଇଲା, ପ୍ରେତାତ୍ମା ପରି ନିଃଶବ୍ଦରେ ଗୋଟାଏ ଛାୟାମୂର୍ତ୍ତି ତାକୁ ଅନୁସରଣ କରୁଚି ।

ରଂଜିତାର ଯଥେଷ୍ଟ ସାହସ ଥିଲେ ମଧ୍ୟ ମୁହୂର୍ତ୍ତକ ପାଇଁ ଯେପରି ତା'ର ହୃତ୍‌ସ୍ପନ୍ଦନ ବନ୍ଦ ହୋଇଗଲା । ଅସ୍ଫୁଟ ଚିତ୍କାର କରି ମୁହଁ ବୁଲେଇ ଆଗକୁ ଦଉଡ଼ିବାକୁ ଲାଗିଲା ରଂଜିତା । ମାତ୍ର ବେଶିଦୂର ସେ ଆଗେଇ ପାରିଲା ନାହିଁ । ସେ ଅନୁଭବ କଲା କିଏ ଯେପରି ପଛରୁ ତାକୁ ଜାବୁଡ଼ି ଧରି ତା' ଆଡ଼କୁ ଘୋଷାଡ଼ି ନେଉଛି । ସେ ଚିତ୍କାର କରିବାକୁ ଚେଷ୍ଟା କରି ବି ପାରିଲା ନାହିଁ । କେବଳ ଅସହାୟ ଏକ କାଠ ପିତୁଳା ପରି ସେ ଅବାକ୍ ହୋଇ ଚାହିଁଥିଲା ହିଂସ୍ର ଛାୟାମୟ ମୂର୍ତ୍ତିଟା ଆଡ଼େ ।

ବାଁ ହାତ ବଢ଼େଇ ରଂଜିତାର ମୁହଁ ଚାପି ଧରିଲା ମଙ୍ଗୁ । ସେ କିଛି ଦେଖି ପାରିବା ଆଗରୁ ମଙ୍ଗୁର ଡାହାଣ ହାତଟା କ୍ଷିପ୍ର ବେଗରେ ଉପରକୁ ଉଠିଗଲା ଏବଂ ପରମୁହୂର୍ତ୍ତରେ ଗୋଟାଏ ଭାରି ଅସ୍ତ୍ରରେ ପ୍ରଚଣ୍ଡ ବେଗରେ ଆଘାତ କଲା ରଂଜିତା ମୁଣ୍ଡରେ ।

ସିଉନାରାୟଣ ଏଡେବଡ଼ ଗୋଟାଏ ବିଶାଳ କୋଠା ଭିତରେ ନିଃଶବ୍ଦରେ ବସି ବସି କ୍ଲାନ୍ତ ହୋଇ ପଡ଼ିଥିଲା । ଗୋଡ଼ହାତ ତା'ର ଜମି ଯାଇଥିଲା । ମନ ଭିତରେ କିପରି ଏକ ଭୀତିପ୍ରଦ ଚାଞ୍ଚଲ୍ୟ ଖେଳି ବୁଲୁଥିଲା । ସେ କେବଳ ଭାବୁଥିଲା ତା'ର ଅନ୍ୟ ଦୁଇ ସହଯୋଗୀଙ୍କ କଥା । ଯେପରି ଅଦ୍ଭୁତ ଭାବରେ ସେମାନେ ଅଦୃଶ୍ୟ ହୋଇଗଲେ, ତାଳ-ତୋଳମାନେ ହୁଏତ ଏଇ ଦିଆଲ ଭିତରୁ ଯେକୌଣସି ମୁହୂର୍ତ୍ତରେ ବାହାରି ପଡ଼ି ପାରନ୍ତି । ଏହିପରି ଏକ ଆଶଙ୍କାରେ ବିଚଳିତ ହୋଇ ଉଠିଥିଲା ସିଉନାରାୟଣ । ଦେହ ହାତ ଝାଳରେ ଭରିଯାଇଥିଲା । ବନ୍ଧୁକଟା ଏପରି ଶକ୍ତ ହାତରେ ଧରିଥିଲା ଯେ ହାତର ପେଶୀ ସ୍ଫୀତ ହୋଇ ଉଠିଥିଲା ।

ମାତ୍ର କେତେ ଫୁଟ ଦୂରରେ, ବୈଠକଖାନା ଦରଜାର ଫାଙ୍କରୁ ସିଉନାରାୟଣଙ୍କୁ ଲକ୍ଷ୍ୟ କରିଥିଲା ଜଗୁ ଆଉ ମଙ୍ଗୁ ଦିଆଲ ସହିତ ଏକ ପ୍ରକାର ଦେହ ମିଶାଇ ପାଦେ ପାଦେ କରି ଆଗେଇ ଆସୁଥିଲା ତା'ଆଡ଼କୁ ।

ହଠାତ୍ ସିଉନାରାୟଣ ଯେପରି ପବନରେ ବିପଦର ଗନ୍ଧ ବାରିଲା । ସେ ଚକିତ ଚାହାଣିରେ ଚାହିଁଲା ଚାରିଆଡ଼କୁ । ବନ୍ଧୁକଟା ବାଗେଇଧରି ପରବର୍ତ୍ତୀ ପରିସ୍ଥିତି ପାଇଁ ସେ ଯେପରି ଅପେକ୍ଷା କରି ରହିଲା ।

ଠକ୍ କରି ଧୀରେ ଗୋଟାଏ ଶବ୍ଦ କ'ଣ ବାଜିଲା ସିଉନାରାୟଣ କାନରେ । ସେ ଭାବିଥିଲା ବିରାଡ଼ି କି ମୂଷା କ'ଣ ଗୋଟାଏ ହେବ ବୋଧେ । କିନ୍ତୁ ତା' ଭାବନା ଶେଷ ହେବା ପୂର୍ବରୁ ମଙ୍ଗୁ ମେନ୍ ସୁଇଚ୍‌ଟା ଅଫ୍ କରିଦେଇଥିଲା ।

: କିଏ ? କିଏ ସେଠି ? ଗୋଟାଏ ପାଦ ଆଗକୁ ବଢ଼େଇ ଭୀତକଣ୍ଠରେ ଚିତ୍କାର

କରି ଉଠିଲା ଶିଉନାରାୟଣ ।

ସେତେବେଳକୁ କିନ୍ତୁ ସମସ୍ତ ଘରଟା ଅନ୍ଧକାରରେ ଭରି ଯାଇଥିଲା ।

ଶିଡ଼ି ପର୍ଯ୍ୟନ୍ତ ଛୁଟିଆସି ଥମକି ଠିଆ ହୋଇପଡ଼ିଲେ ମାଲହୋତ୍ରା । ଚିତ୍କାର କରି କହିଲେ ।

: ସିଉନାରାୟଣ ତମେ ଠିକ୍ ଅଛ ତ ?

କିଏ ଜଣେ ମୋ ସାମ୍ନାକୁ ଆସି ଯାଇଛି । ଆପଣ ଶିଘ୍ର ତଳକୁ ଓହ୍ଲେଇ ଆସନ୍ତୁ । କମ୍ପିତ କଣ୍ଠରେ କହି ଉଠିଲା ସିଉନାରାୟଣ ।

ମାଲହୋତ୍ରା ନିଜ ଜାଗା ଛାଡ଼ି ପାଦେ ବି ଟଳିଲେ ନାହିଁ ।

ସହସା ସିଉନାରାୟଣର ଖରଶ୍ୱାସ ବହିବାର ଶୁଣାଗଲା । ଠିକ୍ ପରେ ପରେ ସେଇ ଅନ୍ଧକାରର ଗର୍ଭ ଚିରି ଏକ ବିଭତ୍ସ ଚିତ୍କାର ଭାସି ଆସିଲା । ବୋଧହୁଏ ସିଉନାରାୟଣ ଶେଷ ନିଶ୍ୱାସଃ ତ୍ୟାଗ କଲା ।

ମାଲହୋତ୍ରାଙ୍କର ସିଉନାରାୟଣକୁ ସାହାଯ୍ୟ କରିବାର କିଛି ଉପାୟ ନଥିଲା । ସେ ଭାବୁଥିଲେ ଘଟଣାର ବିବରଣ ଜଣାଇ ଲିସାକୁ ସତର୍କ କରାଇ ଦେବେ । କିନ୍ତୁ ଶିଡ଼ିମୁଣ୍ଡ ଛାଡ଼ି ତାଙ୍କର ଅନ୍ୟତ୍ର ଯିବା ବୁଦ୍ଧିମାନର କାର୍ଯ୍ୟ ହେବନାହିଁ । ଶଙ୍କରକୁ ସେମାନେ ଖୋଜୁଥିଲେ । ଏଇ ଶିଡ଼ିବାଟ ଦେଇ ତାଳ-ବେତାଳଙ୍କୁ ଆଗେଇ ଆସିବାକୁ ହେବ । ତେଣୁ ମୁହୂର୍ତ୍ତକ ପାଇଁ ଏଠାରେ ଅନୁପସ୍ଥିତ ରହିହେବ ନାହିଁ । ତାଳ-ବେତାଳ ଏବଂ ସେମାନଙ୍କ ଶିକାର ମଝିରେ ସେଇ ହେଉଛନ୍ତି ଶେଷତମ ବେଷ୍ଟନୀ । ଅସହାୟ ଭାବରେ ବନ୍ଧୁକ ବାଗେଇଧରି ବସି ରହିଲେ ମାଲହୋତ୍ରା ।

ଆଲୁଅ ଲିଭିଯିବା ପୂର୍ବରୁ ଲିସା ଆଉ ଶଙ୍କର ଗଳ୍ପ କରୁଥିଲେ ମନ ଆନନ୍ଦରେ । କିନ୍ତୁ ହଠାତ୍ ଆଲୁଅ ଲିଭିବାକ୍ଷଣି ଲିସାର ମନେହେଲା ସେ ବୋଧହୁଏ ଅଚେତ ହୋଇ ପଡ଼ିବ । କିନ୍ତୁ ଶଙ୍କର କଥା ମନେ ପଡ଼ିଯିବାରୁ ସେ ଯେପରି ସଜାଗ ହୋଇ ଉଠିଲା । ଶଙ୍କରକୁ ରକ୍ଷା କରିବାର ଦାୟିତ୍ୱ ଯେ ବର୍ତ୍ତମାନ ଲିସାର ।

: ଫିଉଜ୍ ତାରଟା କଟିଗଲା ବୋଧହୁଏ । ଶଙ୍କର କହିଲା : ସେମାନେ ବର୍ତ୍ତମାନ ଠିକ୍ କରିଦେବେ ଯେ !

ଲିସାର ମନେ ହେଲା ପ୍ରକୃତ ଘଟଣା ଆଉ ଲୁଚେଇବା ଉଚିତ ହେବନାହିଁ । ସେ ଶଙ୍କରକୁ ନିବିଡ଼ ଭାବରେ ଧରି କହିଲା : ଫିଉଜ୍ ନୁହେଁ, ତାଳ-ବେତାଳ ଏ କୋଠା ଭିତରକୁ ପଶି ଆସିଲେଣି ।

: ତୁମେ ତା'ହେଲେ ଆଗରୁ ସେ କଥା ଜାଣିଥିଲ । ଓଃ, ସେଇଥି ପାଇଁ ମୋର ମନେ ହେଉଥିଲା ତମେ ଯେପରି ଡରି ଡରି ମୋ' ଆଡ଼େ ଚାହୁଁଚ । ମିଷ୍ଟର ମାଲହୋତ୍ରା ବାହାରେ ଅଛନ୍ତି । ତଥାପି ମୁଁ ନିଶ୍ଚିନ୍ତ ହୋଇ ପାରୁନାହିଁ । କୌଣସି ପ୍ରକାର ମୁଁ ଆଉ ତୁମକୁ ହରେଇବାକୁ ଚାହୁଁନାହିଁ ଶଙ୍କର । ନା ନା ଆଉ ନୁହେଁ ।

ଆରେ ବ୍ୟସ୍ତ କାହିଁକି ହେଉଛ ତମେ । ପୋଲିସ ଲୋକ ଅଛନ୍ତି, ମିଷ୍ଟର ମାଲହୋତ୍ରା ଅଛନ୍ତି, ଆମେ ଗୋଟାଏ ନିରାପଦ ଘରେ ଦରଜା ବନ୍ଦ କରି ଅଛେ, ତମେ

ବ୍ୟସ୍ତ ହୁଅନାହିଁ ଲିସା । ବରଂ ଶିଡ଼ି ପାଖରେ ଯାଇ ମାଲହୋତ୍ରାଙ୍କୁ ପଚାରି ଆସ ସେମାନେ କେଉଁଠି ଅଛନ୍ତି ।

ଠିକ୍ ସେତିକିବେଳେ ତଳ ବୈଠକଖାନା ଘର ଭିତରେ ଦରଜା ଆଢୁଆଳରେ ଜଗୁ ମଙ୍ଗୁକୁ କହୁଥିଲା, ଖବର କାଗଜର ସେଇ ଲୋକଟା ଶିଡ଼ି ପାଖରେ ପହରା ଦେଉଛି । ମୁଁ ତାକୁ ଏଣୁ ତେଣୁ ଶବ୍ଦ କରି ସେଇଠି ଅଟକେଇ ରଖିଛି । ତୁ ଚାଲିଯା ଘର ପଛ ଆଡ଼କୁ । ତା' ପରେ ପାଇପ୍ ଧରି ଛାତରୁ ଉଠିଯିବୁ । ଛାତକୁ ଧୀରେ ଧୀରେ ବାରଣ୍ଡାକୁ ଓହ୍ଲେଇ ଆସି ଶଙ୍କର ଘରେପଶି ତାକୁ ଖତମ୍ କରିଦେବୁ । ମୁଁ ମାଲହୋତ୍ରାକୁ ଏଇଠି ଅଟକେଇ ରଖିଛି ।

ଶୋଇବା ଘର ଦରଜା ଅଳ୍ପଟିକିଏ ଫାଙ୍କକରି ଲିସା ଅନୁଚ୍ଚ ସ୍ୱରରେ ଡାକିଲା : ମିଃ ମାଲହୋତ୍ରା !

: ନା, ତମେ କବାଟ ଖୋଲି ବାହାରକୁ ଆସନାହିଁ । ଧୀର ଗଳାରେ କହିଲେ ମାଲହୋତ୍ରା । ସେମାନେ ତଳେ ହଲଘରେ କୋଉଠି ଅଛନ୍ତି । ସିଉନାରାୟଣକୁ କାବୁ କରି ସାରିଲେଣି ।

: ତା'ହେଲେ ଆପଣ ସେଠି ଏକା । ଲିସାର ସର୍ବାଙ୍ଗ ଶିହରୀ ଉଠିଲା ।

: ମୋ ପାଇଁ କିଛି ଚିନ୍ତା ନାହିଁ । ମୁଁ ନିଜ ଆଡ଼େ ଲକ୍ଷ୍ୟ ରଖିଛି । ତୁମେ ଘରର ଦରଜା ଚାବି ଦେଇ ଶଙ୍କରକୁ ଦେଖ ।

: ଶଙ୍କର ପାଖକୁ ସେମାନଙ୍କୁ ଆଦୌ ଛାଡ଼ିବ ନାହିଁ । ମିନତି ସ୍ୱରରେ ଲିସା କହିଲା ।

: ନା, ମୁଁ ସେମାନଙ୍କୁ ଏଠୁ ଛାଡ଼ିବି ନାହିଁ । ରଂଜିତା ସାହାଯ୍ୟ ଆଣିବାକୁ ଚାଲି ଯାଇଛି । ତମେମାନେ ସେଇ ଘରେ ଥାଅ । ଆଉ ଅଳ୍ପ ସମୟ ପରେ ସେମାନେ ଚାଲି ଆସିବେ ।

ତଳ ହଲ୍ ଘରେ ଢ଼ୁଂ କରି ଟିକିଏ ଶବ୍ଦହେଲା । ମାଲହୋତ୍ରା ଶିହରୀ ଉଠିଲେ । ଅନ୍ଧକାର ଭିତରକୁ ଚାହିଁ ସେ ଯେପରି କାହାକୁ ଅପେକ୍ଷା କରୁଥିଲେ ।

ତେଣେ ପାଣି ପାଇପ୍ ଧରି ଅତି ସହଜରେ ଶିଡ଼ିରେ ଉଠିଲା ପରି ଛୋଟ ଛାତଟା ଉପରକୁ ଉଠି ଆସଲା ମଙ୍ଗୁ ।

ଲିସା ମାଲହୋତ୍ରା ପାଖରୁ ଫେରିଯାଇ ଶଙ୍କରର ଗୋଟାଏ ହାତକୁ ଜାବୁଡ଼ିଧରି କହିଲା: ମାଲହୋତ୍ରା ସେଠି ପହରା ଦେଉଛନ୍ତି । କହିଛନ୍ତି ତାଳ-ବେତାଳଙ୍କୁ ସେ କୌଣସି ଅବସ୍ଥାରେ ଉପରକୁ ଛାଡ଼ିବେ ନାହିଁ । କିନ୍ତୁ ମୋର ସେମାନଙ୍କୁ ଭରସା ନାହିଁ । କୋଉବାଟେ, କେତେବେଳେ କିପରି ଯେ ସେମାନେ ଆସି ହାଜିର ହୋଇଯିବେ, ନା ନା ଶଙ୍କର । ମୁଁ କାହାରି ଉପରେ ଭରସା କରି ପାରିବି ନାହିଁ । ତମେ ମୋର ଗୋଟାଏ କଥା ଶୁଣିବ ?

ଶଙ୍କର ସେତେବେଳକୁ ନିଜ ଦେହରୁ କମ୍ବଳ କାଢ଼ି ଉଠି ବସିଥିଲା : କ'ଣ

କହୁଛ ?

ଏଇ ଖଟତଳେ ମୁଁ ବିଛଣା କରି ଦେଉଛି, ତମେ ସେଇଠି ଶୋଇଥାଅ । ଖଟ ଉପରେ ମୁଁ ତକିଆ ପକେଇ ଏପରି ଭାବରେ ସଜାଇ ଦେବି ସେମାନେ ଦେଖିଲେ ମନେ କରିବେ ତମେ ଖଟରେ ଶୋଇଛ । ତା'ପରେ... ହଁ ତା'ପରେ ଯାହା କରିବାର ମୁଁ କରିବି । ଆତ୍ମରକ୍ଷା ପାଇଁ ଆମକୁ ନିଜେ ପ୍ରସ୍ତୁତ ହେବାକୁ ହେବ ।

ଶଙ୍କର କହିଲା : ନା ନା, ମୁଁ ତୁମକୁ ବିପଦ ମଝିକୁ ଠେଲିଦେଇ ନିଶ୍ଚିନ୍ତରେ ଶୋଇ ପାରିବି ନାହିଁ । ବରଂ ଦୁଇଜଣ ପ୍ରତିରୋଧ କରିବା । ଯାହା ହେବାର ହେବ । ସେମାନେ ମୋତେ ଖୋଜୁଛନ୍ତି, ମୁଁ ସେମାନଙ୍କ ସହିତ ଲଢ଼ାଇ କରିବି । ଦେଖିବି ସେମାନଙ୍କର କେତେ ସାହସ । ଶଙ୍କର ଉତ୍ତେଜିତ ହୋଇ ପଡ଼ିଥିଲା ।

: ଶଙ୍କର, ମୋ ସୁନାଟା ପରା । ଲିସା ଶଙ୍କରକୁ ଆଲିଙ୍ଗନ କଲା । ତମେ ମୋ କଥା ଶୁଣ । ତମେ ଅସୁସ୍ଥ । ନହେଲେ ମୁଁ ତମକୁ ସେମାନଙ୍କ ମୁଖାମୁଖି ହେବାକୁ ବାଧା ଦିଅନ୍ତି ନାହିଁ । ଆଉ ଡେରି କରନାହିଁ । ସେମାନେ କୌଣସି ମୁହୂର୍ତ୍ତରେ ଆସି ଆକ୍ରମଣ କରି ପାରନ୍ତି । ମୁଁ ତମକୁ ଭଲପାଏ । ଏକମାତ୍ର ତମେହିଁ ମୋର ଆଶା ଭରସା । ମୁଁ ଜାଣେନି ମୋର କ'ଣ ଥିଲା, ମୁଁ କ'ଣ ହରେଇଚି । ଆଜି କିନ୍ତୁ ତୁମକୁ ହରେଇ ପାରିବିନି । ତମେ ମୋ କଥା ଶୁଣ । ମୋତେ ବଞ୍ଚିବାକୁ ଦିଅ ।

ଶଙ୍କର ଲିସା କଥାକୁ ଏଡ଼େଇ ପାରିଲା ନାହିଁ । ସେ ସୁବୋଧ ବାଳକଟି ପରି ଖଟତଳେ କମ୍ବଳ ଉପରେ ଶୋଇ ରହିଲା । ଲିସା ଖଟ ମଝିରେ ତକିଆଟି ଶୁଆଇ ଦେଇ ଖଣ୍ଡେ ଚାଦର ଘୋଡ଼େଇ ଦେଲା । ଧୀରେ ଧୀରେ ଆସି ଦରଜାର ଛିଟ୍‌କିଣିଟି ଖୋଲିଦେଇ କବାଟ ପାଖରେ ଠିଆ ହୋଇ ସେ ଯେପରି ମୃତ୍ୟୁ ଦୂତକୁ ଅପେକ୍ଷା କରି ରହିଲା ।

ମାଲହୋତ୍ରା ଅନ୍ଧକାରରେ ଭୀଷଣ ଅସ୍ୱସ୍ତି ବୋଧ କରୁଥିଲେ । ବନ୍ଧୁକଟା ବାଗେଇ ଧରି ସେ ଅପେକ୍ଷା କରିଥିଲେ ଗୋଟାଏ ବା ଦୁଇଟା ଛାୟା ମୂର୍ତ୍ତିକି । କେତେବେଳେ ସେମାନେ ଆସିବେ ! ଗୋଟିଏ ଗୋଟିଏ ମୁହୂର୍ତ୍ତ ଗୋଟିଏ ଗୋଟିଏ ଘଣ୍ଟାପରି ମନେ ହେଉଥିଲା । କୁଆଡ଼େ ଗଲେ ତାଳ-ବେତାଳ !

କିନ୍ତୁ ମାଲହୋତ୍ରା କିଛି ବୁଝି ପାରିବା ଆଗରୁ ହଠାତ୍ ତାଙ୍କ ମୁଣ୍ଡରେ ଏକ ତୀବ୍ର ଆଘାତ ପାଇ ସେ ଅଚେତ ହୋଇ ପଡ଼ିଲେ । ମଙ୍ଗୁ ବାରଣ୍ଡାରେ ପାଦ ଚିପି ଚିପି ଆସି ପଛଆଡୁ ଆସି ମାଲହୋତ୍ରାଙ୍କ ମୁଣ୍ଡରେ ଆଘାତ କରିଥିଲା ।

ପାହାଡ଼ୀ ପଥ ଧରି ଇନିସ୍‌ପେକ୍ଟର ରଣଧୀରଙ୍କ ଉଇଲିଜ୍ ଜିପ୍‌ଟା ଛୁଟିଥିଲା ଅଙ୍କାବଙ୍କା ହୋଇ । ସବ୍‌ଇନିସ୍‌ପେକ୍ଟର ଜାନକୀନନ୍ଦନ ଜିପ୍ ଚଲାଉଥିଲେ । କିପରି ଏକ ଅଜ୍ଞାତ ଉତ୍ତେଜନାରେ ତାଙ୍କର ସମସ୍ତ ଶରୀର ଉତ୍ତେଜିତ ହୋଇ ଉଠୁଥିଲା ।

: ଆରେ ଟିକେ ଧୀରେ ଚଳାଅ । ତା'ନହେଲେ ଯେ ଆମେ ଆମର ଗନ୍ତବ୍ୟ ସ୍ଥଳରେ ପହଞ୍ଚି ପାରିବା ନାହିଁ । ଇନିସ୍‌ପେକ୍ଟର ରଣଧୀର କହିଲେ ।

: ମିସ୍ ରଞ୍ଜିତା କିଛି ଗୋଟାଏ ଦୁର୍ଘଟଣାରେ ପଡୁ ଆପଣ ନିଶ୍ଚୟ ତାହା ଚାହାନ୍ତି ନାହିଁ। ସେଠାରେ ଆମକୁ ଯାଇ ଖୁବ୍ ଶୀଘ୍ର ପହଞ୍ଚିବାକୁ ହେବ। ତେଣୁ ଆପଣ ଏ ସମ୍ବନ୍ଧରେ ମୋତେ କିଛି କୁହନ୍ତୁ ନାହିଁ।

: ଆରେ ସବୁ ମୁଁ ବୁଝୁଛି। କିନ୍ତୁ ଗାଡ଼ିର ତ ଗୋଟାଏ ଜୀବନୀ ଶକ୍ତି ଅଛି। ତମେ ଯେମିତି ଚଳଉଛ, ସେମିତି ଆଉ କିଛି ବାଟ ଏଇ ପାହାଡ଼ୀ ରାସ୍ତାରେ ଚଳେଇଲେ ହୁଏତ ଗାଡ଼ିର ମୁଣ୍ଡଟା ଗାଡ଼ିରୁ ହୁଗୁଳି ବାହାରି ଚାଲିଯିବ।

: ଯାହା ହେବାର ହେଉ, ଆମକୁ କିନ୍ତୁ ଯଥା ସମୟର ବହୁ ପୂର୍ବରୁ ସେଠାରେ ପହଞ୍ଚିବାକୁ ହେବ। ଏହା କହି ଜାନକୀନନ୍ଦନ ଜିପ୍‌ର ଗତିଟା ଆହୁରି ବଢ଼ାଇ ଦେଲେ।

ଆରୋହୀମାନେ ଗାଡ଼ି ଉପରେ ବସି କେବଳ କମ୍ପୁଥିଲେ। ମନେ ହେଉଥିଲା ଗାଡ଼ିର ଗଣ୍ଡିମୁଣ୍ଡ ଅଲଗା ନ ହେଉ, ଆରୋହୀମାନଙ୍କର ଗଣ୍ଡିମୁଣ୍ଡ ଯେକୌଣସି ମୁହୂର୍ତ୍ତରେ ଅଲଗା ହୋଇ ଯାଇପାରେ।

ମଙ୍ଗୁ ଭାବିଲା ଏ ଗୋଟାଏ ସୁଯୋଗ। ମାଲହୋତ୍ରା ଅଚେତ ହୋଇ ପଡ଼ିଛି। ଉପରେ ଶଙ୍କର ଛଡ଼ା ଆଉ କେହିନାହିଁ। ଏଥର ସେ ନିଜ ହାତରେ ଶଙ୍କରକୁ ଖୁଣ୍ କରିବ। ତା'ପରେ ଜଗୁକୁ ଡାକିବ ଉପରକୁ।

ଏହିପରି ଗୋଟାଏ ଚିନ୍ତା ମନରେ ନେଇ ଜଗୁ ଯାଇ ଶଙ୍କର ଥିବା ଘରର କବାଟ ଠେଲିଲା। କବାଟଟା ଧୀରେ ଖୋଲିଗଲା।

ହଠାତ୍ ଲିସାର ପାଦ ଦୁଇଟି କିପରି ଶରୀର ବୋଝ ବହିବାକୁ ଅସମର୍ଥ ହୋଇ ଉଠିଲା। ମୁଣ୍ଡ ଭିତରେ କି ସବୁ ଅଦ୍ଭୁତ କାଣ୍ଡ କାରଖାନା ଆରମ୍ଭ ହୋଇଗଲା। ମୁଣ୍ଡଟା ଭିତରୁ ଯେପରି ଆଗ୍ନେୟଗିରି ଉଦ୍‌ଗୀରଣ ହୋଇ ଉଠିବ। ଲିସା ଶକ୍ତ ହାତରେ ଦିଆଲକୁ ଜାବୁଡ଼ି ଧରି ଠିଆ ହେବାକୁ ଚେଷ୍ଟା କରୁଥିଲା। ଠିକ୍ ସେତିକିବେଳେ ଅତି ଧୀରେ, କିଏ ଯେପରି କବାଟଟା ଖୋଲୁଥିଲା ଏବଂ ମୁହୂର୍ତ୍ତକ ପରେ ଲିସା ଦେଖିଲା ଗୋଟାଏ ଛାୟାମୂର୍ତ୍ତି ଖୁବ୍ ସନ୍ତର୍ପଣରେ ପାଦ ଚିପି ଚିପି ଘର ଭିତରେ ପ୍ରବେଶ କରୁଛି। ଆଉ ଧୀରେ ଧୀରେ ଆଗେଇ ଯାଉଛି ଶଙ୍କରର ଶଯ୍ୟା ଆଡ଼କୁ।

ପର ମୁହୂର୍ତ୍ତରେ ମଙ୍ଗୁର ଧାରୁଆ ଛୁରୀଟା ସଯୋରେ ସ୍ପର୍ଶକଲା ଶଙ୍କରର ଶଯ୍ୟା। ମଙ୍ଗୁ ବିଜୟ ଉଲ୍ଲାସରେ ଠିକ୍ ନାଚି ଉଠିବା ମୁହୂର୍ତ୍ତରେ ସେ ଅନୁଭବ କଲା କିଏ ତାକୁ ପଛଆଡୁ ଚାପି ଧରିଲା ଏବଂ ତା'ର ସେଇ ଅସତର୍କ ମୁହୂର୍ତ୍ତରେ ସେ ଏକ ବିକଟ ଆର୍ତ୍ତନାଦରେ ଘର କମ୍ପମାନ କରିଦେଲା। ବଞ୍ଚାଅ ମୋତେ ବଞ୍ଚାଅ।

କିନ୍ତୁ ମଙ୍ଗୁ ସେତେବେଳକୁ ରକ୍ତାକ୍ତ ହୋଇ ସାରିଥିଲା। ତା'ର ସମସ୍ତ ମୁହଁଟା ଯେପରି ରକ୍ତ ପ୍ଲାବନରେ ଭାସି ଉଠିଥିଲା। ସେ ତା'ର ଦୁଇ ହାତରେ ମୁହଁଟାକୁ ଘୋଡ଼େଇ ଧରିଥିଲା।

ଠିକ୍ ସେଇ ମୁହୂର୍ତ୍ତରେ ଲିସା ଶୁଣିଲା ତଳେ ଗୁଳି ଫୁଟିବାର ଶବ୍ଦ ଏବଂ ପର ମୁହୂର୍ତ୍ତରେ ସେ ଦେଖିଲା ଘରର ଆଲୋକ ଜଳି ଉଠିଛି। ଆଉ ସାମନାରେ ମଙ୍ଗୁ ଦୁଇହାତରେ ମୁହଁ ଘୋଡ଼େଇ ଚିତ୍କାର କରି ଚାଲିଛି : ମୋ ଆଖି ଦୁଇଟା କାଢ଼ି ନେଇଛି

ସେ ପିଶାଚୀ ତାକୁ ଉପଯୁକ୍ତ ଶାସ୍ତି ଦେବାକୁ ହେବ ଜଗୁ । ସେ ଏଇଠି ଅଛି, ଏଇ ଘରେ ସେ କୋଉଠି ଲୁଚି ରହିଛି । ତୁ ତାକୁ ଧର । ଧରି ଆଣି ମୋ ପାଖରେ ଛାଡ଼ିଦେ । ମୁଁ ତାକୁ ଉପଯୁକ୍ତ ଶାସ୍ତି ଦେବି । ହଁ ମୋ ନିଜ ହାତରେ ଶାସ୍ତି ଦେବି ।

କିନ୍ତୁ ମଙ୍ଗୁର ଏହି କାତର ମିନତି କେହି ଶୁଣିବାକୁ ଆସି ନଥିଲେ । ତଳେ ଜଗୁ ଯେତେବେଳେ ମଙ୍ଗୁର ଆର୍ତ୍ତଚିତ୍କାର ଶୁଣି ଶିଡ଼ି ବାଟେ ଉପରକୁ ଉଠୁଥିଲା, ଠିକ୍ ସେତିକିବେଳେ ଇନିସ୍‌ପେକ୍ଟର ରଣଧୀରଙ୍କ ରିଭଲଭରଟା ଗର୍ଜି ଉଠିଥିଲା । ଜଗୁ ତାଳ ସମ୍ଭାଳି ନପାରି ଗଡ଼ି ଗଡ଼ି ଯାଇ ତଳେ ପଡ଼ିଥିଲା । ସଙ୍ଗେ ସଙ୍ଗେ ଜାନକୀନନ୍ଦନ ତାକୁ କାବୁ କରି ନେଇଥିଲେ ।

ରଣଧୀର ଘରର ମେନ୍ ସୁଇଚ୍‌ଟା ଅନ୍ କରିଦେଇ ଛୁଟି ଯାଇଥିଲେ ଉପରକୁ । ସେ ଯାଇ ଦେଖିଲେ ମଙ୍ଗୁ ଦୁଇ ହାତରେ ତା' ମୁହଁଟା ଘୋଡ଼େଇ ଧରି ଚିତ୍କାର କରି ଚାଲିଛି : ଶାଳୀ ମୋ ଆଖି ଖୋଳି ନେଇଚି । ମୁଁ ତାକୁ ଉପଯୁକ୍ତ ଶାସ୍ତି ଦେବି । ଏମିତି ଜଳେଇ ପୋଡ଼େଇ ହତ୍ୟା କରିବି ଯେ, ଶାଳୀ ବୁଝିବ ମୃତ୍ୟୁ ଯନ୍ତ୍ରଣା କାହାକୁ କହନ୍ତି ।

ସେ ବୋଧହୁଏ ରଣଧୀରଙ୍କ ପାଦ ଶବ୍ଦ ଶୁଣି ମୁହୂର୍ତ୍ତେ ଚୁପ୍ ହୋଇଗଲା । ତା'ପରେ କହିଲା : ଖୁବ୍ ସାବଧାନ ଜଗୁ । ପିଶାଚୀ ଏଇଘରେ କୋଉଠି ଲୁଚିଛି । ଶଙ୍କରକୁ ମୁଁ ଶେଷ କରି ଦେଇଛି । ମୋତେ ବାହାରକୁ ନେଇଚାଲେ । ମୋ ଆଖି ସେ ଖୋଳି ନେଇଚି । ତୁ ପୁଣି ଯେମିତି ତା'ର ଶିକାର ନ ହେଉ ।

ମଙ୍ଗୁ ମୁହଁରୁ ରକ୍ତ ଝରଝର ହୋଇ ଝରୁଥିଲା । ରଣଧୀର ମଙ୍ଗୁ କଥାରେ କିଛି ଉତ୍ତର ନଦେଇ ପାଦ ଚିପି ଚିପି ଘର ଭିତରେ ପଶିଲେ । ବିଛଣା ଉପରେ ଗଡ଼ି ପଡ଼ିଛି ଲିସା । ଶଙ୍କର ବାହାରୁଛି ଖଟତଳୁ ।

ରଣଧୀର କ'ଣ କହିବାକୁ ଯାଉଥିଲେ । ଶଙ୍କର ଇଙ୍ଗିତରେ ବାରଣ କଲା ।

ମଙ୍ଗୁ ସେହିପରି ଚିତ୍କାର କରୁଥିଲା । ସେ ଜଗୁର ସାହାଯ୍ୟ ଲୋଡ଼ୁଥିଲା । କିନ୍ତୁ ଜଗୁର କଣ୍ଠସ୍ୱର ଶୁଣି ନ ପାରି ଅଣ୍ଡାଳି ଅଣ୍ଡାଳି ସେ ଦରଜା ଆଡ଼କୁ ଆଗେଇ ଯାଉଥିଲା । ଗୁଳି ଫୁଟିବା ଶବ୍ଦ ତା'କାନରେ ବାଜିଥିଲା । ସେ କହି ଚାଲିଥିଲା : ମୁଁ ଜାଣେ ଜଗୁ ମାଲହୋତ୍ରାକୁ ମୁଁ ଆଘାତ କରିଥିଲି । ତୁ ଗୁଳି ଚଳେଇ ତାକୁ ହତ୍ୟା କରିଛୁ । ବର୍ତ୍ତମାନ ଏ ଘରେ ତୁ ଏକଛତ୍ର ଆଧିପତ୍ୟ ଚାହିଁବୁ । କିନ୍ତୁ ଆମ ଅଲକ୍ଷ୍ୟରେ ସେ ପାଗଳୀଟା କେତେବେଳେ ଏଠି ପଶିଚି । ସେ ବି ବର୍ତ୍ତମାନ ଆମ ଖାପଚରେ । ତୁ ଯାହା ଚାହିଁଥିଲୁ ସେଇଆ ହୋଇଛି । ଏକାଥରେ ରାଜକନ୍ୟା ଆଉ ରାଜଗାଦି । ଦୁଇଟାଯାକ ଦଖଲ କରି ବସ । ମୋର କିନ୍ତୁ ଏ ସବୁରେ କିଛି ଦରକାର ନାହିଁ । ମୋର ଆଖି ଦୁଇଟା ମୋତେ ଫେରେଇଦେ ଜଗୁ । ମୁଁ ଫେରିଯିବି । ମୁଁ ଆଉ କିଛି ଚାହେଁନି । ତୁ ବିଶ୍ୱାସ କର ।

ଶିଡ଼ିଦେଇ ଜାନକୀନନ୍ଦନ ଉପରକୁ ଉଠୁଥିଲେ, ସେ ମଙ୍ଗୁକୁ ଏପରି ରକ୍ତାକ୍ତ ଅବସ୍ଥାରେ ଦେଖି ବିଚଳିତ ହୋଇ ପଡ଼ିଥିଲେ । ମଙ୍ଗୁ କିନ୍ତୁ ନଗଁପଡ଼ି ଜାନକୀନନ୍ଦନଙ୍କ ଗୋଡ଼ଟାକୁ ଜାବୁଡ଼ି ଧରି କହିଲା, ମୋତେ ମାଫ୍‌କର ଜଗୁ । ମୁଁ ଆଉ...

କିନ୍ତୁ ହଠାତ୍ ସେ ଅଟକି ଗଲା । ଜାନକୀନନ୍ଦନ ଗୋଡ଼ରେ ହାତଦେଇ ଅନୁଭବ

କଲା ଏଇଟା ଜଗୁର ପାଦ ନୁହେଁ । ସଙ୍ଗେ ସଙ୍ଗେ ସେ ପଛକୁ ଘୁଞ୍ଚିଯାଇ କ'ଣ ଗୋଟାଏ ଦୁର୍ଘଟଣା ଘଟାଇବାକୁ ଯାଉଥିଲା, କିନ୍ତୁ ଜାନକୀନନ୍ଦନ ତାକୁ କ୍ଷିପ୍ରଗତିରେ କାବୁକରି ନେଇଥିଲେ ।

ମାଲହୋତ୍ରାଙ୍କର ଯତେ ଯେପରି ନିଦ୍ରାଭଙ୍ଗ ହେଲା । ସେ ଆଖି ମେଲି ଚାହିଁ ଦେଖିଲେ, ଜାନକୀନନ୍ଦନ ମଙ୍ଗୁକୁ ଜାବୁଡ଼ି ଧରିଛନ୍ତି । ଦୁଇଜଣ କନେଷ୍ଟବଳ ଆସି ତା'ହାତରେ ବେଡ଼ି ପିନ୍ଧାଉଛନ୍ତି । ରଣଧୀର ଘର ଭିତରେ । ଶଙ୍କର ଚଟାଣ ଉପରେ ଶୋଇଚି । ସେ ହଠାତ୍ କିଛି ବୁଝି ପାରିଲେ ନାହିଁ । ସେ ସ୍ୱପ୍ନରୁ ଉଠିଲା ପରି ପଚାରିଲେ : କ'ଣ ହୋଇଛି ? ତାଳ-ବେତାଳ କୁଆଡ଼େ ଗଲେ । ଆପଣ ବା ଏଠାରେ...

: ହଁ, ମୁଁ ଏଠାକୁ ଆସିଲି । ମୁଁ ନଆସିଥିଲେ ସେମାନେ କାହାରିକୁ ଛାଡ଼ି ନ ଥାନ୍ତେ । ଆମେ ଠିକ୍ ସମୟରେ ପହଞ୍ଚି ସେମାନଙ୍କୁ ଆରେଷ୍ଟ କରି ପାରିଛୁ । ରଣଧୀର କହିଲେ ।

: ଲିସା, ଶଙ୍କର, ଏମାନେ ଗଲେ କୁଆଡ଼େ ? ମାଲହୋତ୍ରା ତଳୁ ଉଠିପଡ଼ି ପଚାରିଲେ ।

: ସମସ୍ତେ ଏଇଠି ଅଛନ୍ତି ଏବଂ ସମସ୍ତେ ଭଲ ଅଛନ୍ତି । ଏ ସଂଗ୍ରାମରେ ଲିସା ଭୂମିକା ଶୀର୍ଷରେ । ସେ ବୁଦ୍ଧିକରି ଶଙ୍କରକୁ ବଞ୍ଚାଇ ପାରିଛି ଏବଂ ବେତାଳର ଆଖିଖୋଳି ତାକୁ ଅନ୍ଧକରି ଦେଇଛି । ରଣଧୀର କହିଲେ ।

: ବେତାଳ ମାନେ ? ମାଲହୋତ୍ରା ପଚାରିଲେ ।

: ବେତାଳମାନେ ସେଇ ତାଳ-ବେତାଳ ମାନଙ୍କ ମଧ୍ୟରୁ ଜଣେ । ସେ ଯାହାହେଉ ବର୍ତ୍ତମାନ ଏ ରହସ୍ୟର ଯବନିକା ପାତ ହୋଇଛି ।

: ଲିସା କାହିଁ ?

: ସେ ଶୋଇଛି । ଶଙ୍କର କହିଲା, ତାକୁ କିଛି ସମୟ ଆରାମରେ ଶୋଇବାକୁ ଦିଅ । ତା'ର ଉତ୍ତେଜନା କମିଗଲେ ବଳେ ସେ ଉଠିବ । ଶଙ୍କର ଭଲ ଅଛି ଏବଂ ଭଲ ଅଛନ୍ତି ମିସ୍ ରଂଜିତା, ରଣଧୀର କହିଲେ ।

: ରଂଜିତା ! ମାନେ ରଂଜୁ ସେ କ'ଣ ଫେରି ଆସିଛି ? ମାଲହୋତ୍ରା ବ୍ୟସ୍ତହୋଇ ଉଠିଲେ ।

: ଫେରି ଆସିଛି ମାନେ ? ରଣଧୀର ପଚାରିଲେ ।

: ସେ ଆମର ଆସନ୍ନ ବିପଦର ସମ୍ଭାବନା ଦେଖି ଖମାର ଘରକୁ ଯାଇଥିଲା ଲୋକ ଡାକିବା ପାଇଁ । ସେମାନେ ଆମକୁ ସାହାଯ୍ୟ କରିବାକୁ ଆସି ଥାଆନ୍ତେ ।

: ତା'ହେଲେ ରଂଜିତାଦେବୀ ଖମାର ଘରେ ଯାଇ ପହଞ୍ଚିପାରି ନଥିଲେ । ଆମେ ଆସିଲାବେଳେ ଦେଖିଲୁ ରାସ୍ତା କଡ଼ରେ କିଏ ଜଣେ ମହିଳା ଶୋଇଛନ୍ତି । ସେ ଯେ ରଂଜିତାଦେବୀ ହୋଇ ପାରନ୍ତି ଆମର ଧାରଣା ନଥିଲା । ତାଙ୍କୁ ଜିପ୍‌ରେ ଉଠାଇ ନେଇ ଆସିଛୁ । ତଳଘରେ ସେ ଶୋଇଛନ୍ତି । ଚେତା ଫେରିଲାଣି । ବୋଧହୁଏ ତାଳ-ବେତାଳମାନେ ତାଙ୍କୁ ଆଘାତ କରି ଅଚେତ୍ କରି ଦେଇଥିଲେ, ରଣଧୀର କହିଲେ ।

ମାଲହୋତ୍ରା ଉଠି ଠିଆହେଲେ । ଧୀରେ ଧୀରେ ଘର ଭିତରକୁ ପଶିଲେ । ଚାରିଆଡ଼େ ରକ୍ତର ଛିଟା । ଲିସା ଶୋଇଛି ବିଛଣା ଉପରେ । ଶଙ୍କର ବସି ରହି ମାଲହୋତ୍ରାଙ୍କ ଆଡ଼େ କୃତଜ୍ଞତାପୂର୍ଣ୍ଣ ନୟନରେ ଚାହିଁ ରହିଛି ।

ରଚନାକାଳ ସେପ୍ଟେମ୍ବର - ୧୯୭୯



ତି ନି ବନ୍ଧୁ ଗୋଟିଏ ଟେବୁଲ୍‌ର ତିନି ପାଖରେ ଘେରି ବସିଥିଲେ । ଜଣକ ନାଁ ଜେକବ୍ । ଆଉ ଜଣକ ୟୁସୁଫ୍ ଓ ଅନ୍ୟଟିର ନାମ ବ୍ରିଜ୍‌ଲାଲ । ତିନିଜଣ ଯାକ କିପରି ଏକ ଗଭୀର ଚିନ୍ତାରେ ନିମଗ୍ନ ଥିଲା ପରି ମନେ ହେଉଥିଲା । ଜେକବ୍ ଦେଖିବାକୁ ଟିକିଏ ମୋଟା । ମୁହଁରେ ଫ୍ରେଞ୍ଚ୍‌କଟ୍ ଦାଢ଼ି । ମୁଣ୍ଡରେ ଗୋଟାଏ ଫେଲ୍ଟ ହ୍ୟାଟ୍ । ୟୁସୁଫ୍‌ର ଚେହେରା ନିଦା । ପ୍ୟାଣ୍ଟ୍ ଉପରେ ପିନ୍ଧିଛି ଗୋଟାଏ ଏମ୍ବ୍ରୋଡ଼ରୀକରା ପଞ୍ଜାବି । ମୁଣ୍ଡର ବାଳ ଛୋଟ ଛୋଟ । ବ୍ରିଜ୍‌ଲାଲ ଦେଖିବାକୁ ଟିକିଏ ରୁଗ୍‌ଣ । ମୁଣ୍ଡରେ ବାବୁରି ବାଳ । ଆଖିରେ ଗୋଟାଏ ଗଗ୍‌ଲସ । ପିନ୍ଧିଛି ଗୋଟାଏ ଦାମୀ ସୁଟ୍ । କାହାରି ମୁହଁରେ ଭାଷା ନାହିଁ, ସମସ୍ତେ ଯେପରି ଭୀଷଣ ଚିନ୍ତା ମଗ୍ନ ।

ବ୍ରିଜ୍‌ଲାଲ ତା' ଆଖିରୁ ଗଗ୍‌ଲସ୍‌ଟା କାଢ଼ି ଟେବୁଲ୍ ଉପରେ ଥୋଇ ପ୍ରଥମେ କଥା ଆରମ୍ଭ କଲା: ଆଚ୍ଛା, ରୀନା ଗୋଏଲ୍‌କୁ ତମର ମନେ ଅଛି ?

: ରୀନା ଗୋଏଲ୍ !

: ରୀନା ଗୋଏଲ୍ !

ଜେକବ୍ ଆଉ ୟୁସୁଫ୍ ଦୁଇଜଣ ଯାକ ବିସ୍ମୟ ସ୍ୱରରେ ରୀନା ଗୋଏଲର ନାମ ଉଚ୍ଚାରଣ କଲେ ।

: ହଁ ରୀନା ଗୋଏଲ୍ । ଗତବର୍ଷ ମଣିପୁର ବ୍ୟାଙ୍କ୍ ଡକେଇତିରେ ଯିଏ ମଦନ ଧାରିଆର ଡାହାଣ ହାତ ଥିଲା ବୋଲି ଆମେ ଶୁଣିଥିଲେ ।

: ଓଃ ହଁ ହଁ, ଖୁବ୍ ପତଳୀ ହୋଇ ସେ ଝିଅଟା । ସବୁବେଳେ ଗୋଟାଏ ମାଉଥ୍ ଅର୍ଗାନ୍ ବଜାଇ ବଜାଇ ବୁଲୁଥାଏ ? ଜେକବ୍ କହିଲା ।

: ମଦନ ଧାରିଆ, ରୀନା ଗୋଏଲ୍.......ମାନେ ମୋର ଠିକ୍ ମନେ ପଡୁନାହିଁ

ଝିଅଟାକୁ । ମୁଁ କ'ଣ ତାକୁ ଦେଖିଛି ? ୟୁସୁଫ୍ ପଚାରିଲା ।

ଜେକବ୍ କହିଲା ତୁ ରୀନାକୁ ଦେଖି ନ ଥାଇ ପାରୁ । ଏବେ କିନ୍ତୁ ତା' ଚେହେରାଟା ମୋ ଆଖି ଆଗରେ ଭାସି ଉଠୁଛି । ଝିଅଟା ଭାରି ସେକ୍‌ସି । ସେମିତି ଧୂର୍ତ୍ତ ବି । ଥରେ ବମ୍ବେରେ ତାକୁ ମୁଁ ଦେଖିଥିଲି ଗୋଟାଏ ପାର୍ଟିରେ । ତା'ର କଥାବାର୍ତ୍ତା ରଙ୍ଗ ଢଙ୍ଗ ଦେଖି ମୁଁ ଜାଣି ପାରିଥିଲି ଝିଅଟା ସାଙ୍ଘାତିକ । ସେ କ'ଣ ମୋହନ ଧାରିଆ ଦଳ ଛାଡ଼ି ଦେଲାଣି ? ଅବଶ୍ୟ ଆମେ ତାକୁ ଦଳରେ ଭିଡ଼େଇ ପାରିଲେ ବାଜିମାତ୍ କରନ୍ତେ । କିନ୍ତୁ ଗୋଟାଏ ଅସୁବିଧା କ'ଣ କି, ଟୋକୀଟା କୁଆଡ଼େ ଅନେକ ଟଙ୍କା ଦାବୀ କରେ । ଆଉ ତା' ପାଉଣାର ୫୦ ଭାଗ ଆଡ଼ଭାନ୍‌ସ ନ ପାଇଲେ କାମକୁ ଓହ୍ଲାଏ ନାହିଁ ।

: ସେଇକଥା ମୁଁ ବି ଶୁଣିଛି । ବ୍ରିଜ୍‌ଲାଲ କହିଲା ।

ଆରେ ଯା ବେ । କେତେ ଟୋକୀଙ୍କୁ ମୁଁ ମୋ ବାଁ ହାତ ଫୁଟୁକୀରେ ଉଡ଼େଇ ଦେଇଛି, ଆଉ ଏଇ ରୀନା ଗୋଏଲ୍ କ'ଣ ମୋତେ ବଳେଇ ଯିବ । ଯଦି ତା' ଦ୍ୱାରା ଆମ କାମ ହାସଲ ହେବ ବୋଲି ଭାବୁଥାଅ, ଆମ ଶିକାରକୁ ଶିକାର କରିବାକୁ ସେ ଯଦି ସମର୍ଥ ହୁଏ, ତେବେ ତା'ସହିତ ଯୋଗାଯୋଗ କର । ଟଙ୍କା ପଇସା କଥା ମୁଁ ବୁଝିବି । ୟୁସୁଫ୍ କହିଲା ।

: ମୋର ମନେ ହେଉଛି ହୁଏତ ସେ ପାରିବ । ବ୍ରିଜ୍‌ଲାଲ କହିଲା ।

: ମୋର ବି ସେଇଆ ଧାରଣା, ଜେକବ୍ କହିଲା ।

: ତା'ହେଲେ ଆଜି ତା'ସହିତ ଯୋଗାଯୋଗ କଲେ କ୍ଷତି କ'ଣ ? ୟୁସୁଫ୍ କହିଲା ।

ବ୍ରିଜ୍‌ଲାଲ୍ ଟିକିଏ ଚିନ୍ତାକରି କହିଲା : କ୍ଷତି ତ କିଛି ନାହିଁ । ତେବେ ଦେଖିବାକୁ ହେବ ସେ ଆଉ କାହା ସହିତ ସଂଯୁକ୍ତ ଅଛି କି ନାହିଁ ।

ଜେକବ୍ ଟେବୁଲ୍ ମଝିରେ ପଡ଼ିଥିବା ଖବର କାଗଜଟା ଉଠାଇ ନେଇ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ଆଖି ରଖି କହିଲା : ପ୍ରାର୍ଥିନୀ, ସୁଶ୍ରୀ, ସୁନ୍ଦରୀ, ମିଷ୍ଟ ଭାଷିଣୀ ହୋଇଥିବେ । ଇଂରାଜୀ ଏବଂ ହିନ୍ଦୀ ଦୁଇଟି ଭାଷାରେ ପୂରା ଦଖଲ ଥିବ । ପୂର୍ବରୁ କୌଣସି ସ୍ଥାନରେ ଗଭର୍ଣ୍ଣେସ୍ ଥିବାର ଅଭିଜ୍ଞତା ଥିବ । ବୟସ ସୀମା ୨୧ରୁ ୨୫ । ଏ ସବୁ ଯୋଗ୍ୟତା ରୀନାର ଅଛି ତ ?

ବ୍ରିଜ୍‌ଲାଲ କହିଲା : ବୟସ ଆଉ ଚେହେରାରେ ରୀନା ପାସ୍ କରି ଯିବ । ଖାଲି ସମସ୍ୟା ହେଉଛି ସେ ଆଗରୁ କେଉଁଠି ଗଭର୍ଣ୍ଣସ୍ ଥିଲା, କୌଣସି ଭଦ୍ରପରିବାରରେ କାହାର ସାନ ପୁଅ ବା ଝିଅକୁ ସମ୍ଭାଳିବାର ଦାୟିତ୍ୱ ତା' ଉପରେ ଥିଲା କି ନାହିଁ ଜାଣିବାକୁ ହେବ । ନଥିବା ସ୍ୱାଭାବିକ । ତେବେ ଗୋଟାଏ ସାର୍ଟିଫିକେଟ୍ ଯୋଗାଡ଼ କରିବାକୁ ଖୁବ୍ ବଡ଼ ଅସୁବିଧା ହେବନାହିଁ । ସେ ଯୋଗାଡ଼ ଯନ୍ତ୍ର ହୁଏତ ସନ୍ଧ୍ୟ ହେଲା, କିନ୍ତୁ କଥା ହେଉଛି ଆମ ସର୍ତ୍ତରେ ଯଦି ରୀନା ରାଜି ନ ହେଲା ?

: ଆରେ ହେବ ହେବ । ୟୁସୁଫ୍ ଆଗ ତା'ସହିତ ଯୋଗାଯୋଗ କର । ସେ ଖାଲି ଅଛି କି ନାହିଁ ଦେଖ। ତା'ପରେ ସିନା..............

: ମୁଁ ଆଜି ଯୋଗାଯୋଗ କରିବି । କିନ୍ତୁ ସେ ଯଦି ଆମ ସର୍ତ୍ତରେ ରାଜି ହୁଏ ଆମେ ତା'ର ସର୍ତ୍ତରେ ରାଜି ହୋଇ ପାରିବା ତ ?

: ତା' ସର୍ତ୍ତ ମାନେ? ୟୁସୁପ୍ ପଚାରିଲା ।

: ତା'ର ସର୍ତ୍ତ ସେଇ ଗୋଟିଏ । ତା'ର ଟଙ୍କା ଦରକାର ଏବଂ ଅଗ୍ରୀମ ଦରକାର । ତା' ନହେଲେ ସେ ସଫା ମନା କରିଦେବ ।

: ହେଉ ଦେଖାଯିବ । ସେତେବାଟଯାକ ଆଗ କଥା ଯାଉ, ତା'ପରେ ଯାହାହେବ ।

ଜେକବ୍ କହିଲା : ରୀନା ସହିତ ଯୋଗାଯୋଗ କରିବା ଆଗରୁ ଆମକୁ ଆଗ ଠିକ୍ କରିବାକୁ ହେବ ଆମେ ଏହି ଅପରେସନ୍‌ଟା କରିବା କି ନାହିଁ । ଏପରି ଏକ ମୂଲ୍ୟବାନ ଅପରେସନ୍ କରିବାକୁ ହେଲେ, ପ୍ରଥମ ଅବସ୍ଥାରେ ନିଶ୍ଚୟ କିଛି ଇନ୍‌ଭେଷ୍ଟମେଣ୍ଟ ଦରକାର । ସେତିକି ଟଙ୍କା ଆମେ ଯୋଗାଡ଼ କରି ପାରିବା କି ନାହିଁ ? ସବୁ କଥା ଭାବି ଚିନ୍ତି ଆମକୁ ଆଗ ସ୍ଥିର ନିଶ୍ଚିନ୍ତରେ ପହଞ୍ଚିବାକୁ ହେବ । ତା'ପରେ ଯାଇ ଆମେ କାହା ସହିତ ଯୋଗାଯୋଗ କରିବା ।

ୟୁସୁଫ୍ କହିଲା : କ'ଣ ଆଉ ଇନ୍‌ଭେଷ୍ଟମେଣ୍ଟ ? ମୋ ପାଖରେ କିଛି ଟଙ୍କା ଅଛି । ବ୍ରିଜ୍‌ଲାଲ ବି କିଛି ଯୋଗାଡ଼ କରିପାରିବ । ତମେ ତ କିଛି ଦେଇ ପାରିବ ବୋଲି କହୁଥିଲ, ତା'ଛଡ଼ା କାମକୁ ଓହ୍ଲେଇ ପଡ଼ିଲେ ଟଙ୍କା କୋଉଠୁ ନା କୋଉଠୁ ଆସିଯିବ । ଟଙ୍କା ଚିନ୍ତା ମୋର, ଅନ୍ୟ ସବୁ ଚିନ୍ତା ତମେ କରିପାର ।

ଜେକବ୍ କହିଲା ବୁଝିଲି ଯେ, କିନ୍ତୁ ଏଇଟି ଦୁଇ ପାଞ୍ଚହଜାର ଟଙ୍କାର ସବସ୍ୟା ନୁହେଁ, କିମ୍ବା ଦୁଇ ପାଞ୍ଚ ଦିନରେ ଆମେ ଅପରେସନ୍ କରି ପାରିବା ନାହିଁ । ବେଶ୍ ସମୟ ଲାଗିବ । ତିନି ଚାରିମାସ ତ ନିଶ୍ଚୟ । ଏପରିକି ଆହୁରି ବେଶି ସମୟ ଲାଗିପାରେ । ଆମକୁ ଧୈର୍ଯ୍ୟ ଧରି ଇନ୍‌ଭେଷ୍ଟ୍‌ମେଣ୍ଟ୍ କରିଯିବାକୁ ହେବ ।

ବ୍ରିଜ୍‌ଲାଲ କହିଲା ଠିକ୍ ଅଛି । ଜୀବନରେ ପ୍ରତିଷ୍ଠିତ ହେବାକୁ ହେଲେ ଝୁଙ୍କି ନେବାକୁ ହୁଏ । ଏ ସବୁ ଛୋଟକାଟିଆ କାମ କରି, ଢୋକେ ପିଇ ଦଣ୍ଡେ ଜିଇବା ନୀତି ଆଉ ଭଲ ଲାଗୁନାହିଁ । ଆମେ ତିନି ବନ୍ଧୁ ଆସ ଆଜି ଶପଥ କରିବା ଯେ ଆମର ଏଇ ଅପରେସନ୍‌ଟା ଆମେ ଜୀବନ ଦେଇ ସକ୍‌ସେସ୍ କରିବା ।

ଜେକବ୍ କହିଲା ଗୋଟାଏ କଥା ଆମକୁ ଏଠାରେ ଗଭୀର ଭାବରେ ଚିନ୍ତା କରିବାକୁ ଅଛି । ଆମର ଏ ଯେଉଁ ପ୍ଲାନ, ପ୍ରୋଗ୍ରାମ, ଅନ୍ୟଠାରୁ ଲକ୍ଷ ଲକ୍ଷ ଟଙ୍କା ଲୁଟି ଆଣିବାର ଫନ୍ଦି, ଏହା କିନ୍ତୁ ଆମ ଅକ୍ତିଆରର ବାହାରେ । ଏକ ଚତୁର୍ଥବ୍ୟକ୍ତି ଉପରେ ଆମକୁ ପୂର୍ଣ୍ଣ ନିର୍ଭର କରିବାକୁ ହେବ । ଚତୁର୍ଥବ୍ୟକ୍ତି କିନ୍ତୁ ସେହିପରି ବିଶ୍ୱାସୀ ହେବା ଆବଶ୍ୟକ ।

ୟୁସୁଫ୍ କହିଲା : ସେ ଚତୁର୍ଥ ବ୍ୟକ୍ତି ଯିଏ ହେଉ ପଛେ, ଆମକୁ ତାକୁ ବିଶ୍ୱାସ କରିବାକୁ ହେବ । ଅବଶ୍ୟ ସମୟ କ୍ରମେ ଆମେ ତାକୁ ବିଶ୍ୱାସଭାଜନ କରେଇ ନେବାକୁ ଚେଷ୍ଟା କରିବା ।

: ତା' ଛଡ଼ା ଆଉ ଅନ୍ୟପଥ ନାହିଁ । ବ୍ରିଜ୍‌ଲାଲ କହିଲା ।

ପରଦିନ ସେଇ ଟେବୁଲ୍ ଚାରିପାଖରେ ବସିଥିଲେ ସେଇ ତିନି ବନ୍ଧୁ । ସେମାନଙ୍କ

ମଝିରେ ଜଣେ ତରୁଣୀ । ରୀନା ଗୋଏଲ୍ ।

ସମସ୍ତ ନୀରବତା ଭଙ୍ଗକରି ପ୍ରଥମେ ଆରମ୍ଭ କଲା ଜେକବ୍ : ମିସ୍ ଗୋଏଲ୍ ! ଆପଣଙ୍କୁ ଆମେ ଏଠାକୁ କାହିଁକି ଡାକିଛୁ, ଆପଣ ହୁଏତ ଜାଣି ନାହାନ୍ତି । କିନ୍ତୁ ଉଦ୍ଦେଶ୍ୟ ଆମର ଗୋଟାଏ ଅଛି । ଆମେ ତିନିବନ୍ଧୁ ମିଶି ଗୋଟାଏ ଅଭିଯାନରେ ବାହାରିଛୁ । ଆମର ଏହି ଅଭିଯାନ ସଫଳ ହେଲେ ଆମେ ଅନେକ ଟଙ୍କାର ମାଲିକ ହେବୁ । କିନ୍ତୁ ଏହି ଅଭିଯାନରେ ସଫଳତା ଅର୍ଜନ ପାଇଁ ଏପରି ଏକ ମହିଳାଙ୍କର ଆବଶ୍ୟକ, ଯିଏ ଚତୁରପଣରେ ଜଗତ୍‌ଜିତା ହୋଇଥିବେ । ଆମେ ଅନେକ ଭାବିଚିନ୍ତି ଆପଣଙ୍କୁ ବାଛିଛୁ । ଆପଣ ଆମ ସହିତ ସହଯୋଗ କରିବା ପାଇଁ ଆଗେଇ ଆସି ପାରିବେ କି ?

ରୀନା ଗୋଏଲ୍ ଆଖି ଟେକି ତିନିବନ୍ଧୁଙ୍କ ମୁହଁକୁ ଥରେ ଥରେ ଚାହିଁଲା । ଟିକିଏ ହସିଲା । କହିଲା : ଆପଣମାନେ କ'ଣ  ଜାଣି ପାରିଛନ୍ତି, ମୁଁ ଆପଣଙ୍କ ଅଭିଯାନ ସଫଳ କରିବା ପାଇଁ ସମର୍ଥ ହେବି ?

ବ୍ରିଜ୍‌ଲାଲ କହିଲା : ଆମେ ଆଶା କରୁଛୁ ।

ରୀନା କହିଲା : ଆପଣମାନେ ଯଦି ଆଶା କରିଥାଆନ୍ତି, ତା'ହେଲେ ଧରିନିଅନ୍ତୁ ମୁଁ ପାରିବି । ତା'ପରେ ?

: ତା'ପରେ କାମରେ ଓହ୍ଲେଇବାକୁ ହେବ। ଜେକବ୍ କହିଲା ।

: କାମଟା କ'ଣ, କି ଧରଣର ସବୁ କଥା ମୁଁ ନ ଜାଣିଲେ କେମିତି ହେବ ? ରୀନା କହିଲା ।

: କାମଟା ନିଶ୍ଚୟ କଠିନ ଏବଂ ବେଆଇନ । ଏକଥା ଆପଣ ଜାଣନ୍ତି । ତେବେ କାମରେ ସଫଳତା ଅର୍ଜନ କଲେ ନଅ ଦଶ ଲକ୍ଷ ଟଙ୍କା ପାଇବୁ । ୟୁସୁଫ୍ କହିଲା ।

ହୁଁ, ରୀନା ଗୋଟାଏ ଦୀର୍ଘ ନିଶ୍ୱାସ ପକାଇ ଶାନ୍ତ ସ୍ୱରରେ କହିଲା : ଏଥିରେ ମୋର ଭୂମିକା କ'ଣ ହେବ ?

: ଆପଣ ଯଦି ଆମ ସହିତ ସହଯୋଗ କରିବାକୁ ରାଜି ହୁଅନ୍ତି, ତା'ହେଲେ ଆମର ଯୋଜନା ଏବଂ ସେଥିରେ ଆପଣଙ୍କ ଭୂମିକା କଥା ସବୁ କହିବୁ । ଜେକବ୍ କହିଲା ।

: ଧରି ନିଅନ୍ତୁ ମୁଁ ରାଜି । ରୀନା ସ୍ମିତ ହସି କହିଲା ।

: ନା, ଖାଲି ଧରିନେଲେ ତ ହେବନାହିଁ । ଏଥିପାଇଁ ପାରିଶ୍ରମିକ କେତେ ନେବେ, ଆଉ କିଛି ସର୍ତ୍ତ ଅଛି କି ନାହିଁ, ପାରିଶ୍ରମିକରୁ ଅଗ୍ରୀମ କେତେ ଚାହାନ୍ତି, ଇତ୍ୟାଦି ଇତ୍ୟାଦି ସବୁ କଥା ଆଗ ଠିକଣା ନ କରି ଖାଲି ଧରିନେଲେ ତ ଚଳିବ ନାହିଁ । ଜେକବ୍ କହିଲା ।

ରୀନା ଏଥର ହୋ ହୋ ହୋଇ ହସି ଉଠିଲା । କହିଲା : ଦେଖୁଛି ଆପଣମାନେ ବାସ୍ତବ କ୍ଷେତ୍ରରେ ଖୁବ୍ ସିରିଆସ୍ । ଗୋଟାଏ ଦୃଷ୍ଟିରୁ ଅବଶ୍ୟ ଏଇଟା ଭଲ । ମୋତେ କିନ୍ତୁ ଏତେ ସିରିଅସ୍‌ନେସ୍ ଭଲ ଲାଗେ ନାହିଁ । ଯାହା ହେଉ ଯେତେବେଳେ ଅସଲ କଥା ଉଠିଛି, ମୁଁ ଆପଣଙ୍କୁ କହି ରଖେ, ମୋର ପାରିଶ୍ରମିକ ଟେନ୍ ପରସେଣ୍ଟ । ଆଉ ଫିଫ୍‌ଟି ପର୍ସେଣ୍ଟ ଇର୍ନ୍ ଆଡ୍‌ଭାନ୍‌ସ ।

ତା' ମାନେ ଆପଣ ଏକଲକ୍ଷ ଚାହାନ୍ତି ଏବଂ ୫୦ ହଜାର ଆଡ୍‌ଭାନ୍‌ସ

ନେବେ । ବ୍ରିଜ୍‌ଲାଲ କହିଲା ।

ରୀନା ଟେବୁଲ୍‌ ଉପରୁ ଖବର କାଗଜ ଉଠାଇ ନେଇ କହିଲା ଅଙ୍କଶାସ୍ତ୍ର ନିର୍ଭୁଲ ।

ରୀନା ଖବର କାଗଜ ପଢ଼ିଲା । ତିନିବନ୍ଧୁ ମୁହଁ ଚାହାଁ ଚୁହିଁ ହେଲେ । ଗମ୍ଭୀର ନୀରବତା ଘର ଭିତରେ ଛାଇ ଯାଇଥିଲା ।

ଆମେ କିନ୍ତୁ ଆପଣଙ୍କୁ ଟ୍ୱେଣ୍ଟି ଫାଇଫ୍‌ ପରସେଣ୍ଟ ଦେବାକୁ ଚାହୁଁ ମିସ୍‌ ଗୋଏଲ୍‌ । ୟୁସୁଫ୍‌ ଗୋଟାଏ ସିଗାରେଟରେ ଅଗ୍ନି ସଂଯୋଗ କରୁ କରୁ କହିଲା ।

ରୀନା ପୁଣି ଥରେ ହସି ଉଠିଲା ।

ଧୀରେ ଧୀରେ ୟୁସୁଫ୍‌ର ମୁହଁ ସ୍ୱଚ୍ଛ ହୋଇ ଉଠୁଥିଲା ।

ରୀନା ଉଠି ଠିଆ ହୋଇ କହିଲା: ବିଦାୟ ବଂଧୁଗଣ ।

କିନ୍ତୁ ମିସ୍‌ ଗୋଏଲ୍‌........ବ୍ରିଜ୍‌ଲାଲ ଉଠି ଠିଆ ହୋଇ ପଡ଼ିଲା । ଆପଣ ହଠାତ୍‌ ଉଠି ପଡ଼ିଲେ ଯେ !

: ମୁଁ ଜାଣି ପାରିଛି, ଆପଣମାନେ ମୋତେ କାମରେ ଲଗାଇ ପାରିବେ ନାହିଁ । ମୋର ଟେନ୍‌ ପର୍‌ସେଣ୍ଟ୍‌ ଜାଗାରେ ଟ୍ୱେଣ୍ଟିଫାଇଫ୍‌ ପରସେଣ୍ଟ ଅଫର ପାଇ ମୁଁ ବୁଝି ପାରିଛି, ଆପଣମାନେ ମୋତେ ପାର୍ଟନର କରିନେବାକୁ ଚାହାନ୍ତି । ପାର୍ଟନର ହେଲେ ଆପଣ ତିନ୍‌ ମୁଁ ଏକ ମୋଟ ଚାରିଜଣ ଟ୍ୱେଣ୍ଟିଫାଇଫ୍‌ ପର୍‌ସେଣ୍ଟ୍‌ କରି ଅର୍ଜିତ ଧନକୁ ବାଣ୍ଟିନେବା । ତା'ମାନେ ମୋ ଭାଗରେ ପଡ଼ିବ ଅଢ଼େଇଲକ୍ଷ ଟଙ୍କା । କିନ୍ତୁ ବଂଧୁଗଣ, ମନେ ରଖନ୍ତୁ ମୋର ଟଙ୍କା ପଇସା ପ୍ରତି ମୋଟେ ଲୋଭ ନାହିଁ, କିମ୍ବା କୌଣସି ଦିନ ପାର୍ଟନର ସିପ୍‌ରେ ମୁଁ ବିଜ୍‌ନେସ୍‌ କରିବାକୁ ଚାହେଁ ନାହିଁ । ଆପଣା ହାଥ, ଜଗନ୍ନାଥ ମୋର ମତ ! ତେଣୁ ବିଦାୟ ନେଉଛି ।

: ବସନ୍ତୁ ମିସ୍‌ ଗୋଏଲ୍‌, ୟୁସୁଫ୍‌ କହିଲା । ଆପଣଙ୍କ ବୁଦ୍ଧିର ବିଚକ୍ଷଣତା ପ୍ରଖର । ଅବଶ୍ୟ ମୁଁ ଆପଣଙ୍କୁ ଚାହିଁଥିଲି ଆମ ଭିତରେ ପାଇବାକୁ । ଆପଣ ଜଣେ ଆମର ବନ୍ଧୁ ହୋଇ ରୁହନ୍ତୁ । ଆପଣ କିନ୍ତୁ ତାହା ଚାହାନ୍ତି ନାହିଁ, ଏକଥା ଆପଣ ଭାବୁଛନ୍ତି କାହିଁକି ?

ରୀନା ସେହିପରି ହସ ହସ ମୁହଁରେ ପୁଣି ଚେଆର ଉପରେ ବସିଲା । କହିଲା : ଆପଣମାନେ ମୋ ସର୍ତ୍ତରେ ରାଜିଥିଲେ, ମୋର କିଛି ଆପତ୍ତି ନାହିଁ । କାରଣ ମୋର ପେଶା ହେଲା ଏଇଟା।

: କିନ୍ତୁ ମିସ୍‌ ଗୋଏଲ୍‌ ! ବ୍ରିଜ୍‌ଲାଲ ଶାନ୍ତ ଓ ସଂଜତ କଣ୍ଠରେ କହିଲା, ବାଟରେ ମୁଁ ଆମ ସମ୍ବନ୍ଧରେ ଆପଣଙ୍କୁ ସବୁକଥା କହିଛି । ଆମେ ଏ ଯେଉଁ ଅପରେସନ୍‌ଟି କରିବାକୁ ଯାଉଛୁ, ସେ ସମ୍ବନ୍ଧରେ ଆପଣ ଯେତେବେଳେ ସବୁକଥା ଶୁଣିବେ, ବୁଝି ପାରିବେ ଆମେ କେଉଁ ଧରଣର ଏକ କାର୍ଯ୍ୟରେ ଅବତୀର୍ଣ୍ଣ ହେଉଛୁ। କାମରେ ଓହ୍ଲେଇଲେ ଆପଣ ବୁଝି ପାରିବେ କାମଟା କରିବା ପାଇଁ ଦାୟିତ୍ୱଟା ଯେତିକି ଆନନ୍ଦ ବି ସେତିକି । ତେବେ ଯା'ହେଉ, ୟୁସୁଫ୍‌ ଯେଉଁ ପ୍ରସ୍ତାବ କରିଥିଲା, ସେ ଚାହିଁଥିଲା ଆପଣଙ୍କୁ ଆମ ଭିତରେ ଅନ୍ତରଙ୍ଗ ଭାବରେ, ଆପଣ ସେଥିରେ ରାଜି ନୁହନ୍ତି ସେଥିପାଇଁ କିଛି ଚିନ୍ତା ନାହିଁ । ଆପଣ କିନ୍ତୁ ଆମଠାରୁ ବିଦାୟ ନେଇ ଯିବାକୁ ଚାହାନ୍ତି କାହିଁକି ?

ରୀନା କହିଲା : ବ୍ୟବସାୟ କରିବା ପାଇଁ ବସି ଅଯଥା ସମୟ ନଷ୍ଟ ମୁଁ ପସନ୍ଦ କରେ ନାହିଁ। କିନ୍ତୁ ଆପଣ ଯଦି ଆନନ୍ଦ କଳରୋଳ କରିବା ପାଇଁ ମୋତେ ଡାକି ଥାଆନ୍ତେ, ତା'ହେଲେ ମୁଁ ଦେଖେଇ ଦିଅନ୍ତି ଆନନ୍ଦ କାହାକୁ କହନ୍ତି। ସମୟ ଯେ କେଉଁବାଟେ କିପରି ଖସି ପଳାଇ ଯାଆନ୍ତା, ଆପଣମାନେ କେହି କିଛି ବୁଝି ପାରନ୍ତେ ନାହିଁ।

ସାମାନ୍ୟ ନୀରବତା ପରେ ଜେକବ୍ କହିଲା : ମିସ୍ ଗୋଏଲ୍ ! ଆପଣଙ୍କ ପ୍ରାପ୍ୟ ଆମେ ନିଶ୍ଚୟ ଦେବୁ। ତେବେ ଆମ ପାଇଁ ଆପଣଙ୍କ ନୀତି ଟିକିଏ କୋହଳ କରିବାକୁ ମୁଁ ଅନୁରୋଧ କରୁଚି। ଆଶା କରୁଚି ଆପଣ ମୋ କଥା ରଖିବେ।

ରୀନା ମୁହୂର୍ତ୍ତେ ମୁହଁକୁ ଚାହିଁଲା। ଧୀରେ ଧୀରେ କହିଲା : ଆପଣ ଏଥର ଆପଣଙ୍କ ଅଭିଯାନର କାହାଣୀ ମୋତେ କୁହନ୍ତୁ। ଏବଂ ତହିଁରେ ମୋର ଭୂମିକା କ'ଣ ହେବ ତାହା ମଧ୍ୟ କହିବେ।

ହଠାତ୍ ତିନିବନ୍ଧୁ କିପରି ସ୍ତବ୍ଧ ହୋଇଗଲେ। ରୀନା ଗୋଏଲ୍ ଏଥିରେ ଯେ ସମ୍ମତି ଜଣେଇବ ଏକଥା ସେମାନେ କେହି ଚିନ୍ତା କରି ପାରି ନଥିଲେ। ବ୍ରିଜ୍‌ଲାଲ ଆରମ୍ଭ କଲା-

: ଶୁଣନ୍ତୁ ମିସ୍ ଗୋଏଲ୍ ! ଆମେ ଯେଉଁ ଅଭିଯାନରେ ବାହାରିଛୁ, ତାହା ଆଉ କିଛି ନୁହେଁ, ନିଛକ ବୁଦ୍ଧିର ଖେଳ। ଆମେ ଏପରି ଜଣେ ଲୋକ ସହିତ ସେହି ଖେଳ ଖେଳିବାକୁ ଯାଉଛୁ, ଯିଏ ଭାରତ ବର୍ଷରେ ଜଣେ ପ୍ରତିଷ୍ଠିତ ଶିଳ୍ପପତି। ତାଙ୍କର ଅକଳନ୍ତ ଧନ ଭଣ୍ଡାରରୁ ସାମାନ୍ୟ କିଛି ଟାଣି ଆଣି, ସମାଜରେ ଆମେ ପ୍ରତିଷ୍ଠିତ ହେବାକୁ ଚାହୁଁ। ସେଇ ଅଭିଯାନ ରଥ ଚଳେଇବା ପାଇଁ ଆମର ଜଣେ ସାରଥୀର ଆବଶ୍ୟକ। ଏବଂ ସେହି ସାରଥୀର ଭୂମିକା ଆପଣଙ୍କର।

ରୀନା ଏଥର ସ୍ମିତ ହସି ଯୋଡ଼ହାତ କରି ଉଠି ଠିଆହେଲା। ମୁଣ୍ଡ ହଲାଇ କହିଲା : ଧନ୍ୟବାଦ, ମୋର ମନେ ରହିବ।

ତିନିବନ୍ଧୁ ଚଞ୍ଚଳ ହୋଇ ଉଠିଲେ। ବ୍ରିଜ୍‌ଲାଲ ଉଠି ଠିଆ ହୋଇ ପଡ଼ି କହିଲା : କିନ୍ତୁ ମିସ୍ ଗୋଏଲ୍, ଆପଣତ ଆମ ଅଭିଯାନର କାହାଣୀ କିଛି ଶୁଣିଲେ ନାହିଁ।

ରୀନା କହିଲା : ମୁଁ ବୁଝୁଛି, ଏବେ ବି ଆପଣମାନେ ମୋତେ ବିଶ୍ୱାସ କରି ପାରୁ ନାହାନ୍ତି। ଆଗ ମନ ସ୍ଥିର କରନ୍ତୁ। ତା'ପରେ ମୋତେ ଡାକି ସବୁ କଥା କହିବେ।

: ନା, ନା, ମିସ୍ ଗୋଏଲ୍। ସେପରି କିଛି ଧାରଣା ଆମ ମନରେ ନାହିଁ। ଆପଣ ବସନ୍ତୁ ମୁଁ ଆମର ପ୍ଲାନ ପ୍ରୋଗ୍ରାମ କଥା ସବୁ ଆପଣଙ୍କୁ କହୁଛି। ଜେକବ୍ କହିସାରି ଖଣ୍ଡିଏ ଖବର କାଗଜ ବାହାର କରି ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ହାତ ଦେଇ ପଢ଼ିବାକୁ ଦେଖାଇ ଦେଲା।

ରୀନା ଚେଆର ଉପରେ ବସି ମନଯୋଗ ସହକାରେ ପଢ଼ିବାକୁ ଲାଗିଲା। ପଢ଼ା ଶେଷକରି ଜେକବ୍ ମୁହଁକୁ ଚାହିଁ କହିଲା : ମୁଁ ବୁଝିଲି। ଭଦ୍ରଲୋକ ତାଙ୍କର ସାନ ଝିଅ ପାଇଁ ଜଣେ ଗଭର୍ଣ୍ଣେସ ର ବିଜ୍ଞାପନ ଦେଇଛନ୍ତି। ଯାହାସବୁ ଯୋଗ୍ୟତା ଆବଶ୍ୟକ ମୋର ଅଛି। ଏବଂ ଆଶା କରୁଛି ଇଣ୍ଟରଭିଉରେ ମୁଁ ପାସ୍ କରିଯିବି। କିନ୍ତୁ ଏ ତ ଗୋଟାଏ ବକ୍ସ ନମ୍ବରରେ ବିଜ୍ଞାପନ। କିଏ ଦେଇଛି, କ'ଣ ତା'ର ପରିଚିତି, ଆପଣ ଜାଣିଲେ

କିପରି ?

ଜେକବ୍ ହସିଲା । କହିଲା : ଆମେ ସବୁ ଜାଣିଛୁ । ନଜାଣି ଖାଲି ଯୋଜନା କରି ନଥାନ୍ତୁ । ଭଦ୍ରଲୋକ ଜଣେ ଶିଳ୍ପପତି । ତାଙ୍କର ଦ୍ୱିତୀୟା ପତ୍ନୀ ଏହି କନ୍ୟା ସନ୍ତାନଟି ରଖି ପାଞ୍ଚ ଛଅ ମାସ ହେବ ବିଦାୟ ନେଇଛନ୍ତି । ଝିଅଟିର ବୟସ ପାଞ୍ଚ ଛଅ ବର୍ଷ ହେବ । ତା'ର ଲାଳନ ପାଳନ, ଶିକ୍ଷା, ଦୀକ୍ଷା, ସମସ୍ତ ଦାୟିତ୍ୱ ସେ ଏପରି ଏକ ମହିଳା ଉପରେ ଦେବାକୁ ଚାହାନ୍ତି । ଯେଉଁଥିରେ ସେ ନିଶ୍ଚିନ୍ତ ହୋଇ ନିଜ ବ୍ୟବସାୟରେ ଲାଗିଯାଇ ପାରିବେ । ଝିଅ ସମ୍ବନ୍ଧରେ ତାଙ୍କର କିଛି ଦୁଶ୍ଚିନ୍ତା ରହିବ ନାହିଁ ।

: ତା'ପରେ ? ରୀନା ଗୋଏଲ୍ ପ୍ରଶ୍ନକଲା ।

ଜେକବ୍ ପକେଟରୁ କେତେଖଣ୍ଡି ଟାଇପ୍ ହୋଇଥିବା କାଗଜ ବାହାର କରି ରୀନା ଗୋଏଲ୍ ହାତକୁ ବଢ଼ାଇ ଦେଇ କହିଲା : ଏଇଟା ଆପ୍ଲିକେସନ୍। ଆପଣଙ୍କୁ ସହିକରି ଦେଇ ବକ୍ସ ନମ୍ବରରେ ପକାଇ ଦେବାକୁ ହେବ।

ରୀନା ଗୋଏଲ୍ ସେଇ କାଗଜ ଗୁଡ଼ିକ ହାତକୁ ନେଇ ମନଯୋଗ ସହକାରେ ପଢ଼ିଲା । ନିଶ୍ଚଳ ନୀରବତା । କେବଳ ସେଠାରେ ଚାରିଜଣଙ୍କର ଶ୍ୱାସ ପ୍ରଶ୍ୱାସର ଶବ୍ଦ ଶୁଭୁଥିଲା । ପନ୍ଦର ମିନିଟ୍ ପରେ ରୀନା ଗୋଏଲ୍ ସବୁ କାଗଜଯାକ ପଢ଼ିସାରି ସ୍ମିତ ହସି କହିଲା, : ଚମତ୍କାର । ଆପଣମାନେ ମୋ ପାଇଁ ଗୋଟାଏ ସୁନ୍ଦର 'ବାଇଓଡାଟା' ପ୍ରସ୍ତୁତ କରିଛନ୍ତି । ମୋର କିଛି ଆପତ୍ତି ନାହିଁ । ମୋ ନାଁ ତା'ହେଲେ ଆଜିଠାରୁ ହେଲା କେତକୀ କୁଶାରୀ । ଏଥିରେ ବି ମୋର ଆପତ୍ତି ନାହିଁ । କେବଳ ଆପତ୍ତି କେଉଁଠି ଜାଣନ୍ତି ?

ରୀନା ନୀରବ ହୋଇଗଲା । ସମସ୍ତେ ତା'ମୁହଁକୁ ଶଙ୍କିତ ଚାହାଣୀରେ ଚାହିଁଥିଲେ । ବ୍ରିଜ୍‌ଲାଲ୍ କହିଲା : ଆପତ୍ତିଟା ତା'ହେଲେ ଆପଣଙ୍କର କେଉଁଠି ?

ରୀନା ହସି ହସି କହିଲା : ସେହି ଧନୀ ଭଦ୍ର ମହୋଦୟ ମୋତେ ଯଦି ତାଙ୍କର ତୃତୀୟ ପତ୍ନୀ ଭାବରେ ପାଇବାକୁ ଚାହାନ୍ତି ।

ସମସ୍ତେ ହୋ ହୋ ହୋଇ ହସି ଉଠିଲେ ।

ରୀନା ହାତ ବଢ଼ାଇ କହିଲା : କଲମ ଦିଅନ୍ତୁ ।

ଜେକବ୍ ତା' ପକେଟରୁ କଲମଟି ବାହାର କରି ଦେଲା । ରୀନା କଲମର ଖାପ ଖୋଲି ମୁହୂର୍ତ୍ତେ ଚିନ୍ତା କଲା । ୟୁସୁଫ୍ ପକେଟରୁ ପାଞ୍ଚହଜାର ଟଙ୍କାର ଗୋଟିଏ ନୋଟ୍ ବଣ୍ଡିଲ ବାହାର କରି ରୀନା ହାତକୁ ବଢ଼ାଇ ଦେଲା ।

ରୀନା ଗୋଏଲ୍ ଆପ୍ଲିକେସନ ଫର୍ମରେ ସାଇନ୍ କରି ସ୍ମିତ ହସି କହିଲା : ମୁଁ ଆପଣମାନଙ୍କର ଶୁଭ କାମନା କରୁଛି ।

: ଆମେ ବି ଆପଣଙ୍କର ।

ତିନିବନ୍ଧୁ ଏକା ସଙ୍ଗରେ କହି ଉଠିଲେ ।

ସମସ୍ତେ ଠିଆ ହୋଇ ପଡ଼ିଥିଲେ ।

ଜେକବ୍ କହିଲା : କାଲି ଠିକ୍ ଦିନ ଏଗାରଟା ବେଳେ ଆମେ ସମସ୍ତେ ଏଠାରେ ଆଉଥରେ ମିଳିତ ହେବା ପ୍ଲାନ, ପ୍ରୋଗ୍ରାମ, କର୍ତ୍ତବ୍ୟ ସବୁକଥା ଆଲୋଚନା ହେବ ।

: ବାଇ, ବାଇ ।

ରୀନା ଗୋଏଲ୍ ଆପତ୍ତି କଲା ନାହିଁ ହାତ ହଲେଇ, ପାଞ୍ଚହଜାର ଟଙ୍କା ନେଇ ସେ

ସହି କରି ଦେଇ ଚାଲିଗଲା ।

ୟୁସୁଫ୍ କହିଲା  ମୋର ମନେ ହେଉଛି, ରୀନା ବୋଧହୁଏ ଆମ ସହିତ ପାର୍ଟନର ସିପ୍‌ରେ କାମ କରିବାକୁ ଚାହେ। ମୁଁ ଯେଉଁ ଲାଳସାଟା ତା'ମନରେ ଜଗେଇ ଦେଇଛି, ସେଇଟା ବୋଧହୁଏ କାମ କରିଛି ।

ଜେକବ୍ କହିଲା : ନା ନା, ଆଜିତ ସେ କାମରେ ଯୋଗ ଦେଉନାହିଁ । ତେଣୁ ମୁହଁ ଖୋଲି ନାହିଁ । ଯେଉଁଦିନ ଇଣ୍ଟରଭିଉ ଦେବାକୁ ଯିବ, ସେଦିନ ହୁଏତ ସେ ଟଙ୍କା ଦାବୀ କରିବ । ଆମକୁ କିନ୍ତୁ ଏହା ଭିତରେ ଆଉ କିଛି ଟଙ୍କା ଯୋଗାଡ଼ କରିବାକୁ ହେବ ।

ୟୁସୁଫ୍ କହିଲା : ସେ ଦାୟିତ୍ୱ ତ ମୁଁ ନେଇଛି । ତମେମାନେ ଏତେ ଚିନ୍ତିତ କାହିଁକି । ବରଂ ଅପରେସନର ପ୍ଲାନ୍ ପ୍ରୋଗ୍ରାମ ଭଲ ଭାବରେ ପ୍ରସ୍ତୁତ କର ।

ଠିକ୍ ଘଡ଼ିରେ ଏଗାରଟା ବାଜିବା ସଙ୍ଗେ ସଙ୍ଗେ ରୀନା ଆସି ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିଲା । ତିନିବନ୍ଧୁ ଆଗରୁ ଆସି ରୀନା ପାଇଁ ଅପେକ୍ଷା କରିଥିଲେ । ରୀନା ହସି ହସି ଘର ଭିତରେ ପ୍ରବେଶ କରି କହିଲା : ଆଶା କରୁଛି ଠିକ୍ ସମୟରେ ପହଞ୍ଚି ପାରିଛି ।

ବ୍ରିଜ୍‌ଲାଲ ହସିଲା । ଏଥର ଆପଣଙ୍କ ପ୍ଲାନ ପ୍ରୋଗାମ କଥା କୁହନ୍ତୁ । ମୁଁ ଶୁଣିସାରି ସେହି ପରି ମୋତେ ପ୍ରସ୍ତୁତ କରିବାକୁ ହେବ । ମୋର ସ୍ୱଭାବ ବଦଳେଇ ମୋତେ ନିର୍ଦ୍ଦିଷ୍ଟ ଭୂମିକା ପାଇଁ ପ୍ରସ୍ତୁତ ହେବାକୁ ହେବ ।

ଜେକବ୍ କହିଲା : ସେଠ୍ ରତନ ମଲ କାନୋଡ଼ିଆଙ୍କ ନାମ ଆପଣ ଶୁଣିଛନ୍ତି ? ବାଲିଗଞ୍ଜ ସାରକୁଲାର ରୋଡ଼ରେ ତାଙ୍କର ବିରାଟ ପ୍ରାସାଦ । ଭଦ୍ରଲୋକ କୋଟି କୋଟି ଟଙ୍କାର ମାଲିକ । ବର୍ତ୍ତମାନ ସମୟରେ ସେ ଜଣେ ଉଠ୍‌ତି ବ୍ୟବସାୟୀ । ଭାରି ବ୍ୟସ୍ତ ମଣିଷ । ତାଙ୍କର କଟନ୍ ମିଲ, ଜୁଟ୍ ମିଲ୍, ଖଣି ନାନା ପ୍ରକାର ବ୍ୟବସାୟ ଅଛି । ସେ ଯା' ହେଉ ସଂକ୍ଷେପରେ କହିବାକୁ ଗଲେ ସେ ଜଣେ ଧନ କୁବେର। ଆଠ ଦଶଲକ୍ଷ ଟଙ୍କା ତାଙ୍କ ପାଖରେ କିଛି ନୁହେଁ ।

ଜେକବ୍ ଟିକିଏ ନୀରବ ରହି ସମସ୍ତଙ୍କ ମୁହଁକୁ ଥରେ ଚାହିଁଲା । ଦେଖିଲା ସମସ୍ତେ ତା' କଥା ମନଯୋଗ ଦେଇ ଶୁଣୁଛନ୍ତି । ଜେକବ୍ ପୁଣି ଆରମ୍ଭ କଲା : ଆମର ଅଭିଯାନ ସେଇଠି । ପ୍ରଥମେ ଆମର ଜଣେ ନିଜ ଲୋକ ଯାଇ ତାଙ୍କ ଘରର ଅନ୍ଦର ମହଲରେ ଜମେଇ ବସିବାକୁ ହେବ । ସେଇ ସୁଯୋଗ ଆସିଛି ।

ସହଜ ଭାଷାରେ କହିବାକୁ ଗଲେ, ଆମେ ସେଠ୍ ରତନମଲଙ୍କୁ ବ୍ଲାକମେଲିଂ କରିବାକୁ ଚାହୁଁ ।

ପୁଣି କ୍ଷଣକର ନୀରବତା । ଜେକବ୍ ଏଥର ରୀନା ମୁହଁକୁ ଚାହିଁ କହିଲା : ଆପଣଙ୍କର ନିପୁଣ ଅଭିନୟ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ଆପଣଙ୍କର ଅଭିନୟ ଉପରେ ଆମର ସଫଳତା ନିର୍ଭର କରୁଛି । ଆପଣ କିନ୍ତୁ ରତନମଲଙ୍କର ଏକାନ୍ତ ବିଶ୍ୱାସଭାଜନ ହେବାକୁ ପଡ଼ିବ । ତା'ନହେଲେ ସେ ତାଙ୍କ ଝିଅର ପୂର୍ଣ୍ଣ ଦାୟିତ୍ୱ ଆପଣଙ୍କ ଉପରେ ଦେବେ ନାହିଁ । ତାଙ୍କ ଝିଅକୁ ଧରି ଆପଣ ବାହାରକୁ ଆସି ନ ପାରିଲେ ଆମ ଯୋଜନା

ସଫଳ ହେବ ନାହିଁ ।

ଅବଶ୍ୟ ସେଠ୍ ରତନମଲଙ୍କର ଏକାନ୍ତ ବିଶ୍ୱାସଭାଜନ ହେବାକୁ ହେଲେ ଆପଣଙ୍କୁ ଟିକିଏ ଅଭିନୟ କରିବାକୁ ପଡ଼ିବ । ସେଠ୍ ରତନମଲ ଜଣେ ଗଭର୍ଣ୍ଣେସ୍ ପାଇଁ ବିଜ୍ଞାପନ ଦେଇଛନ୍ତି । ଅଥଚ ତାଙ୍କର ସୁନ୍ଦରୀ, ସୁଶ୍ରୀ ଓ ଅଳ୍ପ ବୟସ୍କା ଗଭର୍ଣ୍ଣେସ ଆବଶ୍ୟକ । ଇଙ୍ଗିତଟା ଆପଣ ନିଶ୍ଚୟ ବୁଝି ପାରୁଥିବେ । ତେଣୁ ମୋର ବିଶ୍ୱାସ ସେଠ୍ ରତନମଲର ବିଶ୍ୱାସଭାଜନ ହେବାପାଇଁ ଆପଣଙ୍କ ପରି ଚତୁର ମହିଳାଙ୍କର ବିଶେଷ ଅସୁବିଧା ହେବନାହିଁ । ଖାଲି ସେତିକି ନୁହେଁ, ଏହାପରେ ସେହି ସାନଝିଅଟି ଉପରେ ପ୍ରଭାବ ବିସ୍ତାର କରିବାକୁ ହେବ । ଏପରି ଭାବରେ ତା' ମନ କିଣିବାକୁ ହେବ, ସେ ଯେପରି ଆପଣଙ୍କୁ ମୁହୂର୍ତ୍ତେ ଛାଡ଼ିବାକୁ ପ୍ରସ୍ତୁତ ନୁହେଁ, ତା'ପରେ ସେଠ୍ ରତନମଲଙ୍କ ଘରର ଆଭ୍ୟନ୍ତରିଣ ପରିସ୍ଥିତି ନିଶ୍ଚୟ ଉତ୍ତପ୍ତ ହୋଇଥିବ । ତାଙ୍କ ଘର ଭିତରେ ବହୁ ସ୍ୱାର୍ଥାନ୍ୱେଷୀ ମଣିଷ ଆସନ ଜମେଇ ଥିବେ । ଏ ସବୁ ଭିତରେ ଆପଣଙ୍କୁ ଧୀର ମନ ସ୍ଥିର ଚିତ୍ତରେ କାମ କରି ଯିବାକୁ ହେବ । ଯେତେବେଳେ ଆପଣ ସେଠି ପ୍ରତିଷ୍ଠିତ ଏବଂ ସେଠ୍ ରତନମଲଙ୍କର ବିଶ୍ୱାସ ଭାଜନ ହୋଇ ଉଠିବେ, ତା'ପରେ ଆମର ଅଭିଯାନ ଆରମ୍ଭ ହୋଇଯିବ।

ଜେକବ୍ ନୀରବ ହେଲା । ରୀନା କହିଲା : ଏ ତ ରୀତିମତ ଗୋଟାଏ ନାଟକ । ରିହଲସାଲ୍ ଦେଇ, ମଞ୍ଚ ଠିକ୍ କରି, ଅଭିନୟ ଦିନ ଘୋଷଣା କରିବାକୁ ଛଅ ସାତ ମାସ ଲାଗିଯିବ ।

ବ୍ରିଜ୍‌ଲାଲ କହିଲା : ଅବଶ୍ୟ କାମଟା ଟିକିଏ ସମୟ ସାପେକ୍ଷ, ଛଅ ସାତମାସ ନ ଲାଗିଲେ ବି ତିନି ଚାରିମାସ ନିଶ୍ଚୟ ଲାଗିବ । ଆପଣଙ୍କୁ ଟିକିଏ ମନଧ୍ୟାନ ଦେଇ ସଫଳତା ଅର୍ଜନ କରିବାକୁ ହେବ। ସବୁ ତ ଆପଣଙ୍କ ଉପରେ ନିର୍ଭର କରୁଛି । ଆପଣ ଭିତରେ ରହିବେ, ଆମେ ବାହାରେ ରହିବୁ । ତେଣୁ ଆପଣଙ୍କର ଦାୟିତ୍ୱର ବୋଝ ସମ୍ବନ୍ଧରେ ଆପଣ ନିଶ୍ଚୟ ସଚେତନ ହେବେ ।

: ହୁଁ, ତା'ପରେ ? ରୀନା ପଚାରିଲା ।

: ତା'ପରେ-ଘଟଣା ଅତ୍ୟନ୍ତ ସଂକ୍ଷିପ୍ତ । ଜେକବ୍ କହିଲା । ଆମେ ଦିନେ ସୁଯୋଗ ଦେଖି ସେଠ୍ ରତନମଲଙ୍କ ଝିଅଟିକୁ ହରଣଚାଲ କରିନେବା ଏବଂ ମୁକ୍ତିପଣ ଆମର ହେବ ଦଶଲକ୍ଷ ଟଙ୍କା । ଆପଣ ନିଶ୍ଚିନ୍ତ ରୁହନ୍ତୁ ମିସ୍ ଗୋଏଲ୍, ସେଠ୍ ରତନମଲ ଆମକୁ ଦଶଲକ୍ଷ ଟଙ୍କା ମୁକ୍ତି ପଣ ଦେଇ ତାଙ୍କ ଝିଅକୁ ମୁକୁଳେଇ ନେବେ । କାରଣ ସେଠ୍ ରତନମଲ ଏତେବଡ଼ ଧନୀ ହେଲେ ବି, ତାଙ୍କ ହୃଦୟଟା ଖୁବ୍ କୋମଳ ଏବଂ ସେ ଅତି ଦୁର୍ବଳ ଚରିତ୍ରର ଲୋକ । କୌଣସି ପରିସ୍ଥିତିରେ ସେ ଥାନା ପୁଲିସ୍ କରିବାକୁ ଚାହାଁନ୍ତି ନାହିଁ । ତେଣୁ ଅତି ସହଜରେ ଆମେ ବିଜୟ ହାସଲ କରିବା ।

: ହୁଁ, ବୁଝିଲି । ଯଦି ସେଠ୍ ରତନମଲ ମୁକ୍ତିପଣ ନଦେଇ ପୋଲିସ୍‌ର ସାହାଯ୍ୟ ନିଅନ୍ତି ? ରୀନା ପଚାରିଲା ।

: ନା ମିସ୍ ଗୋଏଲ୍ । ସେ ଆଦୌ ପୁଲିସ୍ ପାଖକୁ ଯିବେନାହିଁ । ଆମେ ସେଠ୍ ରତନମଲଙ୍କ ଚରିତ୍ର ଭଲଭାବରେ ବିଶ୍ଳେଷଣ କରିଛୁ । ସେ ଜଣେ ଭୀରୁ ପ୍ରକୃତିର ଲୋକ । ଆଉ ଯଦି ବା ପୋଲିସ୍ ପାଖକୁ ଗଲେ ପୋଲିସ୍ ଆମର କିଛି କରିପାରିବ

ନାହିଁ । ଆମେ ତ ସବୁଆଡୁ ଜାଗତିଆର ହୋଇ କାମ କରି ପାରିବା, ତେଣୁ ଆପଣଙ୍କର ଚିନ୍ତାର କାରଣ କିଛି ରହିବ ନାହିଁ । ଜେକବ୍ କହିଲା ।

ହଁ ସେ ଅବଶ୍ୟ ଗୋଟାଏ ପଏଣ୍ଟ ମିସ୍ ଗୋଏଲ୍ । ସେଥିପାଇଁ ମୁଁ ମଧ ଗୋଟାଏ ଉପାୟ ଚିନ୍ତା କରିଛି । ଆପଣଙ୍କୁ ସେଠ୍ ରତନମଲଙ୍କ ସହ ଗୋଟାଏ ଚୁକ୍ତି କରିବାକୁ ହେବ, ସପ୍ତାହରେ ଦିନେ ଅର୍ଥାତ୍ ରବିବାର ଦିନ ମାତ୍ର ତିନିଚାରିଘଣ୍ଟା ପାଇଁ ଆପଣ ଛୁଟି ନେବେ। ଆପଣଙ୍କ ବୃଦ୍ଧା ମା'ଙ୍କୁ ଦେଖିବାକୁ ଯିବେ । ଏହିପରି ଗୋଟାଏ ସର୍ତ୍ତରେ ବୋଧହୁଏ ସେଠ୍ ରତନମଲ ଅରାଜି ହେବେ ନାହିଁ । ଆଉ ସପ୍ତାହାର ସେଇ ତିନିଚାରି ଘଣ୍ଟା ସମୟ ଆମପାଇଁ ଯଥେଷ୍ଟ । ସେତିକିବେଳେ ଆମେ ଏକତ୍ର ହୋଇ ଆମର ପରବର୍ତ୍ତୀ କାର୍ଯ୍ୟପନ୍ଥା ସ୍ଥିର କରିବା ।

ରୀନା କହିଲା : ସବୁ ବୁଝିଲି ଯେ । ମୁଁ ଆଗ ଇଣ୍ଟରଭିଉରେ ପାସ୍ କରେ । ସେଠ୍ ରତନମଲଙ୍କ ଘରେ ନିଯୁକ୍ତି ପାଏ । ତା'ପରେ ଯାଇ ତ ସର୍ତ୍ତ ଆରୋପ କରିବା କଥା ।

ଜେକବ୍ କହିଲା : ସେ ଦିଗରୁ ଆପଣ ମନକୁ ଦୃଢ଼ କରନ୍ତୁ । ଏ ପରୀକ୍ଷାରେ ଯେ ଆପଣ ଉତ୍ତୀର୍ଣ୍ଣ ହେବେ, ସେଥିପାଇଁ ପ୍ରତିଜ୍ଞାବଦ୍ଧ ହୁଅନ୍ତୁ । ମୂଳରୁ ହତାଶ ହେଲେ ଶେଷ ପର୍ଯ୍ୟନ୍ତ ସଫଳତା ଅର୍ଜନ କରିବା ସମ୍ଭବ ହେବନାହିଁ ।

ରୀନା ଉଠିଲା । କହିଲା : ଆଜି ପର୍ଯ୍ୟନ୍ତ ମୁଁ ମୋ ଜୀବନରେ କେବେ ଅସଫଳ ହୋଇନାହିଁ । ତେବେ ଏ କ୍ଷେତ୍ରରେ ସଫଳତା ଅର୍ଜନ କରିବା ନ କରିବା ମୂଳରେ ମୋର ବିଶେଷ ହାତ ନାହିଁ ତଥାପି ଚେଷ୍ଟାରେ ମୁଁ ତ୍ରୁଟି କରିବି ନାହିଁ ।

ତିନିବନ୍ଧୁଯାକ ରୀନାର ଯିବା ପଥକୁ ଅନାଇ ରହିଥିଲେ । ସେ ଦରଜା ଖୋଲି, ଥରେ ପଛକୁ ଚାହିଁ, ସ୍ମିତ ହସି ଧୀରେ ଧୀରେ ବାହାରିଗଲା ।

ୟୁସୁଫ୍ କହିଲା : ଟୋକୀଟ ଆଉ ଟଙ୍କା କଥା କିଛି ମୁହଁରେ ଧରିଲା ନାହିଁ । ସେ ବୋଧହୁଏ ଆମ ସର୍ତ୍ତରେ ମନେ ମନେ ରାଜି ହୋଇଯାଇଛି ।

ବ୍ରିଜ୍‌ଲାଲ କହିଲା : ରାଜି ହେଉ ନହେଉ ଆମକୁ କିନ୍ତୁ ଆଉ କିଛି ଟଙ୍କା ସଂଗ୍ରହ କରି ରଖିବାକୁ ହେବ । ସେ ଯଦି ଇଣ୍ଟରଭିଉ ଦିନ ଟଙ୍କା ମାଗିଦିଏ ଆମେ ଦେଇ ନ ପାରିଲେ ଆମର ସବୁ ଯୋଜନା ଭଣ୍ଡୁର ହୋଇଯିବ ।

ଶେଷ ପର୍ଯ୍ୟନ୍ତ ରୀନା ଇଣ୍ଟରଭିଉରେ ପାସ୍ କଲା ।

ତା' ନାଁ ହେଲା କେତକୀ କୁଶାରୀ ।

ଇଣ୍ଟରଭିଉ ବୋର୍ଡ଼ରେ ସେଠ୍ ରତନମଲ କାନୋଡ଼ିଆ ବସି ରହିଥିଲେ । ସମୁଦାୟ ପଚିଶଟି ଝିଅଙ୍କୁ ଡାକିଥିଲେ ଇଣ୍ଟରଭିଉ ନେବାପାଇଁ ।

ଗୋଟି ଗୋଟି କରି ସମସ୍ତଙ୍କୁ ଇଣ୍ଟରଭିଉ ଦେବାକୁ ହୋଇଥିଲା । ସେଠ୍ ରତନମଲ ଯଦିଓ କାହାରିକୁ କୌଣସି ପ୍ରଶ୍ନ କରୁ ନଥିଲେ, କିନ୍ତୁ ପ୍ରତିଟି ଝିଅକୁ ସେ ଦେଖୁଥିଲେ ଏକ୍ସ-ରେ କଲାପରି ।

ଚଉଦ ଜଣଙ୍କ ପରେ ପାଳି ପଡ଼ିଲା ରୀନା ଗୋଏଲ୍‌ର।।

: ତମ ନାଁ ? ଜଣେ ପ୍ରଶ୍ନକଲା ।

: କେତକୀ କୁଶାରୀ । ରୀନା ଗୋଏଲ୍ କହିଲା । ସେଠ୍ ରତନମଲ କେତକୀ କୁଶାରୀର ଆପ୍ଲିକେସନ ଫର୍ମ ଓ ବାଇଓଡାଟା ଉପରୁ ଆଖି ଫେରାଇ ଚାହିଁଲେ କେତକୀ କୁଶାରୀ ମୁହଁକୁ ।

ଚାରିଚକ୍ଷୁରେ ମିଳନ ହେଲା ।

କେତକୀ କୁଶାରୀ ମୁହଁରେ ଫୁଟି ଉଠିଲା ସ୍ମିତ ହାସ୍ୟ । ଆଖି ନୋଇଁଲା ତଳକୁ ।

: ତୁମେ ଏଥି ପୂର୍ବରୁ ମିଷ୍ଟର ଥମସନଙ୍କ ଘରେ ଗଭର୍ଣ୍ଣେସ ଥିଲ, ସେଠୁ ଛାଡ଼ିଦେଲ କାହିଁକି ?

: ସେମାନେ ତାଙ୍କ ଦେଶକୁ ଚାଲିଗଲେ ।

: ତା'ପରେ ?

: ତା'ପରେ ଆଉ କିଛି କରିନାହିଁ ।

ତମର ଆଉ କିଏ ଅଛନ୍ତି ?

: ମା' ଆଉ ଗୋଟିଏ ଛୋଟ ଭାଇ ।

: ତମେ ଯଦି ଏଠି ନିଯୁକ୍ତି ପାଅ, ଏଇଠି ତୁମକୁ ରହିବାକୁ ହେବ ।

: ମୋର ଆପତ୍ତି ନାହିଁ ।

ସେଠ୍ ରତନମଲ ଧୀରେ ଧୀରେ କ'ଣ କହିଲେ। କେତକୀ କୁଶାରୀର ଆପ୍ଲିକେସନ ଫର୍ମ ଓ ବାଇଓଡ଼ାଟାରେ ସହିକରି ଇଣ୍ଟରଭିଉ ବୋର୍ଡ଼ର ଜଣକ ହାତକୁ ବଢ଼ାଇ ଦେଲେ । ସେ କେତକୀ କୁଶାରୀ ଆଡ଼େ ଚାହିଁ କହିଲେ-

: ଆପଣ ଏଥର ଯାଇ ପାରନ୍ତି ।

ଆହୁରି ଦଶ ଜଣଙ୍କର ଇଣ୍ଟରଭିଉ ଶେଷ ହେବା ପର୍ଯ୍ୟନ୍ତ କେତକୀ କୁଶାରୀକୁ ଅପେକ୍ଷା କରିବାକୁ ପଡ଼ିଲା । ଅନ୍ୟ ଝିଅମାନେ କିନ୍ତୁ ଇଣ୍ଟରଭିଉ ଦେଇସାରି ସଙ୍ଗେ ସଙ୍ଗେ ଚାଲି ଯାଉଥିଲେ ।· କେତକୀ କୁଶାରୀକୁ ଦରବାନ ଅପେକ୍ଷା କରିବାକୁ କହିଲା ।

ଅଧଘଣ୍ଟା ପରେ ପୁଣି ଥରେ ଡାକରା ଆସିଲା କେତକୀ କୁଶାରୀକୁ । ଏଥର ସେଠ୍ ରତନମଲଙ୍କ ବୈଠକ ଖାନାରେ । ସେ ଯାଇ ଠିଆ ହେଲା । ରତନମଲ କ'ଣ ଗୋଟାଏ ରିପୋର୍ଟ ମନ ଦେଇ ପଢୁଥିଲେ । କହିଲେ,

: ବସ କେତକୀ ।

କେତକୀ ବସିଲା । ଚାହିଁଲା ସେଠ୍ ରତନମଲଙ୍କ ମୁହଁକୁ । ଭଦ୍ରଲୋକ ଦେହ ମୁହଁରେ ବୟସର ଛାପ ପଡ଼ିଛି । ମୁଣ୍ଡବାଳ ପାଚିବାକୁ ଆରମ୍ଭ କରିଛି । ତଥାପି ମୁହଁରେ ଜ୍ୟୋତି ଅଛି । ଚେହେରାରେ ଲାବଣ୍ୟ ଅଛି । ଏଥର ପଢୁଥିବା କାଗଜଟା ଟେବୁଲ୍ ଉପରେ ଥୋଇ ସେଠ୍ ରତନମଲ ଚାହିଁଲେ କେତକୀ କୁଶାରୀର ମୁହଁକୁ ।

: ଶୁଣିଲେ ସୁଖୀହେବ କେତକୀ ତମକୁ ମୁଁ ଯମୁନାର ଗଭର୍ଣ୍ଣେସ ଭାବରେ ସିଲେକ୍ଟ କରିଛି । କାହିଁକି ଜାଣ କେତକୀ ?

ରତନମଲଙ୍କ କଥା ଶେଷ ହେଲାନାହିଁ । ଘର ଭିତରକୁ ପାଞ୍ଚଛଅ ବର୍ଷର ଗୋଟିଏ ଝିଅ ନାଚି ନାଚି ଆସି ହଠାତ୍ ଦୁଆର ମୁହଁରେ ଅଟକି ଯାଇ କେତକୀ କୁଶାରୀ ମୁହଁକୁ କିଛି ସମୟ ଏକ ଦୃଷ୍ଟିରେ ଅନାଇ ରହି ମା' ମା' ଡାକି କେତକୀ କୁଶାରୀ କୋଳରେ

ଲୋଟି ପଡ଼ିଲା ।

କେତକୀ ଏପରି ଏକ ପରିସ୍ଥିତି ପାଇଁ ଆଦୌ ପ୍ରସ୍ତୁତ ନଥିଲା । ସେ ହଠାତ୍ ଉଠିପଡ଼ି କ'ଣ କରିବ ନ କରିବ କିଛି ଚିନ୍ତା କରିବା ପୂର୍ବରୁ ସେଠ୍ ରତନମଲ ଯମୁନାକୁ ଭିଡ଼ି ଆଣି କୋଳରେ ଧରି ଘର ଭିତରକୁ ପଶିଗଲେ । କେତକୀ ସ୍ତବ୍ଧ ହୋଇ ଠିଆ ହୋଇ ରହିଲା କିଛି ସମୟ । ତା'ପରେ ଧୀରେ ଧୀରେ ବସି ପଡ଼ିଲା ସୋଫା ଉପରେ । ପରିଚାରିକା ଆଣି କଫି ଓ କିଛି ଜଳଖିଆ ରଖିଗଲା ।

କେତକୀ କୁଶାରୀ କିଛି ବୁଝି ପାରିଲା ନାହିଁ । ସେଇ ଯେଉଁ ଝିଅଟି ମା' ମା' କହି ଆସି ତାକୁ ଯାବୁଡ଼ି ଧରିଲା, ହୁଏତ ସେଇ ଝିଅଟି ପାଇଁ ସେ ନିଯୁକ୍ତି ପାଇବ ଏଠି । କିନ୍ତୁ ଝିଅଟିର କ'ଣ ମୁଣ୍ଡଦୋଷ ଅଛି ? ନ ହେଲେ ଜଣେ ଅପରିଚିତା ମହିଳାକୁ ଦେଖି ମା' ମା' କହି ଜାବୁଡ଼ି ଧରିଥାନ୍ତା କାହିଁକି ? ଏ କ୍ଷେତ୍ରରେ ତା'ର କର୍ତ୍ତବ୍ୟ କ'ଣ ? ଝିଅଟାର ଯଦି ସତରେ ମୁଣ୍ଡଦୋଷ ଥାଏ ତା'ହେଲେ ତାକୁ ଧରି ଚଳିବା ଯନ୍ତ୍ରଣା ଦାୟକ ହୋଇ ଉଠିବ ।

: କଫି ଥଣ୍ଡା ହୋଇଯାଇଛି, ଆପଣ ଖାଇ ନିଅନ୍ତୁ । ଗୋଟିଏ ନାରୀ କଣ୍ଠର ସ୍ୱର ଶୁଣି କେତକୀ ଯେପରି ଚେତନା ଫେରି ପାଇଲା । ଚାହିଁ ଦେଖିଲା, ତା' ସାମ୍ନାରେ ଜଣେ ତରୁଣୀ ବସି ତା' ଆଡ଼େ ଚାହିଁଛନ୍ତି । ଅପରୂପ ସୁନ୍ଦରୀ, ମୂଲ୍ୟବାନ ବେଶ ପୋଷାକ, ମୁହଁରେ ସ୍ମିତ ହାସ୍ୟ । ବୟସ କେତେ ହେବ ? କୋଡ଼ିଏ ଏକୋଇଶ । କେତକୀ ଅବାକ୍ ହୋଇ ଚାହିଁଥିଲା ଝିଅଟି ମୁହଁକୁ ।

: ଆପଣ ଖାଇ ଦିଅନ୍ତୁ । ସବୁ ଥଣ୍ଡା ହୋଇ ଯିବ ଯେ ! ଝିଅଟି ପୁଣି କହିଲା ।

: ଆପଣ ?.....କେତକୀ କ'ଣ କହିବାକୁ ଯାଇ କହି ପାରିଲା ନାହିଁ ।

ଝିଅଟି କହିଲା : ମୋ ନା ଗଙ୍ଗା । ପରେ ଆପଣ ମୋତେ ଚିହ୍ନି ପାରିବେ । ଆପଣ ତ ରହିବେ ଆମଘରେ । ଜାଣନ୍ତି କେତକୀ ଦେବୀ ! ମୋର କିନ୍ତୁ ଏ ଘରେ କେହି ସାଙ୍ଗ ସାଥୀ ନାହାନ୍ତି । ମୋର ସମୟ ଭାରି କଷ୍ଟରେ କଟେ । ଆପଣ ଆସିଲେ କଥାବାର୍ତ୍ତା ହୋଇ ସମୟ ଗୁଡ଼ାକ କଟିଯିବ । ଆପଣ ଆସିବେଟି ।

କେତକୀ କ'ଣ କହିବାକୁ ଯାଉଥିଲା ।

କିନ୍ତୁ ଗଙ୍ଗା ଆଉ ଅପେକ୍ଷା ନ କରି ଉଠି ଚାଲିଗଲା । କେତକୀ ତା' ଯିବା ପଥକୁ ଚାହିଁଥିଲା । କେତକୀର ବିପରୀତ ଦିଗରୁ ଆଉଜଣେ ଯୁବକ ଆସିବାର ଦେଖି କେତକୀ ଆଖି ଫେରାଇ ଆଣିଲା କଫି କପ୍ ଉପରକୁ । ଯେଉଁ ଯୁବକ ଜଣକ ଆସୁଥିଲେ, ତାଙ୍କୁ ସେ ଦେଖିଥିଲା ଇଣ୍ଟରଭିଉ ବୋର୍ଡରେ ।

ସେ ଆସି ଠିଆ ହେଲେ ।

କେତକୀ କୁଶାରୀ ମୁହଁକୁ ଚାହିଁ ହସିଲେ । କହିଲେ, : କଂଗ୍ରାଚୁଲେସନ୍ ମିସ୍ କୁଶାରୀ । ଏଇ ଆପଣଙ୍କ ନିଯୁକ୍ତି ପତ୍ର । କାଲିଠାରୁ ଆପଣ ଜଏନ୍ କରିବେ । କେତକୀ କୁଶାରୀ ଠିଆ ହୋଇ ପଡ଼ି କମ୍ପିତ ହସ୍ତରେ ଖଣ୍ଡିଏ ଖାମ୍ ଗ୍ରହଣ କଲା ।

ଯୁବକ ଜଣକ ବସିଲେ ଏବଂ କେତକୀକୁ ବସିବାକୁ କହିଲେ ।

ଯୁବକଟି କହିଲା : ଆପଣ ଖୁବ୍ ଭାଗ୍ୟବାନ ମିସ୍ କୁଶାରୀ ଏଇ ଚାକିରି ଖଣ୍ଡିକ ପାଇଁ ପ୍ରାୟ ଚାରି ପାଞ୍ଚଶହ ଆପ୍ଲିକେସନ ପଡ଼ିଥିଲା । ତହିଁରୁ ବଛେଇ ହୋଇ ମାତ୍ର

ପଚିଶ ଜଣଙ୍କୁ ଡକା ହୋଇଥିଲା । ତା'ଭିତରୁ ବାଜିମାତ୍ କଲେ ଆପଣ । ଅବଶ୍ୟ ଆପଣଙ୍କୁ ନିଯୁକ୍ତି ଦେବା ପଛରେ ମୋର ଯଥେଷ୍ଟ ହାତ ଅଛି । ସେଗୁଡ଼ା ଅବଶ୍ୟ ମୁଁ ନିଜେ କହିବା ଉଚିତ ନୁହେଁ । ତେବେ ଆପଣଙ୍କ 'ବାଇଓଡାଟା'ଟା ଆପଣଙ୍କୁ ଯଥେଷ୍ଟ ସାହାଯ୍ୟ କରିଛି । ଆପଣ ଯେ ମିଷ୍ଟର ଥମ୍‌ସନଙ୍କ ଘରେ ଦୁଇବର୍ଷ ଥିଲେ ଏବଂ ତାଙ୍କ ସାନ ଝିଅଟିର ସଂପୂର୍ଣ୍ଣ ଦାୟିତ୍ୱ ନେଇଥିଲେ, ଯଦିଓ ସେମାନେ ତାଙ୍କ ଦେଶକୁ ଫେରି ଯାଇଛନ୍ତି । କିନ୍ତୁ ଆମେ ଅନୁସନ୍ଧାନ କରି ଜାଣିଥିଲୁ, ଆପଣ ଖୁବ୍ ଦକ୍ଷତାର ସହିତ ତାଙ୍କର ସେହି ମାତୃହରା ଝିଅଟିର ଦାୟିତ୍ୱ ପାଳନ କରିଥିଲେ । ଏଠାରେ ବି ଆପଣଙ୍କର ସେଇ ନିଷ୍ଠା, ସେଇ ଆନ୍ତରିକତା ଆମେ ଆପଣଙ୍କ ଠାରୁ ଆଶା କରୁଛୁ ।

ଯୁବକଟି ଉଠି ଠିଆ ହେଲା ।

କେତକୀ ବି ଉଠିଲା ସଙ୍ଗେ ସଙ୍ଗେ କହିଲା : ଆପଣ ମୋପାଇଁ ଯାହା କରିଛନ୍ତି, ସେଥିପାଇଁ ମୁଁ କୃତଜ୍ଞ । ଆପଣଙ୍କ ପରିଚୟ.....

: ମୋ ନାଁ ରଜତ କୁମାର । ମୁଁ ସେଠ୍‌ଜୀଙ୍କ ମାଇନିଂ ବିଭାଗର ମ୍ୟାନେଜର । ପରେ ଦେଖାହେବ । ନମସ୍କାର ।

ରଜତ୍ କୁମାର ଚାଲିଗଲା ।

କେତକୀ କୁଣ୍ଠାରୀ ସେହିପରି ଠିଆ ହୋଇଥିଲା । ହାତରେ ଧରିଥିବା ଆପଏଣ୍ଟମେଣ୍ଟ ଲେଟରଟି ଆଡ଼କୁ ଥରେ ଚାହିଁଲା । ତା'ର ମନ ହେଉଥିଲା ଖୋଲି ଦେଖିବ, କିନ୍ତୁ ନା ଚିଠିଟା ଏଇଠି ଖୋଲି ପଢ଼ିବା ଠିକ୍ ହେବ ନାହିଁ ।

ସେ ଭାବି ପାରୁ ନଥିଲା ଏଇ ମୁହୂର୍ତ୍ତରେ ତା'ର କର୍ତ୍ତବ୍ୟ କ'ଣ ? ଚାଲିଯିବ-ନା ସେଠ୍ ରତନମଲ ଫେରିବାଯାଏ ଅପେକ୍ଷା କରିବ ? ସେ ତ ଗଲାବେଳେ ତାକୁ କିଛି କହିଗଲେ ନାହିଁ ।

ଆଉ ଚାରି ପାଞ୍ଚ ମିନଟ୍ ଅପେକ୍ଷା କରିବା ପରେ କେତକୀ ଚାଲି ଯାଉଥିଲା । କିନ୍ତୁ ପଛରୁ କିଏ ଡାକିବାର ଶୁଣି ସେ ଠିଆ ହୋଇଗଲା । ସ୍ୱୟଂ ସେଠ୍ ରତନମଲ ।

ସେ କେତକୀକୁ ଡାକିନେଲେ ତାଙ୍କର ପର୍ସନାଲ ଚେମ୍ବରକୁ। କହିଲେ : ମୁଁ ଜାଣେନାହିଁ ତମେ କ'ଣ ମନରେ ଭାବିଛ । କିନ୍ତୁ ଯମୁନା ତା' ମା'ର ମୃତ୍ୟୁ ସମ୍ବାଦ ଜାଣିନାହିଁ । ତା' ମା'ର ଯେତେବେଳେ ମୃତ୍ୟୁ ହୁଏ ଯମୁନା ଏଠାରେ ନଥିଲା । ସେ ବା ମୃତ୍ୟୁ ସମ୍ବନ୍ଧରେ ବୁଝେ କ'ଣ । ଅବଶ୍ୟ ଦିନେ ସେ ସବୁକଥା ଜାଣିବା କିନ୍ତୁ ଏବେ ସେ ଯାହାକୁ ଦେଖୁଛି ମା' ମା' କହି ତା' ପାଖକୁ ଛୁଟି ଯାଉଛି । ତମକୁ ସେହିପରି ମା' ମା' କହି ଜାବୁଡ଼ି ଧରିଲା । ଆଚ୍ଛା କେତକୀ, ମୁଁ ତୁମକୁ ଗୋଟାଏ କଥା ପଚାରିବି । ତମେ କିନ୍ତୁ ଅନ୍ୟ କିଛି ଭାବିବ ନାହିଁ ।

ସେଠ୍ ରତନମଲ ମୁହୂର୍ତ୍ତେ ନୀରବ ହୋଇ କେତକୀ ମୁହଁକୁ ଚାହିଁଲେ ।

ସେ କିଛି କହିଲା ନାହିଁ ।

: ଧର ଯମୁନା ଯଦି ତମକୁ ମା' ମା' ଡାକି ତମ କୋଳରେ ଆଶ୍ରୟ ଚାହେଁ, ତମର କ'ଣ ସେଥିରେ କିଛି ଆପତ୍ତି ଅଛି ?

କେତକୀ ଟିକିଏ ଚିନ୍ତିତ ହୋଇ ପଡ଼ିଲା । କିଛି ଉତ୍ତର ଦେବା ଆଗରୁ ସେଠ୍ ରତନମଲ କହିଲେ,

: ଶୁଣ କେତକୀ । ତମୁକୁ ସେ ମା' ମା' ଡାକି ଜାବୁଡ଼ି ଧରିବାର ଆଉ ଗୋଟାଏ ବିଶେଷ କାରଣ ଅଛି । ତା'ମାର ସାଦୃଶ୍ୟ ସହିତ ତୁମ ମୁହଁର ସାଦୃଶ୍ୟର ଅଳ୍ପ ଟିକିଏ ମେଳ ଅଛି । ଖାଲି ଯମୁନା କାହିଁକି ମୁଁ ତୁମକୁ ପ୍ରଥମେ ଦେଖି ମଧ ଚମକି ଉଠିଥିଲି ।

ଯମୁନାର ବୟସ ବର୍ତ୍ତମାନ ଛଅ । ଯମୁନାକୁ ଯେତେବେଳେ ପାଞ୍ଚ ବର୍ଷ ବୟସ, ସେଇଦିନ ଠାରୁ ସେ ତା' ମା'ଠାରୁ ବିଚ୍ଛିନ୍ନ ହୋଇ ରହିଥିଲା । ଅବଶ୍ୟ ତା'ର ଗୋଟାଏ କାରଣ ଥିଲା। ସେ ଯା'ହେଉ ଯମୁନା ତା' ମା'କୁ ବର୍ଷେ ହେଲା ଦେଖି ନଥିଲା । ତା'ପରେ ତୁମକୁ ଯେତେବେଳେ ଦେଖିଲା, ବର୍ଷକ ତଳର ସ୍ମୃତିକୁ ମନେ ପକାଇ ସେ ଧାଇଁଗଲା ତୁମ କୋଳକୁ । ଅବଶ୍ୟ ତମେ ସେଥିପାଇଁ ପ୍ରସ୍ତୁତ ନଥିଲ । ମୁଁ ଇଣ୍ଟରଭିଉ ବେଳେ କେବଳ ତମ ସାଦୃଶ୍ୟରେ ଯମୁନା ମା'ର ମେଳ ଦେଖି ସିଲେକ୍ଟ କରିଥିଲି । ସବୁ କଥା ତୁମକୁ ଖୋଲି କହିଥାନ୍ତି । ତା'ପୂର୍ବରୁ ଯେ ଯମୁନା ଆସିଯିବ୍, ମୁଁ ମୋଟେ ଚିନ୍ତା କରି ପାରି ନଥିଲି ।

ସେ ଯା'ହେଉ, ତମେ ତା' ନିର୍ମଳ ମାତୃତ୍ୱ ସ୍ୱୀକାର କରିନିଅ । ମୋର ବିଶେଷ ଅନୁରୋଧ । ଅବଶ୍ୟ ବଡ଼ ହେଲେ ଆଉ ଦୁଇ ଚାରିବର୍ଷ ପରେ ସେ ଯେତେବେଳେ ସବୁକଥା ବୁଝି ପାରିବ, ସେ ସ୍ଥିର ହୋଇଯିବ । ତମେ ଏଇଠି ରୁହ । ନିଜ ଘରପରି ଚଳ । କିନ୍ତୁ ତା' ସଙ୍ଗେ ସଙ୍ଗେ ମୋର ଏଇ ସାନ ଝିଅଟିକୁ ବଞ୍ଚାଅ । ତମେ ଜାଣନା କେତକୀ ଏଇ କେତେ ମାସ ହେବ ମୁଁ ଯମୁନା ପାଇଁ କିପରି ଛନ୍ଦି ହୋଇ ପଡ଼ିଛି । ମୋର ବ୍ୟବସାୟରେ ପ୍ରଚୁର କ୍ଷତି ସାଧିତ ହୋଇଛି । ଏବଂ ମୋର କିଛି ଆତ୍ମୀୟମାନେ ଚାହାନ୍ତି ମୋର ସର୍ବନାଶ ହେଉ । ଛାଡ଼ ସେ ସବୁ ତମକୁ କହି କିଛି ଲାଭ ନାହିଁ । ତମେ କୁହ, ଯମୁନାର ମା' ଡାକ ତମେ ସହି ପାରିବ କି ନାହିଁ ।

କେତକୀ କୁଶାରୀ ମନେ ମନେ ଚିନ୍ତା କରୁଥିଲା, ତା'ର ଏପରି ସାଫଲ୍ୟ ପଛରେ ନିଶ୍ଚୟ ଭଗବାନଙ୍କର ହାତ ଅଛି । ତା' ନହେଲେ ସେ ଯେତେବେଳେ ଯେଉଁ କାମରେ ହାତ ଦେଇଛି ସଫଳତା ଯେ କେଉଁବାଟେ ଆସିଛି ସେ ବୁଝି ପାରିନାହିଁ । ଆଜି ଏଠାରେ ବି ଆଉ ଏକ ଉଦାହରଣ । କେଉଁଠି ସେ ପରୀକ୍ଷାରେ ପାସ୍ କରିବ କି ନାହିଁ ଚିନ୍ତା କରୁଥିବା ବେଳେ, ଆଜି ଝିଅର ମା' ହେବାକୁ ଯାଉଛି । ହେଉ, କ୍ଷତି କ'ଣ ! ସାନ ଝିଅଟା ମା' ମା' ଡାକିବ କେଇଦିନ । ବରଂ ସେଥିରେ ଝିଅଟା ଅନୁରକ୍ତ ହେବ ବେଶୀ । ଝିଅର ବାପାର ବି ବିଶ୍ୱାସ ଭାଜନ ହୋଇ ପଡ଼ିବ ସେ। ସାଫଲ୍ୟ ଯେତେଶୀଘ୍ର ଆଗେଇ ଆସିବ, ସେତେ ମଙ୍ଗଳ ।

କେତକୀ ସେଠ୍ ରତନମଲଙ୍କ ପ୍ରଶ୍ନର ଉତ୍ତର ଦେବାକୁ ଯାଇ କହିଲା : ନା, ନା, ମୋର ଆପତ୍ତି କରିବାର କିଛି ନାହିଁ । ଗୋଟାଏ ସାନଝିଅ ମୋତେ ମା' ଡାକି ଯଦି ସାନ୍ତ୍ୱନା ପାଇବ ବରଂ ମୁଁ ଖୁସି ହେବି ।

ସେଠ୍ ରତନମଲ ଗୋଟାଏ ଦୀର୍ଘଶ୍ୱାସ ତ୍ୟାଗ କରି କହିଲେ, : ମୋତେ ତୁମେ ବଞ୍ଚାଇଲ କେତକୀ ଏଥର ମୁଁ ନିଶ୍ଚିନ୍ତ ହେଲି ।

: କିନ୍ତୁ.......

: ପୁଣି କିନ୍ତୁ କ'ଣ ?

: ନା, ମୁଁ କ'ଣ କହୁଥିଲି କି, ମୋତେ ତ ଏଠି ସବୁବେଳେ ରହିବାକୁ ହେବ ।

ମୋର ବୁଢ଼ୀ ମା' ଆଉ ଗୋଟିଏ ସାନଭାଇ ଅଛନ୍ତି । ସପ୍ତାହରେ ଥରେ ଅନ୍ତତଃ ରବିବାର ଦିନ ତିନିଚାରି ଘଣ୍ଟା କରି ଛୁଟି ଦେବାକୁ ହେବ । ମୁଁ ସେମାନଙ୍କୁ ଯାଇ ଦେଖି ଆସିବି ।

: ହଁ, ନିଶ୍ଚୟ, ନିଶ୍ଚୟ !! କିନ୍ତୁ ଯେଉଁ ରବିବାର ଦିନ ମୁଁ ଏଠାରେ ନଥିବି, ତମେ କିନ୍ତୁ ଛୁଟି ପାଇବ ନାହିଁ । ମନେ ରହିଲା ?

କେତକୀ କୁଶାରୀ ଉଠି ଠିଆ ହେଲା ।

ସେଠ୍ ରତନମଲ କହିଲେ : ତମେ ତା'ହେଲେ କାଲିଠାରୁ ଆସୁଛ ।

: ଇଏସ୍ ସାର୍ ।

କେତକୀ କୁଶାରୀକୁ ଘେରି ତିନିବନ୍ଧୁ ବସିଥିଲେ ।

ଜେକବ୍ କହିଲା : ମୁଁ ଜାଣିଥିଲି ତମେ ଇଣ୍ଟରଭିଉରେ ପାଶ୍ କରିବ ।

: କିନ୍ତୁ ଏଇ କେତକୀ କୁଶାରୀଟି କିଏ ? ରୀନା ପଚାରିଲା ।

: ସେ ତ ତମେ ।

: ନା ମୋତେ ଏପରି ଫାଙ୍କି ଦେଲେ ଚଳିବ ନାହିଁ । କାରଣ କେତକୀ କୁଶାରୀ ସମ୍ବନ୍ଧରେ ସେମାନେ ଅନୁସନ୍ଧାନ କରିଥିଲେ ଏବଂ ସେହି ଭଦ୍ର ମହିଳା ଥମ୍‌ସନ୍ ସାହେବଙ୍କର ଝିଅର ଗଭର୍ଣ୍ଣେସ୍ ଥିବା କଥା ସତ୍ୟ ପ୍ରମାଣିତ ହୋଇଛି ।

: ଆମେ ସେ କଥା ଜାଣିଥିଲୁ ଏବଂ ଥମ୍‌ସନ୍ ସାହେବ ଏ ଦେଶ ଛାଡ଼ିଯିବା ପରେ କେତକୀ କୁଶାରୀ ଗୋଆ ଚାଲି ଯାଇଛନ୍ତି । ଭଦ୍ରମହିଳାଙ୍କର ବାଇଓଡାଟା ଓ ନାମ ସହିତ ତମର ଦେହଟାକୁ ଯୋଡ଼ି ଦେଇଥିଲୁ । କେତକୀ କୁଶାରୀ ଥିଲେ ଖୁବ୍ ଜ୍ଞାନୀ ଗୁଣୀ ଓ ସତ୍ ଚରିତ୍ରର ମହିଳା । ତମକୁ ତାଙ୍କରି ପରି ହୋଇ ରତନମଲଙ୍କ ଝିଅକୁ ସମ୍ଭାଳିବାକୁ ହେବ । ଜେକବ୍ ହସି ହସି କହିଲା ।

ରୀନା କହିଲା : କାଲିଠାରୁ ମୋତେ ଯାଇ ସେଠାରେ ପିଲା ସମ୍ଭାଳିବାକୁ ହେବ । ମୁଁ ଏକପ୍ରକାର ବନ୍ଦି ହୋଇ ପଡ଼ିବି । ମୁଁ କହି ରଖୁଛି ବେଶୀଦିନ କିନ୍ତୁ ଗୋଡ଼ହାତ ବାନ୍ଧି ଗୋଟାଏ ଜାଗାରେ ରହି ପାରିବି ନାହିଁ । ଶୀଘ୍ର  ଶୀଘ୍ର କାମ ଶେଷ କରିବାକୁ ହେବ ।

: ସବୁ ନିର୍ଭର କରେ ତମ ଉପରେ । ଯେତେ ଶୀଘ୍ର ତମେ ସେଠ୍ ରତନମଲଙ୍କର ବିଶ୍ୱାସ ଭାଜନ ହୋଇ ଉଠିବ, ଯେତେ ଶୀଘ୍ର ତମେ ତାଙ୍କ ଝିଅକୁ ଧରି ବାହାରେ ବୁଲିବାର ଯୋଗ୍ୟତା ଅର୍ଜନ କରି ପାରିବ, ସେତେ ଶୀଘ୍ର ତୁମେ ମୁକ୍ତି ପାଇବ । ଜେକବ୍ କହିଲା, : ହୁଁ ବୁଝିଲି । ରୀନା ଉଠି ଠିଆ ହେଲା, କହିଲା ଆଜି ହେଲା ବୁଧବାର । ଆଗାମୀ ରବିବାର ସନ୍ଧ୍ୟା ବେଳକୁ କେଉଁଠି ଦେଖା ହେବ ?

ୟୁସୁଫ୍ ଚୁପ୍ ଚାପ୍ ଆଖି ବୁଜି ବସି କ'ଣ ଚିନ୍ତା କରୁଥିଲା । ରୀନା କିନ୍ତୁ ଅନ୍ୟାନ୍ୟ ଦିନ ପରି ସଙ୍ଗେ ସଙ୍ଗେ ଘର ଛାଡ଼ି ଚାଲିଯାଇ ନଥିଲା । ସେ ଯେପରି ଗୋଟାଏ କିଛି ଉଦ୍ଦେଶ୍ୟରେ ଅପେକ୍ଷା କରି ଠିଆ ହୋଇଥିଲା ।

ବ୍ରିଜ୍‌ଲାଲ ରୀନାର ଉଦ୍ଦେଶ୍ୟ ବୁଝିପାରି କହିଲା  ଆମର ଇଚ୍ଛାଥିଲା ଆମେ

ତମକୁ ଆଉ କିଛି ପେମେଣ୍ଟ କରିବାକୁ । ଯେ କୌଣସି କାରଣରୁ ହେଉ ଆଜି ଆଉ ସମ୍ଭବ ହେଉ ନାହିଁ । ତମେ କାଲି ସେଠ୍ ରତନମଲଙ୍କ ଘରକୁ ଯିବା ବାଟରେ ଟଙ୍କାଟା ନେଇଯିବ ।

ରୀନା ମୁହଁରେ ପରିବର୍ତ୍ତନର କୌଣସି ଚିହ୍ନ ଫୁଟିଲା ନାହିଁ । ସେ ଧୀରେ ଧୀରେ ଘର ଛାଡ଼ି ବାହାରିଗଲା । ତଳକୁ ଓହ୍ଲେଇ ଯାଇ ଦେଖିଲା, ସେ ଯେଉଁ କାର୍‌ରେ ଆସିଥିଲା, ସେ କାରଟା ସେଠାରେ ନାହିଁ ତା'ହେଲେ ?

ରୀନା ଅନ୍ୟମନସ୍କ ହୋଇ ଫୁଟ୍‌ପାଥ ଉପରେ ଆଗେଇ ଚାଲିଥିଲା, ଏମାନେ ଆଜି ତାକୁ ଟଙ୍କା ନଦେଇ ଭଲ କରିଛନ୍ତି । କାଲି ବି ସେ ଟଙ୍କା ନେବାକୁ ଯିବନାହିଁ । ସେମାନଙ୍କର ପରିସ୍ଥିତି ଯାହା, ହୁଏତ ଆଉ ଦି ପାଞ୍ଚ ହଜାର ଟଙ୍କା ତାକୁ ଧରେଇ ଦେବେ । କିନ୍ତୁ ରୀନା ସେଠ୍ ରତନମଲଙ୍କ ଘରୁ ଫେରି ଆସିବା ପରେ ତା'ମନର ଧାରଣ ବଦଳି ଯାଇଛି । ସତରେ ରତନମଲଙ୍କର କୌଣସି ବ୍ୟକ୍ତିତ୍ୱ ନାହିଁ । ସେ ଗୋଟିଏ ଖୁବ୍ ଅସହାୟ ଜୀବ । ଜେକବ୍ ତାଙ୍କୁ ଠିକ୍ କ୍ଷତି କରିଛି ଏବଂ ସେମାନେ ଠିକ୍ ଯାଗାରେ ଟାର୍ଗେଟ୍ କରିଛନ୍ତି । ମନେ ହେଉଛି କୃତକାର୍ଯ୍ୟ ହେବେ । ଯଦି ସେମାନେ କୃତକାର୍ଯ୍ୟ ହୁଅନ୍ତି, ତା'ହେଲେ ୟୁସୁଫ୍‌ର ଅଫରଟା ତା'ପାଇଁ ମନ୍ଦ ନୁହେଁ । ସେଠ୍ ରତନମଲଙ୍କର ଆଭ୍ୟନ୍ତରୀଣ ପରିସ୍ଥିତି ଯାହା ହୁଏତ ଖୁବ୍ ଶୀଘ୍ର କାର୍ଯ୍ୟ ହାସଲ ହୋଇ ପାରିବ । ମାସେ ଦୁଇମାସ ରୀନା ଯଦି ଅପେକ୍ଷା କରିପାରେ, ତା' ହେଲେ ଅଢ଼େଇଲକ୍ଷ ଟଙ୍କାର ମାଲିକ ସେ ହୋଇ ପାରିବ । ମନ୍ଦ କ'ଣ ।

ରାସ୍ତାରେ ଗୋଟାଏ ଗାଡ଼ି ଫୁଟ୍‌ପାଥକୁ ଲାଗି ହର୍ଣ୍ଣ ବଜାଇ ଠିଆ ହୋଇଗଲା । ରୀନାର ଭାବନା ଭାଙ୍ଗିଗଲା । ସେ ଦେଖିଲା ଲିଆକତ ଗାଡ଼ି ଅଟକେଇ ଦରଜା ଖୋଲୁଛି ।

ଲିଆକତ୍‌କୁ ଦେଖି ରୀନା ମୁହଁ ଲାଲ ହୋଇ ଉଠିଥିଲା । ସେ କିଛି କହିବା ପୂର୍ବରୁ ଲିଆକତ୍ କହିଲା : କାପୁର ସାହେବ ମୋତେ ଡାକିନେଇ ଯାଇଥିଲେ । ସେ କହିଛନ୍ତି କାମ ସରିଲେ ଆପଣ ସିଧା 'ସାକୀ'କୁ ଯିବେ ।

ରୀନା କ'ଣ କହିବାକୁ ଯାଇ କହି ପାରିଲା ନାହିଁ । ପ୍ରେମ୍ କାପୁର ପାଇଁ ରୀନାର କିଛି ଅଭିଯୋଗ ନାହିଁ । ରୀନା ମନ ପ୍ରାଣରେ ତା'ର ସାନିଧ ଚାହେଁ । ପ୍ରେମ କାପୁର ପରି ସୁପୁରୁଷ ତା' ଆଖିରେ ଆଜିଯାଏ କେହି ପଡ଼ି ନାହାନ୍ତି । କିନ୍ତୁ ରୀନା ଯେତେ ଅନ୍ତରଙ୍ଗ ଭାବରେ ପ୍ରେମ୍‌କୁ ଚାହେଁ, ସେ ସେତେ ଦୂରେଇ ଦୂରେଇ ଯାଏ । ସେଇଟା ପ୍ରେମ କାପୁରର ରୀନାକୁ ନୀବିଡ଼ ଭାବରେ ପାଇବାର ଗୋଟାଏ ବାହାନା କି ସତରେ ସେ ରୀନାର ସାନ୍ନିଧ ଚାହେଁ ନାହିଁ, ରୀନା ଆଜିଯାଏ ତାହା ବୁଝି ପାରିନାହିଁ ।

ଗାଡ଼ି ଆଗେଇ ଚାଲିଗଲା । ରୀନା ଭାବୁଥିଲା ପ୍ରେମ୍ କାପୁର କଥା । କାଲି 'ସାକୀ'ରେ ଯାଇ ଭେଟିଥିଲା ପ୍ରେମ କପୁରକୁ । ସେତେବେଳକୁ ଜୁଆରେ ସେ ସବୁ ହାରି ଯାଇଛି । ତା'ର ପ୍ରତିଦ୍ୱନ୍ଦ୍ୱୀ ଜବର ମିଆଁ ତାକୁ ପରିହାସ କରି କହୁଛି, ସବୁ ତ ଶେଷ ହେଲା କପୁର ସାହେବ ! ଏଥର କାହାକୁ ବାଜି ଲଗେଇବ ? ତମର ଭାବି ସ୍ତ୍ରୀକୁ ଲଗେଇ ପାର, ମୁଁ ହଜାରେ ଟଙ୍କାର ବାଜି ଧରିପାରେ ।

ପ୍ରେମ୍ କପୁର ମୁହଁ ଲାଲ ହୋଇ ଉଠିଥିଲା । ନାକରୁ ଖରଶ୍ୱାସ ବହୁଥିଲା । ସେ ହାତ କାମୁଡୁ ଥିଲା । ପକେଟରେ ଆଉ ଗୋଟିଏ ପଇସା ନାହିଁ । ହାତର ଘଡ଼ି, ବେକର

ସୁନାହାର, ସବୁ ଜିତି ନେଇଛି ଜବର । ଶେଷରେ କହୁଛି ଭାବି ସ୍ତ୍ରୀକୁ ଲଗେଇବା ପାଇଁ । ଦୁଃସାହସ ତ କମ୍ ନୁହେଁ ଲୋକଟାର ।

ଠିକ୍ ସେତିକିବେଳେ ରୀନା ଯାଇ ପହଞ୍ଚି ଯାଇଥିଲା ସେଠି । ସଙ୍ଗେ ସଙ୍ଗେ ପ୍ରେମ୍ କାପୁର ରୀନା ହାତରୁ ତା' ଭ୍ୟାନିଟି ବ୍ୟାଗଟା ଝିଙ୍କି ନେଇ ଖୋଲି ପକାଇଲା । ଭିତରେ ପାଞ୍ଚହଜାର ଟଙ୍କାର ଗୋଟାଏ ନୋଟ୍ ବଣ୍ଡିଲ୍। ଆନନ୍ଦରେ ଫୁଲି ଉଠିଲା ପ୍ରେମ୍ କପୁରର ମୁହଁ । ସେ ରୀନା ଗୋଏଲ୍ ମୁହଁରେ ଚୁମ୍ବନ କରି, ପାଞ୍ଚହଜାର ଟଙ୍କାର ନୋଟ୍ ବଣ୍ଡିଲ୍‌ଟା ଛିଡ଼େଇ ପକେଇଲା ଏକା ଝିଙ୍କାରେ । ତା'ପରେ ବସିଗଲା ଜୁଆ ଟେବୁଲ୍‌ରେ ।

ଏଥରକ ଜିତିବାକୁ ଆରମ୍ଭ କଲା ପ୍ରେମ୍ କାପୁର । ତା' ଅପହୃତ ସମସ୍ତ ସମ୍ପତ୍ତି ଧୀରେ ଧୀରେ ଉଦ୍ଧାର କରିବାକୁ ଲାଗିଲା ଜବର ମିଆଁଠାରୁ । କିନ୍ତୁ ହଠାତ୍ ଘୋର ଅନ୍ଧକାର ହୋଇଗଲା । ସେଇ ଅନ୍ଧକାର ଭିତରେ ଜବର ମିଆଁ ଟେବୁଲ୍ ଉପରୁ ଝାମ୍ପି ନେଉଥିଲା ସମସ୍ତ ଟଙ୍କା ପଇସା । କିନ୍ତୁ ପ୍ରେମ୍ କାପୁର ଏକ ଶକ୍ତ ଘୁଷି ପକେଇ ଦେଲା ଜବର ମିଆଁ ମୁହଁରେ । ତା'ପରେ ଲାଗିଗଲା ଧସ୍ତା ଧସ୍ତି । 'ସାକୀ'ର ମ୍ୟାନେଜର ଛୁଟି ଆସିଥିଲେ ଉପରକୁ । ତଳେ ପୋଲିସ୍ । ପୋଲିସ୍ ନାଁ ଶୁଣି କିଏ କୁଆଡ଼େ ଗୁପ୍ତ ପଥ ଦେଇ ପଳାଇ ଯାଇଥିଲେ । ଘରେ ଯେତେବେଳେ ଲାଇଟ୍ ଜଳିଲା, ରୀନା ଦେଖିଲା ସେ ଏକା ଠିଆ ହୋଇଛି, 'ସାକୀ'ର ସେଇ ଗୁପ୍ତ ପ୍ରକୋଷ୍ଠରେ । ତା'ପରେ ଧୀରେ ଧୀରେ ଫେରି ଯାଇଥିଲା ସେ ଘରକୁ । ପ୍ରେମ୍ ସଙ୍ଗରେ ଆଉ ଦେଖା ହୋଇ ନଥିଲା । କିନ୍ତୁ ରୀନା ମନେ ମନେ ଖୁସି ହୋଇଥିଲା ।

ଆଜି ପୁଣି ପ୍ରେମ୍ ତାକୁ ଡାକି ପଠାଇଛି ଶୁଣି, ସେ ଆନନ୍ଦରେ ଆତ୍ମହରା ହୋଇ ଉଠିଥିଲା ।

ରୀନା ଯେତେବେଳେ ଯାଇ ପ୍ରେମ୍ କାପୁର ଆଗରେ ଠିଆହେଲା, ଦେଖିଲା ସେ ଦୁଇଟି ଗ୍ଲାସରେ ପାନୀୟ ଢାଳି କାହାକୁ ଯେପରି ଅପେକ୍ଷା କରି ବସିଛି । ରୀନାକୁ ଦେଖି ଆନନ୍ଦରେ ଯେପରି ନାଚି ଉଠିଲା ପ୍ରେମ କାପୁର । : ଏତେ ଡେରି ରୀନା, ମୁଁ ଅନେକ ବେଳୁ ତୋ ପାଇଁ ଅପେକ୍ଷା କରିଛି । ଦୁଇଗ୍ଲାସ ପାନୀୟ ଢାଳି ବସି ରହିଛି ତୋରି ପଥ ଚାହିଁ ।

: ମୋ ପାଇଁ ? ରୀନା ମୁହଁରେ ଯେପରି ବିସ୍ମୟ ଫୁଟି ଉଠିଲା ।

: ହଁ ତୋରି ପାଇଁ ରୀନା । ବିଶ୍ୱାସ କର । ମୁଁ ଡଲି, ରେବା, ମିନାକ୍ଷୀ ସମସ୍ତଙ୍କୁ ତଡ଼ି ଦେଇଛି । ସେମାନେ କେବଳ ସ୍ୱାର୍ଥ ଚାହାନ୍ତି । ନା ରୀନା, କାଲି ତୁ ଠିକ୍ ସମୟରେ ନ ପହଞ୍ଚିଥିଲେ ମୋର ଅବସ୍ଥା ଯେ କ'ଣ ହୋଇ ଥାଆନ୍ତା, ଜବର ମିଆଁର ଆସ୍ଫାଳନ ପାଖରେ ମୋ ମୁଣ୍ଡ ନଇଁ ପଡ଼ିଥିଲା । ପ୍ରେମ୍ ଗୋଟାଏ ଗ୍ଲାସ ରୀନା ହାତକୁ ବାଢ଼ାଇ ଦେଇ କହିଲା, ସେମାନେ କେହି ଆପଣାର ନୁହନ୍ତି । ଆପଣାର କରି ଜାଣନ୍ତି ନାହିଁ । ଖାଲି ସୁଖ ଚାହାନ୍ତି ସମସ୍ତେ । ଭଲ ଖାଇବେ, ଭଲ ପିନ୍ଧିବେ, ଫୁର୍ତ୍ତିକରି ଘୂରି ବୁଲିବେ । ତା'ଛଡ଼ା କିଛି ଭଲ ଲାଗେ ନାହିଁ ସେମାନଙ୍କୁ ।

ପ୍ରେମ୍ ତା' ପାନୀୟ ଗ୍ଲାସଟା ବଢ଼େଇ ଦେଲା ରୀନା ଆଡ଼କୁ । ରୀନା ଗ୍ଲାସଟା ଠୁକେଇଲା ପ୍ରେମ୍ ଗ୍ଲାସ ସହିତ । ଠୁନ୍ କରି ଗୋଟିଏ ମଧୁର ଶବ୍ଦ ହେଲା । ରୀନାର ଅନ୍ତରରେ ଯେପରି ଏକ ଶୀତଳ ପ୍ରବାହ ବହିଗଲା । ଆଃ........ଏତେ ଶାନ୍ତି ସେ

କେବେ ପାଇ ନଥିଲା ଜୀବନରେ ।

ପ୍ରେମ ରୀନାକୁ କହିଲା : ତୁ କାଲି ମୋ ଇଜ୍ଜତ ରଖିଛୁ । ତୋ ପାଇଁ ଜବର ମିଆଁ ପାଖରେ ନତିସ୍ୱୀକାର କରିବାକୁ ପଡ଼ିନାହିଁ । ରୀନା ତୋ ପରି ଝିଅ ସତରେ ଯାହା କପାଳରେ ଯୁଟିବ ଜୀବନଭରି ସେ ଦୁଃଖ ପାଇବ ନାହିଁ ।

ଧୀରେ ଧୀରେ ପ୍ରେମ୍ କାପୁରର ହାତ ରୀନା ଦେହରେ ଯେପରି ସୁଖର ପ୍ରଲେପ ଲେପି ଯାଉଥିଲା । ରୀନା ଆଉ ଟିକେ ଘୁଞ୍ଚି ବସିଲା ପ୍ରେମ୍ କାପୁର ପାଖକୁ । ଆଖି ଯୋଡ଼ାକ ତା'ର ବନ୍ଦ ହୋଇ ଯାଇଥିଲା । ମୁହଁରେ ଫୁଟିଉଠିଥିଲା ଶାନ୍ତିର ଗୋଲାପ ।

ପ୍ରେମ ଦୁଇହାତରେ ରୀନାକୁ ଭିଡ଼ି ନେଇଥିଲା । ତା ଛାତି ଉପରକୁ । ମୁହଁରେ ମୁହଁ ମିଶେଇଲା । ନୀରବରେ ଚାହିଁ ଦେଖୁ ଥିଲା ରୀନାକୁ । ରୀନା ଯେପରି ଗୋଟିଏ ଶାନ୍ତ ମୃଗ ଶିଶୁ । ତା'ର ଯେପରି କିଛି ଆତ୍ମସତ୍ତା ନାହିଁ ।

ରୀନା ତା' ହାତ ଦୁଇଟା ଛନ୍ଦି ଦେଲା ପ୍ରେମ କାପୁରର ଗଳାରେ ।

ପ୍ରେମ୍ ଆହୁରି ନୀବିଡ଼ ଭାବରେ ରୀନାକୁ ଜଡ଼େଇ ଧରି ଆତ୍ମବିସ୍ମୃତ ହେଲା ପରି ଡାକିଲା : ରୀନା !

: ଉଁ ।

: ସତରେ ରୀନା ତତେ ମୁଁ ଆଉ କଷ୍ଟ ଦେବି ନାହିଁ । ମୁଁ ଜାଣେ ତୁ ମୋର ସାନିଧ ସବୁଦିନ ସବୁବେଳେ ଚାହୁଁ । ମୁଁ କଥା ଦେଉଛି ରୀନା, ତୁ ପାଇବୁ । ଏଥର ତୋତେ ଆଉ ଅବହେଳା କରିବି ନାହିଁ ।

ରୀନାର ହାତ ଯୋଡ଼ାକ ଆହୁରି କଠିନ ଭାବରେ ଛନ୍ଦିହୋଇଗଲା ପ୍ରେମ୍କାପୁର ଗଳାରେ ।

ଠିକ୍ ସେତିକିବେଳେ ଦରଜାରେ କିଏ ନକ୍ କଲା ।

: କିଏ ?

ପ୍ରେମକାପୁର ରୀନାର ହାତ ତା'ଗଳାରୁ ଛଡ଼ାଇ ଉଠି ଠିଆ ହେବାକୁ ଚେଷ୍ଟା କଲା ।

ରୀନା କିନ୍ତୁ ଆତ୍ମ ବିଭୋର ହୋଇ ପଡ଼ିଥିଲା । ସେ ହୁଏତ ଶୁଣି ପାରି ନଥିଲା ବାହାରର ସେହି ପାର୍ଥିବ ଶବ୍ଦ ।

ଏଥର ଆହୁରି ଯୋର୍‌ରେ କିଏ ନକ୍ କିରବାର ଶୁଣାଗଲା ।

ପ୍ରେମ୍ କାପୁର ନିଷ୍ଠୁରଙ୍କ ପରି ତା' ବେକରୁ ରୀନାର ହାତଦୁଇଟା ଛଡ଼େଇ କହିଲା : ବାହାରେ କିଏ ଡାକୁଛି । ଶୁଣି ପାରୁନୁ ?

ରୀନାର ସ୍ୱପ୍ନଭଙ୍ଗ ହେଲା । ଜୀବନରେ ଖୁବ୍ ଅଳ୍ପ କେଇଥର ସେ ପ୍ରେମ୍ କାପୁରର ସାନିଧ ପାଇଛି । କିନ୍ତୁ ସେଇ ଶାନ୍ତି, ସେଇ ଆନନ୍ଦ ସେ କେବେ ଭୁଲି ପାରିନାହିଁ । ଯଦି ଦୁଃଖ କେଉଁଠୁ ସେ ପାଇଥାଏ, ତେବେ ପାଇଛି ସେ ଏଇଠୁ । ପ୍ରେମ୍ କାପୁରର ବଳିଷ୍ଠ ବାହୁ ଚାପରେ ଚାପି ହୋଇଯିବାରେ ରୀନାର ଆନନ୍ଦ, ରୀନାର ସୁଖ, ରୀନା ଜୀବନର ସାର୍ଥକତା । ସେଥିପାଇଁ ସେ ଜୀବନର ସବୁ ମୂଲ୍ୟ ଦେଇ ପ୍ରେମ କାପୁରକୁ ନିଜର କରିବାକୁ ଚାହିଁଛି । ଭଗବାନ ହୁଏତ ତା'ର ପ୍ରାର୍ଥନା ଶୁଣିଛନ୍ତି । କିନ୍ତୁ ହଠାତ୍ କିଏ ଆସି ତା' ସୁଖରେ ବାଧା ଦେଲା ?

ପ୍ରେମ୍ କାପୁର ଉଠି ଯାଉଥିଲା ଦରଜା ଖୋଲିବାକୁ । ରୀନା ଅଳସ ଆଖିରେ ଚାହିଁଥିଲା ସେଇଆଡ଼େ । ଅବଶିଷ୍ଟ ପାନୀୟତକ ନିଃଶେଷ କରି ଚାହିଁ ରହିଥିଲା ଏକ ଧ୍ୟାନରେ, ଏକ ମନରେ । ତା' ଦେହର ରକ୍ତ କଣିକା କିପରି ଉଷ୍ଣ ହୋଇ ଉଠିଥିଲା ।

କିନ୍ତୁ ପ୍ରେମ୍ ଯେ ଫେରୁନାହିଁ । ଗୋଟିଏ ମିନିଟ୍ ତା'ପାଖରେ ମନେ ହେଉଥିଲା ଘଣ୍ଟା ଘଣ୍ଟା ପରି । ସେ ବୋତଲରୁ ଆହୁରି ପାନୀୟ ଢାଳିଲା, ସେତକ ନିଃଶେଷ କଲା । ଆହୁରି ଢାଳିଲା, ନିଃଶେଷ କଲା ।

ପ୍ରେମ୍, ସେ ଚାହେଁ ପ୍ରେମ୍‌କୁ । ସେ ଚାହେଁ ପ୍ରେମ୍‌ର ବାହୁ ପାଶରେ ପେଶି ହେବା ପାଇଁ, ସେ ଚାହେଁ ପ୍ରେମ୍‌ର............

କିନ୍ତୁ ଇଏ କ'ଣ ହେଲା ?

ପ୍ରେମ୍ ମୁହଁରେ ଏପରି ବିଶାଦର କାଳିମା ଫୁଟି ଉଠିଲା କାହିଁକି ? ତା'ପ୍ରାଣର ପ୍ରେମ୍‌ର ଭାବମୂର୍ତ୍ତି ହଠାତ୍ ଭାଙ୍ଗି ପଡ଼ିଲା କାହିଁକି ?

ପ୍ରେମ୍ କାପୁର ଦରଜା ବନ୍ଦ କରି ଯେତେବେଳେ ଫେରି ଆସିଲା, ମନେ ହେଲା ସେ ଗୋଟିଏ ଅସହାୟ ଶିଶୁ । ରୀନାର ପଣତ ତଳେ ଆଶ୍ରୟ ନେବାକୁ ଚାହେଁ ।

: କିଏ ଆସିଥିଲା ? କ'ଣ ହେଲା ତମର ? ରୀନା କମ୍ପିତ ସ୍ୱରରେ ପଚାରିଲା ।

: ନା, ରୀନା, ମୁଁ ଯାହା ଭାବିଥିଲି, ତାହା ଆଉ ହେଲାନାହିଁ । ଭାବିଥିଲି ତୁମକୁ ନେଇ ମୁଁ ଏ ସହର ଛାଡ଼ି ଚାଲିଯିବି ଦୂରକୁ, ବହୁ ଦୂରକୁ । ଗୋଟାଏ ନିର୍ଜନ ସ୍ଥାନରେ ଛୋଟ ଘରଟିଏ କରି ଜୀବନ ଯାପନ କରିବି । କିନ୍ତୁ.......

: ପୁଣି କିନ୍ତୁ କ'ଣ ପ୍ରେମ୍ ।

: ସେ ଆସି ଯାଇଛି । ତା' କବଳରୁ ମୋର ଖସି ଯିବାର ଆଉ ବାଟ ନାହିଁ ।

: କିଏ ? କିଏ ସେ ? କିଏ ତମ ଜୀବନରେ ପ୍ରତିବନ୍ଧକ ସୃଷ୍ଟି କରିବାକୁ ଚାହେଁ? କୁହ ପ୍ରେମ୍ । ମୁଁ ତାକୁ ତମ ପଥରୁ ଘୁଞ୍ଚେଇ ଦେବି। ରୀନା କଣ୍ଠରେ ଦୃଢ଼ତା ଫୁଟି ଉଠିଥିଲା ।

: ନା, ରୀନା, ତୁ ପାରିବୁ ନାହିଁ । ସେ ଦୁଇ ତିନି ଲକ୍ଷ ଟଙ୍କାର ସମସ୍ୟା । ମେଣ୍ଟାଇବା ମୋ ପକ୍ଷରେ ସମ୍ଭବ ନୁହେଁ । ମୋତେ ପୁଣି ରଣଜିତ୍ ଠାକୁର ପାଖରେ ନତି ସ୍ୱୀକାର କରିବାକୁ ପଡ଼ିବ । ତା' କବଳରୁ ଖସିଯିବା ଏତେ ସହଜ ନୁହେଁ ।

: ରଣଜିତ୍ ଠାକୁର ? ତମେ କ'ଣ କଲ ତା'ର ?

ପ୍ରେମ୍ କାପୁର ମୁହଁରେ ଫିକା ହସ ଫୁଟି ଉଠିଲା । ଅସହାୟ ସ୍ୱରରେ କହିଲା : ତୋର ସେସବୁ ଜାଣି ଲାଭ ନାହିଁ ରୀନା । ଦିନକ ଆଗରୁ ତୋତେ ନେଇ ଯେଉଁ ସୁଖସ୍ୱପ୍ନ ଦେଖିଥିଲି, ତାହା ସାର୍ଥକ ହେଲାନାହିଁ, ଅବଶୋଷଟା ମୋର ସେଇଠି ।

ରୀନା ପ୍ରେମ୍ କପୁର ପାଖକୁ ଉଠିଗଲା । ତା' ମୁଣ୍ଡରେ ସ୍ନେହର ଆଙ୍ଗୁଳି ସଞ୍ଚାଳନ କରି କହିଲା: କୁହ ପ୍ରେମ୍, ମୋତେ ସବୁକଥା ଖୋଲି କୁହ । ମୁଁ ଜୀବନ ଦେଇ ଚେଷ୍ଟା କରିବି ତମର ସ୍ୱପ୍ନ ସାର୍ଥକ କରିବା ପାଇଁ । ରଣଜିତ୍ ଠାକୁର କିଏ ? ସେ କାହିଁକି ତମର ପ୍ରତିବନ୍ଧକ ହୋଇ ଠିଆ ହୋଇଛି ।

ପ୍ରେମ୍ କପୁର ସେହିପରି ମଳିନ ହସ ହସି କହିଲା : ରଣଜିତ୍ ଠାକୁର ନାଁ ତୁ

ଶୁଣିନାହୁଁ ରୀନା ? ସେ ଜଣେ ବକ୍‌ସର । ଆମ ଭାରତ ବର୍ଷରେ ପ୍ରଥମ ଶ୍ରେଣୀର ବକ୍‌ସର ଭିତରୁ ସେ ଜଣେ । ଦୁଇବର୍ଷ ତଳେ ପଞ୍ଜାବରେ ତା'ସହିତ ମୋର ପ୍ରତିଯୋଗିତା ହୋଇଥିଲା । ମୁଁ ଚାହିଁଥିଲି ସେହି ପ୍ରତିଯୋଗିତାରେ ଜିତିବା ପାଇଁ । ରଣଜିତ୍ ଠାକୁରକୁ ଜିତି ପାରିଲେ ସମଗ୍ର ଭାରତବର୍ଷରେ ମୋ ନାଁ ଖେଳିଯିବ । ଅନେକ ମୁଷ୍ଟିଯୁଦ୍ଧ ପ୍ରତିଯୋଗିତାରେ ମୁଁ ଚାନ୍‌ସ ପାଇବି ।

ମୁଁ ଯାଇ ଧରିଥିଲି ରଣଜିତ୍ ଠାକୁରକୁ । ଅବଶ୍ୟ ସେମିଫାଇନାଲକୁ ଉଠିବା ପରେ । ରଣଜିତ୍ ଠାକୁର ମୋ ଆଡ଼କୁ ଚାହିଁ ବିଦ୍ରୁପର ହସ ହସିଥିଲା । କହିଥିଲା, ଠିକ୍ ଅଛି । ତତେ ମୁଁ ଜିତେଇ ଦେବି । କିନ୍ତୁ ପ୍ରତିଦ୍ୱନ୍ଦ୍ୱିତାର ଯେଉଁ ପୁରସ୍କାର ଅଢ଼େଇଲକ୍ଷ ଟଙ୍କା ପାଇବୁ, ସେତକ ମୋତେ ଦେବାକୁ ହେବ ।

ପ୍ରେମ୍ କାପୁର ଟିକିଏ ନୀରବ ହୋଇ ରୀନା ମହଁକୁ ଚାହିଁଲା ।

ରୀନା କହିଲା: ସେଥିରେ ରଣଜିତ୍ ଠାକୁରର ଲାଭ କ'ଣ ସେତ ଜିତି ସେଇ ଅଢ଼େଇ ଲକ୍ଷ ଟଙ୍କା ନେଇ ପାରିଥାନ୍ତା ।

ପ୍ରେମ କାପୁର କହିଲା  ଲାଭ ଅଛି । ରଣଜିତ୍ ଠାକୁର ଲୋକ ହିସାବରେ ମୋଟେ ଭଲ ନୁହେଁ । ସେ ମନେ ମନେ ଚାହୁଁଥିଲା ଭାରତ ବର୍ଷର ମହମ୍ମଦ ଆଲି ହେବା ପାଇଁ । ଜୀବନରେ କୋଟି କୋଟି ଟଙ୍କା ସେ ଉପାର୍ଜନ କରିବ । ଯେପରି ହେଉ । ଦରକାର ହେଲେ ମଣିଷ ମାରିବାକୁ ବି ସେ ପଛେଇବ ନାହିଁ । ତା'ର ଗୋଟାଏ ବିରାଟ ଦଳ ଅଛି । ମୁଷ୍ଟି ଯୁଦ୍ଧ ଯଦି ଓ ତା'ର ପେଶା, ସେ କେବଳ ବାହାରକୁ । କିନ୍ତୁ ଭିତରେ ସେ ଗୋଟାଏ ସଇତାନ । ଜୀବନରେ ଖୁଣ୍ ବି କରିଛି ପାଞ୍ଚ ସାତଟା । ମୋ ପ୍ରସ୍ତାବରେ ରାଜି ହୋଇଥିଲା କେବଳ ଲକ୍ଷେ ଟଙ୍କା ଅଧିକ ପାଇବ ବୋଲି ।

: କିପରି ? ରୀନା ପଚାରିଲା ।

: ମୁଁ ଜିତିଲେ ମୁଁ ଯେଉଁ ଅଢ଼େଇ ଲକ୍ଷ ଟଙ୍କା ପାଇବି ସେତେକ ନେବ ଏବଂ ସେ ରନର୍ସ ଅପ୍ ହୋଇ ଲକ୍ଷେ ଟଙ୍କା ପାଇବ ।

: ହୁଁ, ବୁଝିଲି । ତା'ପରେ ? ରୀନାର ଦେହ ମୁହଁରେ କିପରି ବିଷାଦର ଭାବ ଫୁଟି ଉଠିଲା ।

: ତା'ପରେ ଆଉ କ'ଣ? ପ୍ରେମ୍ କପୁର ସହଜ ସ୍ୱରରେ କହିଲା । ତା'ପରେ ରଣଜିତ ଠାକୁର ତା' କଥା ରଖିଲା । ମୁଁ କିନ୍ତୁ ମୋ କଥା ରଖିଲି ନାହିଁ । ଅଢ଼େଇ ଲକ୍ଷ ଟଙ୍କା ଧରି ସିଧା ପଳେଇଲି ବମ୍ବେକୁ । ଭାବିଥିଲି ରେସ୍ କୋର୍ସରୁ ଆଉ ଅଢ଼େଇ ଲକ୍ଷ ଟଙ୍କା ଜିତି ରଣଜିତ୍ ଠାକୁରକୁ ତା'ଟଙ୍କା ତକ ଦେଇଦେବି । କିନ୍ତୁ ମାସକ ଭିତରେ ମୁଁ ସର୍ବସ୍ୱାନ୍ତ ହୋଇଗଲି । ବାହାରେ ଆଉ ମୁହଁ ଦେଖାଇ ପାରିଲି ନାହିଁ । ଜୀବନଟା ଦୁଃସହ ହୋଇ ଉଠିଲା ।

ରଣଜିତ୍ ଠାକୁରର ଲୋକେ କିନ୍ତୁ ଖୋଜି ବୁଲୁଥିଲେ । ଛଅ ମାସ ପରେ ମୋତେ ସେମାନେ ଧରି ନେଇଗଲେ ତା' ପାଖକୁ ।  ରଣଜିତ୍ ଠାକୁର ମୋତେ ଦେଖି ଖାଲି ହସିଲା । ଅନେକ ବେଳଯାଏ ହସି ହସି ମୋ ପାଖକୁ ଆଗେଇ ଆସିଲା । ସେତେବେଳକୁ ମୋର ସମସ୍ତ ସତ୍ତା ଯେପରି ମୁଁ ହରେଇ ବସିଥିଲି । ଭାବିଥିଲି ଏଥର ମୋର ଆଉ ନିସ୍ତାର ନାହିଁ । ସେ ହୁଏତ ମୋତେ ହତ୍ୟା କରିବ ।

କିନ୍ତୁ ରଣଜିତ୍ ଠାକୁର ମୋ ପିଠିରେ ହାତ ଥାପୁଡ଼େଇ କହିଲା, : ସାବାସ୍ ବେଟା। ତୁ ଯାହା କଲୁ ତା'ର ନଜିର ନାହିଁ। ମୁଁ ଠିକ୍ ଏଇ ବ୍ୟବହାର ତୋ'ଠାରୁ ଚାହୁଁଥିଲି।

ମୁଁ ସ୍ତବ୍ଧ ହୋଇ ଅବିଶ୍ୱାସ ଆଖିରେ ଚାହି ରହିଲି ରଣଜିତ୍ ଠାକୁର ମୁହଁକୁ।

: ହଁ ବେଟା, ମୁଁ ଚାହୁଁଥିଲି ତୋତେ ହାତ ମୁଠାରେ ରଖିବା ପାଇଁ। ତୁ ମୋ ସହିତ ବେଇମାନୀ କରି ନ ଥିଲେ, ମୁଁ ତୋତେ କବ୍‌ଜାରେ ରଖି ପାରି ନଥାନ୍ତି।

ମୁଁ ସେତେବେଳେ ବୁଝି ପାରିଲି ନାହିଁ ରଣଜିତ୍ ଠାକୁର ମୋତେ କାହିଁକି କବ୍‌ଜାରେ ରଖିବାକୁ ଚାହିଁଥିଲା। କିନ୍ତୁ ଯେତେବେଳେ ବୁଝି ପାରିଲି ସେତେବେଳେ ମୋର ଲୁଚି ପଳାଇବା ଛଡ଼ା ଅନ୍ୟ ବାଟ ନଥିଲା।

ପ୍ରେମ୍ କାପୁର ମୁହୂର୍ତ୍ତେ ନୀରବ ରହି ପୁଣି କହିଲା : ରଣଜିତ୍ ଠାକୁର ସାତ ଆଠ ଦିନ ପରେ ମୋତେ ପାଖକୁ ଡାକି ହସି ହସି କହିଲା, ଦେଖ୍ ପ୍ରେମ୍, ତୁ ମୋ ସହିତ ନିଶ୍ଚୟ ବେଇମାନୀ କରିଛୁ। କହିଲୁ ? କରିନାହୁଁ ?

ମୁଁ ମୁଣ୍ଡ ହଲେଇ ସମ୍ମତି ଜଣେଇଲି।

ସେ ପୁଣି କହିଲା : ସେଥିପାଇଁ ମୁଁ କିଛି ଭାବିନାହିଁ। କିନ୍ତୁ ଆଜି ମୁଁ ଯେଉଁ ଦାୟିତ୍ୱଟି ଦେଉଛି, ତାହା ତୋତେ ସମ୍ପନ୍ନ କରିବାକୁ ହେବ। ଯଦି ଦକ୍ଷତାର ସହିତ ଏଇ କାମଟି ତୁଲେଇ ପାରୁ ତା'ହେଲେ ମୁଁ ତୋ ଠାରୁ କେବେ ଆଉ ସେଇ ଅଢ଼େଇ ଲକ୍ଷ ଟଙ୍କା ଦାବି କରିବି ନାହିଁ। ବରଂ ଆଉ କିଛି ଟଙ୍କା ତୋତେ ଦେଇ ବିଦା କରିଦେବି।

ରଣଜିତ୍ ଠାକୁର ଥୋପ ପକାଇ ହସିଲା ମୁହଁରେ ମୋ ଆଡ଼କୁ ଅନାଇ ରହିଲା। କଣ୍ଟା ମୁଁ ଗିଳୁଛି କି ନାହିଁ ?

ମୁଁ ବି ତା' ଆଡ଼େ ଆଶାୟୀ ନୟନରେ ଅନାଇ ରହିଥିଲି।

ସେ କହିଲା : କାମଟା ସେପରି କିଛି ଶକ୍ତ ନୁହେଁ। କେବଳ ଗୋଟାଏ ଲୋକକୁ ଖୁଣ୍ କରିବାକୁ ହେବ। ଖୁଣ୍ କରିବାର ସମସ୍ତ ସୁବିଧାସୁଯୋଗ ମୁଁ କରିଦେବି। ରିଭଲଭର ବି ଦେବି। ସେ ଏକ ନିର୍ଜନ ରାସ୍ତା ଦେଇ ମଟର ସାଇକେଲରେ ଯାଉଥିବା ବେଳେ ତୁ ଗୋଟାଏ ବୁଦାମୂଳେ ବସି ରହି ଲକ୍ଷ୍ୟ ସ୍ଥିର କରି କେବଳ ଟ୍ରିଗାର ଦାବିବୁ। ତା'ପରେ ସବୁ ଦାୟିତ୍ୱ ମୋର। ଫେରି ଆସି ରିଭଲଭରଟି ମୋତେ ଫେରାଇ ଦେବୁ ଏବଂ ଦଶହଜାର ଟଙ୍କା ନେଇ ତୋ ଆଖି ଯୁଆଡ଼େ ପାଇବ ଚାଲିଯିବୁ। ଏତକ କହିସାରି ପ୍ରେମ୍ କାପୁର ନୀରବ ହୋଇଗଲା।

: ତା'ପରେ ? ତମେ କ'ଣ ରଣଜିତ୍ ଠାକୁର କଥା ରଖିଲ ? ରୀନା ପଚାରିଲା।

: ନା, ପ୍ରଥମେ ମୁଁ ରାଜି ହୋଇ ଯାଇଥିଲି। କିନ୍ତୁ ପରେ ଯେତେବେଳେ ଜାଣିଲି ଯେ, ମୋ ହାତରେ ସେ ଯାହାକୁ ଖୁଣ୍ କରେଇବାକୁ ଚାହୁଁଛି, ତା'ଠାରୁ ସେ କିଛି ଫାଇଦା ଉଠାଇବା ପାଇଁ ନୁହେଁ, ମୋତେ ଖୁଣୀ ଆସାମୀ ସଜେଇ ଅନ୍ଧକାରରେ ଲୁଚେଇ ରଖିବାକୁ ତା'ର ଇଚ୍ଛା। ସିଏ କୁଆଡ଼େ ବୁଝି ପରିଥିଲା ଯେ, ମୁଁ ଯଦି ମୁଷ୍ଟି ଯୁଦ୍ଧ ପ୍ରତିଯୋଗିତାକୁ ଓହ୍ଲେଇ ପଡ଼େ, ଅଳ୍ପ କେଇଦିନ ପରେ ମୁଁ ନାଁ କରିଯିବି। ରଣଜିତ୍ ଠାକୁରର ସୁଖ୍ୟାତି ମଉଳି ପଡ଼ିବ। ସେ ମୋ ସହିତ ମୁଷ୍ଟି ଯୁଦ୍ଧରେ ଅବତୀର୍ଣ୍ଣ ହୋଇ, ମୋ ଠାରୁ କୁଆଡ଼େ ସେହିଭଳି ପ୍ରତିଭାର ସନ୍ଧାନ ପାଇଥିଲା। ଫଳରେ ସେ ଚାହୁଁଥିଲା ମୁଁ ଜଣେ ଖୁଣୀ ଆସାମୀ ହୋଇ ତା'ରି ବାହୁ ଛାୟା ତଳେ ଆଶ୍ରୟ ନିଏ।

: ହୁଁ ବୁଝିଲି ତା'ପରେ ତମେ କ'ଣ କଲ ? ରୀନା ଗୋଟାଏ ଦୀର୍ଘ ନିଶ୍ୱାସ ପକାଇ କହିଲା ।

: ତା'ପରେ ? ତା'ପରେ ମୁଁ ଲୁଚି ପଳାଇ ଆସିଲି । ବମ୍ବେ ସହର ଛାଡ଼ିଦେଲି । କିନ୍ତୁ ଲାଭ କିଛି ହେଲାନାହିଁ । ଜୀବନରେ ମୋର ଉନ୍ନତିର ସମସ୍ତ ପଥ ରୁଦ୍ଧ ହୋଇଗଲା । ବହୁ ଚେଷ୍ଟା କରି ମଧ୍ୟ ଆୟର କୌଣସି ସୁଗମ ପନ୍ଥା ଖୋଜି ପାଇଲି ନାହିଁ । ଯଦିଓ ମୁଷ୍ଟିଯୁଦ୍ଧ ଅନୁଶୀଳନ ଛାଡ଼ି ନାହିଁ କିନ୍ତୁ ରଣଜିତ୍ ଠାକୁର ଭୟରେ କୌଣସି ପ୍ରତିଯୋଗିତାରେ ନାମ ଦେଇ ପାରୁନାହିଁ ।

: କିନ୍ତୁ ତମେ ତ ଆଜିଯାଏ ଏସବୁ କଥା ମୋତେ କିଛି କହି ନଥିଲ ? ରୀନା କଣ୍ଠରେ ଅଭିମାନର ସ୍ୱର ।

: ନା ରାଣୀ, ତୋତେ ମୁଁ କହିନାହିଁ । ମୁଁ ଜାଣିଥିଲି ତୋତେ ଏ ସବୁ କଥା କହିଲେ ତୁ ଭାବିବୁ ଏ ଗୋଟାଏ କାପୁରୁଷ । ଜଣକ ଭୟରେ ଅନ୍ଧକାରରେ ଲୁଚି ଲୁଚି ବୁଲୁଛି । ହୁଏତ ତୁ ମୋତେ ଘୃଣା କରି ଥାଆନ୍ତୁ । ମୋତେ...........

ରୀନା ପ୍ରେମ୍ କପୁରର କଥା ଶେଷ କରିବାକୁ ଦେଲା ନାହିଁ। କହିଲା : ଆଚ୍ଛା, ତମେ ଯଦି ରଣଜିତ୍ ଠାକୁରକୁ ତା'ର ସେହି ଅଢ଼େଇଲକ୍ଷ ଟଙ୍କା ଦେଇଦିଅ, ତା'ହେଲେ ସେ ତମକୁ ମୁକ୍ତିଦେବ ?

: ମୁକ୍ତି ! ପ୍ରେମ୍ କାପୁର କଣ୍ଟା ଥରି ଉଠିଲା । କହିଲା, ମୁକ୍ତି ମୁଁ ଜୀବନରେ ପାଇବି ନାହିଁ ରାଣୀ । ମୁଁ ଆଜି ଯେଉଁ ବାଟକୁ ଓହ୍ଲେଇ ଯାଇଚି ସେ ବାଟ ମୁକ୍ତିର ବାଟ ନୁହେଁ । ମୋର ଆଜି ଜୀବନ ଧାରଣର ଏକମାତ୍ର ପଥ ହୋଇଛି ଜୁଆ । ଜୁଆଖେଳି ମୁଁ କେବେ ଅଢ଼େଇଲକ୍ଷ ଟଙ୍କା ସଞ୍ଚୟ କରି ପାରିବି ନାହିଁ । କିମ୍ବା ରଣଜିତ୍ ଠାକୁର କବଳରୁ ମୁକ୍ତି ପାଇବି ନାହିଁ । ହୁଏତ ଦୁଇଚାରି ଦିନ ଭିତରେ ମୋତେ ଏ ସହର ଛାଡ଼ି ଚାଲିଯିବାକୁ ହେବ ।

: ନା ନା ପ୍ରେମ୍ । ତମ୍ଭୁକୁ ମୁଁ ଛାଡ଼ିବି ନାହିଁ । ତମ୍ଭୁକୁ ଛାଡ଼ି ମୁଁ ବଞ୍ଚି ପାରିବି ନାହିଁ । ମୁଁ ତୁମ୍ଭୁକୁ ଅଢ଼େଇ ଲକ୍ଷ ଟଙ୍କା ଯୋଗାଡ଼ କରିଦେବି। ତୁମେ ରଣଜିତ୍ ଠାକୁରର ଋଣମୁକ୍ତ ହେବ । ମୋତେ କଥା ଦିଅ ପ୍ରେମ୍, ତମେ ମୋତେ ଛାଡ଼ି ଚାଲିଯିବ ନାହିଁ । ରୀନା ଦୁଇ ହାତରେ ପ୍ରେମ୍‌କାପୁରକୁ ଜଡ଼େଇ ଧରି ତା ଛାତିରେ ମୁହଁ ଗୁଞ୍ଜିଲା ।

: ରୀନା, ରାଣୀ ! ତୁ ମୋତେ ଦିନର ଆଲୋକକୁ ଟାଣି ଆଣି ପାରିବୁ ? ମୁଁ ତା'ହେଲେ ତୋ ପାଖରେ ଚିର ଋଣୀ ହୋଇ ରହିବି । କିନ୍ତୁ ତୋ ପକ୍ଷରେ ଏହା କିପରି ସମ୍ଭବ ? ଅଢ଼େଇ ଲକ୍ଷ ଟଙ୍କା କିଛି ପାଞ୍ଚ ଛ' ହଜାରର କଥା ନୁହେଁ ।

: ମୁଁ ଜାଣେ ପ୍ରେମ୍ । ତମ ପାଇଁ ମୁଁ ସବୁ କରିବାକୁ ପ୍ରସ୍ତୁତ ଅଛି । ଜୀବନ ଦେବାକୁ ବି ।

: କିନ୍ତୁ ରଣଜିତ୍ ଠାକୁର ପାଖରେ ଜୀବନର କିଛି ମୂଲ୍ୟ ନାହିଁ ରାଣୀ । ତୋପରି ମୋ ପରି ଗଣ୍ଡା ଗଣ୍ଡା ସେ ମୁହୂର୍ତ୍ତକରେ ମାଟିରେ ଲୋଟେଇ ଦେଇପାରେ । ତେଣୁ........

: ନା, ପ୍ରେମ୍ । ମୁଁ ତୁମକୁ ଟଙ୍କା ଦେବି ଏବଂ ଅଢ଼େଇଲକ୍ଷ ଟଙ୍କା, ତେବେ ମୋତେ ସମୟ ଦେବାକୁ ହେବ। ରଣଜିତ୍ ଠାକୁର ଠାରୁ ତମେ ଟିକିଏ ସମୟ ମାଗି ଆଣିବ । ତା'ହେଲେ ସବୁ ଠିକ୍ ହୋଇଯିବ ।

ପ୍ରେମ କାପୁର ରୀନା ଆଡ଼େ କିପରି ଆଶାୟୀ ଆଖିରେ ଚାହିଁ ରହି କହିଲା : ତୁ କୋଉଠୁ ଏତେଟଙ୍କା ଯୋଗାଡ଼ କିରବୁ ରାଣୀ! ନା, ନା, ମୋ ପାଇଁ ତୋ ଜୀବନ ବିପନ୍ନ ହେଉ ଏହା ମୁଁ ଚାହେଁନାହିଁ । ବରଂ ମୋ ସମସ୍ୟା ମୋ ଉପରେ ଛାଡ଼ିଦେଇ ତୁ ତୋ ବାଟରେ ଚାଲି ଯା । ଦୁନିଆ ରଙ୍ଗମଞ୍ଚରେ ଅନେକ ସମୟରେ ଅନେକଙ୍କର ଭେଟ ହୁଏ । ସେ କେବଳ କ୍ଷଣକର ସ୍ମୃତି ଭଳି । ତା'ପରେ ଯିଏ ଯୁଆଡ଼େ ନିଜ ନିଜ ବାଟରେ ଆଗେଇ ଯାଆନ୍ତି । ନା ରୀନା, ମୁଁ ତୋର ଏଇ ଫୁଲପରି ସୁନ୍ଦର ଜୀବନଟାକୁ ଦଳି ମଚକି ଦେବାକୁ ଚାହେଁନାହିଁ ।

ରୀନା କିନ୍ତୁ ପ୍ରେମ୍ କାପୁରକୁ ଦୁଇ ହାତରେ ଜଡ଼େଇ ଧରିଥିଲା । ଧୀରେ ଧୀରେ ସେ କହିଲା : ମୋ ଜୀବନ ଫୁଲ ପରି ସତ, କିନ୍ତୁ ଯେଉଁ ସବୁ କୀଟମାନେ ଆସି ଚାରିପାଖରେ ବସା ବାନ୍ଧିଲେଣି, ବେଶୀ ଦିନ ଆଉ ସେ ନିଷ୍ପାପ ହୋଇ ରହିବ ନାହିଁ । କୀଟମାନେ ଖିନ୍‌ଭିନ୍ କରି ପାଖୁଡ଼ା ପରେ ପାଖୁଡ଼ା କାଟି ଝରେଇ ଦେବେ । ଖାଲି ମୋତେ ତୁମେ କଥା ଦିଅ ତମ ବାହୁଛାୟା ତଳେ ଆଶ୍ରୟ ଦେବ ।

: ପାଗଳୀ ! ପ୍ରେମ୍ କପୁର ହସିଲା । କହିଲା, ଆଶ୍ରୟ ନୁହେଁ, ତୁ ମୋ ହୃଦୟର ରାଣୀ ଅନେକ ଦିନରୁ ହୋଇ ସାରିଛୁ । କିନ୍ତୁ ବଦଳରେ ତୁ ମୋତେ ଟଙ୍କା ଦେବୁ ଏହା ଭାବିବାଟା ହିଁ ମୋର ଅପରାଧ ।

: ଅପରାଧ କିଛି ନୁହେଁ ପ୍ରେମ୍ । ମୁଁ ଗୋଟିଏ ସୁବିଧା ପାଇଛି । ଏବଂ କାର୍ଯ୍ୟରେ ଅବତୀର୍ଣ୍ଣ ହୋଇଛି । କାମ ଶେଷରେ ମୋର ଭାଗ ଅଢ଼େଇଲକ୍ଷ ଟଙ୍କା । ଠିକ୍ ଯେତିକି ତମର ଦରକାର । ରୀନା ଶାନ୍ତ ସ୍ୱରରେ କହିଲା ।

ପ୍ରେମ୍ କପୁର ରୀନାକୁ ଆହୁରି ନିବିଡ଼ ବନ୍ଧନରେ ବାନ୍ଧି ମୁହଁରେ ମୁହଁ ରଖି କହିଲା : ନା ନା ରାଣୀ । ମୁଁ ଯେତେବେଳେ ତତେ ହୃଦୟର ରାଣୀ କରି ସାରିଲିଣି, ଆଉ ତୋତେ ବିପଦକୁ ଠେଲି ଦେବିନାହିଁ । ଅଢ଼େଇଲକ୍ଷ ଟଙ୍କା ଉପାର୍ଜନ କରିବା ପାଇଁ ଓହ୍ଲେଇଲେ ନିଶ୍ଚୟ ବିପଦର ବୋଝ ମୁଣ୍ଡେଇବାକୁ ହେବ । ଥାଉ ରାଣୀ । ଟଙ୍କା ମୋର ଦରକାର ନାହିଁ । ବରଂ ଆମେ ଦୁହେଁ ମିଶି ଏ ସହର ଛାଡ଼ି ଚାଲିଯିବା ।

: ତମେ ମୋ ପାଇଁ ଚିନ୍ତା କରନାହିଁ ପ୍ରେମ୍ । ମୁଁ ଯେଉଁ କାମକୁ ଓହ୍ଲେଇଛି, ସେଥିରେ ବିପଦର ସମ୍ଭାବନା କିଛି ନାହିଁ । ତା'ଛଡ଼ା ଥିଲେ ବି, ମୁଁ ତୁମକୁ ମୁକ୍ତି ଦେବାକୁ ଚାହେଁ । ଦୁନିଆରେ ମୁଣ୍ଡଟେକି ତମେ ଘୁରି ବୁଲିବ । ଦେଶ ବିଦେଶରେ ନାମ କମେଇବ । ମୁଷ୍ଟି ଯୁଦ୍ଧରେ ଚମ୍ପିଆନ ହେବ । ମୋ ଛାତି କୁଣ୍ଢେ ମୋଟ ଫୁଲି ଉଠିବ । ଯେପରି ହେଉ, ମୁଁ ତୁମକୁ ଅଢ଼େଇ ଲକ୍ଷ ଟଙ୍କା ଦେଇ ରଣଜିତ୍ ଠାକୁରର ଋଣମୁକ୍ତ କରାଇବି । ପ୍ରେମ୍, ତମେ ମୋତେ ବିଶ୍ୱାସ କର ।

ପ୍ରେମ୍ କାପୁର ରୀନା ମୁହଁରେ ମୁହଁ ରଖିଲା । ମୁଣ୍ଡ ବାଳରେ ଆଙ୍ଗୁଳି ଚଳେଇଲା । ଶାନ୍ତ ସ୍ୱରରେ କହିଲା : ହେଉ ସେକଥା ପରେ ଫଇସାଲା ହେବ । ମୁଁ ତୋ ଅଭିଯାନର କାହାଣୀ ଶୁଣିବି । ବିଚାର କରି ଦେଖିବି, ସେଥିରେ ବିପଦର ସମ୍ଭାବନା ଅଛି କି ନାହିଁ । ତା'ପରେ ଯାଇ କାମରେ ଆଗେଇବାର ଅନୁମତି ଦେବି । ତା'ନହେଲେ ମୋର ଏହି ଅନ୍ଧକାର ଶ୍ରେୟ । ମୁଁ ଯାହା ପାଇଛି, ତାକୁ ଆଉ ହରେଇବାକୁ ଚାହେଁନାହିଁ ।

ରୀନା ଗୋଏଲ୍ ପ୍ରେମ୍ କାପୁର ଛାତି ଉପରୁ ମୁହଁ ଉଠାଇ କହିଲା : ପରେ ଆଉ

ମୋ ଅଭିଯାନର କାହାଣୀ ଶୁଣାଇବାକୁ ସମୟ ପାଇବି ନାହିଁ । କାଲି ସକାଳୁ ମୋତେ କର୍ମସ୍ଥଳକୁ ବାହାରି ଯିବାକୁ ହେବ ।

ତମେ ଶୁଣ ପ୍ରେମ୍, ସଂକ୍ଷେପରେ ମୁଁ ତମକୁ ସବୁ କଥା କହୁଛି ସେପରି ଗୋଟାଏ ବିପଦ ଥିଲାପରି ତ ମୋର କାହିଁକି ମନେ ହେଉନାହିଁ ।

ରୀନା ଧୀରେ ଧୀରେ ସବୁକଥା କାପୁର ଆଗରେ କହିବାକୁ ଲାଗିଲା । ତିନି ବନ୍ଧୁଙ୍କ ପାଖରେ ତା'ର ପହଞ୍ଚିବା ପରଠାରୁ ଇଣ୍ଟରଭିଉ, ସେଠ୍ ରତନମଲଙ୍କ ସହିତ ସାକ୍ଷାତ ଏବଂ ଦଶଲକ୍ଷ ଟଙ୍କାରୁ ତା'ର ଅଢ଼େଇଲକ୍ଷ ଟଙ୍କାର ଭାଗ ପର୍ଯ୍ୟନ୍ତ ସବୁକଥା ଗୋଟି ଗୋଟି କରି କହିଗଲା ।

ରୀନାର କଥା ଶେଷ ହେବା ବେଳକୁ ପ୍ରେମ୍‌କାପୁରର ଛାତିଟା ଯେପରି କୁଣ୍ଢେମୋଟ ହୋଇଗଲା । ସେ ଦୁଇ ହାତରେ ରୀନା ଗୋଏଲ୍‌ର ଦେହଟାକୁ ଫୁଲପରି ଟୋଳି ନେଇ ଶେଯରେ ଶୁଆଇ ଦେଲା । ନିଜ ହାତରେ ଦୁଇଗ୍ଲାସ ପାନୀୟ ଢାଳି ରୀନା ହାତକୁ ଗୋଟାଏ ଗ୍ଲାସ ବଢ଼ାଇ ଦେଇ କହିଲା : ମୁଁ ତୋ ଋଣ ଜୀବନରେ ଶୁଝି ପାରିବି ନାହିଁ ରାଣୀ ।

ରୀନା ଗୋଏଲ୍ ପାନୀୟତକ ଏକା ନିଶ୍ୱାସରେ ନିଃଶେଷ କରି, ପ୍ରେମ୍ ଗଳାରେ ହାତ ଛନ୍ଦି ଶେଯ ଉପରକୁ ଟାଣି ଆଣିଲା । ତନ୍ଦ୍ରା ଜଡ଼ିତ କଣ୍ଠରେ କହିଲା : ମୁଁ କେବଳ ତମର ସାନିଧ ଚାହେଁ ପ୍ରେମ୍ । ତମ ସବଳ ବାହୁ ପାଶରେ ପେଶି ହୋଇ ବଞ୍ଚିବାକୁ ଚାହେଁ । ମୋର ତମ ପାଖରେ ଏତିକି ଭିକ୍ଷା । ତମେ ମୋତେ ସେତିକିରୁ ବଞ୍ଚିତ କରିବ ନାହିଁ । ତମେ ମୋତେ.............

ରୀନା ଆଉ କିଛି କହି ପାରିଲା ନାହିଁ । ତା'ର ଆଖି ବୁଜିହୋଇ ଯାଉଥିଲା । ପ୍ରେମ୍ କାପୁର ରୀନା ମୁହଁ ସହିତ ମହଁ ମିଶେଇ କଥା ବନ୍ଦ କରି ଦେଉଥିଲା ।

କେତକୀ କୁଶାରୀ ଯେତେବେଳେ ଯାଇ ସେଠ୍ ରତନମଲ କାନୋଡ଼ିଆଙ୍କ ଘରେ ପହଞ୍ଚିଲା । ଘଡ଼ିରେ ସେତେବେଳକୁ ଠିକ୍ ନଅଟା ବାଜୁଥିଲା ।

ସେଠ୍ କାନୋଡ଼ିଆ ବୋଧହୁଏ କେତକୀ ପାଇଁ ଅପେକ୍ଷା କରିଥିଲେ । ସମ୍ବାଦ ପାଇବା ମାତ୍ରକେ ସେ ତାକୁ ଡାକି ପଠାଇଲେ ତାଙ୍କର ପ୍ରାଇଭେଟ୍ ଚେମ୍ବରକୁ ।

କେତକୀ କୁଶାରୀ ନମସ୍କାର କରି ସୋଫା ଉପରେ ବସିଲା । ସେଠ୍ କାନୋଡ଼ିଆ ଫାଇଲ୍‌ରେ ଦସ୍ତଖତ ଶେଷ କରି, କେତକୀ ଆଡ଼କୁ ଚାହିଁ କହିଲେ : କେତକୀ, ତମକୁ ମୁଁ ଗୋଟାଏ କଥା ନକହି ରହି ପାରୁନାହିଁ ତମେ ଯା'ର ମା' ହୋଇ ଆଜି ଏ ଘରେ

ପ୍ରବେଶ କରୁଚ, ଆଶା କରୁଚି ତମେ ସେଇ ମର୍ଯ୍ୟାଦା ଶେଷ ଦିନ ପର୍ଯ୍ୟନ୍ତ ରକ୍ଷା କରିବ ।

ଯମୁନା ଖୁବ୍ ସାନ ପିଲା । ଦୁନିଆର ଭଲମନ୍ଦ ସେ କିଛି ବୁଝେନାହିଁ । ତେବେ ସେ ଚାହେଁ ଗୋଟିଏ ଆଶ୍ରୟ । ଜଣେ ଖେଳସାଥୀ । କିନ୍ତୁ ମୁଁ ଚାହେଁ କ'ଣ ଜାଣ ? ଯମୁନାର ଜଣେ ଆଶ୍ରୟ ଦାତ୍ରୀ । ସତ କହିବାକୁ ଗଲେ ଯମୁନା ଖୁବ୍ ନିରାଶ୍ରୟ । ଯଦିଓ ତା' ବାପାର ଅଗାଧ ସମ୍ପତ୍ତି, ବହୁ ସହଯୋଗୀ । ତଥାପି ଯମୁନା ନିରାଶ୍ରୟା । କାହିଁକି ଏ କଥା ମୁଁ ତମୁକୁ କହୁଛି ଏଠାରେ ତମେ ରହିଲେ ଧୀରେ ଧୀରେ ହୁଏତ ସବୁକଥା ଜାଣି ପାରିବ ।

ମୋର ଏହି ଘର ଭିତରେ ବହୁ ଆତ୍ମୀୟ ସ୍ୱଜନ ଅଛନ୍ତି । ବହୁ ହିତାକାଂକ୍ଷୀ ଅଛନ୍ତି । କିନ୍ତୁ ମୁଁ କାହାରିକୁ ବିଶ୍ୱାସ କରେନାହିଁ । ଯା'ହେଉ ତମେ ମୋର ଅନାତ୍ମୀୟ, ଅପରିଚିତା କିନ୍ତୁ ତଥାପି ତମ ଉପରେ ମୁଁ ଆସ୍ଥା ରଖୁଛି, ଭରସା ରଖୁଛି । ତମେ ଏଇ ନିରାଶ୍ରୟ ଶିଶୁଟିର ଦାୟିତ୍ୱ ବହନ କରି ତାକୁ ମାତୃତ୍ୱର ସ୍ନେହ ଦେଇ ବଢ଼େଇବ । ମୁଁ କେବଳ ଏତିକି ଚାହେଁ । ଆଶା କରୁଚି ତମେ ତୁମର ଦାୟିତ୍ୱ ପାଳନ କରିବ ।

କେତେକୀ ନୀରବରେ ବସି ଏକ ଅସହାୟ ପିତୃତ୍ୱର ମର୍ମ୍ମବେଦନା ଶୁଣୁଥିଲା ।

ସେଠ୍ ରତନମଲ ପୁଣି କହିଲେ ଜାଣ କେତକୀ, ତମର ଏଠି ରହିବାର କୌଣସି ଅସୁବିଧା ହେବନାହିଁ । ଯଦି ତୁମେ ଯମୁନାର ମା' ନୁହଁ ତଥାପି ମୁଁ ତୁମକୁ ଯମୁନା ମା'ର ମର୍ଯ୍ୟାଦା ଦେବି । ମୁଁ ଚାହେଁ ଯମୁନାର ସ୍ୱାଚ୍ଛନ୍ଦ୍ୟ । ମୁଁ ଚାହେଁ ଯମୁନା ମୁହଁରେ ହସ । ତା' ମା' ମୃତ୍ୟୁ ଶଯ୍ୟାରେ ମୋତେ କହିଯାଇଥିଲା, ମୁଁ ଯାଉଛି, ଯମୁନାର ଦାୟିତ୍ୱ ତୁମକୁ ଦେଇଗଲି । ତା' ଆଖିରୁ ଯେପରି ଲୁହ ନ ଝରେ । ମୋ ସ୍ତ୍ରୀଙ୍କର ସେଇ ଶେଷ କଥା ମୁଁ ରକ୍ଷା କରି ପାରିନାହିଁ । ଯମୁନା ଆଖିର ଲୁହ ମୁଁ ଶୁଖେଇ ପାରିନାହିଁ । ତମେ ଯଦି ପାର, ସ୍ୱର୍ଗରୁ ଥାଇ ଯମୁନାର ମା' ତୁମକୁ ଆଶୀର୍ବାଦ କରିବେ । ତମେ ସୁଖୀ ହେବ ।

ସେଠ୍ ରତନମଲ ଆଉ କ'ଣ କହିଥାନ୍ତେ । କିନ୍ତୁ ହଠାତ୍ ଟେଲିଫୋନ୍‌ଟା ବାଜିଉଠିବାରୁ ସେ ରିସିଭର ଉଠାଇ କାନରେ ଦେଲେ । କେଇପଦ କଥାବାର୍ତ୍ତା ପରେ ତାଙ୍କ ମୁହଁରେ ଚଞ୍ଚଳତା ଫୁଟି ଉଠିଲା। ସେ ରିସିଭରଟା ରଖିଦେଇ କେତକୀ ଆଡ଼େ ଚାହିଁ କହିଲେ: ମୋର ଡକରା ଆସିଗଲାଣି । ମୋତେ ଏଇକ୍ଷଣି ଅଫିସ୍ ବାହାରି ଯିବାକୁ ହେବ । କହୁ କହୁ ସେ କଲିଂ ବେଲ୍‌ର ବୋତାମ ଟିପିଲେ ।

କ୍ଷଣକ ପରେ ତାଙ୍କର ଖାସ୍ ବେହେରା ଆସି ଠିଆ ହେଲା । ସେଠ୍ ରତନମଲ କହିଲେ : ଏ ତୋର ଦିଦିମଣି ସୁଧା । ଆମ ଘରେ ଆଜିଠାରୁ ରହିବେ । ତୋ' ଛୋଟ ଦିଦିମଣିର ଦାୟିତ୍ୱ ଆଜିଠାରୁ ଯାଙ୍କରି ଉପରେ । ତୁ ଟିକେ ଦେଖା ଚାହାଁ କରିବୁ । ବର୍ତ୍ତମାନ ନେଇଯା ତାଙ୍କ ପାଇଁ ଯେଉଁ ଘରଟା କାଲି ସଫା କରିଥିଲୁ, ସେଇଠି ଛାଡ଼ିଦେବୁ । ଦରକାରୀ ଜିନିଷପତ୍ର ସବୁ ଯୋଗେଇ ଦେବୁ । ମୁଁ ଅଫିସ୍ ବାହାରିଲି । ଛୋଟ ଦିଦିମଣି ସ୍କୁଲ୍‌ରୁ ଫେରି ଆସିଲେ, ସେଇଠି ନେଇ ଛାଡ଼ି ଦେବୁ ।

ସେଠ୍ ରତନମଲ ଉଠି ଠିଆହେଲେ । କେତକୀ ବି ଉଠି ପଡ଼ିଲା । ସେଠ୍ ରତନମଲ ଆଉ ଦ୍ୱିତୀୟ କଥା ନ କହି ଘରୁ ବାହାରି ଚାଲିଗଲେ । ସୁଧା ଦିଦିମଣିଙ୍କ ମୁହଁକୁ ଏକ

ଦୃଷ୍ଟିରେ ଅନାଇ ଠିଆ ହୋଇଥିଲା ।

ସୁଧାକର ସେଠ୍ ରତନମଲଙ୍କର ଖାସ୍ ବେହେରା । ଯଦିଓ ଯଥେଷ୍ଟ ବୟସ ତା'ର ହେଲାଣି ତଥାପି ସେଠ୍ ରତନମଲ ତାକୁ ଚାଲି ଯିବାକୁ କହି ନାହାନ୍ତି କିମ୍ବା ସୁଧାକର ମାଲିକଙ୍କୁ ଛାଡ଼ି ଚାଲି ଯିବାକୁ କେବେ ଆଗ୍ରହ ପ୍ରକାଶ କରିନାହିଁ । ସେ ଏଇ ଘରେ ତା' ପିଲାଟି ଦିନରୁ ଆସି ରହିଛି । ରତନମଲଙ୍କ ପରିବାରର ଉତ୍‌ଥାନ ପତନ ସହିତ ସେ ଅଙ୍ଗାଙ୍ଗି ଭାବରେ ଜଡ଼ିତ ।

ରତନମଲଙ୍କ ବାପା ସୋହନମଲଙ୍କର ଯେତେବେଳେ ବଡ଼ ବଜାରରେ ଗୋଟିଏ ଛୋଟ ହାର୍ଡଓୟେର ଦୋକାନ ଥିଲା, ସେତିକି ବେଳୁ ସୁଧାକର ଏ ଘରେ ରହିଛି । ଅବଶ୍ୟ ରତନମଲଙ୍କ ବାପା ସୋହନମଲ ଏହି ବ୍ୟବସାୟର ଭିତ୍ତି ସ୍ଥାପନ କରି ଯାଇଥିଲେ ; ରତନମଲ ନିଷ୍ଠା ସହକାରେ ପିତାଙ୍କର ସେହି କ୍ଷୁଦ୍ର ଅଙ୍କୁରଟିକୁ ମହୀରୁହରେ ପରିଣତ କରି ପାରିଛନ୍ତି ।

ଶେଷରେ ସୁଧାକର ପାଟି ଫିଟେଇଲା । ପାନଖିଆ ପାକୁଆ ପାଟି ମେଲେଇ କହିଲା: ଚାଲ ।

: ଯମୁନା ସ୍କୁଲରୁ ଫେରିବ କେତେବେଳେ ? କେତକୀ ପଚାରିଲା ।

ସୁଧାକର କହିଲା : ଏଗାରଟା ବେଳକୁ ସେ ଆସିଲେ ମୁଁ ନେଇ ତମ ଘରେ ଛାଡ଼ି ଆସିବି । ଛୋଟ ଦିଦିମଣି ତମକୁ ଦେଖିଲେ ଭାରି ଖୁସି ହେବେ ।

: ମୋତେ ଦେଖି ଖୁସି ହେବେ ? ତୁମେ କେମିତି ଜାଣିଲ ସୁଧାକର ? କେତକୀ ପଚାରିଲା ।

: ହଁ ଗୋ ଦିଦିମଣି । ଛୋଟ ଦିଦିମଣିର ମା' ନାହାନ୍ତି, କିଛି ମନେ କରିବ ନାହିଁ ଦିଦିମଣି ! ତମେ ଠିକ୍ ଛୋଟ ଦିଦିମଣିଙ୍କ ମା'ପରି ଦିଶୁଛ । ସେ ତମକୁ ପାଇଲେ ଆଉ ମୋତେ ଛାଡ଼ିବେ ନାହିଁ । ସୁଧାକର ହସି ହସି କହିଲା ।

: ସତେ ନା କ'ଣ ? ତମ ଛୋଟ ଦିଦିମଣିଙ୍କ ମା' କ'ଣ ମୋରିପରି ଥିଲେ ?

: ହଁ ଗୋ ଦିଦିମଣି । ମୁଁ ତ ପ୍ରଥମେ ତମକୁ ଦେଖି କାବା ହୋଇ ଯାଇଥିଲି । ଖାଲି ତମ ନାକଟା ଟିକେ ଲମ୍ବା । ତା'ନହେଲେ ମା' ମଣିଙ୍କ ମୁହଁ ତମ ମୁହଁ ଭିତରେ ବାଛି ଦେବାର କିଛି ନାହିଁ ।

: ବୁଝିଲି । ଆଚ୍ଛା ସୁଧାକର । ଏ ଘରେ ଯମୁନାର ଆଉ କିଏ ସବୁ ନିଜ ଲୋକ ଅଛନ୍ତି ? କେତକୀ ଚାଲୁ ଚାଲୁ ପଚାରିଲା ।

ସୁଧାକର ତା' ପାକୁଆ ପାଟିରେ ହସ ଫୁଟେଇ କହିଲା : ଏଇ ଘରେ ସମସ୍ତେତ ଛୋଟ ଦିଦିମଣିଙ୍କର ଆପଣାର ଲୋକ । ହେଲେ, ସୁଧାକର ଟିକିଏ ରହିଯାଇ କେତକୀ କାନ ପାଖକୁ ମୁହଁ ବଢ଼େଇ ଦେଇ କହିଲା, ହେଲେ ସମସ୍ତେ ଉପରେ ପାଣି ଛିଞ୍ଚି ଭିତରେ ଭିତରେ ଚେର କାଟିବା ପାଇଁ ଅଛନ୍ତି । ମୁଁ ତମକୁ ଧୀରେ ଧୀରେ ସମସ୍ତଙ୍କୁ ଚିହ୍ନେଇ ଦେବି । ଏଇ ତମ ଘର ଦିଦିମଣି, ଏଇଠି ତମେ ରହିବ ।

ସୁଧାକର ଗୋଟିଏ ଘରର କବାଟ ଖୋଲି କେତକୀକୁ ଦେଖାଇ ଦେଲା । ଏକ ପ୍ରଶସ୍ତ ସୁସଜ୍ଜିତ ଘର । ସଂଲଗ୍ନ ଛୋଟ ବୈଠକ ଖାନା । ତା'ପରେ ବାରଣ୍ଡା । ବାରଣ୍ଡା

ସେ ପାଖକୁ ଗୋଟିଏ ବଗିଚା । ବଗିଚାରେ ନାନା ଜାତିର ଫଳ ଫୁଲର ସମ୍ଭାର । ସବୁ ମିଶେଇ ସ୍ଥାନଟି ବେଶ୍ ମନୋରମ । କିନ୍ତୁ ଘରଟି ଶେଷ ପ୍ରାନ୍ତକୁ ଗୋଟାଏ ଦୃଷ୍ଟିରୁ ଭଲ । ହୁଏତ ସେତେ ଗୋଳଚହଳ ହେବ ନାହିଁ ।

କେତକୀ ସବୁଆଡ଼େ ବୁଲିଆସି ବୈଠକଖାନା ସୋଫା ଉପରେ ବସିପଡ଼ି ପଚାରିଲା : ଇତି ପୂର୍ବରୁ ଏଘରେ କିଏ ରହୁଥିଲା ସୁଧାକର ।

: ଇତି ପୂର୍ବରୁ ? ସୁଧାକର ଟିକେ ଚିନ୍ତା କଲା, କହିଲା : ଗଙ୍ଗା ଦିଦିମଣିଙ୍କ ଟିଉଟର କିଛିଦିନ ରହୁଥିଲେ । ତା'ପରେ ଆଉ କେହି ରହି ନାହାନ୍ତି, ସୁଧାକର କହିଲା ।

: ଗଙ୍ଗା ଦିଦିମଣି ? କେତକୀ କ'ଣ ପଚାରିବାକୁ ଯାଇ ଅଟକି ଗଲା ।

: ହେଇ ଗଙ୍ଗା ଦିଦିମଣି ଆସିଲେଣି । ସୁଧାକର କହି ଅନ୍ୟଆଡ଼େ ଚାଲିଗଲା ।

କେତକୀ ଦେଖିଲା କାଲିର ସେଇ ଝିଅଟି । ଯାହା ସହିତ କ୍ଷଣକ ପାଇଁ ଦେଖା ହୋଇଥିଲା । ହସି ହସି ସେ ଆଗେଇ ଆସି ସାମନା ସୋଫା ଉପରେ ବସିଲା ।

: ମୋ ନାଁ ଗଙ୍ଗା । କାଲି ତମ ସଙ୍ଗରେ ଦେଖା ହୋଇଥିଲା ମନେ ଅଛି ? ମୁଁ ତୁମକୁ ଅପା ଡାକିବି । କେତକୀ ଅପା । ଗଙ୍ଗା କହି ସାରି ହସି ଉଠିଲା ।

କିନ୍ତୁ କେତକୀ ଜାଣିପାରୁ ନଥିଲା ଏଇ ଗଙ୍ଗାଟି କିଏ । ଏ କ'ଣ ତେବେ ସେଠ୍ ରତନମଲଙ୍କର ବଡ଼ ଝିଅ ? ତାଙ୍କ ପ୍ରଥମ ସ୍ତ୍ରୀର ବଡ଼ ନାଁ ଗଙ୍ଗା, ସାନ ନାଁ ଯମୁନା, ହୋଇପାରେ, ଅସମ୍ଭବ ନୁହେଁ ।

: ନା ନା ମୋତେ ତୁମେ କେତକୀ ଅପା ଡାକିବ । ମୋର ଆପତ୍ତି ନାହିଁ । ତମେ କାଲି କହୁଥିଲ ନା, ଏଠି ତମେ ନିଃସଙ୍ଗ । ଯେତେବେଳେ ବେଳ ପାଇବ ଆସିବ । ମୋର କିଛି ଅସୁବିଧା ହେବନାହିଁ । ଦୁହେଁ ମିଶି ଗପ କରିବା ।

: ସତରେ କେତକୀ ଅପା, ତମେ ଭାରି ଭଲ । ମୋତେ ଏତେ ଭଲ କେହି ପାଆନ୍ତି ନାହିଁ । ଗଙ୍ଗାର ଏଇ ସ୍ୱୀକାରୋକ୍ତିରୁ କିପରି ଏକ ଅସହାୟତାର ଗନ୍ଧ ପାଇଲା କେତକୀ । ଭାବିଲା ସେଠ୍ ରତନମଲଙ୍କ ଏହି ମାୟାପୁରୀର ରହସ୍ୟଭେଦ କରିବାକୁ ହେଲେ, ଗଙ୍ଗା ହୁଏତ ତାକୁ ସାହାଯ୍ୟ କରିବ ।

ସେ ଗଙ୍ଗାର ପିଠି ଆଉଁସି ଦେଇ କହିଲା : ମଣିଷ ମଣିଷକୁ ଭଲ ନ ପାଇବ ତ ପାଇବ କାହାକୁ ? ତମେ କିଛି ଭାବିବ ନାହିଁ ଗଙ୍ଗା, ଯେତେବେଳେ ତମର ଇଚ୍ଛା ହେବ ମୋ ପାଖକୁ ଚାଲି ଆସିବା ତମର ଏଠି ଆଉ କିଏ ଅଛି ଗଙ୍ଗା ?

ଗଙ୍ଗା ଆବାକାବା ହୋଇ କେତକୀ ମୁହଁକୁ ଚାହିଁଲା । କହିଲା : ତମେ ମୋତେ ଚିହ୍ନିନାହଁ ? ସେଠ୍ ରତନମଲ ମୋର ବଡ଼ବାପା ହୁଅନ୍ତି ।

: ଓଃ, ତମେ ତା'ହେଲେ ତାଙ୍କ ଭାଇର ଝିଅ । ତମର ପୁଣି ଚିନ୍ତା କ'ଣ ? କେତକୀ ହସି ହସି କହିଲା ।

ଗଙ୍ଗାର କିନ୍ତୁ ମୁହଁ ଶୁଖି ଯାଇଥିଲା । ସେ କେତକୀ ପାଖକୁ ଆଉ ଟିକେ ଘୁଞ୍ଚିଯାଇ କାନ ପାଖରେ ମୁହଁ ରଖି କହିଲା : ମୋର ବାପା ନାହାନ୍ତି । ମା' ଆଉ ମୁଁ ବଞ୍ଚି ରହିଛୁ । ଗଙ୍ଗା ଆଖିରେ ଲୁହ ଜକେଇ ଆସିଲା ।

କେତକୀ ସାନ୍ତ୍ୱନା ଦେବାକୁ ଯାଇ କହିଲା  ସମସ୍ତଙ୍କ ବାପା କ'ଣ ସବୁଦିନ

ରହନ୍ତି ! ଏହି ଧର ମୋ କଥା । ମୁଁ ପିଲାଟିଦିନରୁ ବାପା ମା'ଙ୍କୁ ହରେଇଚି । ମୋର ତାଙ୍କ କଥା କିଛି ମନେନାହିଁ ।

: ନା କେତକୀ ଅପା। ମୋ ବାପା କିନ୍ତୁ ମରି ନାହାନ୍ତି । ମା' କହୁଥିଲା ତାଙ୍କୁ ମାରି ଦିଆ ହୋଇଛି । ଗଙ୍ଗା ଥରିଲା କଣ୍ଠରେ କହିଲା ।

: ତମ ବାପାଙ୍କୁ କିଏ ମାରିଲା ?

କେତକୀ ତା' ପ୍ରଶ୍ନର ଉତ୍ତର ପାଇବା ଆଗରୁ ସେଠ୍ ରତନମଲଙ୍କର ଖାସ୍ ବେହେରା ହାତରେ ଗୋଟିଏ ଟ୍ରେ' ଧରି ସେଠାରେ ଉପସ୍ଥିତ ହୋଇଥିଲା । ଟ୍ରେ'ଟି ଟେବୁଲ୍ ଉପରେ ରଖୁ ରଖୁ କହିଲା : ଗଙ୍ଗା ଦିଦିମଣି, ତମ୍କୁ ମା' ଖୋଜୁଛନ୍ତି । ଯାଇ ଶୁଣିଆସ ।

ଗଙ୍ଗା କେତକୀ ଆଡ଼େ କିପରି ଅସହାୟ ଚାହାଣୀରେ ମୁହୂର୍ତ୍ତେ ଚାହିଁ ଉଠି ଚାଲିଗଲା ।

ସୁଧାକର ଖାଇବା ପଦାର୍ଥଯାକ ଟ୍ରେ'ରୁ ବାହାର କରୁ କରୁ କହିଲା : ଏଇ ଗଙ୍ଗା ଦିଦିମଣି ସଙ୍ଗରେ ବେଶୀ ମିଳାମିଶା କରିବ ନାହିଁ ।

: କାହିଁକି ସୁଧାକର ? କେତକୀ ପଚାରିଲା ।

: ନା, ମାଲିକ ପସନ୍ଦ କରନ୍ତି ନାହିଁ । ତା'ଛଡ଼ା ଗଙ୍ଗା ଦିଦିମଣିର ଟିକେ ମୁଣ୍ଡଦୋଷ ଅଛି । ବୟସ ତୁଳନାରେ ବୁଦ୍ଧିଟା ଅନେକ କମ୍ । କିନ୍ତୁ ବେଳେ ବେଳେ ସଇତାନୀ ବୁଦ୍ଧି ତା' ମୁଣ୍ଡରେ ଏପରି ଖେଳେ ଯେ, କ'ଣ ନାହିଁ କ'ଣ କରିବସେ ।

: କିନ୍ତୁ ସୁଧାକର ! ଗଙ୍ଗାକୁ ଦେଖିଲେ ମନେ ହୁଏ ତା'ର ଅସହାୟ ଆତ୍ମା ଯେପରି କାହାର ସହାୟତା ଖୋଜି ବୁଲୁଛି ।

: ତମେ ଖାଇଲ ଦିଦିମଣି । ଛୋଟ ଦିଦିମଣି ଏଇକ୍ଷଣି ଆସିଯିବେ । ମୁଁ ତମର ଏତେ କଥାର ଜବାବ୍ ଦେଇ ପାରିବି ନାହିଁ । ଯାହା ସବୁ କହିବି ମୋ କଥା ଯଦି ଶୁଣି ଚାଲିବ, ତା'ହେଲେ ଏଘରେ ସୁଖରେ ରହି ପାରିବ ।

କେତକୀ ଆଉ କିଛି ପଚାରିଲା ନାହିଁ । ଖାଦ୍ୟ ସାମଗ୍ରୀ ପାଖକୁ ଟାଣି ନେଇ ଧୀରେ ଧୀରେ ଖାଇବାକୁ ଲାଗିଲା ।

ତା'ହେଲେ ଗଙ୍ଗା ସେଠ୍ ରତନମଲ କାନୋଡ଼ିଆଙ୍କ ଭାଇର ଝିଅ । ଗୋଟିଏ ଅତୃପ୍ତ ଆତ୍ମା । ସେ କହିଲା, ତା'ବାପା ମରି ନାହାନ୍ତି । ତାଙ୍କୁ ମାରିଦିଆ ହୋଇଛି । କିଏ ମାରିଛି ? କାହିଁକି ମାରିଛି ? ଧେତ୍ ! ଯେତେ ସବୁ ବାଜେ ଭାବନା ।

କେତକୀ ସଜାଡ଼ି ହୋଇ ବସି ଖାଇବାରେ ମନ ଦେଲା । ସୁଧାକର ଘରର ଆସବାସ ପତ୍ର ସଜାଡୁଥିଲା । ଧୂଳି ଝାଡ଼ି ଦେଉଥିଲା ।

: ଆଚ୍ଛା ସୁଧାକର ! ତମେ ତ ଏ ଘରେ ପିଲାଟି ଦିନରୁ ଅଛ । ଗଙ୍ଗା ବାପାଙ୍କର ମୃତ୍ୟୁ ସମ୍ବନ୍ଧରେ ତମେ ତ ଜାଣିଥିବ ? କେତକୀ ଖାଉ ଖାଉ ପଚାରିଲା ।

ସୁଧାକର କେତକୀ ମୁହଁକୁ କିପରି ଜଳିଲା ଜଳିଲା ଆଖିରେ ଚାହିଁ କହିଲା : ଦିଦିମଣି, ମୁଁ ଦେଖୁଛି ତମର ସୁନା ପଲଙ୍କରେ ଶୋଇବା ଯୋଗ ନାହିଁ । ଏ ଘରେ ଯେତେଦିନ ରହିବ, କାହାରି ସମ୍ବନ୍ଧରେ କିଛି ପ୍ରଶ୍ନ କରିବ ନାହିଁ । ଏ ଘରର କାନ୍ଥ, ବାଡ଼, ଦରଜା ଝରକା ସମସ୍ତଙ୍କର କାନ ଅଛି । ଏବଂ ଏମାନେ ଯାହା ଶୁଣନ୍ତି ତା'ର ବିପରୀତ ଅର୍ଥ କରନ୍ତି । ତେଣୁ ଦିଦିମଣି ସାବଧାନ । ମାଲିକ ଜାଣିଲେ ଅସନ୍ତୁଷ୍ଟ ହେବେ ।

ତମେ ଆସିଛ ଯେଉଁଥିପାଇଁ, ତମ କାମ କର, ଚୁପ୍ ରୁହ । ବୁଝିଲ ଦିଦିମଣି ।

ସତରେ କେତକୀ ଚୁପ୍ ହୋଇ ଯାଇଥିଲା । ସୁଧାକର ମୁହଁରୁ ସତର୍କ ବାଣୀ ଶୁଣି ସେ ସ୍ଥିର ହୋଇ ଯାଇଥିଲା । କିନ୍ତୁ ମନ ଭିତରେ ତା'ର ଢେଉଁ ଉଠିଥିଲା ଅସଂଖ୍ୟ ପ୍ରଶ୍ନ । ଗଙ୍ଗାର ସେଇ ପଦଟିଏ କଥା କେତକୀ ମନରେ ଯେପରି ଅସଂଖ୍ୟ ସଂଘାତ ସୃଷ୍ଟି କରିଥିଲା ।

ଗଙ୍ଗାର ବାପାକୁ ମାରିଦିଆ ହୋଇଛି ।

କିଏ ମାରିଛି ? କାହିଁକି ମାରିଛି ?

ବାହାରେ ଗାଡ଼ିର ହର୍ଣ୍ଣ ଶୁଭିଲା ।

ସୁଧାକର ବାସନ ଗୋଟୋଉ ଗୋଟୋଉ କହିଲା :ଛୋଟ ଦିଦିମଣି ଆସି ଗଲେଣି । ଏଥର ତମ କାମ ଆରମ୍ଭ ହୋଇଗଲା ।

କେତକୀ ଉଠି ପଡ଼ିଲା । ସତରେ ଯେପରି ସେ ଯମୁନାର ପଥ ଚାହିଁ ବସିଥିଲା । ଗାଡ଼ି ବାରଣ୍ଡାଯାଏ ଦଉଡ଼ି ଯାଇ ଦେଖିଲା, ଯମୁନା ଗାଡ଼ିରୁ ଓହ୍ଲାଉଚି ।

କେତକୀକୁ ଦେଖି ଯମୁନା ମୁହୂର୍ତ୍ତେ ସ୍ତବ୍ଧ ହୋଇ ଠିଆ ହୋଇ ପଡ଼ିଲା । ପର ମୁହୂର୍ତ୍ତରେ ମା' ମା' କହି ଛୁଟି ଆସି କେତକୀକୁ ଜାବୁଡ଼ି ଧରିଲା । କେତକୀ ସଙ୍ଗେ ସଙ୍ଗେ ଉଠେଇ ନେଲା କୋଳକୁ । ମୁହଁରେ ଚୁମ୍ବନ ଦେଲା । ଆଦର କରି କହିଲା : ଖୁବ୍ ଭୋକ କରିବଣି ମୋ ଧନକୁ । କେତେ ପଢ଼ିଲୁ ଆଜି ?

ଯମୁନା କିନ୍ତୁ କିଛି ଉତ୍ତର ଦେଉ ନଥିଲା । ସେ କେତକୀକୁ ଦୁଇ ହାତରେ ଜାବୁଡ଼ି ଧରିଥିଲା । ମନେ ହେଉଥିଲା ବହୁ ଦିନ ପରେ ସେ ଆଜି ତା'ର ହଜେଇଥିବା ଧନ ଖୋଜି ପାଇଛି ।

ସୁଧାକର ଦୂରରୁ ଠିଆ ହୋଇ ଦେଖୁଥିଲା । ମନେ ମନେ କ'ଣ ଭାବୁଥିଲା କେଜାଣି, ମୁହଁରେ ତ'ାର କାଠିନ୍ୟ ଫୁଟି ଉଠିଥିଲା ।

କେତକୀ ଯମୁନାକୁ କୋଳରେ ଧରି ଆଗେଇ ଯାଉଥିଲା । ସେ ଚାଲିଥିଲା ତା'ର ଘରଆଡ଼େ । ସୁଧାକର କିନ୍ତୁ ବାଧା ଦେଲା କହିଲା : ଛୋଟ ଦିଦିମଣି ଘର ସେଇଟା ନୁହେଁ ।

ସୁଧାକର ବାଟ କଢ଼େଇ କେତକୀକୁ ଆଉ ଗୋଟାଏ ଘର ଆଡ଼େ ନେଇଗଲା । ସେଇଟା ଟିକିଏ ଆଗରେ । ଦୁଇ ତିନିଟା ଘର ଛାଡ଼ି । କବାଟ ଖୋଲିଦେଲା । କେତକୀ ସେଇ ଘରେ ପଶି ଦେଖିଲା, ସେ ଘର ତ ନୁହେଁ ଗୋଟାଏ ମିନି ଯାଦୁଘର । କେତେ ଆଡ଼ର କେତେ କଣ୍ଢେଇ, ପଶୁ ପକ୍ଷୀ ଯେ ଆଲମାରୀ ଭିତରେ ରଖା ହୋଇଛି । କେତକୀ କେବେ ଏତେ ଖେଳ ଜିନିଷ ଆଗରୁ ଦେଖି ନଥିଲା ।

ଯମୁନା କିନ୍ତୁ କେତକୀ କୋଳରେ ମୁହଁ ଗୁଞ୍ଜି ନିଶ୍ଚିନ୍ତ ହୋଇ ଯାଇଥିଲା । ତା'ର ଆଉ କୋଳରୁ ଓହ୍ଲେଇବାର କିଛି ଲକ୍ଷଣ ଦେଖା ଯାଉ ନଥିଲା । କେତକୀ ତା'ମୁଣ୍ଡ ଆଉଁଶି ଦେଇ ମୁହଁରେ ଚୁମା ଦେଇ କୁତୁ କୁତୁ କରି କହିଲା : ଦେଖିଲୁ, ଦେଖିଲୁ ଆମେ କେଉଁଠି ଆସି ପହଞ୍ଚିଲେଣି ।

ଯମୁନା କୁଳୁ କୁଳୁ କରି ଚାହିଁ, ହୋ ହୋ ହସି ଉଠି କୋଳରୁ ଓହ୍ଲେଇ ପଡ଼ିଲା । କିନ୍ତୁ କେତକୀର ପଣତ ଛାଡ଼ିଲା ନାହିଁ । ସୁଧାକର ଫଳରସ ଓ ସନ୍ଦେଶ ଆଣି ଟେବୁଲ୍ ଉପରେ ରଖି କହିଲା : ଛୋଟ ଦିଦିମଣିକୁ ଖୁଆଇ ଦିଅ । ସକାଳୁ କ'ଣ ଟିକେ ଖାଇ ଯାଇଥିଲେ, ଭୋକ କରିବଣି ।

ସନ୍ଦେଶ ଯମୁନାର ପ୍ରିୟ ଖାଦ୍ୟ । ଦେଖିବା ମାତ୍ରକେ ସେ ଛୁଟି ଆସି ପ୍ଲେଟ୍‌ଟି ଉଠେଇ ନେଇ ଖାଇବାକୁ ବସି ଯାଉଥିଲା । କେତକୀ ଧାଇଁ ଯାଇ ତା' ହାତରୁ ପ୍ଲେଟ୍‌ଟି ଛଡ଼େଇ ନେଇ କହିଲା : ନା ନା, ମଇଳା ହାତରେ ଖାଆନ୍ତି ନାହିଁ । ତୁ ଏଇକ୍ଷିଣା ସ୍କୁଲରୁ ଆସିଲୁ ହାତ ମୁହଁ ସାବାନ୍ ଦେଇ ଧୋଇ ସାରିଲେ ତା'ପରେ ଖାଇବୁ ।

ଯମୁନା କୁଳୁ କୁଳୁ କରି କେତକୀ ଆଡ଼େ ଚାହିଁ କହିଲା : ଭାରୀ ଭୋକକଲାଣି ମା'! ମୁଁ ହାତ ଫାତ ଧୋଇ ପାରିବି ନାହିଁ ।

କେତକୀ ଯମୁନାକୁ କୋଳକୁ ଉଠେଇ ନେଇ କହିଲା : ତା'ହେଲେ ମୁଁ ଖୋଇ ଦେଉଚି ଆ । କେବେ ଆଉ ମଇଳା ହାତରେ ଖାଇବୁ ନାହିଁ ।

: ଖାଇଲେ କ'ଣ ହୁଏ ?

: ରୋଗ ହୁଏ ।

: ରୋଗ ହେଲେ କ'ଣ ହଏ ?

: ପୋକମାନେ ପେଟକୁ ଚାଲିଯାଆନ୍ତି । ବାନ୍ତି ହୁଏ । ମୁଣ୍ଡ ବିନ୍ଧେ, ଜର ହୁଏ । ଚୁପ୍‌ଚାପ୍ ବିଛଣାରେ ଶୋଇ ପଡ଼ିବାକୁ ହୁଏ । ଡାକ୍ତର ଆସେ, ଇଞ୍ଜେକ୍‌ସନ୍ ଦିଏ ।

: ନା ମା, ମୁଁ ମଇଳା ହାତରେ ଖାଇବି ନାହିଁ ଡାକ୍ତର ଆସିଲେ ମତେ ଭାରି ଡର ମାଡ଼େ ।

: ହଁ ଯମୁନା ମୋର ସୁନା ଝିଅ ।

ଯମୁନା ଖାଉ ଖାଉ କୋଳରୁ ଉଠି ପଡ଼ି ମୁହଁ ଫୁଲାଇ ଠିଆ ହେଲା । କେତକୀ ଉଠିଯାଇ କଅଁଳେଇ ମୁଣ୍ଡରେ ହାତ ବୁଲେଇ କହିଲା : ଛି, ଖାଉ ଖାଉ ଏମିତି ରୁଷନ୍ତି ନାହିଁ । ପେଟ ଖରାପ ହୁଏ । ଯମୁନା କିନ୍ତୁ ଆସିଲା ନାହିଁ । ସେହିପରି ହୁଁ ହୁଁ ହୋଇ କହିଲା: ତମେ ମୋତେ ଯମୁନା ଡାକିବ ନାହିଁ ।

: ଆଉ କ'ଣ ଡାକିବି !

: ମୋ ନାଁ ତ ମାମି । ଏ କେଇଦିନେ ଭୁଲିଗଲଣି ।

କେତକୀ ହସି ହସି ପୁଣି ଯମୁନାକୁ କୋଳକୁ ଉଠାଇ ନେଲା । ମୁହଁରେ ଚୁମା ଦେଇ କହିଲା: ହଁ ମୁଁ ଭୁଲି ଯାଇଥିଲି । ମୋ ସୁନା ମାମିଟା । ଆ ଖାଇଦେ ।

ଯମୁନା କେତକୀ କୋଳରେ ବସି ସନ୍ଦେଶ ଖାଇଲା । ଫଳରସ ପିଇଲା । ଶେଷରେ କେତକୀ କାନିରେ ମୁହଁ ପୋଛି ଚାହିଁଲା ବେଳକୁ ଦେଖିଲା, ଡାଡି କେତେବେଳେ ଆସି ଦୁଆର ମୁହଁରେ ଠିଆ ହୋଇଛନ୍ତି ।

ଯମୁନା ସେ ଆଡ଼େ ଚାହିଁ ହସିଲା ।

ସେଠ୍ ରତନମଲ କାନୋଡ଼ିଆ ହାତଠାରି ଯମୁନାକୁ ପାଖକୁ ଡାକିଲେ । ସେ କିନ୍ତୁ କେତକୀ କାନିରେ ମୁହଁ ଲୁଚେଇ ଡାଡିଙ୍କ ସହିତ ଲୁଚକାଳି ଖେଳ ଆରମ୍ଭ କରିଦେଇଥିଲା ।

ରତନମଲ କାନୋଡ଼ିଆ ମୁଗ୍ଧ ହୋଇ ଯମୁନାଆଡ଼େ ଚାହିଁଥିଲେ, ବେଳେ ବେଳେ

କେତକୀ ଆଖି ସହିତ ଆଖି ମିଶାଉଥିଲେ ।

ଯମୁନା କହିଲା : ତମେ ଚାଲିଯାଅ ଡାଡି । ତମର ଆଜି ଅଫିସ୍ ବେଳ ଡେରି ହେଉନି ?

ରତନମଲ କାନୋଡ଼ିଆ ହସିଲେ । ସେ ହର୍ଷରେ ନିଶ୍ଚୟତା ଭରି ରହିଥିଲା । ମନେହେଲା ଯମୁନା ତା'ହେଲେ ଅଭୟ ଆଶ୍ରୟ ପାଇଛି । ସେ କେତକୀକୁ ପଚାରିଲେ, : ତମର କିଛି ଅସୁବିଧା ହୋଇନାହିଁ ତ ?

କେତକୀ କହିଲା : ନା, ଏହାଠାରୁ ବେଶୀ ସୁବିଧା ମୁଁ କେବେ ଆଶା କରିନାହିଁ ।

ରତନମଲ କହିଲେ : ବେଶ୍ ବେଶ୍ ! ମୁଁ ତା'ହେଲେ ନିଶ୍ଚିନ୍ତ ହେଲି । ରତନମଲ କାନୋଡ଼ିଆ ଫେରି ଯାଉଥିଲେ ।

ଯମୁନା କେତକୀର ପଣତ ତଳୁ ମୁହଁ କାଢ଼ି ଡାକିଲା ଡାଡି ? ସେ ବୁଲି ଅନେଇଲେ

ଯମୁନା ପୁଣି ମୁହଁ ଲୁଚେଇଲା କେତକୀର ପଣତ ତଳେ ।

ରତନମଲ କାନୋଡ଼ିଆ ଦୁଇହାତ ପ୍ରସାରିତ କରି ଆଗେଇ ଆସୁଥିଲେ ଯମୁନାକୁ ଧରିବା ପାଇଁ ।

ଯମୁନା କିନ୍ତୁ ଖୁବ୍ ଯୋରରେ ଯାବୁଡ଼ି ଧରି କେତକୀ ଛାତିରେ ମୁହଁ ଗୁଞ୍ଜିଦେଲା । କେତକୀର ଲୁଗାପଟା ଅସଂଯତ ହୋଇ ଉଠିଲା । ସେ ବିରକ୍ତ ହୋଇ ଯମୁନାକୁ କୋଳରୁ ଟାଣି ବାହାର କରି କହିଲା : ଛି ମାମୀ, ଡାଡି ଡାକୁଛନ୍ତି । ତାଙ୍କ ପାଖକୁ ଯା । ଏମିତି ହେଲେ ମୁଁ ରାଗିବି ।

ଯମୁନା କେତକୀର ଜଳନ୍ତା ଆଖିଆଡ଼େ ଚାହିଁ ଚୁପ୍ ହୋଇଗଲା । ଧୀରେ ଧୀରେ ଆଗେଇ ଗଲା ଡାଡିଙ୍କ ଆଡ଼କୁ ।

ସେଠ୍ ରତନମଲ କାନୋଡ଼ିଆ ଯମୁନାକୁ କୋଳକୁ ଉଠାଇନେଇ ଗେଲ କଲେ । ମୁହଁରେ ଚୁମ୍ବନ ଦେଲେ । କହିଲେ : ମୁଁ ତ ତୋ' ମା'ଙ୍କୁ ଆଣିଦେଲି । ତୁ ମୋତେ କ'ଣ ଦେବୁ ?

ଯମୁନା ହସି ହସି ସେଠ୍ ରତନମଲଙ୍କ କପାଳରେ ଯୋର୍‌ରେ ଗୋଟାଏ ଚୁମ୍ବନ ଦେଇ କହିଲା : ମୋ ମା' କ'ଣ ତମର କେହି ନୁହେଁ ଡାଡି ?

ସେଠ୍ ରତନମଲ ଯମୁନା କଥା ଶୁଣି ଅବାକ୍ ହୋଇ କେତକୀ ଆଡ଼େ ଚାହିଁଲେ । ସେ ମୁହଁ ବୁଲାଇ ଦେଲା ।

ଆରଘରେ ଟେଲିଫୋନ୍ ବାଜିବାର ଶବ୍ଦ ଶୁଣି ରତନମଲ ଯମୁନାକୁ ଓହ୍ଲେଇ ଦେଇ କହିଲେ : ତୁ ମା' ପାଖକୁ ଯାଆ। ଗାଧୋଇ ପାଧୋଇ ପ୍ରସ୍ତୁତ ହୁଅ । ଆଜି ସଞ୍ଜକୁ ମୁଁ ତୁମକୁ ଥିଏଟର ଦେଖେଇବାକୁ ନେଇଯିବି ।

ଯମୁନା ଡେଇଁ ଡେଇଁ କେତକୀ ପାଖକୁ ଫେରିଗଲା ।

କେତକୀ ଯମୁନାକୁ କୋଳକୁ ଟେକିନେଲା ।

ପ୍ରେମ କାପୁର ଦୁଇ ହାତରେ ଡଲିକୁ କୋଳକୁ ଟେକି ନେଇ ସିଧା ଯାଇ ବିଛଣାରେ ଶୁଆଇ ଦେଲା । ଡଲି ମୁହଁରେ ବିରକ୍ତି ଫୁଟି ଉଠିଥିଲା । ସେ ପ୍ରେମ କାପୁର ମୁହଁରେ ବିଧା ଚାପୁଡ଼ା ମାରି ଯାଉଥିଲା । କିନ୍ତୁ ସେ ସବୁ ପ୍ରତି ଯେପରି ତା'ର ନିଘା ନାହିଁ । ସେ ଡଲିକୁ ନଚେଇ ନଚେଇ ନେଇ ବିଛଣା ଉପରେ ଫୋପାଡ଼ି ଦେଇ ଆନନ୍ଦରେ ଚିତ୍କାର କରି ଉଠିଲା : ହିପ୍ ହିପ୍ ହୁର୍‌ରେ । ତୁ ବିଶ୍ୱାସ କର ଡଲି । ଆଜି ମୁଁ ଆଉ ଗୋଟାଏ ମଦୁଆ, ମାତାଲ ଏବଂ ଜୁଆଡ଼ୀ ନୁହେଁ । ମୁ ଦଶ ଲକ୍ଷ ଟଙ୍କାର ମାଲିକ । ତୋତେ ଆଉ ଠକିବି ନାହିଁ ମୋତେ ବିଶ୍ୱାସ କର ଡଲି । ଆଉ କେଇଟା ଦିନ, ତା'ପରେ.......... ତା'ପରେ.............

ଡଲି ବିରକ୍ତିରେ ଶଢ଼ି ଯାଇଥିଲା । ସେ ପ୍ରେମ୍ କାପୁର ମୁହଁରୁ ଏହିପରି ଫାଙ୍କା କଥା ଶୁଣି ଆସୁଛି ଅନେକଦିନ ଧରି । ବିଶେଷକରି ଶନିବାର ହେଲେ, ପ୍ରେମ୍ କାପୁର ନିଜକୁ ବାଦ୍‌ଶା ବାଦ୍‌ଶା ମନେ କରେ । ସେ ଭାବେ ଆଜି ନିଶ୍ଚୟ ରେସ୍‌କୋର୍ସରୁ ଲକ୍ଷ ଲକ୍ଷ ଟଙ୍କା ଉପାର୍ଜନ କରିବ । ସେ ଯେଉଁ ଘୋଡ଼ାର ନମ୍ବର ଆଜି ପାଇଛି ଟ୍ରିପଲ୍‌ଟୋଟ୍‌ରେ ଲକ୍ଷ ଲକ୍ଷ ଟଙ୍କା ତା' ପକେଟକୁ ଆସିଯିବ । ଜାଣୁ ଡଲି ତା'ପରେ ତୁ ଆଉ ମୁଁ, ମୁଁ ଆଉ ତୁ, ସମସ୍ତେ ଚାହିଁଥିବେ ଆମ ଆଡ଼େ । ମୁହଁରୁ ଲାଳ ଝରୁଥିବ । ଆଉ ଆମେ ?

ଡଲି ଏହିପରିକଥା ଶୁଣି ଶୁଣି ତା' କାନ ବଧୀର ହୋଇ ଗଲାଣି କିନ୍ତୁ ପ୍ରେମ କାପୁରର ସେଇ ଖଣ୍ଡିଏ ପ୍ୟାଣ୍ଟ ଆଉ ଖଣ୍ଡିଏ ସାର୍ଟ ବଦଳୁ ନାହିଁ ।

ଆଜି କିନ୍ତୁ ପ୍ରେମ୍ କାପୁରର ଚେହେରାରେ ସେ କିପରି ଏକ ନୂତନତାର ଗନ୍ଧ ପାଉଚି । ଦେଖୁଚି ସେ ଆହୁରି ଉନ୍ମତ୍ତ, ଆହୁରି ଉଦ୍‌ଭ୍ରାନ୍ତ ।

ଡଲି ବହୁତ ସମୟ ସ୍ଥିର ନେତ୍ରରେ ତା'ଆଡ଼େ ଚାହିଁ ରହି ଶେଷରେ ମୁହଁ ଖୋଲିଲା: ଆଜି ତ ରବିବାର । ଶନିବାର ଆହୁରି ଛ'ଦିନ ବାକି ଅଛି । ତମେ ଆଜି କେମିତି ବାଦ୍‌ଶା ହେବାର ସ୍ୱପ୍ନ ଦେଖୁଚ !

ପ୍ରେମ୍ କାପୁର ଗ୍ଲାସରେ ପାନୀୟ ଢାଳୁଥିଲା । ସେଇ ଗ୍ଲାସଟି ହାତରେ ଧରି ଡଲି ପାଖକୁ ଛୁଟିଯାଇ କହିଲା : ମୋତେ ବିଶ୍ୱାସ କର ରାଣୀ । ଏଥର କିନ୍ତୁ ସିଓର ସଟ୍ । ଏତେ ଦିନ ପରେ ସ୍ୱପ୍ନ ଆମର ସାର୍ଥକ ହେବ । ଆମେ ଚାଲିଯିବା ଭୂ-ସ୍ୱର୍ଗ କାଶ୍ମୀରକୁ । ସେଇଠି ଗୋଟିଏ ଛୋଟ ଘର ନେଇ ସ୍ୱପ୍ନ ଆମର ସାର୍ଥକ କରିବା । ତତେ ଅନେକ କଷ୍ଟ ଦେଲିଣି ରାଣୀ, ଆଉ ନୁହେଁ । ଏଇ ମାସଟା ଅପେକ୍ଷା କରିବାକୁ ହେବ, ତା'ପରେ.....ତା'ପରେ.......

ଡଲି ହୋ ହୋ ହୋଇ ହସି ଉଠିଲା । କହିଲା : ମାତ୍ରାଟା ଆଜି ଟିକିଏ ବେଶୀ ହୋଇ ଯାଇଛି ବୋଧେ । ତା'ନହେଲେ ମୋତେ ନେଇ ଏପରି ସୁଖ ସ୍ୱପ୍ନ ଦେଖିବାର ବେଳ ତ ଏ ନୁହେଁ ।

ପାନୀୟ ଗ୍ଲାସଟା ଡଲି ହାତକୁ ବଢ଼ାଇ ଦେଲା ପ୍ରେମ୍ । ଆଖି ମୁଦ୍ରିତ କରି ସ୍ଥିର ହୋଇ ଚିନ୍ତା କଲା ମୁହୂର୍ତ୍ତେ । ତା'ପରେ ଧୀରେ ଧୀରେ କହିଲା : ଡଲି, ରାଣୀ ମୋର ! ମୋତେ ବିଶ୍ୱାସ କର । ତୋତେ ମୁଁ ନାନା ପ୍ରଲୋଭନ ଦେଖାଇ ଘରୁ କାଢ଼ି ଆଣିଥିଲି । ସେତେବେଳେ ମୋ ମନରେ ସ୍ୱପ୍ନ ଥିଲା ବିଶ୍ୱାସ ଥିଲା, ମୁଁ ପାରିବି ଦୁନିଆରେ ଜଣେ ବିଖ୍ୟାତ ମୁଷ୍ଟି ଯୋଦ୍ଧା ହୋଇ ପାରିବି । ଏବଂ ତୁ ହେବୁ ମୋର ସେଇ

ପ୍ରେରଣାର ଉତ୍ସ । କିନ୍ତୁ ଦୁନିଆ ମୋତେ ଚିହ୍ନିଲା ନାହିଁ । ମୁଁ ଚକ୍ରାନ୍ତର ଶିକାର ହେଲି । ମୁଷ୍ଟି ଯୋଦ୍ଧା ହିସାବରେ ମୋତେ କେହି ସ୍ୱୀକୃତି ଦେଲେ ନାହିଁ ଶେଷରେ ମୋତେ ସମାଜରେ ସବୁଠାରୁ ଏକ ଘୃଣ୍ୟ ପେଷା ଧରିବାକୁ ହେଲା । ଜୁଆ । ଅନେକ ସମୟରେ ନୀରବରେ ବସି ଭାବିଛି । ନା ଏ ଘୃଣ୍ୟ ପେଷା ମୁଁ ଛାଡ଼ିଦେବି । କିନ୍ତୁ ବାଟ କାହିଁ ? ବଞ୍ଚିବାର ସରଳ ପଥ କିଛି ଖୋଜି ପାଇଲି ନାହିଁ । ତୋତେ ବି ସରଳ ପଥରେ ବଞ୍ଚାଇ ପାରିଲି ନାହିଁ । ଜାଣୁ ରାଣୀ, ଏଥିପାଇଁ ବେଳେ ବେଳେ ମୋର ଖୁବ୍ ଅବଶୋଷ ହୁଏ । ମୁଁ ତୋ କଥା ଭାବେ । ତୋତେ ମୁଁ ଘରୁ ବାହାର କରି ଆଣି ନଥିଲେ, ତୁ ହୁଏତ ଆଜି ଘର ସଂସାର କରି, ସ୍ୱାମୀ ସନ୍ତାନ ଧରି ଆନନ୍ଦରେ ଥାଆନ୍ତୁ, କିନ୍ତୁ ରାଣୀ ! ମୋ ପାଇଁ ତୁ ସବୁ ସୁଖରୁ ବଞ୍ଚିତ ହେଇଚୁ । କିନ୍ତୁ ମନେରଖ ରାଣୀ, ମୁଁ ଆଶା ହରେଇ ନାହିଁ । ପଙ୍ଗୁ ହୋଇ ଯାଇନାହିଁ । ଦିନେ ନା ଦିନେ ବାଜିମାତ୍ ମୁଁ କରିବି । ନିଶ୍ଚୟ କରିବି । ପ୍ରେମ କାପୁର ମୁହୂର୍ତ୍ତେ ନୀରବ ହୋଇ ଡଲିକୁ ପାଖକୁ ଟାଣି ଆଣି କାନ ପାଖରେ ଧୀରେ ଧୀରେ କହିଲା : ସେଦିନ ଆଗତପ୍ରାୟ, ଆଉ ବେଶୀ ବାକି ନାହିଁ ।

ଡଲି ଶୁଖିଲା ହସ ଟିକେ ହସି କହିଲା: ଦୀର୍ଘ ତିନିବର୍ଷ ହେବ ସେଇ ଗୋଟିଏ କଥା ମୁଁ ଶୁଣି ଆସୁଛି । ତମ ପାଇଁ ସ୍ୱାମୀ ସନ୍ତାନର ମୋହ କଟାଇ ଶେଷରେ ମୁଁ ହେଲି ହୋଟେଲର ଏକ ଶସ୍ତା ନର୍ତ୍ତକୀ । ମୋର ରୂପ, ମୋର ଯୌବନ ଦେଖେଇ ପେଟ ପୋଷିଲି । ମୋର ମାଂସ ପଳ ପଳ କରି ଖାଇବା ପାଇଁ ଶକୁନି ଦଳ ଟାକି ରହିଛନ୍ତି । ତଥାପି ମୋର ଅବସୋସ ନାହିଁ । କିନ୍ତୁ ମୋର ଅବସୋସ ତୁମକୁ ମୁଁ ବାଟକୁ ଆଣି ପାରିଲି ନାହିଁ । ମୁଁ ତ ତୁମକୁ କହଛି ତମେ ଚାଲି ଆସ, ମୁଁ ଯାହା ରୋଜଗାର କରୁଛି, ସେତିକିରେ ଆମ ଦୁହିଁଙ୍କର ସୁଖେ ଦୁଃଖେ ଚଳିଯିବ । କିନ୍ତୁ ତମେ ମୋ କଥା ଶୁଣିଲ ନାହିଁ । କେଉଁଠୁ ଲକ୍ଷ ଲକ୍ଷ ଟଙ୍କା ରୁଣ୍ଡେଇ ମୋତେ ରାଣୀ କରିବାର ସ୍ୱପ୍ନ ଦେଖିଲ । ମୋତେ ତ ରାଣୀ କରିପାରିଲ ନାହିଁ, ଚାକରାଣୀ କରି ଛାଡ଼ିଲ ।

: ଶୁଣ ରାଣୀ, ମୋ କଥା ଶୁଣ । ଆଜି ମୁଁ ଯାହା କହୁଛି ସତ କଥା କହୁଛି । ମୁଁ ଗୋଟାଏ ଚାନ୍‌ସ ପାଇଛି । ତିନି ଚାରି ଦିନ ତଳେ ରୀନା ମୋ ପାଖକୁ ଆସିଥିଲା । ସେତେବେଳେ ଜବରମିଆଁ ମୋତେ ସର୍ବସ୍ୱାନ୍ତ କରି ସାରିଛି । ପରିହାସ କରି କହୁଛି, ସବୁତ ହରେଇଲୁ ପ୍ରେମ୍, ହେଇ ନେ, ଦଶଟଙ୍କା ଦେଉଛି ଖାଇବୁ ଯା । ଠିକ୍ ସେତିକିବେଳେ ରୀନା ଆସି ପହଞ୍ଚିଲା । ତା' ହାତରୁ ଭ୍ୟାନିଟି ବ୍ୟାଗଟା ଝିଙ୍କି ନେଇ ଦେଖିଲି ପାଞ୍ଚ ହଜାର ଟଙ୍କାର ଗୋଟାଏ ନୋଟ୍ ବାଣ୍ଡିଲ୍ । ତା'ପରେ ମୋ ଭାଗ୍ୟ ବଦଳି ଗଲା । ଜବର ମିଆଁ ଠାରୁ ମୁଁ ମୋର ଅପହୃତ ସମସ୍ତ ସମ୍ପତ୍ତି ଉଦ୍ଧାର କଲି । ଆଉ କ'ଣ ପାଇଲି ଜାଣୁ ରାଣୀ ? ରୀନାଠାରୁ ଅଢ଼େଇ ଲକ୍ଷ ଟଙ୍କାର ପ୍ରତିଶ୍ରୁତି । ସେ ମୋତେ ଏଇ ଅଳ୍ପଦିନ ଭିତରେ ଟଙ୍କା ଦେବ ।

: ରୀନା ତୁମକୁ ଅଢ଼େଇ ଲକ୍ଷ ଟଙ୍କା ଦେବ, କାହିଁକି ଦେବ ?

ପ୍ରେମ କାପୁର ହସି ହସି କହିଲା : ଦେଖ ରାଣୀ । ଅଢ଼େଇ ଲକ୍ଷ ନୁହେଁ ଦଶଲକ୍ଷ ମୁଁ ତା'ଠାରୁ ଆଦାୟ କରି ଛାଡ଼ିବି । ଜାଣୁ ରାଣୀ ମୁଁ ଯେତେବେଳେ ରୀନା ଭ୍ୟାନିଟି ବ୍ୟାଗରୁ ପାଞ୍ଚହଜାର ଟଙ୍କାର ନୋଟ୍ ଦେଖିଲି, ମୋର ମନେ ହେଲା ସେ କେଉଁଠି ଗୋଟାଏ ଏଗ୍ରିମେଣ୍ଟ ସହି କରି ଆସିଛି । ମୋଟା ଟଙ୍କାର ଶୀକାର ନିଶ୍ଚୟ ଏବଂ

ଶେଷରେ  ଜାଣିଲି ମୋ ଅନୁମାନ ଠିକ୍ । ଦଶଲକ୍ଷ ଟଙ୍କାର କାମ, ରୀନାର ଭାଗ ଅଢ଼େଇ ଲକ୍ଷ । ସେ ତା' ଭାଗଟା ମୋତେ ସବୁ ଦେଇଦେବ କହିଲା । କିନ୍ତୁ ମୁଁ ସେତିକିରେ ସନ୍ତୁଷ୍ଟ ନୁହଁ । ପୁରା ଦଶଲକ୍ଷ ମୋର ଦରକାର ।

: କିନ୍ତୁ ରୀନା ଅଢ଼େଇଲକ୍ଷ ଟଙ୍କା ବା କାହିଁକି ତମ୍ଭକୁ ଦେବ ? ତା'ର ସ୍ୱାର୍ଥ ? ଡଲି ଆଖିରେ ନିଆଁ ଜଳୁଥିଲା ।

: ନାରୀର ସ୍ୱାର୍ଥ କ'ଣ ତୁ ଜାଣିନାହୁଁ । ସେହି ଆଦିମ କାମନାରେ ତୃପ୍ତି । ରୀନା ଚାହେଁ ମୋର ସାନିଧ୍ୟ । ମୋର ବାହୁ ବନ୍ଧନ । ମୋର ସଙ୍ଗଲାଭ । ଯାହା ସବୁ ନାରୀମାନଙ୍କର କାମ୍ୟ । ପ୍ରେମ ସହଜ ସ୍ୱରରେ କହିଲା ।

ଡଲି କୌଣସି ପ୍ରତିବାଦ କଲାନାହିଁ । ନୀରବରେ ପ୍ରେମ କାପୁରର ମୁହଁକୁ ଅନାଇ ରହିଲା ।

: ରୀନା କିନ୍ତୁ ଠକିଯିବ । ସେ ଭୁଲ୍ ଜାଗାରେ ଆସି ପହଞ୍ଚିଛି । ସେ ଚିହ୍ନିନାହିଁ ପ୍ରେମ୍ କାପୁରକୁ ।

ଡଲିର ବୋଧହୁଏ ଏହାପରେ ଆଉ କିଛି ଶୁଣିବାକୁ ଇଚ୍ଛା ନଥିଲା । ସେ ପାନୀୟତକ ନିଃଶେଷ କରି ଉଠି ଯାଇଥିଲା ଆଉଥରେ ଗ୍ଲାସ ଭର୍ତ୍ତି କରିବା ପାଇଁ ।

ପ୍ରେମ୍ କାପୁର ନିଜେ ଯାଇ ପାନୀୟ ଢାଳି ଡଲିର ଗ୍ଲାସ ଭରିଦେଲା । କହିଲା : ଆଉ ବେଶୀ ଡେରି ନାହିଁ ରାଣୀ । ଶୁଭଦିନ ଆଗତ ପ୍ରାୟ । ଡଲି ମନେ ମନେ ହସୁଥିଲା । ଆଜି ପ୍ରେମ ବୋଧହୁଏ ମାତ୍ରା ଛାଡ଼ି ଯାଇଛି ।

ସେଇଘରେ ଜେକବ୍, ୟୁସୁଫ ଓ ବ୍ରିଜ୍‌ଲାଲ ବସିଥିଲେ । ୟୁସୁଫ୍ କହୁଥିଲା ରୀନା ଗୋୟେଲ ଠିକ୍ ମୋ ଥୋପ ଗିଳିଛି । ସେ ଯେତେବେଳେ ଆଉ ଟଙ୍କା ନେବାକୁ ଆସିଲା ନାହିଁ, ମୋର ମନେ ହେଉଛି ସେ ଆମ ସହିତ ପାର୍ଟନର ସିପ୍‌ରେ କାମ କରିବାକୁ ଚାହେଁ ।

: ବୋଧହୁଏ । ବ୍ରିଜ୍‌ଲାଲ କହିଲା ।

: ଆଉ ଟିକକ ପରେ ସବୁ କଥା ଜଣା ଯିବ ଯେ ! ରୀନାର ଆସିବା ବେଳ ହୋଇ ଗଲାଣି । ଆଉ ପାଞ୍ଚ ଦଶ ମିନିଟ୍ ପରେ...

ଜେକବ୍‌ର କଥା ଶେଷ ହେଲା ନାହିଁ । ଦରଜା ଠେଲି ଘର ଭିତରେ ପ୍ରବେଶ କଲା ରୀନା ଗୋଏଲ୍ ।

: ଆସ ଆସ ରୀନା । ଆମେ ତମରି ପାଇଁ ଅପେକ୍ଷା କରି ବସି ରହିଛୁ । ଜେକବ୍ ଉଠିପଡ଼ି ସ୍ୱାଗତ ଜଣେଇବା ଭଙ୍ଗିରେ କହିଲା ।

ରୀନା ମୁହଁରୁ ନିର୍ମଳ ହସ ଝରି ପଡୁଥିଲା । ସେ କହିଲା : ରୀନା ଗୋଏଲ୍ ନୁହେଁ । କେତକୀ କୁଶାରୀ ।

ସମସ୍ତେ ଏକା ସଙ୍ଗରେ ହସି ଉଠିଲେ : ହଁ କେତକୀ କୁଶାରୀ । ଆଉ  କେତକୀ,

ସମ୍ବାଦ କ'ଣ ? ଜେକବ ପଚାରିଲା ।

: ସମ୍ବାଦ ସବୁ ଶୁଭ । ଏତେ ସହଜରେ ଏତେଦୂର ଆଗେଇ ପାରିବି, ମୁଁ ମୋଟେ ବିଶ୍ୱାସ କରି ନଥିଲି । କେତକୀ କହିଲା ।

: ସେଠ୍ ରତନମଲ ତୁମକୁ ବିଶ୍ୱାସ କରି ପାରିଛନ୍ତି ତ ? ବ୍ରିଜ୍‌ଲାଲ ପଚାରିଲା !

: ମୋର ମନେ ହୁଏ । କାରଣ ତାଙ୍କ ଝିଅ ଯମୁନା ମୋତେ ଦଣ୍ଡେ ଛାଡୁନାହିଁ । ତା'ର କିପରି ଧାରଣା ହୋଇ ଯାଇଛି ମୁଁ ତା'ର ଅସଲ ମାଆ । କେତକୀ ସହଜ ସ୍ୱରରେ କହିଲା ।

: ଆଉ ସେଠ୍ ରତନମଲଙ୍କର ? ୟୁସୁଫ୍ ହସି ହସି ପଚାରିଲା ।

: ବିଚରା ସେଠ୍ ରତନମଲ ସତରେ ଏକ ଅସହାୟ ଆତ୍ମା । ବାହାରେ ସେ ପ୍ରବଳ ପ୍ରତାପୀ ହେଲେ ମଧ୍ୟ ନିଜ ଭିତରେ ତାଙ୍କ ଆତ୍ମା ବିଳାପ କରୁଛି । ସେ କହିଲେ, ମୋର ସାଦୃଶ୍ୟ କୁଆଡ଼େ ଅନେକଟା ତାଙ୍କ ମୃତା ସ୍ତ୍ରୀଙ୍କ ସହିତ ମିଶି ଯାଉଛି । ତେଣୁ ଝିଅ ମୋତେ ଜାବୁଡ଼ି ଧରିଛି । କେତକୀ କହିଲା ।

: କିନ୍ତୁ........ବ୍ରିଜ୍‌ଲାଲ କ'ଣ କହିବାକୁ ଯାଇ ନୀରବ ହୋଇଗଲା ।

ଜେକବ୍ ପଚାରିଲା : ପୁଣି କିନ୍ତୁ କ'ଣ ?

ନା, ମୁଁ ଭାବୁଥିଲି କେତକୀ ଯେପରି ସେଠ୍ ରତନମଲଙ୍କ ଖାପଟରେ ପଡ଼ି ନଯାଏ ।

ବ୍ରିଜ୍‌ଲାଲ କଥା ଶୁଣି ସମସ୍ତେ ଏକାଥରକେ ହୋ ହୋ ହୋଇ ହସି ଉଠିଲେ । ଜେକବ କହିଲା : ହେଉ ଏଥର କାମର କଥା ଆରମ୍ଭ କରିବା । କୁହ, ତମେ ସେଠି କେତେଦୂର କ'ଣ ଆଗେଇ ପାରିଛ । ରତନମଲଙ୍କର ବିଶ୍ୱାସ ଭାଜନ କେତେଦୂର ହୋଇ ପାରିଛ ?

: ମୋର ତ ମନେ ହୁଏ ଧୀରେ ଧୀରେ ମୁଁ ବେଶ୍ ଆଗେଇ ଚାଲିଛି । ମୋର ସେଠି ରହିବାର ମାତ୍ର ଚାରିଦିନ ହେଲା । ଏହି ଚାରିଦିନ ଭିତରେ ସେଠ୍ ରତନମଲ ଥରେ ଆମକୁ ଥିଏଟର ଦେଖାଇଛନ୍ତି । ଥରେ ତାଙ୍କ ସଙ୍ଗରେ ପାର୍ଟିକୁ ନେଇଛନ୍ତି । ପ୍ରତିଦିନ ଥରେ ଦୁଇଥର ଆସି ଖବର ବୁଝିଛନ୍ତି । କେତକୀ କହିଲା ।

: କାହା ଖବର, ତମର ନା ଯମୁନାର ? ୟୁସୁଫ ପଚାରିଲା ।

: ଆମ ଦୁଇଜଣଙ୍କର ।

: ତମେ କ'ଣ ଏକା କେବେ ଯମୁନାକୁ ନେଇ ବୁଲି ବାହାରିଛ ? ବ୍ରିଜ୍‌ଲାଲ ପଚାରିଲା ।

: ନା ଏକା କେବେ ବାହାରି ନାହିଁ । ବାହାରିବାର ସୁଯୋଗ ପାଇନାହିଁ । ଏକା ବାହାରିବାର ସୁଯୋଗ ହେବ ବୋଲି ମନେ ହେଉନାହିଁ । କାରଣ ଯମୁନା ପାଇଁ ତାଙ୍କର ଗୋଟାଏ ଅଲଗା ଗାଡ଼ି ଏବଂ ଡ୍ରାଇଭର ଅଛି । ତେଣୁ............କେତକୀ କଥା ଅସମାପ୍ତ ରଖି ସମସ୍ତଙ୍କ ମୁହଁକୁ ଚାହିଁଲା ।

ବ୍ରିଜ୍‌ଲାଲ କହିଲା : ତମେ ତ ଡ୍ରାଇଭିଂ ଜାଣ ।

: ଜାଣେ ଯେ, କିନ୍ତୁ ଲାଭ କ'ଣ ?

: ଲାଭ ଅଛି ଏବଂ ତମେ ଠିକ୍ ସମୟରେ ଲାଭ ପାଇବ ।

: କିପରି ? କେତକୀ ପଚାରିଲା ।

: ଡ୍ରାଇଭର ଅସୁସ୍ଥ ହୋଇପାରେ । ଘରକୁ ଯାଇପାରେ, ଅଥବା ଅନ୍ୟକିଛି ଦୁର୍ଘଟଣା ଘଟିପାରେ । ସେତେବେଳ କେତକୀର ତ ଆଉ ସ୍କୁଲ୍ ଯିବା ବନ୍ଦ ହେବନାହିଁ ।

: ତା'ସତ ଯେ କିନ୍ତୁ ତାଙ୍କର କ'ଣ ଡ୍ରାଇଭର ଅଭାବ ଅଛି ? ହୁଏତ ସେତେବେଳେ ଆଉ ଗୋଟାଏ ଡ୍ରାଇଭର ଆସିଯିବ । କିମ୍ବା ଅନ୍ୟ ଗାଡ଼ିରେ ଯମୁନା ସ୍କୁଲକୁ ଯିବ ।

ଜେକବ୍ କହିଲା : ସେ ସବୁ କଥା ଏତେ ଆଗରୁ ଚିନ୍ତା କରିବାର କିଛି ନାହିଁ । କେତକୀ ଯେତେବେଳେ ରତନମଲଙ୍କର ବିଶ୍ୱାସଭାଜନ ହୋଇ ଉଠିବ, ସେତେବେଳେ ଯମୁନାକୁ ସେ ଏକା ନେଇ ବାହାରକୁ ବାହାରିବାର ବହୁ ସୁଯୋଗ ପାଇବ । ଡ୍ରାଇଭର ସଙ୍ଗରେ ଥିଲେ ବି କିଛି ଅସୁବିଧା ହେବନାହିଁ । କିନ୍ତୁ କଥା ହେଉଛି, ଆମର ପରବର୍ତ୍ତୀ କାର୍ଯ୍ୟପନ୍ଥା କ'ଣ ? କେତକୀ ରତନମଲଙ୍କ ଅନ୍ଦର ମହଲରେ କିପରି ସ୍ଥାନ ପାଇଛି । ତାଙ୍କ ପରିବାରର ଲୋକେ କିପରି ଗ୍ରହଣ କରିଛନ୍ତି । କେତକୀର ସେଠାରେ ପ୍ରବେଶ କରିବା ଦ୍ୱାରା କାହାରି କୌଣସି ସ୍ୱାର୍ଥ ହାନି ହୋଇଛି କି ନାହିଁ । ଏଇ ସବୁ କଥା ଟିକି ନିଖି ଆଲୋଚନା କରିବାକୁ ହେବ । ବିଚାର କରିବାକୁ ହେବ। ତା'ହେଲେ ଆମେ ଭବିଷ୍ୟତରେ ବିପଦ ଏଡ଼େଇ ପାରିବା ।

ସମସ୍ତେ କେତକୀ ମୁହଁକୁ ଚାହିଁଲେ ।

କେତକୀ କହିଲା : ସେଠ୍ ରତନମଲଙ୍କର ଅନ୍ଦର ମହଲ ବୋଇଲେ ସେପରି କିଛି ବିଶେଷତ୍ୱ ନାହିଁ । ଯେଉଁମାନେ ଅଛନ୍ତି ସେମାନେ ମୋ ସମ୍ବନ୍ଧରେ କିଛି ଭାବୁଛନ୍ତି କି ନାହିଁ ଏ ପର୍ଯ୍ୟନ୍ତ ମୁଁ ଜାଣି ପାରିନାହିଁ । ତେବେ ମୋର ମନେ ହେଉଛି, ସେଠାରେ ଦୁଇଟି ସତର୍କ ଆଖି ଯେପରି ମୋ ଉପରେ ଲାଖି ରହିଛି । ହୁଏତ ମୋର ଗତିବିଧି, ଆଚାର ଆଚରଣ ସବୁ ସେ ଲକ୍ଷ୍ୟ କରୁଛି ।

: କିଏସେ ସେ ? କାହାର ସେ ଆଖି ? ଜେକବ୍ ପଚାରିଲା ।

: କୌତୂହଳୀ ହୋଇପାରେ, ତାହାଣିଟା ଅସହାୟ ହୋଇପାରେ, ସେଠାକାର ଲୋକେ ତାକୁ ମୁଣ୍ଡଦୋଷ ଥିବାର କହୁଛନ୍ତି । କିନ୍ତୁ...........

: କିଏ ସେ ? ପୁଣି ଜେକବ୍ ପ୍ରଶ୍ନ କଲା ।

: ଗଙ୍ଗା । ସେଠ୍ ରତନମଲଙ୍କର ସାନ ଭାଇର ଝିଅ । ମୁଁ ଗଲାଦିନ ଠାରୁ 'କେତକୀ ଅପା' ଡାକିଡାକି ମୋ ପଛେ ପଛେ ଘୂରୁଛି । ଅବଶ୍ୟ ସେ ଖୁବ୍ ଅସହାୟ । ସେ କୁହେ ଯେ ତା' ବାପାକୁ ମାରିଦିଆ ହୋଇଛି । ମା' ଅସୁସ୍ଥ ।

: ଆଉ ସେ ରତନମଲଙ୍କର ଆଶ୍ରିତା ? ବ୍ରିଜ୍‌ଲାଲ ପଚାରିଲା ।

: ନାଁ ଠିକ୍ ଆଶ୍ରିତା ନୁହେଁ । ସେ ରତନମଲଙ୍କ ସାନଭାଇର ଝିଅ । ହୁଏତ ସମସ୍ତ ସମ୍ପତ୍ତିରେ ତା'ର ଭାଗ ଅଛି । ଯାହାହେଉ ସବୁକଥା ଜାଣିବାର ସୁଯୋଗ ମୁଁ ପାଇନାହିଁ । କିନ୍ତୁ ତା'ର ଚାଲିଚଳନ ଆଚାର ବ୍ୟବହାର ମୋତେ କିପରି ଅବାସ୍ତବ ମନେ ହେଉଛି । ଯେପରି ସେ ସବୁବେଳେ ଅନ୍ୟମନସ୍କ । କ'ଣ କହୁଛି ନିଜେ ଜାଣିନାହିଁ । ଅଥବା ଯାହା କହୁଛି ତା'ର ଗୁଣାଗୁଣ ସମ୍ବନ୍ଧରେ ବା ଫଳାଫଳ ବିଷୟରେ କିଛି ଚିନ୍ତା କରି ପାରୁନାହିଁ । 'ସୁଧାକର କୁହେ, ତା'ର ମୁଣ୍ଡଦୋଷ ଅଛି । ତାକୁ ଦେଖିଲେ ବି ସେହିପରି ମନେ

ହେଉଛି । କିନ୍ତୁ ତା'ର ଆଖି ଦୁଇଟା ଯେପରି 'ଏକ୍ସ-ରେ' ଆଖି। କେତକୀ ନୀରବ ହୋଇଗଲା ।

: ତମକୁ କ'ଣ ସେ ସନ୍ଦେହ କରୁଛି ? ଜେକବ୍ ପଚାରିଲା ।

: ନା, ସନ୍ଦେହ ସେ ଠିକ୍ କରୁନାହିଁ । କିନ୍ତୁ ବେଳେ ବେଳେ ଏପରି ଗୋଟାଏ ଗୋଟାଏ କଥା କହୁଛି, ଯାହା ଅର୍ଥପୂର୍ଣ୍ଣ । ଯେପରି କାଲି ମୋତେ ସେ କହିଲା, ଜାଣ କେତକୀ ଅପା, ମୋର ବେଳେ ବେଳେ ତମପରି ମୁକ୍ତ ବିହଙ୍ଗୀ ହୋଇ ଉଡ଼ି ବୁଲିବାକୁ ଇଚ୍ଛା ହୁଏ । କିନ୍ତୁ ଯେତେବେଳେ ମୁଁ ପକ୍ଷ ବିସ୍ତାର କରିବାକୁ ଚାହେଁ, ଅନୁଭବ କରେ ମୋ ଡେଣା ଦୁଇଟା କିଏ କାଟି ଦେଉଛି ।

: ତା'ର ମାନେ ତମେ କ'ଣ ବୁଝିଲ ? ଆଉ ସେ କଥା କ'ଣ ଏପରି ଅର୍ଥପୂର୍ଣ୍ଣ ? ବ୍ରିଜ୍‌ଲାଲ ପଚାରିଲା ।

: ନୁହେଁ ନା ? ମୁଁ ଯେ ମୁକ୍ତ ଆକାଶର ଏକ ବିହଙ୍ଗୀ, ସେତକ ସେ ତ ବୁଝି ପାରିଛି । ମୋର ମନେ ହେଉଛି ଧୀରେ ଧୀରେ ହୁଏତ ମୋର ସ୍ୱରୂପ ସେ ଆବିଷ୍କାର କରି ବସିବ ।

ବ୍ରିଜ୍‌ଲାଲ ହୋ ହୋ ହୋଇ ହସି ଉଠିଲା । କହିଲା : ଏଗୁଡ଼ା ସବୁ ତମ ମନର ଭ୍ରମ କେତକୀ । ବରଂ ତମେ ଅର୍ଥର ଅନର୍ଥ କରୁଛ । ସେ ଯାହା କହୁଛି, ତମେ ତା'ର ବିପରୀତ ବୁଝୁଛ । ଗଙ୍ଗା ତା' ମନର ବେଦନା ତମ ପାଖରେ ପ୍ରକାଶ କରୁଛି । ବାସ୍ ସେତିକି । ତମେ ଆଉ ଅଧିକ ନ ଭାବିବା ହିଁ ଭଲ ।

କେତକୀ ନୀରବରେ କିଛି ସମୟ ବସିରହି କହିଲା : ହୁଏତ ତାହାହିଁ, ସତ୍ୟ, କିନ୍ତୁତା' ଚାହାଣି ସହିତ କଥା ବଡ଼ ଅସାମଞ୍ଜସ୍ୟ ମନେ ହେଉଛି । ଯାହାହେଉ ମୁଁ ଆଉ କିଛିଦିନ ପରେ ହୁଏତ ଗଙ୍ଗାର ସ୍ୱରୂପ ଆବିଷ୍କାର କରି ପାରିବି । ଏଥର କୁହନ୍ତୁ ଏହାପରେ ମୋତେ କ'ଣ କରିବାକୁ ହେବ ।

: ଏହାପରେ ପରର କଥା ବର୍ତ୍ତମାନ କିଛି ନାହିଁ । ଏକମାତ୍ର ତମର କରଣୀୟ ହେଉଚି ଯମୁନାକୁ ଆପଣାର କରିବା ଏବଂ ରତନମଲଙ୍କର ବିଶ୍ୱାସ ଭାଜନ ହେବା । ଜେକବ୍ କହିଲା ।

: ସେଥିପାଇଁ ତ ମୁଁ ଚେଷ୍ଟା କରୁଛି ଏବଂ ସେଇଟା କରିବାହିଁ ମୋର ଧର୍ମ । ଆଶା କରୁଛି, ଖୁବ୍ ଶୀଘ୍ର ସାଫଲ୍ୟ ମୋର ହାତ ମୁଠାକୁ ଆସିଯିବ । ଆଚ୍ଛା, ଆମେ ଯଦି ସେଠ୍ ରତନମଲଙ୍କଠାରୁ ଦଶଲକ୍ଷରୁ ଅଧିକ ଟଙ୍କା ଦାବି କରନ୍ତେ ହୁଅନ୍ତା ନାହିଁ ? କେତକୀ ପଚାରିଲା ।

: ନା, ଆଉ ଆଧିକ ଦାବୀ କରିବା ହେବ ନାହିଁ । ସବୁଥିର ଗୋଟାଏ ସୀମା ଅଛି । ଆମର ଏଇଟା ବ୍ଲାକମେଲିଂ କେସ୍ । ଏଇ ଦଶଲକ୍ଷହିଁ ଅନେକ ବେଶି ହୋଇ ଯାଉଛି । ତମର ସେଠ୍ ରତନମଲଙ୍କ ସମ୍ବନ୍ଧରେ ଧାରଣା କ'ଣ ? ସେ ସହଜରେ ଦଶଲକ୍ଷ ଟଙ୍କା ଦେଇ କନ୍ୟାକୁ ଉଦ୍ଧାର କରିବାକୁ ରାଜି ହେବେ ? ଜେକବ୍ ପଚାରିଲା ।

: ମୋର ତ ମନେ ହେଉଛି ଅତି ସହଜରେ ଆମେ ଦଶଲକ୍ଷ ଟଙ୍କା ଆଦାୟ କରି ପାରିବା । କାରଣ ଯମୁନାକୁ ସେ ଖୁବ୍ ଭଲ ପାଆନ୍ତି ଏବଂ ଯମୁନା ହେଉଛି ତାଙ୍କର ଏକମାତ୍ର ସନ୍ତାନ ।

: ଥାନା ପୁଲିସ୍ କିଛି କରିବେ ନାହିଁତ ।

: କରିବେ ବୋଲି ତ ମନେ ହେଉନାହିଁ । ଅବଶ୍ୟ ମୁଁ ଯଦି ସେଠାରେ ରୁହନ୍ତି କରାଇ ଦିଅନ୍ତି ନାହିଁ । ମୋତେ ତ ଯମୁନା ସଙ୍ଗରେ ବାହାରେ ରହିବାକୁ ହେବ ।

ବ୍ରିଜ୍‌ଲାଲ କହିଲା : ତମକୁ ଯେ ଯମୁନା ସଙ୍ଗରେ ରହିବାକୁ ହେବ ସେପରି କିଛି କଥା ନାହିଁ । ଦରକାର ହେଲେ ତମେ ସେଠ୍ ରତନମଲଙ୍କ ଘରେ ରହିବ । ଆମେ ଖାଲି ଯମୁନାକୁ ହରଣଚାଳ କରି ଆଣିବୁ ।

ଜେକବ୍ କଥାରେ ବାଧାଦେଇ କହିଲା : ସେ କଥା ପରେ ଦେଖାଯିବ। ଆଉ କିଛି ଦିନ ଯାଉ । ଯମୁନା କେତକୀ ବଶ୍ୟତା ସ୍ୱୀକାର କରୁ । ତା'ପରେ ସ୍ଥିର କରିବା କିପରି ଭାବରେ ଆମେ ଯମୁନାକୁ ହରଣଚାଳ କରିବା ।

କେତକୀ ଉଠିଲା । କହିଲା : ମୁଁ ତା'ହେଲେ ଆଜି ଆସୁଚି । ମୋତେ ଶୀଘ୍ର ଫେରିବାକୁ ହେବ । ଯମୁନା ତେଣେ ମୋ ପଥ ଚାହିଁ ବସିଥିବ ।

: ହଁ, ତମେ ଯିବ ଯେ ! କିନ୍ତୁ.........ଜେକବ୍ କ'ଣ କହିବାକୁ ଯାଇ ଅଟକି ଗଲା ।

ୟୁସୁଫ୍ ଉଠିପଡ଼ି କହିଲା : କିନ୍ତୁ ଆଉ କ'ଣ । ଆମେ ଧୀରେ ଧୀରେ କେତକୀର ଟଙ୍କା ଦେଇଦେବା । ପାଞ୍ଚ ହଜାର ଦିଆ ହୋଇଥିଲା। ଆଜି ଆଉ ପାଞ୍ଚ ହଜାର ଯୋଗାଡ଼ ହୋଇଛି । ବାକିଟା ଆଗାମୀ ରବିବାର ଦିନ ଦେବାକୁ ଚେଷ୍ଟା କରୁଛି । ୟୁସୁଫ ପକେଟରୁ ଗୋଟିଏ ନୋଟ୍ ବଣ୍ଡିଲ୍ ବାହାର କରି ଟେବୁଲ୍ ଉପରେ ଥୋଇଲା ।

କେତକୀ ହସିଲା । ନୋଟ୍ ବଣ୍ଡିଲ୍ ଆଡ଼େ ଚାହିଁଲା । ଚାହିଁଲା ଜେକବ୍ ମୁହଁକୁ । କହିଲା : ଥାଉ, ବରଂ ମୁଁ ଜଣେ ସେଆର ହୋଲଡର୍ ହୋଇ ରହିଲି । କାମ ଶେଷରେ ମୋ ଭାଗ ମୋତେ ଦେଇଦେବ ।

କେତକୀ କଥା ଶେଷ କରି ଚାଲିଗଲା ।

ତିନିବନ୍ଧୁଯାକ ତା'ରି ଯିବା ପଥକୁ ଚାହିଁଥିଲେ ।

ୟୁସୁଫ୍ କହିଲା : ଦେଖିଲତ ! ମୁଁ ଯୋଉ ଥୋପ ପକାଇଥିଲି, ତାକୁ ନ ଗିଳି ଉପାୟ ଅଛି । ମୁଁ ଜାଣିଥିଲି ଟୋକୀ ମୋ ପ୍ରସ୍ତାବରେ ରାଜି ହେବ ।

ବ୍ରିଜିଲାଲ କିନ୍ତୁ ଖୁସି ହୋଇ ପାରୁ ନଥିଲା । ତା' ମୁହଁରେ କିପରି ଚିନ୍ତାର ରେଖା ଫୁଟି ଉଠିଥିଲା । ସେ କହିଲା : ଲକ୍ଷଣ କିନ୍ତୁ ଭଲ ନୁହେଁ । ଟୋକୀ ଆଉ କାହା ଶିକ୍ଷାରେ ପଡ଼ି ନାହିଁତ ? ଅନ୍ୟ କେହି ଯଦି ଆମର ଏହି ଉଦ୍ୟମ କଥା ଜାଣେ, ତା'ହେଲେ ସବୁ ଭଣ୍ଡୁର ହୋଇଯିବ ।

ଜେକବ୍ କହିଲା : କାହିଁକି, ମୁଣ୍ଡରେ ଏପରି ଦୁଶ୍ଚିନ୍ତା ପଶିଲା ।

: ଠିକ୍ ଦୁଶ୍ଚିନ୍ତା ନୁହେଁ । ତେବେ ମୁଁ ତ ରୀନା ଗୋଏଲ ସମ୍ବନ୍ଧରେ କିଛି କିଛି ଜାଣେ । ହଠାତ୍ ସେ ତା' ମତ ପରିବର୍ତ୍ତନ କଲା କାହିଁକି ? ଟଙ୍କା ପ୍ରତି ତା'ର ଆଶକ୍ତି ଜନ୍ମିଲା କାହିଁକି ? ସେଇ କଥା ମୁଁ ଚିନ୍ତା କରୁଛି । ବ୍ରିଜ୍‌ଲାଲ କହିଲା ।

: ଆରେ ଟଙ୍କା । ୟା ନା ଟଙ୍କା । ମୁହଁ କରିଦିଏ ବଙ୍କା । ଟଙ୍କା ଦେଖିଲେ ସମସ୍ତେ ଆସକ୍ତ ହୋଇ ପଡ଼ନ୍ତି । ରୀନା ତ ରୀନା । ତୁ ଅପେକ୍ଷା କରନା । ଟୋକୀକୁ ମୁଁ କେଇ ଅଢ଼େଇ ଲକ୍ଷ ଟଙ୍କା ଦେଉଛି । ୟୁସୁଫ୍ କଣ୍ଠରେ ଦୃଢ଼ତା ଫୁଟି ଉଠିଥିଲା ।

ବ୍ରିଜ୍‌ଲାଲ କିନ୍ତୁ ୟୁସୁଫ୍ କଥା ଶୁଣି ନ ପାରିଥିଲା ଭଳି କହିଲା, : ରୀନା ଉପରେ କିନ୍ତୁ ଦୃଷ୍ଟି ରଖିବାକୁ ହେବ ।

ଜେକବ୍ କହିଲା  ଦେଖାଯାଉ କୋଉ ପାଣି କୋଉ ଆଡ଼କୁ ଗଡୁଛି ।

ଡଲି ଟିକିଏ ଆଗରୁ ଚାଲି ଯାଇଥିଲା । ପ୍ରେମ୍ କାପୁର ଗମ୍ଭୀର ହୋଇ ବସିଥିଲା । ପ୍ରକୃତରେ ଡଲି ଯାହା କହିଗଲା ସବୁ ସତ । ଡଲିକୁ ସେ ରାସ୍ତାକୁ ଓହ୍ଲେଇ ଆଣି ଉଲଗ୍ନ କରି ଛାଡ଼ି ଦେଇଛି । ଡଲି ତା' ପାଇଁ ଘର ଛାଡ଼ିଛି । ବାପା, ମା, ଆତ୍ମୀୟ ସ୍ୱଜନ ସମସ୍ତଙ୍କୁ ଛାଡ଼ିଛି । ଡଲି ତ ଚାହିଁ ନଥିଲା ଘରୁ ଗୋଡ଼ କାଢ଼ିବା ପାଇଁ । ପ୍ରେମ୍ କାପୁର ତାକୁ ଏକ ପ୍ରକାର ଜୋର୍ କରି ଟାଣି ଆଣିଛି ।  କିନ୍ତୁ ତା' ପାଇଁ କରିଛି କ'ଣ ?

ପ୍ରେମ୍ କାପୁର ଚିନ୍ତା କରୁଥିଲା । ଘଟଣା ଚକ୍ରରେ ଯାହା ସବୁ ଘଟି ଯାଇଛି, ତା'ପାଇଁ କାହାରି ହାତ ନାହିଁ । ସେ ତ ଚାହିଁ ନଥିଲା ଡଲି ଯାଇ ହୋଟେଲର ଶସ୍ତା ନର୍ତ୍ତକୀ ହେଉ । ସେ ତ ଚାହିଁ ନଥିଲା ଡଲି ତା' ରୂପ ବିକି ପେଟ ପୋଷୁ । ସେ ଚାହିଁଥିଲା ଡଲିକୁ ନିଜର କରିବା ପାଇଁ । ଗୋଟିଏ ଛୋଟ ସଂସାର କରି ସୁଖରେ ବଞ୍ଚିବା ପାଇଁ । କିନ୍ତୁ ମଣିଷ ଯାହା ଚାହେଁ ତାହା କ'ଣ ହୁଏ ।

ପ୍ରେମ କାପୁର ଭାବିଥିଲା ସେ ଜଣେ ଭାରତ ବିଖ୍ୟାତ ମୁଷ୍ଟି ଯୋଦ୍ଧା ହେବ । ଦିନ ପରେ ଦିନ ସେ ଆଗେଇ ଚାଲିଥିଲା । ଠିକ୍ ସେତିକିବେଳେ ଭେଟ ହୋଇଥିଲା ତା'ର ଡଲି ସାଙ୍ଗରେ । ଯଦିଓ ଡଲି ଥିଲା ଏକ ନିମ୍ନ ମଧ୍ୟବିତ୍ତ ପରିବାରର କନ୍ୟା । ତଥାପି ତା'ର ବୁନିଆଦି ଥିଲା, ତା'ର ବାପା ଥିଲେ ଜଣେ ସ୍କୁଲମାଷ୍ଟର । ସମସ୍ତଙ୍କ ବାରଣ ସତ୍ତ୍ୱେ ଡଲି ଚାଲି ଆସିଥିଲା ପ୍ରେମ କାପୁରର ହାତ ଧରି । ପ୍ରେମ କାପୁର ତା' ଆଖିରେ ସୁପୁରୁଷ ବୋଲି ମନେ ହୋଇଥିଲା । ସେମାନେ ସହର ଛାଡ଼ି ଚାଲି ଆସିଥିଲେ ଅନ୍ୟ ସହରକୁ ।

କେତେଟା ମାସ ଦୁଇଜଣଙ୍କର କଟିଥିଲା ଖୁବ୍ ଆନନ୍ଦରେ । ସେମାନେ ମର୍ତ୍ତ୍ୟରେ ସ୍ୱର୍ଗ ରଚନା କରିଥିଲେ ।

ଜୁଆ ଖେଳର ନିଶା ପିଲାଟି ଦିନରୁ ଘାରିଥିଲା ପ୍ରେମ କାପୁରକୁ । ମଝିରେ ମଝିରେ ସେ ଯାଇ ବଡ଼ ବଡ଼ ହୋଟେଲରେ ଗୋପନ କକ୍ଷରେ ବସି ଯାଉଥିଲା ଖେଳରେ ।

ସେହି ଜୁଆ ଖେଳହିଁ ଯେ ତା'ର ସର୍ବନାଶ ସାଧନ କରିବ ସେ କଥା କ'ଣ ଜାଣିଥିଲା ପ୍ରେମ କାପୁର ।

ସେ ଦିନ ଖେଳ ଖୁବ୍ ଜମି ଯାଇଥିଲା । କିନ୍ତୁ ହାରି ଚାଲିଥିଲା ପ୍ରେମ କାପୁର । ଶେଷ ସମ୍ବଳତକ ତା'ର ଯେତେବେଳେ ନିଃଶେଷ ହୋଇଗଲା ସେତେବେଳେ ସେ ନିଃସ୍ୱ ହୋଇ ଅନେକ ବେଳଯାଏ ବସି ରହିଥିଲା ସେହି ଟେବୁଲ୍ ଉପରେ । ଆଉ କିଛି ସମୟପରେ ଧୀରେ ଧୀରେ ସେ ଫେରି ଯାଇଥାନ୍ତା ଘରକୁ । କିନ୍ତୁ ଜାହାଙ୍ଗୀର ତାକୁ ପରିହାସ କରି କହିଲା : ଆଉ କାହିଁକି କାପୁର ସାହେବ । ହାତ ଘଡ଼ି ପର୍ଯ୍ୟନ୍ତ ତ ଯାଇଛି । ଆଉ କୋଉ ଆଶାରେ ବସି ରହିଛ ?

ଜାହାଙ୍ଗୀରର ପରିହାସ ସେଦିନ ପ୍ରେମ୍ କାପୁର ମନରେ ଭାବାନ୍ତର ସୃଷ୍ଟି କରଥିଲା । ସେ ଗୁମ୍ ମାରି ବସି ରହିଥିଲା ।

ଜାହାଙ୍ଗୀର ପୁଣି କହିଲା : ବୋର୍ଡରୁ ଉଠ । ଜାଗା ଛାଡ଼ ।

ତଥାପି ପ୍ରେମ କାପୁର ସ୍ଥିର ହୋଇ ବସି ରହିଥିଲ ।

ଜାହାଙ୍ଗୀର ଏଥର ତା' ଜାଗାରୁ ଉଠି ଆସି, ପ୍ରେମ କାପୁରର ହାତଧରି ଉଠାଇ ଦେବାକୁ ଚେଷ୍ଟା କରି କହିଲା,

: ଯାଅ, ବିବିଜାନ୍‌କୁ ଘେନି ଆସ । ମୁଁ ବାଜି ଧରିବାକୁ ପ୍ରସ୍ତୁତ ଅଛି ।

ସେତେବେଳେ ପ୍ରେମ କାପୁରର ମୁଣ୍ଡ ଝିମ୍‌ଝିମ୍ ହୋଇ ଉଠିଥିଲା । ରକ୍ତରେ ନିଆଁ ଲାଗି ଯାଇଥିଲା । ସେ ସ୍ଥାନ କାଳ ପାତ୍ର ସବୁ ଭୁଲି ଯାଇ ଜାହାଙ୍ଗିର ପେଟରେ ପ୍ରଚଣ୍ଡ ଏକ ଘୁଷି ମାରିଥିଲା । ସଙ୍ଗେ ସଙ୍ଗେ ଜାହାଙ୍ଗୀର ତଳେ ଲୋଟି ପଡ଼ିଥିଲା । ଚିରଦିନ ପାଇଁ ତା'ମୁହଁ ବନ୍ଦ ହୋଇ ଯାଇଥିଲା ।

ପ୍ରେମ କାପୁର ପୋଲିସ୍ ହାତରେ ଧରା ପଡ଼ିଥିଲା ।

ବିଚାରରେ ତାକୁ ତିନିବର୍ଷ ଜେଲ ହୋଇଥିଲା ।

ତିନିବର୍ଷ ପରେ ସେ ଜେଲରୁ ଫେରି ଆସି ଦେଖିଲା, ତା' ସୁନ୍ଦର ସ୍ୱପ୍ନର ପରିଧି ଭାଙ୍ଗି ଛିନ୍ ଭିନ୍ ହୋଇ ଯାଇଛି । ଡଲି କୁଆଡ଼େ ଚାଲି ଯାଇଛି । ସାଙ୍ଗସାଥୀମାନେ ତାକୁ କିପରି ଗିଳିଲା ଗିଳିଲା ଆଖିରେ ଚାହୁଁଛନ୍ତି । ସେ ଯେପରି ସମସ୍ତଙ୍କର ଘୃଣାର ପାତ୍ର ହୋଇ ଯାଇଛି । ପ୍ରେମ କାପୁର ପୁଣି ସେ ସହର ଛାଡ଼ିଲା ।

ତା' ନାଁ ସେତେବେଳକୁ କଟି ଯାଇଥିଲା ମୁଷ୍ଟି ଯୋଦ୍ଧା ତାଲିକାରୁ । କିନ୍ତୁ ଡଲି ?

ଡଲି ଗଲା କୁଆଡ଼େ ? ବିଭିନ୍ନ ସହର ବନ୍ଦର ଖୋଜି ଖୋଜି ପ୍ରେମ କାପୁର ଆସି ପହଞ୍ଚିଲା କଲିକତାରେ ।

ଡଲିକୁ ସେ ପାଇଲା ।

କିନ୍ତୁ ଡଲି..............

ହଠାତ୍ ପ୍ରେମ୍ କାପୁର ଭାବନାରେ ବାଧା ସୃଷ୍ଟି କଲା ଦରଜାରେ କାହାର କରାଘାତ। କିଏ ପୁଣି ଆସିଲା ଏତେବେଳେ ?

ପ୍ରେମ କାପୁର ଉଠିଯାଇ ଦରଜା ଖୋଲିଦେଲା ।

ମୁହଁରେ ହସର ଫୁଲ ଫୁଟେଇ ଠିଆ ହୋଇଛି ରୀନା ।

ପ୍ରେମ୍ କାପୁର ରୀନା ମୁହଁକୁ ଚାହିଁଲା ଅନେକ ବେଳଯାଏ । କେବଳ ଚାହିଁଥିଲା । ରୀନା ଧୀରେ ଧୀରେ ଘରେ ପଶିଲା। ଦରଜା ବନ୍ଦ କଲା । କିନ୍ତୁ ପ୍ରେମ୍ କାପୁର ରୀନା ମୁହଁକୁ ଚାହିଁଥିଲା ମନ୍ତ୍ରମୁଗ୍ଧ ପରି ।

ମନେ ମନେ ଭାବୁଥିଲା, ରୀନା ଆଜି ଚାହେଁ ତା'ରି ସାନ୍ନିଧ । ତା' ବାହୁପାଶରେ ପେଶିହୋଇ ଚାହେଁ ଆନନ୍ଦ ପାଇବାକୁ । ବିନିମୟରେ ସେ ତା'ର ସର୍ବସ୍ୱ ଦେବ । ପ୍ରେମ୍ ଏ ସୁଯୋଗର ସଦ୍‌ବ୍ୟବହାର ନ କରିବ କାହିଁକି ? ଦୁନିଆ ଯେତେବଳେ ତାକୁ ଭଦ୍ରଭାବରେ ବଞ୍ଚିବାର ଅଧିକାରରୁ ବଞ୍ଚିତ କରିଛି, ସେ ବି କାହାରିକୁ ସୁସ୍ଥଭାବରେ ବଞ୍ଚିବାକୁ ଦେବନାହିଁ । ନା ନା, ଆଖିର ଲୁହ ଢାଳି ସେ ଅନୁଶୋଚନା କରିବ ନାହିଁ । ସେ ସମସ୍ତଙ୍କୁ ପ୍ରବଞ୍ଚିତ

କରି ଚାହେଁ ସୁଖ, ସମୃଦ୍ଧି, ଅଭିବୃଦ୍ଧି । ତେଣୁ.........

ପ୍ରେମକପୁର ରୀନାକୁ ସ୍ପର୍ଶକଲା ।

ଦୁଇ ହାତରେ ଟୋଳି ଧରିଲା ।

ସିଧା ସେ ରୀନାକୁ ନେଇ ଶୁଆଇ ଦେଲା ବିଛଣା ଉପରେ ।

ରୀନା ତା'ର ମୁକ୍ତି ମନ୍ତ୍ର, ରୀନା ତା'ର ସମୃଦ୍ଧିର ବାହକ । ରୀନାର ହାତ ଦୁଇଟା ଛନ୍ଦି ହୋଇଗଲା ପ୍ରେମ୍ କାପୁର ଗଳାରେ ।

କେତକୀ ଯମୁନାକୁ ସ୍କୁଲରେ ଛାଡ଼ି ଫେରି ଆସିଥିଲା । ଆଜିକାଲି କେତକୀ ଯମୁନାକୁ ସ୍କୁଲରେ ଛାଡ଼ିବାକୁ ଯାଏ । ଆଣିବାକୁ ଯାଏ ନ ହେଲେ ଯମୁନା ମୁହଁ ଫୁଲାଇ କାନ୍ଦି କାନ୍ଦି ଆଖି ଲାଲ କରିଦିଏ । ଅଭିମାନ କରେ କଥା କହେ ନାହିଁ ।

ଏଇ ଦଶଦିନ ଭିତରେ କେତକୀ ଯମୁନାକୁ ନିଜର କରି ନେଇଛି । ନିଜର ମା' ପରି ସେ ତାକୁ ସ୍ନେହ ଦେଇଛି । ଯତ୍ନ ନେଇଛି । କୋଳରେ ଶୁଆଇଛି । ହାତରେ ଖୁଆଇଛି । ମୋଟକଥା ଯମୁନା ଆସକ୍ତ ହୋଇ ପଡ଼ିଛି । ସେଠ୍ ରତନମଲ ସବୁ ଦେଖୁଛନ୍ତି, ଲକ୍ଷ୍ୟ କରଛନ୍ତି । ଖୁସି ହୋଇଛନ୍ତି । କିନ୍ତୁ ଯମୁନାକୁ ସଙ୍ଗରେ ନେଇ ଏକା କୁଆଡ଼େ ବାହାରିବାର ଅନୁମତି ଦେଇ ନାହାନ୍ତି । ଥରେ ଅଧେ ଯମୁନା ଆକାର ଇଙ୍ଗିତରେ ଜଣାଇଥିଲା କିନ୍ତୁ ସେଠ୍ ରତନମଲ ବାରଣ କରି ଦେଇଥିଲେ । ସେଇଦିନୁ କେତକୀ ଆଉ ଚେଷ୍ଟା କରି ନାହିଁ ।

କେତକୀ ସ୍କୁଲରୁ ଫେରି ନିଜ ଘରେ ଆସି ଦେଖିଲା, ଗଙ୍ଗା ବସିଛି । ଯେପରି ତା'ରି ପଥ ଚାହିଁ । ମନରେ ତା'ର ସରାଗ ନାହିଁ । ମୁହଁଟି ଶୁଖି ଯାଇଛି । ଆଖିବୁଜି କ'ଣ ଚିନ୍ତା କରୁଛି । କେତକୀର ପାଦଶବ୍ଦ ଶୁଣି ଆଖି ଖୋଲି ଚାହିଁଲା । ପୁଣି ଆଖିବୁଜି ବସି ରହିଲା ।

କେତକୀ ଗଙ୍ଗା ପାଖରେ ବସିଲା । ତା'ଦେହରେ ହାତ ବୁଲାଇ କହିଲା : କ'ଣ ହୋଇଛି ଗଙ୍ଗା ? ତମେ ଏପରି ମନମରା ହୋଇ ବସିଛ କାହିଁକି ?

ଗଙ୍ଗା ମହଁରେ ଟିକିଏ ଫିକାହସ ଦିଶିଲା । କହିଲା : ନା କେତକୀ ଅପା, ମା' ଦେହଟା ଆଜି ଟିକିଏ ବେଶି ଖରାପ ହୋଇଛି । ସେଇଥିପାଇଁ ମନ ଫନ ଭଲନାହିଁ ।

କେତକୀ ଗଙ୍ଗା ମୁଣ୍ଡରେ ହାତ ବୁଲେଇ ଦେଇ କହିଲା : ବ୍ୟସ୍ତ ହୁଅନାହିଁ । ଡାକ୍ତର ଚିକିତ୍ସା କରୁଛନ୍ତି, ଧୀରେ ଧୀରେ ଭଲହୋଇ ଯିବେ ଯେ !

: ଜାଣ କେତକୀ ଅପା ! ଏତେବଡ଼ ବିରାଟ ଦୁନିଆରେ ମୋର କାହିଁକି ମନେ ହୁଏ, ମୁଁ ଯେପରି ଗୋଟାଏ ଅସହାୟ । ମୋର କେହି ନାହିଁ । କିଛି ନାହିଁ । ମୁଁ ଏକ ନିଃସ୍ୱ । ଦରିଦ୍ର ।

: ଛି, ଇମିତି ଭାବି ନିଜକୁ ଛୋଟ କରିବା ଭଲ ନୁହେଁ । ତମେ ଯେଉଁ ଘରେ ଜନ୍ମ ହୋଇଛ, ସେ ଘରେ ଜନ୍ମ ହେବାର ସୌଭାଗ୍ୟ କେଇଜଣ ପାଆନ୍ତି ? ତମେ ଏଣୁ

ତେଣୁ ଭାବି ମନକୁ ବିକାରଗ୍ରସ୍ତ କରନାହିଁ। -

: ନା କେତକୀ ଅପା । ମୁଁ କେତେବେଳେ ହେଲେ ନିଜ ସମ୍ବନ୍ଧରେ ନିଶ୍ଚିତ ହୋଇ ପାରୁନାହିଁ। ମା'ର ଏଇ ଅବସ୍ଥା। ମୋର ଆଉ ଅଛି କିଏ ? ଗଙ୍ଗା ଆଖିରେ ଲୁହ ଜକେଇ ଆସିଲା।

କେତକୀ ବୁଝି ପାରୁ ନଥିଲା ଗଙ୍ଗା କାହିଁକି ନିଜକୁ ଏପରି ଅସହାୟ ମନେ କରୁଛି। ସେଠ୍ ରତନମଲ ତା'ର ବଡ଼ବାପା ହୁଅନ୍ତି। ସେ ଜଣେ ଧନ କୁବେର। ତାଙ୍କ ପରିବାରରେ ଜଣେ ଦୁଇଜଣ ଖାଇ ପିଇ ବଞ୍ଚି ରହିବାର ସମସ୍ୟା ବୋଇଲେ କିଛି ନାହିଁ। ଗଙ୍ଗା ଝିଅଟାର ବିବାହ କରିଦେଲେ ଦାୟିତ୍ୱ ଶେଷ। ସେତିକି କ'ଣ କରିବେ ନାହିଁ ସେଠ୍ ରତନମଲ। କିନ୍ତୁ ଗଙ୍ଗା ସବୁବେଳେ ନିଜକୁ ଅସହାୟ ମନେ କରୁଛି କାହିଁକି ? ସୁଧାକରକୁ ପଚାରିଲେ ସେ କହୁଛି, ଗଙ୍ଗାର ମୁଣ୍ଡଦୋଷ ଅଛି। କେତକୀ ବୁଝିପାରୁ ନାହିଁ।

ଗଙ୍ଗା ଟିକିଏ ସୁସ୍ଥ ହୋଇ ବସି କହିଲା : କେତକୀ ଅପା ! ଗୋଟିଏ କଥା ପଚାରିବି କହିବ ?

: କ'ଣ ପଚାର।

: ସତ କହିଲ କେତକୀ ଅପା, ତମେ ଯମୁନା ପରି ମୋତେ ଭଲପାଅ ?

କେତକୀ ମନେ ମନେ ହସିଲା। ଭାବିଲା ସତରେ ଗଙ୍ଗାର ବୁଦ୍ଧିଶୁଦ୍ଧି ବୋଇଲେ କିଛି ନାହିଁ। ସୁଧାକର ଠିକ୍ କହୁଥିଲା। ଗଙ୍ଗାର ବୟସ ଯେତେ ହୋଇଛି, ତା ତୁଳନାରେ ବୁଦ୍ଧି ଢେର୍ କମ୍।

: ଆରେ ପାଗଳୀ ଭଲ ପାଇବା ମୁହଁରେ କହି ବୁଝାଇ ହୁଏ ନାହିଁ। ତମେ କ'ଣ ମୋ ଭଲ ପାଇବା ଭିତରେ କିଛି ପାତର ଅନ୍ତର ଲକ୍ଷ୍ୟ କରୁଛ ? କେତକୀ ଗଙ୍ଗା ମୁଣ୍ଡରେ ହାତ ବୁଲେଇ ଦେଇ କହିଲା।

: ନା କେତକୀ ଅପା, ତା' ନୁହେଁ ଯେ ମୁଁ ଭାବୁଛି ତମେ ଯମୁନା ପାଇଁ ଏ ଘରକୁ ଆସିଛ। ଗଙ୍ଗା କଥା ଶୁଣିବ କାହିଁକି ?

: ଫେର୍ ସେଇ କଥା। ମୁଁ ତମ କଥା କିଛି ଶୁଣୁ ନାହିଁ ? ତମ ସଙ୍ଗରେ ବସି ଗପ କରୁନାହିଁ ? ତମ ପାଇଁ କିଛି କରିବାକୁ ତ ତମେ କେବେ କହିନାହଁ, ଯେତେବେଳେ କହିବ, ଦେଖିବ ମୁଁ କରୁଛି କି ନାହିଁ। କେତକୀ ସହଜ ସ୍ୱରରେ କହିଲା।

: ମୋ କଥା ତମେ ଶୁଣିବ ? ସତ କହୁଛ କେତକୀ ଅପା ? ମୋ କଥା ଶୁଣିଲେ କିନ୍ତୁ ଆମ ଦୁଇଜଣଙ୍କର ଲାଭ ହୁଅନ୍ତା। ଗଙ୍ଗାର ମୁହଁ ଉଜ୍ଜ୍ୱଳ ହୋଇ ଉଠିଥିଲା।

: ତମ କଥା ଶୁଣିଲେ ଦୁଇଜଣଙ୍କର ଲାଭ ହୁଅନ୍ତା ମାନେ ? କେତକୀ ମୁହଁରେ ଗୋଟାଏ ପ୍ରଶ୍ନବାଚୀ ଫୁଟି ଉଠିଲା। ସେ କିପରି ସନ୍ଦେହୀ ଦୃଷ୍ଟିରେ ତା' ମୁହଁକୁ ଚାହିଁଲା।

ଗଙ୍ଗା ଅତି ସହଜ ଆଉ ନିରାଡ଼ମ୍ବର ସ୍ୱରରେ କହିଲା : ଲାଭ ତମର ଆଉ ମୋର ଦୁଇଜଣଙ୍କର ହୁଅନ୍ତା।

: କିପରି ? କେତକୀ କଣ୍ଠରେ ବିସ୍ମୟ ଫୁଟି ଉଠିଲା।

: ମୁଁ କ'ଣ କହୁଥିଲି କି ! ଗଙ୍ଗା ଟିକିଏ ଅଟକି ଯାଇ କେତକୀ ମୁହଁକୁ ଆଉଥରେ ଚାହିଁ କହିଲା : ତମେ କିଛି ମନେ କରିବ ନାହିଁ କେତକୀ ଅପା। ଟଙ୍କାର ପ୍ରୟୋଜନ

ତମର ଯେତିକି ମୋର ବି ସେତିକି । ତେଣୁ ମୁଁ କ'ଣ କହୁଥିଲି କି, ଦି'ଜଣ ଯାକ ଯଦି ଆମେ ମିଳିମିଶି କାମ କରନ୍ତେ, ତେବେ ଦି'ଜଣଯାକ ଲାଭବାନ ହୁଅନ୍ତେ ।

କେତକୀ ହଠାତ୍ ଯେପରି ତା' ଆଖି ସାମ୍ନାରେ ଗୋଟାଏ ବିଷଧର ସର୍ପ ଫଣା ଉତ୍ତୋଳନ କରି ଠିଆ ହୋଇଥିବାର ଦେଖିଲା । ଗଙ୍ଗାକୁ ଉତ୍ତର ଦେବାପାଇଁ ତା' ପାଟିରୁ କିଛି ଉତ୍ତର ବାହାରିଲା ନାହିଁ ।

ଗଙ୍ଗା କିନ୍ତୁ ସେହିପରି ସହଜ ସ୍ୱରରେ କହି ଚାଲିଲା : ତମେ ଚିନ୍ତା କରି ଦେଖ କେତକୀ ଅପା । ଅବଶ୍ୟ ପ୍ରୟୋଜନଟା ତମର ମୋଠାରୁ ବେଶି ମୋର ଯେ ସେତେନାହିଁ କହୁନାହିଁ । ତଥାପି କେତକୀ ଅପା ତମେ ଟିକିଏ ଭଲଭାବେ ଚିନ୍ତାକରି ଦେଖ । ମୁଁ ଏଇ ଘରର ଝିଅ । ଗଙ୍ଗା ଆଉ ଯମୁନା ରକ୍ତରେ କିଛି ତଫାତ୍ ନାହିଁ । ତଥାପି ଦୁହିଁଙ୍କ ଭିତରେ ଆକାଶ ପାତାଳ ଫରକ୍ । ତମେ ତ କିଛି ଜାଣନାହିଁ କେତକୀ ଅପା । ତମେ ଜାଣିଛ ତମେ ଏ ଘରକୁ ଆସିଛ କେବଳ ଯମୁନାର ମା'ହୋଇ। ଯମୁନାର ରକ୍ଷଣା ବେକ୍ଷଣ କରିବା ପାଇଁ । କିନ୍ତୁ ତମେ ସେଠ୍ ରତ୍ନମଲଙ୍କର ସ୍ୱରୂପ ଯେତେବେଳେ ଆବିଷ୍କାର କରିବ, ସେତେବେଳେ ତମେ ବୁଝି ପାରିବ ତମେ କୋଉଠିକି ଆସିଛ । କାହିଁକି ଆସିଛ । ତା'ପୂର୍ବରୁ ତମେ ଯଦି ମୋ କଥା ଶୁଣ, ମୋ ମତରେ ମତ ଦିଅ, ତା'ହେଲେ ଦୁଇଜଣଯାକ ଲାଭବାନ୍ ହେବା ।

କେତକୀ କେବଳ ଗଙ୍ଗା ମୁହଁକୁ ଜୁଳୁ ଜୁଳୁ କରି ଚାହିଁଥିଲା । ତା'ର ମନେ ହେଉଥିଲା ସେ ଯମୁନାଠାରୁ ଆହୁରି ଛୋଟ ହୋଇ ଯାଇଛି । ସାଂସାରିକ ବୁଦ୍ଧି ବୃତ୍ତି ଯେପରି କିଛି ତା'ର ନାହିଁ । ସେ କାହା ମୁହଁରୁ କ'ଣ ଶୁଣୁଛି ?

ସତରେ କେତକୀ ସ୍ତବ୍ଧ ହୋଇ ଯାଇଥିଲା । ଗଙ୍ଗା କହୁଛି ଟଙ୍କାର ପ୍ରୟୋଜନ ଗଙ୍ଗାଠାରୁ କେତକୀର ବେଶି । ତେବେ କ'ଣ.........ତେବେ କ'ଣ............

: ହଁ କେତକୀ ଅପା । ମୁଁ ଜାଣେ ତମେ ଏ ଘରକୁ କାହିଁକି ଆସିଛ । ମୁଁ ଜାଣେ ତମେ କିଏ । ମୁଁ ଜାଣେ ତମର ସ୍ଥିତି କ'ଣ କିନ୍ତୁ ସେଥିପାଇଁ ମୁଁ ମୋଟେ ତମର ଦୋଷ ଦେଉନାହିଁ । ବରଂ ତମ ସହିତ ସହଯୋଗ କରିବାକୁ ଚାହୁଁଛି । ତମେ ଯଦି ଆଗେଇ ଆସ, ମୋ ପାଦ ସହିତ ପାଦ ମିଶାଅ, ତେବେ କିଛି ବିପଦ ଆପଦର ସମ୍ଭାବନା ରହିବ ନାହିଁ । ସୁରୁଖୁରୁରେ ସବୁକାମ ହାସଲ ହୋଇଯିବ । ଗଙ୍ଗା ଚାହାଣିରେ ଆଦୌ ଚାଞ୍ଚଲ୍ୟ ନଥିଲା । ସେ ସହଜ ଓ ସରଳ ଭାଷାରେ କହି ଚାଲିଥିଲା ।

କିନ୍ତୁ କେତକୀ କପାଳରେ ସ୍ୱେଦ ବିନ୍ଦୁ ଦେଖା ଦେଇଥିଲା । ଗଙ୍ଗା ଜାଣେ କେତକୀ କିଏ, ସେ କାହିଁକି ଏଠାକୁ ଆସିଛି । କ'ଣ ତା'ର ଉଦ୍ଦେଶ୍ୟ, କିନ୍ତୁ ଏହା କିପରି ସମ୍ଭବ ? ଗଙ୍ଗା, ନା ଗଙ୍ଗା ତା'ମନର କଥା ଜାଣିଲା କିପରି ? ସୁଧାକର କହୁଥିଲା, ଗଙ୍ଗାର ଟିକିଏ ମୁଣ୍ଡଦୋଷ ଅଛି । ବୟସ ତୁଳନାରେ ତା'ର ବୁଦ୍ଧି ବୃତ୍ତି ଟିକିଏ କମ୍ । କିନ୍ତୁ ଗଙ୍ଗା ଯେ କେତକୀକୁ ଚପିଯିବାକୁ ବସିଛି । ଗଙ୍ଗା ଯେ...........

: ନା କେତକୀ ଅପା । ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ। ମୁଁ ସବୁ ଜାଣିଛି । ମୋତେ ତମ ସମ୍ବନ୍ଧରେ ସବୁ ଜଣେଇ ଦିଆ ହୋଇଛି । ତମେ ଯେ କେତକୀ କୁଶାରୀ ନୁହଁ, ଅସଲ କେତକୀ କୁଶାରୀ ଯେ ଗୋଆରେ ବସ ବାସ କରୁଛି । ସେ କଥା ମଧ୍ୟ ମୁଁ ଜାଣିଛି । କିନ୍ତୁ ମୁଁ ତୁମକୁ କେତକୀ ଅପା ବୋଲି ଡାକିବି । ତମେ ମୋ ସହିତ

ସହଯୋଗ ନ କଲେ ବି ମୁଁ ତମୁକୁ ପଦାରେ ପକାଇବି ନାହିଁ । ତେବେ ମୋର ତମକୁ ପରାମର୍ଶ ହେଉଛି, ଦି'ଜଣ ଯାକ ମିଳିମିଶି କାମ କଲେ ଭଲ ହୁଅନ୍ତା ଦୁଇଜଣଯାକ ଲାଭବାନ୍ ହୁଅନ୍ତେ ।

କେତକୀ କୁଣାରୀ ସେତେବେଳକୁ ଏକ ଧ୍ୟାନରେ କେବଳ ଗଙ୍ଗା ମୁହଁକୁ ଚାହିଁ ରହିଥିଲା । ସେଠାରେ କିଛି ଉତ୍ତେଜନା ନଥିଲା, କିଛି ପରିବର୍ତ୍ତନ ନଥିଲା । ଗଙ୍ଗା ଯେପରି ଏକ ନିରୀହ ଅସହାୟ ଆତ୍ମା । ଯେପରି ତାକୁ ସେ ପୂର୍ବରୁ ଦେଖିଥିଲା । ଠିକ୍ ସେଇ ରୂପ, ସେଇ ହସ, ସେଇ ଚାହାଣି । କେତକୀ ଶେଷରେ ମୁହଁ ଖୋଲିଲା ।

: ତମେ ତା'ହେଲେ ସେଠ୍ ରତନମଲଙ୍କର ଝିଆରି ନୁହଁ ?

: ହଁ, କେତକୀ ଅପା । ସେଥିରେ ଭେଜାଲ କିଛି ନାହିଁ ।

: ତା'ହେଲେ ?

: ତା'ହେଲେ ଆଉ କ'ଣ ? ମୁଁ ସେଠ୍ ରତନମଲଙ୍କର ଝିଆରି ବୋଲି ମୋର କ'ଣ ଟଙ୍କାର ଦରକାର ନାହିଁ ? ମୋର କ'ଣ କାମନା ବାସନା ନାହିଁ ?

: କିନ୍ତୁ ତମେ ତମର କାମନା ବାସନା ଚରିତାର୍ଥ କରିବା ପାଇଁ ବଙ୍କା ବାଟରେ ଆଗେଇବାର କ'ଣ ଅଛି ?

ଗଙ୍ଗା ହସିଲା । କହିଲା : ଅଛି କେତକୀ ଅପା । ଧୀରେ ଧୀରେ ମୁଁ ତମୁକୁ ସବୁକଥା କହିବି । ତେବେ ମୁଁ ଆଜି ଖାଲି ଏତିକି ଜାଣିବାକୁ ଚାହେଁ ଯେ, ତମେ ମୋ ସହିତ ସହଯୋଗ କରିବ କି ନାହିଁ ।

: କିପରି ସହଯୋଗ ତମେ ମୋଠାରୁ ଆଶା କର ? କେତକୀ ପଚାରିଲା ।

: ସହଯୋଗ ମାନେ, ଆମର ଗୋଟାଏ ଯୋଜନା ଅଛି । ସେଇଟା ଆଉ କିଛି ନୁହେଁ, ବଡ଼ ବାପାଙ୍କର କଳାଧନର ବୋଝ ହାଲ୍କା କରିବା ଯୋଜନା । ତମେ ଯଦି ଆମ ସହିତ ସହଯୋଗ କର, ତେବେ ତମେ ଭାଗ ପାଇବ । ଲାଭ ଭିତରେ ଏତିକି ହେବ, କାମଟା ଟିକିଏ ଶୀଘ୍ର ହାସଲ ହୋଇ ପାରିବ । ନହେଲେ ଡେରିର ସମ୍ଭାବନା ଅଛି ।

: ତମର ଯୋଜନା ମାନେ ? ଏହା ପଛରେ ନିଶ୍ଚୟ ଅନ୍ୟ କେହି ଅଛନ୍ତି ?

: ତା'ତ ନିଶ୍ଚୟ । ତେବେ ସେମାନେ କିଏ, ସେ ସମ୍ବନ୍ଧରେ ତମେ କିଛି ଜାଣିବାର ଆଗ୍ରହ ପ୍ରକାଶ କରିବ ନାହିଁ । ମୁଁ ଯାହା କହିବି, ତମେ ଭାବିଚିନ୍ତି ବିଚାର କରି ଦେଖିବ, ପାରିବ କି ନାହିଁ ।

: ମୁଁ ଯଦି ଆଦୌ ତମ ସହିତ ସହଯୋଗ କରିବାକୁ ରାଜି ନହୁଏ ?

: କିଛି ନାହିଁ । ମୁଁ କହିଲି ପରା, ତା'ହେଲେ ଆମକୁ କାମହାସଲ କରିବାକୁ ଟିକିଏ ଡେରି ହେବ ।

କେତକୀ ଗୁମ୍ ହୋଇ ବସି କିଛି ସମୟ ଚିନ୍ତା କଲା । ବାରମ୍ବାର ସେ ଗଙ୍ଗା ମୁହଁକୁ ଚାହୁଁଥିଲା । ସେ ବିଶ୍ୱାସ କରି ପାରୁନଥିଲା ଏପରି ଏକ ନିରୀହ ଅସହାୟ ମୁହଁରୁ କିପରି ସେ ଏକ ଦୁଃସହ ରୋମାଞ୍ଚକର କାହାଣୀ ଶୁଣୁଛି ।

ଗଙ୍ଗା ପୁଣି କହିଲା : ଶୁଣ କେତକୀ ଅପା । ମୁଁ ଜାଣେ ତମେ ମୋ ମୁହଁରୁ ଏପରି ଏକ ପ୍ରସ୍ତାବ ଶୁଣିବାକୁ ପ୍ରସ୍ତୁତ ନଥିଲା ଶୁଣି ଅବାକ୍ ହେଉଛ । ମୁଁ କହୁନାହିଁ ତମେ ସଙ୍ଗେ

ସଙ୍ଗେ ରାଜି ହୁଅ, ଚିନ୍ତା କରି ଦେଖ। ମୋତେ ଦୁଇଦିନ ପରେ ଜବାବ୍ ଦେଲେ ବି ଚଳିବ । ତେବେ ମୁଁ କହୁଛି ତମେ ନିର୍ଝଞ୍ଝଟରେ ଅନେକ ଲାଭବାନ୍ ହେବା ଅବଶ୍ୟ ତମ ଯୋଜନା ତମେ କାର୍ଯ୍ୟକାରୀ କରିବ କି ନାହିଁ, ସେ ଚିନ୍ତା ତମର । ମୋର କିନ୍ତୁ ଆପତ୍ତି ନାହିଁ ।

: ହୁଁ, କେତକୀ ଗମ୍ଭୀର ହୋଇ ଯାଇଥିଲା । ଗଙ୍ଗା ପ୍ରସ୍ତାବର ଉତ୍ତର ଦେବାପାଇଁ ନିଜକୁ ପ୍ରସ୍ତୁତ କରି ପାରୁ ନଥିଲା। ପ୍ରସ୍ତାବଟା କ'ଣ ? ସେମାନେ ବା କେତକୀ ମାଧ୍ୟମରେ କାହିଁକି କାର୍ଯ୍ୟକାରୀ କରିବାକୁ ଚାହାନ୍ତି । ଗଙ୍ଗା ତ ଘରର ଲୋକ । ସେ ତ ଇଚ୍ଛା କଲେ ଘରର ଅନେକ କିଛି କରି ପାରନ୍ତା । କିନ୍ତୁ କାର୍ଯ୍ୟଟା ଘରର କି ବାହାରର, କେତକୀ କିଛି ଜାଣି ନଥିଲା । ଗଙ୍ଗାକୁ ପଚାରିବ କି ନାହିଁ ସ୍ଥିର କରି ପାରୁ ନଥିଲା ।

ଗଙ୍ଗା କହିଲା : ମୁଁ ତେବେ ଆଜି ଆସୁଛି କେତକୀ ଅପା । ତମେ ଟିକିଏ ଭାବି ଚିନ୍ତି ଦେଖ। ଯଦି ମନେ କର ମୋ ପ୍ରସ୍ତାବ ତମପାଇଁ ନିରାପଦ ବା ଲାଭଦାୟକ ତା'ହେଲେ ମତ ଦିଅ, ନହେଲେ ନା କୁହ। ଗଙ୍ଗା ଉଠି ଠିଆ ହେଲା ।

କେତକୀ କହିଲା : ବସ। ମୁଁ ଏ ସମ୍ବନ୍ଧରେ କେତୋଟି ପ୍ରଶ୍ନ ପଚାରିବାକୁ ଚାହେଁ ।

ଗଙ୍ଗା ବସିଲା ।

କେତକୀ କହିଲା : ତମେ ଯେ ମୋତେ ତମ ଦଳରେ ଭିଡ଼େଇବାକୁ ଚାହଁ, ମୁଁ ତମ ଦଳରେ ଭିଡ଼ିଲେ ମୋର ଲାଭ କ'ଣ ହେବ ?

: ଅନେକ ଟଙ୍କା ପାଇବ ।

: କେତେ ଟଙ୍କା ?

: ତା'ର କିଛି ହିସାବ ନାହିଁ । ଲକ୍ଷେ ଦୁଇଲକ୍ଷ ହୋଇପାରେ, ଆହୁରି ବେଶି ବି ପାଇପାର ।

: ମୋତେ କ'ଣ କରିବାକୁ ହେବ ?

: ବିଶେଷ କିଛି ନୁହେଁ । ତେବେ ଟିକିଏ ଝୁଙ୍କି ନେବାକୁ ହେବ । ତମେ ଯଦି ମୋ ପ୍ରସ୍ତାବରେ ରାଜି ହୁଅ, ତା'ହେଲେ ସବୁକଥା ମୁଁ ତମକୁ ବୁଝେଇ କହିବି ।

: କାମଟା ଏଇ ଘର ଭିତରେ ନା ବାହାରେ ?

: ବର୍ତ୍ତମାନ ମୁଁ କିଛି କହିପାରିବି ନାହିଁ କେତକୀ ଅପା । ତମେ ଆଗ ମନ ସ୍ଥିର କର। ତା'ପରେ ସବୁ ଶୁଣିବ ।

: କାମଟା ଯେ ମୋ ଦ୍ୱାରା ସମ୍ଭବ ହେବ ଏକଥା ଭାବୁଛ କାହିଁକି ? ତମେତ କରିପାରନ୍ତ ।

: ନା, ମୋ ଦ୍ୱାରା ହୋଇ ପାରିଲେ, ତମକୁ ଭାଗୀ କରାନ୍ତି ନାହିଁ । ନିଷିଦ୍ଧ ଇଲାକାରେ ମୋର ପ୍ରବେଶ କରିବାର ଅଧିକାର ନାହିଁ । ବୁଝିଲ କେତକୀ ଅପା ।

: କିନ୍ତୁ.........

: ନା, କିନ୍ତୁ ଫିନ୍ତୁ ଆଉ କିଛି ନୁହେଁ, ସୁଧାକର ତମପାଇଁ ଜଳଖିଆ ଧରି ଆସିଲାଣି । ମୁଁ ଯାଉଚି । ପରେ ଆସିବି । ଯାଉଛି କେତକୀ ଅପା ।

ଗଙ୍ଗା ମୁହଁରେ ସରଳ ହାସ୍ୟରେଖା ଫୁଟାଇ ଧୀରେ ଧୀରେ ଘରୁ ବାହାରି ଚାଲିଗଲା ।

ସୁଧାକର ଟେବୁଲ୍ ଉପରେ ଟ୍ରେ'ଟା ଥୋଇ ଗଙ୍ଗା ଅଦୃଶ୍ୟ ହେବାଯାଏ ତା'ରି

ଆଡ଼େ ଅନାଇଥିଲା ।

: ଦିଦିମଣି ।

ସୁଧାକର ଡାକରେ କେତକୀର ଯେପରି ଧ୍ୟାନଭଙ୍ଗ ହେଲା ।

: ତମେ ସବୁବେଳେ କ'ଣ ଏତେ ଚିନ୍ତା କରୁଛ ଦିଦିମଣି । ବେଶି ଗଙ୍ଗା ଦିଦିମଣିକୁ ପ୍ରଶ୍ରୟ ଦେବ ନାହିଁ ।

: ଗଙ୍ଗା ଦିଦିମଣି ? କେତକୀ ଯେପରି ଚମକି ଉଠିଲା । ହଁ ତୋ ଗଙ୍ଗା ଦିଦିମଣି ଆସିଥିଲା । ଚାଲିଗଲାଣି ତ ।

: ଓହୋ, ମୁଁ ଦେଖୁଛି ତମେ ଛୋଟ ଦିଦିମଣିର ବି ଅଧମ । ମୁଁ କ'ଣ କହୁଥିଲି କି, ଗଙ୍ଗା ଦିଦିମଣିଙ୍କ ସାଙ୍ଗରେ ବେଶି ମିଶିବ ନାହିଁ ।

: କାହିଁକି ସୁଧାକର ?

: ତମକୁ କହିଛି ନା, କାହିଁକି ଫାଇଁକି ମୋତେ କିଛି ପଚାରିବ ନାହିଁ । ସୁନା ପଲଙ୍କରେ ଶୋଇବାକୁ ହେଲେ ମୋ କଥା ମାନି ଚଳିବ ।

: କିନ୍ତୁ ସେ ଯେ ମୋ ପାଖକୁ ବେଳେ ବେଳେ ଆସୁଛି ମୁଁ ତ ତାକୁ ତଡ଼ି ଦେଇ ପାରିବି ନାହିଁ ।

ସୁଧାକର ଆଉ କିଛି କହିଲା ନାହିଁ । ଟ୍ରେ'ରୁ ଜଳଖିଆ ବାହାର କରି ଟେବୁଲ୍ ଉପରେ ସଜାଇ ରଖୁ ରଖୁ କହିଲା : ନିଅ ଖାଇଦିଅ ।

: କିନ୍ତୁ ସୁଧାକର ।

: କ'ଣ ଦିଦିମଣି ।

: ଗଙ୍ଗାକୁ ତ ମୁଁ ଆସିବାକୁ ମନା କରି ପାରିବି ନାହିଁ ।

: ତମେ ଖାଇଦିଅ ଦିଦିମଣି । ସେ କଥା ପରେ ଦେଖାଯିବ ।

: ସତରେ କ'ଣ ଗଙ୍ଗା ଦିଦିମଣିର ମୁଣ୍ଡଦୋଷ ଅଛି ?

: କାହିଁକି ? ତମକୁ ସେ କିଛି କହିଲାକି ? ସୁଧାକର ପଚାରିଲା ।

: ହଁ, କହୁଥିଲା ଏଘରେ ସମସ୍ତେ ତା'ର ଶତ୍ରୁ । କେହି ତାକୁ ଭଲ ଆଖିରେ ଦେଖନ୍ତି ନାହିଁ । ତା' ମା'ର ଭଲ ଚିକିତ୍ସା ହୁଏନାହିଁ ।

ସୁଧାକର ହସିଲା, କହିଲା : ପାଗଳୀ, ହଁ ସେ ଶେଷ ପର୍ଯ୍ୟନ୍ତ ପାଗଳୀ ହୋଇଯିବ । ତମେ ତା' କଥାରେ କିଛି କଥା କହିବ ନାହିଁ ଦିଦିମଣି । ତା'ହେଲେ ମାଲିକ ଅସନ୍ତୁଷ୍ଟ ହେବେ । କେତକୀ ଆଉ କିଛି କହିଲା ନାହିଁ । ଖାଇବାରେ ମନ ଦେଲା ।

ଗଙ୍ଗା ମା'ର ଶେଯ ଉପରେ ବସିଥିଲା । ମୁଣ୍ଡ ଆଉଁସି ଦେଉଥିଲା । ମା' ନୀରବରେ ଶୋଇଥିଲେ ।

ରଜତ୍ ଘରେ ପ୍ରବେଶ କଲା । ଗଙ୍ଗା ମୁଣ୍ଡ ଟେକି ଚାହିଁଲା । କହିଲା: ଆଜି ଏତେ ଡେରି ହେଲା ଯେ !

ରଜତ ଗୋଟାଏ ଚେୟାର ଉପରେ ବସୁ ବସୁ ପଙ୍ଖାର ସ୍ୱିଚ୍ ବଢ଼ାଇ ଦେଇ କହିଲା : ଆଜି ଟିକିଏ ଅଫିସ୍‌ରେ କାମ ପଡ଼ି ଯାଇଥିଲା । ବାହାରୁ ଲୋକ ଆସିଥିଲେ । ମାଉସୀ କେମିତି ଅଛନ୍ତି ?

: ଭଲ । ଗଙ୍ଗା ମା' ମୁଣ୍ଡରେ ହାତ ବୁଲାଉ ବୁଲାଉ କହିଲା ।

: ପେଟର ଯନ୍ତ୍ରଣାଟା ଆଉ ବଢ଼ି ନାହିଁ ତ ?

: ନା ।

: ଡାକ୍ତର ଆସିଥିଲେ ?

ହଁ, ଆସି ଦେଖି ଯାଇଛନ୍ତି । ମା'କୁ ବୋଧେ ନିଦ ଔଷଧ ଦେଇ ଯାଇଛନ୍ତି । ସେ ଆରାମରେ ଶୋଇଛି ।

ମାଉସୀ ଶୋଇ ଥାଆନ୍ତୁ । ଏଥର ତମେ କହିଲ କେତେଦୂର ଆଗେଇଲ ?

: ମୁଁ ? ଗଙ୍ଗା ହସିଲା । ମୁଁ ବୋଧହୁଏ ଠିକ୍ ବାଟରେ ଆଗେଇଛି ।

: କେତକୀ ରାଜି ହୋଇଛି ତ ?

: ରାଜି, ଏତେ ଶୀଘ୍ର କେହି କ'ଣ ହୁଏ । ତେବେ ସେ ମୋ ମୁହଁରୁ ଏପରି କଥା ଶୁଣିବ ବୋଲି ଆଶା କରି ନଥିଲା । କେତେ ମିନିଟ୍ ତ ତା ପାଟିରୁ କଥା ବାହାରିଲା ନାହିଁ । ମୋ ପରି ଗୋଟାଏ ପାଗଳୀ ଝିଅ, ତା' ସହିତ ଯେ ମୂଲଚାଲ କରି କଥା କହିବ, କେତକୀ ସ୍ୱପ୍ନରେ ବି ଭାବି ନଥିଲା ।

: ତା'ପରେ ?

: ମୁଁ କିନ୍ତୁ ନିର୍ବିକାର କଣ୍ଠରେ ମୋ ମତ ବ୍ୟକ୍ତ କରିଥିଲି । ଥୋପ ସେ ଗିଳିବ ନିଶ୍ଚୟ । ନ ଗିଳି ବାଟ କାହିଁ ? ତା'ର ଦୁର୍ବଳତା ଆଉ ଉଦ୍ଦେଶ୍ୟ ଆମ ପାଖରେ ଯେ ଧରା ପଡ଼ି ଯାଇଛି । ସେ ଖସି ଯାଇ ପାରିବ ନାହିଁ । ଗଙ୍ଗା ପରମ ଆତ୍ମ ବିଶ୍ୱାସୀ ହୋଇ କହିଲା ।

: ହଁ, ସେ ହୁଏତ ଆମ କଥା ବାଧ୍ୟ ହୋଇ ଶୁଣିବ । କିନ୍ତୁ ତାକୁ ଆମେ କିପରି ବିଶ୍ୱାସ କରି ପାରିବା ,ବର୍ତ୍ତମାନ ସେଇଆ ଚିନ୍ତା କରିବାର କଥା । ତମର କ'ଣ ମନେ ହେଉଛି ଗଙ୍ଗା ?

: ମୋର ତ ମନେ ହେଉଛି କେତକୀ ଆମ କଥା ଶୁଣିବ ଏବଂ ଆମ ନିର୍ଦ୍ଦେଶ ଅନୁସାରେ କାମ କରିବ । ତାର' ବି ତ ଟଙ୍କା ଦରକାର ।.କିନ୍ତୁ ଆଉ ଗୋଟିଏ ଦିଗ କଥା ଆମେ ଚିନ୍ତା କରି ନାହେଁ । ସେ ଯଦି ଆଗତୁରା ତା' ଉଦ୍ଦେଶ୍ୟ ସାଧନ କରିଦିଏ, ତା'ପରେ ଖସି ଯାଇପାରେ । ସେତେବେଳେ ଆମ ଉଦ୍ଦେଶ୍ୟ ହୁଏତ ସାଧନ ହୋଇ ପାରିବ ନାହିଁ ।

ରଜତ ହସିଲା । କହିଲା : ସେ ଦିଗଟା ତମଠାରୁ ମୁଁ ବହୁ ପୂର୍ବରୁ ଚିନ୍ତା କରିଛି । ଟଙ୍କା ନେଇ ସେ ଖସି ଯାଇ ପାରିବ ନାହିଁ । ତମକୁ କିନ୍ତୁ ତା'ଉପରେ ତୀକ୍ଷ୍ଣ ଦୃଷ୍ଟି ରଖିବାକୁ ହେବ ।

: ସେ ଦିଗରୁ ତମେ ନିଶ୍ଚିନ୍ତ ହୋଇପାର, ଗଙ୍ଗା କହିଲା । ମୁଁ ତା'ପଛରେ ଛାଇ ପରି ଲାଗି ରହିବି । କିନ୍ତୁ ଗୋଟାଏ ଅସୁବିଧା ହେଉଛି ସେ ଯେତେବେଳେ ଯମୁନାକୁ ନେଇ ସ୍କୁଲକୁ ଯାଉଛି, ସେଇ ତିନି ଚାରିଘଣ୍ଟା ମୋ ଆଖି ଆଢୁଆଳରେ ରହି ଯାଉଛି ।

: ସେତେବେଳେ ମୋ ଆଖି ଖୋଲା ରହିବ । ତା'ଛଡ଼ା ବାହାରେ ସେ କ'ଣ କରି ପାରିବ । ଆମ ଉଦ୍ଦେଶ୍ୟ ସାଧନ ପାଇଁ ତା'ପଛରେ ତମକୁ ଲାଗି ରହିବାକୁ ହେବ । ସେ ହୁଏତ ବିରକ୍ତ ହେବ । ତମ ଉପରୁ ତା' ମନ ଚିଡ଼ିଯିବ । ତମ ଛାଇ ପଡ଼ିଲେ ତା' ନାହି

ଡେଇଁବ । ତଥାପି ତୁମେ ବିରକ୍ତ ହୋଇ ପାରିବ ନାହିଁ । ମୋର ଇଚ୍ଛା କେତକୀ ଦ୍ୱାରା ଆମ କାମଟା ଆଗ ହାସଲ କରେଇ ନେଇ ପାରିଲେ ଭଲ ହୁଅନ୍ତା ।

ଗଙ୍ଗା ମନଯୋଗ ଦେଇ ରଜତ କଥା ଶୁଣୁଥିଲା । କହିଲା, : ହଁ ମୁଁ ଚେଷ୍ଟା କରିବି । ଆଜି ପୁଣି ଆଉଥରେ ଯିବି । ଏବଂ ଏଥର ବାରମ୍ବାର ଯାଇ କେତକୀକୁ ରାଜି ନ କରାଇବାଯାଏ ଛାଡ଼ିବି ନାହିଁ ।

ରଜତ କହିଲା  କେତକୀ କିନ୍ତୁ ଖୁବ୍ ବୁଦ୍ଧିମତୀ ଝିଅ । ଦୁଷ୍ଟ ବୁଦ୍ଧିରେ ତା'ର ତୁଳନା ନାହିଁ । ତମେ ବୁଝି ସୁଝି, ସହି ସମ୍ଭାଳି ଆଗେଇବ ।

ଗଙ୍ଗା ହସିଲା । ଦେଖିଲା ମା' ନିଶ୍ଚିନ୍ତରେ ଶୋଇଛନ୍ତି । ସେ ରଜତ ପଛେ ପଛେ ବାହାରକୁ ବାହାରିଗଲା । ସେମାନେ ବାରଣ୍ଡାରେ ଗୋଟାଏ ନିର୍ଜନ ଜାଗାରେ ଠିଆ ହେଲେ । ରଜତ କହିଲା : ତମ ବଡ଼ବାପା ମାନେ ମୋ ବସ୍ କେତକୀ ଉପରେ ଖୁବ୍ ସନ୍ତୁଷ୍ଟ । ସେ ବେଳେ ବେଳେ ଯମୁନାକୁ ଦେଖିବା ବାହାନାରେ କେତକୀ ପାଖକୁ ଚାଲି ଆସୁଛନ୍ତି । ତେଣୁ ବୁଝି ପାରୁଥିବ ପବନ ଆମ ଅନୁକୂଳରେ ବହୁଛି । ଆମ କାର୍ଯ୍ୟ ହାସଲ କରିବାକୁ ହେଲେ, ବର୍ତ୍ତମାନ ଏକମାତ୍ର ମାଧ୍ୟମ ହେଉଛି କେତକୀ ।

: କିନ୍ତୁ କେତକୀ ଯଦି ଶେଷପର୍ଯ୍ୟନ୍ତ ଆମ କଥାରେ ରାଜି ନହୁଏ ?

: ତା' ହେଲେ ତମର ପରାଜୟ ବୋଲି ଧରିନେବାକୁ ହେବ । ଆମ ସ୍ୱପ୍ନ କେବଳ ଦିବା ସ୍ୱପ୍ନ ହୋଇ ରହିଯିବ । ତମେ ତ ଜାଣ ଗଙ୍ଗା, ତମ ବଡ଼ ବାପା କିପରି ଲୋକ । ତାଙ୍କୁ ସମ୍ମୁଖ ସମରରେ କେହି ଜିତି ପାରିବେ ନାହିଁ । ତା'ଛଡ଼ା ତମ ମୋର ସମ୍ପର୍କ କଥା ଜାଣି ପାରିଲେ, ଆମ ଦୁଇଜଣଙ୍କର ଗଳା ସେ ହାତରେ କାଟି ପକାଇବେ, କୌଣସି ଧାରୁଆ ଅସ୍ତ୍ରର ପ୍ରୟୋଜନ ହେବନାହିଁ ।

: କାହିଁକି, ଏପରି ତମେ କାହିଁକି ଭାବୁଛ ରଜତ ? ଆମ ନିଜର କ'ଣ କୌଣସି ସ୍ୱାତନ୍ତ୍ର୍ୟ ନାହିଁ ? ଆମେ ନିଜ ଇଚ୍ଛାରେ କ'ଣ କିଛି କରିବାର ଅଧିକାର ଆମର ନାହିଁ? ଆମେତ କାହାରି କ୍ରୀତ ଦାସ ନୁହନ୍ତି । ଗଙ୍ଗା ଆଉ ଟିକିଏ ରଜତ ଦେହକୁ ଲାଗିଗଲା ।

: ମୁଁ ସେକଥା କହୁନାହିଁ ଗଙ୍ଗା । ଆମେ କେହି ଯେହେତୁ ନାବାଳକ ନୁହନ୍ତି, ଆମର ସମସ୍ତ ଅଧିକାର ଆମେ କୋର୍ଟରୁ ଫେରାଇ ଆଣି ପାରିବା । କିନ୍ତୁ ଆମକୁ ଏକ ବସ୍ତ୍ରରେ ଘରୁ ବାହାରି ଯିବାପାଇଁ ହେବ । ମୋର ଚାକିରି ନଥିବ କି ତମର ଆଶା ପୂରଣର ସୁଯୋଗ ନଥିବ । ସେ ଯା'ହେଉ ଏତ ହେଲା ଶେଷ କଥା । କିନ୍ତୁ ଆମେ ଏପରି ଏକ ଦୟନୀୟ ଅବସ୍ଥାର ସମ୍ମୁଖୀନ ହେବା କାହିଁକି !

ଗଙ୍ଗା ରଜତ ଆଡ଼େ ଜ୍ୱଳନ୍ତ ଆଖିରେ ଚାହିଁ କହିଲା : ତମେ ବଡ଼ ବାଜେ କଥା ଚିନ୍ତାକର । ଏହାପରେ ମୋତେ କ'ଣ କରିବାକୁ ହେବ, କେତକୀ ସହିତ ଆମ ଯୋଜନା ସମ୍ବନ୍ଧରେ କ'ଣ ଆଲୋଚନା କରିବାକୁ ହେବ, ସେ ସମ୍ବନ୍ଧରେ କିଛି ନ କହି, ଯେତେସବୁ ବାଜେ କଥା ଗପି ଚାଲିଛ ।

ରଜତ ଚାରିଆଡ଼େ ଥରେ ସତର୍କ ଦୃଷ୍ଟି ଫେରାଇ ନେଇ କହିଲା, : ଶୁଣ, ମୋର ଯୋଜନାଟା ହେଉଛି, ତମ ବଡ଼ ବାପାଙ୍କ ଶୋଇବା ଘରକୁ ଲାଗି ଷ୍ଟ୍ରଙ୍ଗ ରୁମ୍‌ରେ ଯେଉଁ ଲୁହା ସିନ୍ଦୁକ ଅଛି, ତା'ଭିତରେ ଅନେକ ଟଙ୍କା ଅଛି । ଟଙ୍କା ଅପେକ୍ଷା ବହୁ ମୂଲ୍ୟବାନ୍ ଧାତୁ ସବୁ ରହିଛି । ଏପରିକି ଖଣ୍ଡେ ହୀରା ସେହି ଲୁହା ସିନ୍ଦୁକରେ ବନ୍ଦୀ ଅଛି । ମୋର

ଯୋଜନା ହେଲା, ସେହି ଲୁହା ସିନ୍ଦୁକ ଖୋଲି ଆମକୁ କିଛି ମୂଲ୍ୟବାନ ଧାତୁ ହାତ ସଫେଇ କରିବାକୁ ହେବ ।

ଗଙ୍ଗା ରଜତ ଆଡ଼େ ବିସ୍ଫାରିତ ନୟନରେ ଚାହିଁ ରହିଥିଲା । ତା'ର ମନେ ହୋଇଥିଲା, ସେ ଯେପରି ରଜତ ମୁହଁରୁ ରୂପକଥା ଶୁଣୁଛି । କାହିଁ ରତନମଲଙ୍କର ଲୁହା ସିନ୍ଦୁକ ଆଉ ରଜତ କୁମାରଙ୍କର ଅସଂଗତ ଚିନ୍ତା ।

ଗଙ୍ଗାର ମନୋଭାବ ରଜତ ବୁଝି ପାରିଥିଲା । କହିଲା : ସବୁ ଅସମ୍ଭବ ମଣିଷ ସମ୍ଭବ କରିପାରେ ଗଙ୍ଗା । ତମେ ମନ ଦେଇ ଯଦି ମୋ ଯୋଜନା ସମ୍ବନ୍ଧରେ ସବୁ କଥା ଶୁଣିବ ତା'ହେଲେ ବୁଝି ପାରିବ, କେତେ ଗଭୀର ଭାବରେ ଚିନ୍ତା କରି ମୁଁ ପ୍ଲାନ୍ ପ୍ରସ୍ତୁତ କରିଛି । ସେଠ୍‌ଜୀଙ୍କର ଥାକ ଥାକ ନୋଟ୍ ବଣ୍ଡିଲ୍‌ରେ ଆମର ହାତଦେବା ଦରକାର ହେବନାହିଁ । ଆମେ କେବଳ କେଇଖଣ୍ଡ ଛୋଟ ଛୋଟ ଧାତୁ ହସ୍ତଗତ କରି ପାରିଲେ, ଆମ ପଥ ସୁଗମ ହୋଇଯିବ । ଆମେ ଅଲଗା ଜାଗାରେ ବ୍ୟବସାୟ ଆରମ୍ଭ କରି ପାରିବ । ଏବଂ ଅଳ୍ପଦିନ ଭିତରେ ଆମ ସାଧନା ସଫଳ କରି ପାରିବା ।

ଗଙ୍ଗାର ମୁହଁ ଶୁଖି ଯାଇଥିଲା । ଆଖିର ଜ୍ୟୋତି ଶୀତଳ ହୋଇ ଯାଇଥିଲା । ଶାନ୍ତ ସ୍ୱରରେ କହିଲା : ଏଇ ତମର ଯୋଜନା ରଜତ ! ଆଗରୁ ଜାଣିଥିଲେ କେତକୀ ପାଖରେ ମୁଁ ଚିହ୍ନା ପଡ଼ିନଥାନ୍ତି ।

: ତମେ ଏବେ ବି ମୋତେ ବିଶ୍ୱାସ କରି ପାରୁ ନାହଁ ଗଙ୍ଗା ?

: ତମ ଉପରେ ମୋର ବିଶ୍ୱାସ ଅଛି । କିନ୍ତୁ ତମର ଏଇ ଅଳୀକ ଭାବନା ମୋତେ ହତୋତ୍ସାହ କରି ପକାଇଛି । ତମେ କେମିତି ଚିନ୍ତା କରି ପାରିଲ, ବଡ଼ବାପାଙ୍କ ଲୁହା ସିନ୍ଦୁକ ଖୋଲି, ତା'ଭିତରୁ ମୂଲ୍ୟବାନ୍ ପଦାର୍ଥ ଅପହରଣ କରି ପାରିବ ? ମୁଁ ତ କହୁଛି ଏକଥା କେବଳ ଜଣେ ବଦ୍ଧପାଗଳ ଛଡ଼ା ଅନ୍ୟ କେହି ଚିନ୍ତା କରି ପାରିବ ନାହିଁ ।

ରଜତ ସ୍ମିତ ହସି ଶାନ୍ତ ସ୍ୱରରେ କହିଲା : ଶୁଣ ଗଙ୍ଗା, ତମେ ମୋତେ ବିଶ୍ୱାସ କର । ମୋ ଉପରେ ଆସ୍ଥାରଖ । ମୁଁ ଯାହା କହୁଛି ମୋ କଥା ଶୁଣ । ଶେଷରେ ଦେଖିବ ତମେ ବିଜୟୀ ହୋଇଛ ।

: କିନ୍ତୁ ସବୁର ଗୋଟାଏ ସୀମା ଅଛି ରଜତ । ଅନେକ କ୍ଷେତ୍ରରେ ଚେଷ୍ଟା କଲେ ଅସମ୍ଭବ ସମ୍ଭବ ହୁଏ, କିନ୍ତୁ ତମେ ବଡ଼ବାପାଙ୍କ ଲୁହା ସିନ୍ଦୁକରୁ ହୀରା ଅପହରଣର ଯେଉଁ ଯୋଜନା କରିଛ, ତାହା ଏକଦମ୍ ଉଦ୍ଭଟ ପରିକଳ୍ପନା । ସହଜେତ ବଡ଼ବାପାଙ୍କ ଶୋଇବା ଘରକୁ କାହାରି ଯିବାର ଅଧିକାର ନାହିଁ, ତା'ପରେ ତାଙ୍କ ସିନ୍ଦୁକ ଖୋଲା ! ତୁମେ ଜାଣ, ବଡ଼ବାପା ସିନ୍ଦୁକ ଖୋଲିବାକୁ କେତେଟା ଚାବି ଲାଗେ ? ଗଙ୍ଗାର କଣ୍ଠସ୍ୱର ଉତ୍ତେଜିତ ଶୁଣା ଯାଉଥିଲା ।

: ମୁଁ ଜାଣେ, ସବୁଜାଣେ । ଏତେଶୀଘ୍ର ତମୁକୁ ଅସଲ କଥାଟା ଜଣେଇବା ମୋର ଭୁଲ୍ ହୋଇଗଲା । ଯା'ହେଉ ମୁଁ କହି ସାରିଲିଣି ଯେତେବେଳେ ଟିକିଏ ଧୈର୍ଯ୍ୟଧରି ମୋ ହୀରା ଚୋରିର ପରିକଳ୍ପନାଟା ଶୁଣ ।

ଗଙ୍ଗା ସେଇଠି ଠିଆ ହୋଇ, ଖୋଲାବାରଣ୍ଡାରେ ବୋଧହୁଏ ଏସବୁ କଥା ଆଲୋଚନା କରିବାର ପକ୍ଷପାତୀ ନଥିଲା । ଯଦିଓ ସେ ଜାଣିଥିଲା ଏ ସ୍ଥାନଟା ନିରାପଦ ଏବଂ ତାଙ୍କ ମା'ଝିଅଙ୍କ ଛଡ଼ା ପ୍ରାୟ ଏ ଆଡ଼େ ଅନ୍ୟକେହି ଆସନ୍ତି ନାହିଁ । ତଥାପି

ଗଙ୍ଗାର ଛାତି ଭିତରଟା କିପରି କମ୍ପି ଉଠିଥିଲା । ବୋଧହୁଏ ସେଠ୍ ରତନମଲଙ୍କ ଲୁହା ସିନ୍ଦୁକ ଖୋଲିବା କଥା ଶୁଣି ସେ ଭୟ ପାଇ ଯାଇଥିଲା । କାରଣ ସେ ଜାଣେ, ସେଠ୍ ରତନମଲ ସେହି ଲୁହାସିନ୍ଦୁକକୁ ତାଙ୍କର ପ୍ରାଣ ମନେ କରନ୍ତି, ଏବଂ ସେହି ସିନ୍ଦୁକର ନିରାପତ୍ତା ପାଇଁ ସେ ନାନା ପ୍ରକାର ବ୍ୟବସ୍ଥା କରି ରଖିଛନ୍ତି । ତାଙ୍କ ଛଡ଼ା କେହି ଯଦି ସେ ସିନ୍ଦୁକର ତାଲା ଖୋଲେ ତା'ହେଲେ କେତେ ଗୁଡ଼ାଏ ସତର୍କ ଘଣ୍ଟି ଏକା ସଙ୍ଗରେ ବାଜି ଉଠିବ । ହାଇ ଭୋଲ୍‌ଟେଜ୍ କରେଣ୍ଟ ସିନ୍ଦୁକରେ ସବୁବେଳେ ଚାର୍ଜ ହୋଇ ରହିଛି । କେହି ଜାଣି ନଥିବା ଲୋକ ହାତ ଦେଲେ ତା'ର ମୃତ୍ୟୁ ଅନିବାର୍ଯ୍ୟ । ତା'ଛଡ଼ା ଆହୁରି କେତେକ'ଣ ବୈଜ୍ଞାନିକ ପଦ୍ଧତିରେ ସିନ୍ଦୁକଟା ରକ୍ଷଣାବେକ୍ଷଣ ହୋଇଥିବା କଥା ସେ ଶୁଣିଛି । ରଜତ ସେଇ ସିନ୍ଦୁକରେ ହାତ ଦେବାର ଦୁଃସାହସ ବା କରୁଛି କିପରି ?

ଗଙ୍ଗା ରଜତର ହାତ ଧରି ତା' ଶୋଇବା ଘରକୁ ଟାଣି ଟାଣି ନେଇଗଲା । ଖଟ ଉପରେ ବସାଇ ଦେଇ ଭିତରୁ ଦରଜା ବନ୍ଦ କରିଦେଇ କହିଲା : ନା ରଜତ ! ମୁଁ ତମୁକୁ ହାତ ଯୋଡୁଛି, ତମେ ଏ ଦୁଃସହ ପରିକଳ୍ପନା କଥା ମନରୁ ପୋଛିଦିଅ । ବରଂ ଅନ୍ୟ କୌଣସି ଉପାୟରେ ଆମେ କିଛି ଟଙ୍କା ଆଦାୟ କରିବା କଥା ଚିନ୍ତା କରିବା ।

ରଜତ ଦେଖିଲା, ଗଙ୍ଗା କପାଳରେ ବିନ୍ଦୁ ବିନ୍ଦୁ ଝାଳ ଜକେଇ ଆସିଛି । ନିଶ୍ୱାସ ଦୀର୍ଘ ହୋଇଛି । ସେ ପକେଟ୍‌ରୁ ରୁମାଲ ବାହାର କରି, ଗଙ୍ଗା ମୁହଁରୁ ଝାଳ ପୋଛିଦେଇ କହିଲା : ତମେ ଏପରି ଆତଙ୍କିତ ହୋଇ ପଡୁଛ କାହିଁକି ? ମୋ କଥା ଶୁଣ, ଟିକିଏ ମନଯୋଗ ଦେଇ ମୁଁ ଯାହା କହୁଛି ଭାବ । ଅନ୍ୟ କୌଣସି ଉପାୟରେ ଟଙ୍କା ଆଦାୟ କରିବା କଥା ଚିନ୍ତା କରିବା ସପକ୍ଷରେ ମୁଁ ନୁହେଁ । ମୋର ଲକ୍ଷ୍ୟ ହେଉଛି ସେଠ୍‌ଜୀଙ୍କ ଲୁହା ସିନ୍ଦୁକରେ ଥିବା ସେଇ ହୀରା ଖଣ୍ଡିକ । ଆନ୍ତର୍ଜାତିକ ବଜାରରେ ତା'ର ଅନେକ ଦାମ୍ । ଏବଂ ସେଠ୍ ରତନମଲ ସେଇ ହୀରା ଖଣ୍ଡିକ ବିକ୍ରୟ କରିବା ପାଇଁ ଆମେରିକାର ଜଣେ ଧନୀ ଲୋକ ସହିତ ଚିଠିପତ୍ର ଲେଖା ଲେଖି କରୁଛନ୍ତି । ତମେ ନିଶ୍ଚୟ ଜାଣିନାହଁ ଗଙ୍ଗା, ଆମେରିକାର ଜଣେ ବ୍ୟବସାୟୀଙ୍କ ଠାରୁ ମୁଁ ଗୋଟାଏ ଅଫର ମଧ୍ୟ ପାଇଛି । ସେଇ ବ୍ୟବସାୟୀଟି ବଙ୍କା ବାଟରେ ହୀରାଖଣ୍ଡିକ ହସ୍ତଗତ କରିବାକୁ ଚାହେଁ । ବଦଳରେ ସେ ଏତେ ଟଙ୍କା ଦେବ ତମେ କଳ୍ପନା କରି ପାରିବ ନାହିଁ । ଯେଉଁଥିପାଇଁ ମୁଁ ନୀରବରେ ସେଇ ସୁଯୋଗଟିକୁ ଅପେକ୍ଷା କରି ରହିଛି ।

ଗଙ୍ଗା କିପରି ଅବାକ୍ ଆଖିରେ ରଜତ ମୁହଁକୁ ଅନାଇ ରହିଲା ।

: ତମେ ବିଶ୍ୱାସ କର ଗଙ୍ଗା, ମୁଁ ଆମେରିକାର ସେହି ବ୍ୟବସାୟୀଟିକୁ କଥା ଦେଇଛି, ଯେପରିହେଉ ମୁଁ ହୀରା ଖଣ୍ଡିକ ସଂଗ୍ରହ କରି ତାକୁ ପଠାଇବି । ବଦଳରେ ସେ ଆମକୁ ଯଥେଷ୍ଟ ଟଙ୍କା ଦେବ, ତା'ଛଡ଼ା ଆମେ ଆମେରିକା ଯିବାପାଇଁ ସେ ସବୁ ପ୍ରକାର ବନ୍ଦୋବସ୍ତ କରିଦେବ । ସେଇଠି ଆମେ ବ୍ୟବସାୟ କରି ସେଠାକାର ନାଗରିକ ହୋଇଯିବା ପାଇଁ ସେ ମଧ୍ୟ ସାହାଯ୍ୟ କରିବ ।

ତଥାପି ଗଙ୍ଗା ରଜତ ମୁହଁକୁ ନୀବରେ ଚାହିଁଥିଲା । ରଜତ ପୁଣି କହିଲା : ସେଠ୍ ରତନମଲଙ୍କ ଲୁହା ସିନ୍ଦୁକରୁ ହୀରା ଖଣ୍ଡିକ ବାହାରି ଆସି କିପରି ମୋ ହାତରେ ବନ୍ଦୀହେବ, ତା'ର ସମସ୍ତ ପରିକଳ୍ପନା ମୁଁ କରି ରଖିଛି । ତାଙ୍କ ଲୁହା ସିନ୍ଦୁକର ନିରାପତ୍ତା ପାଇଁ ସେଠ୍ ସାହେବ ଯାହା ଯାହା ବ୍ୟବସ୍ଥା କରିଛନ୍ତି ସବୁତକ ମୋ ନଖ ଦର୍ପଣରେ । ଏବଂ ତାଙ୍କର

ସବୁଗୁଡ଼ିକ ବ୍ୟବସ୍ଥା ଇଲେକ୍‌ଟ୍ରିକ୍ ଭିତ୍ତିକ । ତେଣୁ ତମେ ବୁଝି ପାରୁଥିବ ଗଙ୍ଗା ଯେକୌଣସି ମୁହୂର୍ତ୍ତରେ ଲୁହା ବାକ୍‌ସର ସବୁ ନିରାପତ୍ତା ମୁଁ ନଷ୍ଟ କରିଦେଇ ପାରିବି । ଏବଂ ଏଇଟା ମଧ୍ୟ ମୁଁ ଜାଣିଛି ଯେ ସେଠ୍ ସାହେବଙ୍କର ଲୁହା ସିନ୍ଦୁକ ପାଇଁ ଦୁଇଟି ଗୋପନ ଲେକ୍‌ଟ୍ରିକ୍ କନେକସନ୍ ଅଛି । ସେଗୁଡ଼ିକର ମେନ୍‌ସୁଇଚ୍‌ର ଖବର ମଧ୍ୟ ମୋତେ ଜଣା । ତେଣୁ ତମର ଏଥିରେ ଆତଙ୍କିତ ହେବାର କିଛି ନାହିଁ । ବର୍ତ୍ତମାନ ପ୍ରଶ୍ନ ହେଉଛି ବିଲେଇ ବେକରେ ଘଣ୍ଟି ବାନ୍ଧିବ କିଏ ? ସେ ଘରେ ପଶି ସେହି ଲୁହା ସିନ୍ଦୁକର ତିନୋଟି ତାଲା ଖୋଲି, ସାତତାଳ ପାଣି, ସାତତାଳ ପଙ୍କ ଆଡ଼େଇ ଫରୁଆ ଭିତରୁ ମଣିଟି ଉଦ୍ଧାର କରିବ କିଏ ? ଏହି ପ୍ରଶ୍ନର ନିଶ୍ଚିତ ଉତ୍ତର ହେଉଛି ରୀନା ଗୋଏଲ୍ ଓରଫ୍ କେତକୀ କୁଶାରୀ । ଏବଂ ସେଇଥିପାଇଁ ହଜାର ହଜାର ଦରଖାସ୍ତ ତନଖି କରି ମୁଁ ତାକୁ ନିଯୁକ୍ତି ଦେଇଛି । ତେଣୁ ହେ ପ୍ରିୟତମା ଗଙ୍ଗେ ! ତମେ ଅସ୍ଥିର ହୁଅନାହିଁ । ମୁଁ ତୁମକୁ ଚିରକାଳ ମସ୍ତକରେ ବହନ କରି ଚାଲିବାର ପଥ ସୁଗମ କରୁଛି । ତମେ ଖାଲି ମୋତେ ଟିକେ ସାହାଯ୍ୟ କର ।

ରଜତ ଗୋଟାଏ ଉଚ୍ଛ୍ୱାସରେ ଗଙ୍ଗାକୁ ଭିଡ଼ି ଆଣି ଆଲିଙ୍ଗନ କଲା । କାନ ପାଖରେ ମୁହଁ ଦେଇ ଚୁପି ଚୁପି କହିଲା ରାଣୀ, ଅନୁଶୋଚନା ବେଳ ଏ ନୁହେଁ । ଜୀବନ ଜୁଆରେ ଜିତିବାକୁ ହେଲେ, ସାହସ କରି ପଣ ଧରିବାକୁ ହୁଏ ।

ଗଙ୍ଗାର ଆଖି ଦୁଇଟି ଢଳ ଢଳ ହେଉଥିଲା । ସେ ହୁଏତ ବୁଝି ପାରୁନଥିଲା ଏ ପରିସ୍ଥିତିରେ ତା'ର କର୍ତ୍ତବ୍ୟ କ'ଣ । ଶେଷରେ ରଜତ ଛାତିରେ ସେ ମୁହଁ ଗୁଞ୍ଜି ଦେଇ ମଉନ ରହିଲା ।

କେତକୀ ଯମୁନାକୁ ସ୍କୁଲରେ ଛାଡ଼ି ଫେରି ଆସିଥିଲା । ମୁହଁ ହାତ ଧୋଇ ଡାଇନିଂ ଟେବୁଲ୍‌ରେ ବସି ଅପେକ୍ଷା କରିଥିଲା ସୁଧାକରକୁ । ଭୋକ ଯେ ଠିକ୍ କରୁଥିଲା କେତକୀକୁ ତାହା ନୁହେଁ, ଗୋଟାଏ ଅଭ୍ୟାସର ବଶବର୍ତ୍ତୀ ହୋଇ ଅପେକ୍ଷା କରୁଥିଲା ସୁଧାକରକୁ ।

କେଇଦିନ ହେବ ଚିନ୍ତା ଭାବନା ବଢ଼ି ଯାଇଥିଲା କେତକୀର । ସେ ଆସିଥିଲା ଗୋଟାଏ କାମରେ । କିନ୍ତୁ ଛନ୍ଦି ହୋଇ ପଡ଼ିଲା ଯମୁନାର ସ୍ନେହରେ । ଏ ମାସକ ଭିତରେ ଯମୁନା ତାକୁ ନିଜର ମା' କରି ନେଇଛି । ପ୍ରକୃତରେ ସେ ଯମୁନାର ମା' ହୋଇଛି ନା ଅଭିନୟରେ ସଫଳତା ଅର୍ଜନ କରିଛି, ଠିକ୍ ବୁଝି ପାରୁନାହିଁ । ଏବେ ତା'ର ସମସ୍ତ ଚିନ୍ତା ଭାବନା କିପରି ଗୋଳମାଳିଆ ହୋଇ ଯାଉଛି । ସମସ୍ତେ ଯେପରି ତାକୁ ବ୍ୟସ୍ତ ବିବ୍ରତ କରି ପକାଉଛନ୍ତି । ଜେକବ୍ କହୁଛି କାର୍ଯ୍ୟ ହାସଲ କରିବାକୁ ଆଉ କେତେଦିନ ଲାଗିବ । ପ୍ରେମ୍ କାପୁରକୁ ରଣଜିତ୍ ଠାକୁର ବିବ୍ରତ କରୁଛି । ତାକୁ ଶୀଘ୍ର ଟଙ୍କା ନ ଦେଇପାରିଲେ ପ୍ରେମ୍‌ର ଜୀବନ ସଂକଟାପନ୍ନ ହେବାର ସମ୍ଭାବନା । ଏଣେ ଗଙ୍ଗା ତା'ପଛରେ ଛାଇ ପରି ଲାଗି ରହିଛି । ତା' ପ୍ରସ୍ତାବରେ ରାଜି ନହେଲେ ତା'ମାର ଜୀବନ ବଞ୍ଚେଇ ହେବନାହିଁ । ସମସ୍ତେ ଯେ ଯାହାର ସୁଖ ସୁବିଧା ଚିନ୍ତାରେ ମସ୍‌ଗୁଲ୍ ରହିଛନ୍ତି । କିନ୍ତୁ ତା'ର ସୁଖ ? ତା'ର ସୁଖ ଯେ ଏକମାତ୍ର ପ୍ରେମ କାପୁର । ପ୍ରେମ୍ କାପୁରକୁ ଛାଡ଼ି ସେ ବଞ୍ଚି ପାରିବ ନାହିଁ ! ତା'ର ସବଳ ବେଷ୍ଟନୀ ଭିତରେ ବନ୍ଦୀ ହେବା ପାଇଁ କେତକୀ ଜୀବନ ଉତ୍ସର୍ଗ କରିଛି । କିନ୍ତୁ ଏ କ'ଣ ହେଲା, ଏଣେ ପୁଣି ଯମୁନା

ଯେ ତାକୁ ନୂତନ ଏକ ଆସ୍ୱାଦରେ ପୁଲକିତ କରି ରଖିଛି । ଯମୁନାର ପାଦଶବ୍ଦ ଶୁଣିବା ପାଇଁ ସେ ଯେପରି ଅଧୀର ଆଗ୍ରହରେ ଅପେକ୍ଷା କରି ବସି ରହୁଛି । ସମସ୍ୟା ! ମହା ସମସ୍ୟାରେ ଛନ୍ଦି ହୋଇ ପଡୁଛି କେତକୀ ।

: ଦିଦିମଣି ! ଦିଦିମଣି !

: କେତକୀ ସୁଧାକରର ଡାକରେ ଯେପରି ଚେତନା ଫେରି ପାଇଲା । ମୁହଁ ଟେକି ଚାହିଁଲା ।

: ତମର ଫୋନ୍ ଆସିଛି ଦିଦିମଣି ।

: ମୋର ଫୋନ୍ ? ମୋତେ କିଏ ଫୋନ୍ କଲା ? କେତକୀ ଆଶ୍ଚର୍ଯ୍ୟ ହୋଇ ପଚାରିଲା ।

: ତମର ବଂଧୁ । ତା' ନାଁ ପଚାରିଲି କହିଲାନି । ସୁଧାକର ଉତ୍ତର ଦେଲା । କେତକୀ ଛୁଟିଗଲା ଯମୁନା ଘରକୁ । ରିସିଭର ଉଠାଇ କାନରେ ଦେଲା ।

: ହ୍ୟାଲୋ.........ଏଁ ପ୍ରେମ୍ । ତମେ ହଠାତ୍ ମୋ ଫୋନ୍ ନମ୍ବର ପାଇଲ କେଉଁଠୁ ?

ପ୍ରେମ୍‌ର ଗଳା ଶୁଣି କେତକୀର ସମସ୍ତ ଭାବଧାରା ପଙ୍ଗୁ ହୋଇଗଲା । ତା'ର ମନେ ହେଉଥିଲା ଯେପରି ହଠାତ୍ ସେ ପ୍ରେମ୍‌ର ବାହୁ ବନ୍ଧନରେ ବନ୍ଦୀ ହୋଇ ପଡ଼ିଛି । ତା' ଦେହ ସାରା ଏକ ଶୀତଳ ପ୍ରବାହ ଖେଳିଗଲା ।

ପ୍ରେମ୍ କହୁଥିଲା : ରାଣୀ, କେତେଦିନ ଆଉ ଅପେକ୍ଷା କରିବାକୁ ହେବ ? ମୁଁ ଯେ ଆଉ ପାରୁନାହିଁ । ବହୁ ବିନିଦ୍ର ରଜନୀ ଆକାଶକୁ ଚାହିଁ ଚାହିଁ କଟାଇବାକୁ ହେଉଛି । ତୁ କେବେ ଆସୁଛୁ ରାଣୀ ?

କେତକୀ ମୁହଁରୁ କଥା ବାହାରୁ ନଥିଲା । ପ୍ରେମ୍ ତାକୁ ଡାକୁଛି । ପ୍ରେମ୍ ତରଫରୁ ସେ ନିମନ୍ତ୍ରଣ ପାଇଛି । ଅଥଚ........ଅଥଚ..........

: ନୀରବ ହୋଇଗଲୁ ଯେ ରାଣୀ ! ନିକଟରେ ଦେଖା ହେବାର କ'ଣ କିଛି ସମ୍ଭାବନା ନାହିଁ ? ମୁଁ କିନ୍ତୁ ଆଜି ରାତିରେ ତୋତେ ଅପେକ୍ଷା କରିବି 'ସାକୀ'ରେ। ନିଶ୍ଚୟ ଆସିବୁ ।

କେତକୀ କିଛି ଉତ୍ତର ଦେବା ପୂର୍ବରୁ ଦେଖିଲା, ସୁଧାକର ଟ୍ରେ'ଟା ଧରି ସେଇ ଘରକୁ ପଶି ଆସୁଛି । କେତକୀ ଚଞ୍ଚଳ ହୋଇ ଉଠିଲା । ଅପର ପ୍ରାନ୍ତରୁ ପ୍ରେମ୍ କାପୁର କହୁଥିଲା : କ'ଣ ରାଣୀ କୁହରାଣୀ । ଆଜି ମୋର ଜନ୍ମଦିନ । ମୋ ଜନ୍ମଦିନର ରାତିଟା ସଫଳ କରିବା ପାଇଁ...........

ସୁଧାକର ଆଗେଇ ଆସୁଥିଲା ।

: ଆଚ୍ଛା, ଆଚ୍ଛା କହି କେତକୀ ରିସିଭରଟା ରଖିଦେଲା । ସୁଧାକର ବ୍ରେକ୍‌ଫାଷ୍ଟ ଟ୍ରେ'ଟା ଟେବୁଲ୍ ଉପରେ ଥୋଇ କହିଲା : ଆଜି ଏଇଠି ବସି ଖାଇଦିଅ । ନ ହେଲେ ସବୁ ଥଣ୍ଡା ହୋଇଯିବ ।

କେତକୀ କିନ୍ତୁ ନିଜେ ଥଣ୍ଡା ହୋଇ ଯାଇଥିଲା । ସେ ସୁଧାକର ମୁହଁକୁ କେବଳ ଚାହିଁଥିଲା । ସୁଧାକର କ'ଣ କହୁଛି, କାହିଁକି ଠିଆ ହୋଇଛି, କିଛି ସେ ବୁଝି ପାରୁ ନଥିଲା । ଚିନ୍ତା କରୁଥିଲା ପ୍ରେମ୍ କାପୁରର କଥା । ତା'ର ଆଜି ଜନ୍ମଦିନ । ତାକୁ ନିମନ୍ତ୍ରଣ

କିରଛି । ରାତିଟା ତା' ସହିତ କଟାଇବା ପାଇଁ ବ୍ୟାକୁଳ ହୋଇ ଡାକୁଛି । କେତକୀର ମନେ ହେଉଥିଲା, ସେ ସ୍ୱର୍ଗ ପାଇଛି ହାତରେ । ନିଶ୍ଚୟ ସେ ନିମନ୍ତ୍ରଣ ରକ୍ଷା କରିବ ।

କିନ୍ତୁ କିପରି ? ଆଜି ତ ରବିବାର ନୁହେଁ । ଆଜି ସେ ବାହାରକୁ ଯାଇ ପାରିବ ନାହିଁ । ଆଜି ବାହାରକୁ ଯିବାକୁ ସେଠ୍ ରତନମଲ ଅନୁମତି ଦେବେନାହିଁ । କିନ୍ତୁ ପ୍ରେମ୍ ଯେ ତାକୁ ନିମନ୍ତ୍ରଣ କରିଛି । ତା'ର ଆଜି ଜନ୍ମଦିନ । ଯେପରି ହେଉ......

: ଦିଦିମଣି ! ଦିଦିମଣି !! ସୁଧାକରର କର୍କଶ କଣ୍ଠସ୍ୱର ଶୁଣି କେତକୀ ଚମକି ଉଠିଲା । ଆକୁଳ ନୟନରେ ଚାହିଁଲା ସେ ସୁଧାକର ମୁହଁକୁ ।

: ଶୀଘ୍ର ଶୀଘ୍ର ଖାଇଦିଅ ଦିଦିମଣି । ସବୁ ଥଣ୍ଡା ହେଇଯାଉଛି । ତା'ଛଡ଼ା ଛୋଟ ଦିଦିମଣିକୁ ଆଣିବା ବେଳ ହୋଇଯିବ ଯେ !

କେତକୀ କିନ୍ତୁ ସେମିତି ନୀରବରେ ବସିଥିଲା । ଯେପରି କେଉଁଥିରେ ଆଜି ତା'ର ଆଗ୍ରହ ନାହିଁ । ସୁଧାକର କିନ୍ତୁ ଏତେ ନିର୍ବିକାର କେବେ ଦେଖି ନଥିଲା କେତକୀକୁ ।

: କ'ଣ ହୋଇଛି ଦିଦିମଣି ! ତମ ଦେହ ଭଲ ନାହିଁ ନା କ'ଣ ?

: ମୋ ଦେହ ଭଲ ଅଛି ସୁଧାକର, କିନ୍ତୁ ମୋ ମା' ଖୁବ୍ ଅସୁସ୍ଥ । ଏଇକ୍ଷିଣା ଯୋଉ ଫୋନ୍ ଆସିଥିଲା, ମୋର ବଂଧୁଟି ସେଇ କଥା କହିଲା । ମା' କୁଆଡ଼େ ମୋତେ ସବୁବେଳେ ଖୋଜୁଛି । ମୋତେ କିଛି ଭଲ ଲାଗୁନାହିଁ ସୁଧାକର । କେତକୀ ସ୍ୱର ନିସ୍ତେଜ ହୋଇ ପଡ଼ିଥିଲା ।

: ତା'ହେଲେ ତମେ ଯାଅ। ମା'ଙ୍କୁ ଦେଖି ଆସିବ ।

: କିନ୍ତୁ ଯମୁନା...........

: ଦିନ ଅଧକର କଥା। ଯମୁନାକୁ ମୁଁ ସମ୍ଭାଳି ନେବି । ମାଲିକଙ୍କୁ କହି ଛୁଟି ନେଇ ଚାଲିଯାଅ ।

: ମାଲିକ ଯଦି ନ ଛାଡ଼ନ୍ତି ?

: ଛାଡ଼ିବେ ନାହିଁ, ମାନେ ? ତାଙ୍କର ତ ପୁଣି ଦିନେ ମା' ବାପା ଥିଲେ । ସେ କଥା ମୁଁ ବୁଝିବି । ତମେ କେତେବେଳେ ଯିବାକୁ ଚାହୁଁଛ ଦିଦିମଣି ?

: ମୁଁ ଫୋନ୍‌ରେ କହିଦେଇଛି ତାଙ୍କୁ ରାତିକି ଯିବି ।

: ତା'ହେଲେ ତ କିଛି ଅଡୁଆ ନାହିଁ । ତମେ ଛୋଟ ଦିଦିମଣିଙ୍କି ଖୁଆଇ ପିଆଇ ବାହାରି ଚାଲିଯିବ । ତା'ପରେ ଯାହା କରିବା କଥା ମୁଁ କରିବି । ଖାଇଦେଲ । ଶୀଘ୍ର ଶୀଘ୍ର ଖାଇଦିଅ । ମୋର ତେଣେ ଦୁନିଆ ଯାକର କାମ ପଡ଼ିଛି ।

: କିନ୍ତୁ ସୁଧାକର, ସେଠ୍‌ଜୀ ଛୁଟି ଦେବେଟି ।

: କହିଲି ତ ସେ ଦାୟିତ୍ୱ ମୋର । ତମେ ମନ ଖରାପ କରନାହିଁ । ମା'ଙ୍କର କିଛି ହୋଇନାହିଁ । ଯେତେହେଲେ ମା'ତ ! ସବୁବେଳେ ତାଙ୍କର ପୁଅଝିଅଙ୍କ କଥା ମନେପଡ଼େ । ମୋରି ମା' ମରିବା ଆଗରୁ ମୋତେ କେତେ ଯେ ଖୋଜିଛି ଦିଦିମଣି, ତମେ ଚିନ୍ତା କରି ପାରିବ ନାହିଁ ।

କେତକୀ ମନେ ମନେ ଟିକିଏ ଆଶ୍ୱସ୍ତ ହେଲା । ଯାହାହେଉ ବାଟ ଗୋଟାଏ ମିଳିଛି । ସୁଧାକର ଇଚ୍ଛାକଲେ ଛୁଟି ଆଜି ରାତିଟା ମିଳିଯିବ । ଆଃ.........ପ୍ରେମ । ତମେ ଯେ ମୋତେ କେତେ ଭଲପାଅ ! ପ୍ରେମ୍‌ହିଁ ଏକମାତ୍ର ଲୋକ, ଯାହାକୁ ସେ

ଜୀବନସାଥୀ କରିପାରେ । ପ୍ରେମ୍‌କୁ ନିଜର କରିବା ପାଇଁ ତାକୁ ଯଦି ଜୀବନ ଦେବାକୁ ହୁଏ, ତା'ହେଲେ ସେ ପଛେଇବ ନାହିଁ । ପ୍ରେମ୍‌ର ବାହୁବନ୍ଧନ ଭିତରେହିଁ ତ କେତକୀର ସ୍ୱର୍ଗ ଲୁଚି ରହିଛି ।

କେତକୀର ଆଜି ଯେପରି ଆଉ କେଉଁଥିରେ ଆଗ୍ରହ ନାହିଁ । ଖାଇବା, ସ୍କୁଲକୁ ଯିବା, ଯମୁନା ସହିତ ଲୁଚକାଳି ଖେଳିବା ସବୁ ସେ ଭୁଲି ଯାଇଛି । କିନ୍ତୁ ପ୍ରେମ୍ କାପୁରକୁ ଚିରସାଥୀ କରିବା ପାଇଁ ହେଲେ ଯେଉଁ ସବୁ ସାମଗ୍ରୀର ପ୍ରୟୋଜନ ସେ ଗୁଡ଼ିକ ତ ସଂଗ୍ରହ କରିବାକୁ ହେବ । ପ୍ରଥମ ହେଲା ଟଙ୍କା । ଅଢ଼େଇଲକ୍ଷ ଟଙ୍କା ତ ନିଶ୍ଚୟ ପ୍ରୟୋଜନ, ତା'ଛଡ଼ା ଘର ସଂସାର କରିବା ପାଇଁ, ସୁଖରେ ଜୀବନ ଯାପନ କରିବା ପାଇଁ ଆହୁରି ଅନେକ ଅନେକ ଟଙ୍କାର ପ୍ରୟୋଜନ । ସେତେ ଟଙ୍କା କେତକୀ ପାଇବ କେଉଁଠୁ ? ଲକ୍ଷ ଲକ୍ଷ, ଅନେକ ଲକ୍ଷ ।

କେତକୀ ଦେଖିଲା ଗଙ୍ଗା ହସି ହସି ତା'ରି ଆଡ଼କୁ ଆଗେଇ ଆସୁଛି ।

ହଠାତ୍ କେତକୀ ମନରେ କିପରି ଏକ ଘୂର୍ଣ୍ଣିବାତ୍ୟା ବହିଗଲା । ସେତିକିରେ ଖାଇବା ଶେଷକରି ସେ ଉଠି ପଡ଼ିଲା । ହସି ହସି ଗଙ୍ଗା ଆଡ଼କୁ ଆଗେଇ ଯାଉ ଯାଉ କହିଲା : କ'ଣ ତମ କେତକୀ ଅପା ତମକୁ ସ୍ନେହ କରେଟି !

ଗଙ୍ଗା ହସିଲା, ତା'ର ଆଖିରେ ସେହି ବ୍ୟାକୁଳ ଚାହାଣି ସେମିତି ଲାଗି ରହିଥିଲା । କିନ୍ତୁ ସେ ଚାହାଣି ସହିତ ମନର ଯେ ଆକାଶ ପାତାଳ ତଫାତ୍ କେତକୀ ଅନେକ ପରେ ବୁଝି ପାରିଥିଲା ।

: ତମ ମା' କିପରି ଅଛନ୍ତି ?

: କାଲିଠାରୁ ଟିକେ ଭଲ ଅଛନ୍ତି କେତକୀ ଅପା, ମୋ ମା'କଥା ତମଛଡ଼ା ଏ ଘର ଭିତରେ ଆଉ କେହି ପଚାରନ୍ତି ନାହିଁ । କୁହତ କେତକୀ ଅପା, ଦୁଃସମୟରେ କେହି ଜଣେ ସହାନୁଭୂତି ନ ଦେଖାଇଲେ ମନରେ ସାହସ ଆସେ ?

କେତକୀ ଗଙ୍ଗାକୁ ଧରି ଧୀରେ ଧୀରେ ନିଜ ଘର ଆଡ଼କୁ ଆଗେଇ ଯାଉଥିଲା ।

: ହଁ ଗଙ୍ଗା । ମଣିଷ ମଣିଷର ସ୍ନେହ ସହାନୁଭୂତି ଟିକିଏ ଚାହେଁ । ତା'ନହେଲେ ଦମ୍ଭ ତା'ର ଚୂନା ହୋଇଯାଏ । କୁହ, ଆଉ ତମର ସବୁ ଖବର କ'ଣ ? କେତକୀ ପଚାରିଲା ।

: ଖବରତ ସେଇ ଗୋଟିଏ କେତକୀ ଅପା । ତମେ ଭାବି ଚିନ୍ତି ମୋତେ ଉତ୍ତର ଦେବ । ତମେ ଯଦି ଆମ ସହିତ ସହଯୋଗ କର, ତମେ ଅନେକ ଲାଭବାନ୍ ହେବ । ବିଶ୍ୱାସ କର କେତକୀ ଅପା, ସେ ଅମାପ ଧନ ଭଣ୍ଡାରରୁ ତମେ ମନଇଚ୍ଛା ଗୋଟେଇ ନେଲେ ବି ସରିବ ନାହିଁ ।

: ହୁଁ, କେତକୀ ଟିକିଏ ନୀରବ ହୋଇ ସୋଫା ଉପରେ ବସିଲା । ଆଖି ବୁଜି କ'ଣ ଚିନ୍ତା କଲା । କିଛି ସମୟ ପରେ ଧୀରେ ଧୀରେ କହିଲା : ଜାଣ ଗଙ୍ଗା, କୌଣସି ଗୋଟାଏ କାମ କରିବାକୁ ହେଲେ ଅନେକ କଥା ଭାବି ଚିନ୍ତି ଆଗେଇବାକୁ ହୁଏ । ତା'ଛଡ଼ା ମୋତେ ସବୁବେଳେ ବଙ୍କା ବାଟରେ ଗତି କରିବାକୁ ହେଉଛି । ତେଣୁ କ'ଣ କରିବାକୁ ହେବ, କିପରି କାର୍ଯ୍ୟରେ ତମେମାନେ ମୋର ସାହାଯ୍ୟ ସହଯୋଗ ଲୋଡୁଛ, ସେ ସମ୍ବନ୍ଧରେ ଟିକିଏ ସୂଚନା ନ ପାଇଲେ ମୁଁ ମନସ୍ଥିର କରି ପାରୁନାହିଁ । ଟଙ୍କା ମୋର

ଦରକାର ଥାଇପାରେ, ତା'ବୋଲି ଜାଣୁ ଜାଣୁ ତ ହାଣ ମୁହଁରେ ଯାଇ ଠିଆ ହୋଇ ପାରିବି ନାହିଁ ?

: ନା କେତକୀ ଅପା । ତମକୁ ଆମେ ହାଣ ମୁହଁକୁ ପଠାଇବୁ ଏପରି କଥା ତମେ କାହିଁକି ଭାବୁଚ । କାମଟା କରି ପାରିଲେ ଅତି ସହଜ । ଦିହରେ ଟିକିଏ ଆଞ୍ଚ ବି ଲାଗିବ ନାହିଁ । ଖାଲି ଟିକିଏ ଆତ୍ମୀୟତାର ପରିଚୟ ।

: ଆତ୍ମୀୟତା ! ମାନେ ? କାହା ସହିତ ଆତ୍ମୀୟତା ।

ଗଙ୍ଗା ହସିଲା । ହସରେ ଭରି ରହିଥିଲା ଏକ ନୂତନ ଅସ୍ୱାଦ । କେତକୀ ଏ ହସ ଆଗରୁ କେବେ ଗଙ୍ଗା ମୁହଁରେ ଦେଖି ନଥିଲା । କିପରି ଲାଜୁରା, ଲାଜୁରା ଇଙ୍ଗିତ ପୂର୍ଣ୍ଣ ।

: କେତକୀ ଅପା, ତମେ ସବୁ ବୁଝିପାର । ସବୁ ବୁଝିପାରି ଯଦି ଅବୁଝା ହୁଅ, ମୁଁ ତ ତମଠାରୁ ବୟସରେ ଅନେକ ଛୋଟ । ତମକୁ କ'ଣ ବୁଝେଇବି ! ଗଙ୍ଗାର ଇଙ୍ଗିତ କେତକୀ ଅନୁଭବ କଲା ।

: ହୁଁ, ତା'ହେଲେ ତମେ କହୁଛ ଯାହାର ଲକ୍ଷ ଲକ୍ଷ ଟଙ୍କା ଆମେ ହାତପଇଠ କରିବାକୁ ଚାହାନ୍ତି ତା ସହିତ ଆହୁରି ଗଭୀର ଆତ୍ମୀୟତା କରିବାକୁ ପଡ଼ିବ ।

: ତମେ ତ ସବୁ ବୁଝ କେତକୀ ଅପା ।

: ଧରିନିଅ ତାଙ୍କ ସହିତ ଆତ୍ମୀୟତା ମୋର ଗଭୀରତର ହୋଇଗଲା । ତା'ପରେ?

: ତା'ପରେ କାମ ହାସଲ କରିବା ଆମ ପକ୍ଷରେ ସହଜରୁ ସହଜତର ହୋଇ ଉଠିବ ।

: କିନ୍ତୁ କାମଟା କ'ଣ ? କାମଟା ସମ୍ବନ୍ଧରେ ମୁଁ ଟିକେ ନ ଜାଣିଲେ କିଛିତ କରି ପାରିବି ନାହିଁ ।

: ସବୁ କଥା ତମକୁ କୁହା ହେବ କେତକୀ ଅପା । ତମେ ଆଗ ସମ୍ମତି ଦିଅ । ଆମ ସହିତ ତମେ ଅଛ ଏବଂ ଆମ ଦଳରେ ଜଣେ ହୋଇ ତମେ କାମ କରିବ ।

କେତକୀ ଆଖିବୁଜି ଟିକିଏ ଚିନ୍ତାକଲା । କହିଲା : ହଁ ହଁ ତମ ଦଳର ହୋଇ କାମ କରିବି । କିନ୍ତୁ କ'ଣ କରିବାକୁ ହେବ ନ କହିଲେ............

: କହିଲିତ ସବୁକଥା ତମକୁ କହିବି କେତକୀ ଅପା । ସୁବିଧା ଦେଖି ଆମ ପ୍ଲାନ ପ୍ରୋଗ୍ରାମ କଥା ସବୁ ତମକୁ ଜଣେଇବି । ତମେ ରାଜି ହେଇଚ, ତା'ହେଲେ ଧରିନିଅ ଆମର ବିଜୟ ସୁନିଶ୍ଚିତ ।

: ନା ଗଙ୍ଗା, ମୋତେ ଆଜି ଏହି ମୁହୂର୍ତ୍ତରେ ସବୁ କଥା କହିବାକୁ ହେବ । ପିଲାଙ୍କୁ ଭଣ୍ଡେଇଲା ପରି ରୋଜ୍ ରୋଜ୍ ମୋ କାନ ପାଖରେ ଭଣ ଭଣ ହୋଇ ଚାଲିଯିବାଟା ମୋତେ ଭଲ ଲାଗୁନାହିଁ । ତମେ କୁହ ମୋତେ କ'ଣ କରିବାକୁ ହେବ ।

କେତକୀ ଆଖିର ଚାହାଣୀ ଜଳି ଉଠିଲା । କଣ୍ଠସ୍ୱର ତୀକ୍ଷଣ୍ ହୋଇ ପଡ଼ିଥିଲା । ଗଙ୍ଗା ଅନୁଭବ କଲା, ନା ଏହାପରେ ସବୁକଥା ଫିଟେଇ ନ କହିଲେ ହୁଏତ ସୁଯୋଗ ବିପଥଗାମୀ ହେବ ।

ଗଙ୍ଗା ଉଠିଯାଇ ଘରର କବାଟ ଭିତରୁ ବନ୍ଦ କରିଦେଇ ଆସିଲା । ଧୀର ପଦଚାଳି ଆସି କେତକୀ ସାମ୍ନାରେ ବସିପଡ଼ି ବାଳିକା ସୁଲଭ ହସ ଟିକକ ମୁହଁରେ ଫୁଟାଇ

କହିଲା : ତମେ ରାଗନି କେତକୀ ଅପା । ଏହା ଛଡ଼ା ମୋର ଅନ୍ୟ ଉପାୟ ନାହିଁ । ମା' ଅସୁସ୍ଥ। ମୁଁ ଅସହାୟ । ସମସ୍ତେ ଭାବୁଛନ୍ତି ଆମେ ମା' ଝିଅ ଖାଇ ପିଇ ମହା ଆରାମରେ ଅଛୁ । କିନ୍ତୁ କେତକୀ ଅପା, ତମେ ଯଦି ଆମ ଜୀବନ ଧାରଣର ମାନ କଥା ଶୁଣିବ ତେବେ ତମ ମନ ବି ବିଦ୍ରୋହୀ ହୋଇ ଉଠିବ । ମୁଁ ଗୋଟିଏ ହତଭାଗୀ କେତକୀ ଅପା, ସୁନାର ଚାମଚ ମୁହଁରେ କାମୁଡ଼ି ଜନ୍ମ ହୋଇଥିଲି, କିନ୍ତୁ ଦାନ୍ତ ଘଷିବାକୁ କୋଇଲା ଖଣ୍ଡେ ବି ମିଳୁନାହିଁ । ଛାଡ଼, ସେ ସବୁ ଭାଗ୍ୟର କଥା ।

ମୁଁ ତମପାଇଁ ଯେଉଁ ପ୍ଲାନ୍ ପ୍ରୋଗ୍ରାମ କଥା କହୁଥିଲି କେତକୀ ଅପା, ସେ ସମ୍ବନ୍ଧରେ ତମେ କିଛି ଅନୁମାନ କରିଥିବ । ଆମରି ବଡ଼ବାପାଙ୍କ ଲୁହା ସିନ୍ଦୁକରୁ କିଛି କଳାଧନ ଖାଲି କରିବା ଆମର ହେବ କାମ । ତମେ ଜାଣ କି ନାହିଁ, ବଡ଼ ବାପାଙ୍କର ଏହି କୋଠା ଭିତରେ ଗୋଟାଏ ଷ୍ଟ୍ରଙ୍ଗ୍ ରୁମ୍ ଭିତରେ କେତେଗୁଡ଼ିଏ ଲୁହା ସିନ୍ଦୁକ ଅଛି । ସେଗୁଡ଼ିକ ଅକଳନ ଧନ ଭଣ୍ଡାର । ସେଠି କରେନ୍‌ସି ନୋଟ୍‌ଠାରୁ ଆରମ୍ଭକରି ମୂଲ୍ୟବାନ୍ ଧାତୁମାନ ନିରାପଦରେ ଆତ୍ମଗୋପନ କରି ରହିଛନ୍ତି । ସେହି ସିନ୍ଦୁକ ଭିତରୁ ଗୋଟିଏ ଆମକୁ ଖୋଲିବାକୁ ହେବ । ବୁଝିଲ କେତକୀ ଅପା ?

କେତକୀ ଆଖିର ଦୃଷ୍ଟି କିପରି ଶୀତଳ ହୋଇ ଯାଇଥିଲା । ତା' ଶ୍ରବଣ ଶକ୍ତି ଯେପରି ନଷ୍ଟ ହୋଇ ଯାଇଥିଲା । ସେ ସବୁ ଶୁଣି କିଛି ନ ଶୁଣିଲା ପରି ବିଳାପ କରି ଉଠିଲା: କାହା ଷ୍ଟ୍ରଙ୍ଗ୍‌ରୁମ୍ କଥା କହୁଛ ?

: କେତକୀ ଅପା ତମେ ଡରି ଯାଉଛ । କିନ୍ତୁ ମୁଁ କୁହେ ଏଥିରେ ଡରିବାର ତୁମର କିଛିନାହିଁ । ମୁଁ ଜାଣେ ବଡ଼ବାପାଙ୍କର ଷ୍ଟ୍ରଙ୍ଗ୍‌ରୁମ୍ ବଡ଼ ବିପଦ ସଂକୁଳ । ତା'ଭିତରେ ଯେ ପ୍ରବେଶ କରିବାକୁ ଚେଷ୍ଟା କରିବ, ସେ ଆଉ ଜୀବନ ଧରି ଫେରିବ ନାହିଁ । କିନ୍ତୁ ଏ ସବୁ ଚିନ୍ତା ଭାବନା ଭୁଲ୍ । ଷ୍ଟ୍ରଙ୍ଗ୍‌ରୁମ୍ ଭିତରେ ପ୍ରବେଶ କରିବାର ସହଜ ସୁଗମ ପଥ ମୋତେ ଜଣା ଅଛି । କିନ୍ତୁ ମୋ ପାଖରେ ନାହିଁ ସେହି ଚାବି ତିନୋଟି । ଗୋଟିଏ ଷ୍ଟ୍ରଙ୍ଗ୍‌ରୁମ୍ ଖୋଲିବାର, ଅନ୍ୟ ଦୁଇଟି ଲୁହା ସିନ୍ଦୁକର । ଷ୍ଟ୍ରଙ୍ଗ୍‌ରୁମ୍ କିପରି ଖୋଲିବ, କିଏ ଖୋଲିବ ସେ ସବୁ ଚିନ୍ତା ତମର ନ କଲେ ଚଳିବ ।

ତଥାପି କେତକୀର ଜଡ଼ତା କଟି ନଥିଲା । ସେ ସେହିପରି ଶୀତଳ ଦୃଷ୍ଟିରେ ଚାହିଁଥିଲା ଗଙ୍ଗା ମୁହଁକୁ । ସେଠ୍ ରତନମଲଙ୍କର ଷ୍ଟ୍ରଙ୍ଗ୍‌ରୁମ୍ ସମ୍ବନ୍ଧରେ କେତକୀ ମନରେ ଏକ ଭୟାବହ ଆଶଙ୍କା ଥିଲା । କାରଣ ଦିନେ ଯମୁନା ତାକୁ ଟାଣି ଟାଣି ନେଇ ଯାଇଥିଲା ସେହି ଷ୍ଟ୍ରଙ୍ଗ୍‌ରୁମ୍ ପାଖକୁ । ସେତେବେଳେ ସେଠ୍ ରତନମଲ ଷ୍ଟ୍ରଙ୍ଗ୍‌ରୁମ୍‌ରୁ ବାହାରି ଆସୁଥିଲେ । ସେ ସାମ୍‌ନାରେ କେତକୀକୁ ଦେଖି ଟିକିଏ ଶଙ୍କି ଯାଇଥିଲେ । କିନ୍ତୁ ଜାଣିପାରିଲେ କେତକୀର  ଏଥିରେ କିଛି ଦୋଷ ନାହିଁ । ଯମୁନା ତାକୁ ଟାଣି ଟାଣି ଏ ଘରକୁ ଘେନି ଆସିଛି । ସେ ଟିକିଏ ହସିଦେଲେ। କହିଲେ : ତମେ ଯେତେବେଳେ ଏ ଘରର ଜଣେ ହୋଇ ରହିଲଣି, ଦିନେ ନା ଦିନେ ଏ ଘର ସମ୍ବନ୍ଧରେ ତମେ ଆଗ୍ରହୀ ହେବ । ତମ ମନରେ ହୁଏତ ପ୍ରଶ୍ନ ଜାଗିବ ଏ ଘରଟା ସବୁବେଳେ ବନ୍ଦ ହୋଇ ରହିଛି କାହିଁକି ? ତମର କୌତୂହଳ ନିଶ୍ଚୟ ବଢ଼ିବ । କିନ୍ତୁ ମୁଁ ତମ କୌତୂହଳ ଆଜି ମେଣ୍ଟେଇ ଦେଉଛି । ଏ ଘରଟି ହେଉଛି ମୋର ଷ୍ଟ୍ରଙ୍ଗ୍‌ରୁମ୍ ଏହା ଭିତରେ ଆମ ପରିବାରର ଏବଂ କମ୍ପାନୀର ଯାବତୀୟ ମୂଲ୍ୟବାନ୍ ପଦାର୍ଥ ଓ କାଗଜପତ୍ର ରଖା ହୋଇଛି । ସେଗୁଡ଼ିକ

ଯେପରି ନିରାପଦରେ ସଂରକ୍ଷିତ ହୁଏ, ସେଥିପାଇଁ ଯାବତୀୟ ନିରାପତ୍ତାର ବ୍ୟବସ୍ଥା ଏଠାରେ ହୋଇଛି । ହାଇଭୋଲ୍‌ଟେଜ୍ ବିଦ୍ୟୁତ୍ ହେଉଛି ଏହାର ପ୍ରଧାନ ପ୍ରହରୀ । କେହି ଯଦି ହଠାତ୍ ଯାଇ ଷ୍ଟ୍ରଙ୍ଗ୍‌ରୁମ୍ ଖୋଲିବା ପାଇଁ ଲୁହାଦରଜାରେ ହାତ ଦିଏ, ସେ ଆଉ ପ୍ରାଣ ଘେନି ଫେରିବ ନାହିଁ ।

ସେଠ୍ ରତନମଲ ଷ୍ଟ୍ରଙ୍ଗ୍‌ରୁମ୍‌ରୁ ବାହାରକୁ ବାହାରି ଆସିବା ମାତ୍ରକେ ଲୁହା ଦରଜାରେ ନାନା ରଙ୍ଗର ବୈଦ୍ୟୁତିକ ଆଲୋକ ଜଳି ଉଠିଲା ।

ସେଦିନ କେତକୀ ବୁଝି ପାରିଥିଲା, ଏଇ ଘରଟି ହେଉଛି ସେଠ୍ ରତନମଲଙ୍କର ଧନ ଭଣ୍ଡାର । ସେଦିନ ଆଉ ତା'ମନରେ କୌଣସି ଭାବାନ୍ତର ସୃଷ୍ଟି ହୋଇ ନଥିଲା । କିନ୍ତୁ ସେହି ଷ୍ଟ୍ରଙ୍ଗ୍‌ରୁମ୍‌ର ଚେହେରା ତା' ମନରେ କିପରି ଏକ ଆତଙ୍କ ସୃଷ୍ଟି କରିଥିଲା । କାରଣ ସେଠାରେ ସେ ଦୁଇ ତିନି ମିନିଟ୍ ଠିଆ ହୋଇ ଦେଖିଥିଲା, ସେଠ୍ ରତନମଲ କିପରି କାନ୍ଥର ସୁଇଚ୍ ଟିପି, ଘର ଭିତରର ଆସବାବ୍ ପତ୍ର ଏପାଖ ସେପାଖ କରୁଛନ୍ତି ଏବଂ ଲୁହା କବାଟକୁ ବନ୍ଦ କରୁଛନ୍ତି । ଆଜି ସେ ଷ୍ଟ୍ରଙ୍ଗ୍‌ରୁମ୍ ଭିତରେ ପ୍ରବେଶ କରିବାର ପ୍ରସ୍ତାବ ଗଙ୍ଗା ମୁହଁରୁ ଶୁଣି ଦେହ ତା'ର ଶୀତେଇ ଉଠିଥିଲା ।

: କ'ଣ ପଥର ପାଲଟି ଗଲ ନା କ'ଣ କେତକୀ ଅପା ! ତମଭଳି ଗୋଟିଏ ଝିଅ, ଯେ ବ୍ୟାଙ୍କ ଡକେଇତିରେ ମୁଖ୍ୟ ଭୂମିକା ଗ୍ରହଣ କରିପାରେ, ସିଏ ଏଇ ସାମାନ୍ୟ ଷ୍ଟ୍ରଙ୍ଗ୍‌ରୁମ୍ କଥା ଶୁଣି....

: ହଁ, ମୁଁ ଡରି ଯାଇଛି ଗଙ୍ଗା । ଏ ଘର ଉପରେ ମୋର ଗୋଟାଏ ମୋହ ଜମିଗଲାଣି । ଯମୁନା ବିଚାରି ତ ଶିଶୁ, ସେ ବା କ'ଣ ବୁଝେ କୂଟ କପଟ କଥା । ତେବେ ଏଇଟା ଠିକ୍ ଯମୁନା ମୋର ଝିଅ ନୁହେଁ କି ମୁଁ ତା'ର ମା' ନୁହେଁ । ମୋତେ ଖାଲି ଅଭିନୟ କରିଯିବାକୁ ହେବ । ଜୀବନ ଭରି ହୁଏତ ମୁଁ ଅଭିନୟ କରିଯିବି । ଏଥର ତମ କଥା କୁହ ଗଙ୍ଗା । ମୁଁ ଶୁଣେ, ମନଦେଇ ଶୁଣେ ।

ଗଙ୍ଗା ପୁଣି ହସି ଦେଲା । ସେହି ଶିଶୁ ସୁଲଭ ହସ, ହଁ କେତକୀ ଅପା ତମେ ଆଗରୁ ସବୁ ଶୁଣିନେବା ଭଲ । ସେଥିପାଇଁ ତୁମକୁ ପ୍ରସ୍ତୁତ ହେବାକୁ ହେବ । ଆମର ପ୍ରଥମ ପ୍ରୟୋଜନ ହେଉଚି ଚାବି ତିନୋଟି । ଏକ୍‌ରେ-ଷ୍ଟ୍ରଙ୍ଗ୍‌ରୁମ୍‌ର ମେନ୍ ଚାବି, ଦୁଇରେ ଲୁହା ସିନ୍ଦୁକର ଦୁଇଟି ଚାବି । ଷ୍ଟ୍ରଙ୍ଗ୍‌ରୁମ୍ ଭିତରେ ସର୍ବମୋଟ ତିନୋଟି ଲୁହା ସିନ୍ଦୁକ ଏବଂ ମେନ୍‌ଗେଟ୍‌ର ଚାବିଟି ସବୁବେଳେ ବଡ଼ବାପାଙ୍କ କୋଟ୍ ପକେଟରେ ଥାଏ । ସେ ଖୁବ୍ ସାବଧାନରେ ସେଇ ଚାବି ତିନୋଟିକୁ ସାଇତି ରଖନ୍ତି । ତମେ କେତକୀ ଅପା ସେ ଚାବି ତିନୋଟି ଉଠାଇ ଆଣି ପାରିବ ନାହିଁ । ଆଣିଲେ ଧରା ପଡ଼ିଯିବ ।

: ତେବେ ? କେତକୀ ଚମକି ପ୍ରଶ୍ନ କଲା ।

: ତମକୁ ସେହି ଚାବି ତିନୋଟିର ଛାଞ୍ଚ ଉଠାଇ ଆଣିବାକୁ ହେବ । ତମେ ଯେତେବେଳେ ବଡ଼ ବାପାଙ୍କର ଖୁବ୍ ଅତରଙ୍ଗ ହେବ, ସେ ତୁମକୁ ତାଙ୍କର କିଛି କିଛି ନିଜର କାମ କରିବାକୁ ପ୍ରଶ୍ରୟ ଦେବେ । ବିଶେଷ କରି ଅଫିସ୍‌ରୁ ଆସିଲା ପରେ ତାଙ୍କର ଜୋତା ଖୋଲିଦେବା, କୋଟ୍ ଓହ୍ଲେଇ ନେଇ ହାଙ୍ଗରରେ ଟଙ୍ଗାଇ ଦେବା । ଏଇ ଦୁଇଟି କାର୍ଯ୍ୟ ତାଙ୍କର କେହି କରିଦେଉ ମନ ପ୍ରାଣରେ ସେ ତାହା ଚାହାନ୍ତି । ବଡ଼ ମା' ବଞ୍ଚିଥିବା ବେଳେ ବଡ଼ ବାପାଙ୍କ ଅଫିସ୍ ଫେରିବା ବାଟ ଚାହିଁ ବସି ଥାଆନ୍ତି । ତମକୁ ପ୍ରଥମେ ଏଇ

ଦୁଇଟି କାର୍ଯ୍ୟ କରିବାର ଅଧିକାର ହାସଲ କରିବାକୁ ହେବ । ଗଙ୍ଗା କହିସାରି କେତକୀ ମୁହଁକୁ ଚାହିଁଲା ।

: ତା'ପରେ ? କେତକୀ ଶାନ୍ତ କଣ୍ଠରେ ପ୍ରଶ୍ନ କଲା ।

: ତା'ପରେ ? ତା'ପରେ ସବୁ ସହଜ । ବଡ଼ ବାପାଙ୍କ କୋଟ୍ ଖୋଲି ହାଙ୍ଗରରେ ଟଙ୍ଗେଇବା ଅବସରରେ ତମେ କୋଟ୍ ପକେଟରେ ହାତ ଭରିବ ! ତମକୁ 'ମୁଁ ପ୍ଲାଷ୍ଟିକ୍ ଅଫ୍ ପ୍ୟାରିସ୍'ରୁ ଟେଳାଏ ଦେଇଥିବି ତମେ ଗୋଟିଏ ଛାଞ୍ଚ ଉଠାଇ ଆଣିବ । ତିନିଦିନରେ ତିନୋଟି ଚାବିର ଛାଞ୍ଚ ଅତି ସହଜରେ ଉଠାଇ ଆଣି ପାରିବ । ଏତିକି ମାତ୍ର ତମର କାମ ।

: ସେଉଠୁଁ ?

: ଆଉ ଯାହା କରିବାର ଆମେ କରିବୁ । ତୁମେ ଇଚ୍ଛାକଲେ ସାହସ କରି ଷ୍ଟ୍ରଙ୍ଗ୍ ରୁମ୍‌ରେ ପଶିପାର । ଅଥବା...

ଦୂରରୁ ସୁଧାକରର ପାଟି ଶୁଣି ଦୁହେଁ ଚମକି ଉଠିଲେ । ଗଙ୍ଗା ଛୁଟିଯାଇ ଦରଜା ଖୋଲିଦେଲା ।

ସୁଧାକର ଚିତ୍କାର କରୁଥିଲା : ସ୍କୁଲକୁ ଯିବ ନାହିଁକି ଦିଦିମଣି । କେଇଟା ବାଜିଲାଣି ଖିଆଲ ଅଛିଟି ! ମା' ତମରି ଏକା ଅଛି ନା ଦୁନିଆରେ ଆଉ କାହାର ଅଛି । କିଛି ତ ଖାଇଲ ନାହିଁ । ବେଳ କାଳ ବି ଭୁଲି ଯାଉଚ । ଚଳିବ କିପରି ?

କେତକୀ ଦେଖିଲା ଏଗାରଟା ବାଜିବାକୁ ଆଉ ଦଶ ମିନିଟ୍ ବାକି । ଯମୁନାର ଛୁଟି ଏଗାରଟାରେ ।—

ଯମୁନା ସ୍କୁଲରୁ ଫେରି ଆସିଥିଲା । କେତକୀ ଯମୁନାକୁ ଖୁଆଇ ପିଆଇ ସାରି ଗେଲ କରୁଥିଲା । ଏ କେତେଦିନ ଭିତରେ ଯମୁନା ସତରେ ଖୁସିରେ ଅଛି। କେତକୀର କୋଳକୁ ସେ ନିଜର ମାତୃକୋଳ ବୋଲି ମାନି ନେଇଛି । ସେ ବୁଝି ପାରିନାହିଁ ତା'ର ନିଜ ମା'କୁ ସେ ଅନେକ ଦିନରୁ ହରେଇ ବସିଛି ବୋଲି ।

କେତକୀ କିନ୍ତୁ ବେଳେ ବେଳେ ଚିନ୍ତା କରୁଛି । ଯମୁନା ତା'ର ଝିଅ ନୁହେଁ । ସେ ଯମୁନାର ମା' ନୁହେଁ, କିନ୍ତୁ ଯମୁନା ପାଖରେ ସେ ଆଜି ବନ୍ଦିନୀ ଗୋଟିଏ ଶିଶୁ ହୃଦୟରେ କୌଣସି ମାୟା ବା ଛଳନା କିଛି ନାହିଁ । କିନ୍ତୁ କେତକୀ ? ସେ ସବୁ ଜାଣି ବି ଛଳନାର ଶୀର୍ଷ ଦେଶକୁ ଉଠିବାକୁ ଚେଷ୍ଟା କରୁଚି । ସେଠ୍ ରତନମଲ ବି ତାକୁ ବିଶ୍ୱାସ କରୁଛନ୍ତି । ଦିନକୁ ଦିନ ବିଶ୍ୱସ୍ତତା ତାଙ୍କର ବଢ଼ି ଉଠୁଛି । କେତକୀ ଲକ୍ଷ୍ୟ କରୁଚି ସେଠ୍ ରତନମଲ ଯମୁନା ପାଇଁ ଆଉ ଉଦ୍‌ବିଗ୍ନ ନୁହନ୍ତି । ସେ ନିଶ୍ଚିନ୍ତରେ ନିଜର କାମ ଦାମରେ ଲିପ୍ତ ରହି ପାରୁଛନ୍ତି । ବାହାରକୁ ଯାଇ ଦୁଇ ଚାରିଦିନ କଟାଇ ଆସି ପାରୁଛନ୍ତି । ବେଳେବେଳେ କେତକୀ ସହିତ ବସି ବସି ଗଳ୍ପ କରିପାରୁଛନ୍ତି । କେତକୀ ଯଦିଓ ତାଙ୍କ ଚାହାଣିରେ ଲାଳସାର । ଯେପରି କେତକୀଠାରୁ ଆହୁରି ଟିକେ କ'ଣ ଚାହୁଁଛନ୍ତି । କିନ୍ତୁ କ'ଣ ତାଙ୍କର ସେ ଚାହିଁବା ?

ଯମୁନା ଖଣ୍ଡେ ଦୂରରେ ବସି ଗୋଟିଏ ଜାପାନୀ କଣ୍ଢେଇରେ ଦମ୍ ଦେଇ

ନଚାଉଥିଲା ।

କେତକୀ ତାରି କୋମଳ ମୁଖ ମଣ୍ଡଳ ଆଡ଼େ ଚାହିଁ ଭାବୁଥିଲା, ସେ ବି ଦିନେ ଯମୁନା ପରି ନିର୍ଲୋଭୀ ଆଉ ନିର୍ମାୟା ଥିଲା । ଅବଶ୍ୟ ପିଲାଦିନ କଥା ତା'ର ମୋଟେ ମନେ ନାହିଁ । ବାବା ମା' କେହି ତା'ର ମନେ ପଡ଼ନ୍ତି ନାହାଁ କିନ୍ତୁ ସେ ବି ଦିନେ ଯମୁନା ବୟସର ଥିଲା । ଆଜି ଯମୁନା ଆଉ ତା'ଭିତରେ ଆକାଶ ପାତାଳର ପ୍ରଭେଦ । ସେ ଯମୁନାର ମା, ଆଉ କେତକୀ ଛଳନାମୟୀ !

ହସ ମାଡ଼ିଲା କେତକୀକୁ । ତା'ର ବା ଦୋଷ କ'ଣ ?

ଦୁନିଆତ ତାକୁ ସେହିପରି ଏକ ପଙ୍କିଳ ପଥରେ ଟାଣି ନେଉଛି, ତା'ର ସ୍ଥିତି ବଜାୟ ରଖିବା ପାଇଁ ବାଧ ହୋଇ ତାକୁ...........

ଯମୁନା ଚାହିଁ ଦେଖିଲା, ସେଠ୍ ରତନମଲ ଆସି ଝିଅ ପାଖରେ ଠିଆ ହୋଇ ତାକୁ ବିରକ୍ତ କରୁଛନ୍ତି । ତା'କଣ୍ଢେଇଟାକୁ ଟାଣି ନେଉଛନ୍ତି ।

କେତକୀ ଉଠିଗଲା ।

ଯମୁନା ରତନମଲଙ୍କ ହାତରୁ କଣ୍ଢେଇଟା ଛଡ଼େଇ ଆଣି ଛୁଟି ଆସି କେତକୀ କୋଳରେ ମୁହଁ ଗୁଞ୍ଜିଲା ।

ରତନମଲ କିଛି ସମୟ ଝିଅ ଆଡ଼େ ନିର୍ନିମେଷ ନୟନରେ ଅନାଇ ରହିଲେ । ତାଙ୍କର ମନେ ହେଲା ଯମୁନା ଗୋଟାଏ ନିର୍ଭୟ ଆଶ୍ରୟ ପାଇଛି ।

କେତକୀ ପଚାରିଲା : ଆପଣ ଆଜି ଅସମୟରେ ଚାଲି ଆସିଲେ ଯେ !

ରତନମଲ ହସିଲେ । କହିଲେ : ହଁ ଚାଲି ଆସିଲି । ଆଜି ଆଉ କାହିଁକି ତମକୁ ଦେଖିବାର ଲୋଭ ସମ୍ୱରଣ କରି ପାରିଲି ନାହିଁ ।

କେତକୀ ମୁହଁରେ ଏକ ଲାଜର ଆସ୍ତରଣ ଖେଳିଗଲା । ସେ ଆଉ କେଉଁଠି ମୁହଁ ଲୁଚେଇବାର ସୁବିଧା ନ ପାଇ କହିଲା  ଆପଣ ଯମୁନାକୁ ଦେଖିବାକୁ ଆସିଛନ୍ତି । ମିଛଟାରେ..........

ରତନମଲ କେତକୀ ପାଖକୁ ଆଗେଇ ଗଲେ । ଯମୁନା ମା' କୋଳରେ ମୁହଁ ଲୁଚେଇ ଠିଆ ହୋଇଥିଲା । ରତନମଲ କେତକୀ ପାଖକୁ ଲାଗିଯାଇ ତା' ମୁହଁରେ ହାତ ବୁଲେଇ ଦେଇ କହିଲେ : ସତରେ କେତକୀ, ତମେ ଆସିଲା ଦିନଠାରୁ ମୋ ଦେହ ମନରେ କିପରି ଏକ ଭାବାନ୍ତର ସୃଷ୍ଟି ହୋଇଛି ।

ରତନମଲଙ୍କ ସ୍ପର୍ଶ ପାଇ କେତକୀର ସର୍ବାଙ୍ଗରେ କିପରି ଏକ ଶିହରଣ ଖେଳିଗଲା । ତା'ର ମନେ ହେଲା ଏ ଦେହ ସ୍ପର୍ଶ କରିବାର ଅଧିକାର କେବଳ ପ୍ରେମ୍ କାପୁରର, ଆଉ କାହାରି ନୁହେଁ । ସେ ଭାବୁଥିଲା ରତନମଲଙ୍କର ଔଦ୍ଧତ୍ୟ ସେ ଭାଙ୍ଗିଦେବ । ସେ ସେଠାରେ ଚାକିରି କରୁଛି । ଯମୁନାର ସେ ଗଭର୍ଣ୍ଣେସ । ବାସ୍ ସେତିକି । ତା'ଠାରୁ ଅଧିକ କିଛି ଆଦାୟ କରିବାର ଅଧିକାର ସେ କାହାରିକୁ ଦେଇନାହିଁ । କିନ୍ତୁ ପର ମୁହୂର୍ତ୍ତରେ ତା'ର ମନେ ପଡ଼ିଲା ଗଙ୍ଗା କଥା । ସେଠ୍ ରତନମଲଙ୍କ ସହିତ ଆତ୍ମୀୟତା ଅର୍ଜନ କରିବାକୁ ପଡ଼ିବ ।  ଲକ୍ଷ୍ୟ ହାସଲ କରିବା ପାଇଁ ନିପୁଣା ଅଭିନେତ୍ରୀ ହେବାକୁ ହେବ ।

କେତକୀ ନୀରବରେ ଠିଆ ହୋଇଥିଲା । ସେଠ୍ ରତନମଲ ହୁଏତ ଆଉ କିଛି ପ୍ରଶ୍ରୟ ନ ପାଇ ଆରମ୍ଭ କଲେ : ସୁଧା କହୁଥିଲା ତମ ମା'ଙ୍କ ଦେହ ଖୁବ୍ ଅସୁସ୍ଥ ।

ତମେ ଆଜି ରାତିରେ ମା' ପାଖକୁ ଯିବାକୁ ଚାହୁଁଛ ।

କେତକୀ ଯେପରି ସମ୍ବିତ ଫେରି ପାଇଲା । କହିଲା : ହଁ ଖବର ପାଇଲି ମା' ମୋତେ ଖୋଜୁଛି ।

: ଠିକ୍ ଅଛି, ତମେ ଆଜି ରାତିରେ ଖାଇ ପିଇ ଚାଲିଯାଅ, ଦରକାର ହେଲେ ଗୋଟାଏ ଗାଡ଼ି ନେଇଯାଅ । କାଲି ସକାଳେ ଯମୁନା ସ୍କୁଲ ଯିବା ଆଗରୁ ଫେରି ଆସିବ ।

କେତକୀ ଆଖିରେ କୃତଜ୍ଞତା ଫୁଟି ଉଠିଥିଲା, ଯମୁନା କିପରି ପ୍ରତିବାଦ କରିଥିଲା : ନା ନା, ମା' ମୋତେ ଛାଡ଼ି କାହାରି ମା' ପାଖକୁ ଯାଇ ପାରିବ ନାହିଁ ।

ରତନମଲ କେତକୀ ମୁହଁକୁ ଓ କେତକୀ ରତନମଲଙ୍କ ମୁହଁକୁ ଚାହିଁ ହସି ଉଠିଥିଲେ ।

କେତକୀ କହିଲା : ନା ମୁଁ କୁଆଡ଼େ ଯିବି ନାହିଁ ମାମି, ତତେ ଛାଡ଼ି କୁଆଡ଼େ ଯିବି ନାହିଁ । ତୁ ତ ମୋ ମା'।

ଯମୁନା କେତକୀ ମୁହଁକୁ ଥରେ ଚାହିଁଲା ଓ ରତନମଲଙ୍କ ଆଡ଼େ ଚାହିଁ କିହିଲା : ତମେ ଅଫିସ୍ ଯିବନାହିଁ ଡାଡି । ଯାଅନା, ଆମେ ଖେଳିବୁ ।

ରତନମଲ କେତକୀ ଆଡ଼େ କିପରି କରୁଣ ଦୃଷ୍ଟିରେ ଚାହିଁ କହିଲେ : ଶେଷରେ ତମେ ମୋ ମା'କୁ ମୋ ଠାରୁ ଛଡ଼େଇ ନେଲ କେତକୀ !

କେତକୀ ରତନ ମଲଙ୍କ ହୃଦୟର ନିଭୃତ କୋଣର କ୍ଷୋଭ ବୁଝି ପାରିଲା । ସେ ଯମୁନାକୁ କଠିନ ଦୃଷ୍ଟିରେ ଚାହିଁ କହିଲା : ଛି ଡାଡିଙ୍କି ଏମିତି କହନ୍ତି ନାହିଁ ମାମି ।

ଯମୁନା ରତନ ମଲଙ୍କ ଛଳ ଛଳ ଆଖିଆଡ଼େ ମୁହୂର୍ତ୍ତେ ଚାହିଁ ତାଙ୍କ ଆଡ଼େ ଛୁଟିଯାଇ, ଦୁଇ ହାତରେ ଜାବୁଡ଼ି ଧରି କହିଲା: ତମେ ରାଗିଲ ଡାଡ଼ି !

ସେଠ୍ ରତନମଲ ଯମୁନାକୁ ଦୁଇ ହାତରେ ଉଠେଇ ନେଇ କୋଳରେ ଜଡ଼େଇ ଧରିଲେ । ଆଖିରେ ତାଙ୍କର ଲୁହ ଜକେଇ ଆସିଲା । ମୁହଁରୁ କଥା ବାହାରିଲା ନାହିଁ ।

କେତକୀ ଅଦୂରରେ ଠିଆ ହୋଇ ଅନୁଭବ କଲା, ରତନମଲ ବାହାରେ ଏକ ପ୍ରବଳ ପ୍ରତାପୀ ସେଠ୍ ରତନମଲ ହେଲେବି ନିଜ ସନ୍ତାନ ପାଖରେ ସେ କେଡ଼େ ଅସହାୟ । କେତେ ରୁଗ୍ଣ ।

ଏହିପରି ଏକ ମୁହୂର୍ତ୍ତରେ କେତକୀର ମନେ ହେଉଥିଲା, ସେ ସେଠାରୁ ଦୂରେଇ ଯିବ । ଏହିପରି ଏକ ଦୁର୍ବଳ ପିତା ଠାରୁ ସେ ତା ସନ୍ତାନର ସ୍ନେହରେ ଭାଗୀଦାର ହେବନାହିଁ । ନା ନା, ଯମୁନାକୁ ସେ ରତନମଲଙ୍କ କୋଳରୁ ଛଡ଼ାଇ ନେବାକୁ ଚାହେ ନାହିଁ । କିନ୍ତୁ.................

ଯମୁନା ସେଠ୍ ରତନମଲଙ୍କ କୋଳରେ ଥାଇ କେତକୀ ଆଡ଼େ ହାତ ବଢ଼ାଇଲା । କେତକୀ ଆଗେଇ ଗଲା ସେଇଆଡ଼େ । ରତନମଲଙ୍କ କୋଳରୁ କେତକୀ ହାତ ବଢ଼େଇ ଯମୁନାକୁ ନିଜ କୋଳକୁ ନେଲା, ଆଉଥରେ ସ୍ପର୍ଶ ପାଇଲା ସେ ସେଠ୍ ରତନମଲଙ୍କର । କିନ୍ତୁ ଯମୁନା ମୁହଁରେ ଚୁମ୍ବନ ଦେଇ କହିଲା : ଡାଡିଙ୍କୁ କହ ଆଜି ଶୀଘ୍ର ଶୀଘ୍ର ଅଫିସ୍‌ରୁ ଫେରିବେ ।

ଯମୁନା କହିଲା : ଡାଡି ଅଫସ୍‌ରୁ ଶୀଘ୍ର ଫେରିବ ।

ରତନମଲ ମୁଣ୍ଡ ହଲେଇ ସମ୍ମତି ଜଣେଇଲେ ।

ଯମୁନା ଓ କେତକୀ ରତନମଲଙ୍କ ଯିବା ପଥକୁ ଏକ ଲୟରେ ଚାହିଁ ରହିଥିଲେ ।

କେତକୀ ଯେତେବେଳେ ଯାଇ ସାକୀରେ ପହଞ୍ଚିଲା ସେତେବେଳେ ସାତଟା ବାଜି ଯାଇଥିଲା । କେତକୀ ମନରେ ଆନନ୍ଦର ବନ୍ୟା, ପ୍ରେମ୍‌ର ଆଜି ଜନ୍ମଦିନ । ସେ ତାକୁ ନିମନ୍ତ୍ରଣ କରିଛି । ଏହାଠାରୁ ସୁଦିନ ତା' ଜୀବନରେ ଆଉ କ'ଣ ଆସିପାରେ !

କେତକୀ ପ୍ରେମ୍ କାପୁରକୁ ତା' ଜନ୍ମଦିନରେ କ'ଣ ଉପହାର ଦେବ ସେଇକଥା ଭାବି ଭାବି ତା'ର ଅନେକ ସମୟ ନଷ୍ଟ ହୋଇଛି । ଦିନଟାଯାକ ସେ କେବଳ ଭାବିଚି ପ୍ରେମ୍ କାପୁର କଥା । ପ୍ରେମକୁ ସେ ପାଇବ, ନିଜର ପରି ପାଇବ । ସେତିକିତ କେତକୀର କାମ୍ୟ । ଏହାଠାରୁ ସେ ତା' ଜୀବନରେ ବିଶେଷ ଆଉ କିଛି ଆଶା କରି ପାରେନାହିଁ ।

କେତକୀ ପ୍ରଥମେ ଭାବିଥିଲା ସେଠ୍ ରତନମଲଙ୍କ ଗାଡ଼ିଟା ଧରି ସାକୀକୁ ଆସିବ । ସେଠ୍‌ଜୀ ମଧ ଅନୁମତି ଦେଇଥିଲେ, କିନ୍ତୁ ପରେ ସେ ମତ ବଦଳାଇଲା । ଗାଡ଼ିଟାକୁ ଯଦି 'ସାକୀ'ରେ କେହି ଦେଖେ, କଥା ଯଦି ସେଠ୍‌ଜୀଙ୍କ କାନଯାକେଯାଏ, ତା'ହେଲେ ଅସୁବିଧା ହେବ । ସେଇଥିପାଇଁ ସେ ଗାଡ଼ି ନ ନେଇ ଘରୁ ବାହାରି ଯାଇଥିଲା । ନିଉ ମାର୍କେଟ୍‌ରେ ତା'ର ସମୟ ନଷ୍ଟ ହେଲା ପ୍ରାୟ ଘଣ୍ଟାଏ । କ'ଣ ସେ ନେବ ପ୍ରେମ୍ ପାଇଁ ! ବୁଲି ବୁଲି ବହୁତ ଦେଖିଲା । ବହୁତ ଭାବିଲା । କିଛି ତା'ର ମନକୁ ପାଇଲା ନାହିଁ ଶେଷରେ ସେ କିଣିଲା ଗୋଟାଏ ମ୍ୟୁଜିକାଲ ସୁନ୍ଦର ଲାଇଟର୍, ଥୋଡ଼ାଏ ଗୋଲାପ ଏବଂ ଗୋଟାଏ 'ହାପି ବାର୍ଥଡ଼େ'କେକ୍ ।

କେତକୀ ସାକୀରେ ପହଞ୍ଚି ମନେ ହେଲା ଚାରିଆଡ଼ ଯେପରି ନୀରନ ନିଶ୍ଚଳ । ସେ ଧୀରେ ଧୀରେ ପାଦ ଚିପି ଚିପି ଉପରକୁ ଉଠିଲା । ତେବେ କ'ଣ ତା' ପ୍ରିୟତମର ଜନ୍ମଦିନ ସେଲିବ୍ରେଟ୍ କରିବା ପାଇଁ କେହି ଆୟୋଜନ କରି ନାହାନ୍ତି ? କେତକୀ ମନରେ ଦୁଃଖ ପାଇଲା । ଆଗାମୀ ବର୍ଷକୁ ସେ ତା' ପ୍ରିୟତମର ଜନ୍ମଦିନ ଖୁବ୍ ଆଡ଼ମ୍ବରରେ, ଧୁମ୍ ଧାମ୍ ସହକାରେ ପାଳନ କରିବ । ଏପରି ନୀରବତା ଭିତରେ କ'ଣ ଉତ୍ସବ ପାଳନ କରାଯାଏ !!

କେତକୀ ଧୀରେ ଧୀରେ ଯାଇ ନିର୍ଦ୍ଦିଷ୍ଟ ରୁମ୍ ଦୁଆରେ ପହଞ୍ଚିଲା । କାନଡେରି ଶୁଣିଲା । ନା ଗଭୀର ନୀରବତା । କ'ଣ କରୁଛି ପ୍ରେମ୍ ! ନୀରବରେ ଶୋଇ ଶୋଇ ତା'ର ଅସହାୟତାର କଥା ଚିନ୍ତା କରୁଛି ? ନା, ସେ ତାକୁ ଅସହାୟ କରି ଆଉ ବେଶି ଦିନ ରଖିବ ନାହିଁ । ତା' ପ୍ରିୟତମ, ତା' ପ୍ରାଣର ପ୍ରେମକୁ ସେ ଦୁନିଆ ଦରବାରରେ ବିପୁଳ ସମ୍ମାନ ଦେବ । ସେ ତାକୁ ପୃଥିବୀର ଏକ ଶ୍ରେଷ୍ଠ ମୁଷ୍ଟିଯୋଦ୍ଧା ରୂପେ ପରିଗଣିତ କରିବ । ସେଇ ହେବ ତା'ର ଏକମାତ୍ର ଧ୍ୟାନ ଧାରଣା । ସେଥିପାଇଁ ଯେତେ ଟଙ୍କା ଦରକାର, ଯେତେ ସୁଯୋଗ ସୁବିଧାର ପ୍ରୟୋଜନ ସବୁ ସେ ପ୍ରାଣ ଦେଇ ସଂଗ୍ରହ କରିବ ।

କେତକୀ ଏଥର ଆଉ ସ୍ଥିର ହୋଇ ଠିଆହୋଇ ପାରିଲା ନାହିଁ । ଦୁଆରେ ନକ୍ କଲା ! ଥରେ, ଦୁଇଥର, ତିନିଥର । କିନ୍ତୁ କେହି ତ ଦରଜା ଖୋଲିଲେ ନାହିଁ । ତେବେ କ'ଣ ପ୍ରେମ୍ ଘରେ ନାହିଁ । ତା'ପଥ ଚାହିଁ ଚାହିଁ କୁଆଡ଼େ ଚାଲି ଯାଇଛି ?

କେତକୀ ଆଉ ଆତ୍ମସମ୍ବରଣ କରି ପାରୁ ନଥିଲା । ସେ ବିବ୍ରତ ହୋଇ କବାଟରେ ଧକ୍କା ମାରିଲା । କବାଟ ଖୋଲିଗଲା । ତା'ହେଲେ ? କେତକୀ କ୍ଷିପ୍ର ପଦରେ ପଶିଗଲା ଘର ଭିତରକୁ । ଚାରିଆଡ଼େ ଅନ୍ଧକାର । ନିବିଡ଼ ଅନ୍ଧକାର । ପ୍ରେମ୍ ତା'ହେଲେ ଘରେ ନାହିଁ ? କେତକୀ ଧୀରେ ଧୀରେ ପାଦ ଚିପି ଚିପି ଆଗେଇ ଗଲା ପ୍ରେମ୍‌ର ଶୋଇବା ଘର ଆଡ଼କୁ । ଏକ କ୍ଷୀଣ ଆଲୋକର ଶିଖା ସେ ଦେଖିଲା ସେଠାରେ । ଘରର ଅନ୍ଧକାର ପରି କେତକୀ ମନଗହନରେ ଅନ୍ଧକାର ଘୋଟି ଯାଇଥିଲା । ସେ ପାଦ ଚିପି ଚିପି ପ୍ରେମର ଶୋଇବା ଘର ଆଡ଼କୁ ଆଗେଇଲା । କ'ଣ ଦେଖିବ ଯାଇ ସେଠାରେ ?

ଗୋଟିଏ ମହମବତି ଜଳୁଛି ଟେବୁଲ ଉପରେ । ଦୁଇଗ୍ଲାସ ପାନୀୟ ଭରା ହୋଇ ଥୁଆ ହୋଇଛି । ଆଉ ପ୍ରେମ୍ ? ବିଛଣା ଉପରେ ତଳକୁ ମୁହଁ ମାଡ଼ି ଶୋଇଛି । ଯେପରି କରୁଣର ଏକ ପ୍ରତିମୂର୍ତ୍ତି ।

କେତକୀ ସର୍ବାଙ୍ଗରେ କିପରି ଏକ ଶୈତ ପ୍ରବାହ ଖେଳିଗଲା । ଏତେ ଦୁଃଖ ତା'ର ପ୍ରିୟତମର ! ପ୍ରେମ୍ ନିଶ୍ଚୟ ତା'ରି ପାଇଁ ଅପେକ୍ଷା କରି କରି ଦୁଃଖ ଆଉ ବେଦନାରେ ଭାଙ୍ଗି ପଡ଼ିଛି । ତା'ର ଅନ୍ୟାୟ ହୋଇଛି । ଆଉ ଘଣ୍ଟାଏ ପୂର୍ବରୁ ତ ସେ ଆସି ପାରି ଥାଆନ୍ତା !!

କେତକୀ ଠିଆ ହୋଇ କେତେବେଳ ଯାଏ ପ୍ରେମ୍ କାପୁରର ସେହି ବିଷାଦ ବୋଳା ଶରୀର ଆଡ଼େ ଚାହିଁ ରହିଥିଲା ତା'ର ମନେ ନାହିଁ । ହଠାତ୍ ପ୍ରେମ୍ କାପୁର କଡ଼ ଲେଉଟାଇଲା । କେତକୀର ମନେ ହେଲା ଯେପରି ପ୍ରେମ କାପୁରର ଆଖିରେ ଦୁଇଧାର ଲୁହ ଶୁଖି ଯାଇଛି । ସେ ଆଉ ଆତ୍ମସମ୍ବରଣ କରିପାରିଲା ନାହିଁ । ନଇଁପଡ଼ି ତା'ର କୁସୁମ କୋମଳ ହାତରେ ଲୁହଧାର ଦୁଇଟିକୁ ପୋଛି ଦେଇଥିଲା ।

ପ୍ରେମ୍ କାପୁର ଧୀରେ ଧୀରେ ଆଖି ଖୋଲିଲା ।

ସେ କ'ଣ କେତକୀକୁ ଆଶା କରିଥିଲା ?

ପ୍ରେମ୍ କାପୁର ଆଖିରେ ଯେପରି ପୂର୍ଣ୍ଣତା ଭରି ଆସିଲା । ସେ କେବଳ ଚାହିଁଥିଲା ଏବଂ କେତକୀ ମୁହଁକୁ ଚାହିଁ ରହିଥିଲା । ଦୁହେଁ ଦୁହିଁଙ୍କୁ ଚାହିଁ ରହିଥିଲେ ଅନେକ ବେଳଯାଏ । କାହାରି ମୁହଁରେ ଭାଷା ଫୁଟି ନଥିଲା ।

ଶେଷରେ ପ୍ରେମ୍ କାପୁର ତା'ର ବଳିଷ୍ଠ ବାହୁ ବେଷ୍ଟନୀ ଭିତରେ କେତକୀକୁ ବନ୍ଦୀ କରିଥିଲା । ଆଉ କେତକୀ ! ଚୁମ୍ବନ ଚୁମ୍ବନରେ ଭରି ଦେଇଥିଲା ପ୍ରେମ୍ କପୁରକୁ । କେବଳ ନୀରବତାର ଏକ ଅକଳ୍ପନୀୟ ଆନନ୍ଦ ଭିତରେ କଟି ଯାଇଥିଲା ଅନେକ ଅନେକ ମୁହୂର୍ତ୍ତ । କେତକୀ ଏହି ନୀରବ ସ୍ୱର୍ଗୀୟ ମୁହୂର୍ତ୍ତ ଗୁଡ଼ିକ ଚାହୁ ଥିଲା ତା' ଜୀବନରେ ଚିରସ୍ଥାୟୀ କରି ରଖିବାପାଇଁ । ବିନିମୟରେ ନିଜର ଜୀବନ ଉତ୍ସର୍ଗ କରି ମଧ୍ୟ ।

ଅବଶେଷରେ କେତକୀ କ୍ଳାନ୍ତ ହୋଇ ପଡ଼ିଲା । ଯେଉଁ କେତେ ହଜାର ମୁହୂର୍ତ୍ତ ତା'ର ଏହା ଭିତରେ ଚରମ ସୁଖରେ ଭରି ଯାଇଥିଲା, ସେଇ ମୁହୂର୍ତ୍ତଗୁଡ଼ିକୁ ସେ ସାଉଁଟି ରଖିବାକୁ ଚେଷ୍ଟା କରୁଥିଲା । କ୍ଳାନ୍ତ ଶ୍ଳଥ ହାତଟାକୁ ପ୍ରେମ୍ କାପୁର ମୁହଁରେ ବୁଲାଉ ବୁଲାଉ କହିଲା : ପ୍ରେମ୍ ତମେ ମୋତେ କଥା ଦିଅ ପ୍ରେମ୍ । ଜୀବନରେ କେବେ ମୋତେ ଏକା ଛାଡ଼ି ଚାଲିଯିବ ନାହିଁ ।

ପ୍ରେମ୍ କାପୁର କେତକୀ ମୁହଁକୁ ଆଉଥରେ ନିଜ ମୁହଁରେ ଚାପିଧରି କହିଲା :

ସେ ପ୍ରତିଶ୍ରୁତି ମୁଁ ତତେ ଅନେକଦିନରୁ ଦେଇ ସାରିଛି ରାଣୀ ।

ପୁଣି କ୍ଷଣକର ନୀରବତା । ଏଥର ପ୍ରେମ୍ କାପୁର ବିଛଣାରେ ଉଠି ବସିଲା । ସେଇଥିପାଇଁ ତୋରି ପଥ ଚାହିଁ, ଦୁଇଗ୍ଲାସ ପାନୀୟ ଢାଳି ତୋରି ପ୍ରତୀକ୍ଷାରେ ବସିଥିଲି । ନୀରବତା ଭିତରେ, ସ୍ୱର୍ଗୀୟ ଆନନ୍ଦ ମଧ୍ୟରେ ମୋ ଜନ୍ମଦିନ୍ ସେଲିବ୍ରେଟ୍ କରିବା ପାଇଁ । ତୁ ଆସିଲୁ ଏବଂ ମୋ ଜୀବନର ନୂତନ ଜୟଯାତ୍ରା ସହିତ ସାମିଲ ହେଲୁ । ଆଜି ତୁ ମୋ ଜୀବନର ଏକ ମାତ୍ର ପାଥେୟ, ଏକ ମାତ୍ର ଆଧାର ।

ପ୍ରେମ୍ କାପୁର ପାନୀୟ ଦୁଇଗ୍ଲାସ ଦୁଇ ହାତରେ ଉଠାଇ ଆଣିଲା । କେତକୀ ହାତକୁ ଗୋଟିଏ ଗ୍ଲାସ୍ ବଢ଼ାଇ ଦେଇ କହିଲା : ଆଜି ମୋର ଏଇ ଶୁଭ ଦିନରେ ଦୁହେଁ ଶପଥ କରିବା, ଆଜିଠାରୁ ଆମେ ଦୁହେଁ ପରମ ଆତ୍ମୀୟ । ଦୁହେଁ ଦୁହିଁଙ୍କୁ ଛାଡ଼ି କିଏ କୁଆଡ଼େ ଯାଇ ପାରିବା ନାହିଁ । ଦୁହିଁଙ୍କ ସୁଖ ଦୁଃଖରେ ଦୁହେଁ ସମାନ ଅଂଶ ନେଇ ବଞ୍ଚି ରହିବା ।

କେତକୀର ବାକ୍‌ଶକ୍ତି ରୁଦ୍ଧ ହୋଇ ଯାଇଥିଲା । ସେ କ'ଣ ପ୍ରେମ୍ କାପୁରଠାରୁ ଏତେଟା ଆଶା କରିଥିଲା ! ନା ନା, ପ୍ରେମ୍ କାପୁର ଆଜି ତା'ପାଇଁ ଯାହା କଲା, ଯେଉଁ ପ୍ରତିଶ୍ରୁତି ଦେଲା ତା'ଠାରୁ ଅଧିକ ମୂଲ୍ୟ ସେ ଚାହିଁ ନଥିଲା । ସେ କେବଳ ଛଳ ଛଳ ଆଖିରେ ପ୍ରେମ୍ କାପୁର ମୁହଁକୁ ଚାହିଁଥିଲା ।

ପ୍ରେମ୍ କାପୁର କେତକୀକୁ ଦୁଇ ହାତରେ ତୋଳି ଉଠାଇ ବସାଇଲା । ତା'ଗ୍ଲାସ୍ ସହିତ ନିଜର ଗ୍ଲାସ୍ ଠୁକେଇ କହିଲା : ଆଜିର ଏହି ଦିନଟି ଆମ ଜୀବନର ଏକ ସ୍ମରଣୀୟ ଦିନ । ପ୍ରତି ବର୍ଷ ଏହି ଦିନଟିକୁ ଆମେ ସେଲିବ୍ରେଟ୍ କରିବା ।

ଠିକ୍ ସେତିକିବେଳେ ବାହାର ଦୁଆରେ କିଏ ନକ୍ କରିବାର ଶୁଣାଗଲା । ହଠାତ୍ ପ୍ରେମ୍ କାପୁର ମୁହଁରେ କିପରି ଏକ ବିଷାଦର କଳାମେଘ ଫୁଟି ଉଠିଲା । ସେ ବିରକ୍ତି ମିଶା ସ୍ୱରରେ କହିଲା: ନନ୍‌ସେନ୍‌ସ । କିନ୍ତୁ ତାକୁ ଉଠିବାକୁ ହେଲା । କେତକୀର କ୍ଲାନ୍ତ ଶରୀରଟାକୁ ସଯତ୍ନେ ବିଛଣା ଉପରେ ଶୁଆଇ ଦେଇ ସେ ଉଠୁଥିଲା । କେତକୀ କିନ୍ତୁ ତା' କ୍ଲାନ୍ତ ହାତ ଯୋଡ଼ାକରେ ପ୍ରେମ୍ କାପୁରକୁ ଜଡ଼େଇ ଧରିବାକୁ ଚେଷ୍ଟା କରି ବ୍ୟର୍ଥ ହୋଇଥିଲା । ପ୍ରେମ୍ କାପୁର ଉଠିଯାଇଥିଲା । କେତକୀ କିପରି କରୁଣ ଆଖିରେ ଚାହିଁ ରହିଥିଲା ତା'ରି ଯିବା ପଥକୁ ।

· କିଛି ସମୟ ପରେ ପ୍ରେମ୍ କାପୁର ଫେରି ଆସିଥିଲା । ମୁହଁରେ ତା'ର ବିଷାଦ କାଳିମା ଆହୁରି ଘନ ହୋଇଥିଲା । ସେ ଯାଇ କେତକୀ ପାଖରେ ବସିପଡ଼ି ଗୋଟାଏ ଦୀର୍ଘଶ୍ୱାସ ତ୍ୟାଗ କରିଥିଲା ।

: କ'ଣ ହେଲା ପ୍ରେମ୍ ! କିଏ ଆସିଥିଲା ? କେତକୀ କଣ୍ଠରେ ଉତ୍‌କଣ୍ଠା ଫୁଟି ଉଠିଥିଲା ।

: ତୁ ଶୁଅ । ଆଜି ପରି ଆନନ୍ଦ ଦିନରେ ମୁଁ ତୋତେ ସେ ସବୁ କଥା କିଛି କହିବାକୁ ଚାହେଁନାହିଁ । ପ୍ରେମ୍ କାପୁର କେତକୀର ସର୍ବାଙ୍ଗରେ ଶୀତଳ ସ୍ପର୍ଶ ଦେଇ କହିଲା ।

: ନା ନା, ପ୍ରେମ୍ । ତମେ ମୋତେ କୁହ । କିଏ ଆସିଥିଲା । କାହିଁକି ଆସିଥିଲା । କ'ଣ ଚାହେ ତମଠାରୁ ।

: ପ୍ରେମ୍ କାପୁର ଏକ କ୍ଳେଦାକ୍ତ ହସ ହସି କହିଲା : ମୋର ତ ସେଇ ଗୋଟିଏ ଚିନ୍ତା । ଗୋଟିଏ ଶତ୍ରୁ । ରଣଜିତ୍ ଠାକୁର । ସେ ଦିନପରେ ଦିନ ମୋ ଆଖିରୁ ନିଦ କାଢ଼ି ନେଉଛି । କେଉଁଦିନ ଯେ ତା'ଠାରୁ ଋଣମୁକ୍ତ ହେବି । ସେଇଦିନ ମୁଁ ମୁକ୍ତି ପାଇବି ।

କେତକୀ ଏଥର ନିଜେ ଉଠି ବସିଲା । ସେ ଯେପରି ଧୀରେ ଧୀରେ ଦେହରେ ବଳ ଫେରି ପାଉଥିଲା କହିଲା : ଆଉ ବେଶୀଦିନ ନାହିଁ ପ୍ରେମ୍ । ତମ ଭାଗ୍ୟ ଆକାଶର ଧୂମକେତୁ ଖୁବ୍ ଶୀଘ୍ର ଦୂରେଇ ଯିବ । ତୁମେ ରାହୁ ମୁକ୍ତ ହେବ ।

ପ୍ରେମ୍ କାପୁର ମୁହଁରେ ଆଗ୍ରହ ଫୁଟି ଉଠିଥିଲା ସେ ହୁଏତ ପଚାରିବାକୁ ବସିଥିଲା, ସେଇ ଶୁଭଦିନଟି କେବେ ଆସିବ, ଆଉ କେତେ ଦୂରରେ ? କିନ୍ତୁ ସେ ପଚାରି ପାରିଲା ନାହିଁ। କେତକୀ ପାଖରେ ତା'ମନର ବ୍ୟଗ୍ରତା ସେ ପ୍ରକାଶ କରିବାକୁ ଚାହେଁନାହିଁ ।

କେତକୀ କିନ୍ତୁ ନିଜେ କହିଲା : ଆମର ମୁକ୍ତିକ୍ଷଣ ଖୁବ୍ ନିକଟେଇ ଆସିଲାଣି ପ୍ରେମ୍ । ମୁଁ ପୂର୍ଣ୍ଣ ସଫଳତା ଦିଗରେ ଆଗେଇ ଚାଲିଛି ।

ସେଠ୍ ରତନମଲଙ୍କ ମନରେ ମୁଁ ପ୍ରତ୍ୟୟ ଜନ୍ମାଇ ପାରିଛି । ଆଉ ତାଙ୍କ ଝିଅ ଯମୁନା ! ସେ ମୋତେ ମୁହୂର୍ତ୍ତେ ନ ଦେଖିଲେ ପାଗଳ ହେଇ ଯାଉଛି । ତେଣୁ ଏ ଅଭିଯାନ ଆମର ନିଶ୍ଚୟ ସଫଳ ହେବ ।

: ପ୍ରେମ୍ ।

: ଉଁ ।

: ଆମେ ତ ଯାହା ଟଙ୍କା ପାଇବା ସବୁ ରଣଜିତ୍ ଠାକୁର ନେଇଯିବ । ତା'ପରେ ଆମର ଅବସ୍ଥା କ'ଣ ହେବ ?

: ଆମ କଥା ଆମେ ପରେ ଚିନ୍ତା କରିବା । ମୁଁ ପୁଣି ମୁଷ୍ଟିଯୁଦ୍ଧକୁ ଓହ୍ଲେଇ ପଡ଼ିବି । ପୂର୍ଣ୍ଣ ବିକ୍ରମରେ, ପୂର୍ଣ୍ଣ ଉତ୍ସାହରେ । ଏଥର ମୋ ମନରେ ଗୋଟିଏ କାମନା ରହିବ । ମୁଁ ବିବାହିତ । ମୋର ସ୍ତ୍ରୀ, ମୋର ସନ୍ତାନ......

ହଠାତ୍ ପ୍ରେମ୍ କାପୁର ଚୁପ୍ ହୋଇଗଲା । ସନ୍ତାନ ନାଁ ଧରି ସେ ଯେପରି ଲାଜେଇ ପଡ଼ିଥିଲା ।

କେତକୀ ତା' ହାତ ଦୁଇଟାକୁ ପ୍ରେମ୍ କାପୁର ଗଳାରେ ଛନ୍ଦି ସ୍ମିତ ହସି କହିଲା : ହଁ, ଆମର ସନ୍ତାନ । ଆମର ସନ୍ତାନ ହେବ । ଆମେ ସଂସାରୀ ହେବା । ତମେ ଘୋଡ଼ା ହେବ । ତମ ଉପରେ ପୁଅ ବସିବ । ପୃଥିବୀର ଜଣେ ପ୍ରବଳ ପରାକ୍ରମଶାଳୀ ମୁଷ୍ଟିଯୋଦ୍ଧା ଏକ ଶିଶୁପାଖରେ ପରାସ୍ତ ହୋଇ ଅସହାୟ ପରି ଆସି ମୋ ପଣତ ତଳେ ଆଶ୍ରୟ ନେବ । ଆଃ........କି ସୁଖର, କି ଆନନ୍ଦର ସେ ଦିନଗୁଡ଼ାକ । କେତକୀ ଆଖି ବୁଜି ଶିହରୀ ଉଠିଥିଲା ।

ପ୍ରେମ୍ କାପୁର କହିଲା : ଏତେ ସୁଖର ସ୍ୱପ୍ନ ଏବେଠୁ ଦେଖିବା ଭଲ ନୁହେଁ । ଭଗବାନ ସହି ପାରିବେ ନାହିଁ ।

କେତକୀ ଆଖିରେ କିନ୍ତୁ ସେହି ସ୍ୱର୍ଗୀୟ ମହକ ଲାଗି ରହିଥିଲା । ସେ ସେହିପରି ଆଖିବୁଜି କହିବାକୁ ଆରମ୍ଭ କରିଥିଲା : ଟଙ୍କା ପଇସା ପାଇଁ ତମେ ଚିନ୍ତା କରନାହିଁ । ପ୍ରେମ୍ ! ମୋ ହାତରେ ଆହୁରି ମଧ୍ୟ ଗୋଟାଏ ଯୋଜନା ଅଛି । ସେଇଟା ଯଦି ସଫଳ

ହୁଏନା, ତା'ହେଲେ ଆମେ ଏ ଦେଶ ଛାଡ଼ି ଚାଲିଯିବା । ଏ ଦେଶରେ ପ୍ରତିଭାକୁ କେହି ଚିହ୍ନନ୍ତି ନାହିଁ ।

ପ୍ରେମ୍ କାପୁର ଆଖିରେ ଅଶେଷ ଆଗ୍ରହର ଚିହ୍ନ ସ୍ପଷ୍ଟ ହୋଇ ଉଠିଥିଲେ ମଧ୍ୟ, ସେ କେବଳ କେତକୀକୁ ନିଜ ଆଡ଼କୁ ଟାଣି ଆଣି କହିଲା : ନୂତନ ଯୋଜନା କଥା ତ ମୋତେ କିଛି କହିନାହଁ ଆଜିଯାଏ ।

: କହିବି, ଧୀରେ ଧୀରେ ସବୁ କହିବି ପ୍ରେମ୍ । ତମ ଛଡ଼ା ମୋର ଆଉ ଆପଣାର ଅଛି କିଏ କହିଲ ? ବେଳହେଲେ ତମେ ସବୁ କଥା ଜାଣିବ। ମୋର ସବୁ ଧନର ତମେ ଅଧିକାରୀ ହେବ । ମୋର ସନ୍ତାନର ତମେ ଜନକ ହେବ । ପ୍ରେମ୍ !! ପ୍ରେମ୍!! କେତକୀ ସେହିପରି ଆଖି ବୁଜି ପ୍ରେମ୍ କାପୁରକୁ ଦୁଇ ହାତରେ ଜଡ଼େଇ ଧରିଲା ।

କେତକୀ ଫେରି ଆସିଥିଲା । ଫେରି ଆସିଥିଲା ପୂର୍ଣ୍ଣ ବିଶ୍ୱାସ ନେଇ । ପ୍ରେମ୍ କାପୁରକୁ ସେ ଭଲପାଏ ପ୍ରେମ୍ କାପୁରକୁ ସେ ଚିର ଜୀବନ ପାଇଁ ନିଜର କରିବାକୁ ଚାହେଁ । ପ୍ରେମ୍ କାପୁର ତାକୁ ସେ ପ୍ରତିଶ୍ରୁତି ଦେଇଛି । ତେଣୁ କେତକୀର ମନେ ହେଉଛି ସେ ତା' ଜୀବନର ପ୍ରଥମ ସାଫଲ୍ୟ ଅର୍ଜନ କରି ପାରିଛି । ବର୍ତ୍ତମାନ ଦ୍ୱିତୀୟ ଏବଂ ତୃତୀୟ ସାଫଲ୍ୟ ତା'ର ଏକାନ୍ତ ପ୍ରୟୋଜନ । ଦ୍ୱିତୀୟ ସାଫଲ୍ୟରେ ସେ ପ୍ରେମ୍ କାପୁରକୁ ରଣଜିତ୍ ଠାକୁର କବଳରୁ ମୁକ୍ତ କରିବ ଏବଂ ତୃତୀୟ ସାଫଲ୍ୟରେ ତାଙ୍କ ସଂସାର କରିବାରୁ ପାଥେୟ ଯୋଗଡ଼ କରିବ । ତା'ପରେ ଆଉ ତା'ର କିଛି ଚିନ୍ତା ନାହିଁ । ତେଣିକି ଯାହା କରିବ ପ୍ରେମ୍ । ମୁଷ୍ଟିଯୋଦ୍ଧା ପ୍ରତିଯୋଗିତାରେ ସେ ସାଫଲ୍ୟ ଅର୍ଜନ କରି ବିଶ୍ୱ ଦରବାରରେ ନାଁ କିଣିବ । ଆଃ......କେତକୀ ସେତେବେଳେ ସମସ୍ତଙ୍କର ଈର୍ଷାର ପାତ୍ରୀହୋଇ ଠିଆହେବ । ସୁଖ, ଆନନ୍ଦ ଆଉ ସମୃଦ୍ଧିର ଶୀର୍ଷ ଦେଶକୁ ଉଠିଯାଇ ପାରିବ କେତକୀ ।

ଟ୍ୟାକ୍ସିଟା ଆସି ନିର୍ଦ୍ଦିଷ୍ଟ ସ୍ଥାନରେ ଠିଆ ହୋଇ ପଡ଼ିଲା । କେତକୀର ଭାବନା ଭାଙ୍ଗିଲା । ସେ ତର ତର ହୋଇ ଓହ୍ଲାଇ ପଡ଼ି ଦେଖିଲା, ଦରବାନ ଟ୍ୟାକ୍ସିର ଦରଜା ଖୋଲି ଦେଇଛି । ସେ ଆଉ ପଛକୁ ଚାହିଁଲା ନାହିଁ । ଲୁହା ଫାଟକ ଡେଇଁ ଭିତରେ ପଶିଗଲା ।

ଘରେ ପହଞ୍ଚି ଦେଖିଲା ଯମୁନା ସେତେବେଳଯାଏ ଉଠି ନାହିଁ । ତା'ଘର ଦୁଆରେ ସୁଧାକର ଠିଆ ହୋଇଛି । ସେ କେତକୀକୁ ଦେଖି ଯେପରି ସ୍ୱସ୍ତିର ନିଶ୍ୱାସଟିଏ ପକାଇଲା । କହିଲା : ଏଥର ତମ ଝିଅକୁ ତମେ ସମ୍ଭାଳ ଦିଦିମଣି । କାଲି ରାତିରେ ସେ ମୋତେ ପାଣି ପିଆଇ ଛାଡ଼ିଛି । ବାପ୍‌ରେ ବାପ ! ମାସ ଦେଢ଼ଟାର କଥା ଯା ଭିତରେ ତମେ ତାକୁ କିମିଆ କରିଦେଲ ନା କ'ଣ ! ମା' ହାତ ଛଡ଼ା ସେ ଖାଇବ ନାହିଁ, ମା'କୋଳ ଛଡ଼ା ସେ ଶୋଇବ ନାହିଁ, ଏଗୁଡ଼ା ସବୁ କି ବଦଭ୍ୟାସ । ମୁଁ ବୁଝେଇ ବୁଝେଇ, ହେଲାନାହିଁ । ସେଇ ଗୋଟିଏ ଜିଦ୍ । ମା', ମା', ମା କାଲି ରାତିଭରି ଶୋଇନାହିଁ ଏଇ ଘଣ୍ଟାକ ଆଗରୁ ଟିକିଏ ଆଖି ବୁଜିଛି ।

କେତକୀ କାନରେ ସୁଧାକରର କଥାଗୁଡ଼ା ପଶୁଥିଲା କି ନାହିଁ କେଜାଣି, କେତକୀ

କିନ୍ତୁ ଛୁଟି ଯାଇଥିଲା ଯମୁନାର ଶେଯ ପାଖକୁ। ଦେଖିଲା ସେ ଶୋଇଛି। ଆଖି ଯୋଡ଼ାକ ତା'ର ଫୁଲିଯାଇଛି। କେତକୀ ତାକୁ ଆଉଁଶି ଦେଲା। ମୁହଁରେ ଚୁମା ଦେଲା। ମୁଣ୍ଡ ବାଳରେ ହାତ ବୁଲେଇ ସାଉଁଳେଇ ଦେଲା। ଝିଅଟା ପ୍ରତି ସତରେ ତା' ପ୍ରାଣ ଭିତରେ ଭିନ୍ନ ପ୍ରକାର ଏକ ମମତ୍ୱ ବୋଧ ଜିଇ ଉଠୁଥିଲା। ଶେଷରେ କ'ଣ ଯମୁନା ତା'ର ପ୍ରତିବନ୍ଧକ ହୋଇ ଠିଆହେବ ?

କେତକୀ ଦେଖିଲା ଘର ଭିତରକୁ ସେଠ୍ ରତନମଲ ପଶି ଆସୁଛନ୍ତି। ସେ ବୋଧହୁଏ ଏତେ ସକାଳୁ କେତକୀକୁ ଆଶା କରିନଥିଲେ। ଅକସ୍ମାତ୍ ଭେଟିଲା ପରି ଠିଆ ହୋଇପଡ଼ି କହିଲେ : ମା' କିପରି ଅଛନ୍ତି ?

: ଭଲ।

: ତମେ ତ ଚାଲିଗଲ। କାଲି ରାତିଭରି ଯମୁନା ଆଖିରୁ ଲୁହ ଶୁଖି ନାହିଁ।

: ହଁ, ସୁଧାକର କହୁଥିଲା।

: ଯମୁନାର ସ୍କୁଲବେଳ ହେଇ ଯାଉଛି। ତାକୁ ଉଠାଇ ପ୍ରସ୍ତୁତ କର।

କେତକୀ ସ୍ନେହସିକ୍ତ ନୟନରେ ଯମୁନା ଆଡ଼େ ଚାହିଁଲା। ସେ ନିଶ୍ଚିନ୍ତରେ ଶୋଇଛି। ଦେହ ମୁହଁରେ କ୍ଳାନ୍ତିର ଛାପ ଫୁଟି ଉଠିଛି। ଦେହଟା ଥରେ ଆଉଁସି ଦେଇ କହିଲା : ନା ସେ ଶୋଉ। ଏଇକ୍ଷିଣା ଉଠେଇଲେ ତା' ଦେହ ଖରାପ ହେବ।

: ତା'ହେଲେ ସ୍କୁଲ ?

: ଆଜି ନ ଯାଉ।

ରତନମଲ କିଛି ଉତ୍ତର ଦେଲେ ନାହିଁ। ସେ କେତକୀ ମୁହଁକୁ ସ୍ଥିର ଦୃଷ୍ଟିରେ କିଛି ସମୟ ଅନାଇରହି ଧୀରେ ଧୀରେ ଫେରି ଯାଉଥିଲେ। ପୁଣି ବୁଲିପଡ଼ି ପଛକୁ ଚାହିଁ ପଚାରିଲେ : ତମ ମା'ଙ୍କର କ'ଣ ହୋଇଛି କେତକୀ ? ଦରକାର ହେଲେ ଡକ୍ଟର ଶର୍ମାଙ୍କୁ ନେଇ ଦେଖାଅ।

କେତକୀ କିଛି ଉତ୍ତର ଦେଲା ନାହିଁ। ଯମୁନା ଆଡ଼େ ଚାହିଁ ନୀରବରେ ଠିଆ ହୋଇଥିଲା।

: ଆଚ୍ଛା କେତକୀ...ରତନମଲ କ'ଣ କହିବାକୁ ଯାଇ ଟିକିଏ ଅଟକିଗଲେ।

କେତକୀ ବୁଲି ଅନେଇଲା।

: ମୁଁ କ'ଣ କହୁଥିଲି କି, ଆଉ କେଇଦିନ ପରେ ତ ଯମୁନାର ସମର ଭାକେସନ ଛୁଟି ହେବ। ତା' ସ୍କୁଲ ବୋଧେ ମାସେ ଦେଢ଼ମାସ ବନ୍ଦହେବ। ମୁଁ ଭାବୁଛି ସେତେବେଳେ ତମ ଦୁଇଜଣଙ୍କୁ ଦାର୍ଜିଲିଂ ପଠାଇଦେବି। ତା' ପୂର୍ବରୁ ତମ ମା' ଭଲ ଭାବରେ ସୁସ୍ଥ ହୋଇ ଉଠିଥିବା ଉଚିତ। ତମେ ତ ଆଉ ଦାର୍ଜିଲିଂରୁ ମା'ଙ୍କୁ ଦେଖିବାକୁ ଆସି ପାରିବନାହିଁ।

କେତକୀ କହିଲା: ଯମୁନାର ସମର ଭାକେସନ୍ ହେବାକୁ ଆହୁରିତ ମାସେ ଦେଢ଼ମାସ ବାକି ଅଛି, ସେତେବେଳକୁ ମା' ହୁଏତ ଭଲ ହୋଇଯାଇଥିବ। ତା'ଛଡ଼ା.....

: ତମର ସେତେବେଳେ କିଛି ଅସୁବିଧା ହେବ ନାହିଁ ତ ? ରତନମଲ ପଚାରିଲେ।

: ନା, ଅସୁବିଧା ଆଉ କ'ଣ ? ମୋ ଅସୁବିଧା ଠାରୁ ଯମୁନାର ସୁବିଧା ଦେଖିବା ମୋର ପ୍ରଥମ କର୍ତ୍ତବ୍ୟ। କେତକୀ ପୁଣି ଯମୁନା ଦେହରେ ହାତ ବୁଲେଇଲା।

ରତନମଲ କହିଲେ : ଯମୁନା ତମକୁ ପାଇ ସୁଖୀ ହୋଇଛି, ମୁଁ ବି ନିଶ୍ଚିତ

ହୋଇଛି ।

କେତକୀର ଉତ୍ତର ଦେବାର କିଛି ନଥିଲା । ସେ ନୀରବରେ ଠିଆ ହୋଇଥିଲା । ରତନମଲ ଆଉଥରେ ଯମୁନା ଆଡ଼େ ଚାହିଁ କହିଲେ, ତା'ହେଲେ ଆଜି ଯମୁନା ସ୍କୁଲ ଯାଉନାହିଁ ।

: ନ ଯାଉ ।

: ବେଶ୍ ଆଉ ଗୋଟାଏ କଥା କେତକୀ । ମୁଁ ଆଜି ରାତିରେ ଟିକେ ବାହାରକୁ ଚାଲିଯିବି । ଫେରୁ ଫେରୁ ତିନି ଚାରିଦିନ ଡେରି ହେବ । ଆଶା କରୁଛି ତମର କିଛି ଅସୁବିଧା ହେବନାହିଁ । ରତନମଲ କହିଲେ ।

: ମୋର ଆଉ ଅସୁବିଧା କ'ଣ ! ଯମୁନା ସଙ୍ଗରେ ହସି ଖେଳି ସମୟ କଟାଇ ଦେବି ।

ତଥାପି ରତନମଲ ଠିଆ ହୋଇ ଯମୁନା ଆଡ଼େ ଚାହିଁଥିଲେ । ପାଦେ ପାଦେ କରି ସେ ଫେରି ଆସିଲେ ଯମୁନା ପାଖକୁ । ମୁଣ୍ଡରେ ହାତ ବୁଲେଇଲେ, ଦେହରେ ହାତ ବୁଲେଇଲେ । ମୁହଁରେ ଚୁମ୍ବନ ଦେଲେ, କେତକୀ ଆଡ଼େ ଚାହିଁଲେ ।

କେତକୀ କିଛି ବୁଝି ପାରୁନଥିଲା । ତା'ର ମନେ ହେଉଥିଲା ହୁଏତ ସେଠ୍ ରତନମଲ ତାକୁ କିଛି କହିବାକୁ ଚାହୁଛନ୍ତି, ହୁଏତ ସେ ଯମୁନାର ତତ୍ତ୍ୱାବଧାନ ସମ୍ବନ୍ଧରେ କିଛି ଉପଦେଶ ଦେବେ ।

କିନ୍ତୁ ସେଠ୍ ରତନମଲ ଥରେ କେତକୀ ମୁହଁକୁ ଓ ଥରେ ଯମୁନା ମୁହଁକୁ ବାରମ୍ବାର ଚାହିଁଲେ । ତା'ପରେ ଧୀରେ ଧୀରେ, ନୀରବରେ ସେଠାରୁ ଚାଲିଗଲେ । କେତକୀ ଯମୁନା ଆଡ଼େ ଚାହିଁ ଠିଆହୋଇଥିଲା !

ବହୁ କ୍ଷଣର ନିସ୍ତବ୍ଧତା ପରେ କେତକୀ ମୁହଁ ଟେକି ଚାହିଁଲା । ନିର୍ଜନ ଘର। ନିଶ୍ଚଳ ପରିବେଶ । ଯମୁନା ନିଶ୍ଚିନ୍ତରେ ଶୋଇଛି । କିନ୍ତୁ ସେ ଏତେବେଳ ଯାଏ ନିତ୍ୟକର୍ମ ଶେଷ କରିନାହିଁ ଯେ ।

କେତକୀ ଧୀରେ ଧୀରେ ଯମୁନା ଘରୁ ବାହାରି ନିଜ ଘର ଆଡ଼କୁ ଯାଉଥିଲା । ମନେ ହେଉଥିଲା ସେ ଖୁବ୍ ଦୁର୍ବଳ ହୋଇ ପଡ଼ିଛି । ଚାଲିବାକୁ ପାଦରେ ଶକ୍ତି ନାହିଁ । ମୁଣ୍ଡରେ ଚିନ୍ତା ଭାବନା ସବୁ ଯେପରି ହଜି ଯାଇଛି । ସେ ଆନମନା ହୋଇ ପାଦେ ପାଦେ କରି ଆଗଉଥିଲା ।

: କେତକୀ ଅପା ଯେ !

ପଛରୁ ଗଙ୍ଗାର କଣ୍ଠସ୍ୱର ଶୁଣି କେତକୀ ଚମକି ଉଠିଲା । ବୁଲି ଚାହିଁଲା । ପର ମୁହୂର୍ତ୍ତରେ ନିଜକୁ ସଂଯତ କରି ନେଇ ମୁହଁରେ ହସ ଫୁଟେଇବାକୁ ଚେଷ୍ଟାକରି କହିଲା : ଆସ ଗଙ୍ଗା । ମା' ଭଲ ଅଛନ୍ତି ତ ?

: ମୁଁ ତମ ମା'ଙ୍କ କଥା ପଚାରିବାକୁ ଆସିଥିଲି କେତକୀ ଅପା। ଶୁଣିଲି ସେ ଖୁବ୍ ଅସୁସ୍ଥ । ତମେ ଦେଖିବାକୁ ଯାଇଥିଲ। ଗଙ୍ଗା ସହଜ ଓ ଶାନ୍ତ ସ୍ୱରରେ କହିଲା ।

କେତକୀ ଦେହଟା ହଠାତ୍ କିପରି ଗରମ ହୋଇ ଉଠିଲା । ସେ ତା' ମାଙ୍କୁ

ଦେଖିବାକୁ ଯାଇଥିଲା ସେ ଖବର ଗଙ୍ଗା ଜାଣିଲା କିପରି ? ତା'ହେଲେ, ତା'ହେଲେ କ'ଣ.........

ଗଙ୍ଗା କିଛି ଉତ୍ତରର ପ୍ରତ୍ୟାଶା ନକରି କହିଲା : ଜାଣ କେତକୀ ଅପା। ମୋ ମା'ଙ୍କ ଦେହ ମଧ କାଲି ରାତିଠାରୁ ବିଶେଷ ଭଲନାହିଁ। ଆଜି ହୁଏତ ଡାକ୍ତର ଡାକିବାକୁ ହୋଇପାରେ। ତମ୍ ମା'ଙ୍କୁ ଭଲ ଡାକ୍ତର ଦେଖୁଛନ୍ତି ତ ?

କେତକୀ କହିଲା : ମୋ ମା'ଙ୍କର ଯେ ଦେହ ଖରାପ ଆଉ ମୁଁ ଦେଖିବାକୁ ଯାଇଛି, ସେ କଥା ତମକୁ କିଏ କହିଲା ?

ଏଥର ଗଙ୍ଗା ମୁହଁରେ ଦୁଷ୍ଟ ହସ ଖଣ୍ଡେ ଫୁଟି ଉଠିଲା। କିନ୍ତୁ କଣ୍ଠରେ ସେଇ ସରଳତା : ତମେ କିଛି ମନେ କରନାହିଁ କେତକୀ ଅପା। ତମ ଖବର ରଖିବା ପାଇଁ ଆମର ଲୋକ ଅଛନ୍ତି। ତମର ଟିକିନିଖି ଖବର ଆମକୁ ସଂଗ୍ରହ କରିବାକୁ ହେଉଛି। ଏଇଟା ତ ଆମ ଦଳର ନିୟମ। କିନ୍ତୁ ଆଉ ଗୋଟିଏ କଥା ମନେରଖ କେତକୀ ଅପା, ତା'ବୋଲି ତମ ସ୍ୱାଧୀନତା ଉପରେ ଆମେ କେବେ ହସ୍ତକ୍ଷେପ କରିବୁ ନାହିଁ। ଅନ୍ୟଦଳମାନଙ୍କ ପରି ଆମେ କାହାରି ସ୍ୱାଧୀନତା ଅପହରଣ କରୁନାହିଁ। ଯିଏ ଆମ ଦଳକୁ ଆସେ ତା'ର ସ୍ୱାର୍ଥ ଥାଏ। ଆମେ ବି ଆମ ସ୍ୱାର୍ଥ ସାଧନ ପାଇଁ ତାକୁ ନିଯୁକ୍ତି ଦେଉ। ସେ ଯଦି କାର୍ଯ୍ୟ ହାସଲ କରିପାରେ, ଦୁଇଜଣଙ୍କର ଉପକାର ହୁଏ। ନ ପାରିଲେ ସେ ନିଷ୍ଫଳ। ଆମେ ବି ନିଷ୍ଫଳ।

ଗଙ୍ଗା କଥାଗୁଡ଼ାକର ପ୍ରକାଶଭଙ୍ଗୀ ଏତେ ସହଜ ଆଉ ସରଳ ଯେ, ମନେ ହେଉଥିଲା କେତକୀ ଯେପରି ଏକ ନିଷ୍ପାପ ଶିଶୁ ମୁହଁରୁ ଆଲୁରୁ ବାଲୁରୁ କଥା ଶୁଣୁଛି। କିନ୍ତୁ କେତକୀ ମନେ ମନେ ଶିହରୀ ଉଠିଲା। ଗଙ୍ଗା ତେବେ କ'ଣ ତା' ସମ୍ବନ୍ଧରେ ଟିକିନିଖି ସବୁ ଖିଆଲ ରଖେ ? ତା'ହେଲେ ଗଙ୍ଗା କ'ଣ ଜାଣେ  ସେ ମା' ପାଖକୁ ଯିବାଟା ଛଳନା। ଗଙ୍ଗା କ'ଣ ଜାଣେ ଯେ ସେ ଯାଇ ପ୍ରେମ୍ ସହିତ 'ସାକୀ'ରେ ରାତ୍ରି ଯାପନ କରି ଆସୁଚି !! ଯଦି ପ୍ରକୃତରେ ଗଙ୍ଗା ସବୁ ତଥ୍ୟ ଜାଣିଥାଏ ତା'ହେଲେ ତା'ର ସବୁଠାରୁ ବଡ଼ ଶତ୍ରୁ ହେବ ଗଙ୍ଗା। ଶତ୍ରୁକୁ କିପରି ଶାସ୍ତି ବିଧାନ କରିବାକୁ ହୁଏ ସେ କଥା କେତକୀକୁ ଭଲ ଭାବରେ ଜଣାଅଛି। ଏବଂ......

: ବୁଝିଲ କେତକୀ ଅପା ! ଗଙ୍ଗା ପୁଣି ଆରମ୍ଭ କଲା। ସେତେବେଳକୁ ସେମାନେ କେତକୀ ଘରେ ପହଞ୍ଚି ସାରିଥିଲେ  ଓ ଦୁହେଁ ଦୁଇଟି ସୋଫାରେ ବସି ସାରିଥିଲେ। ମୁଁ ତମ ସମ୍ମତିର କଥା ସେମାନଙ୍କୁ ଜଣାଇଛି। ସେମାନେ ଖୁବ୍ ଖୁସି ହୋଇଛନ୍ତି। ତେବେ ସେମାନେ ଚାହୁଁଛନ୍ତି କାର୍ଯ୍ୟଟା ଟିକିଏ ଶୀଘ୍ର ଶେଷ କରିବା ପାଇଁ। କାରଣ ଆମର ଯେଉଁ ହୀରା ଖଣ୍ଡିକ ଲକ୍ଷ୍ୟ, ବେଶି ଡେରି କଲେ ସେ ହୀରା ଖଣ୍ଡିକ ଲୁହା ସିନ୍ଦୁକରୁ ବାହାରକୁ ଚାଲିଯାଇପାରେ।

: ମାନେ ? କେତକୀ ପଚାରିଲା।

: ମାନେ ଫାନେ କିଛି ନାହିଁ  କେତକୀ ଅପା। ସେହି ହୀରା ଖଣ୍ଡର ମୂଲ୍ୟ ଆନ୍ତର୍ଜାତିକ ବଜାରରେ ବହୁତ ବେଶି। ସେଥିପାଇଁ ଯେ କୌଣସି ମୁହୂର୍ତ୍ତରେ ସେ ଖଣ୍ଡିକ ବଡ଼ବାପାଙ୍କ ଲୁହା ସିନ୍ଦୁକରୁ ଖସି ଯାଇପାରେ।

କେତକୀ ପ୍ରାଣରେ କିନ୍ତୁ ଗତ ରାତିର ସୁଖର ଅନୁଭୂତି ଅନୁରଣିତ ହେଉଥିଲା।

ରହି ରହି ସେ ଅନୁଭବ କରୁଥିଲା ପ୍ରେମ୍ କାପୁରର ସ୍ପର୍ଶ । ସେଇଥିପାଇଁ ତା' ଦେହ ମୁହଁରେ ଏକ ସୁଖର ଅନୁଭୂତି ସ୍ପଷ୍ଟ ପ୍ରତିବିମ୍ବିତ ହେଉଥିଲା । କିନ୍ତୁ କରୁଣର ଯେଉଁ ମୂର୍ଚ୍ଛନାଟି ରହି ରହି ମନ ପ୍ରାଣରେ ଶିହରଣ ସୃଷ୍ଟି କରୁଥିଲା, ତାହା ହେଲା କେତକୀର ପ୍ରେମକୁ ଦେଇଥିବା ପ୍ରତିଶ୍ରୁତି । ଅନେକ ଟଙ୍କାର ପ୍ରତିଶ୍ରୁତି । ତା'ର ସେ ପ୍ରତିଶ୍ରୁତି ସମ୍ଭାବନାମୟ, କିନ୍ତୁ ସଫଳତା ଦିଗରେ ସେ ଆଗେଇ ପାରୁଛି କେଉଁଠି ।

ଗଙ୍ଗା ପୁଣି କହିଲା : କେତକୀ ଅପା ! ମୁଁ ଦେଖୁଛି ଆଜି କାଲି ତମେ ଆଉ ଆଗପରି ନାହଁ । ସବୁବେଳେ ବସି ବସି କ'ଣ ଗୁଡ଼ାଏ ଏଣୁତେଣୁ ଭାବୁଚ । କାହିଁକି ଏତେ ଚିନ୍ତାଭାବନା ! ତମେ ତ ଦେଖୁଛ ମୁଁ ତମଠାରୁ ଅନେକ ଛୋଟ । ତମଠାରୁ ମୋର ଅନେକ ଦୁଃଖ । କିନ୍ତୁ ମୁଁ ତ କେତେବେଳେ ହେଲେ ଚୁପ୍‌ଚାପ୍ ବସି ଚିନ୍ତା କରୁନାହିଁ ।

କେତକୀ ଏଥର ହସିଲା । କହିଲା : ମୁଁ ଜାଣେ ଗଙ୍ଗା । ଦୁଃଖ ତମର ଅନେକ । କିନ୍ତୁ ମୋ ଭଳି ତମର ଯନ୍ତ୍ରଣା ନାହିଁ । ମୁଁ କିଏ, ଏଠିକି କାହିଁକି ଆସିଛି, କି ଉଦ୍ଦେଶ୍ୟରେ ଆସିଛି । ତମେ ତ ସବୁ ଜାଣ ଗଙ୍ଗା । ତେଣୁ ଚିନ୍ତା କରି ଦେଖିଲ ମୋର ପରିଣତି କଥା !

ମୁଁ ଜାଣିଚି କେତକୀ ଅପା । ସବୁ ମୁଁ ବୁଝୁଛି । କିନ୍ତୁ ତମର ଏଇ ସାଧନା ସଫଳ ହେବ । ତମର ସବୁ ଯନ୍ତ୍ରଣାର ଅବସାନ ଘଟିବ, ତମେ ଯେତେବେଳେ ବଡ଼ ବାପାଙ୍କ ଲୁହା ସିନ୍ଦୁକ ଖୋଲିବାକୁ ସମର୍ଥ ହେବ । ସେତେବେଳେ ଦେଖିବ ଲୁହା ସିନ୍ଦୁକର ପ୍ରଥମ ସ୍ତରରେ, ବିଡ଼ା ବିଡ଼ା କରେନ୍‌ସି ନୋଟ୍ । ମନଇଚ୍ଛା ତମେ ତୋଳିନେବ । ସେଥିରୁ ବିଡ଼ାଟିଏ ବି ଆମେ ଚାହିଁବୁ ନାହିଁ । କିନ୍ତୁ ଆମର ପ୍ରୟୋଜନ ସେଇ ହୀରା ଖଣ୍ଡିକ । ମୁଁ ଆଖି ଆଗରେ ସ୍ପଷ୍ଟ ଦେଖି ପାରୁଛି କେତକୀ ଅପା, ତମ ଭାଗ୍ୟ ଉଦିତ ପ୍ରାୟ । ତମେ ଖାଲି ଟିକେ ଚେଷ୍ଟା କର । ଦେଖିବ ତମର ସମସ୍ତ ଦୁଃସ୍ୱପ୍ନ ଘୁଞ୍ଚି ଯାଇଛି ।

କେତକୀ ଚିନ୍ତା କରୁଥିଲା, ସତରେ ତା'ର ପ୍ରଚୁର ଟଙ୍କାର ଦରକାର । ଗଙ୍ଗା ମିଛ କହୁନାହିଁ । ସେ ଯଦି ଦୁଇଟିଯାକ ଅଭିଯାନରେ ସଫଳ ହୋଇପାରେ ତା'ହେଲେ ତା' ଜୀବନରେ ସଫଳତା ଅର୍ଜନ କରି ପାରିବ। ତେଣୁ ବର୍ତ୍ତମାନ ମନରୁ ସମସ୍ତ ଦୁର୍ବଳତା ଦୂରେଇ ଦେଇ ତାକୁ କର୍ମଯୋଗରେ ଲିପ୍ତ ହେବାକୁ ପଡ଼ିବ ।

ଏଥର କେତକୀ ମୁହଁ ଖୋଲିଲା । କହିଲା : ତମେ ଆଜି ଯାଅ ଗଙ୍ଗା, ତମ ସାଙ୍ଗ ସାଥୀଙ୍କୁ କହିବ, ଯଥା ସମ୍ଭବ ଶୀଘ୍ର ମୁଁ କାର୍ଯ୍ୟ ହାସଲ କରିବା ପାଇଁ ଚେଷ୍ଟା କରୁଛି । ମୋତେ ସେମାନେ ଦଳରେ ଜଣେ ବୋଲି ଧରିନେଇ ପାରନ୍ତି । ମୁଁ ପ୍ରତିଶ୍ରୁତି ଦେଉଛି, କାର୍ଯ୍ୟ ହାସଲ ପାଇଁ ଲାଗି ପଡ଼ିବି ।

ଗଙ୍ଗା ଉଠିଯାଇ କେତକୀକୁ କୁଣ୍ଢାଇ ପକାଇଲା । କହିଲା, : ସତରେ କେତକୀ ଅପା ତମେ କେତେ ଭଲ । ମୋର ସମସ୍ତ ଦୁର୍ଭାବନା ଘୁଞ୍ଚେଇ ଦେଲ । ତମେ ବଞ୍ଚିଲ, ମୋତେ ବି ବଞ୍ଚେଇଦେଲ ।

କେତକୀ କହିଲା : ଦୁନିଆରେ ସମସ୍ତଙ୍କର ବଞ୍ଚିରହିବାର ଅଧିକାର ଅଛି । ସମସ୍ତେ ବଞ୍ଚିବେ, ଆମେ ବି ବଞ୍ଚିବା ।

: ତା'ହେଲେ ଆଜି ମୁଁ ଆସୁଛି କେତକୀ ଅପା । ତମର ପ୍ରତିଶ୍ରୁତି ମୁଁ ମୋର ସାଙ୍ଗ

ସାଥୀମାନଙ୍କୁ ଜଣାଇ ଦେବି । ଏବଂ ପ୍ରସ୍ତୁତ ହେବା ପାଇଁ କହିବି ।

କେତକୀ ମୁଣ୍ଡ ହଲାଇ ସମ୍ମତି ଜଣାଇଲା ।

ହଁ, ସଫଳତା ତା'ର ପ୍ରୟୋଜନ। କେତକୀ ଜୀବନରେ ସଫଳତା ଏକାନ୍ତ କାମ୍ୟ । ଦୁନିଆରେ ସେ ସମସ୍ତଙ୍କ ପରି ବଞ୍ଚିବାକୁ ଚାହେଁ ।

ପୁଣି ସେଇ ଘର । ଜେକବ୍, ୟୁସୁଫ୍, ବ୍ରିଜ୍‌ଲାଲ ଓ କେତକୀ ବସିଥିଲେ । ସମସ୍ତେ ଗମ୍ଭୀର । ସେମାନଙ୍କର ସାଫଲ୍ୟର ଦିନ ଆଗେଇ ଆସିଥିଲା । କିପରି ଭାବରେ ଅପରେସନ୍ କରିବେ, ସେଇ ସମ୍ବନ୍ଧରେ ଆଲୋଚନା ହେଉଥିଲା ।

କେତକୀ କହିଲା : ଯଦି ଏଇ ସାତ ଆଠଦିନ ମଧ୍ୟରେ କାର୍ଯ୍ୟ ହାସଲ ନ ହୁଏ, ତା'ହେଲେ ଆହୁରି ଦେଢ଼ମାସ ଅପେକ୍ଷା କରିବାକୁ ପଡ଼ିବ । କାରଣ ଯମୁନାର ସ୍କୁଲ ଛୁଟି ହେଲେ ସେମାନେ ଦାର୍ଜିଲିଂ ଚାଲିଯିବେ । ସେଠାରେ ପ୍ରାୟ ଦେଢ଼ମାସ ରହିବେ । ତେଣୁ ଏତେଦିନ ଆଉ ଅପେକ୍ଷା କରିବା ଉଚିତ ହେବ ନାହିଁ । ତା'ଛଡ଼ା ଏହା ଭିତରେ କେତକୀ ରତନମଲଙ୍କ ସହିତ ସଂପର୍କଟା ଖୁବ୍ ଘନିଷ୍ଠତର କରି ନେଇଛି । ରତନମଲ କେତକୀ କଥା ଶୁଣୁଛନ୍ତି, ସାଂସାରିକ କ୍ଷେତ୍ରରେ ତା'ର ପରାମର୍ଶ ନେଉଛନ୍ତି ଏବଂ ତାଙ୍କର ନିଜର କିଛି କିଛି କାମ କରିବା ପାଇଁ କେତକୀକୁ ପ୍ରଶ୍ରୟ ଦେଉଛନ୍ତି । ତେଣୁ ଏହି ହେଉଛି ସୁବର୍ଣ୍ଣ ସୁଯୋଗ । ଏତିକିବେଳେ ଯଦି କାର୍ଯ୍ୟ ହାସଲ କରାଯାଏ, ତେବେ କେତକୀର ପରାମର୍ଶ ହୁଏତ ରତନମଲ ଶୁଣିବେ । ମୁକ୍ତିପଣ ଦେଇ ଯମୁନାକୁ ଆଣିବାର ବ୍ୟବସ୍ଥା କରିବେ ।

ଜେକବ୍ କହିଲା : ଆମେ ବି ପ୍ରସ୍ତୁତ । ଏହା ଭିତରେ ପ୍ରାୟ ଚାରିମାସ ହୋଇଗଲା । ଧୈର୍ଯ୍ୟର ଗୋଟାଏ ସୀମା ଅଛି । ତା'ଛଡ଼ା କ୍ଷେତ୍ର ପ୍ରସ୍ତୁତ ହୋଇ ସାରିଲାଣି ଯେତେବେଳେ, ସେତେବେଳେ ଆଉ ଡେରି କରିବା ଉଚିତ ନୁହେଁ ।

ବ୍ରିଜ୍‌ଲାଲ୍ କହିଲା : ତା'ହେଲେ ଆଜି ଦିନବାର ଠିକ୍ କରି ନିଆହେଉ । ଅସୁବିଧା ତ କିଛି ନାହିଁ । ଆଗରୁ ପ୍ଲାନ୍ ପ୍ରୋଗ୍ରାମ ସବୁ ଠିକ୍ ହୋଇ ରହିଛି । ଖାଲି କାର୍ଯ୍ୟକାରୀ କରିବା କଥା ।

ୟୁସୁଫ୍ କେତକୀ ମୁହଁକୁ ଚାହିଁଲା : ତା'ହେଲେ କେବେ ଦିନ ଠିକ୍ କରିବା ? ସେଦିନ ତମେ ଯମୁନା ସହିତ ରହିବ ନା ନାହିଁ ? ଯମୁନାକୁ କିପରି ଭାବରେ କେଉଁଠୁ ଆଣିବାକୁ ହେବ, ସେ ସବୁ କଥା ତମକୁ ସ୍ଥିର କରିବାକୁ ହେବ ।

କେତକୀ ଚିନ୍ତା ମଗ୍ନ ହୋଇ ପଡ଼ିଥିଲା । ଆଜିଯାଏ ଯାହା ଚାଲିଥିଲା, ତାହା କେବଳ ଗୋଟାଏ ସ୍ୱପ୍ନରେ । ଆଜି ଯାହା ସ୍ଥିର ହେବ, ତାହା ହେବ ବାସ୍ତବ। ଯମୁନା ଗୋଟାଏ ଅବୋଧ ଶିଶୁ । କେତକୀକୁ ସେ ମା'ବୋଲି ଜାଣେ । ଯମୁନାକୁ ସେ ସ୍ନେହ ଦେଇଛି, ଭଲ ପାଇଛି । ଏଇ ସ୍ନେହ ଓ ଭଲ ପାଇବା ମୂଳରେ ଯେ ଗୋଟାଏ କାମନା ଲୁଚି ରହିଛି, ସେ କଥା ଭାବିବାକ୍ଷଣି କେତକୀର ଦେହ ଶିହରୀ ଉଠୁଛି । ପୁଣି ଯେତେବେଳେ ମନେ ପଡ଼ିଯାଉଛି ପ୍ରେମ କାପୁରର ମଳିନ ମୁଖମଣ୍ଡଳ, ସେହି ଦୁର୍ଦ୍ଦାନ୍ତ ମଣିଷଟା ବିନୀତ ଭାବରେ କହୁଛି, ଆଉ ପାରୁନାହିଁ ରାଣୀ, ଆଉ ଅପେକ୍ଷା କରିବା ମୋ ପକ୍ଷରେ ସମ୍ଭବ

ହେଉନାହିଁ । ରଣଜିତ୍ ଠାକୁରର ଅପମାନ ମୁଁ ଆଉ ସହି ପାରୁନାହିଁ । ହୁଏତ ମୋତେ ଏ ସହର ଛାଡ଼ି ଚାଲିଯିବାକୁ ହେବ, ନତୁବା ଆତ୍ମହତ୍ୟା କରିବାକୁ ହେବ। ଏ ଦୁଇଟି ପଥରୁ ମୋତେ ଗୋଟିଏ ବାଛିନେବାକୁ ହେବ। ସେତେବେଳେ କେତକୀର ମୁହଁ କଠିନ ହୋଇ ଉଠୁଛି । ନା, ସତରେ ଆଉ ଡେରି କରିବା ସମ୍ଭବ ନୁହେଁ । ତା'ହେଲେ ସେ ତା'ର ପ୍ରାଣପ୍ରିୟ ପ୍ରେମକୁ ହରାଇବାର ସମ୍ଭାବନା ଅଛି ।

ବ୍ରିଜ୍‌ଲାଲ ନୀରବତା ଭଙ୍ଗ କଲା : କ'ଣ କୁହ କେତକୀ । କେବେ, କେଉଁଦିନ ଆମେ ଯମୁନାକୁ ହରଣଚାଳ କରିବା । ତମେ ଚିନ୍ତା କରନାହିଁ କେତକୀ, ଆମେ ଯମୁନାକୁ ଆଦୌ କଷ୍ଟ ଦେବୁନାହିଁ । ଟଙ୍କାଟା ପାଇଗଲେ ଆମେ ଯମୁନାକୁ ନେଇ ଛାଡ଼ିଦେଇ ଆସିବୁ ବା ତମ ଜିମା କରିଦେବୁ ।

କେତକୀ କହିଲା : ମୁଁ ଭାବୁଚି, ଯମୁନାକୁ କିପରି କେଉଁଠୁ ଅପହରଣ କରିହେବ । ତା' ସଙ୍ଗରେ ମୁଁ ରହିଲେ ବୋଧହୁଏ ଭଲହେବ ନାହିଁ । କାରଣ ସେଠ୍ ରତନମଲ ଝିଅର ଅପହରଣ କଥା ଶୁଣିଲେ, ତାଙ୍କର ମନର ଅବସ୍ଥା କ'ଣ ହେବ ସେ କଥା ବର୍ତ୍ତମାନ ଚିନ୍ତା କରିହେଉନାହିଁ । ସେ ଯଦି କୋମଳ ହୁଅନ୍ତି ତା'ହେଲେ ଦୁର୍ଭାବନାର କିଛି ନାହିଁ, କିନ୍ତୁ ସେ ଯଦି ରୁଦ୍ର ହୁଅନ୍ତି ତେବେ ତାଙ୍କୁ ଶାନ୍ତ କରିବାକୁ ହେବ। ତା'ନହେଲେ ଆମର ଉଦ୍ଦେଶ୍ୟ ସାଧନ ହୋଇ ପାରିବ ନାହିଁ । ମୋର ମନେ ହେଉଛି, ସେତିକିବେଳେ ମୋର ତାଙ୍କ ପାଖରେ ରହିବା ଉଚିତ୍ ।

: ତମେ ରହିବ। ୟୁସୁଫ୍ କହିଲା ।

: ତା'ହେଲେ ଯମୁନାକୁ ଆପଣମାନେ ପାଇବେ କିପରି ?

: ସେ ସେପରି ଗୋଟାଏ କିଛି କଷ୍ଟସାଧ୍ୟ କଥା ନୁହେଁ । ସୁଯୋଗ ତ ତମେ ସୃଷ୍ଟି କରିବ କେତକୀ । କେତେବେଳେ, କେଉଁଠୁ, କିପରି ଭାବରେ ଆମେ ଯମୁନାକୁ ଖାପଚରେ ପାଇବୁ ସେ କଥା ତମେ ଠିକ୍ କରିବ। ବ୍ରିଜ୍‌ଲାଲ କହିଲା ।

କେତକୀ ଆଖି ବୁଜି କିଛି ସମୟ ଚିନ୍ତା କଲା । ସମୟ, ସୁଯୋଗ ପ୍ରକୃତରେ ସେଇ ଠକଣା କରିବା କଥା। କିନ୍ତୁ କିପରି ସମ୍ଭବ ! ସେ ଯମୁନା ସଙ୍ଗରେ ରହିବ ନାହିଁ ଅଥଚ ଯମୁନାକୁ ଏମାନେ ଅପହରଣ କରିବେ ! ସମସ୍ୟା। ଆଜିକାଲି ଯମୁନା ତାକୁ ଛାଡ଼ି ଘରୁ ବାହାରୁ ନାହିଁ । ତଥାପି କେତକୀକୁ ଗୋଟାଏ ସୁଯୋଗ ସୃଷ୍ଟି କରିବାକୁ ହେବ। କେତକୀ ପଚାରିଲା : ଆଚ୍ଛା, ଧରନ୍ତୁ ଯମୁନା ଡ୍ରାଇଭର୍ ସଙ୍ଗରେ ଏକା ସ୍କୁଲକୁ ଯାଉଛି ବା କୌଣସିଠାରୁ ଫେରୁଛି, ରାସ୍ତାରେ ତା'ଗାଡ଼ିରୁ ଆପଣମାନେ କିପରି ତାକୁ ଅପହରଣ କରିବେ ?

ୟୁସୁଫ୍ କହିଲା : ସେ ଯୋଜନା ଆମେ କରି ରଖିଛୁ । ଆମକୁ ଖାଲି ନିର୍ଦ୍ଦେଶ ଦେଲେ, ଆମେ ଯମୁନାକୁ ଅପହରଣ କରି ଘେନି ଆସିବୁ । ଡ୍ରାଇଭର ଗାଡ଼ିରେ ଅଚେତ ଅବସ୍ଥାରେ ପଡ଼ି ରହିବ । ଆମେ ଫୋନ୍ କରି ରତନମଲଙ୍କୁ ସବୁ କଥା ଜଣାଇ ଦେବୁ । ତା' ପରେ ଦାୟିତ୍ୱ ତୁମର ।

: ଯମୁନାକୁ ଆଣି ରଖିବେ କୋଉଠି ? କେତକୀ ପ୍ରଶ୍ନ କଲା ।

: ତା' ରହିବା କଥା ତମର ଚିନ୍ତା କରି ଲାଭ ନାହିଁ । ତେବେ ଏତିକି ଜାଣିରଖ ଆମେ ଯମୁନାର କିଛି କ୍ଷତି କରିବୁ ନାହିଁ। ଜେକବ୍ କହିଲା ।

: କିନ୍ତୁ ଧରି ନିଅନ୍ତୁ ରତନମଲ ମୋର ସମସ୍ତ ଅନୁନୟ ବିନୟ ପ୍ରତ୍ୟାଖ୍ୟାନ କରି ପୋଲିସ୍‌ରେ ଖବର ଦେଲେ, ସେ କ୍ଷେତ୍ରରେ ଆପଣମାନେ ଯମୁନା ସହିତ କିପରି ବ୍ୟବହାର କରିବେ ? କେତକୀ ପଚାରିଲା ।

: ସେତେବେଳେ କିନ୍ତୁ ଆମେ....

ୟୁସୁଫ୍ କ'ଣ କହିବାକୁ ଯାଉଥିଲା, କିନ୍ତୁ ଜେକବ୍ ତାକୁ ଥମେଇ ଦେଇ କହିଲା : ସେତେବେଳେ ବି ଆମେ ଯମୁନା ପ୍ରତି କୌଣସି ଦୁର୍ବ୍ୟବହାର କରିବୁ ନାହିଁ । କାରଣ ଯମୁନା ଗୋଟିଏ ଶିଶୁ । ତା'ର ଦୋଷ କ'ଣ । ନିହାତି ଯଦି ଆମେ ଟଙ୍କା ପାଇବାର ସୁଯୋଗରୁ ବଞ୍ଚିତ ହେଉ, ତା'ହେଲେ ଯମୁନାକୁ ରାସ୍ତାରେ ଛାଡ଼ିଦେବୁ । ତା'ପରେ ସେ ନିଶ୍ଚୟ ପୋଲିସ ହାତରେ ପଡ଼ିବ ଏବଂ ପୋଲିସ୍ ତାକୁ ନେଇ ରତନମଲଙ୍କ ପାଖରେ ପହଞ୍ଚାଇ ଦେବ ।

କେତକୀ ଜେକବ୍ ମୁହଁକୁ ଚାହିଁଲା । କେଜାଣି କାହିଁକି ଜେକବ୍‌ର ଏହି ପ୍ରତିଶ୍ରୁତି ତା' ମନରେ ପ୍ରତ୍ୟୟ ସୃଷ୍ଟି କରି ପାରିଲା ନାହିଁ । କିନ୍ତୁ ପ୍ରକୃତରେ ତ ଘଟଣା ତାହା ଘଟିବ ନାହିଁ । ଝିଅକୁ ଉଦ୍ଧାର କରିବା ପାଇଁ ରତନ ମଲ ନିଶ୍ଚୟ ଟଙ୍କା ଦେବେ ଏବଂ...

ଆଚ୍ଛା ତା'ପରର ଘଟଣା କଥା ତ କିଛି ଚିନ୍ତା କରିନାହିଁ କେତକୀ । ସେ ତା' ମନର କଥା ବ୍ୟକ୍ତ କରିବାକୁ ଯାଇ କହିଲା, : ଧରି ନିଅନ୍ତୁ ରତନମଲ ଆମ କଥାରେ ରାଜିହେଲେ । ଯମୁନାର ମୁକ୍ତିପଣ ସେ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚାଇ ଦେଲେ । ତା'ପରେ ତା'ପରର ଘଟଣାତ ମୁଁ କିଛି ଜାଣିନାହିଁ ।

ବ୍ରିଜ୍‌ଲାଲ କହିଲା : ତା'ପରର ଘଟଣା କିନ୍ତୁ ଖୁବ୍ ମଧୁର । ଆମେ ଟଙ୍କା ପାଇ ସାରିଲେ ଚାରିଜଣ ଏକତ୍ର ହେବା । ପ୍ରତ୍ୟେକ ଅଢ଼େଇ ଲକ୍ଷ କରି ଟଙ୍କା ବାଣ୍ଟିନେବା । ତା'ପରେ ଯମୁନାକୁ ରତନମଲଙ୍କ ଘରେ ପହଞ୍ଚାଇ ଦେବାର ବ୍ୟବସ୍ଥା କିରବା ।

କେତକୀ କହିଲା : ଧରନ୍ତୁ ମୁଁ ସେଦିନ କୌଣସି କାରଣରୁ ଘରୁ ବାହାରି ପାରିଲି ନାହିଁ । ପରବର୍ତ୍ତୀ ଦୁଇଦିନ ବି ମୋର ଆପଣମାନଙ୍କ ସହିତ ମିଶିବାର ସୁଯୋଗ ନାହିଁ । ତା'ପରେ ମୁଁ ଆପଣମାନଙ୍କୁ କେଉଁଠି ପାଇବି ?

ଜେକବ୍ ହସିଲା । ଶାନ୍ତ ସ୍ୱରରେ କହିଲା : ତମେ ଭୟ କରନାହିଁ କେତକୀ । ଆମ ଭିତରେ ବିଶ୍ୱାସର ଯେଉଁ ସେତୁ ବନ୍ଧଟି ଗଢ଼ି ଉଠିଛି, ତା'ରି ଉପରେ ପାଦ ଥାପି ଆମକୁ ଆଗେଇବାକୁ ହେବ । ଏଇଟାତ ଆମ ଜୀବନର ଅୟମାରମ୍ଭ । ଏହାପରେ ଆମେ ବହୁତ ବଡ଼ ବଡ଼ ଯୋଜନା ହାତକୁ ନେବା । ତେଣୁ ଆମ ଭିତରେ ବିଶ୍ୱାସ ହେବ ସବୁଠାରୁ ବଡ଼ ମୂଳଧନ । ମୁଁ କଥା ଦେଉଛି କେତକୀ, ତମେ ପନ୍ଦର ଦିନ ପରେ ଆସିଲେ ବି ତମ ଭାଗ ଅକ୍ଷତ ଅବସ୍ଥାରେ ରହିଥିବ ।

କେତକୀ କିଛି ସମୟ ନିର୍ନିମେଷ ନୟନରେ ଜେକବ୍ ମୁହଁକୁ ଅନାଇ ରହିଲା । ତା'ପରେ ଧୀରେ ଧୀରେ ଶାନ୍ତ ସ୍ୱରରେ କହିଲା, : ବେଶ୍, ଆପଣଙ୍କ କଥା ମୁଁ ବିଶ୍ୱାସ କରୁଛି । ମୋ ସହିତ ବିଶ୍ୱାସ ଘାତକତା କଲେ କିନ୍ତୁ କାହାରି ମଙ୍ଗଳ ହେବନାହିଁ ।

ୟୁସୁଫ୍ ହସିଲା । କହିଲା : ଆମେ କ'ଣ ପାଗଳ ହେଇଚୁ ତମ ସହିତ ବିଶ୍ୱାସଘାତକତା କରିବୁ । ତା'ଛଡ଼ା ତମ ମନରେ ଏପରି ଗୋଟାଏ ଧାରଣା କାହିଁକି ଯେ ଆସିଲା, ଆମେ ବୁଝି ପାରୁନାହୁଁ । ଯା'ହେଉ ଯେତେ ଯାହା ହେଲେ ବି ଆମେ ପ୍ରତ୍ୟେକ

ପ୍ରତ୍ୟେକକୁ ବିଶ୍ୱାସ କରିବାକୁ ହେବ ।

ବ୍ରିଜ୍‌ଲାଲ କହିଲା : ତା'ହେଲେ ଆମେ କାଲିଠାରୁ ପ୍ରସ୍ତୁତି ପର୍ବ ଆରମ୍ଭ କରି ଦେଉଛୁ । ନିର୍ଦ୍ଦିଷ୍ଟ ତାରିଖ ଓ ସମୟ ଆମେ ତମକୁ ଜଣାଇ ଦେବୁ । '

: ଆଜି, ଆଜି ସବୁ ଠିକ୍ କରିବାକୁ ହେବ । ନୋହିଲେ ମୋର ଆଉ ଘରୁ ବାହାରିବା ସମ୍ଭବ ହେବନାହିଁ । ଆଜି ହେଲା ରବିବାର । ବୁଧବାର ଦିନ ସକାଳକୁ ଦିନ ସ୍ଥିର କରନ୍ତୁ । ସେଦିନ ସକାଳୁ କୌଣସି ଉପାୟରେ ମୁଁ ଯମୁନାକୁ ଏକା ଡ୍ରାଇଭର ସଙ୍ଗରେ ସ୍କୁଲକୁ ବିଦା କରିବି । ଆପଣମାନେ ଡ୍ରାଇଭରକୁ କାବୁ କରି ଯମୁନାକୁ ହରଣଚାଳ କରି ନେଇଯିବେ । ତା'ପରେ ସେଇଦିନ ସକାଳ ନଅଟା ଭିତରେ ସେଠୁ ରତନମଲଙ୍କୁ ଟେଲିଫୋନ୍‌ରେ ଖବର ଦେବେ । କେଉଁଠି, କିପରି ଭାବରେ, କେଉଁଦିନ ସେ ଟଙ୍କା ପଠାଇବେ ସେ କଥା ମଧ ସେ କହିଦେବେ ।

ଜେକବ୍ କହିଲା : ଯମୁନାକୁ ହରଣଚାଳ କରି ନେଇ ସାରିବା ପରେ, ଜଣେ ଲୋକ ଯାଇ ସେଠ୍ ରତନମଲଙ୍କୁ ଖଣ୍ଡେ ଚିଠି ଦେଇ ଆସିବ । ସେଇ ଚିଠିରେ ସମସ୍ତ ବିବରଣୀ ଲେଖା ହୋଇଥିବ । ସେ ଚିଠିଟି ମଧ ଆମେ ପ୍ରସ୍ତୁତ କରି ରଖିଛୁ । ତମେ ଦେଖିପାର ।

ଜେକବ୍ ଟେବୁଲ୍ ଡ୍ରୟାରରୁ ଖଣ୍ଡେ ଚିଠି ବାହାର କରି କେତକୀ ହାତକୁ ବଢ଼ାଇଦେଲା ।

କେତକୀ କ୍ଷିପ୍ର ହସ୍ତରେ ଚିଠି ଖଣ୍ଡିକ ନେଇ ପଢ଼ିବାକୁ ଆରମ୍ଭ କଲା ।

ପ୍ରିୟ ମହାଶୟ !

ଏ ଚିଠି ଖଣ୍ଡିକ ପଢ଼ି ଆପଣ ଆଶ୍ଚର୍ଯ୍ୟ ହେବେ ନାହିଁ କିମ୍ବା ଉତ୍ତ୍ୟକ୍ତ ହେବେନାହିଁ । ଆପଣଙ୍କ କନ୍ୟା ଯମୁନାକୁ ଆମେ ହରଣଚାଳ କରି ନେଇଛୁ । ଆମର ଉଦ୍ଦେଶ୍ୟ ମୋଟେ ମନ୍ଦ ନୁହେଁ । ବଦଳରେ ଆମେ ଆପଣଙ୍କଠାରୁ କିଛି ଟଙ୍କା ଚାହୁଁ । ଆମେ ଜାଣୁ ଆପଣଙ୍କ ଲୁହା ସିନ୍ଦୁକରେ ଅନେକ କଳାଟଙ୍କା ବନ୍ଦି ହୋଇ ରହିଛି । ସେଥିରୁ ମାତ୍ର ଦଶଲକ୍ଷ ଟଙ୍କା ଚାହୁଁଛୁ । ବର୍ତ୍ତମାନ ଦେଶର ପରିସ୍ଥିତି ଯାହା ସେଥିରେ ଆପଣମାନେ ଜଣେ ଜଣେ କୋଟି କୋଟି ଟଙ୍କା ଲୁହା ସିନ୍ଦୁକରେ ଅଟକାଇ ରଖି ଦେଶର ଅର୍ଥନୈତିକ ପରିସ୍ଥିତିକୁ ଜଟିଳ କରି ପକାଉଛନ୍ତି । ଦିନ ପରେ ଦିନ ଧନୀର ଧନ ବଢ଼ି ଚାଲିଛି, ଆଉ ଗରିବ ଆହୁରି ଦାରିଦ୍ର୍ୟର ସୀମାରେଖା ତଳକୁ ଖସି ପଡୁଛି ।

ଯାହାହେଉ, ସେ ସବୁ ଅର୍ଥନୈତିକ ସମସ୍ୟା କଥା ଆମେ ଆପଣଙ୍କ ସହିତ ଆଲୋଚନା କରି କିଛି ଲାଭ ନାହିଁ । ଆପଣ ଆମକୁ ଦଶଲକ୍ଷ ଟଙ୍କା ମୁକ୍ତିପଣ ଦେଲେ ଆମେ ଯମୁନାକୁ ଅକ୍ଷତ ଅବସ୍ଥାରେ ଅପଣଙ୍କ ଘରେ ପହଞ୍ଚାଇ ଦେବୁ ।

ସେଠ୍‌ଜୀ ! ଆମର ଆପଣଙ୍କ ପାଖରେ ଆଉ ଏକ ନିବେଦନ ଅଛି । ଆପଣ ଏ ଚିଠି ପାଇ ଉତ୍ତେଜିତ ହେବେ ନାହିଁ କିମ୍ବା କାହାରିକୁ ଏ ସମ୍ପର୍କରେ କିଛି ଜଣାଇବେ ନାହିଁ ଏପରିକି ପୋଲିସ୍‌କୁ ଏ ସମ୍ବାଦ ଦେବେ ନାହିଁ । ତା'ହେଲେ ଚରମ କ୍ଷତି ହେବ ଆପଣଙ୍କର । ଆପଣ ଯମୁନାକୁ ଆଉ ଫେରି ପାଇବେ ନାହିଁ ।

ଏ ଚିଠି ପାଇବାର ୭୨ ଘଣ୍ଟା ମଧ୍ୟରେ ଆମକୁ ମୁକ୍ତିପଣ ଦେଇ ଯିବାକୁ ହେବ । ଏବଂ ଆପଣ ନିଜେ ଗୋଟିଏ ଆଟାଚି କେସ୍‌କୁ କରେନ୍‌ସି ନୋଟ୍‌ରେ ଭରି ତାହା

ଆମକୁ ଦେଇ ଯିବେ । ଦେବାର ତାରିଖ ଓ ସମୟ ଆମେ ଆପଣଙ୍କୁ ଟେଲିଫୋନ୍‌ରେ ଜଣାଇ ଦେବୁ ।

ଆପଣ କେଉଁଠି ଆସି ଟଙ୍କା ଦେଇଯିବେ ସେ କଥା ଜାଣି ରଖନ୍ତୁ । ଟେଲିଫୋନ୍ ପାଇବା ପରେ ନିର୍ଦ୍ଦିଷ୍ଟ ସମୟରେ ଆପଣ ନିଜ ଗାଡ଼ିରେ ନିଜେ ଡ୍ରାଇଭ କରି ଆସିବେ । ଇଡ଼େନ୍ ଗାର୍ଡେ଼ନଠାରୁ ଖିଦିରିପୁର ଆଡ଼କୁ ଯେଉଁ ରାସ୍ତାଟା ଚାଲିଯାଇଛି, ସେଇ ରାସ୍ତାରେ ଧୀରେ ଧୀରେ ଗାଡ଼ି ଚଳେଇ ଖିଦିରିପୁର ଆଡ଼କୁ ଆଗେଇବେ । କିଲା ପଡ଼ିଆ ଛାଡ଼ି ଆହୁରି କିଛି ଦୂର ଆଗେଇ ଯିବା ପରେ ବାଁ ପାଖରେ ଆପଣ ଦେଖିବେ ଜଣେ ଲୋକ ଗୋଡ଼ରେ ଘୁଙ୍ଗୁର ବାନ୍ଧି ନାଚି ନାଚି ଚେନାଚୁର ବିକ୍ରି କରୁଛି । ସେଇଠି ଆପଣ ଗାଡ଼ି ଅଟକେଇବେ । ଆଟାଚି କେସ୍‌ଟି ଧରି ଗାଡ଼ିରୁ ଓହ୍ଲାଇବେ । ବାଁ ପାଖରେ ଦେଖିବେ ଗୋଟିଏ ନିର୍ଜନ ପଡ଼ିଆ । ସେଇ ପଡ଼ିଆରେ ବାଁ ହାତି ପାଞ୍ଚ, ସାତ ମିନଟ୍ ଚାଲିବା ପରେ ଦେଖିବେ ଗୋଟାଏ ବିରାଟ ବରଗଛ ଅଛି । ଆପଣ ସେଇଠିକି ଯିବେ । ଆଟାଚି କେସ୍‌ଟି ସେଇଠି ବରଗଛ ମୂଳେ ରଖିବେ । ଅନ୍ଧକାର ଭିତରୁ ଆପଣ କେବଳ ଗୋଟିଏ ଶବ୍ଦ ଶୁଣିବେ 'ଓକେ'। ତା'ପରେ ଆପଣ ସିଧା ଚାଲିଆସି ଗାଡ଼ିରେ ବସି ଘରକୁ ଚାଲିଯିବେ । ପରଦିନ ଭୋର୍ ପାଞ୍ଚଟାବେଳେ ଯମୁନା ଆପଣଙ୍କ ଘରେ ପହଞ୍ଚିଯିବ ।

ଏହା ନିଶ୍ଚିତ ପ୍ରତିଶ୍ରୁତି । ଆପଣଙ୍କୁ ଆମକଥା ବିଶ୍ୱାସ କରିବାକୁ ହେବ । କିନ୍ତୁ ଆମ ସହିତ ଛଳନା କଲେ ଆପଣ ଯମୁନାକୁ ହରାଇବେ ।

ଆମେ ଜାଣୁ ଯମୁନା ଆପଣଙ୍କର ଏକମାତ୍ର ସନ୍ତାନ ଏବଂ ପ୍ରିୟ ସନ୍ତାନ । ତେଣୁ ଆମେ ତାକୁ ଖୁବ୍ ଯତ୍ନରେ ରଖିଛୁ । ତା' ଦେହରେ ଆଞ୍ଚ୍ ଟିକିଏ ବି ଲାଗିବ ନାହିଁ । କିନ୍ତୁ ଆପଣ ଆମ ଦାବି ପୂରଣ ନ କଲେ, ଯମୁନାର ମୃତଦେହ ପୋଲିସ୍ ଗଙ୍ଗା କୂଳରୁ ଆବିଷ୍କାର କରିବ । ଏଇ ଆମର ପ୍ରଥମ ଓ ଶେଷ ଚିଠି । ଟେଲିଫୋନ୍‌ରେ ଆପଣ ସମୟ ତାରିଖର ସନ୍ଧାନ ପାଇବେ । ଆପଣଙ୍କର ଶୁଭ କାମନା କରି ରହିଲୁ ।

ଆପଣଙ୍କର ବିଶ୍ୱସ୍ତ

ଯୁଗଯାତ୍ରୀ

କେତକୀ ଚିଠିଟି ପଢ଼ିସାରି ସ୍ତବ୍ଧ ହୋଇ କିଛି ସମୟ ଜେକବ୍ ମୁହଁକୁ ଅନାଇ ରହିଲା । ତା'ପରେ ଚିଠିଟି ବଢ଼ାଇଦେଇ କହିଲା, ଠିକ୍ ଅଛି । ଆଗାମୀ ବୁଧବାର ସକାଳ ସାଢ଼େ ଛ'ଟାବେଳେ ଯମୁନା ସ୍କୁଲକୁ ଯିବା ଆଗରେ ଡ୍ରାଇଭର ପଛରେ ଯମୁନା । ମୁଁ ସେଦିନ ଅସୁସ୍ଥତାର ଛଳନା କରି ରହିଯିବି । କିନ୍ତୁ ଏଇ ଚିଠିଟା ସେଇଦିନ ନଅଟା ଭିତରେ ଯେପରି ସେଠ୍‌ଜୀଙ୍କ ହାତରେ ପହଞ୍ଚେ ।

: ସେ ଦିଗରୁ ତମେ ନିଶ୍ଚିନ୍ତ ହୋଇପାର । ଚିଠିପାଇ ଯଦି ସେଠ୍ ରତନମଲ ପୋଲିସ୍ କଥା ଚିନ୍ତା କରନ୍ତି, ତମେ ସେଥିରୁ ତାଙ୍କୁ ନିବର୍ତ୍ତେଇବ । ଆମର ତ ଲକ୍ଷ୍ୟ ନୁହେଁ ଯମୁନାର କିଛି ଅନିଷ୍ଟ କରିବା । ଆମର ଟଙ୍କା ଦରକାର । ଯମୁନାର ଅନିଷ୍ଟ କରିବାକୁ ଇଚ୍ଛା କଲେ ବି ସହଜରେ ଆମେ ପାରିବୁ ନାହିଁ ଜେକବ୍ କହିଲା ।

କେତକୀ ଉଠି ଠିଆହେଲା । ଏଇ ଶୁଭ ସମ୍ବାଦଟା ପ୍ରଥମେ ଯାଇ ପ୍ରେମ୍ କାପୁରକୁ ଦେବାକୁ ହେବ। ଦୀର୍ଘ ଦିନର ପ୍ରତୀକ୍ଷା ପରେ ତା' ଉଦ୍ଦେଶ୍ୟ ସଫଳ ହେବାକୁ ଯାଉଛି, ପ୍ରେମ୍‌କୁ ସେ ନିଜର, ଏକାନ୍ତ ନିଜର କରି ପାରିବ, ଏହାଠାରୁ ତା' ଜୀବନରେ ସାଫଲ୍ୟ

ଆଉ କ'ଣ ଅଛି !!

କେତକୀ ଅନ୍ୟମନସ୍କ ଭାବରେ ଆଗଉଥିଲା ।

ୟୁସୁଫ୍ କହିଲା : ତା'ହେଲେ ବୁଧବାର ସକାଳ ସାତଟା । କେତକୀ ମୁଣ୍ଡ ହଲାଇ ସମ୍ମତି ଜଣାଇ ଚାଲିଗଲା ।

କେତକୀ ଯାଇ 'ସାକୀ'ରେ ପହଞ୍ଚିଲା ବେଳକୁ 'ସାକୀ' ମୋହିନୀ ରୂପ ଧାରଣ କରିଥିଲା । ପ୍ରଥମେ ଯାଇ ପ୍ରେମ୍‌କୁ ଖୋଜିଲା ସେ ରୁମ୍‌ରେ । କିନ୍ତୁ ଭିତରୁ କିଛି ଉତ୍ତର ପାଇଲା ନାହିଁ । ମନରେ ଅଭିମାନ ହୋଇଥିଲା କେତକୀର । ପ୍ରେମ୍ ଜାଣେ ପ୍ରତି ରବିବାର ରାତ୍ରିଟି ସେ ଯାପନ କରେ ପ୍ରେମ୍ ସହିତ । ସବୁ ଜାଣି ବି ସେ ଆଜି ତା'ପାଇଁ ଅପେକ୍ଷା କରିନାହିଁ ? ଅବଶ୍ୟ କେତକୀ ଆଜି ନିର୍ଦ୍ଦିଷ୍ଟ ସମୟର ଘଣ୍ଟାକ ପୂର୍ବରୁ ଫେରି ଆସିଛି, ତା'ବୋଲି...

କେତକୀ ଦୁଆର ମୁହଁରେ ନୀରବରେ ଠିଆ ହୋଇଥିବାର ଦେଖି ଗୋଟିଏ ହୋଟେଲ ବୟ ଆସି କହିଲା : ସାବ୍ ଅନ୍ଦରମେ ।

'ସାବ୍ ଅନ୍ଦରମେ'ର ଅର୍ଥ ବୁଝେ କେତକୀ । ତା'ମାନେ ପୁଣି ପ୍ରେମ୍ ନିଷିଦ୍ଧ ଘରେ ବସି ଜୁଆ ଖେଳୁଛି । ବହୁତ ଚେଷ୍ଟା କରି ମଧ୍ୟ କେତକୀ ପ୍ରେମ୍‌କୁ ସେଇ ପଥରୁ ନିବର୍ତ୍ତାଇ ପାରିଲା ନାହିଁ । ଆଉ ଅପେକ୍ଷା ନୁହେଁ । ସଙ୍ଗେ ସଙ୍ଗେ ଚାଲିଲା ସେଇ ନିଷିଦ୍ଧ କୋଠରିକୁ ।

ସେ ଯାହା ଭାବିଥିଲା ଠିକ୍ ସେଇଆ । କେତକୀ ସଙ୍ଗେ ସଙ୍ଗେ ସେଠାରେ ପହଞ୍ଚି ନଥିଲେ, ଜଗମୋହନ ସଙ୍ଗରେ ତା'ର ହାତାହାତି ହୋଇ ଯାଇ ଥାଆନ୍ତା । ପ୍ରେମ୍ ଜଗମୋହନର କଲର ଧରିବାକୁ ହାତ ବଢ଼ାଇଥିଲା । ଠିକ୍ ସେତିକିବେଳେ ଯାଇ ପହଞ୍ଚିଲା କେତକୀ । ଜଗମୋହନ ଉଠି ପଡ଼ିଥିଲା ଆସନରୁ । ଦୁଇଜଣଙ୍କ ମଝିରେ ଠିଆ ହୋଇ ପଡ଼ିଲା କେତକୀ । ପ୍ରେମ୍‌କୁ ଭିଡ଼ି ଭିଡ଼ି ଆଗେଇ ଆଣିଲା ଦରଜା ଯାଏ ।

କିନ୍ତୁ ପ୍ରେମ୍ କାପୁର ପ୍ରତିଶୋଧ ନ ନେଇ ଫେରିଯିବାକୁ ଆଦୌ ପ୍ରସ୍ତୁତ ନୁହେଁ ।

କେତକୀ କହିଲା : ତମ ପାଇଁ ଗୁଡ଼ାଏ ଶୁଭ ସମ୍ବାଦ ଧରି ମୁଁ ଆସିଛି । ତମେ ଚାଲିଆସ । ମୋ ହାତରେ ସମୟ ବେଶୀ ନାହିଁ ।

ପ୍ରେମ୍ କିନ୍ତୁ କିଛି ଶୁଣିବାକୁ ପ୍ରସ୍ତୁତ ନୁହେଁ । ଜଗମୋହନ ତା'ଠାରୁ ସମସ୍ତ ଟଙ୍କା ଜିତିନେଇଛି ଅନ୍ୟାୟ ଭାବରେ । ସେ ଜାଣି ନଥିଲା ରଞ୍ଜନା ତା'ର ହୋଇ ପ୍ରେମ୍ ପାଖରେ ବସି ରହଛି । ପ୍ରେମ୍‌ର ତାସ୍ ଦେଖି ରଞ୍ଜନା ଇଙ୍ଗିତରେ ସବୁ କହିଦେଉଛି ଜଗମୋହନକୁ ସେ ଦଶଟଙ୍କା ଜାଗାରେ ଶହେଟଙ୍କା ବାଜି ଧରିଛି । ପ୍ରେମ୍‌ର ପକେଟ୍ ଖାଲି କରିଦେଇଛି କିନ୍ତୁ ଶେଷ ଦାନରେ ଧରା ପଡ଼ିଗଲା ରଞ୍ଜନା । ହଠାତ୍ ପ୍ରେମ୍ କାପୁର ରଞ୍ଜନା ମୁହଁକୁ ଚାହିଁ ଜଗମୋହନକୁ ଦେଉଥିବା ସଙ୍କେତ ସେ ବୁଝି ପାରିଲା : ପାଜି, ବେଇମାନ୍, ଧୋକାବାଜ୍ କହି ଉଠିପଡ଼ିଲା ପ୍ରେମ୍ କପୁର । କେତକୀ ହଠାତ୍ ଆସି ପହଞ୍ଚିଯାଇ ନଥିଲେ ଗୋଟାଏ କିଛି ଦୁର୍ଘଟଣା ଘଟି ଯାଇଥାନ୍ତା ସେଇ ମୁହୂର୍ତ୍ତରେ ।

ଜଗମୋହନ କିନ୍ତୁ ପ୍ରେମ୍ କାପୁର କଥା ଶୁଣିବାକୁ ପ୍ରସ୍ତୁତ ନୁହେଁ । ସେ ପ୍ରେମ

କାପୁର ଆଡ଼କୁ ଛେପ ପକାଇ ଇଙ୍ଗିତରେ କହିଲା : ସବୁ ଫକଡ଼ରାମ ଗିରିଧାରୀମାନେ ଏହିପରି ହୋଇଥାନ୍ତି ।

ପ୍ରେମ୍ କାପୁର କେତକୀକୁ ଦୂରକୁ ଠେଲିଦେଇ, ଛୁଟିଯାଇ ଜଗମୋହନକୁ ଗୋଟାଏ ଲାଥି ମାରିଲା । ତା'ପରେ କ'ଣ ହେଲା କେଜାଣି ହଠାତ୍ ଘରର ଆଲୋକ ସବୁ ଲିଭିଗଲା । କିଏ କୁଆଡ଼େ ଛୁଟି ପଳାଇବାକୁ ଲାଗିଲେ । କେତକୀ ଅନୁଭବ କଲା ତାକୁ କିଏ ଠେଲି ଠେଲି କେଉଁ ଆଡ଼େ ନେଇ ପଳାଇ ଯାଉଛି ।

ଯେତେବେଳେ ସେ ଆଲୋକ ରାଜ୍ୟରେ ପ୍ରବେଶ କଲା, ଦେଖିଲା ସେ ପ୍ରେମ୍ କାପୁରର ବନ୍ଧନ ଭିତରେ । ଏବଂ ସେମାନେ ଗୋଟାଏ ହଲ୍‌ଘରେ ଆସି ଅନ୍ୟମାନଙ୍କ ମେଳରେ ରକ୍-ନ-ରୋଲରେ ଯୋଗ ଦେଇଛନ୍ତି ।

ଧୀରେ ଧୀରେ ପ୍ରେମ୍ କାପୁର କେତକୀ କାନ ପାଖରେ କହିଲା, : ତଳେ ପୋଲିସ୍ ଆସିଛନ୍ତି । ମୋ ମୁଣ୍ଡରେ ଆଘାତ ଲାଗିଛି । ମୋତେ ଧୀରେ ଧୀରେ ରୁମ୍‌କୁ ନେଇଚାଲ ।

କେତକୀ ବିବ୍ରତ ହୋଇ ଉଠିଥିଲା । କିନ୍ତୁ ସେ ଧୀରେ ଧୀରେ ପ୍ରେମ୍‌ର ସମସ୍ତ ଭାର ବହନ କରି ରୁମ୍ ଭିତରକୁ ନେଇଗଲା । ଦରଜା ବନ୍ଦ କରି, ପ୍ରେମ୍ କାପୁରକୁ ବିଛଣାରେ ଶୁଆଇ ଦେଇ ଗୋଟାଏ ଦୀର୍ଘଶ୍ୱାସ ପକାଇ କହିଲା : ମୁଁ ତୁମକୁ ହଜାରେ ଥର ବାରଣ କଲିଣି ପ୍ରେମ୍, ତମେ ସେ ଇତର ଲୋକମାନଙ୍କ ସହିତ ମିଶିବ ନାହିଁ କିନ୍ତୁ ତମେ...

ପ୍ରେମ୍ କାପୁର ମୁଣ୍ଡ ହଲାଇ ଇଙ୍ଗିତରେ ପାନୀୟ ଚାହୁଁଥିଲା ।

କେତକୀ ଗ୍ଲାସ୍ ଭର୍ତ୍ତିକରି ବଢ଼ାଇ ଦେଲା ପ୍ରେମ୍ କାପୁର ହାତକୁ ।

ପ୍ରେମ୍ କାପୁର ପାନୀୟତକ ନିଃଶେଷ କରି ଆଉଥରେ ଗ୍ଲାସ୍‌ଟା ବଢ଼ାଇଦେଲା । ଏବଂ ତା'ପରେ ଆହୁରି ଥରେ ।

ପ୍ରାୟ ଅଧଘଣ୍ଟା ଗୁମ୍ ହୋଇ ଶୋଇବା ପରେ ପ୍ରେମ୍ କାପୁର ଧୀରେ ଧୀରେ ମୁଣ୍ଡ ଉଠାଇ ଚାହିଁଲା ।

କେତକୀ ବିଷଣ୍ଣ ହୋଇ ବସି ରହିଛି ସୋଫା ଉପରେ । ହାତଠାରି ଡାକିଲା ପ୍ରେମ୍ କାପୁର । ପ୍ରେମ କାପୁରର ବାହୁ ବନ୍ଧନରେ ପେଶୀ ହୋଇ ଯାଇଥିଲା । ନାକରୁ ତା'ର ଦୀର୍ଘଶ୍ୱାସ ବହୁଥିଲା । ସେ ଆହୁରି ଜୋର୍‌ରେ ପ୍ରେମ୍ କାପୁରକୁ ଦୁଇ ହାତରେ ଜଡ଼େଇ ଧରି ତା'ଛାତିରେ ମୁହଁ ଗୁଞ୍ଜି ଦେଲା ।

ଘଣ୍ଟା କଣ୍ଟା ପରି ବୁଧବାର ଦିନ ସକାଳ ଆଠଟା ଭିତରେ ସବୁ ଘଟଣା ଘଟିଗଲା । କେତକୀ ନିଜ ଘରେ ବିଛଣା ଉପରେ ଶୋଇ ଛଟ ପଟ ହେଉଥିଲା । ପେଟର ଯନ୍ତ୍ରଣା ତ ନୁହେଁ ମନର ଯନ୍ତ୍ରଣା ବଢ଼ି ଯାଇଥିଲା ବାରୋମିଟର ପରି । ଦିଆଲ ଘଡ଼ିରେ ଯେତେବେଳେ ଆଠଟା ବାଜିବାର ଶବ୍ଦ ହେଲା, କେତକୀ ବିଛଣାରେ ଉଠି ବସିଲା । ହୁଏତ ଆଉ ଅଳ୍ପ ସମୟ ପରେ ଚିଠି ଆସି ପହଞ୍ଚି ଯିବ । ସେଠ୍ ରତନମଲ ଜାଣିବେ

ଯମୁନା ସ୍କୁଲରେ ପହଞ୍ଚି ନାହିଁ । ବାଟରେ ଦୁର୍ବୃତ୍ତଙ୍କ ଦ୍ୱାରା ହରଣଚାଳ ହୋଇଛି । ଏବଂ ସେଥିରେ ଦୃବୃତ୍ତମାନେ ଯମୁନାର ମୁକ୍ତିପଣ ଦଶଲକ୍ଷ ଟଙ୍କା ଦାବୀ କରିଛନ୍ତି । ତା'ପରର ଅବସ୍ଥା କ'ଣ ହେବ ରତନମଲଙ୍କର । ସେ ଏହି ହରଣଚାଳ ପାଇଁ କେତକୀକୁ ଦୋଷୀ କରିବେ ନାହିଁ ତ ! କେତକୀ ଏହି ଘଟଣା ସହିତ ଲିପ୍ତ ଅଛି ବୋଲି ତାଙ୍କ ମନରେ ସନ୍ଦେହ ଉଦ୍ରେକ ହେବ ନାହିଁ ତ !!

କେତକୀ ବିଛଣାରେ ଛଟ ପଟ ହେଉଥିଲା । ପେଟ ଯନ୍ତ୍ରଣା ତା'ର କାଲି ରାତିରୁ ଆରମ୍ଭ ହୋଇଥିଲା ବୋଲି ସେଠ୍ ରତନମଲ ଜାଣିଛନ୍ତି । ସେ ନିଜ ହାତରେ ଔଷଧ ଖୁଆଇଥିଲେ କେତକୀକୁ, କିନ୍ତୁ କେତକୀ ଭଲ ହୋଇନାହିଁ । ବରଂ ଯନ୍ତ୍ରଣା ବଢ଼ି ଯାଇଛି । ରତନମଲ ସକାଳେ ଖବର ନେଇଥିଲେ ସୁଧାକର ମାର୍ଫତରେ । ସେଇ ନିଜେ ବାରଣ କରି ପଠାଇଥିଲେ କେତକୀକୁ ଯମୁନା ସହିତ ସ୍କୁଲକୁ ଯିବା ପାଇଁ । ସେତିକି କେତକୀ ମନରେ ଗୋଟାଏ ସାନ୍ତ୍ୱନା । କିନ୍ତୁ ପ୍ରକୃତରେ ଯନ୍ତ୍ରଣାତ ପେଟରେ ନୁହେଁ, ଯନ୍ତ୍ରଣା ମନରେ । ପେଟ ଯନ୍ତ୍ରଣା ଗୋଟାଏ ଛଳନା ମାତ୍ର ।

ସେଠ୍ ରତନମଲ ଚିଠିପାଇ କେତକୀକୁ ଯଦି ନଜଣାନ୍ତି ? ନିଜେ ସେ ଚୁପ୍ ଚୁପ୍ ଯଦି ପୋଲିସ୍ ଷ୍ଟେସନକୁ ଫୋନ୍ କରନ୍ତି । ତା'ହେଲେ ଅବସ୍ଥା ଯେ ଅସମ୍ଭାଳ ହୋଇ ଉଠିବ । ତେବେ ବର୍ତ୍ତମାନ ଉପାୟ କ'ଣ । କେତକୀକୁ ଯେକୌଣସି ଉପାୟରେ ରତନମଲଙ୍କ ପାଖରେ ରହିବାକୁ ହେବ । ତାଙ୍କ ଗତିବିଧି ଲକ୍ଷ୍ୟ କରିବାକୁ ହେବ । ଏବଂ ତାଙ୍କ ଦୁଃଖରେ ସମଦୁଃଖୀ ହୋଇ ତାଙ୍କ ଭାବନାକୁ ନିୟନ୍ତ୍ରିତ କରିବାକୁ ହେବ ।

କେତକୀ ବିଛଣାରୁ ଉଠିବାକୁ ଚେଷ୍ଟା କରୁଥିଲା । କିନ୍ତୁ ପାରିଲା ନାହିଁ ମନର ଯନ୍ତ୍ରଣା ତା'ର ଏତେ ବଢ଼ି ଯାଇଥିଲା ଯେ ସେ ମୁହଁ ମାଡ଼ି ଆଖି ବୁଜି ପୁଣି ଶୋଇ ପଡ଼ିଲା ।

ଏହାପରେ କ'ଣ ହେବ ? କ'ଣ ହେବ ? ଯଦି ସବୁ ଠିକ୍ ଠିକ୍ ସମାଧାନ ହୋଇଯାଏ, ସେ ପାଇବ ଅଢ଼େଇ ଲକ୍ଷ ଟଙ୍କା । ସେତକ ଟଙ୍କା ନେବ ରଣଜିତ୍ ଠାକୁର । ତା'ପରେ ହାତରେ ଆଉ କିଛି ରହିବ ନାହିଁ । ପ୍ରେମ୍ କାପୁର କହୁଥିଲା ସୁଯୋଗ ଜୀବନରେ ଥରେ ଆସେ । ତା'ର ଅର୍ଥ କ'ଣ ? ତେବେ କ'ଣ ସେ ଇଙ୍ଗିତରେ କହୁଥିଲା ପ୍ରଥମ ସୁଯୋଗରେ ହିଁ...

ହଠାତ୍ ଭାରି ଯୋତାର ପାଦଶବ୍ଦ ଶୁଣି କେତକୀର ଭାବନା ଥମିଗଲା ।

ସେ ଦେଖିଲା ଖୋଦ ରତନମଲ ଦ୍ରୁତବେଗରେ ତା'ର ଘରେ ପ୍ରବେଶ କରୁଛନ୍ତି । ହାତରେ ଖଣ୍ଡେ କାଗଜ । ତା'ହେଲେ...ତା'ହେଲେ...

କେତକୀ ପେଟରେ ଆହୁରି ଯନ୍ତ୍ରଣା ବଢ଼ିଗଲା । ସେ ବିଛଣାରେ ଏ ମୁଣ୍ଡରୁ ସେ ମୁଣ୍ଡ ଯାଏ ଗଡ଼ିବାକୁ ଲାଗିଲା । କିନ୍ତୁ ସେଠ୍ ରତନମଲ ସେଇ ମୁହୂର୍ତ୍ତରେ ଥିଲେ ଅନ୍ୟ ରାଜ୍ୟରେ । ସେ କେତକୀର ଯନ୍ତ୍ରଣା କଥା ବୋଧହୁଏ ଭୁଲି ଯାଇଥିଲେ । ସିଧା ସେ ଯାଇ ଖଟ ଉପରେ ବସି ପଡ଼ି ଅସହାୟଙ୍କ ପରି ଚିତ୍କାର କରି ଉଠିଲେ, : ମୋର ସର୍ବନାଶ ହୋଇ ଯାଇଛି କେତକୀ ! ଯମୁନା...

ଆଉ ସେ କିଛି କହିପାରିଲେ ନାହିଁ । ଚିଠି ଖଣ୍ଡିକ କେତକୀ ହାତକୁ ବଢ଼ାଇଦେଲେ । କେତକୀ କମ୍ପିତ ହାତରେ ଚିଠି ଖଣ୍ଡିକ ନେଇ ପଢ଼ିବାକୁ ଆରମ୍ଭ କରିଦେଲା । ଚିଠି

ପଡ଼ିସାରି ସେ ଭୋ ଭୋ ହୋଇ କାନ୍ଦି ଉଠିଲା । ସେଠ୍ ରତନମଲଙ୍କ ଠାରୁ ସେ ଆହୁରି ବିବ୍ରତ, ଆହୁରି ବିଚଳିତ ହୋଇ ଉଠିଥିଲା ।

ସେଠ୍ ରତନମଲ ହୁଏତ କେତକୀ ଘରକୁ ଛୁଟି ଆସିଥିଲେ ଟିକିଏ ସାନ୍ତ୍ୱନା ପାଇବା ପାଇଁ । କିନ୍ତୁ ବଦଳରେ କେତକୀର ଅବସ୍ଥା ଦେଖି ନିଜେ ସେ ଆହୁରି ବିଚଳିତ ହୋଇ ପଡ଼ିଲେ । ତାଙ୍କର ମନେହେଲା କେତକୀକୁ ସେ ସମ୍ବାଦଟା ନ ଦେଇଥିଲେ ବୋଧହୁଏ ଭଲ ହୋଇଥାନ୍ତା ।

ସେଠ୍ ରତନମଲ ତାଙ୍କ ମନକୁ ଦୃଢ଼ କରିବାକୁ ଚେଷ୍ଟା କଲେ । ସେ ତାଙ୍କ ଜୀବନର ବହୁ ଉତ୍‌ଥାନ ପତନ ଭିତର ଦେଇ ଗତି କରିଛନ୍ତି । ଲକ୍ଷ ଲକ୍ଷ ଟଙ୍କା ବ୍ୟବସାୟରେ ତାଙ୍କର କ୍ଷତି ହୋଇଛି । କିନ୍ତୁ କେବେ ସେ ଆଜିପରି ନିଜକୁ ଅସହାୟ ମନେ କରିନାହାନ୍ତି । ଆଜି ଯମୁନାକୁ ହରେଇ ତାଙ୍କର ମନେ ହେଉଥିଲା ସେ ସର୍ବସ୍ୱାନ୍ତ ହୋଇ ଯାଇଛନ୍ତି । ଏହା ଅପେକ୍ଷା ତାଙ୍କର ମୁଣ୍ଡରେ ବଜ୍ରପାତ ହୋଇଥିଲେ ଭଲ ହୋଇ ଥାଆନ୍ତା ।

ଅବଶ୍ୟ ସେମାନେ ଯମୁନାର ମୁକ୍ତିପଣ ସ୍ୱରୂପ ଦଶଲକ୍ଷ ଟଙ୍କା ଦାବି କରିଛନ୍ତି । ଦଶ ଲକ୍ଷ ଟଙ୍କା ସେଠ୍ ରତନମଲଙ୍କ ପକ୍ଷରେ କିଛି ଗୋଟାଏ ସମସ୍ୟା ନୁହେଁ । କିନ୍ତୁ ସେମାନେ ଯଦି କଥା ନ ରଖନ୍ତି !! କିନ୍ତୁ କିଏ ସେମାନେ !!

ସେଠ୍ ରତନମଲ କେତକୀ ପାଖରୁ ଫେରି ଯାଉଥିଲେ । କେତକୀ କିନ୍ତୁ ବିଛଣାରୁ ଓହ୍ଲେଇ ପଡ଼ି ରତନମଲଙ୍କ ଗୋଡ଼ ଧରି ତଳେ ଲୋଟି ପଡ଼ିଲା । କ'ଣ ହେଲା, କ'ଣ ହେଲା କେତକୀର !! ରତନମଲ ଅବାକ୍ ହୋଇଗଲେ ।

କେତକୀ ରତନମଲ ଗୋଡ଼ ଦୁଇଟା ଧରି ଭୋ' ଭୋ' ହୋଇ କାନ୍ଦୁଥିଲା । କାନ୍ଦି କାନ୍ଦି କହୁଥିଲା : ନା ନା, ଯେମିତି ହେଉ ଯମୁନାକୁ ଉଦ୍ଧାର କରିବାକୁ ହେବ। ଯମୁନା, ଯମୁନା...

କେତକୀ ପୁଣି ଭୋ' ଭୋ' ହୋଇ କାନ୍ଦି ଉଠିଲା ।

ରତନମଲ ଆଉ ଏକ ସମସ୍ୟାରେ ଜଡ଼ିତ ହୋଇ ପଡ଼ିଲେ । ସେ କେତକୀକୁ ସାନ୍ତ୍ୱନା ଦେବେ ନା ତାଙ୍କର ପରବର୍ତ୍ତୀ କର୍ତ୍ତବ୍ୟ ଠିକ୍ କରିବେ !

ବହୁ କଷ୍ଟରେ ନିଜ ହାତରେ କେତକୀକୁ ସେ ଉଠାଇଲେ । ବିଛଣା ଉପରେ ବସାଇଲେ । କିନ୍ତୁ କେତକୀ ଆଦୌ ସ୍ଥିର ହୋଇ ବସିବାକୁ ଚାହେଁନାହିଁ । ସେ ଏଇ ମୁହୂର୍ତ୍ତରେ ଛୁଟି ଯିବାକୁ ଚାହେ ଯମୁନା ପାଖକୁ ।

ସେଠ୍ ରତନମଲ କହିଲେ : ତୁମେ ଟିକିଏ ଶାନ୍ତ ହୁଅ କେତକୀ । ଏପରି ଅସ୍ଥିର ହେଲେ ଚଳିବ ! ତା'ହେଲେ ଘଟଣାଟା ସମସ୍ତେ ଜାଣିଯିବେ । ମୁଁ ଚାହେଁନା ଅନ୍ୟକେହି ଏ ସଂପର୍କରେ କିଛି ଜାଣୁ । ମୋତେ ଟିକିଏ ଚିନ୍ତା କରିବାକୁ ଦିଅ । ମୁଁ ଟିକିଏ ଏ ସମ୍ବନ୍ଧରେ ଭାବି ଚିନ୍ତି ଆମର ପରବର୍ତ୍ତୀ କର୍ତ୍ତବ୍ୟ ସ୍ଥିର କରେ ।

: କିନ୍ତୁ ସେମାନେ ଯଦି ଟଙ୍କା ପାଇବା ପରେ ଯମୁନାକୁ ନ ଫେରାନ୍ତି ? ମୁଁ କ'ଣ କରିବି ? ମୋର ଅବସ୍ଥା କ'ଣ ହେବ ? କେତକୀ ପୁଣି ବ୍ୟାକୁଳ ବିଳାପ ଆରମ୍ଭ କରିଦେଲା ।

ସେଠ୍ ରତନମଲ କହିଲେ : ଆମେ ଯେ ସେମାନଙ୍କୁ ଟଙ୍କା ଦେଇ ଯମୁନାକୁ

ଫେରି ପାଇବା ତା'ର ଗ୍ୟାରେଣ୍ଟି କ'ଣ ଅଛି ? ତମ ପରି ମୁଁ ବି ଏକା କଥା ଚିନ୍ତା କରୁଛି ।

: କେତକୀର ଅନ୍ତର ଭିତରଟା କମ୍ପି ଉଠିଲା । ତେବେ କ'ଣ ସେଠ୍ ରତନମଲ ଭିନ୍ନ ପଥ କଥା ଚିନ୍ତା କରୁଛନ୍ତି ?

: ମୁଁ ଭାବୁଛି, ଏଇ 'ଯୁଗଯାତ୍ରୀ' ଦଳ ସମ୍ବନ୍ଧରେ ମୋତେ ଟିକିଏ ଅନୁସନ୍ଧାନ କରିବାକୁ ହେବ। କିଏ ଏମାନେ । ଇତି ପୂର୍ବରୁ ସେମାନେ ସହରରେ ଅନ୍ୟ କାହାକୁ ବ୍ଲାକ୍‌ମେଲିଂ କରିଛନ୍ତି କି ନାହିଁ, ଇତ୍ୟାଦି ଇତ୍ୟାଦି...

: ସେ ଖବର ଆପଣଙ୍କୁ ଦେବ କିଏ ?

:ପୋଲିସ୍ !

କେତକୀ କିପରି ଅସହାୟ ଦୃଷ୍ଟିରେ ରତନମଲ ମୁହଁକୁ ଚାହିଁ ବିଛଣାରୁ ତଳକୁ ଓହ୍ଲେଇଲା । ଆଉଥରେ ସେ ରତନମଲଙ୍କ ଗୋଡ଼ ଦୁଇଟା ଜାବୁଡ଼ି ଧରି କହିଲା : ଆପଣ ପୋଲିସ୍‌ରେ ଖବର ଦେଲେ ଆମେ ଆଉ ଯମୁନାକୁ ପାଇବା ନାହିଁ ।

ସେଠ୍ ରତନମଲ ପୁଣି କେତକୀକୁ ତଳୁ ଉଠାଇଲେ । କହିଲେ : ତମେ ଟିକିଏ ଶାନ୍ତ ହୁଅ କେତକୀ । ତମେ ଅସୁସ୍ଥ । ତମେ ସୁସ୍ଥ ଥିଲେ ହୁଏତ ଏପରି ଦୁର୍ଘଟଣା ଘଟି ନଥାନ୍ତା । ଯାହା ହେଉ ମୁଁ ଚିନ୍ତା କରୁଛି । ଏ ସମ୍ବାଦ ଅନ୍ୟ କାହା କାନକୁ ଯାଉ ମୁଁ ଚାହେନାହିଁ । ସକାଳେ ଡାକ୍ତରଙ୍କୁ ଫୋନ୍ କରିଥିଲି । କିଛି ସମୟରେ ସେ ହୁଏତ ଆସିଯିବେ । ଶୀଘ୍ର ତମର ଆରୋଗ୍ୟ ହୋଇ ଉଠିବା ଉଚିତ । ହୁଏତ ଏ କ୍ଷେତ୍ରରେ ତମର ସାହାଯ୍ୟ ସହଯୋଗ...

ସେଠ୍ ରତନମଲଙ୍କର କଥା ଶେଷ ହେଲା ନାହିଁ । ଡକ୍ଟର ଶର୍ମା ହସି ହସି ଆଗେଇ ଆସୁଥିଲେ ।

: ଗୁଡ୍‌ମର୍ଣ୍ଣିଂ ମିଷ୍ଟର କାନୋଡ଼ିଆ ।

ସେଠ୍ ରତନମଲ ଡକ୍ଟର ଶର୍ମାଙ୍କ ସହିତ କରମର୍ଦ୍ଦନ କରି କେତକୀ ଆଡ଼କୁ ହାତ ବଢ଼ାଇ କହିଲେ : ଏଇ ଆପଣଙ୍କ ପେସେଣ୍ଟ ।

ଡକ୍ଟର ଶର୍ମା ଚାଲି ଯାଇଥିଲେ । ଏକ ବିରାଟ ପ୍ରେସ୍‌କ୍ରିପ୍‌ସନ ରଖି ଯାଇଥିଲେ କେତକୀ ପାଇଁ । କେତକୀ କିନ୍ତୁ ଅସ୍ଥିର ହୋଇ ଉଠିଥିଲା । ଏହା ଭିତରେ ତିନି ଚାରି ଘଣ୍ଟା ଅତିବାହିତ ହୋଇ ଗଲାଣି । ଘଟଣାର ଗତି କେଉଁଆଡ଼େ ମୁହାଁଇଲାଣି, କେତକୀକୁ ଜଣାନାହିଁ । ସେଠ୍ ରତନମଲ ଆସିଥିଲେ । ଯମୁନାର ହରଣଚାଳ ସମ୍ବାଦ ଜଣାଇଗଲେ । କିନ୍ତୁ କିପରି ଭାବରେ ସେ ସମ୍ବାଦ ପାଇଲେ, କିଏ ତାଙ୍କୁ ଚିଠି ଦେଇଗଲା, ସେ କଥା କିଛି କହିଗଲେ ନାହିଁ । କେତକୀ ବି କିଛି ପଚାରି ପାରିଲା ନାହିଁ । ପଚାରିବା ତା'ପକ୍ଷରେ ସଙ୍ଗତ ହୋଇ ନ ଥାନ୍ତା ।

ସେ ଏଇ ମୁହୂର୍ତ୍ତରେ ସେଠ୍ ରତନମଲଙ୍କୁ କେଉଁଠି ପାଇବ ? ସେ ତ ଅଫିସ୍ ଚାଲି ଯାଇଥିବେ । କିନ୍ତୁ ତାଙ୍କ ମନର ଅବସ୍ଥା ଯାହା ସେଥିରେ ସେ ଅସ୍ଥିର ଚିତ୍ତରେ

କ'ଣ ଅଫିସ୍ କାମ କରି ପାରୁଥିବେ ? ନା, ଅଫିସ୍ ଯିବାର ନାଁ କହି ପୋଲିସ୍ ଷ୍ଟେସନ୍‌କୁ ଚାଲି ଯାଉଥିବେ । କେତକୀ ବିଚଳିତ ହୋଇ ପଡ଼ିଥିଲା । ସ୍ଥିର ହୋଇ ବସିପାରୁ ନଥିଲା ଗୋଟିଏ ଜାଗାରେ । କ'ଣ କରିବ ସେ ? ତା'ର କର୍ତ୍ତବ୍ୟ ହେଉଛି ସେଠ୍ ରତନମଲଙ୍କୁ ଆୟତ୍ତରେ ରଖିବା । କିନ୍ତୁ ସେ ପାରୁଛି କେଉଁଠି ? ସେ ଭାବିଥିଲା ରତନମଲ ତା'ର ପରାମର୍ଶ ନେବେ । ତାକୁ ପାଖରେ ବସାଇ ରଖିବେ। କିନ୍ତୁ ସକାଳୁ ସେଇ ଯେ ସେ ଡାକ୍ତରଙ୍କୁ ପଠାଇଦେଇ ଯାଇଛନ୍ତି, ଆଉ ତାଙ୍କର ଦର୍ଶନ ନାହିଁ ।

ଏହା ଭିତରେ ସୁଧାକର ଦୁଇଥର ଆସିଥିଲା । ଯମୁନା ଏତେବେଳ ଯାଏ ସ୍କୁଲରୁ ଫେରି ଆସି ନଥିବା କଥା ସେ କିଛି ଜାଣିନାହିଁ । ତାକୁ ସେଠ୍‌ଜୀ କ'ଣ କହିଛନ୍ତି କେଜାଣି, ସେ ମଧ୍ୟ ଯମୁନା କଥା କିଛି ପଚାରିନାହିଁ । ରକ୍ଷା ପାଇଛି କେତକୀ । ତା'ନହେଲେ କ'ଣ ଯେ ଉତ୍ତର ଦେଇଥାନ୍ତା, ଏବେ ବି ସ୍ଥିର କରିପାରୁନାହିଁ ।

ମନେ ମନେ କେତକୀ ଜଣେ କାହାକୁ ଖୋଜୁଥିଲା । ସେ ଯିଏ କେହି ହେଉନା କାହିଁକି, ଅନ୍ତତଃ ଦି'ଚାରି ପଦ କଥା କହି ମନର ଚଞ୍ଚଳତାକୁ କଟାଇ ପାରି ଥାଆନ୍ତା । ଆଜି ଗଙ୍ଗାର ବି ଦେଖାନାହିଁ । ସେ ଆସିଲେ ବି...କିନ୍ତୁ ଗଙ୍ଗା... କ'ଣ ଜାଣି ସାରିଲାଣି, ଯମୁନା ସମ୍ବନ୍ଧରେ ପ୍ରଶ୍ନକଲେ କେତକୀ ଆହୁରି ଅସୁବିଧାରେ ପଡ଼ିବ ।

ସୁଧାକର ତା'ରି ଆଡ଼େ ଆଗେଇ ଆସୁଥିବାର ସେ ଦେଖିଲା । କେତକୀ ଇଚ୍ଛାକରି ଆଖି ଦୁଇଟା ବନ୍ଦ କରି ନିଦରେ ଶୋଇଥିବାର ଛଳନା କଲା ।

ସୁଧାକର କିନ୍ତୁ ଫେରି ଯିବାର ପାତ୍ର ନୁହେଁ । ସେ ବଡ଼ ପାଟି କରି ଡାକ ଛାଡ଼ିଲା ।

କେତକୀ ନିଦରୁ ଉଠିଲା ପରି ଚଞ୍ଚଳ ଉଠି ବସିଲା ।

ସୁଧାକର କହିଲା : ମାଲିକେ ତମକୁ ଡାକୁଛନ୍ତି ।

: ସେଠ୍‌ଜୀ ?

ହଁ ସେଠ୍‌ଜୀ । କ'ଣ ଯେ ହୋଇଛି ତାଙ୍କର, ଯମୁନାକୁ ତା' ମାମୁ ଘରକୁ ପଠାଇ ଦେଇ ସକାଳୁ କବାଟ କିଳି ଘରେ ପଶିଛନ୍ତି । ଖିଆ ନାହିଁ, ପିଆ ନାହିଁ, ଖାଲି କାମ । କ'ଣ ବା ଏତେ କାମ । ନ ଖାଇବ ତ କାମ କାହିଁକି କରିବ !! ସୁଧାକର ବକ୍ ବକ୍ କରୁ କରୁ ଘରୁ ବାହାରି ଚାଲିଗଲା ।

କେତକୀ ମନେ ମନେ ଟିକିଏ ଆଶ୍ୱସ୍ତ ହେଲା । ସେଠ୍‌ଜୀ ତା'ହେଲେ ଅଫିସ୍ ଯାଇ ନାହାନ୍ତି । ଥାନାରେ ଖବର ଦେଇ ନାହାନ୍ତି। ଘରେ କବାଟ ବନ୍ଦ କରି କାମର ଛଳନା କରି ବସି ରହିଛନ୍ତି । ଯମୁନା ସମ୍ବନ୍ଧରେ ହୁଏତ କିଛି ଗୋଟାଏ ସିଦ୍ଧାନ୍ତରେ ପହଞ୍ଚି ପାରୁ ନାହାନ୍ତି ।

କେତକୀ ଆଉ କାଳବିଳମ୍ବ କଲାନାହିଁ । ସଙ୍ଗେ ସଙ୍ଗେ କ୍ଷିପ୍ର ପଦ ଚାଲି ସେ ଆଗେଇଗଲା ସେଠ୍ ରତନମଲଙ୍କ ଘର ଆଡ଼କୁ । ଦରଜା ଖୋଲାଥିଲା । ସେଠ୍‌ଜୀ ଟେବୁଲ୍ ଉପରେ ବସି ଗୋଟାଏ କାଗଜରେ କ'ଣ ଲେଖିବାରେ ବ୍ୟସ୍ତ ଥିଲେ । କେତକୀର ପାଦ ଶବ୍ଦ ଶୁଣି, ତା'ଆଡ଼େ ମୁହଁ ଟେକି ନ ଚାହିଁ, ସେହିପରି ଲେଖୁ ଲେଖୁ କହିଲେ : ବସ ।

କେତକୀ ସାମନାରେ ଗୋଟାଏ ଚେୟାର ଉପରେ ବସିଲା ।

ସେଠ୍‌ଜୀ ଲେଖା ଶେଷ କରି କେତକୀ ମୁହଁକୁ ଚାହିଁଲେ ।

: ଆଉ ? ତମ ପେଟ କେମିତି ଅଛି ?

: ଭଲ ।

: ଯମୁନା ସମ୍ବନ୍ଧରେ ଆଉ କ'ଣ ଭାବିଲ ?

କେତକୀ କିଛି ଉତ୍ତର ଦେଲାନାହିଁ । ସେ ଯେ ଯମୁନା ପାଇଁ ଅତ୍ୟନ୍ତ ମର୍ମାହତ, ସେଇ ଭାବ ତା' ଦେହ ମୁହଁରେ ଫୁଟାଇବାକୁ ଚେଷ୍ଟା କରୁଥିଲା ।

: ମୁଁ ଜାଣେ କେତକୀ, ଯମୁନା ପାଇଁ ତମେ ଅତ୍ୟନ୍ତ କଷ୍ଟ ପାଇଛ । କିନ୍ତୁ କିଛି ଉପାୟ ନାହିଁ । ଯାହା ଘଟି ଯାଇଛି ତା'ର ମୁକାବିଲା ଆମକୁ କରିବାକୁ ପଡ଼ିବ। ସକାଳୁ ମୁଁ ଏଇଠି ବସି ସେଇକଥା ଭାବୁଛି । ଏତେ ସହଜରେ ଆତ୍ମ-ସମର୍ପଣ କରିବାକୁ ମୋ ବିବେକ ରାଜି ହେଉନାହିଁ । କିନ୍ତୁ ପୁଣି ଯେତେବେଳେ ଯମୁନାର ବିକଳ ମୁହଁ ମୋ ଆଖି ଆଗରେ ଭାସି ଉଠୁଛି, ମୁଁ ଚୁପ୍ ହୋଇ ଯାଉଛି । ସେଇଥିପାଇଁ ଦୁଇ ତିନିଥର ମୁଁ ଟେଲିଫୋନ୍ ରିସିଭର୍ ଉଠାଇ ମଧ୍ୟ ଥାନାକୁ ଡାଏଲ୍ କରିପାରୁନାହିଁ । ଆଉ ଗୋଟାଏ ଚିନ୍ତା ମୋ ମନକୁ ଆସିଛି । ଆଚ୍ଛା ଏ ସମ୍ବନ୍ଧରେ ତମର ମତ କ'ଣ ? ଏଠାରେ କେତେଗୁଡ଼ାଏ ଘରୋଇ ଗୁଇନ୍ଦା ସଂସ୍ଥା ଅଛି । ତହିଁରୁ 'ଗ୍ଲୋବ୍ ଡିଟେକ୍‌ଟିଭ୍ ଏଜେନ୍‌ସୀ' ଆମର ଥରେ କିଛି କାମ ଖୁବ୍ ଦକ୍ଷତାର ସହିତ କରିଥିଲେ । ତାଙ୍କ ଡାଇରେକ୍ଟରଙ୍କ ସହିତ ମୋର ପରିଚୟ ଅଛି । ତାଙ୍କୁ ଘଟଣାଟା ଜଣେଇଲେ କେମିତି ହୁଅନ୍ତା ?

କେତକୀର ପେଟ ଭିତରେ ଏଥର ପ୍ରକୃତରେ ଯନ୍ତ୍ରଣା ଆରମ୍ଭ ହୋଇଗଲା । ଯିଏ ହେଉ, ପୋଲିସ୍ ବା ଡିଟେକ୍‌ଟିଭ୍ ସମସ୍ତେ ତା' ଆଖିରେ ସମାନ । ସେମାନେ କେହି ଏ କେସ୍ ହାତକୁ ନେଲେ କାମଟା ସୁରୁଖୁରୁରେ ହୋଇ ପାରିବ ନାହିଁ ।

କେତକୀ ମୁହଁରେ ଯେପରି କଳାମେଘ ଘୋଟି ଆସିଲା । ସେ ନୀରବରେ ବସି ଟେବୁଲ ଉପରେ ଆନମନା ହୋଇ ଗାର ଟାଣୁଥିଲା ।

ସେଠ୍ ରତନମଲ କିଛି ଉତ୍ତର ନ ପାଇ ପୁଣି ପଚାରିଲେ : କୁହ କେତକୀ । ତମର ଭୂମିକା ଆଜି ଏଇ ମୁହୂର୍ତ୍ତରେ ମୋ ଜୀବନରେ ଏକ ବଡ଼ ଭୂମିକା । ତମ ଛଡ଼ା ଏ ସମ୍ବନ୍ଧରେ ଆଉ ଦ୍ୱିତୀୟ ଲୋକ କେହି କିଛି ଜାଣିନାହିଁ । ମୁଁ ବି ଚାହେଁ ନାହିଁ ଏ ଘଟଣା ବେଶି ଲୋକଙ୍କ କାନକୁ ଯାଉ । କିନ୍ତୁ ଜାଣ କେତକୀ ମୋର ଚରିତ୍ର ଏପରି ଏକ ଧାତୁରେ ଗଢ଼ା, ମୁଁ ସହଜରେ କାହାରି ପାଖରେ ନତି ସ୍ୱୀକାର କରିବାକୁ ଚାହେଁ ନାହିଁ । କିନ୍ତୁ ଏମାନେ...

: କ୍ଷମା କରିବେ ସାର୍, କେତକୀ ସେଠ୍ ରତନମଲଙ୍କ କଥାରେ ବାଧା ଦେଇ କହିଲା, ହୁଏତ ଏଇଟା ମୋର ଧୃଷ୍ଟତା ହେବ । ମୁଁ ଯମୁନାର ମୁକ୍ତିପଣ ଦଶଲକ୍ଷ ଟଙ୍କା ଦେବାକୁ ରାଜି ଅଛି । ଆପଣ ଆଉ ପୋଲିସ୍ ଡିଟେକ୍‌ଟିଭ୍ ଦେଇ ଏତେ ଘଣ୍ଟା ଚକଟା କରନ୍ତୁ ନାହିଁ । ଶେଷରେ ହୁଏତ...

: କେତକୀ କ'ଣ କହୁଚ ଟିକିଏ ଚିନ୍ତା କରି କୁହ । ଦଶ ଲକ୍ଷ ଟଙ୍କା ପାନପତ୍ର ନୁହେଁ । ତମେ ଏତେ ଟଙ୍କା ପାଇବ କେଉଁଠୁ ? ସେଠ୍‌ଜୀଙ୍କ ସ୍ୱର ଟିକିଏ କଠିନ ହୋଇ ଉଠିଥିଲା ।

କେତକୀ ବି ଦୃଢ଼ ସ୍ୱରରେ କହିଲା : ଯମୁନା ଯେଉଁଦିନ ଚିହ୍ନା ଅଚିହ୍ନା ନବାରି

ମୋ କୋଳକୁ ମା'ଡାକି ଡେଇଁ ପଡ଼ିଛି, ସେଇଦିନଠାରୁ ମୁଁ ଯମୁନାର ମା', ଆପଣ ପୁରୁଷ ଲୋକ । ମାତୃ ହୃଦୟ ସମ୍ବନ୍ଧରେ କିଛି ଜାଣନ୍ତି ନାହିଁ । ମୁଁ କଥା ଦେଉଛି, ମୋ ନିଜକୁ ଆପଣଙ୍କ ପାଖରେ ବନ୍ଧକ ଦେଇ ଯମୁନାର ମୁକ୍ତିପଣ ଶୋଧ କରିବି । କେତକୀ ଆଉ ଆତ୍ମ ସମ୍ବରଣ କରି ପାରିଲା ନାହିଁ । ଭୋ ଭୋ ହୋଇ କାନ୍ଦି ଉଠିଲା ।

: ନା କେତକୀ । ଶୁଣ, ତମେ ମତେ ଭୁଲ୍ ବୁଝ ନାହିଁ । ଦଶ ଲକ୍ଷ ଟଙ୍କା ମୋ ପାଖରେ ସମସ୍ୟା ନୁହେଁ । କିନ୍ତୁ ମୋର ଅନ୍ୟ ପାଖରେ ନତି ସ୍ୱୀକାର......

: ସେଠ୍ ରତନମଲଙ୍କ କଥା ଶେଷ ହେଲା ନାହିଁ । ଟେଲିଫୋନ୍‌ଟା ବାଜି ଉଠିଲା । ସେଠ୍‌ଜୀ ଯେପରି ସେଇ କଲ୍‌ଟା ପାଇଁ ଅପେକ୍ଷା କରିଥିଲେ । ଏକ୍ ପ୍ରକାର ରିସିଭରଟା ଝାମ୍ପିନେଇ ସେ କାନରେ ଦେଲେ : ହ୍ୟାଲୋ ?

କେତକୀ ଦେଖିଲା, ଧୀରେ ଧୀରେ ସେଠ୍ ରତନମଲଙ୍କ ମୁହଁଟା କିପରି ଶେତା ପଡ଼ି ଯାଉଚି । କପାଳର ମାନଚିତ୍ରରେ ଅସଂଖ୍ୟ ଦୁଶ୍ଚିନ୍ତାର ରେଖା । କେବଳ ସେଠ୍‌ଜୀ ଶୁଣି ଯାଉଛନ୍ତି, ପଦଟିଏ ବି ଉତ୍ତର ଦେଉ ନାହାନ୍ତି । ଶେଷରେ ଶ୍ଳଥ ହାତରେ ରିସିଭରଟା କ୍ରେଡେଲ ଉପରେ ଥୋଇ ଆଖିବୁଜି ମୁହୂର୍ତ୍ତେ ବସିପଡ଼ି ଧୀରେ କ୍ଳାନ୍ତ ସ୍ୱରରେ କହିଲେ : ସେମାନେ ତାଙ୍କର ଶେଷ କଥା କହିଦେଲେ । ଆଗାମୀ ଶୁକ୍ରବାର ରାତି ଦଶଟା ତିରିଶ ମିନିଟ୍‌ରେ ନିର୍ଦ୍ଦିଷ୍ଟ ସ୍ଥାନରେ ନେଇ ଟଙ୍କା ଦେଇ ଆସିବାକୁ ହେବ । ପରଦିନ ସକାଳ ନ ହେଉଣୁ ସେମାନେ ଯମୁନାକୁ ଫେରାଇ ଦେଇଯିବେ । ତା'ନହେଲେ ଶନିବାର ସକାଳ ସାତଟା ଭିତରେ ପୋଲିସ୍ ଯମୁନାର ମୃତ ଦେହ ଆଣି ଆମଘରେ ପହୁଞ୍ଚାଇବ । ଏହି ତାଙ୍କର ଶେଷ କଥା । ଏହାପରେ ସେ ଆଉ ଫୋନ୍ କରିବେ ନାହିଁ କିମ୍ବା ସମ୍ବାଦ ଦେବେନାହିଁ । କେତକୀର କ୍ରନ୍ଦନ ରୋଳ ଆହୁରି ଟିକିଏ ବଢ଼ି ଯାଇଛି । ସେ ଉଠି ଠିଆ ହୋଇ ପଡ଼ିଲା । ଏଥର ଘରୁ ବାହାରି ଚାଲିଯିବ, ଏହି ପରି ଭାବ ।

ରତନମଲ କହିଲେ : ତମେ ଅତି ବିଚଳିତ ହୋଇ ପଡ଼ିଛ କେତକୀ । ବିପଦବେଳେ ଭାଙ୍ଗି ପଡ଼ିବା ବୁଦ୍ଧିମାନର କାମ ନୁହେଁ । ଶୁକ୍ରବାର ରାତି ଦଶଟାମାନେ ଆମ ହାତରେ ବର୍ତ୍ତମାନ ପ୍ରଚୁର ସମୟ ଅଛି । ଏ କେତେ ଘଣ୍ଟାତ ସେମାନେ ଯମୁନାର କିଛି ଅନିଷ୍ଟ କରିବେ ନାହିଁ । ଏହା ଭିତରେ ଆମେ ଉପାୟ ଚିନ୍ତା କିରିନେବା । ଝିଅ ଏକା ତମର ନୁହେଁ, ମୁଁ ତା'ର ବାପା । ସେ ମୋର ଏକମାତ୍ର ସନ୍ତାନ । ତମେ ଜାଣନା କେତକୀ, ତା' ମା' ମୃତ୍ୟୁ ଶଯ୍ୟାରେ ଶୋଇ କିପରି ବିକଳ ହୋଇ ଯମୁନାର ଭାର ମୋ ଉପରେ ଅର୍ପଣ କରି ଯାଇଛନ୍ତି । ମୁଁ କେବେହେଲେ ଯମୁନାର ଜୀବନ ଅକାଳେ ନଷ୍ଟ ହେବାକୁ ଦେବିନାହିଁ । ଦଶଲକ୍ଷ ଟଙ୍କାତ ମୋ ପାଖରେ ଗୋଟେ ତୁଚ୍ଛ ବ୍ୟାପାର ।

କେତକୀ ମନରେ ଟିକିଏ ଦମ୍ଭ ଧରିଲା । କିନ୍ତୁ ମୁହଁ ଖୋଲି କିଛି କହିଲା ନାହିଁ । ନୀରବରେ ଅଶ୍ରୁସିକ୍ତ ନୟନରେ ତଳକୁ ମୁହଁ ପୋତି ବସି ରହିଥିଲା ।

ସେଠ୍ ରତନମଲ କହିଲେ : ତମେ ଯାଅ । ଔଷଧ ପତ୍ର ଖାଇ ସୁସ୍ଥ ହୁଅ । ମୁଁ ବି ମନ ସ୍ଥିର କରିନିଏ । ପରାଜୟ ବରଣ କରିବା ପାଇଁ ମନକୁ ପ୍ରସ୍ତୁତ କରେ । ତା'ପରେ ସବୁ ଠିକ୍ ହୋଇଯିବ । ଯମୁନାକୁ ମୁଁ ଫେରାଇ ଆଣିବି । ଏ ପ୍ରତିଶ୍ରୁତି ତମକୁ ଦେଉଛି ତମେ ନିଶ୍ଚିନ୍ତ ହୁଅ ।

କେତକୀ ଫେରି ଆସିଥିଲା । ନିଜ ଘରେ ଶୋଇ ଶୋଇ ଭାବୁଥିଲା । ସେଠ୍ ରତ୍ନମଲଙ୍କ ମତ ପରିବର୍ତ୍ତନ ହୋଇଛି । ସେ ହୁଏତ ଆଉ ଥାନା ପୋଲିସ୍ କରିବେ ନାହିଁ କିମ୍ବା କୌଣସି ଡିଟେକ୍‌ଟିଭ୍ ଏଜେନ୍‌ସୀ ଦୁଆରକୁ ଯିବେନାହିଁ । ତା'ହେଲେ ତା'ର ବିଜୟ ସୁନିଶ୍ଚିତ । ଏଥର ପ୍ରେମକୁ ସେ ନିଜର କରିପାରିବ । କିନ୍ତୁ ଏଇ ଶୁଭ ସମ୍ବାଦଟା ସେ ତ ପ୍ରେମକୁ ଦେଇ ପାରିଲା ନାହିଁ । କହି ଆସିଥିଲା ସମସ୍ତ ଘଟଣା ସେ ତାକୁ ଫୋନ୍ କରି ଜଣାଇବ । ପ୍ରେମ୍ ହୁଏତ ତା' ଫୋନ୍ ପାଇଁ ପ୍ରତୀକ୍ଷା କରି ବସି ରହିଥିବ ।

କେତକୀ ଧୀରେ ଧୀରେ ଉଠିଲା । ଫୋନ୍‌ଟା ଯାଇ ଯମୁନା ଘରେ । ନା, ସବୁକଥା ସେ ପ୍ରେମ୍‌କୁ ଜଣାଇ ଦେବା ଭଲ । ସେ ଆଶା କରି ରହିଥିବ । ମୁକ୍ତିପାଇଁ ବ୍ୟାକୁଳ ହେଉଥିବ । କିନ୍ତୁ କେତକୀ ନିଜେ କେବେ ମୁକ୍ତି ପାଇବ ? ଟଙ୍କା, ଆହୁରି ଅନେକ ଟଙ୍କା ତା'ର ପ୍ରୟୋଜନ । ସେଥିପାଇଁ ପୁଣିଥରେ ତାକୁ କର୍ମ ଯଜ୍ଞରେ ଅବତୀର୍ଣ୍ଣ ହେବାକୁ ହେବ । ପ୍ରେମ୍ କହୁଥିଲା, ସୁଯୋଗ ଥରେ ଆସେ, ଦ୍ୱିତୀୟ ଥର ପାଇଁ ଅପେକ୍ଷା କରିବା ଉଚିତ ନୁହେଁ । କିନ୍ତୁ ଏହା କିପରି ସମ୍ଭବ ! ପ୍ରଥମ ସୁଯୋଗରେ ସବୁ ଟଙ୍କା ହାତ ପଇଠ କରିପାରିଲେ ଅବଶ୍ୟ ଆଉ ଦୁଶ୍ଚିନ୍ତାଗ୍ରସ୍ତ ହେବାକୁ ହୁଅନ୍ତା ନାହିଁ । କିନ୍ତୁ.....ନା, ଅସମ୍ଭବ ।

କେତକୀ ଉଠିଲା ।

ଯମୁନାର ଘରଟା ଆଜି ସକାଳୁ ଆଉ ଖୋଲା ହୋଇନାହିଁ । କେତକୀ ଦରଜା ଠେଲି ଭତରକୁ ପଶିଲା । ଫାଙ୍କା ପଡ଼ି ରହଛି । ବହି ଖେଳନା ସବୁ ଅନାବନା ହୋଇ ଏଣେତେଣେ ପଡ଼ିଛି । କେତକୀ ଅଭ୍ୟାସ ବଶତଃ ଗୋଟାଏ ଦୁଇଟା ଜିନିଷ ନିର୍ଦ୍ଦିଷ୍ଟ ସ୍ଥାନରେ ରଖିଲା । ତା'ପରେ ଆଗେଇଗଲା ଟେଲିଫୋନ୍ ପାଖକୁ । ରିସିଭର ଉଠାଇଲା ବେଳେ ହାତଟା ଟିକିଏ କମ୍ପି ଉଠିଲା । ମୁହୂର୍ତ୍ତେ ସ୍ଥିର ରହିଲା । ଡାୟାଲ୍ ଟୋନ୍‌ଟା କାନ ପାଖରେ ଘଡ଼ ଘଡ଼ ହେଉଥିଲା, ତା'ପରେ ମନ ସ୍ଥିର କରି ସେ ନମ୍ବର ଘୂରାଇଲା ।

ଅପର ପାର୍ଶ୍ୱରେ ରିଙ୍ଗ୍ ହେବାକୁ ଆରମ୍ଭ କଲା । କେତକୀ ହୃଦୟ ଭିତରଟା କିପରି କମ୍ପି ଉଠିଲା । ଟେଲିଫୋନ୍ କିଏ ଉଠାଇବ ! କାହାକୁ ସେ କ'ଣ କହିବା ତା'ଅପେକ୍ଷା କେହି ଧରିବା ଆଗରୁ..........

: ହ୍ୟାଲୋ, 'ସାକି' ରିସେପ୍‌ସନ୍ । ଅପର ପାର୍ଶ୍ୱରୁ ଏକ ନାରୀ କଣ୍ଠର ସ୍ୱର ଶୁଣାଗଲା ।

: ପ୍ଲିଜ୍ ପୁଟ୍ ମି ଟୁ ପ୍ରେମ୍ କାପୁର । ରୁମ୍ ନମ୍ବର ଫିଫ୍‌ଟିନ୍ ।

କ୍ଷଣିକର ନୀରବତା ।

ତା'ପରେ ଅପର ପାର୍ଶ୍ୱରୁ ଏକ ଭାରି କଣ୍ଠର ସ୍ୱର ଶୁଣାଗଲା ।

: ହ୍ୟାଲୋ !

: ମୁଁ କେତକୀ କହୁଛି । ଆଶା କରି ନଥିଲି ତମକୁ ପାଇବି ବୋଲି ।

: ରାଣୀ ! ମୁଁ ତ ସେଇଦିନୁ ତତେ ଅପେକ୍ଷା କରି ବସିଛି । ଘରୁ ଆଉ ପଦାକୁ ବାହାରି ନାହିଁ । ପ୍ରେମ୍ କାପୁର ଅପର ପ୍ରାନ୍ତରୁ କହିଲା ।

କେତକୀ ହଠାତ୍ କ'ଣ କହିବ ସ୍ଥିର କରି ପାରିଲା ନାହିଁ । କେଇ ମୁହୂର୍ତ୍ତର ନୀରବତା ପରେ ଅପର ପ୍ରାନ୍ତରୁ ପ୍ରେମ୍ କାପୁର କହିଲା : କ'ଣ ହେଲା ରାଣୀ ! ନୀରବ

କାହିଁକି ! ତା'ହେଲେ କ'ଣ...

: ନା, ନା, ପ୍ରେମ୍ ଶୁଭଦିନଟା ଏତେ ପାଖରେ ଯେ, କେମିତି ତୁମକୁ ଜଣାଇବି ଭାଷା ଖୋଜି ପାଉନାହିଁ । ହଁ ଶୁଣ ପ୍ରେମ୍, ଶୁକ୍ରବାର ରାତି ସାଢ଼େ ଦଶଟା ସମୟରେ ସେଇ ନିର୍ଦ୍ଦିଷ୍ଟ ସ୍ଥାନରେ ଯାଇ ଟଙ୍କା ପହଞ୍ଚିବ । ସବୁ ଠିକ୍ ଠାକ୍ ପ୍ରେମ୍ । ମୋର ଆଜି ଆନନ୍ଦର ଦିନ । ମୁଁ ତମକୁ ମୁକ୍ତି ଦେଇପାରିଲେ ନିଜେ ମୁକ୍ତି ପାଇବି । ଆଃ...

: ରାଣୀ !

: ଉଁ ।

: ଆଜିପରି ଏକ ଆନନ୍ଦ ଦିନରେ ଆମେ କ'ଣ...

ନା, ପ୍ରେମ୍ ଆଜି ମୋ ପକ୍ଷରେ ଘରୁ ବାହାରିବା ସମ୍ଭବ ନୁହେଁ । ତମେ ଟିକିଏ ଧୈର୍ଯ୍ୟ ଧର ପ୍ରେମ୍ । ମୁଁ ଚାହେ ତମର ମୁକ୍ତି, ତା'ପରେ ସୁଖ ସମୃଦ୍ଧି ।

: ମୁଁ କିନ୍ତୁ ନିଜକୁ ବଡ଼ ନିଃସଙ୍ଗ ମନେ କରୁଛି ରାଣୀ । ମୋର ଶଯ୍ୟା ସଙ୍ଗିନୀ ବର୍ତ୍ତମାନ ସିଗାରେଟ୍ ଆଉ ତମର ସେଇ ଲାଇଟରଟି । ବାରମ୍ବାର ସେଇଟି ଜଳଉଛି ମ୍ୟୁଜିକ୍ ଶୁଣିବା ପାଇଁ ।

: ହେଉ, ମୁଁ ରହୁଛି । ପ୍ରେମ୍। ଆଃ...ଆଜି ମୋ ମନରେ ଯାହା ଆନନ୍ଦ ନା, କେମିତି ତମକୁ ବୁଝାଇବି ।

କେତକୀ ରିସିଭର୍‌ରେ ଚୁମ୍ବନ କରି କ୍ରେଡ଼େଲ ଉପରେ ରଖିଲା । ପଛକୁ ବୁଲିପଡ଼ି ଦେଖିଲା, ଗଙ୍ଗା ସୋଫା ଉପରେ ବସିଛି । ଯେମିତି ଶାନ୍ତ ଶିଷ୍ଟ ସରଳ ଝିଅଟିଏ ।

କେତକୀ ଛାତିରୁ ଗୋଟାଏ ଅତଡ଼ା ଖସିପଡ଼ିଲା ।

ଗଙ୍ଗା କିନ୍ତୁ ନିର୍ବିକାର ।

: ତମେ କେତେବେଳେ ଗଙ୍ଗା ? କେତକୀର ସ୍ୱର ଯେମିତି କମ୍ପି ଉଠିଥିଲା ।

: ମୂଳରୁ । ଗଙ୍ଗାର ସ୍ୱର ଅଚଞ୍ଚଳ ।

: ମୂଳରୁ ମାନେ ।

: ଯେତେବେଳଠାରୁ ତମେ ଫୋନ୍ କରିବାକୁ ଆରମ୍ଭ କରିଥିଲ ।

: କିନ୍ତୁ ତମେ ଏ ଘରକୁ ଯେତେବେଳେ ସେତେବେଳେ ଆସୁଛ କାହିଁକି ? କେତକୀର କଣ୍ଠସ୍ୱର ଉତ୍ତେଜିତ ହୋଇ ପଡ଼ିଥିଲା । ସେ କଥା ଶେଷକରି ପାରି ନଥିଲା ।

: ତମେ ରାଗୁଛ କାହିଁକି କେତକୀ ଅପା! ତମେ ଜାଣିଛ ତମ ସମ୍ବନ୍ଧରେ ମୁଁ ସବୁ ଜାଣିଛି । ତମ ଜୀବନର ଏପରି କିଛି ଗୋପନ କଥା ନାହିଁ, ଯାହା ମୋତେ ଅଜଣା । ତେଣୁ ଅଯଥା ରାଗକରି ନିଜକୁ କଷ୍ଟ ଦେଉଚ କାହିଁକି ? ଗଙ୍ଗାର ସ୍ୱର ଶାନ୍ତ ଓ ସହଜ ।

: ନା ଗଙ୍ଗା, ଦିନକୁ ଦିନ ତମେ ଯେମିତି ଅତିରିକ୍ତ ହୋଇଉଠୁଛ । ସବୁବେଳେ ମୋ ପଛେ ପଛେ ଛାଇ ପରି ଲାଗି ରହୁଛ କାହିଁକି ? ମୁଁ ତମକୁ ଯେଉଁଥି ପାଇଁ କଥା ଦେଇଛି, ସେ କଥା ମୁଁ ପାଳନ କରିବି । ତା'ବୋଲି ମୋର ସବୁ ବ୍ୟାପାରରେ ତମେ ଆସି ନାକ ଗଳାଉଛ କାହିଁକି ?

: ଶୁଣ କେତକୀ ଅପା ! ମୁଁ ତ କହିଛି, ତମକୁ ମୁଁ କେବେ ବିରକ୍ତ କରିବାକୁ ଚାହେଁନାହିଁ କିମ୍ବା ସ୍ୱାଧୀନତାରେ ହସ୍ତକ୍ଷେପ କରିବା ଆମର ଉଦ୍ଦେଶ୍ୟ ନୁହେଁ । ମୁଁ ଆସିଥିଲି ଅନ୍ୟ କାମରେ । ଅବଶ୍ୟ ତମର ଏହିପରି ଏକ ମଧୁର ମୁହୂର୍ତ୍ତରେ ମୋର

ଉପସ୍ଥିତି ନିଶ୍ଚୟ ବାଞ୍ଛନୀୟ ନୁହେଁ । ମୋର ହୋଇଥିଲେ ବି ମୁଁ ବିରକ୍ତି ପ୍ରକାଶ କରି ଥାଆନ୍ତି କିନ୍ତୁ କେତକୀ ଅପା, ମୁଁ ନ ଜାଣି ଘରକୁ ପଶି ଆସିଛି ଯେତେବେଳେ........

ଥାଉ, ଆଉ କୈଫିୟତ୍ ଦେବାକୁ ହେବନାହିଁ । କେତକୀ ସ୍ୱରଟା ସ୍ୱାଭାବିକ କରିବାକୁ ଚେଷ୍ଟା କରୁଥିଲା। କି' କାମରେ ଆସିଛ କୁହ ।

ଗଙ୍ଗା ଗୋଟିଏ ଛୋଟ ପୁଡ଼ିଆ ହାତକୁ ବଢ଼ାଇ ଦେଇ କହିଲା : ଏହା ଭିତରେ ପ୍ଲାଷ୍ଟର ଅଫ୍ ପ୍ୟାରିସ୍ ଗୋଳା ହୋଇ ରହିଛି । ମୋର ମନେ ହେଉଛି ବର୍ତ୍ତମାନ ସମୟଟା ଗୋଟାଏ ସୁଯୋଗ । ବଡ଼ବାପା ଅନ୍ୟମନସ୍କ ରହିବେ । ତମ ସହିତ ବାରମ୍ବାର କଥା ହେବେ । ସେଇ ସୁଯୋଗରେ ହୁଏତ କାର୍ଯ୍ୟ ହାସଲ କରିବା ତମ ପକ୍ଷରେ ସହଜ ହେବ, ସେଇଥି ପାଇଁ ଏଇଟା ଆଣିଥିଲି ତମକୁ ଦେବାପାଇଁ । ତମେ ଖାଲି ଚାବିର ମୁଣ୍ଡଟା ଏହା ଭିତରେ ଦାବୀ ଦେଲେ ଛାଞ୍ଚ ଉଠିଯିବ । କିଛି ଅସୁବିଧା ହେବ ନାହିଁ ।

କେତକୀ ଛୋଟ ପୁଡ଼ିଆଟି ହାତକୁ ନେଲା । ବୁଲେଇ ବାଲେଇ ଦେଖିଲା । ଗଙ୍ଗା ଆଡ଼େ ଚାହିଁ ଟିକିଏ ହସିବାକୁ ଚେଷ୍ଟା କରି କହିଲା ଠିକ୍ ଅଛି । ତମେ ଯାଅ । ସୁଯୋଗର ମୁଁ ନିଶ୍ଚୟ ସଦ୍‌ବ୍ୟବହାର କରିବି ।

: ତମେ ମୋ ଉପରେ ରାଗିଲ କେତକୀ ଅପା । ମୁଁ କିନ୍ତୁ ତମର କିଛି ଅନିଷ୍ଟ ଚିନ୍ତା କରିନାହିଁ । ତମେ ବିଶ୍ୱାସ କର । ଗଙ୍ଗା ସେହିପରି ଶାନ୍ତ ଗଳାରେ କହିଲା ।

କେତକୀର ମନେହେଲା, ଯମୁନା ଘରେ ତା'ର ଆଉ ବେଶି ସମୟ ରହିବା ଉଚିତ ହେବନାହିଁ । ସେଠ୍ ରତନମଲ ଘରେ ଅଛନ୍ତି । ଯେ କୌଣସି ମୁହୂର୍ତ୍ତରେ ଖୋଜି ପାରନ୍ତି ବା ନିଜେ ଚାଲି ଆସି ପାରନ୍ତି । ସେ ତର ତର ହୋଇ ଉଠି ବାହାରକୁ ବାହାରି ପଡ଼ିଲା ।

: ଯାଅ ଗଙ୍ଗା, ତମ କଥା ମୋର ମନେ ରହିଲା ।

ଗଙ୍ଗା ଚାଲିଗଲା ।

କେତକୀ ଫେରିଗଲା ତା'ନିଜ ଘରକୁ ।

ଶୁକ୍ରବାରା ରାତ୍ରି । ଘଡ଼ିରେ ନଅଟା ବାଜିଲା ।

କେତକୀ ସେଠ୍ ରତନମଲଙ୍କ ବେଡରୁମ୍ ଦୁଆରେ ଯାଇ ନକ୍ କଲା । ଭିତରୁ ଶୁଣାଗଲା : କମ୍‌ଇନ୍ ।

କେତକୀ ଖୁବ୍ ସନ୍ତର୍ପଣରେ ସେଠ୍ ରତନମଲଙ୍କ ଦୁଆର ଠେଲି ଭିତରକୁ ପଶିଲା । କିନ୍ତୁ ସେଠ୍‌ଜୀଙ୍କର ଇଏ କି ଅବସ୍ଥା । ସେଠ୍ ରତନମଲ ସ୍ୱଳ୍ପାଲୋକରେ ବସି ଗୋଟାଏ ଗ୍ଲାସ୍‌ରେ ପାନୀୟ ଢାଳି ନିଶ୍ଚିନ୍ତରେ ପାନ କରୁଛନ୍ତି । କେତକୀ ଆଉ ଭିତରକୁ ଆଗେଇ ପାରିଲା ନାହିଁ । ଅଧାଖୋଲା ଦରଜାକୁ ଧରି ସେଇଠି କାଠ ପିତୁଳାଟି ପରି ଠିଆ ହୋଇ ଯାଇଥିଲା ।

ସେଠ୍ ରତନମଲ ଚାହିଁଲେ କେତକୀ ଆଡ଼େ । ଡାକିଲେ ଶାନ୍ତ ସ୍ୱରରେ: ଆସ କେତକୀ । ପରାଜୟ ସମୟର ଗ୍ଲାନି ମୁଁ ଏଇ ମୁହୂର୍ତ୍ତରେ ଭୁଲିଯିବାକୁ ଚାହେଁ । ତା'ନହେଲେ ଯମୁନାକୁ ଉଦ୍ଧାର କରିବା ମୋ ପକ୍ଷରେ ଅସମ୍ଭବ ହୋଇ ଉଠିବ ।

କେତକୀ ମନ୍ତ୍ରମୁଗ୍ଧ ପରି ଧୀର ପଦଚାଳି ନୀରବରେ ଆଗେଇ ଗଲା ସେଠ୍‌ଜୀଙ୍କ ସାମ୍‌ନାକୁ । ଇଙ୍ଗିତରେ ସେଠ୍‌ଜୀ ବସିବାକୁ କହିଲେ । କେତକୀ ସ୍ଥାଣୁପରି ବସି ପଡ଼ିଲା ସାମ୍‌ନା ଚେଆରରେ ।

ସେଠ୍‌ଜୀ କିନ୍ତୁ ନୀଳକଣ୍ଠ ପରି ପାନ କରି ଯାଉଥିଲେ ଗ୍ଲାସ୍ ପରେ ଗ୍ଲାସ୍ । ଗୋଟିଏ ବୋତଲ ସମ୍ପୂର୍ଣ୍ଣ ନିଃଶେଷ କରି ସେଠ୍‌ଜୀ ଯେତେବେଳେ ଆଉ ଗୋଟିଏ ବୋତଲ ଖୋଲିବାକୁ ବାହାରିଲେ, କେତକୀ ହାତ ବଢ଼େଇଲା ବୋତଲ ଆଡ଼େ । ଉଦ୍ଦେଶ୍ୟ ସେଠ୍‌ଜୀଙ୍କୁ ନିବର୍ତ୍ତେଇବା । ସେଠ୍‌ଜୀ ବୋତଲ ବଦଳରେ କେତକୀର ହାତଟାକୁ ଧରି ପକାଇ କରୁଣ ଆଖିରେ ଚାହିଁଲେ କେତକୀ ମୁହଁକୁ ।

: ତମେ ମୋତେ ବାଧା ଦିଅ ନାହିଁ କେତକୀ । ମୁଁ ମୋତେ ଭୁଲିଯିବାକୁ ଚାହେ । ମୋ ନାଁ ମୋର ମନେ ଥିବାଯାଏ ମୁଁ ଦଶ ଲକ୍ଷ ଟଙ୍କା ମୁକ୍ତିପଣ ଦେଇ ଯମୁନାକୁ ମୁକୁଳାଇ ଆଣି ପାରିବି ନାହିଁ । ବରଂ ତମେ ମୋତେ ଗ୍ଲାସ୍‌ରେ ଢାଳିଦିଅ । ମୁଁ ପାନ କରେ । ମୋ ଆଖି ଦୁଇଟା ରକ୍ତବର୍ଣ୍ଣ ହେବାଯାଏ ତମେ ମୋତେ ଦେଇଯିବା ଦ୍ୱିଧା କରିବ ନାହିଁ । ମୁଁ ଆଜି ସବୁ ଭୁଲିଯିବାକୁ ଚାହେ । ଦିଅ କେତକୀ, ଆଉ ଡେରି କରନାହିଁ ।

କେତକୀ ଗୋଟିଏ ଗ୍ଲାସ ପୂର୍ଣ୍ଣ କରି ସେଠ୍ ରତନମଲଙ୍କ ହାତକୁ ବଢ଼ାଇ ଦେଲା । ସେ କିନ୍ତୁ ମନେ ମନେ ଡରି ଯାଇଥିଲା । ଏହି ମୁହୂର୍ତ୍ତରେ ସେଠ୍‌ଜୀ ନିଜର ଆୟତ୍ତରେ ନାହାନ୍ତି । ଯଦି ସେ କାଣ୍ଡଜ୍ଞାନ ହରାନ୍ତି ? ସମୟ ଜ୍ଞାନ ତାଙ୍କର ନ ରୁହେ ? ତା'ହେଲେ......

ସେଠ୍ ରତନମଲ ଖାଲି ଗ୍ଲାସ୍‌ଟା ପୁଣି ବଢ଼ାଇଦେଲେ କେତକୀ ଆଡ଼କୁ । କେତକୀ ଇତସ୍ତତଃ କରୁଥିଲା । କିନ୍ତୁ ସେଠ୍‌ଜୀଙ୍କ ଆଖିରେ ସେ କି ଆକୁଳ ମିନତି । କେତକୀ ସହି ପାରିଲା ନାହିଁ । ଖାଲି ଗ୍ଲାସ୍ ପୁଣି ପୂର୍ଣ୍ଣ କରିଦେଲା ।

: କେତକୀ ! ସେଠ୍ ରତନମଲ ଶାନ୍ତ ସ୍ୱରରେ ଡାକିଲେ ।

: ଇଏସ୍ ସାର୍ !

: ତମେ ରତନମଲଙ୍କ ସ୍ୱରୂପ କେବେ ଦେଖିଛ ?

: ମୁଁ ବୁଝି ପାରୁନାହିଁ ସାର୍ ।

: ସେଠ୍ ରତନମଲ କାନୋଡ଼ିଆ। ଜାଣ ତାଙ୍କୁ ? ତାଙ୍କର ଆଜି ମୃତ୍ୟୁ ହୋଇଛି, ତମ ଆଗରେ ଯିଏ ବସି ରହିଛନ୍ତି ସେ ଜଣେ କ୍ରୀତଦାସ । ତମ ପାଖରେ ସେ ପରାସ୍ତ ହୋଇଛନ୍ତି, ତମ ପାଖରେ ସେ...

ସେଠ୍ ରତନମଲ ତାଙ୍କ କଥା ଶେଷ କରି ପାରିଲେ ନାହିଁ । ମୁଣ୍ଡଟା ତାଙ୍କର ଧୀରେ ଧୀରେ ନଇଁ ପଡ଼ିଲା । ହାତରୁ ଗ୍ଲାସ୍‌ଟା ଖସି ପଡ଼ିଲା । ସେ ଟେବୁଲ୍ ଉପରେ ମୁଣ୍ଡରଖି ଆଖି ବୁଜିଦେଲେ । ଦିଆଲ ଘଡ଼ିରେ ସାଢ଼େ ନ'ଟାର ସଙ୍କେତ ବାଜି ଉଠିଲା ।

କେତକୀ ଚଞ୍ଚଳ ହୋଇ ଉଠିଲା । ଆଉ ମାତ୍ର ଘଣ୍ଟାଏ ସମୟ । ସେଠ୍‌ଜୀଙ୍କର ଅବସ୍ଥା ଯାହା, ସେଥିରେ ସେ ଯଦି ଆଉ ଉଠି ନ ପାରନ୍ତି । ତା'ପରେ ତ ତା'ର ସବୁ ଉଦ୍ୟମ, ସବୁ ଚେଷ୍ଟା ବ୍ୟର୍ଥ ହୋଇଯିବ ।

ଅପଲକ ନୟନରେ କେତକୀ ସେଠ୍‌ଜୀଙ୍କର ନିଶ୍ଚଳ ଶରୀରଟା ଆଡ଼େ ଚାହିଁ ରହିଥିଲା । ଏକାପରି ଆହୁରି ପନ୍ଦର ମିନିଟ୍ କଟିଗଲା । ନା, ସେଠ୍‌ଜୀ ତାଙ୍କୁ ଗୋଟାଏ

ବଡ଼ ଶିକ୍ଷା ଦେଲେ । ତା'ରି ଆଗରେ ତା'ରି ହାତରେ ସେ ତା'ର ସୁନାର ଭବିଷ୍ୟତ ନଷ୍ଟ କରିଦେଲେ । ଅସମ୍ଭବ। ନା, ନା, ସୁଯୋଗ ଜୀବନରେ ଥରେ ଆସେ । ସେ ଘଡ଼ିକୁ ଚାହିଁଲା । ଘଡ଼ିକଣ୍ଟା ଆଗେଇ ଚାଲିଛି । ନଅଟା ଅଡ଼ଚାଳିଶ, ଅଣଚାଷ, ପଚାଶ...ଏକାବନ...

ନା, ଆଉ ସମୟ ନାହିଁ ସେଠ୍‌ଜୀ ଆଉ ଉଠିବେ ନାହିଁ କେତକୀ ଘରର ଏ ମୁଣ୍ଡରୁ ସେ ମୁଣ୍ଡଯାଏ ଦୁଇ ଚାରିଥର ଟହଲିଲା । ନଅଟା ସତାବନ, ଅଠାବନ, ଅଣଷଠି, ଷାଠିଏ । ଠନ୍, ଠନ୍, ଠନ୍ ହୋଇ ଦିଆଲ ଘଡ଼ିଟା ବାଜିବାକୁ ଲାଗିଲା । କେତକୀ ସ୍ଥିର ହୋଇ ପାରିଲା ନାହିଁ । ସେ ଛୁଟି ଯାଉଥିଲା ସେଠ୍‌ଜୀଙ୍କ ଦେହରେ ହାତମାରି ଡାକିବାକୁ ।

କିନ୍ତୁ ସେଠ୍‌ଜୀ ଧୀରେ ଧୀରେ ମୁଣ୍ଡ ଉଠାଇଲେ । ସାମ୍ନାରେ ଦେଖିଲେ କେତକୀର ବିଚଳିତ ମୂର୍ତ୍ତି । ହସିଲେ ଟିକିଏ। ବାଁ ପାଖ ସେଲ୍‌ଫ ଉପରୁ ଗୋଟାଏ ଆଟାଚି କେସ୍ ଉଠାଇ ବଢ଼ାଇ ଦେଲେ କେତକୀ ହାତକୁ ।

କହିଲେ : ଖୋଲ ।

କେତକୀ ଆଟାଚି କେସ୍‌ଟି ଟେବୁଲ୍ ଉପରେ ଥୋଇଲା । କିନ୍ତୁ ଖୋଲିବାକୁ ସାହସ କରି ପାରିଲା ନାହିଁ ।

ସେଠ୍ ରତନମଲ ହସିଲେ । ନିଜେ ସେ ଅଟାଚି କେସ୍‌ଟା ଖୋଲିଦେଲେ କେତକୀ ସାମ୍ନାରେ ।

କେତକୀର ସମଗ୍ର ଶରୀରଟା ଶୀତେଇ ଉଠିଲା । ଖାଲି କରେନ୍‌ସୀ ନୋଟ୍‌ରେ ଆଟାଚିଟା ଭର୍ତ୍ତି ।

ତା'ପରେ ନୀରବତା ।

ନିଜେ ସେ ଉଠିଲେ ଚେଆରରୁ । କେତକୀକୁ ଇଙ୍ଗିତରେ କହିଲେ ବାହାରି ଯିବାପାଇଁ ।

ସେଠ୍‌ଜୀ ଘରର ଦରଜା ବନ୍ଦକଲେ । ପକେଟରୁ ଚାବି ବାହାର କରି ଲଗାଇଲେ । ଗମ୍ଭୀର ପାଦଚାଳି, ଆଟାଚିଟା ହାତରେ ଧରି ବାହାରିଗଲେ ଧୀରେ ଧୀରେ । କେତକୀ କାହା ଉଦ୍ଦେଶ୍ୟରେ କେଜାଣି, ହାତଯୋଡ଼ି ପ୍ରଣାମ ଜଣାଇଲା । ତା'ପରେ ଧୀର ପାଦ ଚାଳି ଆଗେଇଲା ନିଜ ଘର ଆଡ଼କୁ । ଘରର ଦରଜା ଠେଲି ଭିତରେ ପଶିବା ମାତ୍ରେ ଦେଖିଲା ଗଙ୍ଗା ଟେବୁଲ୍ ଉପରେ ଗୋଟାଏ ବିରାଟ ପ୍ୟାକେଟ ଥୋଇ ବସି ରହିଛି ସୋଫା ଉପରେ ।

: ଗଙ୍ଗା, ତମେ...

: ହଁ କେତକୀ ଅପା । ମୁଁ ଆସିଛି । ଆସିଛି ତମରି ଉପକାର କରିବା ପାଇଁ। ତମକୁ ଆଜି ମୋ କଥା ରଖିବାକୁ ହେବ। କଥା କହୁ କହୁ ଗଙ୍ଗା ଟେବୁଲ୍ ଉପରେ ଥିବା ପ୍ୟାକେଟ୍‌ଟି ଖୋଲୁଥିଲା ଏବଂ ପ୍ୟାକେଟ୍ ଭିତରୁ ଗୋଟିଏ ଦାମୀ ମିନି ସ୍କାର୍ଟ ଆଉ ବ୍ଲାଉଜ୍ ବାହାର କରି କହିଲା : ଆଉ ବେଳନାହିଁ କେତକୀ ଅପା । ତମେ ଶୀଘ୍ର ଏଇଟାକୁ ପିନ୍ଧିନିଅ ।

: ମାନେ ? କେତକୀ ଅବାକ୍ ହୋଇ ଅନାଇ ରହିଲା ଗଙ୍ଗାର କାର୍ଯ୍ୟ କଳାପ ଆଡ଼େ । ଗଙ୍ଗା କ'ଣ କହୁଛି ? ସେ କ'ଣ ସତରେ ପାଗଳୀ ହୋଇ ଯାଇଛି ।

ଗଙ୍ଗା ଏଥର ନିଜେ ଉଠିପଡ଼ି, ମିନିସ୍କାର୍ଟଟା ହାତରେ ଧରି ମିନତି କଲାପରି

କହିଲା: ତମେ ମୋ କଥା ଶୁଣ କେତକୀ ଅପା, ମୁଁ ଯାହା କହୁଚି ତମରି ମଙ୍ଗଳ ପାଇଁ କହୁଛି । ଏଇ ମିନିସ୍କାର୍ଟଟା ପିନ୍ଧି, ଏଇ ଗଗ୍ଲସଟା ଆଖିରେ ଦିଅ । ଗ୍ଲୋଭ୍ସ ଯୋଡ଼ାକୁ ପିନ୍ଧ । ଆଉ ଏଇ ରିଭଲଭର୍‌ଟାରେ ସାଇଲେନ୍ସର ଲଗାହୋଇଛି । ତମ ଲକ୍ଷ୍ୟ ତ ଅବ୍ୟର୍ଥ । ଆଉ ଚିନ୍ତା ଭାବନା କ'ଣ ଅଛି !

: କିନ୍ତୁ...

କେତକୀ ସତରେ ସ୍ତବ୍ଧ ହୋଇ ଯାଇଥିଲା । ବିଶେଷ ଭାବରେ ରିଭଲଭର୍‌ଟା ଦେଖିବା ଠାରୁ ।

: ତଥାପି ବୁଝି ପାରିଲ ନାହିଁ କେତକୀ ଅପା ? ମୁଁ ତମକୁ ଦଶ ଲକ୍ଷ ଟଙ୍କା ପାଇବାର ସମସ୍ତ ସୁଯୋଗ କରିଦେଉଛି ଅଥଚ ତମେ ବୋକୀଙ୍କ ପରି ମୋ ମୁହଁକୁ ଚାହିଁ ସମୟ ନଷ୍ଟ କରୁଛ ? ବଡ଼ବାପା ଟଙ୍କା ନେଇ ବାହାରି ଯାଇଛନ୍ତି । ସେ ତ ଟଙ୍କା ହସ୍ତାନ୍ତର କରି ଫେରି ଆସିବେ । ନିର୍ଜନ ପଡ଼ିଆରେ, ବଟବୃକ୍ଷର ଅନ୍ଧକାର ଭିତରେ ଯିଏ ସେ ଅଟାଚି କେସ୍‌ଟି ଉଠାଇ ଆଣିବ, ତମେ ତ ଖାଲି ଟ୍ରିଗାରଟା ଟିପିବା କଥା । ଟିକିଏ ବି ଶବ୍ଦ ହେବନାହିଁ । ଏଥର ଆଟାଚିଟି ତମର, ଏବଂ ସଂପୂର୍ଣ୍ଣ ତମର । ଭାଗ ନେବାକୁ କେହି ନାହାନ୍ତି । ତମ ସମ୍ବନ୍ଧରେ କିଛି ଜାଣିବାର କାହାରି ଉପାୟ ନାହିଁ । ନିଅ, ନିଅ କେତକୀ ଅପା ! ଆଉ ବିଳମ୍ବ କରନାହିଁ ।

ହଠାତ୍ କେତକୀ ମନରେ ଗୋଟିଏ ନୂଆ ଭାବନା ଚେଇଁ ଉଠିଲା । ସତେ ତ ! ପ୍ରେମ୍ କହୁଥିଲା ସୁଯୋଗ ଜୀବନରେ ଥରେ ଆସେ । ଏଇତ ସୁଯୋଗ । ଏଇ ସୁଯୋଗର ସଦ୍‌ବ୍ୟବହାର କରି ପାରିଲେ, ତାକୁ ଆଉ ଦ୍ୱିତୀୟ ସୁଯୋଗର ପ୍ରତୀକ୍ଷା କରିବାକୁ ପଡ଼ିବ ନାହିଁ । ଅଢ଼େଇ ଲକ୍ଷ ଯିବାପରେ ହାତରେ ରହିଯିବ ଆହୁରି ସାଢ଼େ ସାତ ଲକ୍ଷ । ଯଥେଷ୍ଟ । ସେମାନଙ୍କ ସଂସାରତ ହେବ ଏକ ଛୋଟ ସଂସାର । ତା'ପରେ ପ୍ରେମ୍ ପୂରା ଫର୍ମରେ ମୁଷ୍ଟିଯୋଦ୍ଧା କ୍ଷେତ୍ରକୁ ଓହ୍ଲାଇ ପଡ଼ିବ ।

କେତକୀ ନିଜ ଭାବନାରେ ଏତେ ତନ୍ମୟ ହୋଇ ପଡ଼ିଲା ଯେ, ଗଙ୍ଗା ଏହା ଭିତରେ କେତକୀର ହାତଧରି ବାଥ୍‌ରୁମ୍‌କୁ ନେଇ ଯାଇଥିଲା ଏବଂ ତା'ର ଅଙ୍ଗବାସ ଖୋଲି ନିଜ ହାତରେ ନୂତନ ବେଶରେ ସଜ୍ଜିତ କରି କାନ ପାଖରେ ଥିରି ଥିରି କହିଥିଲା : କେତକୀ ଅପା, ଆଇନାରେ ତମ ରୂପଟା ଦେଖିଲ, ବେଶ୍ ମାନିଛି କିନ୍ତୁ ।

କେତକୀ ଆଇନାକୁ ଚାହିଁ ଚମକି ପଡ଼ିଥିଲା । ସତେ ତ ! ସେ ଆଜି ରୀନା ଗୋୟେଲ୍ ନୁହେଁ କିମ୍ବା କେତକୀ କୁଶାରୀ ନୁହେଁ । କିନ୍ତୁ କିଏ ସେ ? ସେ ଆଜି ତା' ମନ ରାଜ୍ୟର ସାମ୍ରାଜ୍ଞୀ । ତା'ର ଅଭିଯାନ ଆଜି ନୂତନ ସାମ୍ରାଜ୍ୟ ଅଧିକାର ପାଇଁ ।

ଗଙ୍ଗା ତା' ହାତକୁ ରିଭଲଭର୍‌ଟି ବଢ଼ାଇ ଦେଲା ।

କେତକୀ ରିଭଲଭର୍‌ଟିରେ ଚୁମ୍ବନ ଦେଲା । ବିଜୟୀ ବୀର ପରି ଗଙ୍ଗା ଆଡ଼େ ପ୍ରଶ୍ନବାଚୀ ନୟନରେ ଅନାଇ ରହିଲା । ଯାହାର ଅର୍ଥ, ସବୁତ ଦେଲା ବଦଳରେ କ'ଣ ଚାହ ?

: ନିଃସର୍ତ୍ତରେ । କୌଣସି ସର୍ତ୍ତ ନାହିଁ । ଆମେ ତମର ଶୁଭ କାମନା କରୁଛୁ କେତକୀ ଅପା । ସମୟ ଆଉ ବେଶି ନାହିଁ । ଆଉ କୋଡ଼ିଏ ମିନିଟ୍ ଭିତରେ ତମକୁ ଯାଇ ଘଟଣା ସ୍ଥଳରେ ପହଞ୍ଚିବାକୁ ହେବ । ଶୀଘ୍ର ବାହାରିପଡ଼ା ଗ୍ୟାରେଜରୁ କିନ୍ତୁ

ଗୋଟାଏ ଗାଡ଼ି ବାହାର କରିନେବ ।

କେତକୀ ଘରୁ ବାହାରି ଗଲା । ମିନି ସ୍କାର୍ଟ ଆଉ ବ୍ଲାଉଜ୍ ପିନ୍ଧି କେତକୀ ଅପୂର୍ବ ଦିଶୁଥିଲା । ଆଖିରେ ଗଗ୍ଲସ ପିନ୍ଧିବା ପରେ, ମନେ ହେଉଥିଲା କେତକୀ ଏକ ରଣରଙ୍ଗିନୀ । ସେ ଗଡ଼ ଜୟ କରିବାକୁ ଯାଉଛି।

କେତକୀ ଚାଲିଗଲା ।

ଗଙ୍ଗା ହାତ ଘଡ଼ିକୁ ଚାହିଁ ଦେଖିଲା, ଦଶଟା ବାଜି ପନ୍ଦର ମିନିଟ୍ ହୋଇଛି । ତେବେ ଲକ୍ଷ୍ୟ ସ୍ଥଳରେ ସେ ଠିକ୍ ସମୟରେ ପହଞ୍ଚିଯିବ। ଗଙ୍ଗା କେତକୀକୁ ପଠାଇ ପାରି ନିଜ ମନରେ ଗର୍ବବୋଧ କରୁଥିଲା । ସେ ବି ତା' କାର୍ଯ୍ୟରେ ସାଫଲ୍ୟ ଅର୍ଜନ କରିପାରିଛି ।

ପଛ ଆଡୁ ରଜତ ଆସି ଗଙ୍ଗାର ଆଖି ଦୁଇଟି ବୁଜି ଧରିଲା । ଗଙ୍ଗା ବୁଝିପାରି କହିଲା, ହେଲା ତ ନିଷ୍କଣ୍ଟକ ମେଦିନୀ ।

: କେତକୀ ଠାରୁ ତିନୋଟିଯାକ ଚାବିର ଛାପ ବୁଝି ନେଇଛ ତ ? ରଜତ୍ ପଚାରିଲା ।

: ଗତ କାଲିଠାରୁ ସେଗୁଡ଼ିକ ଆଦାୟ କରି ରଖିଛି । ଗଙ୍ଗା ଉଚ୍ଛ୍ୱସିତ ଆନନ୍ଦରେ କହିଲା ।

: ବେଶ୍, ଏଥର ଆମକୁ କାମରେ ଲାଗି ପଡ଼ିବାକୁ ହେବ ।

: କେତକୀ ଫେରି ଆସି ତା'ଭାଗ ଚାହିଁବ ନାହିଁ ତ !

: ତମେ ପାଗଳ ହେଲ । ପଥ ପଚାରି ପିତାଘର ଯିବ, ଆଉ ଆଯୋଧ୍ୟାକୁ ମନ ନ କରିବ । ଏପରି ଭାବରେ ତା'ପାଇଁ ଫାନ୍ଦ ପୋତା ହୋଇଛି ଯେ, ଗଳାରୁ ଫାଶ ଆଉ ଫିଟିବ ନାହିଁ ।

: ମାନେ ?

: ମର୍ଡ଼ର ଚାର୍ଜରେ ସେ ବନ୍ଧା ହୋଇ ଘଣା ପେଲିବ ।

: ଆମ ସମ୍ବନ୍ଧରେ ସେ କେଉଁଠି ମୁହଁ ଖୋଲିବ ନାହିଁ ତ ?

: ଆମ ସମ୍ବନ୍ଧରେ ମାନେ ? ସେ ତ ତମ ଛଡ଼ା ଆଉ କାହାକୁ ଜାଣେ ନାହିଁ । ତେଣୁ କାହା ନାଁ ସେ କହିବ ? କାହା ଆଗରେ ବା କହିବ । ରଜତ ସ୍ୱରରେ ଆତ୍ମ-ବିଶ୍ୱାସ ଭାବ ଫୁଟି ଉଠୁଥିଲା ।

ଗଙ୍ଗା କିନ୍ତୁ ନିଶ୍ଚିତ ହୋଇ ପାରୁ ନଥିଲା । ସେ କହିଲା : ଠିକ୍ ଅଛି । ଆସ । ଦେଖାଯାଉ କେଉଁ ପାଣି କେଉଁଆଡ଼େ ଗଡୁଚି ।

କେତକୀ ଗ୍ୟାରେଜରୁ ଗୋଟିଏ ଗାଡ଼ି ବାହାର କରି, ସେଠ୍ ରତନମଲଙ୍କ ଲୁହା ଫାଟକ ପାର ହୋଇ ବାହାରିଗଲା ବାହାରକୁ ।

ଏହା ଭିତରେ ତା'ମନରେ ଅସଂଖ୍ୟ ଭାବନା ଭିଡ଼ ଜମେଇ ଦେଇଥିଲେ । ଏତେ ଶୀଘ୍ର ଯେ ତା' ଜୀବନରେ ସାଫଲ୍ୟ ଆସିଯିବ ସେ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲା । ଧୀରେ ଧୀରେ ମନଟା ତା'ର ଦୁଃସାହସୀ ହୋଇ ଉଠୁଥିଲା । ସ୍ନେହ, ମାୟା, ବନ୍ଧନ

ଏମାନେ ଦୂରରୁ ଦୂରକୁ ଘୁଞ୍ଚି ଯାଉଥିଲେ ।

ସେ ଭାବୁଥିଲା, ଘଟଣା ସ୍ଥଳରେ ଯାଇ କ'ଣ ଦେଖିବ ?

ଦେଖିବ ଜେକବ୍, ୟୁସୁଫ୍ ବା ବ୍ରିଜ୍‌ଲାଲ କେହି ଜଣେ ଆସିଛି ସେଠ୍ ରତନମଲଙ୍କଠାରୁ ଦଶ ଲକ୍ଷ ଟଙ୍କାର ଆଟାଚି ନେବାପାଇଁ । ଅନ୍ଧକାରରେ ସେ ଦେହ ଲୁଚେଇ ବସି ରହିଛି । ଅଥବା ସେଠ୍ ରତନମଲଙ୍କଠାରୁ ଆଟାଚିଟି ଆଦାୟ କରି ଗନ୍ତବ୍ୟ ପଥରେ ଚାଲି ଯାଉଛି । ଠିକ୍ ସେତିକିବେଳେ କେତକୀର ସାଇଲେନ୍‌ସର ରିଭଲଭର୍‌ଟା ଧୂମ ଉଦ୍‌ଗୀରଣ କରି ଉଠିବ । ଖାଲି ଗୋଟିଏ ଆର୍ତ୍ତ-ଚିତ୍କାର । ତା'ପରେ ଅନ୍ଧକାରରେ ସବୁ ମିଳେଇ ଯିବ। କେତକୀ ହେବ ଦଶଲକ୍ଷ ଟଙ୍କାର ମାଲିକ । ସେ ଯେତେବେଳେ ଆଟାଚିଟି ଧରି ଯାଇ ପ୍ରେମ୍ କାପୁର ପାଖରେ ପହଞ୍ଚିବ ସେତେବେଳେ ପ୍ରେମ୍ ତାକୁ କିପରି ଗ୍ରହଣ କରିବ ? ଏବଂ ସେ ଯେତେବେଳେ ଜାଣିବ ପ୍ରଥମ ସୁଯୋଗରେହିଁ କେତକୀ ବାଜିମାତ୍ କରିଛି, ସେତେବେଳେ ପ୍ରେମ୍ ମୁହଁର ଅବସ୍ଥା କ'ଣ ହେବ ଦେଖିବାର କଥା ।

କେତକୀ ଗାଡ଼ିଟା ଇଡ଼େନ୍ ଛାଡ଼ି ଗଙ୍ଗା କୂଳେ କୂଳେ ଖିଦିରିପୁର ଆଡ଼କୁ ଆଗେଇ ଯାଉଥିଲା । ଘଟଣା ସ୍ଥଳଟା ସମ୍ବନ୍ଧରେ ତା'ମନ ଭିତରେ ଗୋଟାଏ ଧାରଣା ଜମି ରହିଥିଲା । ଯେଉଁ ବରଗଛ ମୂଳେ ନେଣ ଦେଣର କଥା ନିର୍ଦ୍ଧାରିତ ହୋଇଛି, କେତକୀ ସେ ବରଗଛଟା ଚିହ୍ନେ । ପଛପଟ ଦେଇ ସେପାଖକୁ ଆସିଲେ ସେ କାହାରି ଆଖିରେ ପଡ଼ିବ ନାହିଁ । ତେଣୁ ତା' ଗାଡ଼ିଟା ଗୋଟାଏ ସରୁ ରାସ୍ତା ଦେଇ ବାଁ ଆଡ଼କୁ ଭାଙ୍ଗିଗଲା ।

ରାସ୍ତାଘାଟ ନିର୍ଜନ ହୋଇ ଆସିଥିଲା । ଗହଳି କମି ଯାଇଥିଲା । କାଁ ଭାଁ ଜଣେ ଅଧେ ଲୋକ ଯା'ଆସ କରୁଥିଲେ । କେତକୀ ଘଟଣା ସ୍ଥଳକୁ ଯେତେ ନିକଟେଇ ଆସୁଥିଲା, ତା'ମନ ଭିତରେ ସେତେ ଉତ୍‌କଣ୍ଠା ବଢ଼ି ଯାଉଥିଲା । ଶେଷରେ ତା' ଗାଡ଼ି ପହଞ୍ଚିଲା ଯାଇ ନିର୍ଦ୍ଦିଷ୍ଟ ସ୍ଥାନରେ । ଯେଉଁଠି ତା' ଗାଡ଼ି ଅଟକିଲା, ସେଉଠୁ ତାକୁ ପ୍ରାୟ ଚାରି ପାଞ୍ଚ ମିନିଟ୍ ଚାଲି ଚାଲି ଆସିବାକୁ ହେବ ।

କେତକୀ ଗାଡ଼ିରୁ ଓହ୍ଲାଇଲା । ଚାରିଆଡ଼ ନିବିଡ଼ ଅନ୍ଧକାର । ଡାହାଣ ହାତରେ ରିଭଲଭର୍ ଏବଂ ବାଁ ହାତରେ ଗୋଟିଏ ଟର୍ଚ୍ଚ ଧରି ଅନ୍ଧକାର ଛାତି ଚିରି ସେ ଆଗକୁ ବଢୁଥିଲା ।

ଧୀରେ ଧୀରେ ଅନ୍ଧକାରରେ କେତକୀର ଆଖି ସହି ଯାଉଥିଲା । ଅଦୂରରେ ଝାମ୍ପୁରା ବରଗଛଟା ସିଲ୍‌ହଟ ଚିତ୍ରପରି ଭାସି ଉଠିଥିଲା । କେତକୀର ପାଦ ଦୁଇଟି ମନ୍ଥର ହେଲା । ଦେହସାରା କମ୍ପନର ଏକ ତରଙ୍ଗ ବ୍ୟାପିଗଲା । ପାଦ ଚିପି ଚିପି ସେ ଯାଇ ସେଇ ଝାମ୍ପୁରା ବରଗଛ ତଳେ ଆଶ୍ରୟ ନେଲା । କେତୋଟି ମୁହୂର୍ତ୍ତ ନୀରବରେ ଠିଆ ହେଲା । ନିଶ୍ୱାସ ଚାପି ଚାପି ଛାଡୁଥିଲା । କାରଣ ସେ କାର୍ଯ୍ୟ ହାସଲ କରିବାକୁ ଚାହେ ଗୋପନରେ । କେହି ଯେପରି ତାକୁ ଦେଖି ନ ନିଅନ୍ତୁ ।

ନୀରବତା ଭିତରେ ଅନେକ ସେକେଣ୍ଡ କଟିଗଲା । କିନ୍ତୁ ଟୁଁ ଶବ୍ଦଟିଏ ବି ତ ତା'କାନରେ ବାଜିଲା ନାହିଁ ? ଘଟଣା କ'ଣ ? ତେବେ ସେମାନେ କ'ଣ ଆସି ଯେ ଯାହାର କାମ ଶେଷ କରି ଚାଲି ଯାଇଛନ୍ତି ?

କେତକୀ ପାଦେ ପାଦେ କରି ଆଗେଇଲା ।

ଖୁବ୍ ଧୀରେ, ଖୁବ୍ ସନ୍ତର୍ପଣରେ ।

ରିଭଲଭର୍‌ଟା ବାଗେଇ ଧରି ସେ ପହଞ୍ଚିଲା ଯାଇ ସାମ୍‌ନା ପାଖରେ । କିନ୍ତୁ କିଏ କାହିଁ ?

ଆହୁରି କେଇ ସେକେଣ୍ଡ ଠିଆହେଲା ନୀରବରେ । ତା'ର ମନେ ହେଲା ବରଗଛ ଓହଳ ତଳେ କିଏ ଯେପରି ଜଣେ ଶୋଇଛି । ଅସ୍ପଷ୍ଟ, ଖାଲି ଗୋଟାଏ ଛାୟା । ଠିଆ ହେଇ ଅନେକ ବେଳଯାଏ ଲକ୍ଷ୍ୟ କଲା । କିନ୍ତୁ କିଛି ସ୍ଥିର ନିଶ୍ଚୟ କରିପାରିଲା ନାହିଁ ।

ତେବେ ?

କେତକୀ ଚାହିଁଥିଲା ସେଇ ଅସ୍ପଷ୍ଟ ଛାୟା ମୂର୍ତ୍ତିଟା ଆଡ଼େ । ଧାରଣା ତା'ର ଦୃଢ଼ ହେଉଥିଲା । କେହି ଜଣେ ନିଶ୍ଚୟ ସେଠି ଆରାମରେ ଶୋଇଛି । ହୁଏତ ରାସ୍ତାର ଭିକାରୀ ହୋଇପାରେ । ଅଥବା...

କେତକୀର ଅଜାଣତରେ ତା'ହାତର ଟର୍ଚ୍ଚଟା ହଠାତ୍ ଜଳି ଉଠିଲା । ଆଉ କେତକୀ? ସେ ଦୁଇ ପାହୁଣ୍ଡ ପଛକୁ ଘୁଞ୍ଚିଗଲା ଟର୍ଚ୍ଚ ଆଲୁଅରେ ସେ କ'ଣ ଦେଖିଲା ? ପ୍ରକୃତରେ ବରଗଛର ଓହଳତଳେ ଜଣେ ଶୋଇଛି । ସେ ତା'ର ଅତି ପରିଚିତ ପାର୍ଟନର ୟୁସୁଫ୍ । ହାତର ଟର୍ଚ୍ଚଟା ତା'ର ଆପଣା ଛାଏଁ ଲିଭିଗଲା । ପାଦତଳେ ସେ ଭୂମିକମ୍ପ ଅନୁଭବ କଲା । ସ୍ପଷ୍ଟ କେତକୀ ଟର୍ଚ୍ଚ ଆଲୋକରେ ଦେଖିଲା, ୟୁସୁଫ୍‌କୁ । ୟୁସୁଫ୍ ତେବେ ଟଙ୍କା ନେବାକୁ ଆସିଥିଲା । ଏବଂ...

କେତକୀ ସେଇ ମୁହୂର୍ତ୍ତରେ ଛାତି ଦମ୍ଭକରି ଆଗେଇ ଗଲା । ଟର୍ଚ୍ଚଜାଳି ଭଲ ଭାବରେ ଦେଖିଲା, ୟୁସୁଫ୍ ମୃତ । ତା'ଲୁଗାପଟା ରକ୍ତ ରଞ୍ଜିତ। ତା'ହେଲେ ? ନିଶ୍ଚୟ କେହି ୟୁସୁଫ୍‌କୁ ହତ୍ୟା କରି ଦଶ ଲକ୍ଷ ଟଙ୍କାର ଆଟାଚିଟା ନେଇ ପଳାଇଛି । କିନ୍ତୁ କିଏ ? ଆଉ କିଏ ଜାଣିଥିଲା ଏ ସମ୍ବାଦ ? ସେ ଆଉ ଗଙ୍ଗା, କିନ୍ତୁ ଏପରି ତ ହୋଇପାରେ ଖୋଦ୍ ସେଠ୍ ସାହେବ ୟୁସୁଫ୍‌କୁ ଟଙ୍କା ବଦଳରେ ଗୁଳି କରି ହତ୍ୟା କରିଛନ୍ତି । ନା, ନା, ଏହା କିପରି ସମ୍ଭବ ? ତା'ହେଲେ ଯେ ତାଙ୍କୁ ଯମୁନାକୁ ହରେଇବାକୁ ହେବ। ସେଠ୍ ରତନମଲଙ୍କ ଆଖିରେ ଦଶ ଲକ୍ଷ ଟଙ୍କା ଠାରୁ ଝିଅର ଜୀବନଟା ନିଶ୍ଚୟ ମୂଲ୍ୟବାନ । ତେବେ କିଏ କେତକୀର ସର୍ବନାଶ କରି ମୁହୂର୍ତ୍ତକ ଆଗରୁ ଖସି ଚାଲିଗଲା ? କେତକୀ ତେବେ କ'ଣ ବ୍ୟର୍ଥ ସଙ୍ଗୀତ ଗାଇ ବୁଲିବ ଏଇ ନିର୍ଜନ ପ୍ରାନ୍ତରରେ ?

ସେ ଆହୁରି ଟିକିଏ ଆଗେଇ ଗଲା ୟୁସୁଫ୍ ପାଖକୁ। ବିଚରା । କେତେ ଆଶା ପୋଷଣ କରିଥିଲା । କେତକୀ ଟର୍ଚ୍ଚ ଜଳାଇ ୟୁସୁଫ୍‌ର ମୁହଁଟାକୁ ଶେଷଥର ପାଇଁ ଦେଖୁଥିଲା ।

କିନ୍ତୁ...

ନା ନା, ଏହା କିପରି ସମ୍ଭବ ?

କେତକୀ ନଇଁପଡ଼ି ୟୁସୁଫ୍‌ର ମୁଣ୍ଡ ପାଖରୁ କ'ଣ ଗୋଟାଏ ଉଠାଇ ଆଣିଲା । ସେ ଆଦୌ ବିଶ୍ୱାସ କରି ପାରୁ ନଥିଲା । ଏଇ ମ୍ୟୁଜିକାଲ ଲାଇଟରଟା ସେ ଦେଇଥିଲା ପ୍ରେମ୍ କାପୁରକୁ । ତା'ଜନ୍ମଦିନରେ ଭେଟି ସ୍ୱରୂପ। କିନ୍ତୁ ସେଇଟା ଏଠାରେ, ୟୁସୁଫ୍‌ର ମୃତ ଦେହ ପାଖରେ । ଅସମ୍ଭବ ! ଅସମ୍ଭବ !!

କେତକୀ ଲାଇଟରଟାକୁ ବୁଲେଇ ବାଲେଇ ଦେଖିଲା । ସେ ନିଜେ କିଣି ଆଣିଛି ।

ଏଇ ଲାଇଟରଟା ଖୋଜି ଖୋଜି କିଣିବା ପାଇଁ ତା'ର ଏକଘଣ୍ଟା ସମୟ ନଷ୍ଟ ହୋଇଛି । ସେ ଚିହ୍ନି ପାରିବ ନାହିଁ ତା' ଜିନିଷଟାକୁ ! ଅଥଚ ସେଇଟା, ଏଇଠୁ ଏପରି ଏକ ସ୍ଥାନରୁ ଯାଇବ ସେ ଆଦୌ ବିଶ୍ୱାସ କରି ନଥିଲା ।

ଅଦୂର ଜେଟୀରୁ ଜାହାଜର ଏକ ବିକଟ ଚିତ୍କାରରେ କେତକୀର ଚେତନା ଭଙ୍ଗ ହେଲା । ସେ ଚଞ୍ଚଳ ହୋଇ ଉଠିଲା । ଆରେ ସେ ଏତେବେଳ ଯାଏ ଠିଆ ହୋଇ ରହିଛି ! ହଠାତ୍ ଯଦି ପୋଲିସ୍ ମୃତ୍ୟୁର ଗନ୍ଧ ପାଇ ଆସେ ? ତାକୁ ଯେ ଆରେଷ୍ଟ କରିବ ଭାବିବ ୟୁସୁଫ୍‌ର ହତ୍ୟାକାରୀ ।

କେତକୀର ଗୋଡ଼ ଦୁଇଟା ଚଞ୍ଚଳ ହୋଇ ଉଠିଲା । ନା, ଏଠି ଆଉ ମୁହୂର୍ତ୍ତେ ନୁହେଁ । ଯେଉଁ ବାଟଦେଇ ସେ ଆସିଥିଲା, ସେଇ ବାଟେ ବାଟେ କ୍ଷିପ୍ର ପଦଚାଳି ଫେରି ଯାଉଥିଲା । କିନ୍ତୁ ସେ ବୁଝି ପାରୁ ନଥିଲା, ପ୍ରେମ୍‌ର ସେଇ ମ୍ୟୁଜିକାଲ ଲାଇଟରଟା ଏଠାକୁ ଆସିଲା କିପରି ।

ତେବେ କ'ଣ ପ୍ରେମ୍ ନିଜେ ଏଠାକୁ ଆସିଥିଲା ? କେତକୀ ତାକୁ ଅବଶ୍ୟ ସବୁକଥା ପୂର୍ବରୁ କହିଥିଲା । ସେ ଜାଣଥିଲା ଆଜି ରାତି ସାଢ଼େ ଦଶଟା ବେଳେ ଏହି ଘଟଣା ଘଟିବା ସେ ଯଦି ଆସି ଥାଆନ୍ତା । ତା'ହେଲେ ପୂର୍ବରୁ କେତକୀକୁ ନିଶ୍ଚୟ ଜଣାଇ ଥାଆନ୍ତା ।

କେତକୀ ଯାଇ ଗାଡ଼ିରେ ଚଢ଼ିଲା । ସେ ବ୍ୟର୍ଥ ହୋଇଛି । ତା'ର ସମସ୍ତ ଆଶା ଭରସା ପୋଡ଼ି ପାଉଁଶ ହୋଇ ଯାଇଚି । ସେ କ'ଣ କରିବ ? କୁଆଡ଼େ ଯିବ ?

ବାରମ୍ୱାର ରହି ରହି କେତକୀର ଖାଲି ମନେ ପଡ଼ି ଯାଉଥିଲା, ପ୍ରେମ୍ କାପୁରର ଲାଇଟରଟା ।

ତା'ହେଲେ ପ୍ରେମ୍ ସବୁ ଜାଣି କ'ଣ ତା'ସହିତ ବିଶ୍ୱାସ ଘାତକତା କରିଛି । ନିଜେ ଆସି ସେ ୟୁସୁଫ୍‌କୁ ହତ୍ୟା କରି ଦଶଲକ୍ଷ ଟଙ୍କା ନେଇ ପଳାଇ ଯାଇଛି । ନା ନା କେତକୀ ବିଶ୍ୱାସ କରି ପାରୁ ନଥିଲା । ପ୍ରେମ୍ ଅନ୍ତତଃ ତା'ସହିତ ବିଶ୍ୱାସଘାତକତା କରି ନ ପାରେ, କିନ୍ତୁ ଏପରି ତ ହୋଇ ନପାରେ, ପ୍ରେମ୍ ତାଙ୍କରି ଭବିଷ୍ୟତର ପଥ ସୁଗମ କରିବା ପାଇଁ ଏହା କରିଛି । ସେ କେତକୀ ପ୍ରାଣରେ ଚମକ ଜଗାଇବା ପାଇଁ ୟୁସୁଫ୍‌କୁ ହତ୍ୟା କରିଛି ।

କେତକୀ ଗାଡ଼ିଟା ତା'ଅଜାଣତରେ ଯାଇ 'ସାକୀ' ଦୁଆରେ ଠିଆହୋଇ ଯାଇଥିଲା । କିନ୍ତୁ ସେ ଯେ ବ୍ୟର୍ଥ ହୋଇଛି। ପ୍ରେମ୍ ଯଦି ତା'ର ଅପେକ୍ଷାରେ ସମୟ ଗଣୁଥାଏ ! କେତକୀ କି ଉତ୍ତର ଦେବ ତାକୁ । କହିବ ସେ ହାରି ଯାଇଛି ! କି ଲଜ୍ଜା ! ପ୍ରେମ୍ ତା' କଥା ବିଶ୍ୱାସ କରିବି ତ ?

କେତକୀ ବହୁ ଭାବିଚିନ୍ତି ଗାଡ଼ିରୁ ଓହ୍ଲାଇଲା । ଆଜି ନହେଲେ କାଲି ବା ପହରିଦିନ ପ୍ରେମ୍ ସାମ୍‌ନାକୁ ଯିବାକୁ ସେ ତ ବାଧ ହେବ । ତା'ଅପେକ୍ଷା ଆଜି ଯାଇ ତା' ବ୍ୟର୍ଥତାର କାହାଣୀ ନ ଶୁଣାଇବ କାହିଁକି ? ଏହା ପରେ ବି ତ କେତକୀ ଆଉ ଗୋଟା ଏ କାମ ହାତକୁ ନେଇଛି । ସେଥିରେ ନିଶ୍ଚୟ ସେ ସଫଳତା ଅର୍ଜନ କରିବ । ସବୁକଥା ପ୍ରେମ୍‌କୁ ସେ ବୁଝାଇ କହିବ ।

କିନ୍ତୁ ପ୍ରେମ୍ ସଙ୍ଗରେ ଏ କିଏ ?

କେତକୀ ଦେଖିଲା ପ୍ରେମ୍ କାପୁର ସଙ୍ଗରେ ଗୋଟିଏ ଝିଅ ବାହୁରେ ବାହୁଛନ୍ଦି ହସି ହସି 'ସାକୀ'ର ସୋପାନ ଶ୍ରେଣୀ ଅତିକ୍ରମ କରି ଉପରକୁ ଉଠୁଚି । ପଛରୁ ସେ ପ୍ରେମ୍କୁ ଚିହ୍ନି ପାରିଲେ ବି ଝିଅଟାକୁ ଚିହ୍ନି ପାରୁନାହିଁ ।

କେତକୀ ଛାତି ଭିତରଟା କିପରି କମ୍ପି ଉଠିଲା ।

ସେ ଭାବିଥିଲା ପ୍ରେମ୍ କାପୁର ତା'ରି ପ୍ରତୀକ୍ଷାରେ ମୁହୂର୍ତ୍ତ ଗଣୁଥିବ । ରହି ରହି ଘଣ୍ଟା କଣ୍ଟା ଆଡ଼େ ଚାହିଁ ବିଚଳିତ ହୋଇ ଉଠୁଥିବ । କିନ୍ତୁ...ନା, କେତକୀର ଚିନ୍ତା, ଭାବନା, ପ୍ରେମ୍ କାପୁର ସମ୍ବନ୍ଧରେ ଧାରଣା ସବୁ ଭୁଲ୍ ।

କେତକୀ ମୁହୂର୍ତ୍ତେ ଚିନ୍ତା କଲା । ସେ ଫେରିଯିବ ।

କିନ୍ତୁ କୁଆଡ଼କୁ ଫେରିଯିବ ? ବରଂ ତା'ଅପେକ୍ଷା ପ୍ରେମ୍ କାପୁର ସହିତ ଆଜି ଗୋଟାଏ ଫଇସାଲା ସେ କରିନେଉ ।

ଗାଡ଼ିରୁ ଓହ୍ଲାଇ ଧୀରେ ଧୀରେ ସେ 'ସାକୀ' ଆଡ଼େ ଆଗେଇଲା । ସେତେବେଳକୁ ରାତି ଏଗାରଟା ବାଜି ଯାଇଥିଲା । ଭିଡ଼ କମି ଯାଇଥିଲା ରାସ୍ତା ଘାଟରୁ । 'ସାକୀ'ର ରିସେପ୍ସନିଷ୍ଟ ଅନ୍ୟମନସ୍କ ଥିଲା । ସେଇ ଅବସରରେ କେତକୀ ଉଠିଗଲା ଉପର୍କୁ ।

ଶିଡ଼ିରେ ଆଉ କାହାରି ସହିତ ତା'ର ଭେଟ ହୋଇନାହିଁ । କେହି ତାକୁ ଦେଖି ନାହାନ୍ତି । ସେ ଯାଇ ପ୍ରେମ୍ କପୁରର ପନ୍ଦର ନମ୍ବର ରୁମ୍ପାଖରେ ପହଞ୍ଚିଲା । ନିଶ୍ଚୟ ପ୍ରେମ୍ କାପୁର ଭିତରେ ଅଛି । କିନ୍ତୁ ସେ ଚାହେନାହିଁ ତା'ର ଉପସ୍ଥିତି ଜଣେଇବାକୁ । ଗୋପନରେ ପ୍ରେମ୍ର ଗତିବିଧି ସେ ଲକ୍ଷ୍ୟ କରିବା ତା'ମନର ସନ୍ଦେହ ମୋଚନ କରିବା କିପରି ? ଦରଜା ଯେ ବନ୍ଦ ।

କେତକୀ ପନ୍ଦର ନମ୍ବର ରୁମ୍ ପାଖରେ ଠିଆ ହୋଇଥିଲା । ହଠାତ୍ ତା'ର ମନେ ପଡ଼ିଲା, ସବୁ ରୁମ୍ର ଡୁପ୍ଲି କେଟ୍ ଚାବି ରିସେପ୍ସନ କାଉଣ୍ଟରରେ ଥାଏ । ରିସେପ୍ସନିଷ୍ଟକୁ ମାଗିଲେ ସେ ହୁଏତ...ପୂର୍ବରୁ କେତେଥର ପ୍ରେମ୍ ନଥିବାବେଳେ ସେ ଡୁପ୍ଲିକେଟ୍ ଚାବି ଆଣି ଘର ଖୋଲିଛି । କିନ୍ତୁ ଆଜି ଏଇ ମୁହୂର୍ତ୍ତରେ...

କେତକୀର କପାଳ ଭଲ । ସେ ଦରଜାର ହ୍ୟାଣ୍ଡେଲ ମୋଡ଼ି ଦେବା ମାତ୍ରକେ ଦରଜା ଖୋଲିଗଲା । ଭିତରୁ ସେମାନେ ବନ୍ଦ କରି ନଥିଲେ । କେତକୀ ସନ୍ତର୍ପଣରେ ଘର ଭିତରକୁ  ପାଦ ବଢ଼ାଇଲା । ପ୍ରଥମ ଘରଟା ଅନ୍ଧକାର । ସେମାନେ ଭୁଲ୍ରେ ହେଉ ବା ଇଚ୍ଛାକରି ହେଉ ଲାଇଟ୍ ଜଳାଇ ନାହାନ୍ତି । ଅବଶ୍ୟ କେତକୀ ପାଇଁ ଏହା ଆଉ ଏକ ସୁଯୋଗ ।

କେତକୀ ଆଉ ପାଦେ ବଢ଼ାଇଛି କି ନାହିଁ, ପ୍ରେମ୍ର ଉଚ୍ଛ୍ୱସିତ ହାସ୍ୟଧ୍ୱନି ଭାସି ଆସିଲା । ବେଡରୁମ୍ ଭିତରୁ । କେତକୀ ଦେଖିଲା, ବେଡରୁମ୍ର ଦରଜାଟା ବନ୍ଦ । ପ୍ରେମ୍ ହସି ହସି ବେଦମ ହେଉଛି ।

: ନା ପ୍ରେମ୍, ମୁଁ ତମକୁ ବିଶ୍ୱାସ କରି ପାରୁନାହିଁ । ମୋତେ ଆଉ ତୁମେ ସୁଖର ସ୍ୱପ୍ନ ଦେଖାଅ ନାହିଁ । ମୁଁ ତମ ଆଶ୍ୱାସନା ବାଣୀ ଶୁଣି ଶୁଣି କ୍ଳାନ୍ତ ହୋଇ ପଡ଼ିଲିଣି । ମୋତେ ମୋ ପଥରେ ଚାଲିବାକୁ ଦିଅ । କେତକୀ ଦରଜା ବାହାରେ ଠିଆ ହୋଇ ଏକ ନାରୀ କଣ୍ଠର ବ୍ୟଥିତ ବାଣୀ ଶୁଣିଲା ।

ପ୍ରେମ୍ କାପୁର କିନ୍ତୁ ସେହିପରି ଉଚ୍ଛ୍ୱସିତ କଣ୍ଠରେ କହିଲା : ରାଣୀ, ମୁଁ ତମକୁ

ଜୀବନରେ ବହୁତ କଷ୍ଟ ଦେଇଛି । ଅନେକ ମିଛ ସ୍ୱପ୍ନ ଦେଖାଇଛି। ଆଜି କିନ୍ତୁ ତମେ ମୋ କୋଳରେ ନିଶ୍ଚିତ ଆଶ୍ରୟ ନେଇପାର । ତମେ ମୋତେ ବିଶ୍ୱାସ କର ରାଣୀ। ମୁଁ ଆଜି ଆଉ ତମକୁ ଛାଡ଼ିବି ନାହିଁ । ତମକୁ ମୋ ସହିତ ଯିବାକୁ ହେବ ।

କେତକୀ ଶିହରୀ ଉଠିଲା ।

: ମୁଁ କୁଆଡ଼େ ଯାଇ ପାରିବି ନାହିଁ । ଅନେକଥର ମୋତେ ଅନେକ ସମ୍ଭାବନାର କଥା ଶୁଣାଇଛ । ମୁଁ ତୁମର କଳ୍ପନାର ସ୍ୱର୍ଗ ରାଜ୍ୟରେ ବାସ କରି ପାରିବି ନାହିଁ । ମୋ ପ୍ରାଣରେ ଆଉ ଆଶାର ପ୍ରଦୀପ ଜଳାଅ ନାହିଁ । ମୁଁ ମୋ ବାଟରେ ଆଗେଇ ଯାଏ । ଘର ଭିତରେ ସେଇ ବ୍ୟଥିତ ନାରୀ କଣ୍ଠର ସ୍ୱର ।

: ଶୁଣ ଡଲି । ଏଥର କିନ୍ତୁ ମୁଁ ଧପ୍‌ପା ଦେଉନାହିଁ । ସାନ୍ତ୍ୱନା ଦେଉନାହିଁ । ତମେ ମୋ ସଙ୍ଗରେ ଏ ସହର ଛାଡ଼ି ଯିବାକୁ ହେବ ଏବଂ ଏଇ ମୁହୂର୍ତ୍ତରେ ।

: ନା, ମୁଁ ଅନ୍ଧ ବିଶ୍ୱାସରେ ତମ ପଛରେ ଧାଇଁ ଧାଇଁ ମୋର ଆଣ୍ଠୁ ଗଣ୍ଠି ଛିଡ଼ାଇ ସାରିଛି । ଆଉ ନୁହେଁ । ଆଉ ପାରିବି ନାହିଁ ।

: ତମେ ମୋତେ ଆଜି ବି ବିଶ୍ୱାସ କରୁନାହଁ ଡଲି ? ମୁଁ ଆଜି ଏଇ ମୁହୂର୍ତ୍ତରେ ଲକ୍ଷପତି । ଦଶଲକ୍ଷ ଟଙ୍କାର ମାଲିକ । ଅବିଶ୍ୱାସ କରୁଛ ? ଏଇ ଦେଖ। ଏଇ ଆଟାଚି କେସ୍‌ଟା ସଂପୂର୍ଣ୍ଣ କରେନ୍‌ସି ନୋଟ୍‌ରେ ଭର୍ତ୍ତି ।

ପ୍ରେମ୍ କାପୁର ବୋଧହୁଏ ଆଟାଚି କେସ୍‌ଟା ବିଛଣା ଉପରେ କଚାଡ଼ି ଦେଲା । ତାଲା ଖୋଲି ଦେଖାଇ ଦେଲା ଡଲିକୁ ।

କେତୋଟି ମୁହୂର୍ତ୍ତ ଗଭୀର ନୀରବତା ଭିତରେ କଟିଗଲା ।

କେତକୀର ସର୍ବାଙ୍ଗରେ ବିଦ୍ୟୁତ୍ କମ୍ପନ ଖେଳି ଯାଇଥିଲା ।

ହୋ ହୋ ହୋଇ ହସି ଉଠିଲା ପ୍ରେମ୍ କାପୁର । କହିଲା : ଏବେ ବିଶ୍ୱାସ ହେଉଛି ରାଣୀ । ମୁଁ ତୁମକୁ କହିଥିଲି ନା, ଦିନେ ନା ଦିନେ ମୁଁ ସଫଳତା ଅର୍ଜନ କରିବି । ଯେଉଁଦିନ ତୁମକୁ ଘରୁ ବାହାର କରି ଆଣିଥିଲି ସେଦିନ କଥା ମନେ ପଡୁଛି ତମର ? ତମେ ମୋ କଥାରେ ଘର ଦ୍ୱାର, ବାପା ମା' ଛାଡ଼ି ଚାଲି ଆସିଥିଲ । ମୁଁ ତମକୁ ଅନେକ କଷ୍ଟ ଦେଇଛି ରାଣୀ, ଆଜି କନ୍ତୁ ଆଉ ମୁହୂର୍ତ୍ତେ ଅପେକ୍ଷା କରିବି ନାହିଁ । ତମର କୌଣସି ଆପତ୍ତି ଅଭିଯୋଗ ମୁଁ ଶୁଣିବି ନାହିଁ । ତମକୁ ମୋ ସହିତ ବାହାରି ଯିବାକୁ ହେବ ।

ଡଲି କେଜାଣି କାହିଁକି ନୀରବ ହୋଇ ଯାଇଥିଲା । ବୋଧହୁଏ ଏପରି ଏକ ଅଭାବିତ ସମ୍ଭାବନାକୁ ସେ ବିଶ୍ୱାସ କରି ପାରୁ ନଥିଲା ।

ପ୍ରେମ୍ କାପୁର ହସି ହସି ପୁଣି କହିଲା : ଜାଣ ରାଣୀ ! ରୀନା ଗୋଏଲ, ମନେ ପଡୁଛି ତମର ? ଏକଦମ୍ ବୋକା ଝିଅଟାଏ । ସେ ଭାବିଥିଲା ତମଠାରୁ ମୋତେ ଛଡ଼ାଇ ନେବ । ହାଃ...ହାଃ...ହାଃ...। ଠକିଗଲା । ପୋଲିସ୍ ତାକୁ ସେଠ୍ ରତନମଲଙ୍କ କନ୍ୟା ଅପହରଣ କେସ୍‌ରେ ଜେଲରେ ଭରିଦେବ । ମୁଁ ଚାହେଁନି ସେ ମୋ ସମ୍ବନ୍ଧରେ କିଛି ଜାଣୁ । ମୁଁ ଚାହେଁନି ସେ ଜାଣୁ ଡଲିକି ସଙ୍ଗରେ ଧରି ଘର ବାନ୍ଧିବା ପାଇଁ ମୁଁ ଏ ସହର ଛାଡ଼ି ଚାଲି ଯାଉଛି । ତମେ ଆଉ ଡେରି କର ନାହିଁ ରାଣୀ । ହୁଏତ କିଛି ସମୟ ପରେ ଅନେକ ଘଟଣା ଘଟିଯିବ । ଆମେ ଆଉ ଏ ହୋଟେଲ ଛାଡ଼ି ଏ ସହର ଛାଡ଼ି ପଳାଇ ଯାଇ ପାରିବା ନାହିଁ ।

: କିନ୍ତୁ ରୀନା ସହିତ ତମର ସମ୍ପର୍କ କ'ଣ ? ଡଲି ପଚାରିଲା ।

: ମିଛି ମିଛିକା ସମ୍ପର୍କ । ସେ କିନ୍ତୁ ମୋତେ ବିଶ୍ୱାସ କରି ଯାଇଥିଲା । ସେ ହେବାକୁ ଚାହିଥିଲା ମୋର ପରମ ଆତ୍ମୀୟା । କିନ୍ତୁ ଆଉ ଡେରି ନୁହେଁ ରାଣୀ । ଉଠ । ମୁଁ ସବୁ ବ୍ୟବସ୍ଥା କରି ରଖିଛି । ଆମେ ଆଜି ରାତିରେ ଏ ସହର ଛାଡ଼ି ଚାଲିଯିବା ।

: କିନ୍ତୁ ରୀନା ଯଦି ପୋଲିସ୍‌ରେ ଖବର ଦିଏ ? ପୋଲିସ୍ ଯଦି ଆମ ପଛରେ ଧାଏଁ । ତା'ହେଲେ ଆମକୁ ତ ଅନ୍ଧକାର ଭିତରେ ଆତ୍ମଗୋପନ କରି ବୁଲିବାକୁ ପଡ଼ିବ ।

: ତମେ ଅକାରଣରେ ଭୟ ପାଉଛ ରାଣୀ । ମୋ ହାତ ଧରି ଚାଲିଆସ । ପୋଲିସ୍ ଆମକୁ ନୁହେଁ ରୀନାକୁ ନେଇ ଭରିଦେବ ଅନ୍ଧକାର କୋଠରି ଭିତରେ । ତମେ ଆଉ କଥା ବଢ଼ାଇ ସମୟ ନଷ୍ଟ କରନାହିଁ । ଆସ ମୋ ହାତ ଧରି ।

କେତକୀ ବୁଝି ପାରିଥିଲା ପ୍ରେମ୍ କାପୁର ତାକୁ ଠକି ଦେଇଛି । ମିଥ୍ୟା ପ୍ରଲୋଭନ ଦେଖାଇ ସେ ନିଜର କାର୍ଯ୍ୟ ହାସଲ କରି ବାଟ କାଟୁଛି । ସେ କିନ୍ତୁ ପ୍ରେମ୍ କାପୁରକୁ କ୍ଷମା କରି ପାରିବ ନାହିଁ । ତା'ରି ପାଇଁ ସେ ତା'ଜୀବନକୁ ଜୁଆ ଖେଳିଥିଲା । କିନ୍ତୁ ସେ ଯେ ଗୋଟାଏ ଲମ୍ପଟ, ଗୋଟାଏ ଧପ୍‌ପାବାଜ...

କେତକୀ ଶୁଣିଲା ବେଡରୁମ୍‌ର ଦରଜା ଖୋଲିବାର ଶବ୍ଦ । ଆଗରେ ପ୍ରେମ୍ କାପୁର, ବାଁ ହାତରେ ଆଟାଚି କେସ୍ ଧରି ବାହରି ଆସୁଛି । ପଛରେ ଡଲି ।

ହଠାତ୍ ଘରର ଆଲୋକଟା ଜଳି ଉଠିଲା ।

ସାମ୍ନାରେ ରଣ ରଙ୍ଗିନୀ ବେଶରେ କେତକୀ । ରିଭଲଭର୍‌ଟା ପ୍ରେମ୍ କାପୁର କପାଳକୁ ଲକ୍ଷ୍ୟ କରି ରହିଛି ।

ପ୍ରେମ୍ କାପୁର ସ୍ତବ୍ଧ ହୋଇ ଠିଆ ହୋଇ ପଡ଼ିଲା ।

ମୁହୂର୍ତ୍ତକ ପାଇଁ ନୀରବତାର ରାଜତ୍ୱ ।

ଏଥର କେତକୀ ହସି ଉଠିଲା । କହିଲା : ମୁଁ ଜାଣିନଥିଲି ପ୍ରେମ୍, ତମେ ଏପରି ଏକ ଶଠ, ପ୍ରବଞ୍ଚକ ବୋଲି । ଭଲ ହୋଇଛି । ତମ ସହିତ ଘର କରିବା ଆଗରୁ ତମର ସ୍ୱରୂପ ମୁଁ ଦେଖିପାରିଛି । ଆଟାଚି କେସ୍‌ଟି ମୋ ହାତକୁ ଦେଇ, ତମେ ଡଲିକୁ ନେଇ ଚାଲିଯାଅ । ମୁଁ କାମନା କରୁଛି, ତମ ସଂସାର ସୁଖର ହେଉ ।

: ରୀନା ! ମୁଁ ଜାଣିଛି ଏଗୁଡ଼ା ସବୁ ତୋର ଆସ୍ଫାଳନ । ମୁଁ ଜାଣିଛି ତୁ ଏଇ ମୁହୂର୍ତ୍ତରେ ଗୁଳି ଚଳେଇ ପାରିବୁ ନାହିଁ । କାରଣ ଗୁଳି ଚଳାଇଲେ ସେ ଶବ୍ଦରେ ଲୋକ ଜମିଯିବେ ଏବଂ ତୁ ନିସ୍ତାର ପାଇବୁ ନାହିଁ । ତୋର ଅପରାଧ ପରେ ଅପରାଧ ବଢ଼ିଯିବା ଆଜୀବନ ତୋତେ ଜେଲର ଅନ୍ଧକାରରେ ପଡ଼ିବାକୁ ହେବ । ତୁ ଆମ ପଥରୁ ଘୁଞ୍ଚି ଯା କହୁଛି । ନହେଲେ...

କେତକୀ କିନ୍ତୁ ହସି ଉଠିଲା : ବିଶ୍ୱାସଘାତକତାର ଗୋଟାଏ ସୀମା ଅଛି ପ୍ରେମ ! ତମେ କିନ୍ତୁ ସୀମା ଲଙ୍ଘନ କରି ଯାଇଛ । ତମକୁ ମୁଁ କ୍ଷମା କରବି ନାହିଁ ।

: ରୀନା, ତୁ ନିଜକୁ ଭାବୁଛୁ କ'ଣ ? ତୁ ଭାବିଥିଲୁ ତୋ'ପରି ଗୋଟାଏ ସହସ୍ର ଶଯ୍ୟାର ନାୟିକାକୁ ନେଇ ମୁଁ ଘର ସଂସାର କରିବି ? ତୁ ସ୍ୱପ୍ନ ଦେଖ୍, ସ୍ୱପ୍ନ । ଜୀବନ ଭରି ସ୍ୱପ୍ନ ଦେଖିଯା । ସେଥିରୁ ଆନନ୍ଦ ପାଇବୁ ।

: ମୋ ଆନନ୍ଦ ପାଇଁ ତମକୁ ଚିନ୍ତା କରିବାକୁ ହେବନାହିଁ । ପ୍ରେମ୍ । ମୁଁ ଭାବିନଥିଲି ତମେ ଏତେ ନୀଚ, ଏତେ ହୀନ ବୋଲି । ତମେ ଆଜି ଯାହାକୁ ସହସ୍ର ଶଯ୍ୟାର ନାୟିକା ବୋଲି କହିବାକୁ ସାହସ କରୁଛ, ତା'ରି ପଣତ ତଳେ ଦିନେ ଆତ୍ମ ସମର୍ପଣ କରିଥିଲା ଆଜି ଜାଣିଲି ସେସବୁ ଛଳନା, ପ୍ରବଞ୍ଚନା । ଜାଣି ଲାଭ ହେଲା । ମୁଁ ବାଟକୁ ଫେରି ଆସିବି । ଆଉଥରେ କହୁଛି ପ୍ରେମ୍ । ଆଟାଚିଟା ଏଇଠି ରଖିଦେଇ ତମ ବାଟରେ ତମେ ଚାଲିଯାଅ । ମୁଁ ପାଟି ଫିଟେଇବି ନାହିଁ ।

ପ୍ରକୃତରେ ପ୍ରେମ୍ ଟିକିଏ ଅଡୁଆରେ ପଡ଼ି ଯାଇଥିଲା । ସେ ଡଲି ମୁହଁକୁ ଥରେ ଚାହୁଁଥିଲା ଏବଂ ଚାହୁଁଥିଲା ରଣରଙ୍ଗିନୀ କେତକୀ ଆଡ଼େ । ତା'ମନରେ ଧାରଣା ଜନ୍ମିଥିଲା, ରୀନା ନିଶ୍ଚୟ ତାକୁ ଗୁଳି ଚଳେଇ ପାରିବ ନାହିଁ । ସେଇ ସାହସରେ ସେ କହିଲା, : ରୀନା ! ଶୁଣ୍, ଏଇ ଟଙ୍କାରୁ ତୋର ଅଢ଼େଇ ଲକ୍ଷ ଟଙ୍କା ପାଇବାର ଥିଲା । ସେ ଟଙ୍କା ତୁ ମୋତେ ଦେଇ ଥାଆନ୍ତୁ ଏବଂ ମୁଁ ଟଙ୍କାତକ ନେଇ ଖସି ଯାଇ ଥାଆନ୍ତି । ବରଂ ମୁଁ ତୋତେ ଏଥିରୁ ଲକ୍ଷେ ଟଙ୍କା ଦେଉଛି, ତୁ ନେଇ ସୁଖରେ ରହିବାକୁ ଚେଷ୍ଟା କର । ମୋ ବାଟରେ କଣ୍ଟା ହୋଇ ଠିଆ ହଅନାହିଁ ।

କେତକୀ ହୋ ହୋ ହୋଇ ହସି ଉଠିଲା । କହିଲା : ଡରି ଯାଉଛ ପ୍ରେମ୍ ! ଗୋଟାଏ ସହସ୍ର ଶଯ୍ୟାର ନାୟିକା ପାଖରେ ତୁମେ ମଥାନତ କରୁଛ ? ତମେ ନା ଜଣେ ଭାରତ ବିଖ୍ୟାତ ମୁଷ୍ଟିଯୋଦ୍ଧା ? ତମେ ଗୋଟାଏ ଚରିତ୍ର ହୀନା ନାରୀ ସହିତ ସନ୍ଧି କରିବାକୁ ଯାଉଛ ? ଛି ଛି, ଲଜ୍ଜା, ଲଜ୍ଜା । ମୁଁ ହୋଇଥିଲେ ଆତ୍ମହତ୍ୟା କରି ଥାଆନ୍ତି ।

ପ୍ରେମ୍ କାପୁର ମୁହଁରେ ଏଥର କିନ୍ତୁ ରକ୍ତ ଜମି ଉଠିଥିଲା । ସେ କେତକୀ ଆଡ଼େ ରୋଷ କଷାୟିତ ନୟନରେ ଚାହିଁ ଡଲିର ହାତ ଧରି ଆଗେଇବାକୁ ଲାଗିଲା ।

କେତକୀ ଚିତ୍କାର କରି ଉଠିଲା : ଆଟାଚି ରଖିଯାଅ ପ୍ରେମ୍ ! ଆଉଥରେ କହୁଛି, ମୋ କଥା ଶୁଣ। ନହେଲେ ତମର ମୃତ୍ୟୁ ସୁନିଶ୍ଚିତ ।

ପ୍ରେମ୍ କାପୁର ଅଟାଚିଟା ତଳେ ଥୋଇ, ଡଲିର ହାତ ଛାଡ଼ି କେତକୀ ଆଡ଼କୁ ମାଡ଼ି ଆସିଲା ଏବଂ ପକେଟରୁ ରିଭଲଭର୍‌ଟା କାଢ଼ି ହାତଟା କେତକୀ ଆଡ଼କୁ ଉଠାଉଥିଲା ।

ଠିକ୍ ସେଇ ମୁହୂର୍ତ୍ତରେ କେତକୀର ରିଭଲଭରରୁ ମେଞ୍ଚାଏ ଧୂଆଁ ବାହାରିଲା । ସଙ୍ଗେ ସଙ୍ଗେ ଭାରତର ବିଖ୍ୟାତ ମୁଷ୍ଟିଯୋଦ୍ଧା ମାଟିରେ ଲୋଟି ପଡ଼ିଲା । ଖାଲି ଗୋଟାଏ ଆର୍ତ୍ତ ଚିତ୍କାର ବାସ ।

ଡଲି ଦୃତି ଆସୁଥିଲା ପ୍ରେମ୍ କାପୁର ଉପରେ ଲୋଟି ପଡ଼ିବା ପାଇଁ । କେତକୀ କିନ୍ତୁ ତା'ଆଡ଼େ ରିଭଲଭର ଉଞ୍ଚାଇ କହିଲା : ସାବଧାନ, ଯିଏ ବିଶ୍ୱାସଘାତକ, ସିଏ ସମସ୍ତଙ୍କ ସହିତ ବିଶ୍ୱାସଘାତକତା କରିପାରେ । ତମେ ଯାଅ । ତମ ବାଟରେ ତମେ ବଞ୍ଚିରୁହ ।

ଡଲି କିନ୍ତୁ ପ୍ରେମ୍ କାପୁର ଆଡ଼େ ବିକଳ ହୋଇ ଚାହିଁଥିଲା । ତା'ରି ପାଇଁ ଡଲିର ଆଜି ଏ ପରିଣତି । ଶେଷରେ...

କେତକୀ ଆଗେଇ ଯାଇ ଆଟାଚି କେସ୍‌ଟା ଉଠାଇଲା । କଠିନ ସ୍ୱରରେ କହିଲା : ଯଦି ବଞ୍ଚିବାକୁ ଚାହ, ମୋ ସହିତ ବାହାରି ଆସ । ଆଉ ଟିକକ ପରେ ପୋଲିସ୍ ଆସିବ । ଏଇଠି ବସି ରହିଲେ ମର୍ଡର ଅପରାଧରେ ତମେ ଆରେଷ୍ଟ ହେବ ।

ଡଲି ମୁହଁରୁ ଭାଷା ହଜି ଯାଇଥିଲା ।

ସେ ଯନ୍ତ୍ରଚାଳିତ ପରି କେତକୀ ଆଗେ ଆଗେ ଘରୁ ବାହାରିଲା । କେତକୀ ଘରର ଦୁଆର ବନ୍ଦ କଲା । କିଛି ନ ଘଟିଲା ପରି ସହଜ ଭାବରେ ଆଟାଚି କେସ୍‌ଟି ଧରି ବାହାରକୁ ବାହରିଲା । ଆଗେ ଆଗେ ଡଲି, ପଛେ ପଛେ କେତକୀ ।

ସେମାନେ ଶିଡ଼ିରୁ ଓହ୍ଲେଇଲେ । ରିସେପ୍‌ସନିଷ୍ଟ କାଉଣ୍ଟର ଫାଙ୍କା ପଡ଼ିଥିଲା । ରାତି ଅନେକ ହୋଇଥିଲା । ସେମାନେ ରାସ୍ତାକୁ ଓହ୍ଲେଇଲେ । କେତକୀ ଯାଇ ଗାଡ଼ିରେ ବସିଲା । ଆଉ ଡଲି ?

କେତକୀ କହିଲା : ବସ, ମୁଁ ତମୁକୁ ବାଟରେ ଛାଡ଼ିଦେଇ ଯିବି । କିନ୍ତୁ ଗୋଟାଏ ସର୍ତ୍ତରେ, ମୁହଁ ଖୋଲିଲେ ତମକୁ ପ୍ରେମ୍ କାପୁରର ପଥ ଅନୁସରଣ କରିବାକୁ ହେବ ।

: କେତକୀ, ଏହାପରେ ?

: ତୋର ସବୁ ଆଶା ଭରସା ବ୍ୟର୍ଥ ହୋଇଛି । ତୁ ପ୍ରବଞ୍ଚିତ ହୋଇଛୁ । ଆଇନ୍ ଆଖିରେ ତୁ ଆଜି ଖୁଣୀ, ଅପରାଧୀ । କ'ଣ କରିବୁ ? ଏହାପରେ ତୋର ସ୍ଥିତି କ'ଣ ହେବ । ଏଇ ଦଶଲକ୍ଷ ଟଙ୍କା ନେଇ ତୁ କ'ଣ ସାରା ଜୀବନ ଶାନ୍ତିରେ ରହି ପାରିବୁ ?

କେତକୀର ବିବେକ କେତକୀକୁ ପ୍ରଶ୍ନ କରୁଥିଲା ।

: ନା ନା, ମୁଁ ତ ଏହା ଚାହି ନଥିଲି, ମୁଁ ଚାହିଥିଲି ଗୋଟାଏ ଛୋଟ ଆଶ୍ରୟ । ଟଙ୍କା ମୁଁ ଚାହି ନଥିଲି, ସଂପଦ ମୋର କ'ଣ ହେବ ? କେତକୀ ଉତ୍ତର ଦେଇଥିଲା ।

: ତେବେ ସବୁ ତ ହରେଇଲୁ ଏଇକ୍ଷିଣା କ'ଣ କରିବୁ ?

: ଏଇକ୍ଷିଣା ! ଏଇକ୍ଷିଣା !! ସତେ ତ ! ଏଇକ୍ଷିଣା ମୁଁ କ'ଣ କରିବି ? ମୋର ଗତି କ'ଣ ହେବ ? କିନ୍ତୁ.......ମୁଁ ଯେ, ହଁ ମୁଁ ଯେ ଯମୁନାର ମା'। ଚିରଜୀବନ କ'ଣ ଯମୁନାର ମା'ହୋଇ ରହିପାରିବି ନାହିଁ ?

ବିବେକ ହସି ଉଠିଲା ହୋ ହୋ ହୋଇ : ମା' କିପରି ମା ? କାହାର ମା' ? ଖାଲି ଛଳନା, ପ୍ରବଞ୍ଚନା : ହାଃ...ହାଃ...ହାଃ...ହାଃ...।

: ନା ନା, ମୁଁ ଯମୁନାର ମା'। ଯମୁନା ମୋର ଝିଅ । ଯମୁନା...ଯମୁନା...

କେତକୀ ଚିତ୍କାର କରି ଉଠିଥିଲା । ତା' ଗାଡ଼ିଟା ଆସି ସେଠ୍ ରତନମଲଙ୍କ ଲୁହା ଫାଟକ ପାଖରେ ଗୋଟାଏ ବିକଟ ଚିତ୍କାର କରି ଅଟକି ଯାଇଥିଲା ।

ଦରବାନ୍‌ର ନିଦ୍ରା ଭଙ୍ଗ ହୋଇଗଲା । ସେ ଛୁଟି ଆସିଥିଲା । ସଙ୍ଗେ ସଙ୍ଗେ ଛୁଟି ଆସିଥିଲେ ସେଠ୍ ରତନମଲ । ସେ ଶୋଇ ପାରୁ ନାହାନ୍ତି : ବସି ପାରୁ ନାହାନ୍ତି । ଫେରି ଆସି କେତକୀକୁ ନ ପାଇ ଆହୁରି ବିବ୍ରତ ହୋଇ ପଡ଼ିଛନ୍ତି ।

ଦରବାନ୍ ଲୁହା ଫାଟକ ଖୋଲି ଦେଖିଲା, କେତକୀ ।

ସେଠ୍ ରତନମଲ ଛୁଟି ଯାଇଥିଲେ ଗାଡ଼ି ପାଖକୁ ।

କେତକୀ ରତନମଲଙ୍କୁ ଦେଖି ବିକଳ ହୋଇ ପ୍ରଶ୍ନ କରିଥିଲା : ମୁଁ ଯମୁନାର ମା' ହୋଇ ସାରା ଜୀବନ ରହି ପାରିବି ତ ସେଠ୍‌ଜୀ ? ମୋତେ ଆପଣ ତଡ଼ି ଦେବେ

ନାହିଁତ ? ହଁ, ମୁଁ ଯମୁନାର ମା'। ଯମୁନା ମୋର ଝିଅ ।

ସେଠ୍ ରତନମଲ କେତକୀର ବେଶ ପୋଷାକ, ଆକୁଳ ମିନତି ଦେଖି ଶୁଣି ଅବାକ୍ ହୋଇ ଯାଇଥିଲେ ।

କେତକୀ ଟଙ୍କା ପୂର୍ଣ୍ଣ ଆଟାଚି କେସ୍‌ଟା ସେଠ୍ ରତନମଲଙ୍କ ହାତକୁ ବଢ଼ାଇ ଦେଇ କହିଲା : ଯମୁନାର ମୁକ୍ତିପଣ ମୁଁ ଛଡ଼ାଇ ଆଣିଛି । ଏଥର ଯମୁନାକୁ ମୁକ୍ତି କରି ଆଣିବାକୁ ହେବ । ମୁଁ ଜାଣିଛି ସେ କେଉଁଠି ଅଛି । ଆପଣ ଆସନ୍ତୁ, ଏଇ ମୁହୂର୍ତ୍ତରେ ଆମକୁ ଥାନାକୁ ଯିବାକୁ ହେବ । ଡେରି ହେଲେ ଯମୁନାର କ୍ଷତି ହୋଇପାରେ ।

ସେଠ୍ ରତନମଲ ସ୍ତବ୍ଧ ହୋଇ ଯାଇଥିଲେ । ଯନ୍ତ୍ରଚାଳିତ ପରି ସେ ଯାଇ କେତକୀ ପାଖରେ ଗାଡ଼ିରେ ବସିଲେ ।

କେତକୀ କହିଲା : ଆପଣ ବିଶ୍ୱାସ କରନ୍ତୁ ସାର୍, ମୁଁ ଯମୁନାର ମା'। ଯମୁନାର ସେମାନେ କିଛି କରି ପାରିବେ ନାହିଁ । ଥାନାରୁ ପୋଲିସ୍ ନେଇ ଆମେ ଯମୁନାକୁ ମୁକ୍ତି କରି ଆଣିବା । ମୁଁ ଯମୁନାର ମା' ନା ? ସତ କହିଲେ ସାର୍, ଯମୁନା ମୋର ଝିଅ ତ ?

: ହଁ ହଁ କେତକୀ, ତମେ ଯମୁନାର ମା' ଯମୁନା ତମର ଝିଅ । ଶୀଘ୍ର ଚାଲ, ଯମୁନାକୁ ଉଦ୍ଧାର କରି ନ ପାରିଲେ...

ସେମାନଙ୍କର ଗାଡ଼ି ଯାଇ ଥାନା ଦୁଆରେ ଭିଡ଼ିଥିଲ ।



ରା ତ୍ରିର ଅନ୍ଧକାର ଗଭୀରରୁ ଗଭୀର ହେଉଥିଲା । ଆଖିରେ ମୋର ତନ୍ଦ୍ରା ଭରି ଆସୁଥିଲା । ମୁଁ ଆଉ ଚାହିଁ ପାରୁ ନଥିଲି । ଉଦୟ ପ୍ରତି ମନଟା ମୋର ବିରକ୍ତିରେ ଭରି ଯାଉଥିଲା । ସେ ଆମର ପୁରୁଣା ଦିନର ସ୍ମୃତି ପୁଡ଼ିଆରୁ ଛିଣ୍ଡା ଛିଣ୍ଡା ସୂତା ଖିଅ ଟାଣି ବାହାର କରୁଥିଲା ।

ମୁଁ ଶୋଇ ପଡ଼ିଲି । ସେ କେତେବେଳେ ଯାଏ ଚେଇଁଥିଲା ମୋତେ ଜଣା ନାହିଁ । କିନ୍ତୁ କେଜାଣି କାହିଁକି ଅନେକ ରାତିରେ ମୋ ନିଦଟା ଭାଙ୍ଗିଗଲା । କାନରେ ବାଜିଲା ଏକ ମଧୁ କଣ୍ଠର ସଂଗୀତ । ଦୂରରୁ, ଯେପରି ଅନେକ ଦୂରରୁ, କେଉଁଠୁ ଭାସି ଆସୁଥିଲା । ମୁଁ ଉଠି ବସିଲି । ଉଦୟ ସେତେବେଳକୁ ନିଘୋଡ଼ ନିଦରେ ଶୋଇ ଯାଇଥିଲା ।

ସଂଗୀତର ମୂର୍ଚ୍ଛନା ରହି ରହି ମୋ କାନରେ ପ୍ରବେଶ କରୁଥିଲା । ଠିଆ ହେଲି । ଧୀରେ ଧୀରେ ଦରଜା ଖୋଲି ବାରଣ୍ଡାକୁ ଆସିଲି । ମଧୁ କଣ୍ଠର ସ୍ୱର ଝଙ୍କାର ଏଥର ମୋ କାନରେ ସ୍ପଷ୍ଟ ହୋଇ ଉଠିଲା । କିଏ ଗାଉଛି ଏତେ ରାତିରେ ! ଶାସ୍ତ୍ରୀୟ ସଂଗୀତ ମିଶ୍ରିତ ଏହି କଣ୍ଠ ସଂଗୀତ ଯେପରି କୌଣସି ତାଲିମପ୍ରାପ୍ତ ଗଳାରୁ ଫୁଟି ବାହାରୁଚି । କିନ୍ତୁ......

ଠିକ୍ ଆର ପାଖରେ ନନ୍ଦନଗଡ଼ର ରାଜପ୍ରାସାଦ । ରାତ୍ରିର ନିସ୍ତବ୍ଧତା ଭିତରେ ସେ ବି ଆଖି ବୁଜିଚି । କାଲି ଅପରାହ୍ଣରେ ବସି ବସି ମୁଁ ନିରୀକ୍ଷଣ କରୁଥିଲି ରାଜପ୍ରାସାଦକୁ । ମହାନଦୀ କୂଳରେ ଏକ ମନୋରମ ସ୍ଥାନରେ ନନ୍ଦନଗଡ଼ର ରାଜବାଟୀ । ଅପୂର୍ବ ଶୋଭା ଧାରଣ କରି ଠିଆ ହୋଇଛି । ରାଜବାଟୀକୁ ଲାଗି ବିରାଟ ଉଦ୍ୟାନ । ଉଦ୍ୟାନର ଶ୍ରୀ କିନ୍ତୁ

ନାହିଁ । ତାକୁ ଏବେ ଜଙ୍ଗଲର ଆଖ୍ୟା ଦିଆ ଯାଇପାରେ ।

ଉଦୟ କହୁଥିଲା, ନନ୍ଦନ ଗଡ଼ର ରାଜା ସାହେବ ଏକ ଅଦ୍ଭୁତ ଚରିତ୍ରର ଲୋକ । ଅବଶ୍ୟ ଉଦୟ କୌଣସି ଦିନ ତାଙ୍କ ସଂସର୍ଗରେ ଆସି ନାହିଁ । ତେବେ ଦୂରରୁ ଥାଇ ଅନେକଥର ସେ ଲକ୍ଷ୍ୟ କରିଚି, ରାଜା ସାହେବଙ୍କ ସମସ୍ତ କର୍ଯ୍ୟକଳାପରେ ଯେପରି ଅସ୍ୱାଭାବିକତା ପୂରି ରହିଥାଏ ।

ଏଁ । ହଠାତ୍ ସଂଗୀତ ବନ୍ଦ ହୋଇଗଲା ଯେ ! ତା'ପରେ ମହାନଦୀ ବକ୍ଷରେ ଶୁଣାଗଲା ଆହୁଲାର ଶବ୍ଦ । ଏଣେ ରାଜବାଟୀ ଉପରୁ ଗୋଟାଏ ତୀବ୍ର ଆଲୋକ ଆସି ଉଦ୍ୟାନ ସାରା ଖେଳିଗଲା । ତା'ପରେ ପରେ ଶୁଣାଗଲା ବୁଟ୍‌ର ଆବାଜ୍ । ରାଜା ସାହେବ ବୋଧହୁଏ ନିଜେ କାନ୍ଧରେ ଗୋଟାଏ ବନ୍ଧୁକ ପକାଇ ବାରଣ୍ଡାରୁ ତଳକୁ ଓହ୍ଲାଇ ଆସିଲେ । ତାଙ୍କ ହାତରେ ଶକ୍ତିଶାଳୀ ଟର୍ଚ୍ଚ ଆଲୋକ ସମଗ୍ର ଉଦ୍ୟାନରେ ଖେଳିଗଲା । ଗୋଟିକ ପରେ ଗୋଟିଏ ଗଛଲତା ଆଡ଼େଇ ସେ କ'ଣ ଖୋଜିବାରେ ଲାଗିଲେ ।

ଉଦୟ କହୁଥିଲା ହୁଏତ ଯାଙ୍କରି କଥା । ତାଙ୍କ ଚାଲିଚଳଣରେ କିପରି ଅସ୍ୱାଭାବିକତା ଲକ୍ଷ୍ୟ କରିଥିଲା ଉଦୟ । ଆଉ ବର୍ତ୍ତମାନ ତା'ରି ପ୍ରମାଣ ଦେଉଛନ୍ତି ସ୍ୱୟଂ ରାଜା ସାହେବ । କ'ଣ ସେ ଦେଖୁଛନ୍ତି, କାହାକୁ ସେ ଖୋଜୁଛନ୍ତି ?

ହୁ ଇଜ୍ ଦେଆର୍ ? ହଠାତ୍ ଏକ ଦୃଢ଼ କଣ୍ଠସ୍ୱର ଶୁଣି ମୋର ସ୍ୱପ୍ନ ଭଙ୍ଗ ହେଲା ପରି ମୁଁ ଚମକି ଚାହିଁଲି ।

ରାଜା ସାହେବ ବନ୍ଧୁକଟା ବାଗେଇ ଧରି କାହାକୁ ଯେପରି ଆକ୍ରମଣ କରୁଛନ୍ତି ।

ତା'ପରେ ଦୁଇଥର ଗୁଳି ଚାଳନାର ଶବ୍ଦ ।

ମହାନଦୀ ବକ୍ଷରେ ସାମାନ୍ୟ କଲ୍ଲୋଳ ଧ୍ୱନି । ମୁଁ ଘଟଣାଟା ଠିକ୍ ବୁଝି ପାରିବା ଆଗରୁ, ଉଦୟ ଛୁଟି ଆସି ମୋ ହାତଟା ଭିଡ଼ି ଧରି ଭିତରକୁ ଟାଣି ନେଇଗଲା । ଦରଜାଟା ଧଡ଼ାସ୍ କରି ବନ୍ଦ କରିଦେଇ କହିଲା: ତୋ'ର ଭାଗ୍ୟ ଭଲ । ତୁ ଆଜି ବଞ୍ଚି ଯାଇଚୁ, ମୋତେ ବି ଦୁଶ୍ଚିନ୍ତାରୁ ବଞ୍ଚେଇ ଦେଇଚୁ ।

ମୁଁ ଉଦୟ କଥାରୁ କିଛି ବୁଝି ପାରିଲି ନାହିଁ । ତା' କପାଳରୁ କିନ୍ତୁ ସ୍ୱେଦବିନ୍ଦୁ ଝରି ପଡୁଥିଲା ।

ଉଦୟ କହିଲା : ତୁ ମହାଯାତ୍ରାର ସଂଗୀତ ଶୁଣୁଥିଲୁ ବୋଧେ ?

ମହାଯାତ୍ରାର ସଂଗୀତ, ମାନେ ?

ଏ ଅଞ୍ଚଳର ଲୋକେ ସେ ସଂଗୀତକୁ ମହାଯାତ୍ରା ସଂଗୀତ କହନ୍ତି । ନିଶିଗନ୍ଧା ଗାଏ । ସେ ସଂଗୀତର ମୂର୍ଚ୍ଛନାରେ ଯିଏ ପ୍ରଲୁବ୍‌ଧ ହୁଏ, ସେ ମହାଯାତ୍ରାକୁ ସତରେ ଆଗେଇ ଯାଏ । ତାକୁ କେହି ରକ୍ଷା କରି ପାରନ୍ତି ନାହିଁ ।

ତଥାପି ମୁଁ ଉଦୟ କଥାରୁ ସ୍ପଷ୍ଟ କିଛି ବୁଝି ପାରିଲି ନାହିଁ ।

ଉଦୟ କହିଲା : ତୁ ଖୁବ୍ ବଞ୍ଚି ଯାଇଛୁ ଭାଇ୍ । ଏଇ ନିଶିଗନ୍ଧାର ଡାକରେ ଯେ କେତେଜଣ ଆତ୍ମବଳି ଦେଲେଣି, ତା'ର ହିସାବ କେହି ରଖିପାରି ନାହିଁ ।

: କିନ୍ତୁ କିଏ ଏହି ନିଶିଗନ୍ଧା ?

: ମୋତେ ଜଣା ନାହିଁ । ତେବେ ଏଠାରେ ଏକ ପ୍ରବାଦ ପ୍ରଚଳିତ ଅଛି । ଅର୍ଦ୍ଧନିଶିରେ ମହାନଦୀ ବକ୍ଷରେ ଏକ ନୌକା ଭାସି ଭାସି ଆସି ନନ୍ଦନ ଗଡ଼ର ଉଦ୍ୟାନରେ ଲାଗେ । ସେହି ନୌକାରୁ ଓହ୍ଲାଇ ଆସେ ନିଶିଗନ୍ଧା । ଅପରୂପ ସୁନ୍ଦରୀ । ନୃତ୍ୟର ଛନ୍ଦରେ ତା'ର ରାତ୍ରିର ଉଦ୍ୟାନ ଜୀବଦାନ ପାଏ । କଣ୍ଠର ମଧୁଛନ୍ଦରେ ଲତାପତ୍ର ପଲ୍ଲବିତ ହୋଇ ଉଠନ୍ତି । ସେହି ମଧୁଛନ୍ଦରେ ଯିଏ ଆକର୍ଷିତ ହୋଇ ଉଦ୍ୟାନକୁ ଓହ୍ଲେଇ ଯାଏ, ତା'ର ହୁଏ ଅକାଳ ମୃତ୍ୟୁ । କେଉଁ ଆତତାୟୀର ଗୁଳି ତା' ପଞ୍ଜରାରୁ ନାଲି ରକ୍ତ ନିଗାଡ଼ି ଆଣେ । ନିଶିଗନ୍ଧା ସେଇ ରକ୍ତ ପିଏ, ଆଉ ହସେ ପିଶାଚୀର ହସ । ତା'ପରେ ଧୀରେ ଧୀରେ ସବୁ ଶାନ୍ତ ହୋଇଯାଏ । ନିଶିଗନ୍ଧା ପୁଣି ନୌକାକୁ ଫେରିଯାଏ । ମହାନଦୀ ବକ୍ଷରେ କଲ୍ଲୋଳ ସୃଷ୍ଟି ହୁଏ ।

ଉଦୟ ଏହି କଥା କହିବା ବେଳେ ଆଖି ଯୋଡ଼ାକ ତା'ର ବଡ଼ ବଡ଼ ହୋଇ ଉଠିଥିଲା । ମୁହଁରେ ଫୁଟିଥିଲା ପଳାଶର ଆଭା ।

ମୋତେ ଭାରି ହସ ମାଡ଼ିଲା । ଉଦୟ ବିଂଶ ଶତାବ୍ଦୀର ଏକ ଶିକ୍ଷିତ ଯୁବକ । ଅଥଚ ତା'ରି ଘର ପଛଆଡ଼ର ଏ ଘଟଣା । ଏକ ଅବିଶ୍ୱାସ୍ୟକର ଗଳ୍ପ ଉପରେ ଗୁରୁତ୍ୱ ସ୍ଥାପନ କରି ଉଦୟ ଘରେ କବାଟ କିଳି ଶୁଏ । ରାଗ ହେଲା ମନେ ମନେ ଉଦୟ ଉପରେ । ସେଦିନର କଲେଜପଢୁଆ ଉଦୟ ଆଉ ଆଜିର ଚାକିରିଆ ଉଦୟ ଭିତରେ ଯେପରି ଆକାଶ ପାତାଳ ପାର୍ଥକ୍ୟ !!

ଉଦୟ ପୁଣି ମୋ ମନରେ ଆସ୍ଥା ସ୍ଥାପନ କରିବା ପାଇଁ କହିଲା : ମୁଁ ଜାଣେ ତୁ ମୋ କଥା ବିଶ୍ୱାସ କରି ପାରିବୁ ନାହିଁ । ମୁଁ ବି ଯେତେବେଳେ ପ୍ରଥମେ ଏଠାକୁ ଆସିଲି, ଏହିପରି ଏକ ଅଜବ କାହାଣୀ ଶୁଣି ବିଶ୍ୱାସ କରି ପାରୁ ନଥିଲି । କିନ୍ତୁ ଦିନେ ମୋର ଭ୍ରମ ଭାଙ୍ଗିଗଲା ।

: କିପରି ? ମୁଁ ପଚାରିଲି ।

: ନିଜ ଆଖିରେ ମୁଁ ଦେଖିଥିଲି ସେହି ରକ୍ତାକ୍ତ ଦେହ ।

: କାହାର ?

: ରାଜବାଟୀକୁ ଆସିଥିବା ନବାଗତ ଏକ ଦୁଃସାହସିକ ଯୋଦ୍ଧାର ।

: ମାନେ ?

: କେଉଁଠୁ ସେ ଏହି ରହସ୍ୟ ଉପାଖ୍ୟାନ ଶୁଣି ଆସିଥିଲା ରହସ୍ୟ ଉଦ୍‌ଘାଟନ କରିବାପାଇଁ । ନିଶିଗନ୍ଧାର ଅସ୍ତିତ୍ୱ ଆବିଷ୍କାର କରିବାପାଇଁ ।

: ତା'ପରେ ?

: ଆମେ ରାତିରେ ନିଶିଗନ୍ଧାର ମଧୁ କଣ୍ଠ-ସଂଗୀତ ଶୁଣିଲୁ । ଆଉ ଦୁଃସାହସିକ ଯୋଦ୍ଧାର ମୃତ୍ୟୁ-ବିଳାପ ମଧ୍ୟ ଶୁଣିଲୁ । ସକାଳୁ ଉଦ୍ୟାନ ମଝିରେ ରକ୍ତାକ୍ତ ମୃତଦେହ ବି ଦେଖିଲୁ ।

: ତୁ କେଉଁ ଶତାବ୍ଦୀର କଥା କହୁଚୁ ଉଦୟ ?

ଉଦୟ କହିଲା : ତୋ ଦେହ ଛୁଇଁ କହୁଚି ଭାଇ, ଘଟଣାଟା ବର୍ଷକ ତଳର ବି ହେବ ନାହିଁ । ପ୍ରତ୍ୟକ୍ଷ ଦର୍ଶନ ପରେ ପୈତୃକ ପ୍ରାଣଟାକୁ ନେଇ ପେଣ୍ଡୁ ପରି ନଚେଇବାକୁ ଆଉ ଇଚ୍ଛା ହେଲା ନାହିଁ । ମନର ସମସ୍ତ କୌତୂହଳ ଆପଣାଛାଏଁ ମରି ମରି ଆସିଲା । ଏବେ ମୁଁ ଏଠାକାର ଚଳନ ସହିତ ନିଜକୁ ବେଶ୍ ଖାପ ଖୁଆଇ ନେଇ ସାରିଲିଣି ।

ମୋ ଅବଜ୍ଞାର ହସ ଭିତରେ ଭିତରେ ଝରି ପଡ଼ିଲା । କାରଣ ଉଦୟର ମୁହଁରେ ଏପରି କଠୋର ବେଦନାର ଛାପ ଫୁଟି ଉଠିଥିଲା, ଯାହାକୁ ମୁଁ ଭେଦ କରି ପାରିଲି ନାହିଁ । ଗମ୍ଭୀର ହୋଇ ପଚାରିଲି, ତା'ପରେ କ'ଣ ହେଲା ?

: ହେବ ଆଉ କ'ଣ ?

: ମାନେ ସେହି ଦୁଃସାହସିକ ଯୋଦ୍ଧାର ମୃତ୍ୟୁ ପରେ ତା'ର ହତ୍ୟାକାରୀ ସମ୍ବନ୍ଧରେ କୌଣସି ତଦନ୍ତ ହେଲା ନାହିଁ ?

: ସବୁ ହେଲା । ପୋଲିସ ଆସିଲା, ମୃତ ଦେହ ପରୀକ୍ଷା କଲା । ଇନସ୍‌ପେକ୍ଟରଙ୍କ ଖାତାର କିଛି ଅଂଶ ଜବାବ ସୁଆଲରେ ପୂର୍ଣ୍ଣ ହେଲା । ଦିନ କେତୁଟା ଏ ଅଞ୍ଚଳ ଖୁବ୍ ଉତ୍ତେଜନାରେ ପୂରି ରହିଲା । ସେଉଠୁ ଯଥା ପୂର୍ବଂ ଚାଲିଲା, ଆଉ କ'ଣ ।

: ରାଜା ସାହେବଙ୍କର ଏ ସମ୍ବନ୍ଧରେ ମତ କ'ଣ ?

: ସେ ସାଧାରଣତଃ ବେଶି କଥାବାର୍ତ୍ତା କରନ୍ତି ନାହିଁ । କି ଏକ ଗଭୀର ମାଦକତା ଭିତରେ ସବୁବେଳେ ଆଚ୍ଛନ୍ନ ଥାଆନ୍ତି । ନରେନ୍ଦ୍ରପୁରର ରାଜା ସାହେବଙ୍କ ସଙ୍ଗରେ ଅଧିକାଂଶ ସମୟ ଚେସ୍ ଖେଳନ୍ତି । ଏବେ ତ ରାଜ୍ୟ ଶାସନର ଗୁରୁଭାର ମୁଣ୍ଡ ଉପରେ ନାହିଁ, କିମ୍ବା ପ୍ରଜା ଆନ୍ଦୋଳନର ଝଂଜଟ ନାହିଁ, ଆଉ କାମ କ'ଣ ।

: ନରେନ୍ଦ୍ରପୁରର ରାଜା ସାହେବ ପୁଣି କିଏ ?

: ସେ ନନ୍ଦନ ଗଡ଼ର ରାଜା ସାହେବଙ୍କର ଅନ୍ତରଙ୍ଗ ବନ୍ଧୁ । ଠିକ୍ ମହାନଦୀର ଅପର ପାର୍ଶ୍ୱରେ ନରେନ୍ଦ୍ରପୁରର ରାଜବାଟୀ । ଶୁଣିଛି ବହୁ ବର୍ଷ ଧରି ଏ ଦୁଇ ରାଜ ପରିବାର ମଧ୍ୟରେ ବନ୍ଧୁତା ଅକ୍ଷୁଣ୍ଣ ରହି ଆସିଛି । ନନ୍ଦନ ଗଡ଼ର ରାଜବାଟୀ ଯେପରି ଭାବରେ, ଯେଉଁ ଆକାରରେ ଠିଆ ହୋଇଛି, ମହାନଦୀର ଅପର ପାର୍ଶ୍ୱରେ ଠିକ୍ ସମାନ ଭାବରେ ଗଢ଼ି ଉଠିଛି ନରେନ୍ଦ୍ରପୁରର ରାଜପ୍ରାସାଦ । ଏମାନଙ୍କର ପିତା ପ୍ରପିତାମହ ଅମଳରୁ ଏ ଦୁଇ ରାଜ ପରିବାର ମଧ୍ୟରେ ପ୍ରଗାଢ଼ ବନ୍ଧୁତା ରହି ଆସିଛି । ସେମାନେ ଏକା ସଙ୍ଗରେ, ଏକା ପ୍ଲାନରେ ଦୁଇ ରାଜବାଟୀ ନିର୍ମାଣ କରିଛନ୍ତି । ତେଣୁ ଦୁଇ ରାଜବାଟୀକୁ ଚାହିଁଲେ ଅନେକ ସମୟରେ ଭ୍ରମ ହୁଏ ।

ଉଦୟର କଥା ଶୁଣି ମୋ ଚିନ୍ତାଧାରାଟା କିପରି ଟିକିଏ ଗୋଳମାଳିଆ ହୋଇଗଲା । ମୁଁ ନିଜକୁ ଅପ୍ରକୃତିସ୍ଥ ପରି ମନେ କଲି । ଏହି ନନ୍ଦନଗଡ଼ ସମ୍ବନ୍ଧରେ ମୋ ମନରେ ବି ଏକ କୌତୂହଳ ଜାଗି ଉଠିଲା ।

ଉଦୟ ମୋର ବନ୍ଧୁ । ଅତି ଅଳ୍ପ ବୟସରୁ ଆମର ବନ୍ଧୁତା ଗଢ଼ି ଉଠିଥିଲା ।

ଏକାସଂଗରେ ଆମେ ଆମର ଶିକ୍ଷା ସମାପ୍ତ କରିଥିଲୁ । ତା'ପରେ ଜୀବନର ଗତି ଭିନ୍ନ ପ୍ରକାର ହୋଇ ଉଠିଥିଲା । ଚାକିରି ଜୀବନରେ ଉଦୟ ନାନାଆଡ଼େ ଘୁରି ଘୁରି ଶେଷରେ ଆସି ପହଞ୍ଚିଛି ନନ୍ଦନ ଗଡ଼ରେ । ମୁଁ ବି ଚାକିରି ପରେ ଚାକିରି ଛାଡ଼ି ଛାଡ଼ି, ଶେଷ ଚାକିରିର ସୂତ୍ର ଧରି ନନ୍ଦନଗଡ଼କୁ ଆସିଛି ଗୋଟାଏ ଇନିସ୍‌ପେକ୍‌ସନରେ । କିନ୍ତୁ ହଠାତ୍ ଯେ ଉଦୟ ସହିତ ମୋର ଦେଖା ହେବ, ଆଉ ତା' ଘରେ ମୁଁ ରାତିକର ଅତିଥି ହୋଇ, ଏପରି ଏକ ରହସ୍ୟମୟ ଘଟଣାର ସମ୍ମୁଖୀନ ହେବି, ସେ କଥା ନିଜେ କ'ଣ ମୁଁ ଭାବିଥିଲି !!

ସେଦିନ ରାତିରେ ମୁଁ ଆଦୌ ଶୋଇ ପାରିଲି ନାହିଁ । ନାନାପ୍ରକାର ଭାବନା ଦୁର୍ଭାବନା ଭିତରେ ମନଟା ଛନ୍ଦି ହୋଇଗଲା ।

ଇନିସ୍‌ପେକ୍‌ସନ କାର୍ଯ୍ୟ ଶେଷ ହୋଇ ସାରିଥିଲା । ଆରଦିନ ସକାଳୁ ଫେରିଯିବାର କଥା, କିନ୍ତୁ ଯିବା ନା ନାହିଁ ? ଆହୁରି କିଛିଦିନ ରହି ନନ୍ଦନ ଗଡ଼ରେ ନିଶିଗନ୍ଧାର ମଧୁ-ସଂଗୀତ ଶୁଣିବାର ଆଗ୍ରହ ମୋ ମନରେ ଚେଇଁ ଉଠିଥିଲା ।

ଉଦୟ ପୁଣି ଶୋଇ ପଡ଼ିଲାଣି ।

ଭାରି ଦୟା ହେଲା ମୋର ଉଦୟ ଉପରେ । ଆହା ବିଚରା ! ଛାତ୍ର ଜୀବନର ସମସ୍ତ ସ୍ୱପ୍ନ ତା'ର ମଉଳି ପଡ଼ିଚି । ପାରିବାରିକ ବଂଧନ ଆଜି ତାକୁ ଗୋଟିଏ ନିରୀହ ପଶୁଶାବକରେ ପରିଣତ କରି ଦେଇଛି ।

ତା' ନହେଲେ ଉଦୟ ! ସବୁ କଥାରେ ଅଗ୍ରଣୀ ଥିଲା ସେ । କୌଣସି ଆନ୍ଦୋଳନ କରିବାକୁ ହେବ ? ସର୍ବ ପ୍ରଥମେ ଦେଖିବ ଉଦୟକୁ । କ୍ଲାସରେ କୌଣସି ପ୍ରତିବାଦ କରିବାକୁ ହେବ ? ଉଦୟ ଆଗରେ ଠିଆ । ଅର୍ଦ୍ଧ ରାତ୍ରିରେ ଶ୍ମଶାନକୁ କିଏ ଯାଇ ପାରିବ ? ଉଦୟ ପାଖରେ ତାହା ଅତି ତୁଚ୍ଛ ! ଦ୍ରୁତ ଗତିରେ ମଟର ଚଳେଇ ଯେଉଁ ଯୁବତୀଟି ଯାଉଛି, ତା' ଗାଡ଼ି କିଏ ଅଟକେଇ ପାରିବ ? ସେ ଉଦୟ !

ଆଉ ସେଇ ଉଦୟ ଆଜି ! ନିରୀହ ପଶୁଶାବକ । ଏକ କଳ୍ପିତ ନିଶିଗନ୍ଧାର ଭୟରେ ସେ ଦୁଆର-ଝରକା ବନ୍ଦ କରି ଶୋଇ ଯାଉଚି ।

ରାତି ପାହି ଆସିଲାଣି ବୋଧେ !

କୁଆ ରାବିଲେଣି । ନନ୍ଦନ ଗଡ଼ର ଦେବ ମନ୍ଦିରରେ ଶୁଭିଲାଣି ଘଣ୍ଟା ଧ୍ୱନି ।

ମୁଁ ଉଠିଯାଇ ଦୁଆର ଖୋଲିଲି ।

ସକାଳର ଶୀତଳ ପବନ ମୋ ଦେହ ସ୍ପର୍ଶ କଲା ।

ନନ୍ଦନ ଗଡ଼ର ରାଜବାଟୀ ଧୀରେ କର୍ମମୁଖର ହୋଇ ଉଠୁଥିଲା । ଦାସଦାସୀମାନେ

ବିଭିନ୍ନ କାର୍ଯ୍ୟରତ ଅବସ୍ଥାରେ ଦେଖା ଯାଉଥିଲେ ।

କିନ୍ତୁ ରାଜବାଟୀର ରାଜ ପରିବାର ମଧ୍ୟରୁ କେହି ଦୃଷ୍ଟିଗୋଚର ହେଉ ନ ଥିଲେ ।

ମୁଁ ବାରଣ୍ଡାରେ ଠିଆ ହୋଇ ନନ୍ଦନ ଗଡ଼ର ରାଜବାଟୀକୁ ଗଭୀର ଭାବରେ ଅନୁଶୀଳନ କରିବାକୁ ଚେଷ୍ଟା କରୁଥିଲି । କିନ୍ତୁ ତାହା କ'ଣ ସମ୍ଭବ ! ମାତ୍ର ରାଜବାଟୀର ସାମାନ୍ୟ ଅଂଶ ମୋର ଦୃଷ୍ଟିଗୋଚର ହେଉଥିଲା ।

ଧୀରେ ଧୀରେ ମୁଁ ତଳକୁ ଓହ୍ଲେଇଲି । ମୋର ଇଚ୍ଛା ହେଉଥିଲା ମୁଁ ଥରେ ରାଜବାଟୀକୁ ଯାଇ ରାଜ ନଅରର ପ୍ରତ୍ୟେକ ଅଂଶ ବୁଲି ଦେଖି ଆସନ୍ତି । ପ୍ରତିଟି ମଣିଷ ସହିତ କଥାବାର୍ତ୍ତା ହୋଇ ଆସନ୍ତି । ତା'ହେଲେ ହୁଏତ ନିଶିଗନ୍ଧା ସମ୍ବନ୍ଧରେ ପ୍ରକୃତ ତଥ୍ୟ ଉଦ୍‌ଘାଟନ କରିବାକୁ ସମର୍ଥ ହୋଇ ପାରନ୍ତି । କିନ୍ତୁ ତାହା କିପରି ହେବ ?

ରାଜବାଟୀର ସଦର ଦରଜା ପାଖରେ ଯାଇ ଉପସ୍ଥିତ ହେଲି । ଭାବିଥିଲି ହୁଏତ କଡ଼ା ପହରାର ବ୍ୟବସ୍ଥା ଥିବ ସେଠାରେ । କିନ୍ତୁ ସେପରି କିଛି ମନେହେଲା ନାହିଁ । ଯଦିଓ ଜଣେ ଦ୍ୱାର ରକ୍ଷକ ଗୋଟିଏ ପାଖରେ ଠିଆ ହୋଇ ଟହଲ ଦେଉଚି, ତା' ହାବଭାବରୁ ମନେହେଲା, କାହାରି ଯାତାୟତ ସମ୍ବନ୍ଧରେ ତା'ର ବିଶେଷ କୌଣସି ଲକ୍ଷ୍ୟ ନାହିଁ । ଲୋକେ ଯାଉଛନ୍ତି, ଆସୁଛନ୍ତି । ମୁଁ ବି ରାଜବାଟୀର ପ୍ରଧାନ ଦ୍ୱାର ଅତିକ୍ରମ କରି ଭିତରକୁ ଚାଲିଗଲି ।

ସିଧା ମୁଁ ଉଦ୍ୟାନ ଭିତର ଦେଇ ଚାଲିଲି ମହାନଦୀ କୂଳ ଆଡ଼େ । ଯେଉଁଠି ନୌକାରେ ଆସି ନିଶିଗନ୍ଧା ଅବତରଣ କରେ ।

ମହାନୀଦ ତଟର ଦୃଶ୍ୟ କିନ୍ତୁ ଖୁବ୍ ମନୋରମ । ମହାନଦୀ କୂଳେ କୂଳେ ଅନେକ ଦୂରଯାଏ ତଟଦେଶକୁ ସୁନ୍ଦର ଭାବରେ ଇଟା ସିମେଣ୍ଟରେ ବନ୍ଧା ଯାଇଚି । ଦେଶୀ ବିଦେଶୀ ନାନା ପ୍ରକାର ବୃକ୍ଷଲତାରେ ତଟଦେଶକୁ ସୁଶୋଭିତ କରିବାକୁ ଚେଷ୍ଟା କରା ହୋଇଚି । ମହାନଦୀ ଭିତରେ ଦୁଇ ତିନିଖଣ୍ଡ ନୌକା ଏବଂ ଦୁଇଟି ମଟର ଲଞ୍ଚ ବନ୍ଧା ହୋଇଚି ।

ମୁଁ ଏକ ସିମେଣ୍ଟ ଚଟାଣ ଉପରେ ବସିଲି । ସେଠାକାର ଶୋଭା ଅତ୍ୟନ୍ତ ମନୋରମ ହୋଇଥିଲା । ମନରେ ମୋର ଭାବାନ୍ତର ସୃଷ୍ଟି ହୋଇଥିଲା । ମୁଣ୍ଡଟା ହାଲ୍‌କା ହାଲ୍‌କା ଜଣା ପଡୁଥିଲା ।

ହଠାତ୍ ମୋ ପଛରେ କାହାର ପାଦଶବ୍ଦ ଶୁଣି ବୁଲି ଅନେଇଲି ।

ଗୋଟିଏ ବୟସ୍କ ଲୋକ ମୋରି ଆଡ଼କୁ ଆଗେଇ ଆସୁଚି ।

ହଜୁର କ'ଣ ନରେନ୍ଦ୍ରପୁର ଯିବେ ?

ରାଜକର୍ମଚାରୀଟିର ବିନମ୍ର ନିବେଦନ ଶୁଣି ମୁଁ ପ୍ରଥମେ ଟିକିଏ ଅପ୍ରସ୍ତୁତ ହୋଇପଡ଼ିଲି ।

ରାଜକର୍ମଚାରୀଟିର ବୟସ ପଚାଶରୁ ଉର୍ଦ୍ଧ୍ୱ ହେବ । ମୁଣ୍ଡର ବାଳଗୁଡ଼ିକ ଦରପାଚିଲା ହୋଇ ଆସିଲାଣି । ମୁହଁରେ କୌଣସି ଶ୍ରୀ ନାହିଁ । ଆଖି ଯୋଡ଼ାକ କୋଟରଗତ ।

ଉତ୍ତର ଦେଲି, ନା । ଖାଲି ଇମିତି ଦେଖୁଥିଲି । ମହାନଦୀ କୂଳଟା ମୋତେ ବେଶ୍ ଭଲ ଲାଗୁଚି ।

ଆପଣଙ୍କୁ ତ ମୁଁ ଆଉ କେବେ ଏଠାରେ ଦେଖି ନାହିଁ ? ଲୋକଟି କହିଲା ।

ନାଁ, ଆଜି ମୁଁ ପ୍ରଥମ ଆସିଚି ।

ଆପଣ କ'ଣ ରାଜ ପରିବାରର ଲୋକ ?

ନା, ମୁଁ ସରକାରୀ ଲୋକ । ଏକ ବିଶେଷ କାର୍ଯ୍ୟରେ ନନ୍ଦନ ଗଡ଼କୁ ଆସିଛି ।

ଆପଣ ଏଠାକୁ ଆସିବା ପାଇଁ ରାଜା ସାହେବଙ୍କଠାରୁ ଅନୁମତି ଆଣିଛନ୍ତି ?

ଲୋକଟିର ପ୍ରଶ୍ନବାଣରେ ମୁଁ ବିବ୍ରତ ହୋଇ ପଡ଼ିଥିଲି । ତା' ପ୍ରଶ୍ନର ସିଧା ସଳଖ ଉତ୍ତର ନ ଦେଇ ପଚାରିଲି, ତମେ କିଏ ?

ମୁଁ ? ମୁଁ ଏହି ଉଦ୍ୟାନ ରକ୍ଷକ । ଆପଣ ଯଦି ବିନା ଅନୁମତିରେ ଏଠାରେ ପ୍ରବେଶ କରିଥାଆନ୍ତି, ଖୁବ୍ ଅନ୍ୟାୟ କରିଛନ୍ତି ।

ତୁମ ନାଁ କ'ଣ ? ମୁଁ ପୁଣି ପଚାରିଲି ।

ସଦାକତ୍ ।

ଓଃ, ସଦାକତ୍ । ବେଶ୍ ବେଶ୍ । ଆଚ୍ଛା ସଦାକତ୍ ତମେ ନନ୍ଦନ ଗଡ଼ରେ କେତେ ବର୍ଷ ହେବ ରହିଛ ?

ସଦାକତ୍‌ର ମୁହଁରେ କିପରି ଟିକିଏ ଭାବାନ୍ତର ଲକ୍ଷ୍ୟ କଲି । ଏଥର ସେ ମୋ ପ୍ରଶ୍ନ ଏଡ଼େଇ ଯାଇ କହିଲା, ଆପଣଙ୍କ ପାଖରେ ରାଜା ସାହେବଙ୍କର ଅନୁମତିପତ୍ର ଅଛି ?

ମୁଁ କହିଲି, ନାହିଁ ସଦାକତ୍ ! ମୋ ପାଖରେ ରାଜା ସାହେବଙ୍କ ଅନୁମତି ପତ୍ର ନାହିଁ ସତ, କିନ୍ତୁ ସରକାରଙ୍କର ଅନୁମତି ପତ୍ର ଅଛି । ତମ ରାଜା ସାହେବ ତାହା ଦେଖିଲେ, ମୋତେ ନିଶ୍ଚୟ ଏଠାକୁ ଆସିବାକୁ ଅନୁମତି ଦେବେ ।

ସଦାକତ୍ କ'ଣ କହିବାକୁ ଯାଇ, ମୋ ହାତରେ ସିଗାରେଟ୍ ପକେଟଟା ଦେଖି ହଠାତ୍ ନୀରବ ହୋଇଗଲା । ମୁଁ ଗୋଟିଏ ସିଗାରେଟ୍ ବାହାର କରି ସଦାକତ୍ ଆଡ଼େ ଦେଖେଇ କହିଲି, ତୁମେ ସିଗାରେଟ୍ ଟାଣ ସଦାକତ୍ ?

ସେ ଟିକିଏ ସତୃଷ୍ଣ ନୟନରେ ମୋ ଆଡ଼କୁ ଚାହିଁ କହିଲା, ଏକ ସମୟରେ ପ୍ରଚୁର ଟାଣୁଥିଲି ହଜୁର ! ଆଜି ସେ ସବୁ ଅଭ୍ୟାସ ତ୍ୟାଗ କରିଛି । କେବଳ ମୁଁ ମୋର କର୍ତ୍ତବ୍ୟରେ ମନ ଦେଇଛି । ଶୁଣନ୍ତୁ ହଜୁର ! ଆପଣ ରାଜ ସାହେବଙ୍କଠାରୁ ଅନୁମତି ଆଣି ଆସନ୍ତୁ, ତା' ନ ହେଲେ ସେ ଜାଣିଲେ ମୋର ଚାକିରି ଯିବ ।

ତମେ ବ୍ୟସ୍ତ ହୁଅ ନାହିଁ ସଦାକତ୍ ! ତମର ଚାକିରି ନେବାକୁ ମୁଁ ଆସି ନାହିଁ । ନିଅ. ଗୋଟାଏ ସିଗାରେଟ୍ ଟାଣ । ଖାଲି ବର୍ତ୍ତମାନ ଉପରେ ଠିଆ ହୋଇ ବଞ୍ଚି ହୁଏ

ନାହିଁ ସଦାକତ୍, ଅତୀତର ସ୍ମୃତି ବି ପ୍ରୟୋଜନ ।

ସଦାକତ୍ ମୋ ମୁହଁକୁ କିପରି ଏକ ଗଭୀର ଆନ୍ତରିକତା ସହକାରେ କିଛି ସମୟ ଅନାଇ ରହିଲା । ତା'ପରେ ଥରିଲା ହାତରେ ମୋ ଠାରୁ ସିଗାରେଟ୍‌ଟି ନେଇ କହିଲା, ଆପଣ ଠିକ୍ କହିଛନ୍ତି ହଜୁର ! ଅତୀତ ନ ଥିଲେ ବର୍ତ୍ତମାନ ଉପରେ ବଞ୍ଚି ହୁଅନ୍ତା ନାହିଁ ।

ମୁଁ ଡିଆଶିଲି ଜାଳି ସଦାକତ୍‌ର ସିଗାରେଟ୍‌ଟି ଲଗେଇ ଦେଲି, ନିଜେ ବି ଲଗେଇଲି ।

ତମେ କେତେବର୍ଷ ହେବ ନନ୍ଦନ ଗଡ଼ରେ ଅଛ କହିଲ ନାହିଁ ତ ସଦାକତ୍ ? ପଚାରିଲି ।

ସଦାକତ୍‌ର ମୁହଁରେ କିପରି ଟିକିଏ କାଠିନ୍ୟ ଫୁଟି ଉଠିଲା । ଗୋଟିଏ ଟାଣରେ ସିଗାରେଟ୍‌ଟାରେ ଏକ ଚତୁର୍ଥାଂଶ ଟାଣି ନେଇ ଧୂଆଁ ଗୁଡ଼ାକ ପାଟି ଓ ନାକ ବାଟେ ଭସ୍ ଭସ୍ କରି ବାହାର କରୁ କରୁ କହିଲା, ଅନେକ ବର୍ଷ ହଜୁର, ପ୍ରାୟ ପଚିଶି ତିରିଶ ବର୍ଷ ହେବ ମୁଁ ଏଇ ନନ୍ଦନଗଡ଼ ରାଜବାଟୀରେ, ଏଇ ଉଦ୍ୟାନ ରକ୍ଷକ କାର୍ଯ୍ୟରେ ଜୀବନକୁ ଉତ୍ସର୍ଗ କରି ଦେଇଛି । ରାଜାସାହେବ ମୋତେ ଖୁବ୍ ଭଲ ପାଆନ୍ତି ।

ଆଚ୍ଛା ସଦାକତ୍ । ତମ ଘର କେଉଁଠି ?

ମୋ ଘର....ସଦାକତ୍ ସ୍ୱଗତୋକ୍ତି କରି ଟିକିଏ ହସିଲା । କହିଲା, ସତେତ ! ଆଜିଯାଏ ମୋ ଘର କଥା କେହି ତ କେବେ ପଚାରି ନ ଥିଲେ ହଜୁର ! ଆପଣ ମୋତେ ଗୋଟାଏ ସମସ୍ୟାରେ ପକାଇ ଦେଲେ ।

କାହିଁକି ?

ମୋ ଘର କଥା ତ ମୋର କିଛି ମନେ ନାହିଁ ହଜୁର ।

ତମେ ବ୍ୟସ୍ତ ହୁଅ ନାହିଁ ସଦାକତ୍ । ତମ ଘର କେଉଁଠି ନ ଜାଣିଲେ ବି ମୋର ଚଳିବ ।

କିନ୍ତୁ ହଜୁର....

କ'ଣ କୁହ ସଦାକତ୍ ! ଅଟକିଗଲ କାହିଁକି ?

ମୁଁ ଲକ୍ଷ୍ୟ କଲି ସଦାକତ୍ ମହାନଦୀର ଅପର ପାର୍ଶ୍ୱକୁ ଚାହିଁ କିପରି ଚଞ୍ଚଳ ହୋଇ ଉଠିଲା । ମୋତେ କହିଲା, ଆପଣ ଏଥର ଚାଲି ଯାଆନ୍ତୁ ହଜୁର । ମହାନଦୀ ବକ୍ଷରେ ଦେଖୁଛନ୍ତି ଗୋଟାଏ ମଟର ଲଞ୍ଚ ଏଇ ଆଡ଼କୁ ଆସୁଛି ? ସେଥିରେ ନରେନ୍ଦ୍ରପୁରର ରାଜା ସାହେବ ଆସୁଛନ୍ତି । ଆମ ରାଜା ସାହେବଙ୍କର ସେ ଅନ୍ତରଙ୍ଗ ବନ୍ଧୁ । ଆପଣଙ୍କୁ ଏଠାରେ ଦେଖିଲେ, ଆମ ରାଜା ସାହେବଙ୍କ ପାଖରେ କଥା ଉଠିବ । ଆପଣ ଚାଲି ଯାଆନ୍ତୁ ହଜୁର । ବରଂ ଆଉଦିନେ ଆସିବେ ।

ମୁଁ ସଦାକତ୍‌ର ବ୍ୟସ୍ତତା ଦେଖି ଓ ତା'ର କାକୁତିପୂର୍ଣ୍ଣ ଅନୁରୋଧ ଶୁଣି ସେଠାରେ ଆଉ ଠିଆ ହୋଇ ରହିବା ଉଚିତ୍ ମଣିଲି ନାହିଁ । ଖାଲି ସେତିକି ନୁହେଁ, ମୋର ଏଠାରେ ବେଆଇନ୍ ଭାବରେ ପ୍ରବେଶ କରିବା ମଧ୍ୟ ଅନ୍ୟାୟ ହୋଇଛି । ମହାନଦୀ ଗର୍ଭକୁ ଚାହିଁଲି । ମଟର୍ ଲଞ୍ଚଟା ଆଗେଇ ଆସୁଥିଲା । ସଦାକତ୍ ଏକ ଦୃଷ୍ଟିରେ ସେଇ ଆଡ଼କୁ

ଅନେଇ ରହିଥିଲା ।

ମୁଁ ଚାଲିଲି ସଦାକତ୍ ! ପୁଣି ପରେ ଦେଖାହେବ । ତୁମେ ଏଇ ସିଗାରେଟ୍ ପକେଟଟା ରଖିଥାଅ । କହି ସିଗାରେଟ୍ ପକେଟରେ ଥିବା ଅବଶିଷ୍ଟ ସିଗାରେଟ୍ ତକ ତା' ହାତରେ ଗୁଂଜିଦେଇ ଚାଲି ଆସିଲି । ପଛକୁ ବୁଲି ଚାହିଁଲି, ସେ ମୋ ଆଡ଼େ ସତୃଷ୍ଣ ନୟନରେ ଅନାଇ ରହିଛି ।

ସଦାକତ୍ ଯେ ଗୋଟିଏ ନିରୀହ, ବ୍ୟଥିତ ପ୍ରାଣ, ତା' କଥାବାର୍ତ୍ତାରୁ ମୁଁ ସମ୍ୟକ ଅନୁଭବ କରିଥିଲି । ହୁଏତ ନିଶିଗନ୍ଧା ସମ୍ବନ୍ଧରେ ତା' ମନରେ ବି ଏକ କଳ୍ପିତ କାହାଣୀ ବସାବାନ୍ଧି ରହିଥିବ । ତଥାପି ସେ ନନ୍ଦନଗଡ଼ର ଏକ ପୁରାତନ ବିଶ୍ୱାସୀ ଭୃତ୍ୟ । ତା'ଠାରୁ ଦିନେ ନିଶିଗନ୍ଧା ସମ୍ବନ୍ଧରେ ସବୁକଥା ଶୁଣିବାକୁ ହେବ ।

ମୁଁ ଆଗେଇ ଆସୁଥିଲି । ରାଜପ୍ରାସାଦର ପ୍ରଧାନ ପ୍ରବେଶ ଦ୍ୱାର ଅତିକ୍ରମ କରି ଆଗେଇ ଆସି ସାରିଥିଲି । ପଛରୁ କିଏ ଯେପରି ମୋତେ ଉଦ୍ଦେଶ୍ୟ କରି ଡାକିବାକୁ ଶୁଣିଲି, ହଜୁର....

ବୁଲି ଅନେଇଲି । ଜନୈକ ରାଜ କର୍ମଚାରୀ । ମୋରି ପଛେ ପଛେ ଛୁଟିଛି ।

ମୁଁ ଠିଆ ହୋଇଗଲି ।

ଆପଣଙ୍କୁ ରାଜା ସାହେବ ଡାକୁଛନ୍ତି । ଲୋକଟି କହିଲା । ମୋତେ ! ମୋ ସ୍ୱର ମୋତେ ବି ଅସ୍ୱାଭାବିକ ଶୁଣାଗଲା । ଆଜ୍ଞା ହଜୁର !

ହଠାତ୍ ରାଜପ୍ରାସାଦ ଉପରକୁ ମୋର ଆଖି ଦୁଇଟା ପହଁରି ଗଲା ।

ଦୋତାଲା ଉପରେ ଜଣେ ବଳିଷ୍ଠ ଦୀପ୍ତିବାନ ପୁରୁଷ ଠିଆ ହୋଇ ତଳକୁ ମୋରିଆଡ଼େ ଚାହିଁଛନ୍ତି । ସ୍ୱୟଂ ରାଜା ସାହେବ ବୋଧହୁଏ ।

ମୁଁ କର୍ମଚାରୀଟି ସହିତ ଲେଉଟିଲି । ଏତେ ପ୍ରତ୍ୟୁଷରୁ ଯେ ରାଜାସାହେବ ଶଯ୍ୟା ତ୍ୟାଗ କରି ମୋର ଗତିବିଧି ଲକ୍ଷ୍ୟ କରୁଛନ୍ତି, ମୁଁ ମୋଟେ ଭାବି ପାରି ନଥିଲି । ମୁଁ ପିନ୍ଧିଥିଲି ଗୋଟାଏ ଲୁଜ୍ ପାଇଜାମା । ଅବଶ୍ୟ ବାହାରକୁ ଆସିଲାବେଳେ ହାଓ୍ୱାଇନ୍‌ଟା ଦେହରେ ଗଳେଇ ବାହାରି ଆସିଥିଲି । ମନ ଭିତରୁଟା କିପରି ମୋର ଶୀତେଇ ଉଠିଥିଲା । କିନ୍ତୁ ଦମ୍ଭ ଏତିକି ଥିଲା ଯେ, ପକେଟରେ ମୋର ଆଇଡେଣ୍ଟିଟି କାର୍ଡ଼ ଖଣ୍ଡିକ ରହିଥିଲା ।

ରାଜାସାହେବଙ୍କ ସହିତ ମୁଁ ବ୍ରେକ୍‌ଫାଷ୍ଟ ଟେବୁଲରେ ମିଳିତ ହେଲି । ଗୋଟିଏ ସୁନ୍ଦରୀ ତରୁଣୀ ଟି'ପଟରୁ ଚା' ଢାଳୁଥିଲା । ରାଜା ସାହେବ ବୋଧହୁଏ ମୋରି ପ୍ରତୀକ୍ଷାରେ ବସିଥିଲେ ।

ମୁଁ ଗୃହ ମଧ୍ୟରେ ପ୍ରବେଶ କରି ଯୋଡ଼ ହସ୍ତରେ ପ୍ରଣାମ ଜଣାଇଲି । ରାଜା ସାହେବଙ୍କ ବଳିଷ୍ଠ ମୁଖମଣ୍ଡଳର ପ୍ରଶସ୍ତ କପାଳର ରେଖାଗୁଡ଼ିକ କୁଞ୍ଚିତ ହୋଇ ଉଠିଲା । ତାଙ୍କ ଆଖି ଯୋଡ଼ାକରେ ଯେପରି ଏକ ତୀବ୍ର ଜ୍ୟୋତି ଝଲକୁ ଥିଲା । ମୁଁ ତାଙ୍କ ଆଖି ସହିତ ଆଖି ମିଳାଇ ପାରିଲି ନାହିଁ । ଚାହାଣୀ ମୋର ନତ ହୋଇଗଲା । ପାର୍ଶ୍ୱରେ ଦଣ୍ଡାୟମାନ ତରୁଣୀଟିକୁ ଇଙ୍ଗିତରେ ଅନ୍ୟତ୍ର ଯିବା ପାଇଁ କହି ରାଜାସାହେବ ମୋର

ଆପାଦ ମସ୍ତକ ନିରୀକ୍ଷଣ କରି ପଚାରିଲେ, ହୁ ଆର୍ ୟୁ ?

ତାଙ୍କ ଗମ୍ଭୀର କଣ୍ଠସ୍ୱର, ଯେପରି ସମଗ୍ର ଡାଇନିଂ ହଲ୍‌ଟାରେ ପ୍ରତିଧ୍ୱନିତ ହେବାକୁ ଲାଗିଲା ।

ମୁଁ ମୋର ପକେଟରୁ ଆଇଡେ଼ଣ୍ଟିଟି କାର୍ଡ଼ଟି ବାହାର କରି ରାଜାସାହେବଙ୍କ ଆଡ଼କୁ ବଢ଼ାଇ ଦେଲି ।

ସେ କାର୍ଡ଼ଟି ଉପରେ ଥରେ ଆଖି ବୁଲେଇ ନେଇ, ମୋତେ ଆହୁରି ଟିକିଏ ଉତ୍ତ୍ୟକ୍ତ ସ୍ୱରରେ କହିଲେ, ବଟ୍ ହ୍ୱାଏ । ମୁଁ ତମକୁ ଡାକି ନାହିଁ । ଉଇଦାଉଟ୍ ମାଇଁ ପରିମିସନ୍ ତୁମେ କାହିଁକି ରାଜବାଟୀରେ ପ୍ରବେଶ କଲ ?

ମୋର ଅନ୍ୟାୟ ହୋଇଛି ସାର୍ । ମୁଁ ବିନୀତ ସ୍ୱରରେ କହିଲି । କୌଣସି ଉଦ୍ଦେଶ୍ୟ ନେଇ ମୁଁ ଆପଣଙ୍କ ରାଜବାଟୀରେ ପ୍ରବେଶ କରି ନାହିଁ ।

ତା'ହେଲେ ? ରାଜା ସାହେବଙ୍କର ସେହି ଗୁରୁଗମ୍ଭୀର ସ୍ୱର ।

ଆସିଥିଲି ସୁନାଖାଲ ମହକୁମାରେ ଘଟିଥିବା ମର୍ଡ଼ର କେସ୍‌ର ତଦନ୍ତରେ । ଆପଣଙ୍କ ରାଜବାଟୀର ସୌନ୍ଦର୍ଯ୍ୟ ମୋତେ ଏଠାକୁ ଟାଣି ଆଣିଲା ।

କିନ୍ତୁ ତୁମେ ଇନଫର୍ମ କଲ ନାହିଁ କାହିଁକି ? ତା'ହେଲେ ରାଜ ଅତିଥିର ଗୌରବ ପାଇ ଥାଆନ୍ତି ।

ମୁଁ ଆଉ କୌଣସି ଉତ୍ତର ନ ଦେଇ ନୀରବରେ ଠିଆହୋଇ ରହିଲି । ଧୀରେ ଧୀରେ ରାଜାସାହେବଙ୍କ ମୁଖମଣ୍ଡଳରେ ପରିବର୍ତ୍ତନ ଲକ୍ଷ୍ୟ କଲି । ସେ ଆଇ଼ଡେ଼ଣ୍ଟିଟି କାର୍ଡ଼ଟି ମୋ ଆଡ଼କୁ ବଢ଼ାଇ ଦେଇ କହିଲେ, ଓଏଲ୍ ମାଇଁ ବୟ୍ । ତୁମେ ଏଇ ମୁହୂର୍ତ୍ତ ଠାରୁ ନନ୍ଦନ ଗଡ଼ର ଅତିଥି । ନନ୍ଦନ ଗଡ଼ର ସୌନ୍ଦର୍ଯ୍ୟ ତୁମକୁ ଆକର୍ଷଣ କରିଛି, ନା ? ଉତ୍ତମ । ତେଜ୍ ବାହାଦୂର ? ରାଜା ସାହେବ ଚିତ୍କାର କରି ଉଠିଲେ ।

ବାହାଦୂର ଆସି ଅଭିବାଦନ ଜଣାଇଲା । ରାଜା ସାହେବ ଆଦେଶ ଦେଲେ, ମୋତେ ନେଇ ଗେଷ୍ଟ ହାଉସ୍‌ରେ ଛାଡ଼ି ଆସିବା ପାଇଁ ଏବଂ ସେଠାରେ ମୋ ସ୍ୱାଚ୍ଛନ୍ଦ୍ୟର ସମସ୍ତ ପ୍ରକାର ବ୍ୟବସ୍ଥା କରି ଦେବା ପାଇଁ ।

ମୁଁ ରାଜା ସାହେବଙ୍କୁ ଅଭିନନ୍ଦନ ଜଣାଇ ଲେଉଟୁ ଥିଲି । ବାଟରେ ଯାହାଙ୍କ ସହିତ ଦେଖା ହେଲା, ସେ ବୋଧହୁଏ ନରେନ୍ଦ୍ରପୁରର ରାଜା ସାହେବ ହେବେ । ମୋ ଆଡ଼କୁ କିପରି ସନ୍ଦିଗ୍ଧ ଦୃଷ୍ଟିରେ ଚାହିଁ ତେଜ୍ ବାହାଦୂରର ମୁହଁକୁ ଅନାଇଲେ । ସେ ଅଭିବାଦନ ଜଣାଇ କହିଲା, ରାଜ ଅତିଥି ।

ନରେନ୍ଦ୍ରପୁରର ରାଜା ସାହେବ ଚାଲିଗଲେ । ଚାଲିରେ ଏକ ରାଜକୀୟ ଔଦ୍ଧତ୍ୟ ଫୁଟି ଉଠୁଥିଲା । ନନ୍ଦନଗଡ଼ର ରାଜା ସାହେବଙ୍କ ସମବୟସୀ ହେବେ ସେ । କିନ୍ତୁ ନନ୍ଦନଗଡ଼ର ରାଜା ସାହେବଙ୍କ ପରି ଏତେ ଦୀପ୍ତିବାନ ମନେ ହେଉ ନଥିଲେ ।

ମୁଁ ତେଜ୍ ବାହାଦୂରକୁ ଅନୁସରଣ କରୁଥିଲି । ତଳେ ପହଞ୍ଚି ପଚାରିଲି, ଗେଷ୍ଟ ହାଉସ୍ କେତେ ଦୂରରେ ?

ପ୍ରାୟ ଦୁଇ ତିନି ମାଇଲ ହେବ। ସେ ଉତ୍ତର ଦେଲା, ଆପଣଙ୍କର କିଛି କଷ୍ଟ ହେବ ନାହିଁ। ମୁଁ ଆପଣଙ୍କୁ ଗାଡ଼ିରେ ବସାଇ ନେଇ ଛାଡ଼ିଦେଇ ଆସିବି।

ଦୁଇ ତିନି ମାଇଲ। ଭାବିଥିଲି ଏଇ ରାଜବାଟୀ ସଂଲଗ୍ନ କୌଣସି ସ୍ଥାନରେ ଗେଷ୍ଟ ହାଉସ ହେବ ପରା। କିନ୍ତୁ ତେଜ ବାହାଦୂର ମୁହଁରୁ ଗେଷ୍ଟ ହାଉସ୍‌ର ଦୂରତା ଶୁଣି ମନଟା ମୋର ମଉଳି ପଡ଼ିଲା। ତା'ଛଡ଼ା ଉଦୟ ହୁଏତ ମୋତେ ଉଦ୍‌ବିଗ୍ନ ହୋଇ ଅପେକ୍ଷା କରିଥିବ। ମୋର ପୁଣି ଆଜି ଫେରିଯିବା କଥା।

ତେଜ ବାହାଦୂରକୁ ମୁଁ କହିଲି, ତମେ ଫେରିଯାଅ, ବର୍ତ୍ତମାନ ମୁଁ ରାଜା ସାହେବଙ୍କ ଗେଷ୍ଟ ହାଉସ୍‌କୁ ଯାଇ ପାରିବି ନାହିଁ। ମୋର ବନ୍ଧୁ ମୋତେ ଅପେକ୍ଷା କରିଥିବେ।

କିନ୍ତୁ ରାଜା ସାହେବଙ୍କ ହୁକୁମ, ମୁଁ ଅମାନ୍ୟ କରିବି କିପରି ?

ରାଜା ସାହେବ କିଛି ଜାଣିବେ ନାହିଁ ବାହାଦୂର। ମୁଁ ତାଙ୍କୁ କିଛି କହିବି ନାହିଁ। ବରଂ ଦିନେ ଦୁଇଦିନ ପରେ ତମ ସହିତ ଯାଇ ମୁଁ ଗେଷ୍ଟ ହାଉସରେ ରହିବି।

ବାହାଦୂର କିଛି ଜବାବ ଦେଲା ନାହିଁ। ରାଜଭବନ ପାର ହୋଇ ଆସି ମୋତେ ଅଭିବାଦନ ଜଣାଇ କହିଲା, ରାଜା ସାହେବ ଯେପରି କିଛି ନ ଜାଣନ୍ତି ହଜୁର, ତା' ନ ହେଲେ....

ମୁଁ ପ୍ରତ୍ୟଭିବାଦନ ଜଣାଇ ଲେଉଟି ଆସିଲି।

ମୁଁ ସେଦିନ ଫେରିଯିବି କି ନାହିଁ, ସେ ସମ୍ବନ୍ଧରେ ବସି ବହୁ ସମୟ ଚିନ୍ତା କଲି। ଶେଷରେ ମୋର ପିଓନ ହାତରେ ରିପୋର୍ଟ ଲେଖି ହେଡ୍‌କ୍ୱାର୍ଟରକୁ ପଠାଇ ଦେଇ, ଦୁଇ ଚାରିଦିନ ପରେ ଯିବାର ସିଦ୍ଧାନ୍ତ କଲି। ନିଶିଗନ୍ଧା ସମ୍ବନ୍ଧରେ ମୋ ମନ ଭିତରେ ଏକ ଅସମ୍ଭବ କୌତୁହଳ ଜନ୍ମିଥିଲା।

ସମସ୍ତ କାମଦାମ ଶେଷ କରି ଯେତେବେଳେ ମୁଁ ଟିକିଏ ନିଶ୍ଚିନ୍ତ ହୋଇ ନିଶିଗନ୍ଧା କଥା ଚିନ୍ତା କଲି, ସେତେବେଳକୁ ଦିନ ପ୍ରାୟ ଶେଷ ହୋଇ ଆସୁଥିଲା। ଉଦୟ ସେତେବେଳ ଯାଏ ଅଫିସରୁ ଫେରି ନଥିଲା। ମନହେଲା, ଆଉ ଥରେ ରାଜବାଟୀ ମଧ୍ୟରେ ପ୍ରବେଶ କଲେ ହୁଅନ୍ତା। ସଦାକତ୍ କଥା ମୋର ରହି ରହି ମନେ ପଡ଼ି ଯାଉଥିଲା। ତା' ମୁହଁରୁ ନିଶିଗନ୍ଧାର କାହାଣୀ ଶୁଣିବା ପାଇଁ ମୋ ମନରେ ଅଶେଷ ଆଗ୍ରହ ଦେଖା ଦେଇଥିଲା।

ଧୀରେ ଧୀରେ ମୁଁ ରାଜବାଟୀ ଅଭିମୁଖରେ ଗମନ କଲି। ଗେଟ୍ ପାର ହୋଇ ଭିତରେ ପ୍ରବେଶ କଲି। କିଛିଦୂର ଆଗେଇ ଯିବା ପରେ ତେଜ୍ ବାହାଦୂର ସହିତ ଭେଟ ହେଲା। ସେ କହିଲା, ରାଜା ସାହେବ ମୋତେ ଆପଣଙ୍କ କଥା ପଚାରୁଥିଲେ।

ମୋ କଥା ?

ହଁ ଆପଣଙ୍କ କଥା। ପଚାରୁଥିଲେ ଆପଣଙ୍କୁ ଗେଷ୍ଟ ହାଉସ୍ କିପରି ଲାଗିଲା। ସେଠାରେ ଆପଣଙ୍କୁ କୌଣସି ଅସୁବିଧା ହେଉଛି କି ନାହିଁ, ଏଇସବୁ କଥା।

ମୁଁ କହିଲି, ରାଜା ସାହେବଙ୍କ ସଂଗରେ ମୋର ଆଉ ଥରେ ଦେଖା ହେଲେ ମୁଁ

ତୁମର ଯଥେଷ୍ଟ ପ୍ରଶଂସା କରିବି ।

ତେଜ ବାହାଦୂର ଅଭିବାଦନ ଜଣାଇ ଚାଲି ଯାଉଥିଲା ।

ତାକୁ ପଛରୁ ଡାକିଲି । ପଚାରିଲି, ତୁମେ ଏଠାରେ କେତେ ବର୍ଷ ହେବ ଚାକିରି କରୁଛ ?

ବାହାଦୂର ଏକ ଅଦ୍ଭୁତ ଠାଣିରେ ଠିଆହୋଇ କହିଲା, ନନ୍ଦନଗଡ଼ର ରାଜବାଟୀର ଚାକିରି, ଆମର ବଂଶାନୁକ୍ରମିକ ହଜୁର । ଆମର କେଉଁ ପୁରୁଷ ଠାରୁ ଏଠାରେ ଚାକିରି ଆରମ୍ଭ ହୋଇଛି ମୋତେ ଜଣା ନାହିଁ ।

ଓଃ ବୁଝିଲି । ଆଚ୍ଛା ବାହାଦୂର ? ତମୁକୁ ତା'ହେଲେ ତ ରାଜ ପରିବାରର ବହୁ ତଥ୍ୟ ଜଣାଥିବ ।

ବାହାଦୂର ଅବଜ୍ଞାର ହସ ହସି କହିଲା, ଅଛି ହଜୁର୍ । କିନ୍ତୁ ସବୁ କଥା ସମସ୍ତଙ୍କ ଆଗରେ କହିବା କ'ଣ ଉଚିତ । ଆମେ ରାଜା ସାହେବଙ୍କର ଦାନା ଖାଉଚୁ, ବେଇମାନୀ କରିବୁ ନାହିଁ ।

ନା ନା ବାହାଦୂର ସେଗୁଡ଼ା ଆଦୌ ଠିକ୍ ନୁହେଁ । ମୁଁ କ'ଣ ପଚାରୁଥିଲି କି, ରାଜ ପରିବାରରେ ମୁଁ ତ କେବଳ ରାଜା ସାହେବଙ୍କୁ ଦେଖିଛି, କିନ୍ତୁ ଆଉ ତ କାହାରିକୁ ଦେଖୁ ନାହିଁ ?

ବାହାଦୂର ଗୋଟାଏ ଦୀର୍ଘଶ୍ୱାସ ତ୍ୟାଗ କରି କହିଲା, ଆଉ ଆପଣ କାହା କଥା କହୁଛନ୍ତି ?

ଏଇ ଧର ରାଣୀ ସାହେବା, ରାଜକୁମାର, ରାଜକୁମାରୀ ।

ରାଣୀସାହେବା ରୁହନ୍ତି ଅନ୍ଦରମହଲରେ । ରାଜାସାହେବଙ୍କର ସନ୍ତାନ ସନ୍ତତି କିଛି ନାହାନ୍ତି । ବାହାଦୂରର ସ୍ୱରରେ କିପରି ନୈରାଶ୍ୟ ଫୁଟି ଉଠିଥିଲା । ସେ ଆଉ ମୁହୂର୍ତ୍ତେ ଅପେକ୍ଷା ନ କରି ବାଟ ଭାଙ୍ଗି ଚାଲିଗଲା ।

ମୁଁ ତା'ର ଯିବା ପଥକୁ କିଛି ସମୟ ଅର୍ଥଶୂନ୍ୟ ଦୃଷ୍ଟିରେ ଅନାଇ ରହିଲି । ତା'ପରେ ପାଦ ଚଳାଇଲି ମହାନଦୀର ତଟଦେଶକୁ । ଯେଉଁଠି ସକାଳେ ସଦାକତ୍ ସହିତ ଭେଟ ହୋଇଥିଲା ।

ଏଥର ହୁଏତ ସଦାକତ୍‌ର ମୋ ସହିତ ଆଳାପ କରିବାରେ କୌଣସି ଆପତ୍ତି ରହିବ ନାହିଁ । ମୁଁ ରାଜ ଅତିଥି । ସଦାକତ୍ ନିଃସଂଶୟରେ ମୋ ସହିତ ଆଳାପ କରିପାରିବ ।

କିନ୍ତୁ, ସଦାକତ୍ କାହିଁ ? ଏଣେ ତେଣେ ଚାହିଁ, ଏ ପାଖ ସେ ପାଖ ଅନେଇ ସଦାକତ୍‌ର କୌଣସି ଚିହ୍ନବର୍ଣ୍ଣ ଦେଖିଲି ନାହିଁ । ମହାନଦୀର ତଟେ ତଟେ ଆଗେଇ ଚାଲିଲି ନିଘଞ୍ଚ ବଣବୁଦା ଆଡ଼େଇ ଆଡ଼େଇ ।

କିଛିଦୂର ଯିବା ପରେ କାହାର କ୍ରନ୍ଦନଧ୍ୱନି ଯେପରି ମୋ କାନରେ ବାଜିଲା । ମୁଁ ଠିଆ ହୋଇଗଲି । ହଁ କିଏ ଯେପରି ମୁହଁ ଚିପି ଚିପି କାନ୍ଦୁଛି । କିଏ ?

ମୁଁ ଖୁବ୍ ସନ୍ତର୍ପଣରେ ଆଗେଇ ଚାଲିଥିଲି । ଗୋଟାଏ ବୁଦା ଉହାଡ଼ରୁ ଦେଖାଗଲା

କାହାର କାକକୃଷ୍ଣ କେଶରାଶି । ପଦପାତର ମର୍ମ୍ମର ଧ୍ୱନିରେ ଯୁବତୀଟି ଉଠି ଠିଆହୋଇ ପଡ଼ିଲା । ଚଞ୍ଚଳତାର ତଡ଼ିତ୍ ଖେଳୁଛି ତା'ର ସମଗ୍ର ଅଙ୍ଗ ପ୍ରତ୍ୟଙ୍ଗରେ । ଅଳ୍ପ ଟିକିଏ ପଛକୁ ଚାହିଁ ଦେଇ ମୋ ଉପରେ ତା'ର ଚଞ୍ଚଳ ଚାହାଣୀ ଚାଳି ସେ ଯେପରି ବିଚଳିତ ହୋଇ ପଡ଼ିଲା ।

ମୁଁ ସ୍ତବ୍ଧ ହୋଇଗଲି ।

କିଏ ଏଇ ଯୁବତୀ ?

ଦିନ ଶେଷର ମଳିନ ଆଲୋକରେ ଯଦିଓ ଭଲ ଭାବରେ ଦେଖି ପାରିଲି ନାହିଁ ଯୁବତୀଟିକୁ ତଥାପି ମନେ ହେଲା, ସୌନ୍ଦର୍ଯ୍ୟର ଏକ ଅପରୂପ ପ୍ରତିମୂର୍ତ୍ତି ଏଇ ଯୁବତୀଟି । ହୁଏତ ରାଜ ପରିବାରର କୌଣସି ପରିଜନ ହେବ ।

ମୋ ଚିନ୍ତା ସ୍ରୋତ ଛିନ୍ନ କରି ଯୁବତୀଟି ମୁହୂର୍ତ୍ତକ ମଧ୍ୟରେ ଅଦୃଶ୍ୟ ହୋଇଗଲା । ବଣବୁଦାର ଜଟିଳତା ଭିତରକୁ ପଶିବାର ସାହସ ଆଉ ମୋର ହେଲା ନାହିଁ । ମହାନଦୀ କୂଳେ କୂଳେ ମୁଁ ଯେତେ ଉତ୍ତର ଦିଗକୁ ଯାଉଥିଲି, ମୋର ମନେ ହେଉଥିଲା, ଉଦ୍ୟାନ ଶେଷ ହୋଇ ଅରଣ୍ୟ ଆରମ୍ଭ ହୋଇ ଯାଇଛି ।

କିନ୍ତୁ ସଦାକତ୍ ଗଲା କେଉଁଆଡ଼େ ?

ସେ କ'ଣ ଏଇ ନିଘଞ୍ଚ ଜଙ୍ଗଲ ମଧ୍ୟରେ ରୁହେ ?

ଯୁବତୀଟି ସମ୍ବନ୍ଧରେ ମୋ ମନ ଭିତରେ ଏକ ଝାପ୍‌ସା ରେଖା ଟାଣି ହୋଇ ଯାଇଥିଲା । ନିଶିଗନ୍ଧ ତେବେ କ'ଣ ଏକ ରକ୍ତ ମାଂସର ଶରୀରଧାରିଣୀ ?

ରାଜବାଟୀର ପ୍ରଧାନ ଉଦ୍ୟାନ ଛାଡ଼ି ମହାନଦୀ କୂଳେ କୂଳେ ଉତ୍ତରମୁଖା ହୋଇ ମୁଁ ଅନେକ ବାଟ ଆଗେଇ ଯାଇଥିଲି । ଆଉ ଆଗେଇବା ଉଚିତ ନୁହେଁ, ମନେ ମନେ ଚିନ୍ତା କରି ଅଟକି ଗଲି । ଏଥର ପାଦ ପଛକୁ ଫେରାଇବାକୁ ହେବ । ସଦାକତ୍ ସହିତ ବରଂ ଦେଖା ନ ହେଲା ନାହିଁ, ଅପରିଚିତ ଜାଗାରେ ଏତେ ବଡ଼ ଗୋଟାଏ ରିସ୍କ ନେବା ଉଚିତ ହେବ ନାହିଁ ।

ଧୀରେ ଧୀରେ ରାଜ ଉଦ୍ୟାନ ଆଡ଼କୁ ପାଦ ଲେଉଟାଇଲି । ମନରେ କିନ୍ତୁ ଦୁର୍ଭାବନା ବଢ଼ି ଯାଇଥିଲା । ନନ୍ଦନଗଡ଼ର ରାଜବାଟୀ ମୋ ଆଖି ଆଗରେ ଏକ ରହସ୍ୟର ପିରାମିଡ଼ ପରି ମନେ ହେଉଥିଲା ।

ମହାନଦୀ ତଟରେ ଠିଆହୋଇ ଅପର ପାର୍ଶ୍ୱକୁ ଚାହିଁଲି । ନରେନ୍ଦ୍ରପୁରର ରାଜପ୍ରାସାଦ ମଳିନ ଦିଶୁଚି । ମହାନଦୀ ବକ୍ଷରେ ଦୁଇ ତିନିଟା ପାଲଟଣା ନୌକା ଛୁଟିଚି ।

ଏଥର ଲେଉଟିବାକୁ ହେବ ।

ରାଜା ସାହେବଙ୍କ ସହିତ ଦେଖା କଲେ କିପରି ହୁଅନ୍ତା ?

ରାଜପ୍ରାସାଦର ପ୍ରଧାନ ଦ୍ୱାରଦେଶରେ ଆଲୋକ ଜଳିଥିଲା । ମୁଁ ଠିଆହୋଇ ଉପରକୁ ଚାହିଁଲି । ସକାଳ ପରି ରାଜା ସାହେବ ଦୋତାଲାରେ ମୋ ପାଇଁ ପ୍ରତୀକ୍ଷା କରି ଠିଆ ହୋଇ ନାହାନ୍ତି ।

ଜଣେ ରାଜ କର୍ମଚାରୀ ମୋତେ ପଚାରିଲା, ହଜୁର୍ କାହାକୁ ଖୋଜୁଛନ୍ତି ?

ରାଜ ସାହେବଙ୍କ ସହିତ ଦେଖା ହେବ ନାହିଁ ? ମୁଁ ପଚାରିଲି ।

ରାଜ କର୍ମଚାରୀଟି ଅବଜ୍ଞାର ହସ ହସି କହିଲା, ହଜୁର୍ ବୋଧହୁଏ ନନ୍ଦନଗଡ଼କୁ ନୂଆ ଆସିଛନ୍ତି ।

କାହିଁକି ?

ତା' ନ ହେଲେ ଜାଣି ଥାଆନ୍ତେ ସୂର୍ଯ୍ୟାସ୍ତ ପରେ ରାଜା ସାହେବଙ୍କ ଦର୍ଶନ ମିଳେ ନାହିଁ ।

ରାଜ କର୍ମଚାରୀଟି ଚାଲିଗଲା । ମୁଁ ତା'ରି ଯିବା ପଥକୁ ଚାହିଁ ଠିଆ ହୋଇଥିଲି ।

ରାଜପ୍ରାସାଦ ଉପରେ ଦିନାନ୍ତର ଧୂସର ଛାୟା ନଇଁ ଆସୁଥିଲା । ମୁଁ ଆଶାହତ ହୋଇ ଲେଉଟି ଆସୁଥିଲି । ରାଜପ୍ରାସାଦର ବାହାରକୁ ଆସି ଉଦାସ ଭାବରେ ଠିଆହୋଇ ଚିନ୍ତା କରୁଥିଲି, ମୋର ଏଠାରେ ଏକ ଅବାଞ୍ଛିତ ଭୂମିକା ମାତ୍ର । ମନସ୍ତାପ ଭିତରେ ଏକ ଅହେତୁକ କାରଣ ପଛରେ ଧାଇଁ ଲାଭ କ'ଣ ?

ଫେରି ଯାଉଥିଲି ଉଦୟ ବସା ଆଡ଼କୁ ।

ହଜୁର୍.......

ପଛକୁ ଚାହିଁ ଦେଖିଲି, ମୋ ପଛରେ ତେଜ୍ ବାହାଦୂର । ଅଳ୍ପ ହସି କହିଲା, ରାଜା ସାହେବ ଆପଣଙ୍କ କଥା ପଚାରୁଥିଲେ ।

ମୋ କଥା ?

ହଁ ପଚାରୁଥିଲେ ଗେଷ୍ଟ ହାଉସ୍ ହଜୁର୍‌ଙ୍କୁ ଭଲ ଲାଗୁଛି କି ନାହିଁ । ହଜୁର୍ ସେଠାରେ କୌଣସି ଅସୁବିଧା ଅନୁଭବ କରୁଛନ୍ତି କି ନାହିଁ ।

ତମେ କ'ଣ ଉତ୍ତର ଦେଲ ?

ବାହାଦୂର ଅଳ୍ପ ହସି କହିଲା, ମୁଁ କହିଲି ଆପଣ ଭଲ ଅଛନ୍ତି । କିନ୍ତୁ ହଜୁର୍ କ'ଣ ରାତିରେ ବି ଗେଷ୍ଟ ହାଉସ୍‌କୁ ଯିବେ ନାହିଁ ?

ନା, ମୁଁ ମୋ ବନ୍ଧୁଙ୍କ ଘରେ ରହିବି ।

କିନ୍ତୁ....ତେଜ୍ ବାହାଦୂର ହାତ ଦୁଇଟା ମଳିବାରେ ଲାଗିଲା ।

କ'ଣ ହେଲା ତମର ପଚାରିଲି ।

ରାତିରେ କିନ୍ତୁ ଆପଣଙ୍କୁ ଗେଷ୍ଟ ହାଉସ୍‌କୁ ଫେରି ଯିବାକୁ ହେବ । ବାହାଦୂରର ଗଳାରେ କିପରି ଦୃଢ଼ତା ଫୁଟି ଉଠୁଥିଲା ।

କାହିଁକି ? ମୁଁ ପଚାରିଲି ।

ନନ୍ଦନଗଡ଼ର ସେହିପରି ନିୟମ ଆଜ୍ଞା । କେହି ରାଜ ଅତିଥି ରାତିରେ ଗେଷ୍ଟ୍ ହାଉସ୍‌କୁ ନ ଲେଉଟିଲେ, ନନ୍ଦନଗଡ଼ର ଶତ୍ରୁ ରୂପେ ତାଙ୍କୁ ଧରି ନିଆ ହୁଏ । ଏ ନିୟମ ନନ୍ଦନଗଡ଼ର ବହୁ ପ୍ରାଚୀନ । ତେଣୁ ଆପଣ ଇଚ୍ଛା କରି ରାଜ ଶତ୍ରୁ ହୁଅନ୍ତୁ ନାହିଁ । ଆପଣଙ୍କର ମଙ୍ଗଳ ହେବ ନାହିଁ ।

ତେଜ୍ ବାହାଦୂର ମୁହଁକୁ ମୁଁ ସ୍ତବ୍ଧ ହୋଇ ଅନାଇ ରହିଲି । କିଛି ସମୟ ପରେ କହିଲି, କିନ୍ତୁ ମୋର ବନ୍ଧୁଙ୍କୁ ମୁଁ କିଛି କହି ନାହିଁ ଯେ । ସେ ମୋତେ ଖୋଜିବେ, ମୋ ପାଇଁ ଚିନ୍ତା କରିବେ ।

ଆପଣ ବରଂ କହି ଆସନ୍ତୁ, ମୁଁ ଏଠାରେ ଅପେକ୍ଷା କରୁଛି ।

ମୁଁ ବଡ଼ ଦୁର୍ଭାବନାରେ ପଡ଼ିଗଲି । ରାଜବାଟୀ ଠାରୁ ଦୁଇ ତିନି ମାଇଲ ଦୂରରେ ରହି ମୋର ଲାଭ କ'ଣ ହେବ ?

ବାହାଦୂର କହିଲା, ହଜୁର୍ ଡେରି ହେଉଛି । ମୋର ଆଜି ଗେଷ୍ଟ ହାଉସ୍‌ରେ ଡିଉଟି । ଶୀଘ୍ର ଯାଇ ପହଞ୍ଚିବାକୁ ହେବ ।

ଗେଷ୍ଟ୍ ହାଉସ୍‌ରେ କ'ଣ ଆଉ କୌଣସି ରାଜ ଅତିଥି ଅଛନ୍ତି ? ମୁଁ ପଚାରିଲି ।

କହି ପାରିବି ନାହିଁ ହଜୁର୍ । ମୁଁ ଅନେକ ଦିନ ହେବ ସେ ଆଡ଼େ ଯାଇ ନାହିଁ ।

ଶେଷରେ ମୁଁ ସିଦ୍ଧାନ୍ତ କଲି ବାହାଦୂରର ଯଦି ଏତେ ଜିଦ୍ଦି, ଆଜି ରାତିଟା ଯାଇ ଅତିଥିଶାଳାରେ କଟେଇ ଦେବି । କାଲି ସକାଳୁ ଚାଲି ଯାଉଛି କହି, ଲୁଚି ଲୁଚି ନିଶିଗନ୍ଧାର ସନ୍ଧାନ କରିବି ।

ଉଦୟ ବସାକୁ ଯାଇ ତାକୁ ସବୁ କଥା ବୁଝାଇ ଫେରି ଆସିଲି । ବାହାଦୂର ମୋ ପାଇଁ ଗାଡ଼ି ଆଣି ଅପେକ୍ଷା କରିଥିଲା ।

ମୁଁ ପହଞ୍ଚିବା ମାତ୍ରେ ବାହାଦୂର ଗାଡ଼ିର ଦରଜା ଖୋଲି ଦେଲା । କହିଲା, ଆପଣ ମୋଟେ ଚିନ୍ତା କରନ୍ତୁ ନାହିଁ ହଜୁର୍ । ସେଠାରେ ଆପଣଙ୍କର କୌଣସି ଅସୁବିଧା ହେବ ନାହିଁ । ରାଜ ସାହେବ ତାଙ୍କ ଅତିଥିମାନଙ୍କୁ ସୁଖ ସୁବିଧାରେ ରଖିବାପାଇଁ ସବୁ ପ୍ରକାର ବ୍ୟବସ୍ଥା କରିଛନ୍ତି । ଆପଣ ଦିନଟିଏ ରହିଲେ ଆଉ ଛାଡ଼ି ଯିବାକୁ ଇଚ୍ଛା କରିବେ ନାହିଁ ।

ମୁଁ ନୀରବରେ ବସିଥିଲି । ଚକୋଲେଟ୍ ରଙ୍ଗର ଫିଆଟ୍ କାର୍ ଖଣ୍ଡିକ ଆଗେଇ ଚାଲିଥିଲା । ଦୁଇ ପାଖରେ ସମସ୍ତ ଦୃଶ୍ୟ ଝାପ୍‌ସା ଦେଖାଯାଉ ଥିଲା । ମନ ଭିତରେ କେଜାଣି କାହିଁକି ରହି ରହି କିପରି ଏକ ଅଶ୍ୱସ୍ତି ଭରି ଆସୁଥିଲା ।

ବାହାଦୂର କହିଲା, ହଜୁର୍‌ଙ୍କର ରାଜା ସାହେବଙ୍କ ପାଖରେ କି କାମ ଅଛି ? କିଛି ବେପାର ବଣିଜ ସଂପର୍କରେ.....

ବାହାଦୂର କଥା ଅସମାପ୍ତ କରି ନୀରବ ହୋଇଗଲା ସତ, ମାତ୍ର ମୋତେ ଯେପରି ଏକ କ୍ଲୁ ଧରାଇ ଦେଲା । ରାଜା ସାହେବଙ୍କ ଅତିଥିଶାଳାରେ ଯେଉଁମାନେ ରୁହନ୍ତି, ସେମାନେ ତା'ହେଲେ କୌଣସି ବିଶେଷ ଉଦ୍ଦେଶ୍ୟ ଘେନି ଆସି ଥାଆନ୍ତି ?

ବାହାଦୂର ମୋ ଚିନ୍ତିତ ମୁଖମଣ୍ଡଳ ଆଡ଼େ ଅନାଇ ଥିଲା । ମୁଁ ଟିକିଏ ହସିବାକୁ ଚେଷ୍ଟା କରି କହିଲି, ମୁଁ କେବଳ ତମ ନନ୍ଦନଗଡ଼କୁ ବୁଲି ଦେଖିବାକୁ ଆସିଚି ବାହାଦୂର । ମୋର କୌଣସି ଉଦ୍ଦେଶ୍ୟ ନାହିଁ । ରାଜା ସାହେବଙ୍କ ନିକଟରୁ କିଛି ପାଇବାର ଆଶା ରଖି ଆସି ନାହିଁ ।

ଆଉ କିଛି କଥା ନାହିଁ । ନୀରବତା ଭିତରେ ଗାଡ଼ି ଯାଇ ଗେଷ୍ଟ ହାଉସ୍ ଦୁଆରେ

ଭିଡ଼ିଲା । ସଂଗେ ସଂଗେ ଗେଷ୍ଟ ହାଉସ୍‌ର ଦୁଇଜଣ କର୍ମଚାରୀ ଆସି ଗାଡ଼ିର ଦୁଇ ପାଖରୁ ଦରଜା ଖୋଲି ଦେଲେ, ଅଭିବାଦନ ଜଣାଇଲେ । ମୁଁ ଗାଡ଼ିରୁ ଓହ୍ଲାଇ ଏକ ଆଲୋକିତ, ସୁନ୍ଦର ଦି'ମହଲା କୋଠା ଦେଖିଲି । ଆଗରେ ବିରାଟ ଲନ୍ । ଲୁହା ଦରଜାଟା ଖୋଲାଥିଲା । ବାହାଦୂର କହିଲା, ଚାଲନ୍ତୁ ହଜୁର୍ । ଏଇଟା ରାଜା ସାହେବଙ୍କ ଗେଷ୍ଟ ହାଉସ୍ । ଆପଣଙ୍କର ତିଳେ ମାତ୍ର ଅସୁବିଧା ହେବ ନାହିଁ ।

ମୁଁ ବୁଝିପାରୁ ନଥିଲି, ବାହାଦୂର କାହିଁକି ମୋ ସୁବିଧା ପ୍ରତି ଏତେ ଦୃଷ୍ଟି ଦେଉଥିଲା । ମୋ ସହିତ ତା'ର ଭେଟ ହେବା ପରେ ଠାରୁ ସେ ମୋତେ ଖାଲି କହୁଚି, ଗେଷ୍ଟ ହାଉସ୍‌ରେ ଆପଣଙ୍କର କୌଣସି ଅସୁବିଧା ହେବ ନାହିଁ । ଯା'ହେଉ ମୁଁ ଆଗେଇଲି ।

ନାଲି କଂକ୍ରିଟ୍‌ର ସରୁ ରାସ୍ତାଟି ଉପରେ ମୋ ପାଦଶବ୍ଦ ଅଭିନବ ଶୁଣା ଯାଉଥିଲା । ମୁଁ ଗେଷ୍ଟ୍ ହାଉସ୍‌ର ଦୁଆର ଡେଇଁ ଭିତରେ ପ୍ରବେଶ କଲି । ବାହାଦୂର ମୋତେ ଦୋତାଲାକୁ ଉଠିବା ପାଇଁ କହିଲା । ମୁଁ ସେତେବେଳ ପର୍ଯ୍ୟନ୍ତ ଗେଷ୍ଟ ହାଉସ୍‌ରେ ଆଉ କାହାରିକୁ ଦେଖି ନଥିଲି ।

ସୁନ୍ଦର ମୋଜାଇକ୍ କରା ଚଟାଣ ଝଲମଲ କରୁଥିଲା । ମୋ ପାଇଁ ପୂର୍ବରୁ ବୋଧହୁଏ ଗୋଟିଏ ଘର ଉଦ୍ଦିଷ୍ଟ ହୋଇଥିଲା । ଦରଜା ଖୋଲାଥିଲା । ବାହାଦୂର ଦେଖେଇ ଦେଲା ରୁମ୍‌ଟା । ଭିତରେ ପ୍ରବେଶ କରି, ଚାରିଆଡ଼କୁ ଚାହିଁ ଖୁସି ହୋଇଗଲି । ଗୋଟାଏ ବିରାଟ ଘର । ଘରଟି ଭିତରେ ବହୁ ଆସବାବପତ୍ର । ସବୁ ଗୁଡ଼ିକ ଚକ୍ ଚକ୍, ଝକ୍ ଝକ୍ । ସିଲିଂରେ ଫ୍ୟାନ୍ ଘୁରୁଚି । ଆଲୋକ ସଜ୍ଜାର ପରିପାଟୀ ଅପୂର୍ବ । କାନ୍ଥରେ ବିରାଟ ବିରାଟ ଅଇନା ଝୁଲୁଚି । ଚେଆର, ଟେବୁଲ, ସୋଫା ସବୁ ଗୁଡ଼ିକରେ କିପରି ଆର୍ଟିଷ୍ଟିକ୍ ଟଚ୍ ଲାଗିଛି । ସବୁଆଡୁ ଆଖି ବୁଲାଇ ଆଣି ବାହାଦୂର ମୁହଁକୁ ଅନାଇଲି । ପରିପୂର୍ଣ୍ଣ ଆନନ୍ଦରେ ସେ ମୋ କାର୍ଯ୍ୟକଳାପ ଲକ୍ଷ୍ୟ କରୁଚି । ପଚାରିଲି, ତା'ପରେ ?

ସେ ହସି ହସି କହିଲା, ପସନ୍ଦ ହୋଇଛି ? ମୁଁ କହିଥିଲି ନା, ଆପଣଙ୍କର କୌଣସି ଅସୁବିଧା ହେବ ନାହିଁ ।

ମୁଁ ଗୋଟିଏ ସୋଫା ଉପରେ ବସିଲି । ଡାନ୍‌ଲୋପିଲୋର ଆରାମ ଅନୁଭବ କଲି । କାନ୍ଥ ଅଇନା ଆଡ଼େ ଯେତେବେଳେ ଚାହିଁ ଦେଉଥିଲି, ମୋର ମନେ ହେଉଥିଲା, ଏସବୁ ବୈଭବ ଭିତରେ ବାସ କରିବା ପାଇଁ ମୁଁ ଯେପରି ଉପଯୁକ୍ତ ନୁହେଁ ।

ବାହାଦୂର୍ କହିଲା, ମୁଁ ତଳକୁ ଯାଉଛି ହଜୁର । ରାତିରେ କ'ଣ ଖାଇବେ, ପୁଝାରୀକୁ କହିଦେବେ । ଆପଣଙ୍କର ଯେଉଁ ଧରଣର ଖାଦ୍ୟ ଆବଶ୍ୟକ, ସେହି ଧରଣର ଖାଦ୍ୟ ପାଇବେ । ରାଜାସାହେବ ସେ ଦିଗରୁ ଖୁବ୍ ଉଦାର ।

ବାହାଦୂର୍ ବାହାରିଗଲା । ଗୋଡ଼ ହାତ ଲମ୍ୱେଇ ସୋଫା ଉପରେ ମୁଁ ଟିକିଏ ଆରାମରେ ବସିଲି । ରାଜାସାହେବଙ୍କ ରୁଚିକୁ ଓ ସହୃଦୟତାକୁ ମନେ ମନେ ପ୍ରଶଂସା କରୁଥିଲି । ରାଜ୍ୟ, ସିଂହାସନ ଆଜି ସବୁ ହରେଇବି ଏମାନଙ୍କର ହୃଦୟ ବଦଳି ନାହିଁ ।

ମୁଣ୍ଡ ଉପରେ ଫ୍ୟାନ୍‌ଟା ଫୁଲ ସ୍ପିଡ଼୍‌ରେ ଚାଲୁଥିଲା । ଆଖି ଟିକିଏ ମୋର ଲାଗି

ଆସୁଥିଲା । କିପରି ଏକ ମଧୁ କଣ୍ଠର ଝଙ୍କାରରେ ମୁଁ ଆଖି ଖୋଲିଲି । ମୋ ଆଖି ଆଗରେ ଠିଆ ହୋଇଚି ଏକ ଅପରୂପ ସୁନ୍ଦରୀ । ହାତରେ ଟ୍ରେ' । ଆଦେଶକୁ ପ୍ରତୀକ୍ଷା କରିଚି ଯେପରି ।

ମୁଁ ଟିକିଏ ଚଞ୍ଚଳ ହୋଇ ଉଠିଲି । ହାସ୍ୟ, ଲାସ୍ୟ, ଭଙ୍ଗୀ, ଆର୍ଟିଷ୍ଟିକ୍, ରୋମାଣ୍ଟିକ୍ ମଧ୍ୟ । ପରିଧାନରେ ସେଲଓ୍ୟାର ପଞ୍ଜାବୀ ଆଉ ଉତ୍ତରୀୟ । ମୁଁ ଚାହିଁଥିଲି, ଚାହିଁ ରହିଥିଲି ଅନେକ ବେଳଯାଏ । ତରୁଣୀଟୀ ବାଁ ହାତ ଚକି ଉପରେ ଟ୍ରେ'ଟି ଧରି ଠିଆ ହୋଇଥିଲା । ଭ୍ରୁରୁ ଯୋଡ଼ିକ ରହି ରହି ନାଚି ଉଠୁଥିଲା ।

ଉଠି ବସିଲା । ତା' ହାତରୁ ଟ୍ରେ'ଟି ଧରିବାକୁ ଯାଉଥିଲି । ସେ ହସିଲା, ଆଉ ଦୂରେଇ ଗଲା । ନିଜ ହାତରେ ଟ୍ରେ'ଟି ଟି'ପୟ ଉପରେ ରଖି ନୀରବରେ ଠିଆ ହେଲା ।

ଆହୁରି କିଛି ସମୟ ମୁଁ ତା' ମୁହଁକୁ ଚାହିଁବା ପରେ ସେ କହିଲା, ଚା, ନା କଫି ?

କ'ଣ ଆଣିଛ ?

ଦୁଇଟି । ଆପଣ କ'ଣ ଭଲ ପାଆନ୍ତି ?

ଚା' ।

ନୀରବରେ ସେ ଚା' ସରଞ୍ଜାମ ସଜାଡ଼ିବାକୁ ଲାଗିଲା ।

ଚିନି ?

ଦୁଇ ଚାମଚ ।

ଚା' କପ୍‌ଟି ମୋ ଆଗରେ ଥୋଇଦେଇ କହିଲା, ଆପଣଙ୍କ ରାତ୍ରି ଭୋଜନର ଦାୟିତ୍ୱ ମୋ'ଉପରେ । କ'ଣ ଖାଇବେ କହିଲେ, ସେଇ ଅନୁସାରେ ରନ୍ଧା ହେବ ।

ମୁଁ ଖାଲି ତରୁଣୀଟିକୁ ମନେ ମନେ ତୁଳନା କରୁଥିଲି, କାହା ସହିତ ? ନା ନା, ଆଜିଯାଏ ଏପରି ତରୁଣୀଟିଏ ମୋ ଆଖିରେ ପଡ଼ି ନାହିଁ ତ ! ତେବେ ? ପଚାରିଲି, ତୁମ ନାମ କ'ଣ ?

ହସିଲା । କହିଲା, ଜାଣି କିଛି ଲାଭ ନାହିଁ । ଆଉ କେବେ ହୁଏତ ଦେଖା ହେବ ନାହିଁ ।

ତଥାପି, ତୁମକୁ ମୁଁ କ'ଣ ଡାକିବି ?

ଦରକାର ବା କ'ଣ ? ଏଇନେ ଚା' ଯେମିତି ପିଆଇ ଗଲି । ରାତିରେ ଭାତ ସେମିତି ଖୁଆଇଯିବି, ତା'ପରେ....

ଦିଆଲ ଘଡ଼ିରେ ସାତଟା ବାଜିଲା ।

ତରୁଣୀଟି ଘଡ଼ିଆଡ଼େ ଚାହିଁ ବ୍ୟସ୍ତ ବିବ୍ରତ ହେଲା ପରି କହିଲା, କୁହନ୍ତୁ ସାର୍, ଆପଣଙ୍କ ରାତ୍ରି ଭୋଜନର ତାଲିକଟା ମୋତେ କୁହନ୍ତୁ ।

କିନ୍ତୁ ତମେ ଏପରି ବିଚଳିତ ହେଉଚ କାହିଁକି ?

ଆପଣ ବୁଝି ପାରିବେ ନାହିଁ । ଏଠାରେ ସବୁ ରାଜସିକ କାରବାର । ମୋତେ ଏଇ ମୁହୂର୍ତ୍ତରେ ଏଠାରୁ ଚାଲି ଯିବାକୁ ହେବ ।

ତମର ଇଚ୍ଛା । ଯାହା ଇଚ୍ଛା ହେବ ଖୁଆଇ ଦେବ ।

ତରୁଣୀଟି ମୁହଁରେ କିପରି ଆଶଂକାର ଚିହ୍ନ ଫୁଟି ଉଠିଥିଲା । ମୋ ଉତ୍ତର ପାଇବା ସଂଗେ ସଂଗେ ସେ କକ୍ଷ ତ୍ୟାଗ କରି ଚାଲିଗଲା । ଏକ ମୃଦୁ ଗନ୍ଧ ଭରି ଉଠିଥିଲା କକ୍ଷଟିର ପବନ ସାଥିରେ ।

ଦ୍ୱାରଟି ସଂପୂର୍ଣ୍ଣ ରୂପେ ବନ୍ଦ ହେବା ଯାଏ ସେଇଆଡ଼େ ମୁଁ ଚାହିଁ ରହିଥିଲି । ତା'ପରେ ଚା' ପିଆଲା ଉପରେ ଦୃଷ୍ଟି ନିବଦ୍ଧ କଲି, ଧୂଆଁ ଉଠୁଛି ।

ତରୁଣୀଟିର ଆଚରଣ ବି ମୋତେ କିପରି ଧୂଆଁଳିଆ ମନେ ହେଉଥିଲା ।

ଚା' କପ୍‌ଟି ଶେଷ କରିବା ପାଇଁ ମୋତେ ପ୍ରାୟ ଅଧଘଣ୍ଟା ଲାଗି ଯାଇଥିଲା । କେତେ ପ୍ରକାର ଭାବନା ଭିତରେ ଚା'ର ଅସଲ ସ୍ୱାଦ ମୁଁ ଅନୁଭବ କରିପାରି ନଥିଲି । ଖାଲି ଭାବନାର ଫାଙ୍କ ଫାଙ୍କରେ ଢୋକେ ଢୋକେ ପିଇ ଦେଉଥିଲି ଯାହା ।

ନନ୍ଦନଗଡ଼ର ଗେଷ୍ଟ ହାଉସ୍ ଏଇଟା । ମୁଁ ଉଠି ଠିଆ ହୋଇଥିଲି, ଆଉ ଚିନ୍ତା କରୁଥିଲି । କ'ଣ କିଛି ଅଲୌକିକ ଘଟଣାର ସଂଧାନ କରିବାକୁ ଏଠାକୁ ମୁଁ ଆସିଛି ? ନା ତ ! ତେବେ ?

ସୁନ୍ଦର ସଜ୍ଜିତ କକ୍ଷ । ଏହି କୋଠାଟାରେ ଏପରି ଆହୁରି କେତୋଟି କକ୍ଷ ଥିବ । ପ୍ରତିଟି କକ୍ଷର ହୁଏତ ମୋ ପରି ରାଜ ଅତିଥିମାନେ ସୁଖରେ ବିଶ୍ରାମ କରୁଥିବେ । ପ୍ରତିଟି କକ୍ଷରେ ହୁଏତ ଏହି ତରୁଣୀଟି ପ୍ରବେଶ କରୁଥିବ କିମ୍ବା ଏହାରି ପରି ଆଉ କେତୋଟି ଥିବେ, ଯେଉଁମାନେ କି ରାଜ-ଅତିଥିମାନଙ୍କର ପରିଚର୍ଯ୍ୟା କରୁଥିବେ । ଏଥିରେ ଅସ୍ୱାଭାବିକତା କ'ଣ ଅଛି ?

ମୁଁ ଘରର ଦ୍ୱାର ଖୋଲିଲି । ବାହାରେ ଟିକିଏ ବୁଲିଆସି, ଜଣେ ଅଧେ ବନ୍ଧୁ ସଂଗ୍ରହ କରି ନ ପାରିଲେ, ସମୟଗୁଡ଼ାକ ବଡ଼ ଭାରି ଭାରି ହୋଇ ଉଠିବ । କାମ ତ ମୋର ଏଠାରେ ନୁହେଁ, ରାଜପ୍ରାସାଦରେ ।

ବାହାରକୁ ବାହାରିଲି । ଦୋତାଲାରେ ଏହିପରି ଆହୁରି ତିନୋଟି ରୁମ୍ ଅଛି । ଦୁଇଟି ବାହାରୁ ତାଲା ପଡ଼ିଛି, ଅନ୍ୟଟି ଭିତରୁ ବନ୍ଦ ।

ହୁଏତ ମୋରି ପରି କେହି ଜଣେ ରାଜ-ଅତିଥି ରହିଛନ୍ତି ଏହି କକ୍ଷରେ । ଡାକିଲେ ହୁଅନ୍ତା ନାହିଁ ?

ମୁଁ ଦରଜାରେ କରାଘାତ କରିବାକୁ ଯାଉଥିଲି, କିନ୍ତୁ ଭିତରୁ ଏକ ହାସ୍ୟରୋଳ ଭାସି ଆସି ମୋତେ ସ୍ଥିର କରାଇଦେଲା । ହାସ୍ୟରୋଳ ସ୍ତ୍ରୀ ଓ ପୁରୁଷ ଉଭୟଙ୍କର ।

ଆହୁରି କିଛି ସମୟ ସ୍ଥିର ହୋଇ ଠିଆ ହୋଇ ରହିଲି । ମଝିରେ ମଝିରେ କେବଳ ହାସ୍ୟରୋଳ ଛଡ଼ା କୌଣସି କଥାବାର୍ତ୍ତା ଶୁଣି ପାରୁ ନଥିଲି । ହୁଏତ ଏକ ନବଦମ୍ପତ୍ତି ହେବେ, ଅଥବା....

କ'ଣ ମିଳିବ ଆଗକୁ ଆଉ ଚିନ୍ତାକରି । ମୁଁ ଫେରି ଆସିଲି । ତଳକୁ ଯାଇ କେଉଁମାନେ ଅଛନ୍ତି ଥରେ ଦେଖି ଆସିଲେ ହେବ । ଆଉ କେହି ଥାଆନ୍ତୁ ନ ଥାଆନ୍ତୁ

ତେଜ୍ ବାହାଦୂର ତ ଥିବ !

ଏହିପରି ଚିନ୍ତାକରି ଆଗଉଥିଲି । ହଠାତ୍ ପଛରୁ ଏକ ନାରୀ କଣ୍ଠର ଚିତ୍କାର ଆସି ମୋ କାନରେ ବାଜିଲା । ମୁଁ ଚଞ୍ଚଳ ହୋଇ ଉଠି ପଛକୁ ଚାହିଁଲି । ପୁଣି ଶୁଣିଲି ଯନ୍ତ୍ରଣା କାତର ଏକ ନାରୀ କଣ୍ଠସ୍ୱର । କେଉଁଠି ? ଲେଉଟି ଆସିଲି । କିଛିକ୍ଷଣ ଆଗରୁ ଯେଉଁ କକ୍ଷରେ ହାସ୍ୟରୋଳର ଧ୍ୱନି ଭାସି ଆସୁଥିଲା, ଏଇ ମୁହୂର୍ତ୍ତକ ମଧ୍ୟରେ ସେଇ ଘରୁ ଯନ୍ତ୍ରଣା କାତର କଣ୍ଠସ୍ୱର । ଦରଜା ପାଖକୁ ଗଲି । ହଁ ସେଇ କକ୍ଷ ଭିତରୁ, ଧୀରେ ଧୀରେ ନରମି ଆସୁଚି । ଘଟଣା କ'ଣ ? ଆଉ ନୀରବରେ ଠିଆହୋଇ ପାରିଲି ନାହିଁ । ଦରଜାରେ କରାଘାତ କଲି । ଯୋରରେ, ଆହୁରି ଯୋରରେ ।

ବହୁ ସମୟ ପର୍ଯ୍ୟନ୍ତ ଭିତରୁ କୌଣସି ଉତ୍ତର ପାଇଲି ନାହିଁ । ଯନ୍ତ୍ରଣାକାତର ନାରୀ କଣ୍ଠର ସ୍ୱର ଆଉ ଶୁଭୁ ନଥିଲା । ମୁଁ ଭୀଷଣ ଚିନ୍ତିତ ହୋଇ ପଡ଼ିଲି । ଏ କ୍ଷେତ୍ରରେ ମୋର କ'ଣ କୌଣସି କର୍ତ୍ତବ୍ୟ ନାହିଁ ? ଭିତରେ ଯଦି....

ଭିତରୁ କବାଟରେ 'ଠକ୍' କରି ଶବ୍ଦ ହେଲା । ମୁଁ ସଚେତ ହୋଇ ଠିଆ ହେଲି । ଧୀରେ କବାଟଟା ମୁକୁଳା ହୋଇଗଲା । ଭିତରୁ ଜଣେ ସୁଦର୍ଶନ ଯୁବକ ବାହାରି ଆସିଲେ । ପ୍ୟାଣ୍ଟ, କୋଟ ଓ ହ୍ୟାଟରେ ତାଙ୍କର ସର୍ବାଙ୍ଗ ଆବୃତ୍ତ ହୋଇଥିଲା । ସେ ଯେପରି ମୋତେ ଦେଖି ନାହାନ୍ତି, ଘର ଭିତରେ ଯେପରି କିଛି ଘଟି ନାହିଁ, ସେହିପରି ଭଙ୍ଗୀରେ ଦରଜାଟା ବନ୍ଦ କରି, ପକେଟରୁ ଚାବି ବାହାର କରି ଦୁଆର ବନ୍ଦକଲେ । ଚାବିଟା ଉପରକୁ ଫିଙ୍ଗି ମୁଠାରେ ଧରୁ ଧରୁ ସେ ଆଗେଇ ଯାଉଥିଲେ । ମୁଁ ତାଙ୍କ ପଛରେ ଠିଆ ହୋଇଥିଲି, ନୀରବ ଦର୍ଶକ ପରି । ବେଶ୍ ତ ! ଏ କ୍ଷେତ୍ରରେ ମୋର ନୀରବ ଦର୍ଶକ ହୋଇ ଠିଆହୋଇ ରହିବା କ'ଣ ଉଚିତ ହେବ ।

ଯୁବକଟି ପଛେ ପଛେ ମୁଁ ଆଗେଇ ଯାଇ ଡାକିଲି, ଟିକିଏ ଶୁଣିବେ କି ?

ଯୁବକଟି ଠିଆ ହୋଇଗଲା ଏବଂ ମୋ ମୁହଁକୁ କିଛି ସମୟ ସ୍ଥିର ହୋଇ ଅନାଇ ରହି, ଧୀରେ ଧୀରେ ଆଗେଇ ଆସିଲା । ନୀରବତା ଭଙ୍ଗକରି ଶାନ୍ତ ସ୍ୱରରେ କହିଲା, ମୋତେ ଡାକୁଥିଲେ ?

ମୁଁ ମୁଣ୍ଡ ହଲାଇ ସମ୍ମତି ଜଣାଇଲି ।

କାହିଁକି ଡାକିଲେ ? ଯୁବକଟି ସହଜ ସ୍ୱରରେ ପଚାରିଲା ।

ଆପଣଙ୍କ ସ୍ତ୍ରୀ, ମାନେ....ମୁଁ କ'ଣ ପଚାରିବାକୁ ଯାଇ ଯେପରି କଥାର ଖିଅ ହରାଇ ପକାଇଲି ।

ମୋର ସ୍ତ୍ରୀ ? କ'ଣ ଆପଣ କହିବାକୁ ଚାହାନ୍ତି ମିଷ୍ଟର । ମୁଣ୍ଡର ନଟ୍ ବୋଲ୍ଟ କିଛି ଢିଲା ହୋଇ ଯାଇଛି କି ? ହାତର ଇଙ୍ଗିତରେ ମୁଣ୍ଡକୁ ଦେଖାଇ ଲୋକଟି କହିଲା ।

ଆଇ ମିନ୍, ଟିକିଏ ଛେପ ଢୋକି ମୁଁ କହିଲି, ଆପଣଙ୍କ ଘରେ କିଛି ସମୟ ଆଗରୁ ନାରୀ କଣ୍ଠର ଏକ କରୁଣ ବିଳାପ ମୁଁ ଯେପରି ଶୁଣିଲି । ସେଇଥିପାଇଁ ପଚାରୁଥିଲି....

ଲୋକଟାର ଚାହାଣି ମୋ ମୁହଁ ଉପରେ ଏତେ ତୀବ୍ର ବେଗରେ ଘୂରୁଥିଲା ଯେ,

ମୁଁ ଚୁପ୍ ରହିଗଲି । ସେ ଆଉ ଦି'ପାଦ ମୋ ଆଡ଼କୁ ଉହୁଙ୍କି ଆସି ଉତ୍ତପ୍ତ ସ୍ୱରରେ କହିଲା, ଆପଣ ମୋତେ ଚିହ୍ନିଛନ୍ତି ମିଷ୍ଟର ? ମୁଁ ରାୟ ବାହାଦୂର ଧର୍ମାନନ୍ଦ ରାଜ ଗୁରୁଙ୍କର ଏକମାତ୍ର ଉତ୍ତରାଧିକାରୀ । ମୋ ନାଁ ରାଧିକା ମୋହନ ରାଜଗୁରୁ । ଆପଣ ଗେଷ୍ଟ୍ ହାଉସ୍‌କୁ ନୂଆ ଆସିଛନ୍ତି ବୋଧେ ।

ମୁଁ କେବଳ ଆଶ୍ଚର୍ଯ୍ୟ ହୋଇ ଲୋକଟା ମୁହଁକୁ ଅନାଇଲି । ସେ ତା' ହାତରେ ଧରିଥିବା ଚାବିଟି ମୋ ଉପର୍‌କୁ ଫିଙ୍ଗିଦେଇ ଦ୍ରୁତ ଗତିରେ ଶିଡ଼ିର ପାହାଚ ଅତିକ୍ରମ କରିବାକୁ ଲାଗିଲା ।

ଚାବିଟା ତଳୁ ଗୋଟାଇ ଆଣିଲି । ସେଇଟା ତା' ରୁମ୍‌ର ଚାବି । ହୁଏତ ତା' କାର୍ଯ୍ୟକଳାପକୁ ସନ୍ଦେହ କରିଥିବାରୁ ମୋତେ ସେ ଚାବିଟି ଦେଇଗଲା ତା' କକ୍ଷଟି ଅନୁସନ୍ଧାନ କରି ଦେଖିବା ପାଇଁ । କିନ୍ତୁ ଏହାଛଡ଼ା ଲୋକଟାର ଅନ୍ୟ କୌଣସି ଉଦ୍ଦେଶ୍ୟ ନାହିଁ ତ ? ହୁଏତ କକ୍ଷ ଭିତରେ ସେ କୌଣସି ଏକ ତରୁଣୀକୁ ମର୍ଡ୍‌ର କରି ବନ୍ଦ କରି ଦେଇ ବାହାରି ଯାଉଥିଲା । ମୋତେ ସାମନାରେ ପାଇ ଓ ମୁଁ ତାକୁ ସନ୍ଦେହ କରୁଥିବାରୁ ରୁମ୍‌ର ଚାବିଟି ମୋ ଉପରକୁ ଫିଙ୍ଗିଦେଇ ଯାଇଛି । ହୁଏତ ମୋର ବିଶ୍ୱାସ ଭାଜନ ହେବାପାଇଁ । କିନ୍ତୁ ମୁଁ ଦରଜା ଖୋଲି ଭିତର ପଶିବା କ'ଣ ଉଚିତ ହେବ ? ଯଦି ସେଇ ଅବସ୍ଥାରେ ପୋଲିସ୍ ଆସି ମୋତେ ଘଟଣା ସ୍ଥଳରେ ଦେଖେ ? ତା'ଛଡ଼ା ଆଉ ଗୋଟାଏ ଉପାୟ କଲେ ଭଲ ହେବ । ତେଜ୍‌ବାହାଦୂରକୁ ସଙ୍ଗରେ ଆଣି, ଘରଟା ଖୋଲି ଅନ୍ତତଃ ଥରେ ଦେଖିବା ଉଚିତ୍ । ମୁଁ ମୋ ନିଜ କାନରେ ଏକ ନାରୀ କଣ୍ଠର କରୁଣ ବିଳାପ ଶୁଣିଚି ଯେତେବେଳେ ଅବିଶ୍ୱାସ କରିବି କାହାକୁ ?

ଆଉ ସମୟ ନଷ୍ଟ ନକରି ଧାଇଁଗଲି ତଳକୁ । ତେଜ୍ ବାହାଦୂରକୁ ଖୋଜିବା ପାଇଁ ।

କିନ୍ତୁ କାହିଁ ତେଜ୍ ବାହାଦୂର ? ଗେଟ୍‌ର ଦରଓ୍ୱାନ୍ କହିଲା, ସେ କିଛି ସମୟ ହେଲା ଗେଷ୍ଟ୍ ହାଉସ୍‌ର ବାହାରକୁ ବାହାରି ଯାଇଛି । ତାହେଲେ ? ଏ କ୍ଷେତ୍ରରେ ଆଉ ଜଣକର ସାହାଯ୍ୟ ଲୋଡ଼ିବା ଏକାନ୍ତ ଆବଶ୍ୟକ, କିନ୍ତୁ କିଏ ମୋତେ ସାହାଯ୍ୟ୍ କରିବ ?

ଅନ୍ୟ ଯେଉଁ ଦୁଇ ଚାରିଜଣଙ୍କ ମୁହଁ ମୋତେ ଦିଶିଲା, ସମସ୍ତେ ଅପରିଚିତ, ତା'ଛଡ଼ା ନିମ୍ନ ଶ୍ରେଣୀର କର୍ମଚାରୀ ପରି ମନେ ହେଲା । ମୁଁ ଲେଉଟି ଆସିଲି । ମନେ ମନେ ସ୍ଥିର କଲି ନିଜେ ଯାଇ ଘର ଖୋଲି ଦେଖିବି । ହୁଏତ ଘର ଭିତରେ କୌଣସି ତରୁଣୀ ପାଣି ଟୋପାଏ ପାଇଁ ବିକଳ ହେଉଥିବ । ଯଦି ମୁଁ ତା' ପ୍ରାଣ ରକ୍ଷା କରିପାରେ....

ସ୍ଥିର ସିଦ୍ଧାନ୍ତ କରି ମୁଁ ଛୁଟିଲି ଉପରକୁ । କପାଳରେ ଯାହାଥିବ । କିନ୍ତୁ...ମୁଁ ନିଶ୍ଚଳ ଭାବରେ ଠିଆହୋଇ ରହିଲି ମୁହୂର୍ତ୍ତେ । ସେଇ ଅପରୂପା ତରୁଣୀଟି ରାଧିକାମୋହନ ରାଜଗୁରୁର ଦରଜାଟି ବନ୍ଦ କରୁଛି । ମୋତେ ଦେଖି ମୃଦୁ ହସି ପଚାରିଲା, ଆପଣଙ୍କ ରାତ୍ରି ଭୋଜନଟା କ'ଣ ବର୍ତ୍ତମାନ ଦେଇଯିବି ?

ମୁଁ ସମ୍ମୋହିତ ହେଲା ପରି ଯୁବତୀଟି ଆଡ଼କୁ ଆଗେଇ ଗଲି । ରୁମ୍‌ର ଚାବି ସେ

ବନ୍ଦ କରି ସାରିଥିଲା । ମୁଁ ଚାବିଟାକୁ ଏକ ଧ୍ୟାନରେ ଚାହିଁଥିବାର ଦେଖି ସେ କହିଲା, ପ୍ରତ୍ୟେକ ରୁମ୍‌ରେ ଦୁଇଟିଲେଖା ଚାବିର ବ୍ୟବସ୍ଥା ଅଛି । ଗୋଟିଏ ଅତିଥିଙ୍କ ପାଖରେ ଥାଏ ଆଉ ଗୋଟିଏ ଆମ ପାଖରେ । ମୁଁ ରାଜ ଗୁରୁଗଙ୍କର ରାତ୍ରି ଭୋଜନ ରଖି ଆସିଲି ।

କିନ୍ତୁ...ହୁଏତ ମୋ ବିସ୍ଫାରିତ ଚାହାଣୀ ଆଡ଼େ ଚାହିଁ ସେ ଆଶ୍ଚର୍ଯ୍ୟ ହୋଇ ପଚାରିଲା, କ'ଣ ହୋଇଛି ?

ତମେ ଚାବି ଖୋଲି ସେ ଘର ଭିତରେ କିଛି ଦେଖିଲ ନାହିଁ ?

କ'ଣ ?

ମୃତ ଦେହ !

ମୃତ ଦେହ ? କାହାର ? ତରୁଣୀଟି ଯେପରି ବିଚଳିତ ହୋଇ ଭୟରେ ମୋ ଆଡ଼କୁ ଘୁଞ୍ଚି ଆସିଲା ।

ମୁଁ କହିଲି, ରାଜଗୁରୁ ଏହି ଘର ଭିତରେ କୌଣସି ସ୍ତ୍ରୀ ଲୋକ ଉପରେ କିଛି ସମୟ ପୂର୍ବରୁ ଭୀଷଣ ଅତ୍ୟାଚାର କରୁଥିଲେ, ମୋର ମନେହୁଏ ସେ ହୁଏତ ମର୍ଡ଼ର କରିଛନ୍ତି ।

ଏଁ...ଆପଣ କ'ଣ କହୁଛନ୍ତି ? ତରୁଣୀଟିର ମୁହଁ ଭୟରେ ରକ୍ତ ଶୂନ୍ୟ ହୋଇ ଆସିଲା ପରି ମନେ ହେଉଥିଲା । ମୁଁ ମୋ ପକେଟରୁ ଚାବି ବାହାର କରି ଦରଜାଟା ଖୋଲିବାକୁ ଉଦ୍ୟମ କରିବାରୁ ତରୁଣୀଟି ମୋ ହାତଟାକୁ ଜାବୁଡ଼ି ଧରି କହିଲା, ଥାଉ । ଆପଣ ବରଂ ଦରବାନ୍‌କୁ ଖବର ଦିଅନ୍ତୁ ।

ତୁମେ ଘର ଭିତରେ ଅସ୍ୱାଭାବିକ କିଛି ଦେଖିନାହିଁ ? ମୁଁ ପଚାରିଲି ।

ନା, ତେବେ ମୁଁ ତାଙ୍କ ଶୋଇବା ଘର ଆଡ଼େ ଯାଇ ନାହିଁ, ସେଠାରେ ଯଦି...ତରୁଣୀଟି ନୀରବ ରହିଲା । ମୁଁ ଦରଜା ଖୋଲି ସାରିଥିଲି । ଦୁଇ ପାହୁଣ୍ଡ-ଭିତରକୁ ଆଗେଇ ଯାଇଥିଲି । ତରୁଣୀଟି ଶଙ୍କିତ ନୟନରେ ମୋ ଆଡ଼େ ଚାହିଁଥିଲା ।

ଆସ, ଡରିବାର କ'ଣ ଅଛି ? ମୁଁ ତାକୁ ଡାକିଲି ।

ତରୁଣୀଟି ଡରି ଡରି ପାଦ ଚିପି ଚିପି ମୋତେ ଅନୁସରଣ କଲା । ପ୍ରଥମେ ଡ୍ରଇଁ ରୁମ୍ । ପରିଷ୍କାର ପରିଚ୍ଛନ୍ନ, ସବୁ ଟିପ୍ ଟପ୍ । ଶୋଇବା ଘରର ଦରଜାଟି ଆଉଜା ହୋଇଥିଲା, ଖୋଲିବି କି ନାହିଁ ? ହୁଏତ ଦରଜାଟା ଖୋଲି ଦେବା ମାତ୍ରେ ଘର ଭିତରେ ଏକ ନିଷ୍ଠୁର ମୃତ୍ୟୁର ଦର୍ଶନ ପାଇବି । ଦରଜାରେ ହାତ ଦେଲି । ତରୁଣୀଟି ଶଙ୍କିତ ଚାହାଣୀରେ ମୋର କାର୍ଯ୍ୟକଳାପ ଲକ୍ଷ୍ୟ କରୁଥିଲା ।

ଏହି ସମୟରେ ଦରଜାଟି ଖୋଲିଗଲା । ଏକ ବିରାଟ ପଲଙ୍କ ଉପରେ କିଏ ଯେପରି ଏକ ଦାମୀ ଚଦର ଘୋଡ଼େଇ ହୋଇ ଶୋଇଚି । ଛାତିଟା ମୋର ଥରି ଉଠିଲା । ଅନୁମାନ ମିଥ୍ୟା ହୋଇନି । ନିଶ୍ଚିନ୍ତ ମୃତ୍ୟୁର ପ୍ରତିମୂର୍ତ୍ତି ରହିଛି ସେଇ ଚାଦର ତଳେ । ଅନେକ ଡେରି ହୋଇଗଲା । ଜାଣି ଜାଣି ମୁଁ ହୁଏତ ଗୋଟିଏ ସୁନ୍ଦର ଜୀବନକୁ ମୃତ୍ୟୁ

ମୁଖକୁ ଠେଲି ଦେଲି । ଯଦି ଆଗରୁ ଟିକିଏ ଚେଷ୍ଟା କରି ଥାଆନ୍ତି, ଯେତେବେଳେ ଏହି ତରୁଣୀଟି ଆକୁଳ କ୍ରନ୍ଦନ କରୁଥିଲା, ସେତିକିବେଳେ ଯଦି ମୁଁ ଚିତ୍କାର କରି ଲୋକ ଡାକି ଜମେଇ ଥାଆନ୍ତି, ତା'ହେଲେ ହୁଏତ ରାଧିକାମୋହନ ରାଜଗୁରୁ ଏହିପରି ଏକ ସୁନ୍ଦର ଜୀବନ ନଷ୍ଟ କରିବାର ସୁଯୋଗ ପାଇ ନ ଥାନ୍ତା ।

ବର୍ତ୍ତମାନ ଆଉ ପ୍ରଳାପ କରି କ'ଣ ହେବ ? ପଲଙ୍କ ଉପରେ ମୃତ ଦେହଟିର ସ୍ୱରୂପ ଦେଖିବା ପାଇଁ ମୁଁ ବ୍ୟସ୍ତ ହୋଇ ପଡ଼ିଲି । କିନ୍ତୁ ଏକ ଅଯାଚିତ ଭୟ ସବୁବେଳେ ମୋ ପାଦ ଦୁଇଟାକୁ ଯାବୁଡ଼ି ଧରିଥିଲା । ଆଉ କେଇଟା କଦମ ଆଗେଇ ଯାଇ ପାରିଲେ ମୋ ଇଚ୍ଛା ପୂର୍ଣ୍ଣ ହୋଇ ପାରନ୍ତା, ମାତ୍ର ସେତକ ମୁଁ ପାରୁ ନଥିଲି । ମୋ ପାଦ ଦୁଇଟାକୁ କିଏ ଯେପରି ଯାବୁଡ଼ି ଧରିଥିଲା ।

ପଛରୁ କାହାର ପାଦଶବ୍ଦ ଶୁଣି ବୁଲି ଅନେଇଲି । ରାଧିକା ମୋହନ ରାଜଗୁରୁ ଫେରି ଆସୁଚି । ମୁହୂର୍ତ୍ତଟା ମୋତେ ନିତାନ୍ତ ଅସ୍ୱାଭାବିକ ମନେ ହେଲା । ସେ ଶଙ୍କିତା ତରୁଣୀଟି ଆଡ଼େ ଚାହିଁ କହିଲା, ତୁମେ ବି ଏଇ ପାଗଳଟା ସହିତ ବାଇ ହେଇଚ ହେମାଙ୍ଗିନୀ ?

ରାଧିକା ମୋହନ ଆଉ କୌଣସି ଦ୍ୱିତୀୟ କଥା ନ କହି ସିଧା ସଳଖ ଘର ଭିତରକୁ ପଶିଗଲା । ଯେଉଁ ପଲଙ୍କ ଉପରେ ମୃତ୍ୟୁର ଏକ ପ୍ରତିମୂର୍ତ୍ତି ମୁଁ କଳ୍ପନା କରୁଥିଲି, ସେଇ ପଲଙ୍କ ଉପରେ ଯାଇ ରାଜଗୁରୁ ବସିଲା, ଆଉ ଧୀରେ ଧୀରେ ଦାମୀ ଚଦରଟି ଉଠାଇ ସେ ଆମ ଦୁଇଜଣଙ୍କୁ ବୋକା ବନେଇ ଛାଡ଼ି ଦେଲା, ଆମେ ଯାହାକୁ ଗୋଟାଏ ମୃତ ଦେହ ବୋଲି କଳ୍ପନା କରୁଥିଲୁ, ତାହା କେବଳ ଗୋଟାଏ ଲମ୍ବା ତକିଆ ।

ହେମାଙ୍ଗିନୀ ମୋ ଆଡ଼କୁ ଏପରି ଚାହାଣୀରେ ଚାହିଁଲା, ପ୍ରକୃତରେ ମୁଁ ଲାଜରେ ଷଢ଼ି ଯାଇଥିଲି ।

ଆଉ ମୁହୂର୍ତ୍ତେ ଡେରି ନ କରି ରାଜଗୁରୁ କକ୍ଷରୁ କ୍ଷିପ୍ର ଗତିରେ ବାହାରି ଚାଲିଗଲି । ପଛରୁ କେବଳ ଗୋଟାଏ ହାସ୍ୟ ଧ୍ୱନି ମୋ କାନରେ ବାଜୁଥିଲା, ସେ ବିଦ୍ରୂପର ହେଉ ବା ତାଚ୍ଛଲ୍ୟର ହେଉ । କିନ୍ତୁ ରାଜଗୁରୁ ମୋତେ ହେମାଙ୍ଗିନୀ ଆଗରେ ଯେଉଁପରି ଭାବରେ ବୋକା ବନେଇ ଅପମାନିତ କରି ଛାଡ଼ିଦେଲା, ବାସ୍ତବିକ ଲଜ୍ଜାରେ ମୋ ମୁଣ୍ଡ ତଳକୁ ନଇଁ ପଡ଼ିଲା ।

କିନ୍ତୁ କିପରି ଏହା ସମ୍ଭବ ହେଲା ?

ମୋ ନିଜ କାନକୁ ତେବେ କ'ଣ ମୁଁ ବିଶ୍ୱାସ କରି ନ ଥାନ୍ତି ?

ମୋ ରୁମ୍‌ର କବାଟ ଖୋଲି ଗୋଟିଏ ସୋଫା ଉପରେ ଯାଇ ଶୋଇ ପଡ଼ିଲି ।

ଯେତେବେଳେ ମୋ ନିଦ ଭାଙ୍ଗିଲା, ସେତେବେଳକୁ ରାତି ଅନେକ ହେଇ ଯାଇଚି । ଅଳ୍ପ ଦୂରରେ ମୋର ରାତ୍ରି ଭୋଜନ ଘୋଡ଼ାହୋଇ ରଖା ହୋଇଛି । ନିଦରୁ ଉଠି ପ୍ରଥମେ ମୁଁ ଟିକିଏ ବିବ୍ରତ ହୋଇ ପଡ଼ିଥିଲି, କିନ୍ତୁ ଧୀରେ ଧୀରେ ସବୁକଥା ମୋର ମନେ ପଡ଼ିଲା । ହେମାଙ୍ଗିନୀ ରାତ୍ରି ଭୋଜନ କରିବାପାଇଁ ମୋତେ ବହୁ ଅନୁନୟ କରି ଡାକିଥିଲା, କିନ୍ତୁ ମୁଁ ଉଠି ନଥିଲି । ଟେବୁଲ ଉପରେ ସେଇଠି ଘୋଡ଼େଇ ରଖିଦେଇ ଯିବା ପାଇଁ କହିଥିଲି ।

ଏହା ଭିତରେ ଭୋକ ବି ମୋତେ ଲାଗି ଯାଇଥିଲା । ନିହାତ୍ ଭୋଜନଟା ଶେଷ କରିବାକୁ ହେବ, ସ୍ଥିର କରି ବାଥରୁମ୍ ଭିତରକୁ ଗଲି ମୁହଁ ହାତ ଧୋଇ ଆସିବା ପାଇଁ ।

ବାଥରୁମ୍ ଭିତରେ ଗୋଟାଏ ପାଇପ୍‌ରୁ ଟିପ୍ ଟିପ୍ ହୋଇ ପାଣି ପଡୁଥିଲା । ରାତ୍ରିର ନିସ୍ତବ୍ଧତା ଭିତରେ ସେଇ ଶବ୍ଦଟା କିପରି ଭୟଙ୍କର ଶୁଣା ଯାଉଥିଲା । ମୁଁ ବାଥ୍‌ରୁମ୍‌ର ଦରଜା ଖୋଲିଦେବା ମାତ୍ରକେ ପ୍ରଥମେ ଚମକି ପଡ଼ିଲି । ମନଟା ମୋର ବୋଧହୁଏ ଖୁବ୍ ଦୁର୍ବଳ ହୋଇ ଯାଇଥିଲା ।

ଯା'ହେଉ ଖାଇବାକୁ ଆରମ୍ଭ କରିଦେଲି । ବାହାରେ ସାଇଁ ସାଇଁ ନିଶା ଗର୍ଜୁଥିଲା । ଗେଷ୍ଟ ହାଉସ୍‌ର ଦକ୍ଷିଣ ପଟକୁ ଗୋଟାଏ ପ୍ରକାଣ୍ଡ ଜଙ୍ଗଲ ଥିଲା । ତା'ରି ଭିତରୁ ନିଶାଚର ପଶୁମାନଙ୍କର ଚିତ୍କାର ରହି ରହି ଆସି ମୋ କାନରେ ବାଜୁଥିଲା । ମୁଁ ଏକ ପ୍ରକାର ନାକ କାନ ବନ୍ଦ କରି ଖାଇ ଚାଲିଥିଲି ।

ଯେତେବେଳେ ମୋର ଖାଇବା ଶେଷ ହେଲା, ଆଉ ମୁଁ ମୁହଁ ହାତ ଧୋଇ ଆସି, ଦୁଧ ଗ୍ଲାସକ ପିଇ ସାରି ଗୋଟିଏ ସିଗାରେଟରେ ଅଗ୍ନି ସଂଯୋଗ କରି ସୋଫାଟି ଉପରେ ବସି ପଡ଼ିଲି, ଠିକ୍ ସେଇ ମୁହୂର୍ତ୍ତରେ ମୋ କାନରେ ଏକ ଭୟାର୍ତ୍ତ ସ୍ୱର ଆସି ବାଜିଲା । ସଂଗେ ସଂଗେ ଉଠି ଠିଆ ହୋଇ ପଡ଼ିଲି । ପୁଣି ଥରେ ଶୁଣିଲି । ସଂଧ୍ୟାବେଳେ ରାଜଗୁରୁଙ୍କ ରୁମ୍‌ରେ ଶୁଣିଥିବା ନାରୀ କଣ୍ଠର କରୁଣ ବିଳାପ ପରି, ହୁବହୁ ସମାନ । ଏଥର କିନ୍ତୁ ଶୁଣା ଯାଉଛି ଗେଷ୍ଟ ହାଉସର ଦକ୍ଷିଣ ପାର୍ଶ୍ୱରେ ଥିବା ସେହି ଜଙ୍ଗଲଟା ଭିତରୁ ।

ମୁଁ ଧୀରେ ଗୋଟିଏ ଝରକା ଖୋଲି ବାହାରକୁ ଚାହିଁଲି । ଜହ୍ନରାତି । ଛାଇ ଛାଇକା ଅନ୍ଧାର ଆଲୁଅ ଭିତରେ ଜଙ୍ଗଲଟାର ବହୁ ଅଂଶ ଦେଖା ଯାଉଛି ।

ମୁଁ ଦେଖିଲି, ଝାପ୍‌ସା ଦୁଇଟି ମଣିଷ ମୂର୍ତ୍ତି । ଗୋଟିଏ ନାରୀ, ଅନ୍ୟଟି ପୁରୁଷ । ଗୋଟାଏ ଗଛ ମୂଳେ ପୁରୁଷ ମୂର୍ତ୍ତିଟା ଯେପରି ହାତରେ ଏକ ଚାବୁକ୍ ଧରି ନାରୀ ମୂର୍ତ୍ତିଟାକୁ ପ୍ରହାର କରୁଛି । ପୁଣି ସେ କରୁଣ ଚିତ୍କାର ଆସି ମୋ କାନରେ ବାଜିଲା । ବଡ଼ ବିଚିତ୍ର ଏ ପରିବେଶ ! ମୁଁ କିଂକର୍ତ୍ତବ୍ୟବିମୂଢ଼ ହୋଇ ପଡ଼ିଲି ।

ଏତେ ରାତିରେ, ଖାଲି ହାତରେ ଏହି ଭୟଙ୍କର ଜଙ୍ଗଲ ଭିତରକୁ ବାହାରି ପଡ଼ିବା ମୋର କ'ଣ ଉଚିତ ହେବ ? ତଥାପି ମୁଁ ଘରୁ ପଦାକୁ ବାହାରିଲି । ଭାବିଲି ଏ କ୍ଷେତ୍ରରେ ରାଜଗୁରୁର ସାହାଯ୍ୟ ଲୋଡ଼ିଲେ କିପରି ହୁଅନ୍ତା ? ମୋ ଅଜାଣତରେ ମୁଁ ଯାଇ ରାଜଗୁରୁର

ଦରଜା ପାଖରେ ଠିଆ ହୋଇ ଯାଇଥିଲି । ଭିତରେ ନୀରବତାର ରାଜତ୍ୱ ! କବାଟର ହାତମାରି ଥରେ ଦୁଇ ଥର ଡାକିଲି । କେହି ଶୁଣିଲେ ନାହିଁ । ଥାଉ, ଏତେ ରାତିରେ କୌଣସି ଭଦ୍ରଲୋକଙ୍କୁ ବିରକ୍ତ କରି ଲାଭ ନାହିଁ ।

ଧୀରେ ଧୀରେ ତଳକୁ ଓହ୍ଲେଇ ଗଲି । ଠିକ୍ ଶିଡ଼ି ମୁଣ୍ଡରେ ଶୋଇଛି ତେଜ୍‌ବାହାଦୂର । ମୋ ମନରେ ବଳ ଫେରି ଆସିଲା । ଡାକିଲି ତାକୁ । ତେଜ ବାହାଦୂର ଆଖି ମଳି ମଳି ଉଠିଲା । ମୋତେ ଚାହିଁ କହିଲା, ଡରିଲେ ଆପଣ ?

ନା ବାହାଦୂର, ମୁଁ ଡରିନାହିଁ । ତୁମେ ଟିକେ ମୋ ସାଥୀରେ ମୋ ରୁମ୍‌କୁ ଆସ । ତମକୁ ଗୋଟାଏ ଘଟଣା ଦେଖେଇବି ।

ତେଜ୍ ବାହାଦୂର ଅନିଚ୍ଛା ସହକାରେ ଉଠି ମୋ ସହିତ ଉପରକୁ ଆସିଲା । ମୁଁ ରୁମ୍ ଭିତରକୁ ଡାକି ନେଇ ଯାଇ ଦକ୍ଷିଣପାର୍ଶ୍ୱ ଝରକା ପାଖକୁ ଯାଉ ଯାଉ ଶୁଣିଲି, ଏକ ମଧୁ କଣ୍ଠର ସଂଗୀତ । ବାହାଦୂର ଶୁଣି ନ ଶୁଣିଲା ପରି କହିଲା, ଏଇ ସଂଗୀତ କଥା ମୋତେ କହୁଚନ୍ତି ? ଏହି ସାତବାଟିଆ ଜଙ୍ଗଲରେ ନିତି ରାତିରେ ଏହିପରି ଗୀତ ଶୁଭେ । ବେଳେ ବେଳେ ହସ କାନ୍ଦରେ ଭରି ଉଠେ ସାତବାଟିଆର ଗଛ ଲତା । ଆପଣ ସେଗୁଡ଼ା ଆଡ଼େ କାନ ଦେବେ ନାହିଁ ।

କିନ୍ତୁ ବାହାଦୂର, ମୁଁ ଯେ ନିଜ ଆଖିରେ ଦେଖିଲି ।

କ'ଣ ଦେଖିଲେ ?

ଜଣେ ନାରୀ ଆଉ ଜଣେ ପୁରୁଷ ।

ଏଇ ଯୋଉ ସଂଗୀତ ଶୁଣୁଛନ୍ତି ତାକୁ ଜଣେ ରକ୍ତ ମାଂସର ଦେହଧାରିଣୀ ଗାଏ ବୋଲି ଆପଣଙ୍କ ପରି ଜଣେ ରାଜ ଅତିଥି କହିଲେ । ସେ ତାକୁ ଧରିବା ପାଇଁ ଏକ ନିଶାର୍ଦ୍ଧରେ ଛୁଟି ଯାଇଥିଲେ, ଆଉ ଫେରି ନାହାନ୍ତି । ତା' ପୂର୍ବରୁ ବି ବହୁ ଦୁର୍ଘଟଣା ଘଟିଛି ଏହି ସାତବାଟିଆ ଜଙ୍ଗଲରେ । ଆପଣ ସେ ଆଡ଼େ କାନ ନ ଦେଇ ଚୁପ୍ ଚାପ୍ ଶୋଇ ପଡ଼ନ୍ତୁ ତ ! ଯଦି ଡର ଲାଗୁଥାଏ, ତେବେ ମୁଁ ଏଇଠି ଶୋଉଛି ।

ତେଜ୍ ବାହାଦୂର ସଂଗେ ସଂଗେ ଚଟାଣ ଉପରେ ବିଛା ହୋଇଥିବା କାର୍ପେଟ ଉପରେ ଶୋଇ ପଡ଼ିଲା ।

ମୋ କାନରେ କିନ୍ତୁ ସାତବାଟିଆ ଜଙ୍ଗଲରୁ ଭାସି ଆସୁଥିବା ମଧୁ ସଂଗୀତ ମୂର୍ଚ୍ଛନା ସୃଷ୍ଟି କରିଥିଲା । କାଲି ରାତିରେ ନନ୍ଦନ ଗଡ଼ରେ ଶୁଣିଥିଲି ଯେଉଁ ସଂଗୀତ, ତା'ଠାରୁ ଏହା ସଂପୂର୍ଣ୍ଣ ଭିନ୍ନ । ସେ ଥିଲା ଶାସ୍ତ୍ରୀୟ ସଂଗୀତ ମିଶା, ଏ କିନ୍ତ ଲଘୁ ସଂଗୀତ । ସେଠାରେ ଗାଉଥିଲା ନିଶିଗନ୍ଧା, ଆଉ ଏଠାରେ ?

ଧୀରେ ଧୀରେ ସଂଗୀତର ମୂର୍ଚ୍ଛନା ଲୁପ୍ତ ହୋଇ ଯାଉଥିଲା । ଗାୟିକା ଯେପରି ଦୂରରୁ ଦୂରକୁ ଚାଲି ଯାଉଛି । ମୁଁ ସ୍ତବ୍ଧ ହୋଇ ସେଇ ଝରକା ପାଖରେ ଠିଆ ହୋଇ ଚାହିଁଥିଲି ସାତବାଟିଆର ରହସ୍ୟମୟ ପରିବେଶ ଆଡ଼େ ।

ତେଜ୍ ବାହାଦୂର ନାକରୁ ଘୁଙ୍ଗୁଡ଼ିର ଶବ୍ଦ ଶୁଣା ଯାଉଥିଲା । ମୁଁ କିନ୍ତୁ ସ୍ଥିର ହୋଇ

ପାରୁ ନଥିଲି । ନନ୍ଦନ ଗଡ଼ର ଚାରିଆଡ଼େ କ'ଣ ଖାଲି ରହସ୍ୟମୟ ଗତିବିଧି !

ହଠାତ୍ ଖିଲି ଖିଲି ହସର ଢେଉରେ ମୁଁ ଯେପରି ଶିହରୀ ଉଠିଲି । ଖୁବ୍ ପାଖରେ, ମନେହେଲା ଏଇ ବାଥ୍ରୁମ୍ ଭିତରୁ କିଏ ଯେପରି ପ୍ରାଣ ଖୋଲି ହସୁଛି । ପର ମୁହୂର୍ତ୍ତରେ ସବୁ ଶାନ୍ତ, ନିଥର ।

ଏଥର ମୋତେ ସବୁ ଭୋଜବାଜି ପରି ମନେ ହେଲା । ଏହି ସବୁ ଘଟଣାର ସତ୍ୟତା ଉପରୁ ମନ ମୋର ଧୀରେ ଧୀରେ ଦୂରେଇ ଯିବାକୁ ଲାଗିଲା ।

କିନ୍ତୁ କିଏ ? ଠିକ୍ ଗେଷ୍ଟ ହାଉସର ଉଦ୍ୟାନରେ । ଶୁଭ୍ରବସନା, ଆଲୁଳାୟିତା କେଶା, କିଏ ସେହି ନାରୀ ? ହାତଠାରି ମୋତେ ଡାକୁଚି । କଣ୍ଠରେ ଅସ୍ପଷ୍ଟ ସଂଗୀତ ।

ମୁଁ ଆଉ ସ୍ଥିର ହୋଇ ରହିପାରିଲି ନାହିଁ । ବାହାଦୂର ନିଘୋଡ଼ ନିଦରେ ଘୁଙ୍ଗୁଡ଼ି ମାରୁଥିଲା । ନିଜ ଦେହକୁ ଚିମୁଟି ଦେଖିଲି ଯେ, ମୁଁ ପ୍ରକୃତିସ୍ଥ । ପୁଣି ତଳକୁ ଚାହିଁଲି । ଜହ୍ନ ଆଲୁଅରେ ସ୍ପଷ୍ଟ ଚିହ୍ନି ହେଉନି ନାରୀ ମୂର୍ତ୍ତିଟିକୁ ।

କିଏ ସେ ? ମୋତେ ବା ହାତଠାରି ଡାକୁଚି କାହିଁକି ?

ବହୁ ଚେଷ୍ଟା କରି ନିଜକୁ ସଂଯତ କରି ରଖି ପାରିଲି ନାହିଁ । କୋଟ୍ ପକେଟ୍‌ରୁ ରିଭଲଭରଟା ବାହାର କଲି, ତା'ପରେ ଧୀରେ ଧୀରେ ଓହ୍ଲେଇ ଗଲି ତଳକୁ । ଗେଷ୍ଟ ହାଉସ୍‌ର ଉଦ୍ୟାନରେ ନାରୀ ମୂର୍ତ୍ତିଟି ଆଉ ନାହିଁ, କିନ୍ତୁ ଗୁଣୁ ଗୁଣୁ ସଂଗୀତ ଅନୁସରଣ କରି ଦେଖିଲି, ସେ ଆଗେଇ ଯାଉଛି, ସାତବାଟିଆ ଜଙ୍ଗଲ ମଧ୍ୟରେ ପ୍ରବେଶ କରୁଛି । ମୁଁ ତା' ପଛେ ପଛେ ଚାଲିଲି । ତା' ମୋର ବ୍ୟବଧାନ ଯଦିଓ ଯଥେଷ୍ଟ ନ ଥିଲା, ତଥାପି ତାକୁ ମୁଁ ସ୍ପଷ୍ଟ ଦେଖି ପାରୁ ନଥିଲି ।

ସାତବାଟିଆ ଜଙ୍ଗଲର କୌଣସି ଏକ ବୁଦା ପାଖରେ ଲୁଚିପଡ଼ି ହୋ ହୋ ହୋଇ ଉଠିଲା ସେ । କହିଲା, ମୋ ପଛରେ କାହିଁକି ଧାଇଁଛ ତୁମେ ?

ମୋତେ ଯେ ଡାକି ଆଣିଲି । ମୁଁ କହିଲି ।

ତମେ କ'ଣ ମୋ ସହିତ ଛୁଟି ପାରିବ ?

କାହିଁକି ପାରିବିନି ?

ନାରୀଟି ପୁଣି ଖିଲି ଖିଲି ହୋଇ ହସି ଉଠିଲା । କହିଲା, ପାରିବନି ବନ୍ଧୁ, ପାରିବନି । ତମରି ପରି ବହୁ ଯୁବକ ଶପଥ ନେଇ ମୋ ପଛରେ ଧାଇଁବାକୁ ଚେଷ୍ଟା କରିଛନ୍ତି, କିନ୍ତୁ ପାରି ନାହାନ୍ତି, ସେମାନଙ୍କର ଶେଷ ପରିଣତି କ'ଣ ହୋଇଛି ଜାଣ ?

କ'ଣ ?

ମୃତ୍ୟୁ । ଯୁବତୀଟି ପୁଣି ହସି ଉଠିଲା ବନସ୍ଥଳୀ କମ୍ପମାନ କରି ।

ତୁମେ କିଏ ? ମୁଁ ପଚାରିଲି ।

ଯୁବତୀଟି ସେହିପରି ଆଡୁଆଳରୁ ଥାଇ ଉତ୍ତର ଦେଲା, ମୁଁ, ମୋତେ ତମେ ଚିହ୍ନି ନାହିଁ ? ତା'ହେଲେ ମୋ ପଛରେ ଛୁଟିଛ କାହିଁକି ?

ତମର ଗତିବିଧି ଲକ୍ଷ୍ୟ କରିବାପାଇଁ ।

ପୁଣି ହାସ୍ୟରୋଳ । ମୋର ଗତି ବଡ଼ ବିଚିତ୍ର ବନ୍ଧୁ ! ପାଣି ପବନ ସବୁଠି ମୁଁ ଗତିବାନ୍ । ତମେ ମୋ ପିଛା ଛାଡ଼ିଦେଇ ଫେରି ଯାଅ । ନନ୍ଦନଗଡ଼ର ଗେଷ୍ଟ ହାଉସ୍‌ରେ ଯେତେ ଅନିସନ୍ଧିତ୍ସୁ ଯୁବକ ଆସି ରହିଛନ୍ତି, କାହାରି ମଙ୍ଗଳ ହୋଇ ନାହିଁ ।

କିନ୍ତୁ ତୁମେ କିଏ ? ତୁମର ପରିଚୟ ପାଇବା ମୋ ପକ୍ଷରେ କ'ଣ ସମ୍ଭବ ହେବ ନାହିଁ ?

ନା, ନା । ତେବେ ମୋର ଗୋଟାଏ ପରିଚୟ ଅଛି । ସେଇଟା ମୋଟେ ସହଜ ନୁହେଁ ।

ତମର ନାଁ କ'ଣ ?

ବହୁତ ବର୍ଷ ପୂର୍ବେ ଅବଶ୍ୟ ନାଁଟାଏ ଥିଲା । ଆଜି, ଆଜି ମୋତେ ଅଶରୀରୀ କହିଲେ ଚଳିବ ।

ତୁମେ ମିଛ କହୁଛ । ମୁଁ ଦୃଢ଼ କଣ୍ଠରେ କହିଲି ।

ସେ ପୁଣି ହସିଲା । କହିଲା, ସବୁ ପୁରୁଷମାନେ ଏହିପରି କହନ୍ତି । ତମକୁ ମିଛ କହି ମୋର ଲାଭ କ'ଣ ହେବ ?

ହୁଏତ ହେବ ନାହିଁ, କିନ୍ତୁ ତମେ....

ମୁଁ ଲକ୍ଷ୍ୟ କଲି ନାରୀଟି ସେଇ ବୁଦା ଉହାଡ଼ରୁ ବାହାରି ପୁଣି ଚାଲିବାକୁ ଆରମ୍ଭ କରିଦେଲା । ମୁଁ ଯେତେ ଶୀଘ୍ର ପାଦ ଚଳେଇଲେ ମଧ୍ୟ ତା' ମୋର ବ୍ୟବଧାନ ଠିକ୍ ସେଇ ପୂର୍ବ ପରି ରହି ଯାଇଥିଲା । ତା'ପରେ ସେ ପୁଣି କୁଆଡ଼େ ଲୁଚି ଗଲା । ମୁଁ ଗୋଟାଏ ଅନ୍ଧକାର ସ୍ଥାନରେ ହାତଭମ୍ବ ହୋଇ ଠିଆ ହୋଇ ରହିଲି ।

ଅଳ୍ପ ସମୟ ପରେ, ମୋ ଚାରିପାଖ ଯାକ ଯେପରି ହାସ୍ୟର ଫୁଲରେଣୁ ବିଛୁ ହୋଇ ପଡ଼ିଲା । ପୁଣି ଶୁଣିଲି ସେଇ କଣ୍ଠସ୍ୱର, ବସ, ସେଇ ଗଛମୂଳେ ଯେଉଁ ପଥର ବେଦୀଟି ରହିଛି, ତା'ରି ଉପରେ ବସିଯାଅ । ଦିନେ ତାଙ୍କୁ ମୁଁ ଏହାରି ଉପରେ ବସେଇ ଏହିପରି ଏକ ପୂର୍ଣ୍ଣିମା ରାତ୍ରିରେ, ଚନ୍ଦ୍ରକୁ ସାକ୍ଷୀ ରଖି ଜୀବନର ସମସ୍ତ ଦାୟିତ୍ୱ ଅର୍ପଣ କରିଥିଲି ।

ମୁଁ ଅନ୍ଧକାରରେ କେବଳ ସ୍ୱର ଶୁଣୁଥିଲି ।

ସେ ପୁଣି କହିଲା, ବସ । ଭୟ କରୁଚ କି । ଆଉ ସେ ଭୁଲ୍ ମୁଁ କରିବି ନାହିଁ । ସେଦିନ ଯଦି ଜାଣି ଥାଆନ୍ତି, ମୋର ସ୍ୱାର୍ଥପରତା ପାଇଁ ତାଙ୍କର ଏକ ନିଷ୍ପାପ ପ୍ରାଣ ଅକାଳରେ ଝଡ଼ି ପଡ଼ିବ, ତେବେ ସେ ଭୁଲ୍ ମୁଁ ମୋଟେ କରି ନଥାନ୍ତି ।

ମୁଁ ପାଦରେ ଏକ ଉଚ୍ଚ ସ୍ଥାନ ଅଣ୍ଡାଳି ତା'ରି ଉପରେ ବସିଲି । ମନେହେଲା ସେ ଯେପରି ମୋ ପାଖକୁ ଲାଗି ଆସିଚି । ତା' ଶ୍ୱାସ ପ୍ରଶ୍ୱାସର ଗତି ମୁଁ ଅନୁଭବ କରି ପାରୁଥିଲି ।

ଶୁଣୁଛ ? ସେ ମୋତେ ଡାକିଲା ।

କୁହ । ମୁଁ ଉତ୍ତର ଦେଲି ।

ମୋର ଗୋଟିଏ ପ୍ରଶ୍ନର ଉତ୍ତର ଦେବ ?

ନିଶ୍ଚୟ ।

ଆଚ୍ଛା, ସତ କହିଲ, ତମେ ଏଠାକୁ କାହିଁକି ଆସିଛ ?

ମୁଁ, ହଁ କହିବି, କିନ୍ତୁ ଗୋଟିଏ ସର୍ତ୍ତରେ ।

କ'ଣ ?

ତୁମେ ଯଦି ତୁମର ଆତ୍ମ ପରିଚୟ ଦିଅ ।

ପୁଣି ସେ ଖିଲି ଖିଲି ହୋଇ ହସି ଉଠିଲା । କହିଲା, ମୋର ଆତ୍ମ ପରିଚୟ ଅଛି ସତ, କିନ୍ତୁ କ'ଣ ମିଳିବ ତମୁକୁ ସେଥିରୁ ? ବହୁ ମାସ ବହୁ ବର୍ଷ ପୂର୍ବେ ଜନ୍ମିଥିଲି ମୁଁ ଏଇ ନନ୍ଦନଗଡ଼ରେ । ରକ୍ତ ମାଂସର ଦେହ ମୋର କେବେଠୁଁ ଯେ ନଷ୍ଟ ହୋଇ ଯାଇଛି, ଆଜି ବି ମୁଁ ମନେ ପକାଇ ପାରୁ ନାହିଁ । ଯାହା ଦେଖୁଛ ଖାଲି ଗୋଟାଏ ଛାୟା, ଯାହା ଶୁଣୁଛ ଗୋଟାଏ ଅତୃପ୍ତ ଆତ୍ମାର ବାଣୀ । ବରଂ ତମେ କୁହ ମୁଁ ଶୁଣେ । ସମ୍ଭବ ହେଲେ ତମୁକୁ ସାହାଯ୍ୟ କରିବି ।

ମୋତେ । ତୁମେ ମୋତେ ସାହାଯ୍ୟ କରିବ ?

ବିଶ୍ୱାସ ହେଉନି ? ସେ ପୁଣି ଖିଲି ଖିଲି ହୋଇ ହସି ଉଠିଲା । ତମେ ସିନା ବୁଝି ପାରୁନ ବନ୍ଧୁ, କିନ୍ତୁ ଯେଉଁ ନାଗ ଫାଶରେ ମୁଣ୍ଡ ପୁରାଇଛ, ସେଥିରୁ ଆଉ ନିସ୍ତାର ନାହିଁ, ମୁକ୍ତି ନାହିଁ । ସେ ପୁଣି ହସିଲା ଉନ୍ମାଦିନୀଙ୍କ ପରି ।

ମୁଁ କିନ୍ତୁ ତା'ର ସେଇ କଥାକୁ ବିଶ୍ୱାସ କରି ପାରୁନଥିଲି । ସେ ଯେ ଗୋଟାଏ ଅଶରୀରୀ, ଖାଲି ଛାୟା ମୂର୍ତ୍ତିଟାଏନ୍ତ ସେଭଳି ଧାରଣା ମୋ ମନକୁ ମୋଟେ ସ୍ପର୍ଶ କରିପାରୁ ନଥିଲା । କିନ୍ତୁ ମୋ ପାଇଁ ଯେ ଏକ ରହସ୍ୟମୟ ପରିବେଶ ସୃଷ୍ଟି ହୋଇଛି ଏବଂ ସେ ରହସ୍ୟର ନାୟିକା ମୋତେ ରହସ୍ୟର ଅନ୍ଧକାର ଭିତରକୁ ଟାଣି ଟାଣି ନେଉଛି, ଏହା ମୁଁ ବୁଝି ପାରିଥିଲି । ଯେତେବେଳେ ବୁଝି ପାରିଲି, ସେତେବେଳେ ଆଉ ପଛକୁ ପାଦ ଫେରେଇବାର ଉପାୟ ନ ଥିଲା । କୌଣସି ପ୍ରକାର ଯଦି ରାତିଟା କଟେଇ ଦେଇ ହୁଏ, ତେବେ ପ୍ରଭାତର ଆଲୋକ ମଧ୍ୟରେ ମୁଁ ନିଶ୍ଚୟ ରହସ୍ୟର ସୂତ୍ର ଆବିଷ୍କାର କରି ପାରିବି, ଆଉ ଯଦି ରାତି ନ ପାହେ, ତେବେ ହୁଏତ ଜୀବନର ଶେଷ ଗାନ ଗାଇବା ପୂର୍ବରୁ ମୁଁ ଏହି ଅଶରୀରୀର କାତି ଛଡ଼େଇ ଯିବାକୁ ଚେଷ୍ଟା କରିବି ।

ଶୁଣୁଚ ? ସେ ପୁଣି ବନାନୀର ନୀରବତା ଭଙ୍ଗ କଲା ।

ଉଁ । ମୁଁ ସଂକ୍ଷିପ୍ତ ଉତ୍ତର ଦେଲି ।

କହିବନି ?

କୋଉ କଥା ?

କାହିଁକି ଏଠାକୁ ଆସିଛ ।

ତମେ ତ ତମ କଥା କହିଲନି ।

ମୋର ଯେ କହିବାର କିଛି ନାହିଁ ।

ମୋର ବା କ'ଣ ଅଛି । କାଲି ପ୍ରଭାତରେ ଏହି ସାତବାଟିଆ ଜଙ୍ଗଲରେ ଶ୍ୱାନ ଶୃଗାଳମାନଙ୍କର ମହୋତ୍ସବ ହେବ ।

କ'ଣ କହୁଛ ତୁମେ ? ତ' ସ୍ୱରରେ ଟିକିଏ ଚଞ୍ଚଳତା ଲକ୍ଷ୍ୟ କଲି ।

ମୁଁ ଠିକ୍ କହୁଛି । ହୁଏତ ଭବିଷ୍ୟତରେ ତମ ମୋ ଭିତରର ବ୍ୟବଧାନ ଟିକକ ଆଉ ରହିବ ନାହିଁ । ତୁମ ପରି ମୁଁ ବି ଅଶରୀରୀ ହୋଇ ନିଶାର୍ଦ୍ଧରେ ଘୂରି ବୁଲିବି ।

ତମର ଏଗୁଡ଼ା ଖାଲି ଦୁର୍ଭାବନା ବନ୍ଧୁ । ମୁଁ କାହାରି କୌଣସି ଅନିଷ୍ଟ କରେ ନାହିଁ । ମୋତେ ଯାହାକୁ ଭଲ ଲାଗେ ତା' ସହିତ ଟିକିଏ ଖୁସି ଗପ କରେ । ତମେ ଯଦି ମୋର ଏଇ ସାମାନ୍ୟ ଅର୍ଥ ଟିକକ ପାଇଁ, ଏତେ ଟିକିଏ ସ୍ୱାର୍ଥ ତ୍ୟାଗ କରି ନ ପାର, ଫେରି ଯାଅ, ଏଇ ମୁହୂର୍ତ୍ତରେ ଲେଉଟି ଯାଅ ଗେଷ୍ଟ ହାଉସକୁ, ମୁଁ ମୋଟେ ଆପତ୍ତି କରିବି ନାହିଁ ।

ମୁଁ କ'ଣ ତୁମକୁ ଭଲ ଲାଗିଚି ? ପଚାରିଲି ।

ତା' ନ ହେଲେ ତମ ନିଦ୍ରାରେ ବ୍ୟାଘାତ ସୃଷ୍ଟି କରେଇ ଥାଆନ୍ତି କାହିଁକି ?

ତା'ହେଲେ ତମେ ମୋ ପାଖକୁ ଆସ, ସାମନାରେ ବସ । ନତୁବା ଚାଲ ପୂର୍ଣ୍ଣିମାର ଶୀତଳ ଜ୍ୟୋତ୍ସ୍ନା ତଳେ ଆମେ ଧାଇଁ ବୁଲିବା, ଖେଳିବା ମନଇଚ୍ଛା ।

କିନ୍ତୁ ଆଲୋକ ଯେ ମୋର ଶତ୍ରୁ । ସେ ବ୍ୟଥିତ କଣ୍ଠରେ କହିଲା ।

କାହିଁକି ?

ସେ ସବୁ ଜାଣି ତମର ଲାଭ ନାହିଁ । ଏଥର କହିଲି, କାହିଁକି ତମେ ଆସିଛ ଏଇ ନନ୍ଦନଗଡ଼କୁ ?

ଆସିଥିଲି ନିଶିଗନ୍ଧାର ସନ୍ଧାନରେ । ଅତି ସହଜ ଭାବରେ ଉତ୍ତର ଦେଲି ।

କ'ଣ ହେଲା ? ପାଇଲ ?? ସେ ବି ନିର୍ବିକାର କଣ୍ଠରେ ପଚାରିଲା ।

ହଁ ।

କିଏ ସେହି ନିଶିଗନ୍ଧା ?

ମୁଁ ହସିଲି, କହିଲି-ନିଶିଥରେ ଯିଏ ଗନ୍ଧ ବୁଣି ବୁଣି ଧାଏଁ ।

ଓଃ...ସେ ଖିଲି ଖିଲି ହୋଇ ହସିଉଠି କହିଲା, ତମେ ତା' ହେଲେ ମୋତେ ପରିହାସ କରୁଚ ! କିନ୍ତୁ ଥରେ ଯଦି ଜାଣି ପାରନ୍ତ କେତେ ବ୍ୟଥା ଆଉ ବେଦନା ଭାରା ମୋର ଜୀବନ ଇତିହାସ, ତା'ହେଲେ....

ହଠାତ୍ ଯେମିତି ତା' ମୁହଁରୁ ମୁଁ ଏକ ଅସ୍ପଷ୍ଟ ବ୍ୟଞ୍ଜନା ଶୁଣିଲି । ସେ ବୋଧହୁଏ ଦୂରେଇ ଯାଇଥିଲା । ତା'ପରେ ଶୁଣିଲି ଯନ୍ତ୍ରଣାକାତର କଣ୍ଠସ୍ୱର । ତା'ପରେ, ତା'ପରେ...

ମୁଁ ସ୍ତବ୍ଧ ହୋଇଗଲି । ମୋର ମନେହେଲା ସେ ଯେପରି ମୃତ୍ୟୁଯନ୍ତ୍ରଣାରେ ଛଟପଟ ହେଉଛି । ସଂଧ୍ୟାବେଳେ ରାଧିକାମୋହନ ରାଜଗୁରୁଙ୍କ କୋଠାରୀରେ ଯେଉଁପରି ଏକ ଯନ୍ତ୍ରଣା କାତର କଣ୍ଠସ୍ୱର ଶୁଣିଥିଲି, ଏ ସେପରି ହୁବହୁ । କ'ଣ କରିବି ! ଲତା

ଗୁମ୍ଫର ନିଘଞ୍ଚ ଅନ୍ଧକାର ମଧ୍ୟରେ କିଛି ଦିଶୁ ନ ଥିଲା । ପୂର୍ଣ୍ଣିମାର ଚନ୍ଦ୍ରକିରଣ ମଧ୍ୟ ସେଠାକୁ ପ୍ରବେଶ କରି ପାରୁ ନଥିଲା ।

ପୁଣି ସବୁ ନୀରବ, ନିଶ୍ଚଳ । ଯେପରି କେଉଁଠି କିଛି ହୋଇ ନାହିଁ । ଭାବିଲି ଏହିସବୁ ଘଟଣାର ମୂଳ ଯାହା ହେଉନା କାହିଁକି, ଜୀବନକୁ ବିପନ୍ନ କରି ଏଠାରେ ପଡ଼ି ରହିବା ଉଚିତ ନୁହେଁ ।

ଉଠି ଠିଆ ହେଲି ।

ରହି ରହି କିଏ ଯେପରି କାନ୍ଦୁଚି ।

ମୁଁ ଆଉ ଭ୍ରୂକ୍ଷେପ କଲି ନାହିଁ । ଲେଉଟି ଆସୁଥିଲି ।

ଖୁବ୍ ନିକଟରେ ଜଡ଼ିତ କଣ୍ଠରେ ସେ କହିଲା, ଦେଖିଲ ତ ! ଏଇ ହେଉଚି ମୋର ଜୀବନ । ମଦ୍ୟପ ସ୍ୱାମୀ ମୋର ବେଳ ଅବେଳରେ ମୋତେ ପିଟି ପିଟି ଅଚେତନ କରିଦିଏ । ମୋ ଦେହରୁ ରକ୍ତ ନ ବାହାରିବା ଯାଏ ସେ ଶାନ୍ତ ହୁଏ ନାହିଁ । ଶେଷରେ ଦିନେ ଏହିପରି ପିଟି ମୋତେ ମାରି ଦେଇଥିଲା ।

କେଉଁଠି ?

ଏଇ ଯେଉଁଠି ତୁମେ ବସିଥିଲ ।

କାହିଁକି ?

ମୁଁ ମୋର ପ୍ରେମାସ୍ପଦ ଗଳାରେ ଗୋଟିଏ କୁସୁମ ମାଳା ପିନ୍ଧାଇଥିଲି ବୋଲି ।

ଆଉ ଆଜି ?

ଆଜିବି ସେ ଛୁଟି ଆସିଚି, ଭାବିଚି ହୁଏତ ମୋର ପ୍ରେମାସ୍ପଦ ପୁଣି ଏଠାକୁ ଆସିଚି ।

ବେଶ୍ କରିଚନ୍ତି ତମର ସ୍ୱାମୀ । ତୁମକୁ ମୃତ୍ୟୁ ଠାରୁ ଆହୁରି କଠୋର ଦଣ୍ଡ ଦେବା ତାଙ୍କର ଉଚିତ ଥିଲା !

ଶେଷରେ ତମେ ବି ଏଇ କଥା କହିଲ ?

ମୋତେ ଏଥର ବିଦାୟ ଦିଅ । ମୁଁ ଯାଏ । ରହିବି ଯଦି କାଲି ପୁଣି ଦେଖା ହେବ ।

କିନ୍ତୁ ତମର ସେଇ ନିଶିଗନ୍ଧା ! ଯାହାର ସନ୍ଧାନରେ ତମେ ନନ୍ଦନଗଡ଼କୁ ଆସିଥିଲ !

ଆଉ ଆବଶ୍ୟକ ନାହିଁ । ମୁଁ ଫେରିଯିବାକୁ ଚାହେଁ ।

ବେଶ୍, ଆସ । ତମେ ମୋ ପଦଶବ୍ଦ ଅନୁସରଣ କରି ଚାଲି ଆସ । ମୁଁ ତୁମକୁ ଆଲୋକର ପଥ ଦେଖାଇ ଦେଇ ଫେରି ଆସିବି ।

ନୀରବତା ଭିତରେ କିଛି ସମୟ ଚାଲିବା ପରେ ମୋର ମନେ ହେଲା, ମୁଁ ଯେପରି ଧୀରେ ଧୀରେ ଜଙ୍ଗଲଟାର ମଧ୍ୟ ସ୍ଥଳ ଆଡ଼କୁ ଆଗେଇ ଯାଉଛି । ଏଥର କ୍ରମଶଃ ଅନ୍ଧକାର ତରଳ ହୋଇ ଆସୁଛି । କିନ୍ତୁ ସେ ? ତା'ର ଛାୟା ମୁଁ ଦେଖି ପାରୁଚି ସତ, କିନ୍ତୁ ବ୍ୟବଧାନଟା ପୂର୍ବ ପରି । ଗଳାଠାରୁ ପାଦଯାଏ ଏକ ଶୁଭ୍ର ବସନରେ ନିଜକୁ ସେ ଆବୃତ୍ତି କରି ରଖିଛି । ଭୁଲ୍‌ରେ ସୁଦ୍ଧା ଫେରି ଚାହୁଁନି ପଛକୁ । କିନ୍ତୁ ମୋ ଗତି ଟିକିଏ

ଶିଥିଳ ହେଲେ ସେ ଯେପରି ବୁଝି ପାରୁଛି ।

ଚାଲୁ ଚାଲୁ ଏକ ସମୟରେ ଠିଆ ହୋଇ ପଡ଼ିଲି ।

ସେ ଗୋଟାଏ ଗଛ ଉହାଡ଼କୁ ଯାଇ କହିଲା, ଚାଲି ଆସ । ପଥ ଶେଷ ହୋଇ ଆସିଲାଣି । ଏଥର ମୁଁ ତୁମକୁ ଛାଡ଼ି ଦେଇ ନିଶ୍ଚିନ୍ତ ହେବି ।

କିନ୍ତୁ ତୁମେ ଯେ ପଥ ଭୁଲ କରୁଚ ସୁନ୍ଦରୀ !

ଏଥର ହୁଏତ ମୋ ମୁହଁର ଶେଷ ସମ୍ବୋଧନଟି ପାଇଁ ସେ ହସି ଉଠିଲା । କହିଲା, ସୁନ୍ଦରୀ ମୁଁ ଦିନେ ଥିଲି ବନ୍ଧୁ, ଖାଲି ସୁନ୍ଦରୀ ନୁହେଁ, ଅପୂର୍ବ ସୁନ୍ଦରୀ । ଯୁବ ସଂପ୍ରଦାୟରେ ଆଲୋଡ଼ନ ସୃଷ୍ଟି କରିଥିଲି । କିନ୍ତୁ ସେଦିନ, ଅନେକ ଅନେକ ବର୍ଷ ତଳେ ଲୁଚି ଗଲାଣି । ସେ ଏକ ଦୀର୍ଘଶ୍ୱାସ ତ୍ୟାଗ କଲାପରି ମନେ ହେଲା । ପୁଣି କହିଲା, ହଁ କ'ଣ କହୁଥିଲ ? ପଥ ମୁଁ ଭୁଲ କରିବି ନାହିଁ । ନିଶ୍ଚିନ୍ତରେ ମୋ ସହିତ ଚାଲି ଆସ । ମୁଁ ତୁମକୁ ଏପରି ଏକ ନିରାପଦ ପଥର ସନ୍ଧାନ ଦିଆଇ ଦେବି, ଯେଉଁ ପଥରେ ତମେ ଜୀବନ ଭରି ଚାଲୁଥିଲେ ବି କୌଣସି ଭୟ ନ ଥିବ

ପୁଣି ମୁଁ ଆଗେଇଲି । ମୋର ମନେ ହେଉଥିଲା, ହୁଏତ ମୁଁ ସମ୍ମୋହିତ ହୋଇ ପଡ଼ିଥିଲି ବା ସେହିପରି କିଛି ଗୋଟାଏ ହୋଇଥିଲା । ଯା' ଫଳରେ ମୁଁ ମୋ ଦୃଢ଼ ମନୋବଳ ଫେରି ପାଉ ନଥିଲି ।

ଶେଷରେ ଗୋଟାଏ ଜାଗାରେ ଯାଇ ମୁଁ ପହଞ୍ଚିଲି । ଜଙ୍ଗଲ ଶେଷ ହୋଇଛି କି ନାହିଁ ଜାଣି ହେଉ ନ ଥିଲା, ତେବେ ଗୋଟାଏ ଭଗ୍ନ ଅଟ୍ଟାଳିକା ମୋ ଦୃଷ୍ଟି ଗୋଚର ହେଲା । ସେ ଲୁଚିଗଲା କେଉଁଠି ତା'ରି ଭିତରେ । ମୋତେ ଖାଲି ତା' କଣ୍ଠସ୍ୱର ଶୁଣାଗଲା, ନିର୍ଭୟରେ ଚାଲି ଆସ ତୁମେ । ଏହାପରି ଅଭୟ ଆଶ୍ରୟ ଜୀବନରେ ଆଉ ଖୋଜି ପାଇବ ନାହିଁ ।

ମୁଁ ସ୍ତବ୍ଧ ହୋଇ ଠିଆ ହୋଇଥିଲି । ଭଙ୍ଗା କୋଠାଟା ଭିତରକୁ ପ୍ରବେଶ କରିବା ଉଚିତ ହେବ କି ନାହିଁ ଚିନ୍ତା କରୁଥିଲି । ପୁଣି ସେ ଡାକିଲା ମୋତେ, ଚାଲିଆସ, ଚାଲିଆସ । ନିଶିଗନ୍ଧାର ବହୁ ସନ୍ଧାନୀ ଏହା ଭିତରେ ବର୍ଷ ବର୍ଷ ଧରି ଗବେଷଣା କରୁଛନ୍ତି । ତୁମେ ସେମାନଙ୍କୁ ନୂତନ ଆଲୋକ ଦେଖାଅ, ନୂତନ ପଥ ଦେଖାଅ । ଏଥର ତା' ହାସ୍ୟଧ୍ୱନି ଏପରି ମୋତେ ଶୁଣାଗଲା, ମୋର ମନେହେଲା ଯେପରି ଖଣ୍ଡ ଖଣ୍ଡ ପଥର ଆସି ମୋ କାନ ମୁଣ୍ଡରେ ଆଘାତ ସୃଷ୍ଟି କରି ଚାଲିଛି । ମୁଁ ପକେଟରେ ହାତ ଭରିବାକୁ ଚେଷ୍ଟା କଲି, କିନ୍ତୁ....ଚାହିଁ ଦେଖିଲି ଦୁଇଜଣ ସବଳକାୟ ଲୋକ ମୋ ପଛରେ ଦୁଇଟା ରିଭଲଭର ଧରି ଠିଆ ହୋଇଛନ୍ତି । ସେମାନଙ୍କର ସମସ୍ତ ଅଙ୍ଗ ଅବୟବ କଳା ପୋଷାକରେ ଆବୃତ୍ତ ।

ଗୋଟିଏ ଦୀର୍ଘଶ୍ୱାସ ତ୍ୟାଗ କରି ଆଗେଇଲି । ଆଗେଇବାକୁ ବାଧ ହେଲି ସେହି ଭଗ୍ନ ଅଟ୍ଟାଳିକା ଆଡ଼କୁ ।

କିଏ ? କାହାକୁ ଦେଖୁଛି ମୁଁ ? ଅଟ୍ଟାଳିକା ମଧ୍ୟରେ ଯେଉଁ ଭଗ୍ନ କୋଠରୀଟିରେ

ମୋତେ ପ୍ରବେଶ ଅଧିକାର ଦିଆଗଲା, ଦେଖିଲି ସେହି କୋଠରୀ ମଧ୍ୟରେ ଗୋଟିଏ ନାରୀମୂର୍ତ୍ତି, ମୋ ଆଡ଼କୁ ପଛ କରି ମହମ୍‌ବତୀରେ ଅଗ୍ନି ସଂଯୋଗ କରୁଛି ।

କଳା ପୋଷାକ ପରିହିତ ଲୋକ ଦୁଇଜଣ ମୋ ପକେଟରୁ ରିଭଲଭରଟି କାଢ଼ିନେଇ, ମୋତେ ପଥ ଦେଖେଇ ଦେଲେ । ମୁଁ ଆଗେଇଗଲି । ଯେଉଁ ଅଶରୀରୀର ଛାୟାର ମାୟା ମୋତେ ଏତେଦୂର ଯାଏ ଟାଣି ଆଣି ପାରିଲା, ତାକୁ ମୋରି କୋଠରୀ ମଧ୍ୟରେ ଦେଖି ଟିକିଏ ଆଶ୍ୱସ୍ତ ହେଲି । ଆଉ ମୁହୂର୍ତ୍ତକ ପରେ, ଯେତେବେଳେ ତା'ର ମହମ୍‌ବତୀ ଲଗେଇବା ଶେଷ ହେବ ଏବଂ ସେ ମୋ ଆଡ଼କୁ ବୁଲି ଚାହିଁବ ସେତେବେଳେ, ସେତେବେଳେ ମୁଁ ତାକୁ ନିଶ୍ଚୟ...ନିଶ୍ଚୟ...

ନିଶ୍ଚୟ ତୁମେ ହେମାଙ୍ଗିନୀ, ନା..... ?

ତରୁଣୀଟି ଯେପରି ପ୍ରଶାନ୍ତିର ହସ ହସିଲା । ହସି ହସି ମୋ ପାଖକୁ ଆଗେଇ ଆସି କହିଲା, ମୋର ଦୋଷ କ'ଣ ବନ୍ଧୁ ! ରାଜା ସାହେବ ମୋତେ ଯେଉଁ ସୁଖ, ଯେଉଁ ସ୍ୱାଚ୍ଛନ୍ଦ୍ୟ ଦେଇଛନ୍ତି, ତା' ବଦଳରେ ତ ପୁଣି ପ୍ରତିଦାନ ଦେବାକୁ ହେବ ?

ନିଶ୍ଚୟ, ନିଶ୍ଚୟ ! କିନ୍ତୁ ଏଇ ଏତିକି ପାଇଁ ଏତେ ଅଭିନୟର କ'ଣ ଦରକାର ଥିଲା ?

ହେମାଙ୍ଗିନୀ ବିଜୟିନୀର ଦୀପ୍ତି ମୁହଁରେ ଫୁଟାଇ କହିଲା, ତା' ନ ହୋଇଥିଲେ ତମ ପରି ଏକ ବନ୍ୟ ଶାର୍ଦ୍ଦୁଳକୁ ଆଣି ଲୌହ ପିଞ୍ଜରାରେ ବନ୍ଦ କରିବା କ'ଣ ସମ୍ଭବ ହୋଇ ଥାଆନ୍ତା ।

ଏଥର ମୁଁ ନ ହସି ରହି ପାରିଲି ନାହିଁ । କହିଲି, ଧନ୍ୟବାଦ ହେମାଙ୍ଗିନୀ ଦେବୀ । ଆପଣ ମୋର ଯେଉଁ ଉପକାର କଲେ, ଜୀବନରେ ମୁଁ ହୁଏତ ଆପଣଙ୍କର ଋଣ ପରିଶୋଧ କରି ପାରିବି ନାହିଁ ।

ମୋତେ ପରିହାସ କରୁଚ ? ହେମାଙ୍ଗିନୀ ହସି ହସି କହିଲା ।

ମୋଟେ ନୁହେଁ । ଏଥର ତୁମ କାର୍ଯ୍ୟ ଶେଷ ହୋଇଛି, ତୁମେ ରାଜା ସାହେବଙ୍କ ଠାରୁ ପୁରସ୍କାର ଆଣିବା ପାଇଁ ସ୍ୱଚ୍ଛନ୍ଦରେ ଯାଇପାରେ ।

ମୁଁ ତ ଯିବି ଆଉ ରାଜାସାହେବ ମୋତେ ନିଶ୍ଚୟ ପୁରସ୍କୃତ କରିବେ । ମୁଁ ଖାଲି ଭାବୁଚି ତମରି କଥା । ଜୀବନର ମଧୁମୟ ଦିନଗୁଡ଼ିକ ତମର ନଷ୍ଟ କରିଦେଲି ଯାହା ।

ତମେ ମୋର ଉପକାର କରିଛ ହେମାଙ୍ଗିନୀ, ତୁମର ଋଣ ମୁଁ ଶୁଝି ପାରିବି ନାହିଁ । କହିଲି ।

ସେ ମୋତେ **ଅବିଶ୍ୱାସ୍ୟ** ଦୃଷ୍ଟିରେ ଅନେଇଲା ।

ବିଶ୍ୱାସ ହେଉନି ? ମୁଁ ଇଚ୍ଛା କରି ଏଠାକୁ ଆସିଛି ।

ମାନେ ?

ନିଶିଗନ୍ଧାର ଅନ୍ୟାନ୍ୟ ଅନୁସନ୍ଧିତ୍ସୁମାନଙ୍କର ସନ୍ଧାନ ନେବା ପାଇଁ, ବୁଝିଲ ?

ହେମାଙ୍ଗିନୀ ଟିକିଏ ବିଦ୍ରୂପ କଲା ପରି କହିଲା, ତା'ହେଲେ ଭୁଲ୍ କରିଚ ତୁମେ । ଆଜିଯାଏ କେହି ଆଉ ଏଠାରୁ ଫେରି ନାହାନ୍ତି । ତୁମେ ଯଦି ଯାଅ, ତେବେ ସେମାନଙ୍କର ଅସ୍ଥି କଙ୍କାଳର ସନ୍ଧାନ ପାଇବ, ଆଉ କିଛି ନୁହେଁ ।

ସେତିକି ପାଇଲେ ମୋର ଚଳିଯିବ ହେମାଙ୍ଗିନୀ । ତୁମେ ବର୍ତ୍ତମାନ ନିଶ୍ଚିନ୍ତରେ ଯାଇପାର ।

କେଜାଣି କାହିଁକି ହେମାଙ୍ଗିନୀ ମୋ ଆଡ଼େ ଚାହିଁ ଠିଆ ହୋଇଥିଲା । ବୋଧହୁଏ ମୋ ପ୍ରତି ତା' ମନରେ କିପରି କରୁଣା ଜାତ ହୋଇଥିଲା । କହିଲା, ତମର ଏଠାରେ କୌଣସି ଅସୁବିଧା ହେବ ନାହିଁ ବନ୍ଧୁ । ଯେଉଁ କେତେଦିନ ବଞ୍ଚି ରହିବ, ଆରାମରେ ରହି ପାରିବ । ମୁଁ ବି ମଝିରେ ମଝିରେ ଆସି ତମର ଖବର ବୁଝି ଯାଉଥିବି ।

ଧନ୍ୟବାଦ, ସେତିକି ଦୟା ନ କଲେ ବି ଚଳିଯିବ ।

ଏଗୁଡ଼ା କିନ୍ତୁ ଅଭିମାନର କଥା ବନ୍ଧୁ । ତମେ ଯଦି ମୋ କଥା ମାନି ଚଳିବ, ତେବେ ତମର କୌଣସି ଅସୁବିଧା ହେବ ନାହିଁ । ବହୁ ବର୍ଷଯାଏ ତମେ ବଞ୍ଚି ରହି ଯାଇ ପାରିବ ।

କିପରି ? ମୁଁ କୌତୂହଳୀ ହୋଇ ପଚାରିଲି ।

କୌଣସି ଦିନ ତମେ ଏଠାରୁ ବାହାରି ଯିବାକୁ ଚେଷ୍ଟା କରିବ ନାହିଁ ।

ଯଦି କରେ ?

ତା'ହେଲେ ମୃତ୍ୟୁ ନିଶ୍ଚିନ୍ତ ।

ଧନ୍ୟବାଦ । ମୁଁ ତମର ଉପଦେଶ ପାଳନ କରିବାକୁ ଚେଷ୍ଟା କରିବି । କିନ୍ତୁ ବୁଝିପାରୁ ନାହିଁ ମୋ ପ୍ରତି ତମେ କାହିଁକି ଏତେ କରୁଣାମୟୀ ହୋଇ ଉଠିଲ ।

ହେମାଙ୍ଗିନୀ ସେଠାରୁ ବାହାରି ଯାଉ ଯାଉ କହିଲା, ପରେ ବୁଝି ପାରିବ । ବର୍ତ୍ତମାନ ଯାଅ ଶୋଇପଡ଼ । ସକାଳ ହେଲେ ଅନେକ କଥା ଜାଣି ପାରିବ ।

ଶେଷରେ ମୁଁ କ'ଣ ବନ୍ଦୀ ହେଲି ?

ସେଦିନ ମୁଁ ମୋଟେ ଶୋଇ ପାରିଲି ନାହିଁ । ସମଗ୍ର ରାତିଟା ମୋର ଦୁଶ୍ଚିନ୍ତାରେ ଭରି ଉଠିଥିଲା । ହେମାଙ୍ଗିନୀର କଥା ଯଦି ସତ୍ୟ ହୁଏ । ମୋତେ କ'ଣ ସମଗ୍ର ଜୀବନ ଏହି ଭଗ୍ନ ଅଟ୍ଟାଳିକା ମଧ୍ୟରେ ପଡ଼ି ରହି ତିଳ ତିଳ ହୋଇ ଦଗ୍ଧ ହୋଇ ମୃତ୍ୟୁ ବରଣ କରିବାକୁ ପଡ଼ିବ ?

ଉଦୟ ଠିକ୍ କହୁଥିଲା । ନନ୍ଦନଗଡ଼ର ରାଜ୍ୟଟା ରହସ୍ୟାବୃତ । ଆଉ ରାଜାସାହେବ ହେଉଛନ୍ତି ରହସ୍ୟ-ନାୟକ । ରାତ୍ରିର ଅନ୍ଧକାର ଭିତରେ ବହୁ କାର୍ଯ୍ୟ ସାଧିତ ହୁଏ

ଯାହାର ସନ୍ଧାନ କେହି କେବେ ପାଏ ନାହିଁ ।

ଉଦୟକୁ ମୁଁ ପରିହାସ କରିଥିଲି । କହିଥିଲି, ସବୁ ମନର କୁସଂସ୍କାର । ମନ ତୋର ଅତ୍ୟନ୍ତ ସଂକୀର୍ଣ୍ଣ ହୋଇ ଯାଇଚି ଉଦୟ, ଯା' ଫଳରେ ତୋ' ଚିନ୍ତାଧାରା ଏତେ ବିକୃତ ହୋଇ ଯାଇଚି ଯେ, ସେଠାରେ କେବଳ ଭୟ ଆଉ ଆଶଙ୍କା ଛଡ଼ା ଅନ୍ୟ କିଛି ନାହିଁ ।

ଉଦୟ ମୋତେ ଆଉ ଜବାବ ଦେଇ ନ ଥିଲା । କହିଥିଲା, ତୋ ଇଚ୍ଛା । ତେବେ ମୋ ମତରେ ଗେଷ୍ଟ ହାଉସ୍ ନ ଯାଇଥିଲେ ଭଲ ହୋଇ ଥାଆନ୍ତା ।

ତୁ ଚିନ୍ତା କରନା ଉଦୟ । ରାଜା ସାହେବଙ୍କର ଶ୍ରଦ୍ଧାଭାଜନ ହେବାକୁ ହେଲେ, ତାଙ୍କ ଇଚ୍ଛା ବିରୁଦ୍ଧରେ ପ୍ରଥମେ କିଛି କରିବା ଉଚିତ୍ ନୁହେଁ । ମୁଁ କାଲି ଆସି ତୋତେ ଦେଖା କରିବି, କହି ଉଦୟଠାରୁ ବିଦାୟ ନେଇ ଚାଲି ଆସିଥିଲି ।

କିନ୍ତୁ ଆଜି ଯେତେବେଳେ ଉଦୟ ମୋତେ ଚାହିଁ ଚାହିଁ ନିରାଶ ହେବ, କ'ଣ କରିବ ସେ ? ଭାବି ପାରିବ କ'ଣ ମୁଁ ବିପଦରେ ପଡ଼ିଛି ବୋଲି ? ମୋର ଉଦ୍ଧାରର କି ବ୍ୟବସ୍ଥା ବା ସେ କରି ପାରିବ ?

ଘର ଭିତରେ ଆଲୋକର ବନ୍ୟା ଖେଳିଗଲା । କେହି କବାଟ ଖୋଲିଲା ବୋଧହୁଏ । ରାତି ଅନେକବେଳୁ ପାହି ସାରିଥିଲା । ଶେଯ ଉପରେ ଉଠି ବସିଲି ମୁଁ । କିଏ ଆସୁଚି ?

ହେମାଙ୍ଗିନୀ । ହାତରେ ଚା'ର ସରଞ୍ଜାମ । ପ୍ରାତଃଭୋଜନର ବିପୁଳ ଆୟୋଜନ କରିଚି ଯେପରି । ମୋ ଆଗରେ ସମସ୍ତ ଥୋଇ ଦେଇ ସ୍ମିତ ହସି କହିଲା, ଉଠ ବନ୍ଧୁ, ଗତ ରାତ୍ରିର ଦୁଃସ୍ୱପ୍ନ ପରିହାର କର । ଚିନ୍ତା କ'ଣ ?

ମୁଁ ଚାହିଁଲି ହେମାଙ୍ଗିନୀ ମୁହଁକୁ । ପ୍ରଭାତର ରଙ୍ଗ ପରି ସୁନ୍ଦର । ଆହୁରି ଚାହିଁବାକୁ ଇଚ୍ଛା ହେଉଥିଲା । କିନ୍ତୁ ମୁଁ ଉଠି ପଡ଼ିଲି । ସେ ଆଙ୍ଗୁଳି ଦେଖାଇ କହିଦେଲା, କେଉଁ ଘରେ ମୋ ପାଇଁ ପ୍ରାତଃକୃତ୍ୟର ସମସ୍ତ ସରଞ୍ଜାମ ରଖା ହୋଇଛି !

ମୋ ମନ ଭିତରଟା କିପରି କାରୁଣ୍ୟରେ ଭରି ଯାଇଥିଲା । ମନେ ହେଉଥିଲା ଧୀରେ ଧୀରେ ମୁଁ ମୋ ନିଜସ୍ୱ ସତ୍ତା ହରେଇ ବସୁଚି । ଯନ୍ତ୍ରଚାଳିତ ପରି ପ୍ରଭାତର ନିତ୍ୟକୃତ୍ୟ ଶେଷ କରି ପୁଣି ହେମାଙ୍ଗିନୀ ପାଖକୁ ଫେରି ଆସିଲି ।

ସେ ମୋତେ ଅତି ଯତ୍ନ ସହକାରେ ଖୁଆଇଲା । ଏଇଟା ଖାଅ, ସେଇଟା ଖାଅ କହି ମୋ ପାଇଁ ଯେତେ ଯାହା ଆଣିଥିଲା, ମୁଁ ପ୍ରାୟ ସମସ୍ତ ଉଦରସ୍ଥ କଲି । ମୋର ଅନ୍ୟମନସ୍କତା ଲକ୍ଷ୍ୟ କରି ସେ କହିଲା, ତମେ ଖାଇପିଇ କିଛି ଦିନ ଆରାମ କର, କୌଣସି ଦୁଶ୍ଚିନ୍ତା ମନ ଭିତରେ ସ୍ଥାନ ଦିଅନାହିଁ । ଲାଭ ବା କ'ଣ ? ଯେଉଁଠି ହେଲେ ତ ଜୀବନର ସମସ୍ତ କାଳ ଅତିବାହିତ କରିବାକୁ ପଡ଼ି ଥାଆନ୍ତା ?

କିନ୍ତୁ ହେମାଙ୍ଗିନୀ !...ମୋ ସ୍ୱରର ବିଚଳିତ ଭାବରେ ମୁଁ ବି ଚମକି ପଡ଼ିଲି ।

ହେମାଙ୍ଗିନୀ କହିଲା, ଏଠାକୁ ଯେଉଁମାନେ ଆସିଛନ୍ତି, ସମସ୍ତେ ଧୈର୍ଯ୍ୟ ହରାଇଛନ୍ତି । ସେଇଥିପାଇଁ କାହାରି ମଙ୍ଗଳ ହୋଇନାହିଁ ।

କିନ୍ତୁ ମୋର ଗୋଟାଏ ପ୍ରଶ୍ନ ହେମାଙ୍ଗିନୀ । ସତ କହିବ ?

ପଚାର । ଜାଣିଥିଲେ ନିଶ୍ଚୟ କହିବି ।

ମୁଁ ବୁଝି ପାରୁ ନାହିଁ, ନନ୍ଦନଗଡ଼ର ରାଜାସାହେବଙ୍କର ଏପରି ବ୍ୟବସ୍ଥା କାହିଁକି ?

ହେମାଙ୍ଗିନୀ ନିରୁତ୍ତର ରହିଲା ।

କୁହ ହେମାଙ୍ଗିନୀ ! ମୁଁ ପୁଣି ପଚାରିଲି ।

ତା'ର ଅବଶ୍ୟ କାରଣ ଅଛି । ତେବେ ମୁଁ ବା କେତେଟା ଜାଣେ ?

ତଥାପି....

ନିଶିଗନ୍ଧାର ସନ୍ଧାନରେ ଯଦି କେହି ଆସିଚି ବୋଲି ରାଜାସାହେବ ଜାଣି ପାରନ୍ତି, ତେବେ ଆଉ ତା'ର ନିସ୍ତାର ନାହିଁ । ହୁଏତ ତାକୁ ମୃତ୍ୟୁବରଣ କରିବାକୁ ପଡ଼େ, ନତୁବା ଆଜୀବନ ବନ୍ଦୀ ହୋଇ ରହିବାକୁ ହୁଏ ।

କିନ୍ତୁ ନିଶିଗନ୍ଧା କିଏ ?

ହେମାଙ୍ଗିନୀ ମୁହଁରେ ବ୍ୟଥା ଜମି ଆସିଲା । କହିଲା, ବିଶ୍ୱାସ କର, ନିଶିଗନ୍ଧା ସମ୍ବନ୍ଧରେ ମୋତେ କିଛି ଜଣା ନାହିଁ । ଲୋକେ କହନ୍ତି, ସେ ଗୋଟିଏ ଅପଦେବତା । ନନ୍ଦନଗଡ଼ରେ ପ୍ରବେଶ କରିବା ଦିନଠାରୁ ରାଜ୍ୟର ପତନ ହୋଇଛି, ପ୍ରଜାଙ୍କର ଅମଙ୍ଗଳ ହୋଇଛି । ଆଉ ଯିଏ ତା'ପଛରେ ଧାଇଁଛି ତାକୁ ମୃତ୍ୟୁବରଣ କରିବାକୁ ପଡ଼ିଛି ।

ଆଉ ତମେ ? ମୁଁ ପଚାରିଲି ।

ମୁଁ ? ମୁଁ କ'ଣ ? ହେମାଙ୍ଗିନୀ ଟିକିଏ ବିଚଳି ହୋଇ ପଡ଼ିଲା ।

ତମେ କିପରି ଆସି ରାଜାସାହେବଙ୍କର ଏହି ରହସ୍ୟଚକ୍ରର ନାୟିକା ହେଲ ?

ହେମାଙ୍ଗିନୀ ନାକରୁ ଗୋଟିଏ ଦୀର୍ଘଶ୍ୱାସ ବାହାରି ଆସିଲା । ସେ ହସିଲା, ଶୃଙ୍ଖଳା ହସ । କହିଲା, ସେ ଇତିହାସ ଶୁଣେଇବିନି ତମକୁ । ଆଉ କେବେ ପଚାରିବ ନାହିଁ ସେ କଥା । ତା'ହେଲେ ମୋତେ ପାଇବନି ଏତେ ନିକଟରେ । ମୁଁ ଦୂରେଇ ଯିବି ତମ ପାଖରୁ ।

ହେମାଙ୍ଗିନୀର ମୁହଁ କାରୁଣ୍ୟରେ ଭରିଗଲା ।

ମୁଁ ନୀରବରେ ଅନାଇ ରହିଲି କିଛିକ୍ଷଣ । କହିଲି, ତୁମେ ଯେଉଁଥିରେ କଷ୍ଟ ପାଇବ, ସେ ପ୍ରଶ୍ନ ମୁଁ ତୁମକୁ କରିବିନି କେବେ । ଛାଡ଼ । ନନ୍ଦନଗଡ଼ର ରାଜାସାହେବଙ୍କ ସମ୍ବନ୍ଧରେ ତମର ଧାରଣା କ'ଣ ?

କିଛି ଜଣା ନାହିଁ କିମ୍ବା କେବେ ତାଙ୍କୁ ଆଖିରେ ଦେଖି ନାହିଁ ।

ତମେ ଯାହା କହୁଚ କ'ଣ ସତ କହୁଚ ?

ହେମାଙ୍ଗିନୀର ଆଖି ଛଳ ଛଳ ହୋଇ ଆସିଲା । କହିଲା, ମୁଁ ଜାଣେ, ମୋର କୌଣସି କଥା ତମେ ବିଶ୍ୱାସ କରିବ ନାହିଁ । କାହିଁକି ବା କରିବ ? ମୁଁ ତୁମ ସହିତ ଯେପରି ଭାବରେ ବିଶ୍ୱାସଘାତକତା କରିଚି.....

ନା ନା ହେମାଙ୍ଗିନୀ । ମୁଁ ତୁମକୁ ବିଶ୍ୱାସ କରେ । ତମେ କହିଯାଅ । ତମର ପ୍ରତିଟି ଶବ୍ଦର ସତ୍ୟତା ମୁଁ ଉପଲବ୍ଧି କରିବି ।

କିନ୍ତୁ କାହିଁକି ? ମୁଁ ଯେ....

ମୁଁ ଜାଣେ । ତମେ କାଲି ରାତିରେ ଯାହାଥିଲ, ଆଜି ଏଇ ମୁହୂର୍ତ୍ତରେ ଆଉ ତାହା ନାହଁ । ରାତିରେ ତୁମେ ଥିଲ ରାଧିକାମୋହନ ରାଜଗୁରୁଙ୍କର ବିଶ୍ୱସ୍ତ ସହକର୍ମିଣୀ । ଆଉ ଆଜି ଏଇ ମୁହୂର୍ତ୍ତରେ ତମେ, ତମେ....ମୁଁ ନୀରବ ହୋଇଗଲି ।

ବୁଝିପାରିଥିଲି ହେମାଙ୍ଗିନୀର ମନ ଭିତରେ ବହୁ ବ୍ୟଥା, ବହୁ ବେଦନା ଭରି ରହିଚି । ଯଦି ଥରେ ତା'ର ଅନ୍ତର ଭିତରେ ପ୍ରବେଶ କରିହୁଏ, ତେବେ ହେମାଙ୍ଗିନୀ ହେବ ମୋର ଏକମାତ୍ର ମୁକ୍ତି ସଂକେତ । ମୁଁ ଅଳ୍ପ ସମୟ ନୀରବ ରହି କହିଲି, ତମର ଋଣ ମୁଁ ଜୀବନରେ ପରିଶୋଧ କରି ପାରିବି ନାହିଁ । ତମର ସୌହାର୍ଦ୍ଦ୍ୟପୂର୍ଣ୍ଣ ବ୍ୟବହାର ମୋର ସବୁଦିନ ମନେ ରହିବ ।

ବାହାରୁ କ'ଣ ଗୋଟାଏ ଶବ୍ଦ ଶୁଣି ହେମାଙ୍ଗିନୀ ଟିକିଏ ଚଞ୍ଚଳ ହୋଇ ପଡ଼ିଲା । କହିଲା, ବର୍ତ୍ତମାନ ମୁଁ ଯାଉଛି । ଆଜି ଆଉ ଦେଖାହେବ ନାହିଁ । ତେବେ ଗୋଟିଏ କଥା ମୁଁ ତମକୁ କହି ଯାଉଛି । ଏଠାରେ ଯେଉଁମାନେ ତମର ଖବର ଅନ୍ତର ବୁଝିବେ, ସେମାନଙ୍କ କଥା ତମେ ମାନି ଚଳିବ । ଯିଏ ଯାହା କହିବ, ତାହା ସେଇ ମୁହୂର୍ତ୍ତରେ ପାଳନ କରିବ । ତାହେଲେ ତମର କୌଣସି କ୍ଷତି ହେବ ନାହିଁ ।

ହେମାଙ୍ଗିନୀ ଚଞ୍ଚଳ ହୋଇ ପଡ଼ିଥିଲା ।

ଆଉ ତା'ହେଲେ ତମ ସହିତ ଦେଖା ହେବନି ? ପଚାରିଲି ।

ହେବ, ହେବ । କିନ୍ତୁ....ହେମାଙ୍ଗିନୀ କଥା ଅସମାପ୍ତ ରଖି ଚାଲିଗଲା । ମୁଁ ଦେଖିଲି ସେ ଏତେ କ୍ଷିପ୍ର ଗତିରେ ଘରୁ ବାହାରି ଚାଲିଗଲା ଯେ, ଆଖି ପିଛାଡ଼ିବାକୁ ବି ମୁଁ ଅବସର ପାଇ ନ ଥିଲି ।

ଘରର ଦରଜାଟା ବାହାରୁ ବନ୍ଦ ହୋଇଗଲା ।

ମୁଁ ପୁଣି ବିଛଣା ଉପରେ ଶୋଇ ପଡ଼ିଲି ।

ଖାଲି ଦୁଶ୍ଚିନ୍ତା ଆଉ ଦୁର୍ଭାବନା । ଏହା ଭିତରେ ଦୁଇଟି ଦିନ କଟି ଯାଇଛି । ଯଥା ସମୟରେ ଖାଦ୍ୟ ସାମଗ୍ରୀ ତକ ଆସି ପହଞ୍ଚି ଯାଉଛି । ସେତିକି । ତା'ଛଡ଼ା ଆଉ କାହାରି ଦେଖା ଦର୍ଶନ ନାହିଁ । ମୋତେ ସେଇ କୋଠରିଟିରେ ଶୋଇ ଶୋଇ ବନ୍ଦୀ ଜୀବନ କଟାଇବାକୁ ପଡୁଛି ।

ମନଟା ମୋର ଦୁଶ୍ଚିନ୍ତାରେ ଭାରି ଭାରି ହୋଇ ଉଠିଚି । ହେମାଙ୍ଗିନୀକୁ କେନ୍ଦ୍ରକରି ଯେଉଁ ସାମାନ୍ୟ ସାନ୍ତ୍ୱନା ଟିକକ ଥିଲା, ସେତକ ମଧ୍ୟ ଧୀରେ ଧୀରେ ମରି ଆସିଲାଣି । ସେ ବି ଆଉ ଆସି ନାହିଁ ।

ମୋର କ'ଣ ମୁକ୍ତିର ଆଉ କୌଣସି ପଥ ନାହିଁ ? ଘରୁ ବାହାରି କେଉଁ ଆଡ଼େ ଯିବାର ଉପାୟ ନାହିଁ । ଯେତେବେଳେ ବାହାରିବାକୁ ଚେଷ୍ଟା କରିଚି, ଦେଖିଛି କାହାର ସତର୍କ ଦୃଷ୍ଟି ମୋ ଉପରେ ନିବଦ୍ଧ ରହିଚି, କେତେବେଳେ ବନ୍ଧୁକର ନଳିଟା ମୋତେ ଲକ୍ଷ୍ୟ କରି ମୋ ସହିତ ଘୂରି ବୁଲିଚି । ମୁକ୍ତି, ନା ମୁକ୍ତିର ମନ୍ତ୍ର ମୋତେ ଭୁଲିଯିବାକୁ ହେବ ।

ସେଦିନ ସଂଧ୍ୟା ହୋଇ ଆସୁଥିଲା । ଅନ୍ଧକାର ଘନେଇ ଆସୁଥିଲା ମୋ କୋଠରୀକୁ । ମୁଁ ବିଛଣାରେ ଶୋଇ ଶୋଇ ମୋ ଅନ୍ଧକାର ଭବିଷ୍ୟତର କଥା ଚିନ୍ତା କରୁଥିଲି । ମୁଁ ଠକି ଯାଇଛି । ଏଥର ନିଶ୍ଚୟ ଠକି ଯାଇଛି । ହେମାଙ୍ଗିନୀ ପଛରେ ନିଶାର୍ଦ୍ଧରେ ଏପରି ବେପରୁଆ ଭାବରେ ବାହାରି ଆସିବା ଆଦୌ ଠିକ୍ ହୋଇ ନାହିଁ ।

ଠକ୍ କରି ଗୋଟାଏ ଶବ୍ଦ ହେଲା । ଦରଜା ଖୋଲିବାର ଶବ୍ଦ । ସେ ଶବ୍ଦ ସହିତ ମୁଁ ଅଭ୍ୟସ୍ତ ହୋଇ ଯାଇଥିଲି । ଉତ୍ସାହ ବି ନ ଥିଲା ଆଉ କିଏ ଆସୁଛି ଚାହିଁବା ପାଇଁ ।

କିନ୍ତୁ ସେଇ ପ୍ରାୟାନ୍ଧକାର ଗୃହରେ ଯିଏ ଆସି ମୋ ବିଛଣା ପାଖରେ ଠିଆହେଲା, ମୁଁ ବିଶ୍ୱାସ କରି ପାରି ନ ଥିଲି ।

ହେମାଙ୍ଗିନୀ, ତୁମେ ?

ହଁ ମୁଁ । ତମର ଆଉ କୌଣସି କଷ୍ଟ ହୋଇ ନାହିଁ ତ ?

କିନ୍ତୁ ତମେ ଗଲ କୁଆଡ଼େ ? ସେଇ ଯେ ସେଦିନ ଆସୁଚି କହି ବାହାରିଗଲ....

ହେମାଙ୍ଗିନୀ ମୋ ଶେଯ ଉପରେ ବସି ପଡ଼ିଥିଲା । ମୁଁ ଟିକିଏ ଦୂରକୁ ଘୁଞ୍ଚିଗଲି । ସେ କହିଲା, ଉପାୟ ନ ଥିଲା । ତେବେ ଆଜି ଏତିକି ବେଳଠାରୁ କାଲି ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ ମୁଁ ଏଠାରେ ରହି ପାରିବି ।

କ'ଣ ଛୁଟି ଆଣିଛ ? ମୁଁ ପଚାରିଲି ।

ହେମାଙ୍ଗିନୀ ହସି ଉଠିଲା । କହିଲା, ଛୁଟି । ମୋ ଜୀବନରେ ଛୁଟି ଯେଉଁଦିନ ମିଳିବ, ସେ ଦିନେ ଅଧେ ପାଇଁ ନୁହେଁ । ସବୁଦିନ ପାଇଁ । ବୁଝିଲ ?

ଅନ୍ଧକାରରେ ମୁଁ ହେମାଙ୍ଗିନୀର ମୁଖ ଭଙ୍ଗୀ ଲକ୍ଷ୍ୟ କରି ପାରୁ ନଥିଲି, ଆଉ ବୁଝି ପାରୁ ନ ଥିଲି ଆଜିର ଅଭିଯାନର ଉଦ୍ଦେଶ୍ୟ । ତେବେ ହେମାଙ୍ଗିନୀ ଯେଉଁ କାରଣରୁ ହେଉ, ମୋ ପ୍ରତି ଯେ ସାମାନ୍ୟ ଆସକ୍ତ ହୋଇ ପଡ଼ିଚି ସେ କଥା ମୁଁ ତା' ଆଚରଣରୁ ବୁଝି ପାରୁଥିଲି । କହିଲି, ମୁଁ ତୁମପାଇଁ ପ୍ରତୀକ୍ଷା କରି କରି ଅଧୈର୍ଯ୍ୟ ହୋଇ ପଡ଼ିଥିଲି । ମୋ ଜୀବନର ସମସ୍ତ ସ୍ୱପ୍ନ, ସମସ୍ତ କାମନା କ'ଣ ଏଇଠି ଶୁଖି ଝରି ପଡ଼ିବ ? ତମେ ଏଇଆ ଚାହଁ ?

ମୁଁ ଯେ ନିରୁପାୟ । ମୋ ଚାରି ପାଖରେ ଅଜସ୍ର ପ୍ରହରୀ । ତା' ନ ହେଲେ, ତା' ନ ହେଲେ....ମୁଁ....ମୁଁ....ସେ କ'ଣ କହିବାକୁ ଯାଇ ନୀରବ ହୋଇଗଲା କାହିଁକି ?

କୁହ ହେମାଙ୍ଗିନୀ, ନୀରବ ହୋଇଗଲ କାହିଁକି ?

ନାଁ, କିଛି ନୁହେଁ । ମୋ ପକ୍ଷରେ ଭାବପ୍ରବଣତା ଶୋଭା ପାଏ ନାହିଁ । ତା'ପରେ

କୁହ । ଏ ଦୁଇଦିନରେ କୌଣସି କଷ୍ଟ ହୋଇ ନାହିଁ ତ ?

ବନ୍ଦୀ ଜୀବନରେ ପୁଣି ସୁବିଧା ଅସୁବିଧାର ପ୍ରଶ୍ନ । ଛାଡ଼ । ତୁମେ ତୁମ କାମରେ ଯାଅ । ମୁଁ ଟିକିଏ ନିଶ୍ଚିନ୍ତରେ ଶୋଇ ରହି ମୋ ମୁକ୍ତିର ଚିନ୍ତା କରେ ।

ମୁକ୍ତି ! ହେମାଙ୍ଗିନୀ ହୋ ହୋ ହୋଇ ହସିଉଠିଲା । ମୁଁ ବି ଦିନେ ମୁକ୍ତି ଚାହିଁଥିଲି, କିନ୍ତୁ ପାଇଲି ନାହିଁ । ଏଠାରୁ ମୁକ୍ତି କେହି ପାଇନାହିଁ, ପାଇବ ନାହିଁ । ତୁମେ ବି ମୁକ୍ତି ଚିନ୍ତା ଭୁଲି ଯାଅ । ଯେମିତି ଅନ୍ୟମାନେ ଭୁଲି ଯାଇଛନ୍ତି, ମୁଁ ଭୁଲି ଯାଇଛି ।

ହେମାଙ୍ଗିନୀ ! ମୁଁ ତାକୁ ଦୁଇ ହାତରେ ଧରି ହଲେଇ ଦେଲି । ସେ ମୋରି ଉପରକୁ ଢଳି ପଡ଼ିଲା । ଯେପରି ଦେହରେ ପ୍ରାଣ ନାହିଁ ।

ମନଟା ମୋର ଏକ ଅଭାବନୀୟ ଆନନ୍ଦରେ ପୂରି ଉଠିଲା । ଏଇ ଉପଯୁକ୍ତ ସମୟ । ଏହିପରି ଦୁର୍ବଳ ମୁହୂର୍ତ୍ତରେ ମଣିଷ ତା ମନର ସମସ୍ତ ଦୃଢ଼ତା ହରେଇ ବସେ ।

ମୁଁ ହେମାଙ୍ଗିନୀକୁ ମୋ ଆଡ଼କୁ ଭିଡ଼ିନେଇ କହିଲି, ତମେ ବି ମୁକ୍ତି ଚାହୁଁଥିଲ ହେମ !

ସେ ମୋ କାନ୍ଧ ଉପରେ ମୁହଁ ରଖି ଦୀର୍ଘଶ୍ୱାସ ଛାଡୁଥିଲା । ମୁହଁରୁ ତା'ର ଭାଷା ହଜି ଯାଇଥିଲା ।

ହେମାଙ୍ଗିନୀ, କୁହ, କୁହ ତୁମେ ମୁକ୍ତି ଚାହଁ ? ମୁଁ ମୋ ଜୀବନର ସମସ୍ତ ମୂଲ୍ୟ ବିନିମୟରେ ତମକୁ ମୁକ୍ତି ଦେବାକୁ ଚେଷ୍ଟା କରିବି ।

ହେମାଙ୍ଗିନୀ ମୋ ପ୍ରଶ୍ନର କୌଣସି ଉତ୍ତର ଦେବା ଆଗରୁ ଦରଜାରେ କିଏ ଯେପରି କରାଘାତ କଲା ।

ଏତେ ଦ୍ରୁତ, ଏତେ ପ୍ରଖର ହେମାଙ୍ଗିନୀର ଚେତନା ଶକ୍ତି ! ସଂଗେ ସଂଗେ ସେ ଉଠିଯାଇ ପ୍ରଦୀପ ଜାଳିବା ପାଇଁ ଠିଆ ହୋଇଗଲା । ଘର କ୍ରମଶଃ ଆଲୋକିତ ହୋଇ ଆସିବା କ୍ଷଣି ମୁଁ ଦେଖିଲି, ଦୂରରେ ଜଣେ ଖାଦ୍ୟ ସାମଗ୍ରୀ ଧରି ଠିଆ ହୋଇଛି । ତା'ର ସମସ୍ତ ଅଙ୍ଗ ଅବୟବ କଳା ପୋଷାକରେ ଆବୃତ୍ତ ।

ହେମାଙ୍ଗିନୀ ତା'ହାତରୁ ଖାଦ୍ୟ ପଦାର୍ଥ ଆଣି ଟେବୁଲ ଉପରେ ରଖିଲା ।

ଲୋକଟି ଧୀରେ ଧୀରେ ଦୂରେଇ ଗଲା ।

ମୁଁ ହେମାଙ୍ଗିନୀ ମୁହଁକୁ ଚାହିଁଲି ।

ଆଲୋକର ଦୀପ୍ତିରେ ସେ ଯେପରି ପ୍ରଦୀପ୍ତ ହୋଇ ଉଠିଛି । ସେ ଆଉ ଅନ୍ଧକାରର ହେମ ନୁହେଁ, ଆଲୋକର ହେମାଙ୍ଗିନୀ ।

ମୋ ମୁହଁକୁ ଚାହିଁ ହସିଲା । କହିଲା, ବେଳେ ବେଳେ ମୁଁ ବଡ଼ ଦୁର୍ବଳ ହୋଇ ପଡ଼େ । କିନ୍ତୁ ଏତିକି ରକ୍ଷା ଯେ ସେଇ ଦୁର୍ବଳତାର ମୁହୂର୍ତ୍ତ ଗୁଡ଼ାକ ଅତି ସଂକ୍ଷିପ୍ତ । ତା' ନହେଲେ....

କ'ଣ ହୁଅନ୍ତା ? ମୁଁ ପଚାରିଲି ।

ସେ ହସିଲା । କହିଲା, ହୁଅନ୍ତା ଆଉ କ'ଣ ! ନିଅ ଖାଅ । ମୋ ଆଡ଼କୁ ଗୋଟିଏ

ପ୍ଲେଟ ବଢ଼େଇ ଦେଲା ।

ଆଚ୍ଛା ହେମାଙ୍ଗିନୀ ! ଗୋଟାଏ ପ୍ରଶ୍ନ, ମୁଁ ଏଯାଏ ଭୁଲି ପାରୁ ନାହିଁ । ସେଦିନ ରାତିରେ, ଯେଉଁଦିନ ମୁଁ ତୁମକୁ ରାଧିକାମୋହନ ଘରୁ ବାହାରୁଥିବାର ଦେଖିଲି, ସତ କହିଲ ତମେ କ'ଣ ତା' ଘରେ ରାତ୍ରି ଭୋଜନ ରଖି ଫେରୁଥିଲ ନା....ତେଣିକି ମୁଁ ଆଉ ଉଚ୍ଚାରଣ କରି ପାରିଲି ନାହିଁ ।

ହେମାଙ୍ଗିନୀ ମୁହଁ ଆରକ୍ତ ହୋଇ ଉଠିଲା । କହିଲା, ସେ ପ୍ରଶ୍ନର ଉତ୍ତର ମିଳେ ନାହିଁ । ତେବେ ତମକୁ ଆଜି ଆଉ ଭୟ ନାହିଁ ଯେତେବେଳେ, ଉତ୍ତର ଦେବାରେ ବିଶେଷ ଅସୁବିଧା ନାହିଁ । ସେଦିନ ତମେ ରାଧିକାମୋହନଙ୍କ ଘରେ ଯେଉଁ ନାରୀ କଣ୍ଠର ଚିତ୍କାର ଶୁଣିଥିଲ, ସେ ମୋରି ଏବଂ ଇଚ୍ଛାକୃତ ।

ମାନେ ?

ଖାଲି ତମକୁ ଆକୃଷ୍ଟ କରେଇବା ପାଇଁ ।

ହୁଁ, ବୁଝିଲି । ସବୁଗୁଡ଼ା ତା'ହେଲେ ଅଭିନୟ ?

ହେମାଙ୍ଗିନୀ ମୋ ମୁହଁକୁ ଚାହିଁ ହସିଲା ।

ତା'ହେଲେ ତମର ଏହି ରହସ୍ୟ ଚକ୍ର ମଧ୍ୟରେ ରାଧିକାମୋହନଙ୍କର ଭୂମିକା କ'ଣ ?

ପାର୍ଶ୍ୱ ନାୟକ ।

ଏଇ ରହସ୍ୟ ଚକ୍ରଟା କାହାକୁ କେନ୍ଦ୍ରକରି ? ମୁଁ ପଚାରିଲି ।

ତା'ର ଉତ୍ତର ତ ତମେ ନିଜେ । ଯାହାର ସନ୍ଧାନରେ ଆସି ତମେ ଆଜି ଏଠାରେ ବନ୍ଦୀ, ତା' କଥା କ'ଣ ଏତେ ଶୀଘ୍ର ଭୁଲିଗଲ ?

ନିଶିଗନ୍ଧା ! ନିଶିଗନ୍ଧା !! ପ୍ରକୃତରେ ସେହି ନିଶିଗନ୍ଧାର ରହସ୍ୟମୟ ଭୂମିକା କଥା ମୁଁ ଚିନ୍ତା କରିପାରୁ ନଥିଲି ।

ଆଚ୍ଛା, ତମେ କ'ଣ ନିଶିଗନ୍ଧା ସମ୍ବନ୍ଧରେ କିଛି ଜାଣିନାହଁ ? ଯେଉଁଥିପାଇଁ ତମ ରାଜାସାହେବଙ୍କର ଏତେ ହୃତ୍‌କମ୍ପ, ଅଥଚ.....

କାଲି ପୁଣି ଗୋଟାଏ ମର୍ଡ଼ର ହୋଇଛି, ହେମାଙ୍ଗିନୀ କହିଲା ।

ମର୍ଡ଼ର ?

ହଁ । ରାଜାସାହେବ ନିଜେ ତାଙ୍କ ଅନ୍ତରଙ୍ଗ ବନ୍ଧୁ ନରେନ୍ଦ୍ରପୁରର ରାଜାସାହେବଙ୍କୁ ମର୍ଡ଼ର କରିଛନ୍ତି । ଯେଉଁଥିପାଇଁ ଆଜି ନନ୍ଦନଗଡ଼ରେ ଅଭୂତପୂର୍ବ ଚାଞ୍ଚଲ୍ୟ ଖେଳି ଯାଇଛି ।

ମୁଁ ସ୍ତବ୍‌ଧ ହୋଇ ବସିଗଲି ମୁହୂର୍ତ୍ତେ । ତା'ପରେ ଧୀରେ ଧୀରେ କହିଲି, ନରେନ୍ଦ୍ରପୁରର ରାଜାସାହେବ ମର୍ଡ଼ର ହୋଇଛନ୍ତି ?

ହଁ, ତମର କ'ଣ ବିଶ୍ୱାସ ହେଉନାହିଁ ?

ଆଉ ମର୍ଡ଼ର କରିଛନ୍ତି ନନ୍ଦନଗଡ଼ର ରାଜା ସାହେବ ? କ'ଣ ଚେସ୍ ଖେଳର ପରାଜୟ ସହି ନ ପାରି ?....

ନା ନା । ଏ ମର୍ଡ଼ରର ମୂଳ ସେହି ନିଶିଗନ୍ଧା । କିନ୍ତୁ ରାଜାସାହେବ ଅସ୍ୱୀକାର କରୁଛନ୍ତି । ସେ କୁହନ୍ତି ଯେ ଗୁଳି ସେ ଚଳେଇଛନ୍ତି ସତ, କିନ୍ତୁ ନରେନ୍ଦ୍ରପୁରର ରାଜା ସାହେବ ତାଙ୍କ ଗୁଳିରେ ମରି ନାହାନ୍ତି । ଆଉ ଜଣେ କେହି ତାଙ୍କୁ ହତ୍ୟା କରିଛି ।

ବାଃ, ବା । ଚମତ୍କାର ଘଟଣା ତ । ତା'ପରେ କ'ଣ ହେଲା ?

ପୋଲିସ କିନ୍ତୁ ନରେନ୍ଦ୍ରପୁରର ରାଜା ସାହେବଙ୍କ ପେଟରୁ ଯେଉଁ କାର୍ତ୍ତୁଜ ଉଦ୍ଧାର କରିଚି, ସେଇ କାର୍ତ୍ତୁଜ ରାଜା ସାହେବ ବ୍ୟବହାର କରନ୍ତି ।

ତା'ପରେ ?

ରାଜା ସାହେବଙ୍କ ବନ୍ଧୁକ ଓ କାର୍ତ୍ତୁଜ ପରୀକ୍ଷା ପାଇଁ ପଠା ହୋଇଛି ।

ମର୍ଡ଼ରଟା କ'ଣ କାଲି ରାତିରେ ହୋଇଛି ?

ତା'ଛଡ଼ା ଆଉ ହୁଅନ୍ତା କେତେବେଳେ ?

ନରେନ୍ଦ୍ରପୁରର ରାଜ ସାହେବ ବା ରାତିରେ ମହାନଦୀ ପାର ହୋଇ କାହିଁକି ଆସିଥିଲେ ?

ହୁଏତ ସେଇ ନିଶିଗନ୍ଧାର ସନ୍ଧାନରେ । ହେମାଙ୍ଗିନୀ ହୋ ହୋ ହୋଇ ହସି ଉଠିଲା ।

ତା'ହେଲେ ଏଥର ଆଉ ନନ୍ଦନଗଡ଼ର ରାଜାସାହେବଙ୍କର ରକ୍ଷା ନାହିଁ । ରାଜ ରାଜାରେ ଲଢ଼େଇ । ପୋଲିସ ଆଉ ସହଜରେ ଛାଡ଼ୁ ନାହିଁ ।

କ'ଣ ହେବ କେଜାଣି । ରାଧିକାମୋହନ ରାଜାଙ୍କ ନିର୍ଦ୍ଦୋଷିତା ପ୍ରମାଣ ପାଇଁ ଲାଗି ପଡ଼ିଛନ୍ତି । ସେଥିପାଇଁ ତ ମୁଁ ତମ ପାଖକୁ ଚାଲି ଆସିଲି ।

ଓଃ, ବୁଝିଲି ବୁଝିଲି । ଆଚ୍ଛା ତମେ କ'ଣ ଚାହଁ ? ତମ ରାଜା ସାହେବଙ୍କର ମୁକ୍ତି ନା ଫାଶୀ ?

ମୁଁ ଲୁଣ ଖାଉଚି ତାଙ୍କର । କିପରି ତାଙ୍କ ଫାଶୀ କାମନା କରିବି ?

ତା'ହେଲେ ତମୁକୁ ଗୋଟାଏ କାମ କରିବାକୁ ପଡ଼ିବ ।

କ'ଣ ?

ରାଜା ସାହେବଙ୍କ ପାଖକୁ ଯିବାକୁ ହେବ ।

କାହିଁକି ?

କହିବ, ନରେନ୍ଦ୍ରପୁରର ରାଜାସାହେବଙ୍କୁ କିଏ ହତ୍ୟା କରିଚି ମୁଁ ତାକୁ ଜାଣେ ଏବଂ ରାଜାସାହେବ ଯଦି ମୋତେ ସୁବିଧା ଦିଅନ୍ତି, ତା'ହେଲେ ମୁଁ ତାକୁ ଧରାଇ ଦେଇ ପାରିବି ।

ହେମାଙ୍ଗିନୀ ମୋ କଥା ଶୁଣି ଏତେ ଜୋର୍‌ରେ ହସି ଉଠିଲା ଯେ, ମୋର ମନେ ହେଲା, ସେ ଉନ୍ମାଦିନୀ ହୋଇ ଯାଇଛି । ବହୁ ସମୟ ପରେ ଧୀରେ ଧୀରେ ହସ ଥମେଇ କହିଲା, ଆମ ରାଜା ସାହେବ ଏତେ ବୋକା ନୁହନ୍ତି ଯେ, ତୁମର ଏହି

ପିଲାକିଆମୀ ଯୁକ୍ତିରେ ସେ ତୁମକୁ ମୁକ୍ତି ଦେଇ ଦେବେ । ସେ ପୁଣି ହସିବାକୁ ଲାଗିଲା ।

ନରେନ୍ଦ୍ରପୁରର ରାଜା ସାହେବଙ୍କୁ ହତ୍ୟା କରା ହୋଇଛି । ହତ୍ୟା କରିଛନ୍ତି ସ୍ୱୟଂ ନନ୍ଦନଗଡ଼ର ରାଜା ସାହେବ ।

ମୁଁ ସମଗ୍ର ରାତି ଶୋଇ ପାରି ନଥିଲି । ହେମାଙ୍ଗିନୀ ରାତି ଅଧଯାଏ କ'ଣ ଯେ ବକ୍ ବକ୍ ହେଉଥିଲା, ସେଆଡ଼େ ମୁଁ ଲକ୍ଷ୍ୟ କରିପାରି ନଥିଲି । ମୁଁ କେବଳ ଭାବୁଥିଲି ନନ୍ଦନଗଡ଼ର ରାଜା ସାହେବଙ୍କ କଥା । ସେ ହତ୍ୟାକାରୀ ନୁହନ୍ତି ବୋଲି ପୋଲିସ୍ ଆଗରେ ସଫେଇ ଦେଇଛନ୍ତି ।

ହୁଏତ ତାଙ୍କ ଉକ୍ତି ସତ୍ୟ ହୋଇପାରେ । ନ ହେବ ବା କାହିଁକି ? କିନ୍ତୁ ତାଙ୍କରି ବନ୍ଧୁକର କାର୍ତ୍ତୁଜ୍ ଯେ ନରେନ୍ଦ୍ରପୁରର ରାଜାସାହେବଙ୍କ ଦେହରୁ ବାହାରିଛି !

ତେବେ ! ତାଙ୍କ ବନ୍ଧୁକର କାର୍ତ୍ତୁଜ କ'ଣ ଅନ୍ୟ କେହି ବ୍ୟବହାର କରିବା ସମ୍ଭବ ନୁହେଁ ?

ହୁଏତ ସମ୍ଭବ । ତେବେ କିଏ ସେହି ଦ୍ୱିତୀୟ ବ୍ୟକ୍ତି ? ହୁଏତ ତା'ରିଠାରୁ ମିଳିବ ନିଶିଗନ୍ଧାର ଇତିବୃତ୍ତି ।

ହଠାତ୍ ଘର ଭିତରକୁ ଆଲୋକର ବନ୍ୟା ମାଡ଼ି ଆସିଲା । ଦରଜା ଖୋଲି ଯିଏ ଆସି ଠିଆ ହେଲା ମୋ ସାମନାରେ, ମୁଁ ଆଶ୍ଚର୍ଯ୍ୟ ହେଲି ନାହିଁ । କହିଲି, ଆସନ୍ତୁ, ଆସନ୍ତୁ ରାଧିକାମୋହନ ବାବୁ, ମୁଁ ଆପଣଙ୍କୁ ଅପେକ୍ଷା କରୁଥିଲି ।

ରାଧିକାମୋହନ ରାଜଗୁରୁ ଧୀର ପଦ ଚାଳି ମୋ ପାଖକୁ ଆସିଲେ । ଦେହ ମୁହଁରେ ତାଙ୍କରି କ୍ଲାନ୍ତି ଭରି ରହିଥିଲା । ଆଶ୍ଚର୍ଯ୍ୟ ହୋଇ ସେ ପଚାରିଲେ, ଆପଣ ମୋତେ ପ୍ରତୀକ୍ଷା କରିଥିଲେ ?

ନିଶ୍ଚୟ । ଆପଣ ତ ମୋର ଏକମାତ୍ର ମୁକ୍ତିଦାତା । ଆଉ ମୁଁ ଜାଣିଥିଲି ଆପଣ ମୋତେ ମୁକ୍ତି ଦେବା ପାଇଁ ଆସିବେ ।

କିନ୍ତୁ.....ରାଧିକାମୋହନ କ'ଣ କହିବାକୁ ଯାଇ ନୀରବ ହେଲେ ।

ମୁଁ ତାଙ୍କ ମୁହଁକୁ ଏକ ଦୃଷ୍ଟିରେ ଚାହିଁଥିଲି ।

ଆମର ଖୁବ୍ ଅନ୍ୟାୟ ହୋଇଛି । ରାଜାସାହେବ ଆପଣଙ୍କ ଠାରୁ କ୍ଷମା ପ୍ରାର୍ଥନା କରିବା ପାଇଁ ମୋତେ ପଠାଇଛନ୍ତି ।

ମୁଁ ସଂଗେ ସଂଗେ ଉଠି ଠିଆ ହେଲି । କହିଲି, ବର୍ତ୍ତମାନ ଆଉ ସମୟ ନଷ୍ଟ କରି ଲାଭ ନାହିଁ । ଯେତେ ଶୀଘ୍ର ସମ୍ଭବ ଆମକୁ ନନ୍ଦନଗଡ଼ରେ ପହଞ୍ଚିବାକୁ ହେବ ।

ଆପଣ କ'ଣ....

ହଁ ମୁଁ ସବୁକଥା ଜାଣିଛି ରାଧିକାମୋହନ ବାବୁ । ରାଜା ସାହେବ ଯେ ନିର୍ଦ୍ଦୋଷ, ହୁଏତ ମୁଁ ପ୍ରମାଣିତ କରେଇ ପାରିବି ।

ରାଜାସାହେବଙ୍କୁ ନିର୍ଦ୍ଦୋଷ ପ୍ରମାଣିତ କରେଇ ପାରିବେ ? ସତ କହୁଛନ୍ତି ?

ହୁଏତ ପାରିବି । କିନ୍ତୁ ଅନେକ ଡେରି ହୋଇଗଲା । ହତ୍ୟାକାଣ୍ଡ ଦିନ ମୋର ସେଠାରେ ଉପସ୍ଥିତ ହେବା ଆବଶ୍ୟକ ଥିଲା । ଯା ହେଉ ଚାଲନ୍ତୁ । ଆଉ ଡେରି କଲେ ଚଳିବ ନାହିଁ ।

ରାଧିକାମୋହନ ରାଜଗୁରୁ ଆଗେ ଆଗେ ଏବଂ ମୁଁ ତାଙ୍କ ପଛେ ପଛେ, ଆଗଉେ ଚାଲିଲୁ ।

ମୁଁ ଚିନ୍ତା କରୁଥିଲି ନନ୍ଦନଗଡ଼ର ରାଜାସାହେବଙ୍କ କଥା । ବିଚରା ! ତାଙ୍କର ରାଜକୀୟ ସମସ୍ତ ଦମ୍ଭ, ଅଭିମାନ ଆଜି ଚୂର୍ଣ୍ଣ ହୋଇଛି । ଦୁନିଆ ଆଖିରେ ସେ ଦୋଷୀ ସାବ୍ୟସ୍ତ ହୋଇଛନ୍ତି । ଏହାଠାରୁ ବଡ଼ କଳଙ୍କ ଆଉ କ'ଣ ହୋଇପାରେ ? ତାଙ୍କର ସେହି କଳଙ୍କ ମୋଚନ ପାଇଁ କ୍ଷୀଣ ଆଶା ପୋଷଣ କରି ରାଜାସାହେବ ପଠାଇଛନ୍ତି ରାଧିକାମୋହନକୁ । କାଳେ ହୁଏତ....

କିନ୍ତୁ କେଉଁ ମୁହଁରେ ରାଜାସାହେବ ପୁଣି ମୋର ସାହାଯ୍ୟ ଲୋଡ଼ିଛନ୍ତି ? ମୋତେ ମୃତ୍ୟୁ ମୁଖକୁ ଠେଲି ଦେବା ପରେ, ମୋ ଠାରୁ ପୁଣି ସହଯୋଗ ଆଶା କରିବା କ'ଣ ଉଚିତ୍ ହୋଇଚି ତାଙ୍କର ? ନା ରାଜାସାହେବ ଏ ସବୁ ଘଟଣା ଜାଣି ନାହାନ୍ତି ? ଯାହା ହେଉନା କାହିଁକି ମୋ ମନଟା କାହିଁକି ପ୍ରବଳ ଉତ୍ତେଜନାରେ ଭରି ଯାଇଥିଲା ।

ଆମେ ଆସି ଗୋଟାଏ ଜାଗାରେ ଠିଆ ହେଲୁ । ରାଧିକାମୋହନ କହିଲା, ଏଉଠୁ ଆମେ ମଟରରେ ଯିବା । ଜଙ୍ଗଲିଆ ପଥ ଶେଷ ହୋଇ ଯାଇଛି ।

ଯେଉଁ ମଟର ଗାଡ଼ିରେ ମୁଁ ଗେଷ୍ଟ ହାଉସ୍‌କୁ ଆସିଥିଲି ପୁଣି ସେଇ ମଟରରେ ମୋତେ ରାଜପ୍ରାସାଦ ଅଭିମୁଖରେ ଫେରି ଯିବାକୁ ହେଲା । ମୋ ଜୀବନର ପରମ ସୌଭାଗ୍ୟ ମଣିବାକୁ ହେବ ।

ଗାଡ଼ି ଭିତରେ କିଛି ସମୟ ନୀରବତା ପରେ ମୁଁ ପଚାରିଲି, ଆଚ୍ଛା, ଏହି ହତ୍ୟାକାଣ୍ଡ ସମ୍ବନ୍ଧରେ ଆପଣଙ୍କର କ'ଣ ଧାରଣା ?

ରାଧିକାମୋହନ ନୀରବରେ ବସି କ'ଣ ଚିନ୍ତା କରୁଥିଲା । ମୋ ପ୍ରଶ୍ନର ଉତ୍ତର ଦେବାକୁ ଯାଇ କହିଲା, ଆପଣ ବିଶ୍ୱାସ କରନ୍ତୁ ମୁଁ ଏ ସମ୍ବନ୍ଧରେ କିଛି ଜାଣି ନାହିଁ ।

ତଥାପି....

ମୋତେ କ୍ଷମା କରିବେ । ଏ ଘଟଣା ସହିତ ମୋତେ ଜଡ଼ିତ କରିବେ ନାହିଁ ।

ଆପଣ ତା'ହେଲେ....

ମୁଁ ରାଜାସାହେବଙ୍କର ଲ' ଆଡ଼ଭାଇଜର ଥିଲି । ଲ' ବହି ଘାଣ୍ଟୁ ଘାଣ୍ଟୁ ମୋତେ ଦିନ ରାତି ଅଣ୍ଟୁ ନଥିଲା, ଅତଏବ.....

ହୁଁ, ମୁଁ ନୀରବ ରହିଲି । ସେଇ ମୁହୂର୍ତ୍ତରେ ମୋ ମାନସ ପଟରେ ଭାସି ଉଠିଲା

ରାଧିକାମୋହନ ରାଜଗୁରୁଙ୍କ ବାସ ଗୃହଟା । ଖଣ୍ଡିଏ ତ ଲ' ବହି ମୋ ଆଖିରେ ପଡ଼ି ନ ଥିଲା । ତା'ହେଲେ କ'ଣ ରାଧିକାମୋହନ ସହିତ ହତ୍ୟାକାଣ୍ଡର କୌଣସି ସଂପର୍କ ଅଛି ?

ଗାଡ଼ି ଆଗେଇ ଚାଲିଥିଲା । ରାଧିକାମୋହନର ଉଦାସ ଦୃଷ୍ଟି ଶୂନ୍ୟରେ ବୁଲୁଥିଲା । ମୁଁ ଚିନ୍ତାମଗ୍ନ ହୋଇ ପଡ଼ିଥିଲି । କିଛି ସମୟ ପରେ ପୁଣି ପଚାରିଲି, ଆଚ୍ଛା, ଆପଣ ନିଶିଗନ୍ଧା ସମ୍ବନ୍ଧରେ କିଛି ଜାଣନ୍ତି ?

ଉଁ । ନିଶିଗନ୍ଧା । ନା ନା, ମୋତେ ସେସବୁ କିଛି ଜଣା ନାହିଁ । ସାଧାରଣ ଲୋକଙ୍କ ଠାରୁ ନାନା ପ୍ରକାର ଗୁଜବ ଶୁଣାଯାଏ । ମୁଁ ସେଗୁଡ଼ା ବିଶ୍ୱାସ କରେ ନାହିଁ ।

ତଥାପି ଆପଣ ତ ରାଜାସାହେବଙ୍କର ମଙ୍ଗଳ ଚାହାନ୍ତି ।

ନିଶ୍ଚୟ । ତାଙ୍କର ଲୁଣ ଖାଉଚି ଯେତେବେଳେ.....

ଗାଡ଼ି ଯାଇ ରାଜପ୍ରାସାଦରେ ପ୍ରବେଶ କଲା । ପୋଲିସ ବେଷ୍ଟିତ ରାଜପ୍ରାସାଦ ଅତି ଭୟଙ୍କର ମନେ ହେଉଥିଲା । ରାଜାସାହେବ ତାଙ୍କ କକ୍ଷରେ ନଜରବନ୍ଦୀ ହେଲା ପ୍ରରି ରହିଥିଲେ ।

ରାଧିକାମୋହନ ମୋତେ ସଂଗରେ ନେଇ ରାଜାସାହେବଙ୍କ ସମ୍ମୁଖରେ ଉପସ୍ଥିତ କଲେ ।

ମୁଁ ରାଜାସାହେବଙ୍କ ମୁହଁକୁ ଚାହିଁ ପାରିଲି ନାହିଁ । ଦୁଇଦିନ ଆଗର ସେ ତେଜ, ସେ ଜ୍ୟୋତି ଯେପରି ମଉଳି ପଡ଼ିଛି । ରାଜାସାହେବ ମୋତେ ଦେଖିବାକ୍ଷଣି ଉତ୍ସାହିତ ହୋଇ ଉଠିଲେ । କହିଲେ, ମୁଁ ତୁମ ଉପରେ ଶେଷ ଭରସା କରିଛି ମାଇଁ ବୟ । ଆଶା କରୁଛି ରାଧିକାମୋହନ ତମକୁ ସବୁ କଥା କହିଥିବ ।

ରାଧିକାମୋହନ ମୋତେ ରାଜାସାହେବଙ୍କ ନିକଟରେ ପହଞ୍ଚାଇ ଦେଇ ଚାଲି ଯାଇଥିଲା । ମୁଁ ମୁଣ୍ଡ ହଲାଇ ସମ୍ମତି ଜଣାଇଲି । କହିଲି, ମୁଁ ଦୁର୍ଘଟଣା ସମ୍ବନ୍ଧରେ କିଛି କିଛି ଶୁଣିଛି ସତ, ମାତ୍ର ସେତିକି ସୂତ୍ର ଆପଣଙ୍କ ନିର୍ଦ୍ଦୋଷିତା ପ୍ରମାଣିତ କରେଇବା ପାଇଁ ଯଥେଷ୍ଟ ନୁହେଁ ।

ରାଜାସାହେବ ମୋ ଆଡ଼େ ଉଦାସ ଦୃଷ୍ଟିରେ ଚାହିଁ କହିଲେ, ମୁଁ ଯେ ନିର୍ଦ୍ଦୋଷ, ତୁମେ ବିଶ୍ୱାସ କରିପାରୁଚ ?

ଏଥିରେ ଅବିଶ୍ୱାସର ତ କିଛି କାରଣ ନାହିଁ । ତା'ଛଡ଼ା ମୁଁ ବର୍ତ୍ତମାନ ବେସରକାରୀ ଭାବରେ ଆପଣଙ୍କ ପାଖରେ ବସି ରହିଛି ଯେତେବେଳେ, ଆପଣ ମୋ ଆଗରେ ମିଥ୍ୟା ବା କୁହନ୍ତେ କାହିଁକି ?

ରାଜାସାହେବଙ୍କ ମୁଖମଣ୍ଡଳ କିପରି ଗମ୍ଭୀର ହୋଇ ଉଠିଲା, ସେ କହିଲେ, ତମେ ଏଇଠି ଭୁଲ୍ କରୁଛ ୟଙ୍ଗ୍ ମ୍ୟାନ । ମୋତେ ପ୍ରଥମରୁ ତୁମେ ନିର୍ଦ୍ଦୋଷି ଭାବରେ ଗ୍ରହଣ କରିନିଅ ନାହିଁ । ମୁଁ ଯେ ଜଣେ ପ୍ରତାପୀ, ଅତ୍ୟାଚାରୀ ଶାସକ, ଏ ସମ୍ବନ୍ଧରେ ଏକା ମୋ ରାଜ୍ୟରେ କାହିଁକି, ବହୁ ରାଜ୍ୟରେ ଜାଣିଛନ୍ତି । ଆଉ ରାତି ଅଧରେ ଯେ ମୁଁ ମଣିଷ

ଶୀକାର କରିବାକୁ ବାହାରେ, ଏବେ ବି ଲୋକେ ନିଜ ଆଖିରେ ଦେଖିଛନ୍ତି ବୋଲି କୁହନ୍ତି ଏବଂ ତାହା ସତ୍ୟ । ଏ କ୍ଷେତ୍ରରେ ନିଶାର୍ଦ୍ଧରେ, ମୋରି କମ୍ପାଉଣ୍ଡ ଭିତରେ, ମୋର ବନ୍ଧୁକର କାର୍ତ୍ତୁଜରେ ନରେନ୍ଦ୍ରପୁରର ରାଜା ସାହେବଙ୍କୁ କିଏ ଆଉ ହତ୍ୟା କରିପାରେ ? ଏହା ଅବିଶ୍ୱାସ୍ୟ । ପୋଲିସର ଉକ୍ତିରେ ଯଥେଷ୍ଟ ସତ୍ୟତା ଅଛି । ସେ ହୋ ହୋ ହୋଇ ହସି ଉଠିଲେ ।

ମୁଁ ନୀରବରେ ରାଜାସାହେବଙ୍କ ମୁଖଭଙ୍ଗୀ ଲକ୍ଷ୍ୟ କରୁଥିଲି ।

ହସ ଥମେଇ ସେ ପୁଣି କହିଲେ, ନୋ ନୋ ୟଙ୍ଗ୍ ମ୍ୟାନ, ଇଉ କ୍ୟାନ୍‌ଟ ହେଲ୍‌ପ ମି । ତୁମେ ମୋତେ ସାହାଯ୍ୟ କରି ପାରିବ ନାହିଁ । ନରେନ୍ଦ୍ରପୁରର ରାଜାସାହେବଙ୍କ ସହିତ ଶତ୍ରୁତା ଆମର ବହୁ ବର୍ଷର । ସେମାନେ ମୋ ବିରୁଦ୍ଧରେ ତାହାହିଁ ପ୍ରମାଣିତ କରେଇବାକୁ ଚାହାନ୍ତି । ବହୁ ବର୍ଷ ହେବ କୋର୍ଟରେ ଆମର ମକଦ୍ଦମା ଚାଲିଛି । ବର୍ତ୍ତମାନ ପରିସ୍ଥିତିରେ କେସ୍‌ଟା ତାଙ୍କ ଫେବରରେ ଥିଲା, ସେମାନେ କହିବାକୁ ଚାହାନ୍ତି ଯେ, ଏଇ ସୁଯୋଗରେ ମୁଁ ତାଙ୍କୁ ନିମନ୍ତ୍ରଣ କରି ଆଣି ହତ୍ୟା କରିଛି । ତାଙ୍କ ଲୟାରଙ୍କର ଏହା ହିଁ ବିଶ୍ୱାସ ଏବଂ ସେହି ବିଶ୍ୱାସ ନରେନ୍ଦ୍ରପୁରର ପୋଲିସର ମଧ୍ୟ ।

କିନ୍ତୁ ମୁଁ ଶୁଣିଥିଲି ନରେନ୍ଦ୍ରପୁର ସହିତ ନନ୍ଦନଗଡ଼ର ବନ୍ଧୁତା ବହୁ ଯୁଗର ।

ଇଉ ଆର୍ ରାଇଟ୍ ମାଇଁ ବୟ । ଗୋଟାଏ ଦୃଷ୍ଟିରୁ ତାହା ସତ୍ୟ । ମାଲିମକଦ୍ଦମା, ଯେ ତ କୋଟ୍ କଚେରୀର କଥା । କିନ୍ତୁ ଆମ ଆମ ଭିତରେ କୌଣସି ଦିନ ମନର ଅମେଳ ହୋଇ ନ ଥିଲା । ନେଭର୍, ନେଭର୍ । କେବେ ଆମେ ପରସ୍ପରକୁ ଶତ୍ରୁ ବୋଲି ଭାବି ନ ଥିଲୁ ।

ଯେଉଁ ରାତିରେ ନରେନ୍ଦ୍ରପୁରର ରାଜାସାହେବଙ୍କୁ ହତ୍ୟା କରାଗଲା, ସେଦିନ ଆପଣ କ'ଣ ତାଙ୍କୁ ନିମନ୍ତ୍ରଣ କରିଥିଲେ ?

ରାଜାସାହେବ ଟିକିଏ ଚିନ୍ତା କଲେ । ମୁଣ୍ଡ ହଲାଇ କହିଲେ, ଠିକ୍ ମୁଁ ତାଙ୍କୁ ନିମନ୍ତ୍ରଣ କରିଥିଲି କହିଲେ ଭୁଲ୍ ହେବ । ସେଦିନ ଆମର ଖେଳ ଶେଷ ହେଲା ନାହିଁ । ଆଉ ଖେଳଟା ଏପରି ଜମି ଉଠିଥିଲା ଯେ, ଅମେ ସମୟ ଜ୍ଞାନ ଭୁଲି ଯାଇଥିଲୁ, ଯେତେବେଳେ ଖେଳ ଶେଷ ହେଲା, ସେତେବେଳକୁ ରାତି ଗୋଟାଏ । ମୁଁ ତାଙ୍କୁ ସେହି ସମୟରେ ରାତ୍ରି ଭୋଜନ ଓ ବିଶ୍ରାମ ପାଇଁ ଅନୁରୋଧ କଲି । ସେ ଅମତ ହେଲେ ନାହିଁ । କିନ୍ତୁ ତୁମେ ଆଶ୍ଚର୍ଯ୍ୟ ହେବ ଯୁବକ, ସେଇଦିନ ରାତିରେ ସେ ପ୍ରଥମଥର ପାଇଁ ନନ୍ଦନଗଡ଼ରେ ରାତ୍ରି ଯାପନ ପାଇଁ ସମ୍ମତ ହୋଇଥିଲେ ଏବଂ ସେଇ ହେଲା ତାଙ୍କ ଜୀବନର ଶେଷ ରାତ୍ରି ।

ତା'ପରେ ? ମୁଁ ପଚାରିଲି ।

ଆମେ ଦୁହେଁ ଏକତ୍ର ବସି ରାତ୍ରି ଭୋଜନ କରିଥିଲୁ । ମୁଁ ନିଜେ ନେଇ ତାଙ୍କୁ ଶୟନ କକ୍ଷରେ ପହୁଞ୍ଚାଇ ଦେଇ ଆସିଥିଲି । ରାଜାସାହେବ ଅନ୍ୟମନସ୍କ ହୋଇ କ'ଣ ଚିନ୍ତା କରି କହିଲେ, ନା ନା, ଯା ହୋଇ ପାରେନା । ମୁଁ ଗୁଳି ଚଳାଇ ଥିଲି ସତ, ମାତ୍ର

ଠିକ୍ ବିପରୀତ ଦିଗକୁ । ନରେନ୍ଦ୍ରପୁରର ରାଜାସାହେବ ମୋର ଲକ୍ଷ୍ୟ ନ ଥିଲେ, ମୋର ଲକ୍ଷ୍ୟ ଥିଲା ମହାନଦୀରେ ଭାସି ଯାଉଥିବା ନୌକା । ନୌକାର ଚାଳକ । କିନ୍ତୁ କାହାର ଆର୍ତ୍ତ ଚିତ୍କାରରେ ମୁଁ ସଂଜ୍ଞା ଫେରି ପାଇଥିଲି । ଠିକ୍ ମୋରି ବିପରୀତ ଦିଗରୁ ଭାସି ଆସିଥିଲା ସେଇ ମୃତ୍ୟୁ ଯନ୍ତ୍ରଣା । ଛୁଟିଯାଇ ଦେଖିଲି, ନରେନ୍ଦ୍ରପୁରର ରାଜାସାହେବ । ସବୁ ଶେଷ ହୋଇ ଯାଇଛି । ମୁଁ ବିସ୍ମିତ ହେଲି । ଏହା କିପରି ସମ୍ଭବ ? ରାଜାସାହେବ ନୀରବ ହେଲେ ।

ମୁଁ ପଚାରିଲି, ସେଦିନ ରାତିରେ ଯିଏ ଆପଣଙ୍କର ଲକ୍ଷ୍ୟ ଥିଲା, କିଏ ସେହି ନୌକାର ଚାଳକ ? କାହିଁକି ବା ଆପଣ ତାକୁ ଗୁଳି କରିବାକୁ ଚାହିଁଥିଲେ ?

ରାଜାସାହେବ ମୋ ମୁହଁକୁ କିଛି ସମୟ ନିର୍ନିମେଷ ନୟନରେ ଅନାଇ ରହିଲେ । ତା'ପରେ ଏକ ଦୀର୍ଘଶ୍ୱାସ ତ୍ୟାଗ କରି କହିଲେ, ସେ ମୋ ଜୀବନର ଏକ ଗୁପ୍ତ ରହସ୍ୟ ମାଇଁ ବୟ । ଭାବିଥିଲି ଜୀବିତ ଥିବା ଯାଏ ସେ କାହାଣୀ କାହାରିକୁ ଶୁଣାଇବି ନାହିଁ । ଅବଶ୍ୟ ବର୍ତ୍ତମାନ ଆଉ ନ ଶୁଣାଇ ଉପାୟ ନାହିଁ । ତମେ କ'ଣ ମୋର ସେହି ଗୁପ୍ତ ରହସ୍ୟ ଜାଣିବାକୁ ଚାହିଁ ୟଙ୍ଗମ୍ୟାନ୍ ?

ଅବଶ୍ୟ ଯଦି ଆପଣଙ୍କର ଆପତ୍ତି ନ ଥାଏ ଆଉ ଆପଣ ଯଦି ଭାବୁ ଥାଆନ୍ତି ଆପଣଙ୍କ ଜୀବନର ସେହି ଗୁପ୍ତ ଇତିହାସ ମୋତେ ଇନ୍‌ଭେଷ୍ଟିଗେସରେ ସାହାଯ୍ୟ କରିବ ତା'ହେଲେ ଆପଣ ମୋତେ ନିର୍ବିଘ୍ନରେ ଶୁଣାଇ ପାରନ୍ତି ।

କିନ୍ତୁ ମାଇଁ ବୟ । ଯେଉଁ ଅଭିଶାପ ବହନ କରି ମୁଁ ନନ୍ଦନଗଡ଼ର କଣ୍ଟକ ଶଯ୍ୟାରେ ରାତ୍ର ଯାପନ କରୁଛି, ସେ ଇତିହାସ ନ ଜାଣିଲେ ତୁମେ ମୋ ଜୀବନକୁ ଜାଣି ପାରିବ ନାହିଁ । ଜାଣି ପାରିବ ନାହିଁ ମୁଁ ନିଶାର୍ଦ୍ଧରେ କାହିଁକି ବନ୍ଧୁକ କାନ୍ଧରେ ପକାଇ ସମଗ୍ର ରାଜନଅରର ଚତୁଃପାର୍ଶ୍ୱ କାହା ସନ୍ଧାନରେ ଧାଏଁ, ଆଉ କିପରି ପ୍ରତି ରାତିର ବ୍ୟର୍ଥତା ମୋ ପ୍ରାଣରେ ହା ହା କାର ସୃଷ୍ଟି କରେ । ୟଙ୍ଗମ୍ୟାନ୍ ! ତମେ ବର୍ତ୍ତମାନ ଜୀବନର ପ୍ରଥମ ସୋପାନରେ ପାଦ ଥୋଇଚ, ଆଉ ମୁଁ ସମସ୍ତ ସୋପାନ ଶ୍ରେଣୀ ଅତିକ୍ରମ କରି ଆସିଲିଣି । କିନ୍ତୁ ପ୍ରତିଟି ପାହାଚ ଅତିକ୍ରମ କଲାବେଳେ ମୁଁ କ'ଣ ଅନୁଭବ କରିଚି ଜାଣ ଯୁବକ ?

ରାଜାସାହେବ ବିସ୍ଫାରିତ ନୟନରେ ମୋ ମୁହଁକୁ ଅନାଇଲେ । ମୁଁ ଦେଖିଲି ଯନ୍ତ୍ରଣା ଜର୍ଜରିତ ଏକ ବିକୃତ ମୁଖମଣ୍ଡଳ । ସେଠି ଆଶା ନାହିଁ, ଭରସା ନାହିଁ, ସ୍ନେହ ନାହିଁ, ବନ୍ଧନ ନାହିଁ, ଅଛି ଖାଲି ପ୍ରତିହିଂସାର ଲେଲିହାନ ବହ୍ନି । ହାତ ଦୁଇଟା ତାଙ୍କର ମୁଠା ମୁଠା ହେଉଥିଲା । ଭୟରେ ମୁଁ ଶିହରି ଉଠିଲି ।

ରାଜାସାହେବ ପୁଣି ନିଜକୁ ସଂଯତ କରି ନେଇ, ଶାନ୍ତ ସ୍ୱରରେ କହିଲେ- ଜୀବନଟା ମୋର ବ୍ୟର୍ଥ ହୋଇଚି, ଯିଏ ମୋତେ ବ୍ୟର୍ଥ କରିଚି ତାରି ସନ୍ଧାନରେ ବାହାରେ ମୁଁ ପ୍ରତି ରାତ୍ରିରେ । କିନ୍ତୁ ବ୍ୟର୍ଥତାହିଁ ଯେଉଁଠି ମୋର କପାଳ ଲିଖନ.... ଛାଡ଼ । ସେ ଗୋଟାଏ ଦୀର୍ଘଶ୍ୱାସ ତ୍ୟାଗ କରି ସଜାଡ଼ି ହୋଇ ବସିଲେ ।

ଧୀରେ ଧୀରେ ସେ ପ୍ରକୃତିସ୍ଥ ହେଉଥିଲେ । ମୁଁ ବି ତାଙ୍କ ଜୀବନର ଇତିହାସ ଶୁଣିବା ପାଇଁ ଉଦ୍‌ଗ୍ରୀବ ହୋଇ ଉଠିଥିଲି । ଯେଉଁ ଜୀବନର କଥା ରାଜାସାହେବ କହିବେ, ସେ ଜୀବନରେ ନିଶ୍ଚୟ ନିଶିଗନ୍ଧାର ସ୍ୱାଦ ଥିବ- ହୁଏତ ଥିବ ଆହୁରି ଏପରି ଚାଞ୍ଚଲ୍ୟକର ତଥ୍ୟ, ଯାହା ଇତି ପୂର୍ବରୁ ମୁଁ କେଉଁଠି ଶୁଣି ନ ଥିବି ।

ରାଜାସାହେବ କହିଲେ, ଓୟେଲ ମାଇଁ ବୟ । ତୁମେହିଁ ମୋର ଶେଷ ଆଶା ଭରସା । ମୁଁ ଦୋଷୀ ସାବ୍ୟସ୍ତ ହୋଇ ଦଣ୍ଡ ଭୋଗ କରେ, ସେଥିପାଇଁ ମୋର ମୋଟେ କ୍ଷୋଭ ନାହିଁ । ଜୀବନରେ ମୁଁ ବହୁ ପାପ କରିଛି, କିନ୍ତୁ ନରହତ୍ୟାରେ ମୋ ଜୀବନ କଳୁଷିତ ହେଉ, ଏହା ମୁଁ ଚାହେଁନା । ତୁମେ ମୋ ଜୀବନର ଗୁପ୍ତ ଇତିହାସ ଶୁଣିବା ପୂର୍ବରୁ ମୋତେ ଗୋଟାଏ କଥା ଦେବାକୁ ହେବ । ତୁମକୁ ଶପଥ କରିବାକୁ ହେବ ଯେ, ତୁମେ ପ୍ରମାଣିତ କରିବ ରାଜାସାହେବ ନନ୍ଦନଗଡ଼ ନରହତ୍ୟାକାରୀ ନୁହେଁ । ତା'ର ଆଉ ସମସ୍ତ ପ୍ରକାର ମନ୍ଦ ଗୁଣ ଥାଇପାରେ କିନ୍ତୁ ନରହତ୍ୟା ? ନରହତ୍ୟାକୁ ସେ ଘୃଣା କରେ । ରାଜାସାହେବ ନୀରବ ହେଲେ ।

ମୁଁ ମଧ ଧୀରେ ଧୀରେ ଉତ୍ତେଜିତ ହୋଇ ପଡୁଥିଲି । ସେଇ ମୁହୂର୍ତ୍ତରେ କହିଲି, ଆପଣଙ୍କ ଆଶୀର୍ବାଦରୁ ମୁଁ ହୁଏତ ପାରିବି ରାଜାସାହେବ । ଶପଥ କରି କହୁଛି, ଆପଣଙ୍କୁ ନରହତ୍ୟା କଳଙ୍କରୁ ମୁକ୍ତ କରିବି, କିନ୍ତୁ.....

କ'ଣ କୁହ ।

ମୁଁ ଯାହା ପଚାରିବି, ମୋତେ ସମସ୍ତ କଥା ଖୋଲାଖୋଲି ଭାବରେ କହିବାକୁ ହେବ । ଏପରିକି ଆପଣଙ୍କ ପାରିବାରିକ ଜୀବନ କଥା ବି ଏହା ମଧକୁ ଆସିଯାଇ ପାରେ ।

ତୁମେ ସବୁକଥା ନିର୍ଭୟରେ ପଚାରିପାର ଯୁବକ । ମୁଁ କିଛି ଗୋପନ କରିବି ନାହିଁ ।

ଆପଣ ବିବାହ କରିଛନ୍ତି ? ମୋର ପ୍ରଥମ ପ୍ରଶ୍ନ ।

ରାଜାସାହେବ ଏଥର ହୋ ହୋ ହୋଇ ହସି ଉଠିଲେ । କହିଲେ, ବିବାହ ମୁଁ କରି ନାହିଁ । କିନ୍ତୁ ସମସ୍ତେ ଜାଣନ୍ତି ମୁଁ ବିବାହିତ । ଏପରିକି ରାଜମହଲ ଦାସଦାସୀମାନେ ବି ସେଇ କଥା ଜାଣନ୍ତି । ପ୍ରତି ରାତ୍ରିରେ ମୁଁ ରାଣୀହଂସପୁରରେ ରାତ୍ରି ଯାପନ କରେ । କିନ୍ତୁ କଣ୍ଟକିତ ଶଯ୍ୟା ଆଖିରେ ମୋର ନିଦ୍ରା ଦିଏ ନାହିଁ, ବରଂ ଭରିଦିଏ ଦୁଃସ୍ୱପ୍ନ ।

କିଛି ସମୟ ନୀରବରେ କଟିଗଲା । ସେ ଯେପରି କେଉଁ ସ୍ୱପ୍ନରାଜ୍ୟରେ ନିଜକୁ ହଜାଇ ଦେଲେ । ତା'ପରେ ହଠାତ୍ କହି ଉଠିଲେ, ମୋର କିନ୍ତୁ ବିବାହ କରିବାର ପ୍ରବଳ ବାସନା ଥିଲା । ସ୍ତ୍ରୀ, ପୁତ୍ର, କନ୍ୟା ଧରି ଘର ସଂସାର କରିବା ପାଇଁ ମୁଁ ବିକଳ ହୋଇ ପଡ଼ିଥିଲି । କିନ୍ତୁ ପାରିଲି ନାହିଁ । ୟୁ ବୟ, ଲିସନ ଟୁ ମି । ମୋ କଥା ଶୁଣ । କୌଣସି ସ୍ୱପ୍ନ ପଛରେ କେବେ ଧାଅଁ ନାହିଁ । ତା'ହେଲେ ଦୁଃଖ ପାଇବ, ଅଶେଷ ନିର୍ଯ୍ୟାତନା ଭୋଗିବ । ଶେଷରେ, ଶେଷରେ ଆତ୍ମହତ୍ୟା କରିବାକୁ ପଡ଼ିବ, ଯେଉଁଟା ମୁଁ ଆଜିଯାଏ

କରିପାରି ନାହିଁ । ଆତ୍ମହତ୍ୟାକୁ ବି ନରହତ୍ୟା ବୋଲି ମୁଁ ଜାଣେ । ସେଇଥିପାଇଁ ଘୃଣା, ଘୃଣାରେ ମୁଁ ଶତ ଦୁଃଖ ଯନ୍ତ୍ରଣା ଭିତରେ ବି ତା'ଠାରୁ ଦୂରେଇ ରହିଛି । କିନ୍ତୁ ଆଉ ପାରୁ ନାହିଁ, ହୁଏତ ପାରିବ ନାହିଁ....

ରାଜାସାହେବଙ୍କ କଥାବାର୍ତ୍ତା ଭିତରୁ ଯଦିଓ ମୁଁ ଅଶେଷ ରହସ୍ୟର ଖିଅ ପାଉଥିଲି, କିନ୍ତୁ ତାଙ୍କ କଥାର ଧାରା ଏପରି ବେଗତିକ ହୋଇ ଉଠିଥିଲା ଯେ, କେଉଁ ଗୋଟିଏ ଦିଗକୁ ସେ ଲକ୍ଷ୍ୟ ରଖି ପାରୁ ନଥିଲେ । ମୁଁ ତାଙ୍କ କଥା ମଝିରେ ହଠାତ୍ ବାଧା ଦେଇ କହିଲି, କିନ୍ତୁ ସାର୍ !

ସେ ଚୁପ୍ ହୋଇଗଲେ । ମୋ ଆଡ଼କୁ ନିର୍ନିମେଷ ନୟନରେ ଅନାଇ ରହିଲେ ।

ମୁଁ ଭାବୁଥିଲି କିପରି ତାଙ୍କୁ କହିବି ଯେ, ଆପଣ ପ୍ରଥମରୁହିଁ ଭୁଲ୍ କହୁଛନ୍ତି, ମାନେ ଆପଣ ଯେ ନରହତ୍ୟାକୁ ଘୃଣା କରନ୍ତି କହୁଛନ୍ତି, ତାହା ଭୁଲ୍ ! କାରଣ ତା'ର ପ୍ରମାଣ ମୁଁ ନିଜେ ଏବଂ ମୋ ପୂର୍ବରୁ ମୋରି ପରି ଆହୁରି ବହୁ ହତଭାଗାଙ୍କୁ ଆପଣ ସାତଝୋଲିଆ ଜଙ୍ଗଲରେ ବନ୍ଦୀ କରି ହତ୍ୟା କରିଛନ୍ତି । ମୁଁ କିନ୍ତୁ ସିଧା ସଳଖ ପ୍ରଶ୍ନଟା ପଚାରି ପାରୁ ନଥିଲି । ତା'ହେଲେ ହୁଏତ ରାଜାସାହେବ ସଚେତନ ହୋଇ ପଡ଼ିବେ, ଅଥବା....

ମୋର ନୀରବତା ରାଜାସାହେବ ଆଉ ସହି ପାରୁ ନଥିଲେ । କହିଲେ, ଚୁପ୍ ରହିଲ କାହିଁକି ? କ'ଣ ତମ ମନର ଦ୍ୱନ୍ଦ୍ୱ ପ୍ରକାଶ କର ।

ମୁଁ ଚତୁରତାର ସହିତ ଅନ୍ୟ ବାଟ ଧରିବାକୁ ଯାଇ କହିଲି, ଆପଣଙ୍କ ଅତୀତ ଜୀବନର ଗୁପ୍ତ କଥାଗୁଡ଼ିକ ଆଗ କୁହନ୍ତୁ ସାର୍ । ପ୍ରଥମେ ମୁଁ ଜାଣିବାକୁ ଚାହେଁ ଏହି ହତ୍ୟା ପଛରେ କି ରହସ୍ୟ ନିହିତ ଅଛି । ତା'ପରେ ମୁଁ ହତ୍ୟାକାରୀର ସନ୍ଧାନରେ ବାହାରିବି ।

ଏକ୍‌ଜାକ୍‌ଟଲି ମାଇଁ ବୟ । ତମେ ଠିକ୍ କହିଛ । ମୁଁ ଖୁବ୍ ଭାବପ୍ରବଣ ହୋଇପଡ଼ିଛି ନା ? ଆଛା ଆଛା । ଆଉ ଟିକିଏ ଅପେକ୍ଷା କର । ମୁଁ ଥରେ ଚିନ୍ତା କରି ନିଏ ମୋର ସେହି ଅତୀତଟାକୁ । ଇଉ ଓୟେଟ୍, ତୁମେ ଅପେକ୍ଷା କର । ଅପେକ୍ଷା କର, ଅପେକ୍ଷା, ଅ...ପେ...

ରାଜାସାହେବଙ୍କ କଥା ଧୀରେ ଧୀରେ ଅସ୍ପଷ୍ଟ ହୋଇ ଉଠିଲା ଏବଂ ସେ ରିଭଲଭିଂ ଚେଆରଟା ଉପରେ ମୁଣ୍ଡ ନଦି, ଉପରକୁ ଚାହିଁ, ଧୀରେ ଧୀରେ ଆଖି ବୁଜିଲେ ।

ଉପରେ ଫ୍ୟାନ୍‌ଟା ଫୁଲ୍ ସ୍ପିଡ୍‌ରେ ଘୁରୁଥିଲା ।

ମୁଁ ରାଜାସାହେବଙ୍କ ମୁହଁକୁ ଏକ ଦୃଷ୍ଟିରେ ଚାହିଁ ବସି ରହିଥିଲି ।

ବୟସ ହୋଇଛି । ବୟସର ଛାପ ମୁଖ ମଣ୍ଡଳରେ ଯେ ପରିସ୍ଫୁଟ ହୋଇଛି, ଠିକ୍ ଲକ୍ଷ୍ୟ ନ କଲେ ଧରି ହେବ ନାହିଁ । ହୁଏତ ବୟସର ଆଧିକ୍ୟ ଓ ଦୁଶ୍ଚିନ୍ତାର ଦୁର୍ବିପାକରେ ପଡ଼ି ରାଜାସାହେବ ଆଜି ବିଚଳିତ ହୋଇ ପଡ଼ିଛନ୍ତି । ସେଇଥିପାଇଁ ତାଙ୍କର କଥାବାର୍ତ୍ତାର ଢଙ୍ଗ ଅନେକ ସମୟରେ ଗତି ହରାଉଛି ।

ସେ ଚିନ୍ତା କରୁଥିଲେ ।

ମୁଁ ଅପେକ୍ଷା କରିଥିଲି । ମୋର ମନେ ହେଉଥିଲା, ରାଜାସାହେବ ଯେତେବେଳେ ତାଙ୍କ ଭାନୁମତୀର ପେଡ଼ି ଖୋଲି, ପେଡ଼ି ଭିତରୁ ଭାନୁମତୀକୁ ଟାଣି ବାହାର କରୁ କରୁ ମୋତେ ପଚାରିବେ, ଦେଖ ଯୁବକ ଭଲ ଭାବରେ ଲକ୍ଷ୍ୟକର । ରକ୍ତମାଂସର ଦେହ ଧାରିଣୀ ଏଇ ଭାନୁମତୀ । ହାତ ମାରି ଦେଖି ନିଅ । ବିଶ୍ୱାସ ହେଉନି ? ତା' ସଙ୍ଗରେ ମୁଁ କଥାବାର୍ତ୍ତା ହେଉଛି ଶୁଣ । ଏହା କହି ସେ ଭାନୁମତୀକୁ ନାଁ ଧରି ଡାକିବେ, କହିବେ, କହିଲ ଭାନୁମତୀ, ତମେ ମୋ ସହିତ କେତେ ବର୍ଷ ହେବ ରହିଛ । ସେ କହିବ, ପାଞ୍ଚବର୍ଷ । ସେ ପୁଣି ମୋତେ ଦେଖାଇ ପଚାରିବେ, ତମେ ଏଇ ଯୁବକକୁ ଚିହ୍ନ ? ଭାନୁମତୀ କହିବ, ହଁ । ରାଜାସାହେବ ପୁଣି ପଚାରିବେ, ଏ ଯୁବକ କହୁଛନ୍ତି ତୁମକୁ ବାହାହେବେ, ତୁମେ ରାଜି ? ଭାନୁମତୀ ଲାଜରେ ତରବର କରି ପେଡ଼ି ଭିତରେ ପଶିଯିବ । ରାଜାସାହେବ ସଂଗେ ସଂଗେ ଘୋଡ଼ଣୀ ଘୋଡ଼େଇ ଦେବେ । କାଉଁରୀ ହାଡ଼ ବୁଲେଇ ଦେବେ ପେଡ଼ି ଚାରିପାଖରେ । ତା'ପରେ ମୋତେ ପାଖକୁ ଡାକି କହିବେ, ଖୋଲ ଯୁବକ, ଏଥର ପେଡ଼ି ଖୋଲ । ପେଡ଼ି ଖୋଲି ତୁମର ପ୍ରେମିକାକୁ ଖୋଜି ନିଅ । ସେ ଲାଜ କରିଚି, ହଁ ହଁ । ଏ ପାଖରେ ହାତ ପୁରାଅ, ଏଇ ତ ସେ ସେପାଖକୁ ଚାଲିଗଲା । ହେଇ ହେଇ ଏପାଖରେ, ନା ନା ସେପାଖରେ । ତା'ପରେ ମୋ ବ୍ୟର୍ଥତାରେ ରାଜାସାହେବ ହୋ ହୋ ହୋଇ ହସି ଉଠିବେ । ସେତେବେଳେ ମୁଁ ସ୍ତବ୍ଧ ହୋଇ ଶୁଣିବି ରହସ୍ୟମୟ ଐନ୍ଦ୍ରଜାଲିକ ରାଜା ସାହେବଙ୍କର ଇଙ୍ଗିତ ପୂର୍ଣ୍ଣ ହସ, ଆଉ ଦେଖିବି, କ'ଣ ? ଦେଖିବି ଭାନୁମତୀ ପେଡ଼ିରେ ଅମାପ ରହସ୍ୟର ଢେଉ...ଆଉ ସେଇ ଢେଉର ଅତଳ ତଳରେ ଭାନୁମତୀର ତରଙ୍ଗାୟିତ ଅଙ୍ଗ ଅବୟବ ଏବଂ....

ଓୟେଲ୍ ମାଇଁ ବୟ ! ମୋର ମନେ ପଡ଼ିଛି ।

ରାଜାସାହେବଙ୍କ ସ୍ୱର ଶୁଣି ମୁଁ ମଧ୍ୟ ସଚେତନ ହୋଇ ଉଠିଲି । ଦେଖିଲି ତାଙ୍କ ମୁହଁରେ ଏକ ପ୍ରଶାନ୍ତ ଭାବ ଖେଳି ବୁଲୁଛି ।

ସେତେବେଳେ ମୁଁ ସେଣ୍ଟଜେଭିଅର୍ସ କଲେଜରେ ଥାର୍ଡ଼ଇଅରର ଷ୍ଟୁଡ଼େଣ୍ଟ । ଯୌବନର କାଉଁରୀ କାଠି ଲାଗିଥାଏ ଅଙ୍ଗ ପ୍ରତ୍ୟଙ୍ଗରେ । ପ୍ରଚୁର ରୂପ, ପ୍ରବଳ ପ୍ରତିପତ୍ତି । ଛାତ୍ର ହିସାବରେ ମଧ୍ୟ ଯଥେଷ୍ଟ ସୁନାମ ଥିଲା କଲେଜରେ । ପଇସାର ଅଭାବ ନ ଥିଲା । ହାରିଙ୍ଗଟନ ଷ୍ଟ୍ରୀଟରେ ଆମର ଥିଲା ଏକ ମନୋରମ ପ୍ରାସାଦ । ସେଇଠି ମୁଁ ରହୁଥିଲି । ଅଭାବ କିଛି ନଥିଲା । ମନ ଭିତରେ ଅସଂଖ୍ୟ ସ୍ୱପ୍ନର ଫୁଲଝରି ।

ଅସଂଖ୍ୟ ବନ୍ଧୁ ବାନ୍ଧବ, ଅପର୍ଯ୍ୟାପ୍ତ ଏଙ୍ଗେଜମେଣ୍ଟ । ସମୟ ଗୁଡ଼ାକ କେଉଁବାଟେ କିପରି ଯେ କଟି ଯାଉଥିଲା, ବୁଝି ପାରୁ ନଥିଲି । କିନ୍ତୁ ମୋର ଅନ୍ତରଙ୍ଗ ବନ୍ଧୁ ଯେଉଁ

କେତେଜଣ ଥିଲେ, ସେମାନଙ୍କ ମଧ୍ୟରୁ ବିରଞ୍ଚିନାରାୟଣ ଥିଲା ଖୁବ୍ ଆପଣାର । ସେ କଲିକତାର ଏକ ଖାନ୍‌ଦାନ୍ ଘରର ସନ୍ତାନ । ବାପାଙ୍କର ଯଥେଷ୍ଟ ସଂପତ୍ତି । ଏକମାତ୍ର ଉତ୍ତରାଧିକାରୀ ବିରଞ୍ଚି ନାରାୟଣ । ସେଥିପାଇଁ ତା'ର ଚାଲିଚଳଣ, ବେଶଭୂଷା ଆଦବ କାଇଦା ସବୁଥିରେ ଆଭିଜାତ୍ୟର ଗୋଟାଏ ଗନ୍ଧ ପୂରି ରହିଥିଲା । ଯା'ଫଳରେ ସେ ମୋର ଖୁବ୍ ନିକଟତମ ବନ୍ଧୁ ହୋଇ ପାରିଥିଲା । ଆମେ ଏକା ସାଙ୍ଗରେ ପଢୁଥିଲୁ ।

କଲିକତାରେ ଆମ ହାରିଙ୍ଗଟନ ଷ୍ଟ୍ରିଟ୍ କୋଠାରେ ମୁଁ ଏକା ରହୁଥିଲି । ପାଞ୍ଚ ସାତଜଣ ଚାକର ବାକର ଛାଡ଼ି ଦେଲେ ମୋର ଆତ୍ମୀୟ କେହି ରହୁ ନଥିଲେ । ଗୋଟିଏ ବୁଢ଼ା ଚାକର ଉପରେ ବାପା ମୋର ଦାୟିତ୍ୱ ଦେଇ ନନ୍ଦନଗଡ଼ରେ ଆରାମରେ ବସି ଥିଲେ ।

ପ୍ରଥମେ ଯେଉଁଦିନ ବିରଞ୍ଚି ନାରାୟଣ ହସି ହସି ମୋ ଆଗରେ ସେଠାକୁ ଯିବାର ପ୍ରସ୍ତାବ ବାଢ଼ିଲା, ସେଦିନ ମୋ ଦେହଟା ଟିକିଏ ଥରି ଉଠିଥିଲା ଏବଂ ତା' ପ୍ରସ୍ତାବରେ ମୁଁ ଅମତ ହୋଇଥିଲି, କିନ୍ତୁ ସେ ଯେତେବେଳେ ତା' ମନିବ୍ୟାଗ ଭିତରୁ ପାସ୍‌ପୋର୍ଟ ସାଇଜର ଗୋଟିଏ ଛୋଟ ଫଟୋ କାଢ଼ି ମୋ ହାତକୁ ବଢ଼ାଇ ଦେଇ କହିଲା, ଏହାର ତୁଳନା ହୁଏ ନାହିଁ । ରୂପ ରଙ୍ଗ ଅପେକ୍ଷା କଣ୍ଠର କାମ ଏତେ ସୁନ୍ଦର ଯେ, ଶୁଣିଲେ ତୁ ସ୍ତବ୍‌ଧ ହୋଇଯିବୁ । ବଡ଼ ବଡ଼ ଓସ୍ତାଦଙ୍କର ବି ସେ କାନ କାଟି ଛାଡ଼ିଦେବ । ଏତେ କମ୍ ବୟସରେ ଏପରି ପ୍ରତିଭା ମୁଁ ଆଉ ଦେଖି ନାହିଁ ।

ସଂଗୀତ ପ୍ରତି ମୋର ବଡ଼ ଦୁର୍ବଳତା ଥିଲା । ବିଶେଷ କରି ଶାସ୍ତ୍ରୀୟ ସଂଗୀତର କୌଣସି ଆସର କଥା ଶୁଣୁଥିଲେ ମୁଁ ସମସ୍ତ ଭୁଲି ଯାଉଥିଲି । ବିରଞ୍ଚି ନାରାୟଣ ଥିଲା ମୋର ଏକମାତ୍ର ସମର୍ଥକ । ଦୁହେଁ ଏକା ସଙ୍ଗରେ ସଂଗୀତ ଆସରରେ ରାତି ରାତି କଟାଇ ଦେଉଥିଲୁ ।

କିନ୍ତୁ ସେଦିନ ବିରଞ୍ଚି ମୋ ଆଗରେ ଯେଉଁ ପ୍ରସ୍ତାବଟି ବାଢ଼ିଲା, ତାହା ସଂପୂର୍ଣ୍ଣ ସ୍ୱତନ୍ତ୍ର । ସେଇ ଝିଅଟି କଣ୍ଠରେ ଶାସ୍ତ୍ରୀୟ ସଂଗୀତ ଶୁଣି ମୁଗ୍‌ଧ ହୋଇଛି । ଏବଂ ତା'ର ଇଚ୍ଛା ମୁଁ ମଧ୍ୟ ଯାଇ ସେହି ଝିଅଟି ଘରେ ତା' କଣ୍ଠ ସଂଗୀତ ଶୁଣି ଆସେ ।

ପ୍ରଥମେ ପ୍ରଥମେ ମୁଁ ଅମତ ହେଉଥିଲି । କିନ୍ତୁ ଶେଷ ପର୍ଯ୍ୟନ୍ତ ବିରଞ୍ଚି ନାରାୟଣର ପ୍ରଲୋଭନ ମୁଁ ଏଡ଼େଇ ପାରିଲି ନାହିଁ ।

ଆମେ ଏକ ମଧୁର ସନ୍ଧ୍ୟାରେ ଯାଇ ତା'ଘରେ ପହଞ୍ଚିଲୁ । ଘରଟା ଗୋଟାଏ ଗଳି ଭିତରେ । ମେନ୍‌ରୋଡ଼ ଉପରେ ମଟରଟା ଠିଆ କରେଇ ପାଦରେ ଚାଲି ଚାଲି କିଛିବାଟ ଆଗେଇ ଯିବାକୁ ହେଲା । ସରୋଜାବାଈ ଆମ ସମ୍ବର୍ଦ୍ଧନା ପାଇଁ ସମସ୍ତ ଆୟୋଜନ କରି ରଖିଥିଲା । ମୁଁ କେବଳ ସ୍ତବ୍‌ଧ ହୋଇ ସେଦିନ ଦେଖିଥିଲି ନିଶାତ୍‌କୁ । ସରୋଜାବାଈର ଅଷ୍ଟାଦଶୀ କନ୍ୟା । ଅପଲକ ନୟନରେ ଚାହିଁ ରହିଥିଲି ଅନେକ, ଅନେକକ୍ଷଣ । ଶେଷରେ ତବ୍‌ଲିଚର ତବଲା ଲହର ମୋର ଧ୍ୟାନ ଭଙ୍ଗ କରିଥିଲା । ମୁଁ ପ୍ରକୃତିସ୍ଥ ହୋଇ ଶୁଣିଥିଲି ନିଶାତ୍‌ର କଣ୍ଠ ସଂଗୀତ ।

ବିରଞ୍ଚି ମୋତେ ମିଛ କହି ନଥିଲା । ବରଂ ସେ ନିଶାତ୍‌ର ଗୁଣ ବର୍ଣ୍ଣନା କରିବା ପାଇଁ ଭାଷା ପାଇ ନ ଥିଲା । ଗୋଟିଏ ଦେହରେ ଏତେ ରୂପ୍, ଏତେ ରଙ୍ଗ, ଏତେ ଗୁଣ ! କଣ୍ଠ, ଆଉ ସେ କଣ୍ଠର ତାଲିମ୍ ଏତେ ସୁନ୍ଦର ଯେ ବୁନିଆଦୀ ଗାୟକମାନେ ବି ହାର ମାନିଯିବେ ।

ସରୋଜାବାଈର ଘରେ ସେଦିନ ଯେଉଁ ଆସରର ଆୟୋଜନ ହୋଇଥିଲା ସେ ଆସରର ଅତିଥି ଥିଲୁ ଆମେ ଦୁଇଜଣ, ବିରଞ୍ଚି ଆଉ ମୁଁ । ସରୋଜାବାଈ ସେଦିନ ଗଦ୍ ଗଦ୍ ହୋଇ କହିଥିଲା, ନିଶାତ୍‌ର ଏଇ ହେଉଚି ପ୍ରଥମ ଆସର । ଆପଣମାନେ ମୋତେ ଧନ୍ୟ କରିଛନ୍ତି ।

ସେଦିନ ସରୋଜାବାଈର ଆଦର ଯତ୍ନ, ମନେ ରହିଲା ଭଳି । ଆଉ ନିଶାତ୍, ଗୋଟିଏ ଲାଜୁରା ମୁହଁ । ମୁହଁରେ ସ୍ମିତ ନସ ପାଖୁଡ଼ାଏ । ରହି ରହି ଆଖି ଯୋଡ଼ାକ ନାଚି ଉଠୁଥାଏ । ନିଶାତ୍‌କୁ ମୁଁ ଚାହିଁ ରହିଥାଏ, କେଵଳ ଚାହିଁ ରହିଥାଏ । ସ୍ଥାନାସ୍ଥାନ କାଳା କାଳର ଜ୍ଞାନ ମୁଁ ଭୁଲି ଯାଇଥାଏ ।

ସରୋଜାବାଈ ସେଦିନ ତା' ଘରେ ଆମ ପାଇଁ ଖାଇବାର ବନ୍ଦୋବସ୍ତ କରିଥିଲା । ମୋର ଇଚ୍ଛା ନ ଥିଲେ ବି ନିଶାତ୍ ଯେତେବେଳେ ଆଖି ନଚେଇ କହିଲା, ବଡ଼ ବଡ଼ ଲୋକମାନଙ୍କୁ ତୁ କାହିଁକି ଅନୁରୋଧ କରୁ ମା' ! ମାଂସ ପଲାଉ ଛାଡ଼ି ସେମାନେ ଏଇ ଗରିବ ଘରେ ଶାଗଭାତ ପସନ୍ଦ କରିବେ କାହିଁକି ? ତା'ପରେ ନିଶାତ୍‌ର ଆଖିଟା କିପରି ଛଳ ଛଳ ହୋଇ ଉଠିଥିଲା ।

ମୁଁ ଆଉ ସରୋଜାବାଈର ଅନୁରୋଧ ଏଡ଼ି ପାରି ନ ଥିଲି । ଖାଲି ମାଂସ ପଲାଉ ନୁହେଁ, ଆହୁରି ବହୁ ସୁଖାଦ୍ୟର ଆୟୋଜନ କରିଥିଲା ସରୋଜାବାଈ । ନିଶାତ୍ ନିଜ ହାତରେ ପରିବେକ୍ଷଣ କରିଥିଲା । ହସି ହସି କହିଥିଲା, ଏଇଟା ଆଉ ଟିକେ ଖାଅ, ସେଇଟା ଖାଇବାକୁ ମୁଁ ଭାରି ଭଲପାଏ, ଆପଣ ଖାଉ ନାହାନ୍ତି ?

ମୁଁ ତା' ନାଚିଲା ଭ୍ରୁଭଙ୍ଗୀ ଆଡ଼େ ଚାହିଁ କେବଳ ଖାଇ ଚାଲିଥାଏ । ସେ ମୋ ଆଡ଼େ କଣେଇ କଣେଇ ଚାହିଁ ସରୋଜାବାଈକୁ ଇଂଗିତରେ କ'ଣ ଯେପରି କହୁଥାଏ ।

ସେଦିନ ଆମେ ଯେତେବେଳେ ସରୋଜାବାଈ ଘରୁ ପରମ ତୃପ୍ତି ସହକାରେ ବିଦାୟ ହୋଇ ଆସିଲୁ ସେତେବେଳକୁ ରାତି ବାରଟା ବାଜି ଯାଇଥିଲା ।

ନିଶାତ୍ ନିଜେ ଆସି ଆମକୁ ବିଦାୟ ଦେଇ କହିଲା, ପୁଣି କେବେ ଆପଣଙ୍କର ପାଦ ପଡ଼ିବ ଏଇ ଦୀନ କୁଟୀରରେ ?

ପ୍ରଶ୍ନଟା ଯଦିଓ ମୋତେ ଉଦ୍ଦେଶ୍ୟ କରି ଉଠିଥିଲା, ବିରଞ୍ଚି ତା'ର ଉତ୍ତର ଦେଇ କହିଲା, ଖୁବ୍ ଶୀଘ୍ର କୁମାରସାହେବଙ୍କୁ ଧରି ମୁଁ ଆସିବି । ତୁମେ ଚିନ୍ତା କରିବ ନାହିଁ ।

ନିଶାତ୍ ରାଜକୁମାର ପାଇଁ ଚିନ୍ତା କରିବ ? ଏକଥା ସେଦିନ ମୁଁ ଭାବିଲା କ୍ଷଣି ଦେହମନରେ କିପରି ଏକ ପୁଲକ ଅନୁଭବ କରିଥିଲି । କେଜାଣି କାହିଁକି ନିଶାତ ପାଇଁ ମୋ ମନ ଭିତରଟା ହାହାକାର କରି ଉଠିଥିଲା ।

ଆମେ ଚାଲି ଆସିଲୁ । ବିରଞ୍ଚି ତା' ଘରକୁ ଚାଲିଗଲା । ମୁଁ ସେଦିନ ରାତିରେ ମୋଟେ ଶୋଇ ପାରିଲି ନାହିଁ । ନିଶାତ୍‌ର ସେଇ ହସ ବୋଳା ଲାଜୁରା ମୁହଁଟି ରହି ରହି ଭାସି ଉଠିଲା । ଏତେ ରୂପ, ଏତେ ରଙ୍ଗ କୌଣସି ରାଜକୁମାରୀ ଦେହରେ ବି ମୁଁ ଦେଖି ନ ଥିଲି ।

ସେଇଦିନ ଠାରୁ ନିଶାତ୍‌ର ଚିନ୍ତାରେ ମୁଁ ଆଚ୍ଛନ୍ନ ହୋଇ ପଡ଼ିଲି । ମୋର କୌଣସି ବାଧା ନ ଥିଲା, ବଂଧନ ବି ନ ଥିଲା ।

ବିରଞ୍ଚି ଆଉ ମୁଁ । ପୁଣି ଦିନକ ପରେ ପହଞ୍ଚିଲୁ ଯାଇ ସରୋଜାବାଈର ଘରେ । ସେ ଯେପରି କୃତ୍ୟ କୃତ୍ୟ ହୋଇ ପଡ଼ିଲା । ଆମର ଏହି ଅତର୍କିତ ପ୍ରବେଶ ପାଇଁ ସେ ହୁଏତ ପ୍ରସ୍ତୁତ ନଥିଲା । ସେଇଥିପାଇଁ ବ୍ୟସ୍ତତା ବଢ଼ିଗଲା ଟିକିଏ ତା'ର ।

ଉପର ତାଲାରେ ନିଶାତ୍ ବୋଧହୁଏ ରିଆଜ୍ କରୁଥିଲା । ତାନ୍‌ପୁରା ସହିତ ତବଲାର ଠେକାଶୁଭୁଥିଲା ରହି ରହି ।

ମୁଁ ଧ୍ୟାନମଗ୍ନ ପରି କାନଡ଼େରି ରହିଥିଲି ସେଇଆଡ଼େ । ବିରଞ୍ଚି ସରୋଜାବାଈ ସହିତ ଆଳାପ ଜମେଇ ଥିଲା ।

ମୁଁ କହିଲି, ଆମେ ଆସି ଆପଣଙ୍କୁ ଖୁବ୍ ଅସୁବିଧାରେ ପକାଇ ଦେଲୁ ।

ସରୋଜାବାଈ ଗଦ୍ ଗଦ୍ ହୋଇ କହିଲା, ନାଁ ବାପା, ନା । ମୋଟେ ନୁହେଁ । ଏଇଟାକୁ ତମ ନିଜ ଘର ପରି ମନେ କରି ପାରିଲ ବୋଲି ସିନା ଇଚ୍ଛା ହେବା ମାତ୍ରକେ ଚାଲି ଆସିଲ । ମୋର ପରମ ସୌଭାଗ୍ୟ ବାବା । ନିଶାତ୍ ଉପରେ ରିଆଜ୍ କରୁଚି । ସେ ଆଜି ସଂଧ୍ୟାବେଳେ ମୋତେ ତମମାନଙ୍କ କଥା ପଚାରୁଥିଲା । ତାକୁ କୁଆଡ଼େ ତମମାନଙ୍କ ଛଡ଼ା ଗୀତ ଗାଇବାକୁ ଭଲ ଲାଗୁ ନାହିଁ ।

ସରୋଜାବାଈ ଆମେ ଆସିବା ସଂଗେ ସଂଗେ ନିଶାତ୍ ପାଖକୁ ଲୋକ ପଠାଇ ଦେଇଥିଲା । ନିଶାତ୍ ଯୋଡ଼ ହାତକରି, ମୁହଁରେ ହସ ଫୁଲ ଫୁଟେଇ ପାଦେ ପାଦେ କରି ଆମ ଆଡ଼କୁ

ooooooooooooooooooooooooooooooooooooooooooooooooooooooooooooooooo

ଆସୁ ଆସୁ କହିଲା, ନମସ୍ତେ ରାଜକୁମାରଜୀ !

ମୁଁ ପ୍ରତି ନମସ୍କାର କରିବାକୁ ମଧ୍ୟ ଭୁଲି ଯାଇଥିଲି । କାରଣ ଆଜି ନିଶାତ୍‌କୁ ଦେଖୁଥିଲି ଅନ୍ୟ ଏକ ବେଶରେ । ଅତି ସାଧା ସିଧା । ଖଣ୍ଡିଏ ମାମୁଲି ସାଦା ଶାଢ଼ୀ । ମୁହଁରେ ରଙ୍ଗର ବହର ନାହିଁ । ଆଖି ଯୋଡ଼ାକ କିନ୍ତୁ ସେହିପରି ଅମାନିଆ । ନାଚି ନାଚି ହସୁଚନ୍ତି ।

ନିଶାତ୍ ମୋ ସାମ୍‌ନା ସୋଫା ଉପରେ ବସି କହିଲା, ଆପଣଙ୍କ ପାଇଁ ମୁଁ ଏକ ନୂତନ ସଂଗୀତ ପ୍ରସ୍ତୁତ କରୁଥିଲି ।

ମୋ ପାଇଁ ? ମନେ ମନେ ମୁଁ ନିଜକୁ ପ୍ରଶ୍ନ କଲି । ଦିନକ ଭିତରେ ନିଶାତ୍‌ର ମୁଁ କ'ଣ ଏତେ ପ୍ରିୟ ହୋଇ ଉଠିଚି ? ନିଶାତ୍ ମନ ରଖା କଥା କହୁ ନାହିଁ ତ !!

ନିଶାଦ୍ ପୁଣି କହିଲା, ଆପଣ କ'ଣ ପଣକରି ଆସିଛନ୍ତି ମୋ ସଙ୍ଗରେ କଥା ନ କହିବା ପାଇଁ ।

ମୋର ଜଡ଼ତା କଟି ଯାଇଥିଲା । ମୁଁ ସଚେତନ ହୋଇ କହିଲି, ନା, ନା ନିଶା । ସେପରି ଭାବୁଛ କାହିଁକି ?

ତାହେଲେ ? ଆପଣ ଆମ ଘରକୁ ଆସିବେ । ନୀରବରେ ବସି ବସି ରାଜ୍ୟ ଆଉ ରାଜଗାଦି କଥା ଚିନ୍ତା କରିବେ । ମୁଁ ସହି ପାରିବି କାହିଁକି କୁହନ୍ତୁ ? ନିଶାଦ୍‌ର ଚଳପଚାରେ ମୁଁ ନ ହସି ରହି ପାରିଲି ନାହିଁ ।

ଇତ୍ୟବସରରେ ସରୋଜାବାଈ ବିରଞ୍ଚି ସଂଗରେ ଗଳ୍ପ କରୁ କରୁ ଅନ୍ୟ ଘରକୁ ଚାଲି ଯାଇଥିଲା ।

ସାମ୍‌ନା ସାମ୍‌ନି ବସି ରହିଥିଲୁ ମୁଁ ଆଉ ନିଶା ।

ଫରମାଇସ୍ କରନ୍ତୁ କୁମାର ସାହେବ, ନିଶା ପୁଣି ନୀରବତା ଭଙ୍ଗକଲା । ଆପ୍‌କା ଖିଦ୍‌ମଦ୍ ପାଇଁ ତ ମୋର ଜନ୍ମ ।

ନିଶାର କଥା ଗୁଡ଼ାକ ମୋତେ କିପରି ବେଖାପ ଶୁଣା ଯାଉଥିଲା । ମୁଁ କ'ଣ କହିବି କହିବି ହୋଇ ଶେଷରେ କହିଲି, ଆଜି ଆଉ ଗୀତ ଶୁଣାଇବ ନାହିଁ ନିଶା ?

ଜରୁର୍, ଜରୁର୍ କୁମାର ସାହେବ । ଆପଣ ଉପରକୁ ଚାଲନ୍ତୁ । ମୁଁ ଆଜି ମୋର ନୂତନ ପ୍ରସ୍ତୁତ ଗାନଟି ସର୍ବପ୍ରଥମ ଆପଣଙ୍କୁ ଶୁଣାଇବି । ଏଣିକି ମୁଁ ମୋର ସମସ୍ତ ଗୀତ ପ୍ରଥମେ ଆପଣଙ୍କୁ ଶୁଣାଇ, ତା'ପରେ.....ନିଶା ଅଟକି ଗଲା ।

ମୁଁ ପଚାରିଲି, ତା'ପରେ କ'ଣ ନିଶା ? ତା'ପରେ କ'ଣ ଆଉ କାହାକୁ ସେ ଗାନ ଶୁଣାଇବ ?

ନିଶା ନୀରବ ରହିଲା । ହୁଏତ କ'ଣ ଉତ୍ତର ଦେବ ଭାବି ପାରୁ ନଥିଲା । ହଠାତ୍ ସୋଫା ଉପରୁ ଉଠିପଡ଼ି ମୋ ପାଖକୁ ଲାଗି ଆସି, ମୋର ଡାହାଣ ହାତଟାକୁ ଧରି କହିଲା, ଆସନ୍ତୁ କୁମାର ସାହେବ ! ଉପରେ ବସି ଗଳ୍ପ କରିବା ।

ନିଶାର ସ୍ପର୍ଶରେ ମୋର ସର୍ବାଙ୍ଗରେ ଯେପରି ବିଦ୍ୟୁତ୍ ପ୍ରବାହ ଖେଳିଗଲା । ମୁଁ ଯନ୍ତ୍ରଚାଳିତ ପରି ଉଠି ଠିଆ ହେଲି ଏବଂ ନିଶା ପଛେ ପଛେ ଉପରକୁ ଉଠିଗଲି ।

ଉପରେ, ସେଦିନ ରାତିରେ ଯେଉଁଠି ଆସର ଜମିଥିଲା, ସେଇଠି ଗୋଟିଏ ବାଇଶି ତେଇଶି ବର୍ଷର ଯୁବକ ବସି ଆନମନା ଭାବରେ ତବଲାରେ ଠେକା ମାରୁଛି । ଅନ୍ୟାନ୍ୟ ଯନ୍ତ୍ରଗୁଡ଼ିକ ସଜାହୋଇ ରଖା ହୋଇଛି । ଆଉ କେହି ନାହାନ୍ତି । ଆମେ ଉପରକୁ ଉଠି ଯାଇଥିଲେ ବି ସୁଦ୍ଧା ସେହି ତବଲିଚ୍ ଯୁବକଟିର ଆମ ପ୍ରତି ଲକ୍ଷ୍ୟ ନ ଥିଲା ।

ମୁଁ ଗଦି ଉପରେ ଗୋଟିଏ ତକିଆ ଭରା ଦେଇ ବସିପଡ଼ିଲି । ଅଳ୍ପ ଛାଡ଼ି ବସିଲା ନିଶା । ତାନ୍‌ପୁରାଟା ଉଠାଇ ଆଳାପ କରିବା ମାତ୍ରକେ ତବଲିଚ୍‌ର ଧ୍ୟାନ ଭାଙ୍ଗିଲା । ସେ ମୋ ଆଡ଼କୁ ସତୃଷ୍ଣ ନୟନରେ ଅନାଇ ଇଂଗିତରେ ନିଶାକୁ କ'ଣ ପଚାରିଲା । ନିଶା କ'ଣ

ଉତ୍ତର ଦେଲା, ମୁଁ କିଛି ଶୁଣିପାରିଲି ନାହିଁ । କିନ୍ତୁ ତବଲିବ୍‌ର ହାତ ଦୁଇଟା ମୁହୂର୍ତ୍ତକ ମଧ୍ୟରେ ଘରଟିରେ ଅପୂର୍ବ ଏକ ଲହରର ସୃଷ୍ଟି କଲା ।

ସେତେବେଳକୁ ନିଶା ଗୀତର ପ୍ରଥମ ପଂକ୍ତି ଆରମ୍ଭ କରିଥିଲା ।

ତେରେ ବିନେ, କୈସେ ବିତାଉଁ ଦିନ ରାତିଆଁ.....

ମୁଁ ଯେଉଁପରି ନିଶା ଆଡ଼କୁ ଚାହିଁ ଚୁପ୍‌ଚାପ୍ ବସି ଯାଇଥିଲି ସେହିପରି ବସି ରହିଲି ପ୍ରାୟ ଏକ ଘଣ୍ଟା । କଣ୍ଠର ସାଧନା ଆଉ ତବଲାର କାରସାଦି ଶୁଣୁଥିଲି ବସି ବସି । ମୋର ମନେ ହେଉଥିଲା, ନିଶା ଆଉ ତବଲିବ୍ ଭିତରେ ଯେପରି ବିବାଦ ଗଢ଼ି ଉଠିଥିଲା । ଦୁହେଁ ଦୁହିଁଙ୍କୁ ହରାଇ ଦେବା ପାଇଁ ଆପ୍ରାଣ ଚେଷ୍ଟା କରୁଥିଲେ । କିନ୍ତୁ ଦୁହେଁ ଯେପରି ପକ୍‌କା ଓସ୍ତାଦଙ୍କ ଛାତ୍ର ଭଳି ନିଜ ନିଜର କରାମତ୍ ଜାହିର ରଖି ଚାଲିଥିଲେ ।

ଏହି ଦ୍ୱନ୍ଦ ମଝିରେ ଆସି ପହଞ୍ଚି ଯାଇଥିଲେ ବିରଞ୍ଚି ନାରାୟଣ ଆଉ ସରୋଜାବାଈ । ସରୋଜାବାଈର ଦେହ ମୁହଁରେ ଫୁଟି ଉଠିଥିଲା ଆଶଙ୍କାର ଚିହ୍ନ । କେଜାଣି କାହିଁକି ସେ ରହି ରହି ମୋ ଆଡ଼କୁ କିପରି କାତର ଦୃଷ୍ଟିରେ ଚାହୁଁଥିଲେ ।

ନିଶା ଯେତେବେଳେ ଗାନ୍ ଶେଷ କରି ସ୍ମିତ ହସି ମୋ ଆଡ଼କୁ ଚାହିଁଲା, ତବଲିବ୍ ହାତର ଲହର ସେତେବେଳେ ସ୍ଥିର ହୋଇ ଯାଇଥିଲା । ସରୋଜାବାଈ ତବଲିବ୍ ଆଡ଼କୁ ଚାହିଁ କହିଲା, ବା ବା, ଭାଇ ! ତୁମ୍‌ନେ କମାଲ୍ କିଆ ।

ତବଲିବ୍ ଉଠି ଆସି ସରୋଜାବାଈଙ୍କ ପାଦ ଧୂଳି ନେଇ ମୁଣ୍ଡରେ ଲଗାଇ, ଶାନ୍ତ ଶିଶୁଟି ପରି ଧୀରେ ଧୀରେ ସେଠାରୁ ଅନ୍ତର ହୋଇଗଲା । ବିରଞ୍ଚି ନାରାୟଣ କହିଲା, ଚମତ୍କାର ହାତ ତ ! ଆଗରୁ କେବେ ଶୁଣି ନ ଥିଲି ।

ସରୋଜାବାଈ କୃତ୍ୟ କୃତ୍ୟ ହେଲା ପରି କହିଲା, ମୋର ଏଠାରେ ସବୁ ଖାଣ୍ଟି ଜିନିଷ ପାଇବେ । ଭେଜାଲର କାରବାର କେବେ ସରୋଜାବାଈ କରେ ନାହିଁ । ପିଲାଟି ନୂଆ ଆମଦାନୀ । ମୁଁ ବେନାରସରୁ ଅଣାଇଛି ।

ହାତ ଖଣ୍ଡିତ ଚମତ୍କାର । ତାର ଭବିଷ୍ୟତ ଅଛି । ବିରଞ୍ଚି କହିଲା ।

ସରୋଜାବାଈ ଗୁଣୀ ଚିହ୍ନିପାରେ ବାବୁ । ଗୁଣର ଆଦର ବି କରେ । ଖାଲି ସିନା କପାଳ ମନ୍ଦକୁ- କ'ଣ କହିବାକୁ ଯାଇ ନିଶା ଆଡ଼େ ଚାହିଁ ଚୁପ୍ ହୋଇଗଲା ।

ନିଶା ବୋଧହୁଏ ଟିକିଏ ପରିଶ୍ରାନ୍ତ ହୋଇ ପଡ଼ିଥିଲା; ସେ ଗୋଟିଏ ତକିଆ ଉପରେ ଆଉଜି ବସି ମୋ ଆଡ଼େ ଚାହିଁ ଶ୍ରାନ୍ତ କଣ୍ଠରେ ପଚାରିଲା, କିପରି ଲାଗିଲା ?

ମୁଁ ନିଶାର ଉଚ୍ଛ୍ୱସିତ ପ୍ରଶଂସା କରି କହିଲି, ତୁଳନା ହୁଏନା ନିଶା । ବିଶ୍ୱାସ କର, ମୋତେ ତୁମେ ଏକ ନୂତନ ରାଜ୍ୟକୁ ଘେନି ଆସିଚ ।

ନିଶା ଖାଲି ହସିଲା ଟିକିଏ । ଧୀରେ ଧୀରେ ଆଖି ଯୋଡ଼ିକ ତା'ର ଲାଗି ଆସୁଥିଲା ।

ମୁଁ କହିଲି, ତୁମେ ଖୁବ୍ ଥକି ପଡ଼ିଚ ନିଶା; ଟିକିଏ ବିଶ୍ରାମ କର । ଆମେ ଆଜି

ଉଠୁଚୁ ।

ନିଶା ସେହିପରି ଅଳସ ସ୍ୱରରେ କହିଲା, ପୁଣି କେବେ ଆସିବେ ?

ଆସିବି, ହୁଏତ କାଲି ପୁଣି ଆସିପାରେ । କହି ଉଠି ଠିଆ ହେଲି । ନିଶା ଉଠୁଥିଲା । ମୁଁ ବାରଣ କଲି । ସେ ମୋ କଥା ମାନିଲା ।

ତା'ପରେ ସନ୍ଧ୍ୟା ହେଲେ ମୁଁ ଆଉ ଥୟ ହୋଇ ଘରେ ରହି ପାରୁ ନ ଥିଲି । ବିରଞ୍ଚି ଥାଉ ନ ଥାଉ, ନିଜେ ମୁଁ ମୋର ଧୂସର ରଙ୍ଗର ଗାଡ଼ିଟା ଚଲେଇ ଆସି ପହଞ୍ଚି ଯାଉଥିଲି ନିଶା ଗୃହରେ । ସରୋଜାବାଈ ଯେପରି ମୋରି ପ୍ରତୀକ୍ଷା କରି ନି'ତି ବାଟ ଚାହିଁ ବସି ରହୁଥିଲା ।

ଆଦର ଯତ୍ନର ପରିମାଣଟା ଦିନକୁଦିନ ଯେପରି ବଢ଼ି ବଢ଼ି ଚାଲିଥିଲା । ନିଶା ବି ମୋ ଦେହ ମନରେ ସତେ କି ନିଶା ଧରେଇ ଦେଇଥିଲା । ତା'ର ଟିକକ ହସ ଆଉ ବଙ୍କିମ ଚାହାଣୀ ମୋତେ ସମ୍ମୋହିତ କରି ଝିଙ୍କି ଆଣୁଥିଲା ।

ଦିନେ ମୁଁ ନିଶାକୁ ଏକାନ୍ତରେ କହିଲି, ମୋ ସହିତ ବାହାରକୁ ବୁଲି ଯିବା ପାଇଁ । ସେଇ ମୁହୂର୍ତ୍ତରେ ନିଶାର ଆଖି ଦୁଇଟିରେ ଅସହାୟ ଚାହାଣୀ ଫୁଟି ଉଠିଲା । ସେ କିପରି ଅବଜ୍ଞାର ହସ ହସି କହିଲା, ଅସମ୍ଭବ କୁମାର ସାହେବ । ମା' ମୋତେ ମୋଟେ ବାହାରକୁ ଛାଡ଼ିବ ନାହିଁ ।

ମୁଁ ସେଦିନ ଅବାକ୍ ହୋଇ ଯାଇଥିଲି । ନିଶା ମୁହଁକୁ ବହୁ ସମୟ ଅନାଇ ରହି କହିଥିଲି, ତୁମେ ଭୁଲ୍ କହୁଚ ନିଶା । ମା' ମୋତେ ଏତେ ଆଦର କରନ୍ତି, ସ୍ନେହ କରନ୍ତି । ଅଥଚ ମୋଠାରେ ତାଙ୍କର ଏତିକି ବିଶ୍ୱାସ ନାହିଁ ଯେ, ମୋ ସହିତ ତୁମକୁ ସେ....

ନିଶା ଏଥର ହୋ ହୋ ହୋଇ ହସିଉଠି କହିଲା, ଆପଣ ମା'କୁ ଚିହ୍ନି ନାହାନ୍ତି କୁମାର ସାହେବ । ଆପଣ ଯଦି ରାଜି କରାଇ ପାରନ୍ତି ମୋର କୌଣସି ଆପତ୍ତି ନାହିଁ ।

ମୁଁ ଯାଇ ସରୋଜାବାଈ ପାଖରେ ପ୍ରସ୍ତାବଟା ବାଢ଼ିଥିଲି । ସେ ପାନ ଡାଲାରୁ ଚୂନ ଟିପେ ପାଟିରେ ଦେଉ ଦେଉ କହିଥିଲା, ତମେ ବାବା ସେ କଥା କୁହ ନାହିଁ । ଆମମାନଙ୍କର ଗୋଟାଏ ବୁନିଆଦ୍ ଅଛି । ବୟସ୍କା ଝିଅମାନଙ୍କୁ ଆମେ ବାହାରକୁ ଛାଡୁ ନାହିଁ । ନିହାତ୍ ଯଦି ତମର ଇଚ୍ଛା, ମୁଁ ବାଧା ଦେବି ନାହିଁ । ତେବେ ନିଶା ସଂଗରେ ମୋତେ ଯିବାକୁ ହେବ ।

ସେଦିନ ମୋ ମନଟା ଭାଙ୍ଗି ଖିନ୍‌ଭିନ୍ ହୋଇ ଯାଇଥିଲା । ତା'ପରେ ମୁଁ ଅନେକ ଦିନ ଯାଇ ନ ଥିଲି ନିଶା ଘରକୁ ।

ନିଶା ମୋତେ ଖବର ପଠାଇଥିଲା । ସରୋଜାବାଈ ବିରଞ୍ଚି ନାରାୟଣ ମାଧ୍ୟମରେ

ମୋତେ ଯିବା ପାଇଁ ବିଶେଷ ଅନୁରୋଧ କରି ପଠାଇଥିଲା, ମୁଁ କିନ୍ତୁ ଶକ୍ତ ହୋଇ ଯାଇଥିଲି । ରାଜକୀୟ ଆଭିଜାତ୍ୟ ମୋ ମନରେ ଚେଇଁ ଉଠିଥିଲା । ସ୍ଥିର କରିଥିଲି, ଆଉ ଯିବି ନାହିଁ । ନା ନା, ନିଶା ସହିତ ମୋର କୌଣସି ସଂପର୍କ ନାହିଁ । ମୁଁ ପ୍ରତିଜ୍ଞାରେ ଅଟଳ ହୋଇ ବସିଥିଲି ।

ବିରଞ୍ଚି ଆସି ମୋତେ ଦିନେ କହିଲା, କେଉଁ ଗୋଟାଏ ଜାଗାରେ ଏକ ବିରାଟ ସଂଗୀତ ସମ୍ମିଳନୀ ହେଉଛି । ସେଠାକୁ ଭାରତର ବହୁ ବିଖ୍ୟାତ ଗାୟକମାନେ ଆସୁଛନ୍ତି ଏବଂ ସେ ମୋ ପାଇଁ ଖଣ୍ଡିଏ ଟିକେଟ ମଧ୍ୟ କାଟିଛି ।

ସେଥିପାଇଁ ମୋର କୌଣସି ଆପତ୍ତି ନ ଥିଲା କିମ୍ବା ଅଭିଯୋଗ ମଧ୍ୟ ନଥିଲା ।

ନିର୍ଦ୍ଦିଷ୍ଟ ଦିନରେ ବିରଞ୍ଚି ଆଉ ମୁଁ ଯାଇ ସେଇ ସଂଗୀତ ସମ୍ମିଳନୀରେ ଯୋଗ ଦେଲୁ ।

ଦର୍ଶକମାନଙ୍କ ଭିଡ଼ରେ ସେଦିନ ଗ୍ୟାଲେରୀ ଭାଙ୍ଗି ପଡୁଥିଲା । ଇତି ପୂର୍ବରୁ ଗୋଟାଏ ସଂଗୀତ ସମ୍ମିଳନୀରେ ଏତେ ଜନ ସମାଗମ ମୁଁ କେବେ ଦେଖି ନ ଥିଲି ।

ପ୍ରକୃତରେ ସେଦିନ ସଂଗୀତ ସମାରୋହଟି ଖୁବ୍ ଉପଭୋଗ୍ୟ ହୋଇ ଉଠୁଥିଲା । ଜଣକ ପରେ ଜଣେ ଶାସ୍ତ୍ରୀୟ ସଂଗୀତ ଆରମ୍ଭ କରୁଥିଲେ, ଆଉ ମୁଁ ମୁଗ୍ଧ ଚକିତ ହୋଇ ଶୁଣୁଥିଲି । ମୁଁ ଯେ ବାସ୍ତବ ଜଗତରେ ବସି ରହିଛି, ସେ କଥା ମୋର ମନେ ନ ଥିଲା ।

ହଠାତ୍ ଏକ ସମୟରେ ଦେଖିଲି ନିଶା ମାଇକ୍ ଆଗରେ ବସି ତାନପୁରାରେ ଆଙ୍ଗୁଳି ସଂଚାଳନ କରୁଛି । ଆଉ ଧୀରେ ଧୀରେ କଣ୍ଠରୁ ଭାସି ଆସୁଚି ଏକ ଅପୂର୍ବ ରାଗିଣୀ । ମୁଁ ମୋ ଆଖିକୁ ବିଶ୍ୱାସ କରି ପାରିଲି ନାହିଁ । ଖଣ୍ଡିଏ ଶୁଭ୍ର ବସନ ପରିହିତା, ଆଲୁଳାୟିତ କେଶା ମୁଦ୍ରିତ ନୟନା ନିଶା, ହଁ ଏ ଯେ ନିଶାର କଣ୍ଠସ୍ୱର । ଧୀରେ ଧୀରେ ମୋ ମନର ସମସ୍ତ ଦୃଢ଼ତା ତରଳି ଯିବାକୁ ଲାଗିଲା ।

ବିରଞ୍ଚି କହିଲା, ଦେଖୁଛ ତ, ତୋ'ପାଇଁ ନିଶା ପ୍ରାଣରେ କେତେ ବ୍ୟଥା, କେତେ ବେଦନା । ତୁ ତ ସଙ୍ଗୀତର ଅର୍ଥ ବୁଝୁ, ନିଶାର ବେଦନା ବୋଧହୁଏ ଅନୁଭବ କରି ପାରୁଥିବୁ ।

ମୁଁ ନୀରବରେ ମୁଗ୍ଧ ହୋଇ ଶୁଣୁଥିଲି । ବିରଞ୍ଚିର ସମସ୍ତ କଥା ମୋର ଏ କାନରେ ପଶି ସେ କାନରେ ବାହାରି ଯାଉଥିଲା । ଜନତା, ସ୍ତବ୍ଧ, ଆସର ମୁଗ୍ଧ । ନୀରବ, ନିଶ୍ଚଳ । ଖାଲି ଗୋଟିଏ ମଧୁର କଣ୍ଠସ୍ୱର, ତବଲାର ଲହର । ମୁଁ ସବୁ ଭୁଲି ଯାଇଥିଲି । ମୋର କିଛି ମନେ ନ ଥିଲା ।

ଏକ ସମୟରେ ସମୂହ କରତାଳି ଧ୍ୱନିରେ ମୋର ଚେତା ଫେରିଲା । ମୁଁ ଉଠି ପଡ଼ି ଚାହିଁଲି, ନିଶା ବିନମ୍ର ନମସ୍କାର ଜଣାଇ ପର୍ଦ୍ଦାର ଅନ୍ତରାଳକୁ ଫେରି ଯାଉଛି । ମୁଁ ଆମ୍

ସମ୍ଭରଣ କରି ପାରିଲି ନାହିଁ । ସିଟ୍ ଉପରକୁ ଉଠିଯାଇ ଚିତ୍କାର କରି ଡାକି ଦେଲି, ନିଶା ।

ନିଶା ଫେରି ଚାହିଁଲା । ମୁହୂର୍ତ୍ତେ ମାତ୍ର । ତା'ପରେ ସେ ଲୁଚିଗଲା ପର୍ଦ୍ଦାର ଅନ୍ତରାଳରେ ।

ବିରଞ୍ଚି ମୋ ହାତ ଧରି ଟାଣି ଟାଣି ବାହାରକୁ ଘେନି ଆସିଲା । ସମଗ୍ର ଶ୍ରୋତା ମଣ୍ଡଳୀରେ ସେତେବେଳକୁ ନିଶାର ପ୍ରଶଂସାର ଗୁଞ୍ଜରଣ ଖେଳି ବୁଲୁଥାଏ । କେହି କେହି କହୁ ଥାଆନ୍ତି, ବହୁ ବର୍ଷ ପରେ ଗୋଟିଏ କଣ୍ଠ ଶୁଣାଗଲା । ତୁଳସୀ ଦୁଇ ପତ୍ରରୁ ବାସେ ।

ମୋତେ ବିରଞ୍ଚି ଟାଣି ଟାଣି ଗ୍ରୀନ୍ ରୁମ୍‌ଯାଏ ନେଇଗଲା । ନିଶା ଯେପରି ମୋରି ପ୍ରତୀକ୍ଷା କରିଥିଲା । କ୍ଷଣକେ ମୋ ପାଖକୁ ଛୁଟି ଆସୁ ଆସୁ ହଠାତ୍ କାହିଁକି ସଂକୁଚିତ ହୋଇ ଠିଆ ହୋଇଗଲା ।

ମୁଁ ଆଗେଇ ଗଲି, କହିଲି- ଅପୂର୍ବ ନିଶା । ତମେ ଆଜି ହଜାର ହଜାର ଦର୍ଶକଙ୍କୁ ମୁଗ୍‌ଧ କରିଚ, ଚକିତ କରିଛ । ମୋର ଅଭିନନ୍ଦନ ଗ୍ରହଣ କର ।

ନିଶା ମୁହଁ ଖୋଲି କିଛି କହିଲା ନାହିଁ । କିନ୍ତୁ ହଠାତ୍ ନଇଁ ପଡ଼ି ମୋ ପାଦରୁ ଧୂଳି ନେଇ ମୁଣ୍ଡରେ ଲଗାଇଲା । ମୁଁ ବିସ୍ମିତ ହୋଇ ଯାଇଥିଲି ନିଶାର ସେହି ଆଚରଣରେ । ବୁଲି ଅନେଇଲି, ବିରଞ୍ଚି ସେଠାରେ ନାହିଁ । ଆଉ ବି ନାହାନ୍ତି କେହି ନିଶାର ସେହି ଆଚରଣ ଲକ୍ଷ୍ୟ କରିବାପାଇଁ । କେବଳ ଅଳ୍ପ ଦୂରରେ ନିଶାର ସେହି ତବଲିଚ୍‌ଟି ଅନାଇ ରହିଚି ଆମ ଆଡ଼େ ।

ମୁଁ ନିଶାକୁ ତଳୁ ଉଠାଇଲି । କହିଲି, ଏ କ'ଣ କରୁଚ ?

ନିଶା କହିଲା, ଏ ସାର୍ଥକତା ଯେ ମୋର ଆପଣଙ୍କ ପାଇଁ ।

ମୋ ପାଇଁ ?

ମୁଁ ବିସ୍ମିତ ହୋଇ ଯାଇଥିଲି ।

ଆପଣ ବୁଝି ପାରିବେ ନାହିଁ କୁମାର ସାହେବ, ନିଶା କହିଲା । ଯଦି ଆଉ ଘଣ୍ଟାକ ପୂର୍ବରୁ ମୁଁ ଜାଣି ପାରି ଥାଆନ୍ତି ଯେ ଆପଣ ଆସିଛନ୍ତି ଏଇ ଆସରକୁ, ତା'ହେଲେ ହୁଏତ ମୁଁ ଆଜି ଏପରି ନିଖୁଣ ସ୍ୱର ସୃଷ୍ଟି କରି ପାରି ନଥାନ୍ତି ।

ମୁଁ ବୁଝିଲି ନିଶାର ଅନ୍ତରର ବ୍ୟଥା ।

ମା' ଆସି ନାହାନ୍ତି ? ପଚାରିଲି ।

ନା, ସେ ଖୁବ୍ ଅସୁସ୍ଥ । ଡାକ୍ତର ଉଠିବାକୁ ବାରଣ କରିଛି ।

କ'ଣ ହୋଇଛି ।

ସେଇଟା ତା'ର ପେଟ ରୋଗ, ମଝିରେ ମଝିରେ ବାହାରେ । ସାତ ଆଠଦିନ କରି ଶୋଇ ରହିବାକୁ ହୁଏ ।

ତୁମେ କାହା ସଙ୍ଗରେ ଏଠାକୁ ଆସିଛ ?

ସଦାକତ୍ ସଙ୍ଗରେ ।

ସଦାକତ୍ ! ସେ ପୁଣି କିଏ ?

ସେ ଆମର ତବ୍‌ଲିବ୍, ହାତ ବଢ଼େଇ ନିଶା ଦେଖେଇ ଦେଲା ସଦାକତ୍‌କୁ । ଅଦୂରରେ ଠିଆ ହୋଇ ସଦାକତ୍ ଆମକୁ ଏକ ଅସହାୟ ଚାହାଣୀରେ ଅନାଇ ଥିଲା ।

ମୁଁ ସଦାକତ୍ ଆଡୁ ଆଖି ଫେରେଇ ଆଣି ନିଶା ମୁହଁରେ ନିବଦ୍ଧ କରି ଠିଆ ହେଲି ବହୁ ସମୟ । ତା'ପରେ ଧୀରେ ଧୀରେ କହିଲି, ଆଜି ତମର ଏଇ ସଫଳ ଦିବସରେ ମୁଁ ତୁମକୁ କିଛି ଦେଇ ପାରୁ ନାହିଁ ନିଶା, ଦୁଃଖିତ ।

କାହିଁକି ?

ଆଜି ଯାହା ତମର ପ୍ରାପ୍ୟ, ତାହା ମୋ ପାଖରେ ନାହିଁ ।

ନିଶା ମୋ ହାତ ଧରି ବାହାର ଆଡ଼କୁ ଝିଙ୍କି କହିଲା, ଆସନ୍ତୁ କୁମାର ସାହେବ, ଆଜି ମୁଁ ଆପଣଙ୍କ ମନସ୍କାମ ପୂରଣ କରିବି ।

ନିଶା ! ମୋ ସ୍ୱରଟା ସେତେବେଳେ କମ୍ପି ଉଠିଥିଲା ।

ନିଶା ମୋ ମନୋଭାବ ବୁଝିପାରି କହିଲା, ବିଶ୍ୱାସ ହେଉନି ଆପଣଙ୍କର ? ବାଧା ଦେବାକୁ ମା' ଆଜି ପାଖରେ ନାହିଁ । ତେଣୁ ଆଉ କାଳ ବିଳମ୍ବ ନ କରି....

ନିଶା ମୋ ହାତ ଧରି ଆଗେଇ ଯାଉଥିଲା । ଆଉ ଏକ ଅସହାୟ ଚାହାଣୀ ଆମକୁ ପଛେ ପଛେ ଅନୁସରଣ କରୁଥିଲା । ନିଶା ପଛକୁ ଲକ୍ଷ୍ୟ କରି କହିଲା, ତୁମେ ଥାଅ ସଦାକତ୍ । ମୁଁ ଟିକିଏ ଆସୁଚି ।

ସେଦିନ ମୋ ମନ ପ୍ରାଣ ଏକ ଅଭିନବ ମାଧୁର୍ଯ୍ୟରେ ଭରି ଉଠିଥିଲା । ମୁଁ ଭୁଲି ଯାଇଥିଲି ବିରଞ୍ଚି ନାରାୟଣ କଥା, ଭୁଲି ଯାଇଥିଲି ସଂଗୀତ ସମ୍ମିଳନୀ ଆଉ ଭୁଲି ଯାଇଥିଲି ଲୋକାଚାର, ସବୁ ।

ଧୂସର ରଂଗର ଗାଡ଼ିଟି ସେଦିନ ମୋର ପ୍ରାଣବନ୍ତ ହୋଇ ଉଠିଥିଲା । ମୁଁ ଷ୍ଟିଅରିଂ ଧରିଥିଲି, ଆଉ ନିଶା ବସିଥିଲା ମୋ କାନ୍ଧରେ ମୁଣ୍ଡରଖି । ଧୀରେ ଧୀରେ ବ୍ୟଥିତ କଣ୍ଠରେ କହି ଯାଇଥିଲା ତା'ର ପ୍ରତୀକ୍ଷାର କାହାଣୀ । ଖାଲି ସେତିକି ନୁହେଁ, ଯେତେବେଳେ ଆର୍ଦ୍ର କଣ୍ଠରେ ନିଶା ଆରମ୍ଭ କଲା ତା'ର ପରିଚିତ, ଆଉ କାନ୍ଦି କାନ୍ଦି କହିଲା, ସରୋଜାବାଈ ମୋର ମା' ନୁହେଁ, ଆଉ ଏଇ ପରିଚିତ ମୋର ଅସଲ ପରିଚୟ ନୁହେଁ; ସେତେବେଳେ ଗାଡ଼ିଟାକୁ ଗୋଟାଏ ନିଶ୍ଚିନ୍ତ ଆକ୍‌ସିଡ଼େଣ୍ଟରୁ ମୁଁ ବହୁ କଷ୍ଟରେ ବଞ୍ଚାଇଲି ।

ନିଶା ଯାହା ସେଦିନ କାନ୍ଦି କାନ୍ଦି ମୋ ଆଗରେ ବ୍ୟକ୍ତ କଲା, ତାର ସାରାଂଶ ହେଉଛି, ନିଶା ସରୋଜାବାଈର ପାଳିତା କନ୍ୟା । ନିଶାର ଜନ୍ମ ଲଖ୍‌ନଉର ଏକ ସଂଭ୍ରାନ୍ତ ପରିବାରରେ । ଯେତେଦୂର ନିଶାର ମନେପଡ଼େ, ତା'ର ବୟସ ଯେତେବେଳେ ସାତ ଆଠ ବର୍ଷ, ସେତେବେଳେ ତା'ର ବାପା ମା' ଇହଲୋକ ତ୍ୟାଗ କରିଥିଲେ । ନିଶାର ଆପଣାର ହୋଇଥିଲେ ଏକମାତ୍ର ମଦ୍ୟପ ମାମୁଁ । ମାମୁଁର ସଂସାରରେ କେହି ନ ଥିଲେ, ଅନ୍ନର ବି କିଛି ସଂସ୍ଥାନ ନ ଥିଲା । ଫଳରେ ସାଧାରଣତଃ ଯାହା ହୁଏ ତାହାହିଁ ହୋଇଥିଲା । ଶେଷ ପର୍ଯ୍ୟନ୍ତ ନିଶାକୁ ତା'ର ମାମୁଁ ସରୋଜାବାଈକୁ ବିକ୍ରି କରି ଦେଇଥିଲା । ସେଇଦିନୁ ସରୋଜାବାଈ ତା'ର ମା' ।

ଏକ ସମୟରେ ସରୋଜାବାଈର ପ୍ରଚୁର ରୂପ ଥିଲା, ଆଉ କଣ୍ଠର ଯାଦୁକାରୀ ଆକର୍ଷଣ ବି ଥିଲା । କିନ୍ତୁ ଆଜି ବୟସର କଷାଘାତରେ ସେ ସବୁ ଯାଇଛି । ତା'ର ଆଜି ଏକମାତ୍ର ଅବଲମ୍ବନ ହେଉଛି ନିଶା । ସେଇଥିପାଇଁ ସେ ନିଶାକୁ ହାତ ଛଡ଼ା କରିବାକୁ ଚାହୁଁ ନାହିଁ ।

ସେଦିନ ନିଶାର କରୁଣ ଇତିହାସ ଶୁଣି ମୁଁ ବିଚଳିତ ହୋଇ ପଡ଼ିଥିଲି । ଆଉ ଭାବ ପ୍ରବଣ ହୋଇ କହିଥିଲି, ଆଚ୍ଛା ନିଶା, ତମର କ'ଣ ସରୋଜାବାଈ କବଳରୁ ମୁକ୍ତି ପାଇବାର କୌଣସି ଉପାୟ ନାହିଁ ?

ଅଛି, କିନ୍ତୁ.....

କୁହ ନିଶା, ଆଜି ତୁମେ ନିଷ୍କପଟ ଚିତ୍ତରେ ମୋ ଆଗରେ ସବୁ ଖୋଲି କୁହ ।

ନିଶା ଅଶ୍ରୁଳ ନୟନରେ ମୋ ମୁହଁକୁ କିଛି ସମୟ ଅନାଇ ରହି, ଗୋଟାଏ ଦୀର୍ଘଶ୍ୱାସ ତ୍ୟାଗ କରି କହିଲା, ନାଁ ଆଉ କୁମାର ସାହେବ । ଆକାଶ କୁସୁମ ଚୟନର ଦୁଃସ୍ୱପ୍ନ ଠାରୁ ବରଂ ମୋର ଏଇ ଗତାନୁଗତିକ ଜୀବନ ବହୁ ଗୁଣରେ ଭଲ ।

ନିଶା.....ମୁଁ ସେଦିନ ତାକୁ ବିବ୍ରତ କରି ପକାଇଥିଲି । ଶେଷରେ କହିଥିଲି, ମୁଁ ଯଦି ତୁମକୁ ଗ୍ରହଣ କରିବାକୁ ପ୍ରସ୍ତୁତ ହୁଏ....

ସେ ମୋ ଛାତି ଉପରେ ମୁଣ୍ଡ ପିଟି କାନ୍ଦି କାନ୍ଦି କହିଥିଲା, ଏତେ ବଡ଼ ସୌଭାଗ୍ୟର ଆଶା ମୋତେ ଦିଅ ନାହିଁ କୁମାର ସାହେବ, ଭାଗ୍ୟ ମୋତେ ପରିହାସ କରିବ ।

ରାଜାସାହେବ ନୀରବ ରହିଲେ । ଯେପରି ସେ ଦେହ ମନରେ ଅଶେଷ ଯନ୍ତ୍ରଣା ଅନୁଭବ କରୁଥିଲେ । ମୁଁ ଉଦଗ୍ରୀବ ହୋଇ ପ୍ରତୀକ୍ଷା କରିଥିଲି, ଆଉ ଭାବୁଥିଲି ସଦାକତ୍ କଥା । ସଦାକତ୍ ଥିଲା ନିଶାର ତବଲିଚ୍ । ତା' ସହିତ ଦିନକ ପାଇଁ ମୋର ଦେଖା ହୋଇଥିଲା ଏଇ ନନ୍ଦନଗଡ଼ରେ । ଏ ନିଶ୍ଚୟ ସେଇ ତବଲିଚ୍ । ଏଇ ରହସ୍ୟର ବହୁ ତଥ୍ୟ ହୁଏତ ଜଣାଥିବ ତାକୁ । ପ୍ରଥମେ ତା'ରି ସନ୍ଧାନ କରିବାକୁ ହେବ ।

ପୁଣି ରାଜାସାହେବ ଆରମ୍ଭ କଲେ, ହଁ ଭାଗ୍ୟ ହୁଏତ ତାକୁ ପରିହାସ କରିଥିଲା । ସେଦିନ ନିଶାକୁ ମୁଁ ଆଣି ସଂଗୀତ ସମ୍ମିଳନୀରେ ଛାଡ଼ି ଦେଇ ଏକ ଭାରାକ୍ରାନ୍ତ ମନ ନେଇ ଘରକୁ ଫେରିଥିଲି । ବିରଞ୍ଚି ସହିତ ଦେଖାହୋଇ ନ ଥିଲା ।

ତା'ପରେ ମୁଁ ଆଉ ନିଶା ଘରକୁ ନ ଯାଇ ରହି ପାରି ନ ଥିଲି । ସରୋଜାବାଈ ମୋତେ ପୁଣି ଅଭିନନ୍ଦନ ଜଣାଇଥିଲା । ଆଦର କରିଥିଲା ।

କିଛିଦିନ ବେଶ୍ ଚାଲିଲା । ଟିକିଏ ନିରୋଳା ପାଇଲେ, ନିଶା ତା' ଭବିଷ୍ୟତ ଜୀବନ

ଧାରାର କଥା ମୋ ଆଗରେ କହୁଥିଲା । କିପରି ସେ ସେଇ ସୁନେଲି ଦିନଗୁଡ଼ିକୁ ପ୍ରତୀକ୍ଷା କରି କରି ଦିନ ଗଣୁଛି ।

ମୁଁ ତାକୁ କଥା ଦେଇଥିଲି, କହିଥିଲି ଯେତେ ବାଧା ବିପତ୍ତି ସୃଷ୍ଟି ହେଉ ପଛେ ନନ୍ଦନଗଡ଼କୁ ମୁଁ ତାକୁ ନେଇଯିବି, ଆଉ ତାକୁ ଦେବି ରାଜ ରାଣୀର ସୌଭାଗ୍ୟ ।

ସେ ମୋ କଥା ବିଶ୍ୱାସ କରିଥିଲା ।

ଆଉ କିଛିଦିନ ପରେ ବାପାଙ୍କ ଅସୁସ୍ଥ ବାର୍ତ୍ତା ବହନ କରି ଗୋଟାଏ ଟେଲିଗ୍ରାମ ପହଞ୍ଚିଲା । ମୋତେ ନନ୍ଦନଗଡ଼ ଫେରିଯିବାକୁ ହିଁ ହେବ । ଉପାୟ ନାହିଁ ।

ନିଶା ଠାରୁ ବିଦାୟ ଆଣିବାକୁ ଗଲି । ସେ କାନ୍ଦି କାନ୍ଦି ମୋତେ ବିଦାୟ ଦେଲା । ତାକୁ ପ୍ରତିଶ୍ରୁତି ଦେଇ ଆସିଲି, ଚିନ୍ତାର କିଛି କାରଣ ନାହିଁ । ବାପାଙ୍କ ଅସୁସ୍ଥତା ସମୟରେ ତାଙ୍କର ସେବା କରି ମୁଁ ତାଙ୍କୁ ରାଜି କରାଇ ନେବି । ସେ ମୋତେ ଖୁବ୍ ଭଲ ପାଆନ୍ତି । ହୁଏତ ମୋର କଥା ଭାଙ୍ଗିବେ ନାହିଁ ।

ନନ୍ଦନଗଡ଼ରେ ପହଞ୍ଚି ଦେଖିଲି, ବାବା ଖୁବ୍ ଅସୁସ୍ଥ । ସେ ବିଛଣାରେ ପ୍ରାୟ ତିନି ଚାରିମାସ ପଡ଼ି ରହିଲେ । ମୁଁ ତାଙ୍କୁ ଛାଡ଼ି ଆସିବାର ଉପାୟ ନ ଥିଲା । ସମସ୍ତ ପ୍ରକାର ଚିକିତ୍ସା, ସେବା ଯତ୍ନକୁ ଫାଙ୍କି ଦେଇ ସେ ଚାଲିଗଲେ । ଆଗରୁ ମା' ଯାଇଥିଲେ । ତେଣୁ ମୁଁ ନିଃସହାୟ ହୋଇ ପଡ଼ିଲି । ନନ୍ଦନଗଡ଼ର ସମସ୍ତ ଦାୟିତ୍ୱ ପଡ଼ିଲା ମୋରି ଉପରେ ।

ତା'ପରେ ବାବାଙ୍କର ଶୁଦ୍ଧି କ୍ରିୟା ଇତ୍ୟାଦି କାର୍ଯ୍ୟ ପରେ ମୋର ଅଭିଷେକ ଆଦି ରାଜକୀୟ କାଇଦା କଟକଣା ଭିତରେ ମୋତେ ଆହୁରି ଦୁଇ ତିନିମାସ ଅତିବାହିତ କରିବାକୁ ପଡ଼ିଲା । ମୋର ପାଠପଢ଼ା ଯେ ସେତିକିରେ ଇତି ହୋଇଥିଲା, ସେ କଥା ବେଶ୍ ମୁଁ ବୁଝିପାରିଥିଲି, କିନ୍ତୁ ଭୁଲି ପାରି ନ ଥିଲି ନିଶାକୁ ।

ଶେଷ ପର୍ଯ୍ୟନ୍ତ ମୋତେ ଦିନେ ନିଶା ପାଖକୁ ଛୁଟି ଯିବାକୁ ହେଲା । ମୁଁ ଯାଇ ଦେଖିଲି, ନିଶା ଜୀବନ ନାଟକରେ ବି ପରିବର୍ତ୍ତନ ଘଟିଛି । ସେ ଖଣ୍ଡିଏ ମଳିନ ବସ୍ତ୍ର ପିନ୍ଧି ବିଷଣ୍ଣ ବଦନରେ ବସି ବସି ଯେପରି ମୋରି ପ୍ରତୀକ୍ଷା କରୁଥିଲା । ମୋର ଉପସ୍ଥିତିରେ ସେ ଖୁବ୍ ଉଲ୍ଲସିତ ହୋଇ ମୋ ପାଖକୁ ଧାଇଁ ଆସିଲା ନାହିଁ, କିମ୍ୱା ଅଭିମାନ କରି ମୁହଁ ବୁଲାଇ ଠିଆହେଲା ନାହିଁ । କେବଳ ଗମ୍ଭୀର ହୋଇ କହିଲା, ଆପଣ ଶେଷ ପର୍ଯ୍ୟନ୍ତ ଆସିଲେ କୁମାର ସାହେବ ?

ମୁଁ ସେଠାକାର ପରିବେଶ ଆଡ଼େ ଲକ୍ଷ୍ୟକରି ଟିକିଏ ବିଚଳିତ ହୋଇ ପଡ଼ିଥିଲି । କାରଣ ଗୃହର ବିପର୍ଯ୍ୟସ୍ତ ଅବସ୍ଥାହିଁ ପ୍ରଥମେ ମୋର ଦୃଷ୍ଟି ଆକର୍ଷଣ କରିଥିଲା । ମୁଁ ପଚାରିଲି, ମା'ଙ୍କୁ ଦେଖୁନାହିଁ ଯେ ?

ନିଶା ସେହିପରି ଉତ୍ତର ଦେଲା, ଆଉ ତାଙ୍କୁ ଆପଣ କେବେ ଦେଖିବେ ନାହିଁ । ସେ ଦୁଇମାସ ହେବ ଆମକୁ ଛାଡ଼ି ସେପୁରକୁ ଚାଲି ଯାଇଛନ୍ତି ।

ମୁଁ ନିଶାକୁ ଆଉ କୌଣସି ସାନ୍ତ୍ୱନା ଦେଇ ପାରିଲି ନାହିଁ । କେବଳ ନୀରବରେ ବସି ରହିଲି ।

ନିଶା ମୋ ପାଖରେ ଆସି ବସିଲା । ଯେପରି ଏ କେଇମାସ ଭିତରେ ମନର ସମସ୍ତ ଲାଳିତ୍ୟ ସେ ହରାଇଛି । ଖାଲି ବଞ୍ଚି ରହିଛି ନିଶାର ଦେହଟା ।

ମୁଁ କହିଲି, ତମର ଏଇ ବିପର୍ଯ୍ୟୟ ସମ୍ବନ୍ଧରେ ମୋତେ ଟିକିଏ ଜଣାଇଲ ନାହିଁ ?

କ'ଣ ଲାଭ ହୋଇ ଥାଆନ୍ତା । ନିଶା ସ୍ୱରରେ କୌଣସି ଆଗ୍ରହ ନ ଥିଲା ।

ତା'ପରେ, ବର୍ତ୍ତମାନ ଚଳୁଛ କିପରି ?

ମା'ଙ୍କ ସଞ୍ଚିତ ଅର୍ଥ ସବୁ ପ୍ରାୟ ଶେଷ ହୋଇ ଆସିଲାଣି । ଭାବୁଛି, କିଛି ଗୋଟାଏ ନୂତନ ପଥର ସନ୍ଧାନରେ ବାହାରିବାକୁ ହେବ ।

ଘର ଭିତରେ କାହାରିକୁ କେଉଁଠି ନ ଦେଖି ମୁଁ ପଚାରିଲି, ଚାକର ଚାକରାଣୀ କାହାରିକୁ ଦେଖୁନାହିଁ ଯେ ।

ସମସ୍ତଙ୍କୁ ବିଦାୟ କରି ଦେଇଛି । ଖାଲି ଗଲା ନାହିଁ ସଦାକତ୍ । ସେହି ମୋ ଦୁର୍ଦ୍ଦିନର ଏକମାତ୍ର ବନ୍ଧୁ ହୋଇ ପଡ଼ି ରହିଛି ।

ସଦାକତ୍ ଦୁଇ ହାତରେ ଦୁଇ କପ୍ ଚା' ଧରି ଆମ ଆଡ଼କୁ ଆଗେଇ ଆସୁଥିଲା । ଆଖିରେ ତା'ର ସେହିପରି ନିରୀହ ଚାହାଣୀ ଲାଗି ରହିଥିଲା ।

ନିଶାର ଏପରି ଅବସ୍ଥା ମୋର କଳ୍ପନାର ବାହାରେ ଥିଲା, ତେଣୁ ମନକୁ ମୁଁ ପ୍ରସ୍ତୁତ କରି ପାରି ନଥିଲି । ଏପରି ଅବସ୍ଥାରେ କ'ଣ ଯେ ମୋର କରଣୀୟ ମୁଁ ଚିନ୍ତା କରିପାରୁ ନ ଥିଲି ।

ନୀରବତା ଭିତରେ ଚା'ପିଆ ଶେଷ ହୋଇଗଲା ।

ଏକ ସମୟରେ ହଠାତ୍ ମୁଁ କହି ଉଠିଲି, ତୁମେ ତା'ହେଲେ ପ୍ରସ୍ତୁତ ହୁଅ ନିଶା । ତୁମକୁ ଏଠାରେ ଆଉ ମୁଁ ଏକା ଛାଡ଼ି ଯାଇ ପାରିବି ନାହିଁ ।

ନିଶା ମୋ ମୁହଁକୁ କିପରି ସନ୍ଦେହୀ ଦୃଷ୍ଟିରେ ବହୁ ସମୟ ଅନାଇ ରହିଲା । ପାଟିରୁ ତା'ର କଥା ବାହାରିଲା ନାହିଁ ।

ବିଶ୍ୱାସ ହେଉନି ନିଶା ? ମୋତେ ବିଶ୍ୱାସକର, ମୁଁ ତମର ପ୍ରତିଭାକୁ ନଷ୍ଟ କରିବାକୁ ଦେବି ନାହିଁ । ଦିନେ କଥା ଦେଇଥିଲି, ଆଜି ତାହା ପାଳନ କରିବାର ବେଳ ଆସିଛି । ତୁମେ ପ୍ରସ୍ତୁତ ହୁଅ । କାଲି ଆସି ମୁଁ ତୁମକୁ ନେଇଯିବି ।

ଆଉ ସେଦିନ କୌଣସି କଥା କହି ନ ଥିଲି ନିଶାକୁ ।

ସେ ହୁଏତ ମୋର ଏହି ଅଭାବିତ ପ୍ରସ୍ତାବରେ ସ୍ତବ୍ଧ ହୋଇ ଯାଇଥିଲା । ମୁଁ ଉଠି ଠିଆହେଲି । କହି ଆସିଲି, କାଲି ସନ୍ଧ୍ୟାବେଳକୁ ମୁଁ ଆସି ତୁମକୁ ନେଇଯିବି ।

ନିଶା ପଥର ପାଲଟି ଯାଇଥିଲା ।

ମୋତେ ମୁହଁ ଟେକି ବି ଚାହିଁ ପାରି ନଥିଲା ।

ମୁଁ ଆରଦିନ ସନ୍ଧ୍ୟାରେ ଯାଇ ନିଶା ଘରେ ପହଞ୍ଚିଲି । ସେ ପ୍ରସ୍ତୁତ ହୋଇ ମୋରି ପଥ

ଚାହିଁ ବସିଥିଲା । ଜିନିଷପତ୍ର ମଧ୍ୟରେ ଗୋଟିଏ ଚମଡ଼ା ସୁଟ୍‌କେଶ ଆଉ ତାନପୁରାଟିଏ ଥୁଆ ହୋଇଥିଲା ।

ଅଦୂରରେ ଗୋଟିଏ ବେଡ଼ିଂ ଉପରେ ସଦାକତ୍ ବସିଥିଲା, ହଳେ ଡୁବିତବଲା ରଖା ହୋଇଥିଲା ତା' ସାମ୍‌ନାରେ ।

ନିଶା ମୋତେ ଦେଖିବାକ୍ଷଣି କିପରି ଅବିଶ୍ୱାସ ଦୃଷ୍ଟିରେ ମୋ ମୁହଁକୁ ଚାହିଁ, ପାଦ ଦୁଇଟି ଧରି ଲୋଟି ପଡ଼ିଲା ।

ମୁଁ ତା' ହାତ ଧରି ଉଠାଇଲି ।

ସଦାକତ ଆଡ଼େ ଚାହିଁ ସେ କହିଲା, ତା'ର ଆଉ ସାହା ଭରସା କେହି ନାହିଁ । ଆପଣ ଯଦି....

ମୁଁ ଆପତ୍ତି କଲି ନାହିଁ ।

ସଦାକତ୍ ମୋ ଆଡ଼େ କୃତଜ୍ଞ ଦୃଷ୍ଟିରେ ଅନାଇଥିଲା ।

ନିଶାକୁ ଘେନି ଆସିଲି ନନ୍ଦନଗଡ଼କୁ । ତା' ସଙ୍ଗରେ ଆସିଲା ସଦାକତ୍ । କିନ୍ତୁ ନନ୍ଦନଗଡ଼ରେ ନିଶାର କି ପରିଚୟ ଦେବି ମୁଁ ।

ମୋର ଜଣେ ଆତ୍ମୀୟା କହି, ନନ୍ଦନଗଡ଼ର ରାଜପ୍ରାସାଦରେ ତା'ପାଇଁ ଠାଇଁ ଠିକ୍ କଲି । ସଦାକତ୍‌ର ପରିଚୟ ଦେଲି ନିଶାର ସେବକ ହିସାବରେ ।

କିନ୍ତୁ ରାଜବାଟୀର ସମସ୍ତ ଆଖି ସନ୍ଦେହୀ ହେଇ ଉଠିଲା । ଯଦିଓ ସାହସ କରି କେହି ନିଶାର ସବିଶେଷ ଇତିହାସ ଜାଣିବା ପାଇଁ ମୋତେ କ୍ଷତ ବିକ୍ଷତ କରି ନ ଥିଲେ, ତଥାପି ମନେ ମନେ ମୁଁ କିପରି ସଂକୁଚିତ ହୋଇ ପଡ଼ିଥିଲି ।

ଏହି ସନ୍ଦିଗ୍ଧ ଭାବ କଟିବା ପାଇଁ ବେଶ୍ କିଛିଦିନ ଲାଗି ଯାଇଥିଲା । ତା'ପରେ ସ୍ୱଚ୍ଛନ୍ଦ ଜୀବନଯାତ୍ରା ଆରମ୍ଭ ହୋଇ ଯାଇଥିଲା ଆମର । ନିଶା ପୁଣି ଗୀତ ଗାଇବାକୁ ଆରମ୍ଭ କରି ଦେଇଥିଲା । ପ୍ରତି ସନ୍ଧ୍ୟାବେଳେ ନିଶା କଣ୍ଠ ସଂଗୀତ ଶୁଣାଉଥିଲା ମୋତେ ଆଉ ମୋର ପରିଜନ ବର୍ଗଙ୍କୁ । ସଦାକତ୍ ତବଲା ସଙ୍ଗତ୍ କରି ମୁଗ୍ଧ କରୁଥିଲା ଆସରକୁ ।

ନିଶାର କୌଣସି ଅଭିଯୋଗ ନ ଥିଲା ।

କେବେ ସେ ମୁହଁ ଖୋଲି ସୁବିଧା ଅସୁବିଧା କଥା ତା'ର ଜଣାଉ ନଥିଲା । ମୁଁ ତାକୁ ଯେତେବେଳେ ଦେଖୁଥିଲି ପ୍ରଫୁଲ୍ଲ ଥିଲା ପରି ମନେ ହେଉଥିଲା ।

ଭାରତର ବିଭିନ୍ନ ସ୍ଥାନରୁ ଭିନ୍ନ ଭିନ୍ନ ସମୟରେ ପ୍ରସିଦ୍ଧ ସଙ୍ଗୀତଜ୍ଞମାନଙ୍କୁ ଆଣି, ମଝିରେ ମଝିରେ ସଙ୍ଗୀତ ଆସର ବସାଉଥିଲି । ନିମନ୍ତ୍ରିତ ହୋଇ ଆସୁଥିଲେ, ଗୁଣୀଜନମାନେ । ସମସ୍ତେ ନିଶାର ପ୍ରଶଂସା କରୁଥିଲେ । ଛାତି ମୋର ଗର୍ବରେ ଫୁଲି ଉଠୁଥିଲା ।

ଏହିପରି ଦୁଇ ତିନୋଟି ବର୍ଷ ମହା ଆନନ୍ଦରେ କଟିଗଲା ।

ତା'ପରେ ନରେନ୍ଦ୍ରପୁରର ରାଜାସାହେବ, ଯାହାଙ୍କୁ ମୁଁ ହତ୍ୟା କରିଛି ବୋଲି ପୋଲିସ୍ ସନ୍ଦେହ କରୁଛି, ସେଇ ମୋ ପାଇଁ ଆଣିଲେ ଏକ ବିବାହ ପ୍ରସ୍ତାବ । ପ୍ରସ୍ତାବଟା ଏତେ କ୍ଷିପ୍ର

ଗତିରେ ଆଗେଇଲା ଯେ, ମୋର ମତାମତକୁ ଅପେକ୍ଷା ନ କରି ସବୁ ପ୍ରାୟ ଠିକ୍‌ଠାକ୍ ହୋଇଗଲା । କନ୍ୟା ନରେନ୍ଦ୍ରପୁରର ରାଜାସାହେବଙ୍କର ଏକ ନିକଟ ସଂପର୍କୀୟା ।

ବିବାହ ପ୍ରସ୍ତାବ ଆଗେଇ ଚାଲିଥିବାବେଳେ ଲକ୍ଷ୍ୟ କଲି, ନିଶା ମନଟା ମଉଳି ପଡୁଛି ।

ଦିନେ ମୁଁ ତାକୁ କାରଣ ପଚାରିଲି ।

ଯଦିଓ ସେ ଖୋଲାଖୋଲି ଭାବରେ କିଛି କହିଲା ନାହିଁ, ତଥାପି ମୁଁ ବୁଝିଲି ନିଶାର ବେଦନା କେଉଁଠି ।

ମୁଁ ନନ୍ଦନଗଡ଼ର ରାଜା । ଏକମାତ୍ର ଉତ୍ତରାଧିକାରୀ । ରାଜ୍ୟର ଭଲ ମନ୍ଦ ଓ ଆଚାର ବିଚାର ମୋତେ ପାଳନ କରି ଚଳିବାକୁ ହେବ । ସେହି ତୁଳନାରେ ମୁଁ କେତେ ଦୃଢ଼ ହେବା ଉଚିତ୍, ସେ କଥା ନରେନ୍ଦ୍ରପୁରର ରାଜାସାହେବ ମୋତେ ରୋଜ ଆସି ବୁଝାଉଥିଲେ । ମୋ ମନକୁ ଶକ୍ତ କରିବା ପାଇଁ ସେ ଅର୍ଦ୍ଧେକ ସମୟ ମୋ ପଛରେ ବ୍ୟୟ କରୁଥିଲେ ।

ଗୋଟାଏ ପାଖରେ ରାଜ୍ୟ, ଅନ୍ୟ ପାଖରେ ନିଶା । ଗୋଟିଏ ଅସହାୟା ନାରୀ । ମନେ ମନେ ଖାଲି ତୁଳନା କରୁଥିଲି । ନିଶାକୁ ମୁଁ ଆଶା ଦେଇଛି, ବିଶ୍ୱାସ ଦେଇଛି, ବଞ୍ଚେଇ ରଖିବା ପାଇଁ ପ୍ରତିଶ୍ରୁତି ଦେଇଛି । ଆଜି ମୁଁ ମୋ ପ୍ରତିଶ୍ରୁତି ଭଙ୍ଗ କରିବି କିପରି ।

ମହା ସମସ୍ୟାରେ ପଡ଼ିଗଲି ।

ନରେନ୍ଦ୍ରପୁରର ରାଜାସାହେବ କିନ୍ତୁ ମୋ ପଛେ ପଛେ ଲାଗି ରହିଥିଲେ ।

ଦିନେ ମୁଁ ତାଙ୍କୁ ସିଧା ସଳଖ ମନା କରିଦେଲି । କହିଲି; ଆପଣଙ୍କ ପ୍ରସ୍ତାବ ମୁଁ ରଖିବାକୁ ଅସମର୍ଥ । ଜଣକୁ ବିବାହ କରିବାପାଇଁ କଥା ଦେଇଛି । ତେଣୁ ମୋତେ ଆଉ ବିରକ୍ତ ନ କଲେ ଭଲ ହୁଅନ୍ତା ।

ନରେନ୍ଦ୍ରପୁରର ରାଜାସାହେବ ମୋର ଏପରି ସଳଖ ଉତ୍ତରରେ ସ୍ତବ୍ଧ ହୋଇ ଯାଇଥିଲେ । ବହୁ ସମୟଯାଏ ତାଙ୍କ ମୁହଁରୁ କୌଣସି କଥା ବାହାରିଲା ନାହିଁ । ତା'ପରେ ସେଦିନ ସେ ନୀରବରେ ମୋ ପାଖରୁ ବିଦାୟ ନେଇ ଚାଲି ଯାଇଥିଲେ ।

ଅନେକ ଦିନଯାଏ ଆଉ ଆସିଲେ ନାହିଁ ।

ସପ୍ତାହେ, ଦୁଇସପ୍ତାହ ଏପରିକି ଏକମାସ ଅତିବାହିତ ହୋଇଗଲା ।

ମୋତେ କଥାଟା ଖୁବ୍ ଅସୁନ୍ଦର ଲାଗିଲା । ମୋର ମନେ ହେଲା, ଆମର ବଂଶାନୁକ୍ରମିକ ବନ୍ଧୁତ୍ୱରେ କ'ଣ ଆଉ ପୂର୍ଣ୍ଣଛେଦ ପଡ଼ିବ !

ଦିନେ ମୁଁ ଲୋକ ପଠାଇଲି ନରେନ୍ଦ୍ରପୁରକୁ ।

ସେ ଆସିଲେ । କିନ୍ତୁ ମୋ ବିବାହ ସମ୍ବନ୍ଧରେ ଆଉ କୌଣସି କଥା ଉଠାଇଲେ ନାହିଁ ।

ଦିନେଗଲା, ଦୁଇଦିନ ଗଲା, ସପ୍ତାହେ ଦୁଇସପ୍ତାହ ଅତିବାହିତ ହୋଇଗଲା, ସେ କିନ୍ତୁ ବିବାହର କୌଣସି କଥା ମୋତେ ଆଉ କହିଲେ ନାହିଁ । ମୁଁ ବି ଏକ ପ୍ରକାର ନିଶ୍ଚିନ୍ତ ହୋଇଗଲି ।

ତା'ପରେ ହଠାତ୍ ଦିନେ ଆସିଲା ମୋ ଜୀବନର ଏକ ବିପର୍ଯ୍ୟୟ ମୁହୂର୍ତ୍ତ ।

ସେଦିନ ରାଜମହଲରେ ଏକ ସଙ୍ଗୀତ ଆସର ବସିଥିଲା । ରାତି ପ୍ରାୟ ଦଶଟା କି ଏଗାରଟାଯାଏ ଆସର ଚାଲିଥିଲା । ନିମନ୍ତ୍ରିତ ଅତିଥି ଥିଲେ ଅପେକ୍ଷାକୃତ ବେଶୀ । ଜଣ ଜଣ କରି ସମସ୍ତଙ୍କୁ ବିଦାୟ ଦେଇ ମୁଁ ଯେତେବେଳେ ମୋର ଶୟନ କକ୍ଷକୁ ଫେରିବି, ହଠାତ୍ ଶୁଣିଲି ଏକ ଗୁଳି ଚାଳନାର ଶବ୍ଦ, ପରେ ପରେ ଏକ ମର୍ମନ୍ତୁଦ ଚିତ୍କାର ।

ଚିତ୍କାରଟା ଆମ ଉଦ୍ୟାନ ମଧ୍ୟରୁ ଭାସି ଆସିଥିଲା ।

ସଂଗେ ସଂଗେ ମୁଁ ଧାଇଁଗଲି ସେଠାକୁ ।

କିନ୍ତୁ ଏ କ'ଣ ??

ନିଶା ଯେ ରକ୍ତସ୍ନାନ କରି ନିସ୍ତେଜ ହୋଇ ଘାସ ଗାଲିଚା ଉପରେ ଆଖି ବୁଜି ଦେଇଚି ।

ପାଖକୁ ଯାଇ ଉଠାଇଲି ।

ଦେହରେ ତା'ର ପ୍ରାଣ ନ ଥିଲା ।

କିନ୍ତୁ ନିଶା ଏତେ ରାତିରେ ଏଠାକୁ ଆସିଥିଲା ବା କାହିଁକି ? କାହା ଗୁଳିର ସେ ଶୀକାର ହେଲା ?

ମୁଁ କୌଣସି ସ୍ଥିର ନିଶ୍ଚୟରେ ପହଞ୍ଚିବା ପୂର୍ବରୁ, ଦେଖିଲି ସଦାକଦ୍ ଅଣନିଶ୍ୱାସୀ ହୋଇ ଦଉଡ଼ି ଦଉଡ଼ି ଆସୁଚି । ମୋତେ ସେଠାରେ ଦେଖି ସେ ବିଚଳିତ ହୋଇ ପଡ଼ିଲା । ମୁହୂର୍ତ୍ତେ ମାତ୍ର, ତା'ପରେ ତଳେ ବସି ପଡ଼ି, ନିଶାକୁ କୋଳକୁ ଉଠାଇ ନେଇ ପିଲାଙ୍କ ପରି କାନ୍ଦିବାକୁ ଆରମ୍ଭ କରିଦେଲା ।

ତା'ପରେ ଯଦିଓ ଦୀର୍ଘ ·ବର୍ଷ ଅତିବାହିତ ହୋଇଯାଇଛି, କିନ୍ତୁ ତା'ପରର ଘଟଣା ଅତ୍ୟନ୍ତ ସଂକ୍ଷିପ୍ତ ମାଇଁ ବୟ । ତା'ପରେ ବହୁ ଚେଷ୍ଟା କରି ମଧ ମୁଁ ହତ୍ୟାକାରୀକୁ ଆବିଷ୍କାର କରିପାରି ନାହିଁ । କିନ୍ତୁ ମୋ ହୃଦୟରେ ଏପରି ଏକ କ୍ଷତ ସେହି ଦିନଠାରୁ ସୃଷ୍ଟି ହୋଇଛି, ଯାହାର ଯନ୍ତଣା ମୁଁ ଆଉ ସହ୍ୟ କରିପାରୁ ନାହିଁ ।

ନିଶା ଆତତାୟୀର ଗୁଳିରେ ନିହତ ହେଲା ସିନା, କିନ୍ତୁ ତା'ର ଅଶରୀରୀ ଆତ୍ମା ନନ୍ଦନଗଡ଼ର ରାଜ ଉଆସ ଛାଡ଼ି ପାରିଲା ନାହିଁ । ନିଶାର୍ଦ୍ଧରେ ସେ ଆସେ । କରୁଣ ସଂଗୀତରେ ରାଜ ଉଆସ ଯେପରି ଅଶ୍ରୁ ନିଗାଡ଼ି କାନ୍ଦେ । ମୁଁ ଆଉ ଥୟ ହୋଇ ବସି ପାରେ ନାହିଁ ।

ବର୍ଷ ପରେ ବର୍ଷ ଅତିବାହିତ ହେବା ସଂଗେ ସଂଗେ ନିଶାର୍ଦ୍ଧର ସେଇ କରୁଣ ସଂଗୀତ ନନ୍ଦନଗଡ଼ ବାହାରେ ବହୁ ରୂପ କଥାର ସୃଷ୍ଟି କଲା । ସେହି ସଂଗୀତରେ ଆକୃଷ୍ଟ ହୋଇ ଆସିଲେ ବହୁ ଅନୁସନ୍ଧିତ୍ସୁ ଦଳ । ବହୁ ଯୋଗୀ, ତାନ୍ତ୍ରିକ । କିନ୍ତୁ କେହି କିଛି ଆବିଷ୍କାର କରି

ପାରିଲେ ନାହିଁ । ସମସ୍ତେ ଫେରିଲେ ନିରାଶ ହୋଇ । ଘଟଣା ଚକ୍ରରେ ଗୋଟାଏ ଦୁଇଟା ଅପମୃତ୍ୟୁ ବି ଘଟିଲା ସେହି ସଂଗୀତକୁ କେନ୍ଦ୍ରକରି । ଫଳରେ ସମସ୍ୟାଟା ଆହୁରି ଜଟିଳ ହୋଇ ପଡ଼ିଲା । ଲୋକ ମୁଖରେ ନିଶା ରୂପ ଗ୍ରହଣ କଲା ନିଶିଗନ୍ଧା ରୂପରେ, ଅପଦେବତା ହିସାବରେ ।

ଆଉ ମୁଁ....ରାଜାସାହେବ ନୀରବ ରହି ଟିକିଏ ହସିବାକୁ ଚେଷ୍ଟା କଲେ । ମୁଁ ଚାହିଁ ଦେଖିଲି ତାଙ୍କ ଆଖି କୋଣରେ ଦୁଇଧାର ଲୁହ, ସେ ଏକ ଦୀର୍ଘ ନିଶ୍ୱାସ ତ୍ୟାଗ କରି କହିଲେ, ମୋ କଥା ଆଉ ନ କହିବାହିଁ ଭଲ । ରାତ୍ରି ଆସିଲେ ଦୁଃସ୍ୱପ୍ନର ଏକ କଳା ଛାଇ ମୋ ଆଗକୁ ଓହ୍ଲେଇ ଆସେ । ମୋର ନିଜର ସମସ୍ତ ସତ୍ତା ସେ ଆହରଣ କରିନିଏ । ମୁଁ ଯେପରି ସମ୍ମୋହିତ ହୋଇପଡ଼େ । କାହାର ଇଙ୍ଗିତରେ ସେତେବେଳେ ମୁଁ ଯେ କ'ଣ କରେ, ନିଜେ ବି ବୁଝି ପାରେ ନାହିଁ ।

କିନ୍ତୁ ୟଙ୍ଗମ୍ୟାନ୍ ! ତୁମେ ବିଶ୍ୱାସ କର, ନରେନ୍ଦ୍ରପୁରର ରାଜାସାହେବଙ୍କୁ ମୁଁ ହତ୍ୟା କରି ନାହିଁ । ମୋ ବନ୍ଧୁକର ଲକ୍ଷ୍ୟ ଥିଲା ବିପରୀତ ଦିଗକୁ, ଇଉ ବିଲିଭ୍ ମି: ୟଙ୍ଗମ୍ୟାନ୍ ଇଉ ବିଲିଭ୍ ମି ।

ରାଜାସାହେବ ପୁଣି ନୀରବ ହୋଇଗଲେ । ସେ ଯେପରି ତାଙ୍କ ଜୀବନର ଏହି ଗୋପନ ତଥ୍ୟଟି ମୋ ଆଗରେ ପ୍ରକାଶ କରି ନିଶ୍ଚିନ୍ତ ହୋଇ ପାରି ନଥିଲେ, ସେ ଆଉ ସ୍ଥିର ହୋଇ ବସି ପାରିଲେ ନାହିଁ । ଉଠି ଠିଆହୋଇ ଘର ଭିତରେ ଟହଲିବାକୁ ଲାଗିଲେ । ମୁଁ ତାଙ୍କର ବିଚଳିତ ଭାବ ଲକ୍ଷ୍ୟ କରି ଖୁବ୍ ଦୁଃଖିତ ହୋଇ ପଡ଼ିଥିଲି ।

ସେ ମୋ ପାଖକୁ ଲାଗି ଆସି କହିଲେ, ଏନି କୋସ୍‌ଚେନ ୟଙ୍ଗମ୍ୟାନ୍ ? ମୋତେ ଆଉ ପଚାରିବାକୁ କିଛି ଅଛି ?

ମୁଁ ଶାନ୍ତ ଆଉ ଧୀର ଗଳାରେ କହିଲି, ଅଛି ସାର୍ !

କୁଇକ୍, କୁଇକ୍ । ଶୀଘ୍ର ଶେଷ କର । ମୁଁ ଆଉ ସହି ପାରୁନାହିଁ, ବରଦାସ୍ତ କରି ପାରୁ ନାହିଁ ଜୀବନଟାକୁ ।

ତା'ହେଲେ ଅଜି ଥାଉ ସାର୍ ! ଆପଣ ଖୁବ୍ କ୍ଳାନ୍ତ ହୋଇ ପଡ଼ିଛନ୍ତି । ବରଂ ବିଶ୍ରାମ କରନ୍ତୁ । ମୁଁ କାଲି ଆସି ଆପଣଙ୍କ ନିକଟରୁ ମୋ ସନ୍ଦେହ ମୋଚନ କରିଯିବି ।

ନୋ ନୋ ୟଙ୍ଗମ୍ୟାନ୍, ଆଜି ମୁଁ ସବୁ ଶେଷ କରିବାକୁ ଚାହେଁ । ଜୀବନର ଦୁଃସହ ଯନ୍ତ୍ରଣାରୁ ମୁଁ ମୁକ୍ତି ଚାହେଁ । ଆଉ ଡେରି କରନାହିଁ ୟଙ୍ଗମ୍ୟାନ୍ । ତମେ, ତମେ ବରଂ.....

ଦୁଆରରେ କାହାର ମୃଦୁ କରାଘାତ ଶୁଣି ରାଜାସାହେବ ଯେପରି ସଚେତନ ହୋଇ, ଆସନ ଗ୍ରହଣ କରି ଚିତ୍କାର କରି ଉଠିଲେ, ଇଏସ୍, କମ୍‌ଇନ୍ ।

କବାଟ ଠେଲି ଘର ଭିତରେ ପ୍ରବେଶ କଲେ, ପୋଲିସ୍ ଇନ୍‌ସ୍‌ପେକ୍ଟର । ରାଜାସାହେବଙ୍କୁ ସାଲ୍ୟୁଟ୍ ଦେଇ ସାମନା ଚେୟାରଟି ଅଧିକାର କରି ବସିଲେ ସେ । ଆଡ଼ ନୟନରେ ଚାହିଁଲେ

ଥରେ ମୋ ଆଡ଼କୁ । ତା'ପରେ ପକେଟରୁ ଖଣ୍ଡେ କାଗଜ ବାହର କରି ବଢ଼େଇଦେଲେ ରାଜାସାହେବଙ୍କ ହାତକୁ ।

ରାଜାସାହେବଙ୍କ ଦୃଷ୍ଟି କ୍ଷଣକ ପାଇଁ ସ୍ଥିର ହୋଇଗଲା । ମୁହୂର୍ତ୍ତେ ସେ ଯେପରି ସ୍ଥାଣୁ ପାଲଟି ଗଲେ । ପର ମୁହୂର୍ତ୍ତରେ କାଗଜଟି ଉପରେ ଆଖି ବୁଲେଇ ନେଇ, ହସି ଉଠିଲେ ଏତେ ଯୋର୍‌ରେ ଯେ, ମୁଁ ଚମକି ପଡ଼ିଲି ।

ହସି ହସି ବେଦମ ହୋଇ ଭଙ୍ଗା ଭଙ୍ଗା କଣ୍ଠରେ କହିଲେ, ଇଉ ପୁଅର ଇନିସ୍‌ପେକ୍ଟର, ଶେଷରେ ମୋତେ ଆରେଷ୍ଟ କରିବାପାଇଁ ହୁକୁମ୍‌ନାମା ଧରି ଆସିଲ !! ମୋର ଆଜି ସମସ୍ତ ହୁକୁମ୍ ଅଚଳ ହୋଇ ଯାଇଛି ଇନିସ୍‌ପେକ୍ଟର । ବଟ୍ ନାଉ ଆଇ ଆମ୍ ରେଡ଼ି । ତୁମ ସଂଗରେ ଯିବାପାଇଁ ପ୍ରସ୍ତୁତ । ତମେ ଅନେକ ଡେରି କରି ଦେଲ ଇନିସ୍‌ପେକ୍ଟର । ମୋ ହାତରେ ଏତେ ଅବସର ଦେଇ ଦେଲ ଯେ, ମୁଁ ତମ ଚାର୍ଯ୍ୟ ବିରୁଦ୍ଧରେ ପ୍ରଚୁର ପ୍ରମାଣ ରଖି ଦେଇଗଲି । ତମେ ହାରିଗଲ ଇନିସ୍‌ପେକ୍ଟର । ମୋତେ ତୁମେ ନରେନ୍ଦ୍ରପୁରର ରାଜାସାହେବଙ୍କ ହତ୍ୟାକାରୀ ରୂପେ ପ୍ରମାଣିତ କରେଇ ପାରିଲ ନାହିଁ ।

ରାଜାସାହେବ ପୁଣି ଉନ୍ମାଦଙ୍କ ପରି ହସି ଉଠିଲେ । ଏଥର ହସି ହସି ସେ ସଂଜ୍ଞା ହରେଇ ଚେଆର ଉପରେ ଲୋଟି ପଡ଼ିଲେ । ଇନିସ୍‌ପେକ୍ଟର ଆଉ ମୁଁ ଦୁହେଁଯାକ ଧରାଧରି କରି ତାଙ୍କୁ ଶୁଆଇ ଦେଲୁ । ଅଙ୍ଗ ପ୍ରତ୍ୟଙ୍ଗ ତାଙ୍କର ନିଶ୍ଚଳ ହୋଇ ଯାଇଥିଲା । ଇନିସ୍‌ପେକ୍ଟର ଯେପରି ଉପସ୍ଥିତ ବୁଦ୍ଧି ହରେଇ ବସିଲେ । ମୁଁ କହିଲି, ଶୀଘ୍ର ଡାକ୍ତରଙ୍କୁ ଖବର ଦିଅନ୍ତୁ ।

ଇନିସ୍‌ପେକ୍ଟର ହୁଏତ ରାଜାସାହେବଙ୍କୁ ଛାଡ଼ି ଯିବାପାଇଁ ପ୍ରସ୍ତୁତ ନ ଥିଲେ । ମୁଁ ତାଙ୍କ ମନୋଭାବ ବୁଝି ପାରି ଉଠିଗଲି । ଦୁଆର ସେପାଖରେ ଠିଆ ହୋଇଥିଲେ ରାଧିକାମୋହନ ରାଜଗୁରୁ । ମୋର ବିଚଳିତ ଭାବ ଲକ୍ଷ୍ୟ କରି କହିଲେ, ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ରାଜାସାହେବ ଅତି ମାତ୍ରାରେ ବିଚଳିତ ହେଲେ ଏବେ ବେଳେ ବେଳେ ଫେଣ୍ଟ୍ ହୋଇ ଯାଆନ୍ତି । ଡାକ୍ତର କହିଛନ୍ତି, ଏପରି ଅବସ୍ଥାରେ ତାଙ୍କର ପୂର୍ଣ୍ଣ ବିଶ୍ରାମ ଆବଶ୍ୟକ ।

ମୁଁ ରାଧିକା ମୋହନଙ୍କ ସହ ପୁଣି ଗୃହ ମଧ୍ୟରେ ପ୍ରବେଶ କଲି । ପୋଲିସ୍ ଇନିସ୍‌ପେକ୍ଟର ରାଧିକାମୋହନ ଆଡ଼େ ଚାହିଁ କହିଲେ, ମୁଁ ନିରୁପାୟ ସାର୍, ରାଜାସାହେବଙ୍କ କାର୍ତ୍ତୁଜ ପ୍ରମାଣିତ କରିଛି ସେ ନରେନ୍ଦ୍ରପୁରର ହତ୍ୟାକାରୀ ।

ରାଧିକାମୋହନ ପୋଲିସ୍ ଇନିସ୍‌ପେକ୍ଟରଙ୍କ ଉପରେ ସ୍ଥିର ଚାହାଣୀ ବୁଲେଇ ନେଇ ନୀରବରେ ରାଜାସାହେବଙ୍କ ପାଖକୁ ଆଗେଇ ଗଲେ । ଦକ୍ଷ ଡାକ୍ତରଙ୍କ ପରି ନାଡ଼ି ପରୀକ୍ଷା କରି ଦେଖିଲେ । କହିଲେ, ଆପଣ ଚାଲିଯାଇ ପାରନ୍ତି ମିଷ୍ଟର ଇନିସ୍‌ପେକ୍ଟର । ମୁଁ ରାଜାସାହେବଙ୍କୁ ନେଇ ଥାନାରେ ପହୁଞ୍ଚାଇ ଦେଇ ଆସିବି ।

କିନ୍ତୁ.....ଇନିସ୍‌ପେକ୍ଟର କଣ କହିବାକୁ ଚେଷ୍ଟା କରି କହି ପାରିଲେ ନାହିଁ ।

ତା'ହେଲେ ଆପଣଙ୍କୁ ଅତି କମ୍‌ରେ ଚାରୋଟି ଘଣ୍ଟା ଅପେକ୍ଷା କରିବାକୁ ପଡ଼ିବ । ରାଧିକାମୋହନ କହିଲେ ।

ମୋର ସେଠାରେ ଆଉ କୌଣସି କାମ ନ ଥିଲା । ଧୀରେ ଧୀରେ ଭାରାକ୍ରାନ୍ତ ମନନେଇ ମୁଁ ଘରୁ ବାହାରି ଆସିଲି ।

ମୁଁ ଫେରି ଆସିଲି । ଶ୍ରାନ୍ତ, କ୍ଳାନ୍ତ ମନଟା ମୋର ଜଡ଼ ପାଲଟି ଯାଇଥିଲା । ସେଇ ମୁହୂର୍ତ୍ତରେ ମୋର ମନେ ହେଉଥିଲା ମୁଁ ହୁଏତ ପଡ଼ିଯିବି । ମୁଣ୍ଡଟା ମୋ ଝାଇଁ ମାରି ଯାଉଥିଲା । ପ୍ରଥମେ ମୋର କର୍ତ୍ତବ୍ୟ କ'ଣ କିଛି ସ୍ଥିର କରିପାରୁ ନ ଥିଲି ।

ଶିଡ଼ିର ପାହାଚଗୁଡ଼ିକ ଅତିକ୍ରମ କରି ସାରି ଯେତେବେଳେ ଆସି ତଳେ ପହଞ୍ଚିଲି, ସେତେବେଳେ ଦେଖିଲି ଏକ ବିରାଟ ଜନତାର ଭିଡ଼ ଜମି ଯାଇଛି । ଲୋକେ ବୋଧହୁଏ ରାଜାସାହେବଙ୍କ ଅସହାୟ ଅବସ୍ଥା ଦେଖିବା ପାଇଁ ଅପେକ୍ଷା କରି ରହିଛନ୍ତି ।

ମୁଁ ଧୀରେ ଧୀରେ ଓହ୍ଲେଇ ସେଇ ଭିଡ଼ ମଧ୍ୟରେ ମିଶିଗଲି । ରାଜାସାହେବଙ୍କୁ ନିର୍ଦ୍ଦୋଷ ପ୍ରମାଣିତ କରାଇବା ପାଇଁ ମୁଁ ପ୍ରତିଶ୍ରୁତି ଦେଇ ଆସିଚି । କିନ୍ତୁ ପାରିବିତ ? ତାଙ୍କର ରହସ୍ୟମୟ ଜୀବନର ଘଟଣା ବହୁଳ ସମସ୍ୟା ମଧ୍ୟରୁ କେଉଁଟିକୁ ଯେ କେନ୍ଦ୍ର କରି ମୁଁ ଆଗେଇବି ଚିନ୍ତାକରି ପାରୁ ନଥିଲି । ପାଦ ଯୋଡ଼ାକ ମୋତେ ଟାଣିନେଇ ଯାଉଥିଲା ମହାନଦୀ କୂଳଆଡ଼େ । ପ୍ରଥମ ଦିନ ଆସି ଯେଉଁଠି ମୁଁ ସଦାକତ୍‌ର ସନ୍ଧାନ ପାଇଥିଲି ।

କିନ୍ତୁ ଆଜି ଯେପରି ସବୁ ମ୍ଳାନ । ଗଛ, ଲତା, ସମସ୍ତେ ଯେପରି ଦୁଃଖରେ ମ୍ରିୟମାଣ ହୋଇ ପଡ଼ିଛନ୍ତି । କାହା ସହିତ ମୁଁ କଥା କହିବି ? କାହାଠାରୁ ମୁଁ ହତ୍ୟାକାରୀର ସନ୍ଧାନ ପାଇବି ?

ଆଗେଇଲି, ମୋତେ ପଥ ଦେଖେଇ ଦେବାକୁ କେହି ନ ଥିଲେ । ମୋତେ କୌଣସି ପ୍ରଶ୍ନର ଉତ୍ତର ଦେବାପାଇଁ କାହାକୁ ଦେଖୁନ ଥିଲି । ତଥାପି ମୁଁ ଆଗେଇ ଚାଲିଥିଲି, ମହାନଦୀ କୂଳେ କୂଳେ ଉତ୍ତର ଦିଗକୁ ମୁହଁକରି । ଖାଲି ବୁଦା ବୁଦା ଗଛଲତା । ଯେତେଦୂର ଆଖି ଯାଏ ଖାଲି ଗଛ ଲତାର ଭିଡ଼ । କିନ୍ତୁ ମୁଁ କାହାକୁ ଖୋଜୁଛି ? କାହା ଉଦ୍ଦେଶ୍ୟରେ ଆଗେଇ ଚାଲିଛି ଲକ୍ଷ୍ୟହୀନ ଭାବରେ ।

ସଦାକତ୍ ! ଏଇ ମୁହୂର୍ତ୍ତରେ ସଦାକତ୍‌କୁହିଁ ମୋତେ ଖୋଜି ବାହାର କରିବାକୁ ହେବ । ସେ ବା ଗଲା କେଉଁଆଡ଼େ ? ଏହି ସବୁ ଗଣ୍ଡଗୋଳ ଭିତରୁ ରକ୍ଷା ପାଇବା ପାଇଁ ସେ କ'ଣ ନନ୍ଦନଗଡ଼ ତ୍ୟାଗ କରି ଚାଲି ଯାଇଛି ?

ଅଦୂରରେ କାହର ପାଦ ଶବ୍ଦ ଶୁଣି ମୋର ଧ୍ୟାନ ଭଙ୍ଗ ହେଲା । ଚାହିଁ ଦେଖିଲି, କିଏ ଯେପରି ଗହଳ ଲତା ପତ୍ର ଭିତରେ ଆତ୍ମଗୋପନ କରୁଛି । ଆଗେଇ ଗଲି ସେଇ ଆଡ଼କୁ ।

ମୋର ମନର ଭ୍ରମ । ସେ କିନ୍ତୁ ଆତ୍ମଗୋପନ କରୁ ନଥିଲା । ବୁଲି ବୁଲି ଫୁଲ ତୋଳୁଥିଲା । ଗୁଣୁ ଗୁଣୁ ଗୀତ ଗାଉଥିଲା । ମୋତେ ଦେଖି ଚଞ୍ଚଳ ହୋଇପଡ଼ିଲା ।

ମୁଁ ତା' ଆଡ଼କୁ ସ୍ତବ୍ଧ ହୋଇ ଚାହିଁ ରହିଲି । ସେ ବି ମୋତେ ସେହି ଘନ ବନାନୀ ଭିତରେ ଦେଖି ଅବାକ୍ ହୋଇ ଯାଇଥିଲା ।

ତୁମ ନାଁ କ'ଣ ? ମୁଁ ଶାନ୍ତ ସ୍ୱରରେ ପଚାରିଲି ।

ସେ କୌଣସି ଉତ୍ତର ଦେଲା ନାହିଁ । ବରଂ ପଛକୁ ପଛକୁ ପାଦ ପକାଇବାକୁ ଲାଗିଲା ।

ମୁଁ ତା' ହାତରେ ଥିବା ଫୁଲ ଡାଲାକୁ ଚାହିଁ ପଚାରିଲି, ଏ ଫୁଲ ସବୁ କ'ଣ ହେବ ?

ଠାକୁର ପୂଜା । ସେ କମ୍ପିତ କଣ୍ଠରେ କହିଲା ।

ତମେ କ'ଣ ଠାକୁର ପୂଜା କର !

ନା, ମୁଣ୍ଡ ହଲାଇ କହିଲା, ମୋ ବାପା କରନ୍ତି । ମୋତେ ଫୁଲ ତୋଳିବାକୁ ହୁଏ ।

ତୁମେ ଏଇ ରାଜବାଟୀରେ ଥାଅ ?

ହଁ ।

ତମ ବାପା ?

ସେ ବି ରୁହନ୍ତି ।

ମୋତେ ତୁମ ବାପାଙ୍କ ପାଖକୁ ନେଇ ପାରିବ ?

ହଁ, ଝିଅଟି ମୁଣ୍ଡ ହଲାଇ ସମ୍ମତି ଜଣାଇଲା ଏବଂ ସଂଗେ ସଂଗେ ଚାଲିବାକୁ ଆରମ୍ଭ କରିଦେଲା । କିନ୍ତୁ ମୁଁ ଲକ୍ଷ୍ୟ କଲି, ସେ ରାଜନଅର ଆଡ଼କୁ ନ ଯାଇ ଘନ ଜଙ୍ଗଲ ଆଡ଼କୁ ଆଗେ ଚାଲିଛି । ଖୁବ୍ ବେଶୀ ବାଟ ଯିବାକୁ ହେଲା ନାହିଁ । ମୋତେ ନେଇ ଗୋଟିଏ ଜୀର୍ଣ୍ଣ ମନ୍ଦିର ନିକଟରେ ପହଞ୍ଚାଇ ଦେଲା । ଆଖି ପିଛୁଡ଼ାକେ ସେ ସେହି ମନ୍ଦିର ମଧ୍ୟରେ ଅଦୃଶ୍ୟ ହୋଇଗଲା । ମୁଁ ଦ୍ୱାର ଦେଶରେ ଠିଆହୋଇ ଚିନ୍ତା କରୁଥିଲି ଭିତରେ ପ୍ରବେଶ କରିବି କି ନାହିଁ ।

ଭିତରୁ ଖଡ଼ମର ଶବ୍ଦ ଶୁଣାଗଲା । ସଂଗେ ସଂଗେ ଶୁଣାଗଲା ଗମ୍ଭୀର କଣ୍ଠର ଶ୍ଳୋକ ଉଚ୍ଚାରଣ । ଜଣେ ବୟସ୍କ ସାଧୁ ପ୍ରତିମ ଲୋକ ଆସି ମୋ ସମ୍ମୁଖରେ ଠିଆହେଲେ ।

ପରିବେଶଟା ଯେପରି ଗମ୍ଭୀର ହୋଇ ଉଠିଲା ।

ସେ ପଚାରିଲେ, ମୋ ପାଖରେ ତୁମର କିଛି ପ୍ରୟୋଜନ ଅଛି ଯୁବକ ?

ଆଜ୍ଞା ! ନନ୍ଦନଗଡ଼ର ରାଜାସାହେବଙ୍କର ମୁକ୍ତି ପାଇଁ ମୁଁ ଚେଷ୍ଟା କରୁଛି ।

ବେଶ୍ ଭଲ କଥା ବାବା । କିନ୍ତୁ ଏଠାରେ କାହିଁକି ?

କାଳେ ଯଦି ଆପଣ ମୋତେ କୌଣସି ପ୍ରକାର ସାହାଯ୍ୟ କରିପାରନ୍ତି, ସେଇ ଆଶା କରି....

ତୁମେ ଭୁଲ୍ କରିଛ ଯୁବକ । ମୁଁ ବନ ଦୁର୍ଗାଙ୍କର ପୂଜକ । ନନ୍ଦନଗଡ଼ର ଆଦି ଦେବତା ଏହି ବନ ଦୁର୍ଗା । ବହୁ ଯୁଗ ପୂର୍ବେ ଏହି ମନ୍ଦିର ପ୍ରତିଷ୍ଠା ହୋଇଥିଲା । କିନ୍ତୁ ଆଜି ଏ ମନ୍ଦିର

ନନ୍ଦନଗଡ଼ ଠାରୁ ବିଚ୍ଛିନ୍ନ କହିଲେ ଚଳେ । ରାଜା ଏ ମନ୍ଦିର ପରିଚାଳନା ପାଇଁ ରାଜକୋଷରୁ ବହୁ ଦିନରୁ ଅର୍ଥ ବନ୍ଦ କରି ଦେଇଥିଲେ । ଯା'ଫଳରେ ରାଜ୍ୟ ସରକାରଙ୍କ ହାତକୁ ଯିବା ପରେ ବନ ଦୁର୍ଗାଙ୍କ ପୂଜାର କୌଣସି ବିହିତ ଆଉ ହେଲା ନାହିଁ । ସବୁ ପାପର ଫଳ ବାବା । ମୁଁ ବନ ଦୁର୍ଗାଙ୍କର ବଂଶାନୁକ୍ରମିକ ସେବକ । କୌଣସି ପ୍ରକାର ମା'ଙ୍କ ଦୟାରୁ ଚଳେଇ ନେଉଛି । ରାଜା ସାହେବଙ୍କ ମୁକ୍ତି ପାଇଁ ମୁଁ ବି ବନ ଦୁର୍ଗାଙ୍କ ପାଖରେ ଜଣାଣ କରୁଛି ବାବା । ଏହାଠାରୁ ଆଉ ଅଧିକ କିଛି ଏଠାରୁ ପାଇବ ନାହିଁ ।

ପୂଜକ ତାଙ୍କ କଥା ଶେଷ କରି, ଖଡ଼ମ ଠକ୍ ଠକ୍ କରି ପୁଣି ଭିତରକୁ ଲେଉଟି ଯାଉଥିଲେ ।

ମୁଁ କହିଲି, ମୋର ଗୋଟିଏ ପ୍ରଶ୍ନ ଆଜ୍ଞା ।

ପୂଜକ ଫେରି ଆସିଲେ ।

ଆପଣ ସଦାକତ୍‌କୁ ଚିହ୍ନନ୍ତି ? ମୁଁ ପ୍ରଶ୍ନ କଲି ।

ପୂଜକ ମହାନଦୀ କୂଳଆଡ଼େ ଆଙ୍ଗୁଳି ନିର୍ଦ୍ଦେଶ କରି କହିଲେ, ଏଇ ଯେଉଁ ଭଗ୍ନପ୍ରାୟ ଗୃହଟି ଦେଖୁଛ, ସେଇଠି ସେ ରହୁଥିଲା । ତୁମେ ଯାଇ ବୋଧହୁଏ ତା'ର ଦେଖା ପାଇବ ନାହିଁ ।

ସେ କ'ଣ ଚାଲି ଯାଇଛି ? ମୁଁ ପଚାରିଲି ।

ହଁ, ହୁଏତ ଚାଲି ଯାଇଛି । ଏ ମାୟା ସଂସାରରୁ ସେ ହୁଏତ ବିଦାୟ ନେଇ ଚାଲି ଯାଇଛି । ତୁମେ ସେଠାକୁ ଯାଇ ତା'ର ସନ୍ଧାନ କରିପାର । ଆଉ ତୁମର କିଛି ପଚାରିବାର ଅଛି ଯୁବକ ?

ନା, ମୁଁ ମଥାନତ କରି ପ୍ରଣାମ ଜଣାଇଲି ।

ମୁଁ ତୁମର ସଫଳତା କାମନା କରୁଛି ଯୁବକ । ସେ ମୋତେ ଆଶୀର୍ବାଦ କରି ମନ୍ଦିର ଭିତରକୁ ଚାଲିଗଲେ ।

ମୁଁ ଲେଉଟିଲି । ପୂଜକଙ୍କ ମୁହଁରୁ ସଦାକତ୍ ସମ୍ବନ୍ଧରେ ନିରାଶ ଜନକ କଥା ପଦକ ଶୁଣି ଆଶାହତ ହୋଇ ପଡ଼ିଥିଲି ।

ତଥାପି ଆଗେଇଲି । ରାଜାସାହେବଙ୍କୁ କଥା ଦେଇଛି । ତାଙ୍କୁ ନିର୍ଦ୍ଦୋଷ ପ୍ରମାଣିତ କରାଇବାକୁ ହେବ ।

ପୂଜକ ମୋତେ ଯେଉଁ ଭଗ୍ନପ୍ରାୟ ଗୃହଟି ଦେଖାଇ ଦେଇଥିଲେ, ମୁଁ ଯାଇ ସେହିଠାରେ ପହଞ୍ଚିଲି । ଆଶା କରିଥିଲି ଗୋଟାଏ କିଛି ଏପରି ସୂତ୍ରର ସନ୍ଧାନ ସେଠାରୁ ପାଇବି, ଯିଏ ମୋତେ କାର୍ଯ୍ୟୋଦ୍ଧାର ପାଇଁ ଯଥେଷ୍ଟ ସାହାଯ୍ୟ କରିବ । କିନ୍ତୁ ସେଠାରେ ମୋତେ ନିରାଶ ହେବାକୁ ପଡ଼ିଲା । ଯେଉଁଠାକୁ ମୁଁ ଏକ ମହାନ୍ ଆଶା ନେଇ ଧାଇଁ ଯାଇଥିଲି, ଦେଖିଲି-ଘରଟି ବନ୍ଦ ବାହାରୁ ତାଲା ପଡ଼ିଛି ।

ସେଇଠି ନୀରବରେ ଠିଆହୋଇ ରହିଲି ବହୁ ସମୟ । ଏହି ଘର ଯଦି ସଦାକତ୍‌ର

ବାସସ୍ଥଳୀ ହୋଇଥାଏ, ତା'ହେଲେ ସେ ନିଶ୍ଚୟ ବଞ୍ଚିଛି ଏବଂ ଘରେ ତାଲା ପକାଇ କେଉଁଆଡ଼େ ଯାଇଛି । ହୁଏତ ଫେରି ଆସିବ ଅଳ୍ପ ସମୟ ପରେ । ନତୁବା...

ଧୀରେ ଧୀରେ ମୁଁ ଆଗେଇ ଗଲି ଦରଜା ପାଖକୁ ।

ଫାଙ୍କରେ ଘର ଭିତରକୁ ଚାହିଁବାକୁ ଚେଷ୍ଟା କଲି । କେବଳ ଅନ୍ଧକାରର ରାଜତ୍ୱ । ଚେମଣିଆ ଗୁଡ଼ା ଫଡ଼୍‌ଫଡ଼୍ ହୋଇ ଉଡ଼ିବାକୁ ଆରମ୍ଭ କଲେ । ମନରେ ମୋର ସନ୍ଦେହ ଜନ୍ମିଲା । ଘରଟା କ'ଣ ପରିତ୍ୟକ୍ତ ? ପୂଜକ କ'ଣ ମୋତେ ମିଥ୍ୟା କହିଲେ ?

ତାଲାଟାକୁ ଭଲ ଭାବରେ ପରୀକ୍ଷା କରିବାକୁ ଚେଷ୍ଟା କଲି । ମନେ ହେଲା ତାଲାଟା ଯେପରି ବହୁତ ଦିନ ହେବ ସେହିଠାରେ ଝୁଲୁଛି । କେହି ତହିଁରେ ହାତ ଦେଇ ନାହାନ୍ତି ।

ଏ କ୍ଷେତ୍ରରେ ଉପାୟ କ'ଣ ?

ପୁଣି ଯାଇ ପୂଜକଙ୍କୁ ସବୁ କଥା ପଚାରିବି ? ଅଥବା ତାଙ୍କୁ ସଂଗରେ ଘେନି ଆସିବି ଏହି ଘର ସମ୍ବନ୍ଧରେ ସମସ୍ତ ତଥ୍ୟ ଜାଣିବା ପାଇଁ !!

ଏହିପରି ଦୋଦୋପାଞ୍ଚ ହୋଇ ମୁଁ ଫେରି ଆସୁଥିଲି । ହଠାତ୍ ମୋ କାନରେ ଯେପରି କାହାର ଖୁଁ ଖୁଁ କାଶ ଶବ୍ଦ ପ୍ରବେଶ କଲା ।

ମୋର ସମସ୍ତ ଶରୀରରେ କିପରି ଏକ ଶିହରଣ ଖେଳିଗଲା । ମୁଁ ପୁଣି ପାଦ ଲେଉଟାଲି ପଛକୁ ।

ଆଶ୍ଚର୍ଯ୍ୟ ତ ! ଘରଟା ବାହାରୁ ବନ୍ଦ, ଅଥଚ ଭିତରେ କିଏ ଖୁଁ ଖୁଁ ହୋଇ କାଶୁଛି ।

ତା'ହେଲେ ଘର ଭିତରକୁ ଯିବାପାଇଁ କ'ଣ ଅନ୍ୟ କୌଣସି ବାଟ ରହିଛି ।

ଘରଟା ଠିକ୍ ମହାନଦୀ କୂଳରେ ଠିଆ ହୋଇଥିଲା । ଅନ୍ୟାନ୍ୟ ତିନିପାଖ ମୁଁ ଅନୁସନ୍ଧାନ କରି ଦେଖିଲି, ସେହି ତାଲା ଝୁଲୁଥିବା ଦରଜାଟି ଛଡ଼ା ଅନ୍ୟ କୌଣସି ବାଟ ନାହିଁ । ବାକି ଅଂଶଟା ମହାନଦୀର ଜଳରାଶି ଆଡ଼କୁ । ସେହି ଅଂଶ ଆଡ଼େ ଯିବାର କୌଣସି ସହଜ ପଥ ମୁଁ ଦେଖି ପାରୁ ନଥିଲି ।

ଏହା ଭିତରେ ଆହୁରି ଦଶମିନିଟ୍ ମୁଁ କଟାଇ ସାରିଥିଲି । କିନ୍ତୁ ଭିତରୁ କୌଣସି ପ୍ରକାର ଶବ୍ଦ ଆଉ ଶୁଣା ଯାଉ ନଥିଲା ତା'ହେଲେ କ'ଣ ମୁଁ ଭୁଲ ଶୁଣିଲି ? ଘରଟାରେ ଯେତେବେଳେ ବାହାରୁ ତାଲା ପଡ଼ିଛି ଏବଂ ଘର ଭିତରେ ପ୍ରବେଶ କରିବାର ଅନ୍ୟ କୌଣସି ପଥ ନାହିଁ, ସେତେବେଳେ ନିଶ୍ଚୟ କେହି ତା'ଭିତରେ ରହିଥିବା ପରି ମନେ ହେଉ ନାହିଁ । ହୁଏତ କୌଣସି ବନ୍ୟ ପଶୁର କୌଣସି ପ୍ରକାର ସ୍ୱର ଆସି ମୋ କାନରେ ବାଜିଲା ଏବଂ ମୋତେ ତାହା ମଣିଷର କାଶପରି ମନେହେଲା ।

ନାଁ, ଏଠାରେ ଆଉ ଅଯଥା ସମୟ ନଷ୍ଟ କରି ଲାଭ ନାହିଁ ।

ଯେଉଁଠୁ ହେଲେ ମୋତେ ସଦାକନ୍ଦକୁ ଖୋଜି ବାହାର କରିବାକୁ ହେବ ।

ତଥାପି ଆଉଥରେ ସେହି ଘରଟାର ଚାରିପାଖରେ ବୁଲି ଦେଖି ଆସିବାକୁ ମୋର ଇଚ୍ଛା ହେଲା । ଘର ଚାରିପାଖରେ ଗଛ ଲତାର ଗହଳୀ, ଠିକ୍ ସ୍ୱଚ୍ଛନ୍ଦ ଭାବରେ ଚାରିପାଖ

ବୁଲି ଦେଖିବା ସମ୍ଭବ ହେଉ ନଥିଲା, ଆଉ ଯେଉଁ ଅଂଶ ମହାନଦୀ ଆଡ଼କୁ ରହିଥିଲା, ସେହି ଅଂଶଟା ଆହୁରି ଜଙ୍ଗଲିଆ ହୋଇ ଉଠିଥିଲା ।

ମୁଁ ଲେଉଟି ଆସିଲି । ଏଠାରେ ମଣିଷ ବାସ କରିବାର ସମ୍ଭାବନା ଖୁବ୍ କମ୍ ।

ପୁଣି ପାଦ ଫେରାଇଲି ସେହି ବନଦୁର୍ଗା ମନ୍ଦିର ଆଡ଼େ । ଏ କ୍ଷେତ୍ରରେ ମୋର କାହାରିକୁ ବିଶ୍ୱାସ କରିବା ଉଚିତ ନୁହେଁ । ହୁଏତ ପୂଜକ ନିଜେ ଯେ ଏହି ହତ୍ୟାକାଣ୍ଡର ଅନ୍ତରାଳରେ ନାହାନ୍ତି କିଏ କହି ପାରିବ ?

ମୁଁ ଯାଇ ମନ୍ଦିର ଦ୍ୱାର ଦେଶରେ ଉପସ୍ଥିତ ହେଲି । ଭିତରୁ ଗମ୍ଭୀର କଣ୍ଠର ସଂସ୍କୃତ ଶ୍ଳୋକ ଭାସି ଆସୁଥିଲା । କିଛି ସମୟ ବାହାରେ ସେହିପରି ଠିଆ ହୋଇ ରହିଲି । ଭିତରେ ପ୍ରବେଶ କରିବି ନା ନାହିଁ ?

ଧୀରେ ଧୀରେ ଆଗେଇଲି ।

କପାଳରେ ଯାହାଥିବ ।

ଭଗ୍ନ ଜୀର୍ଣ୍ଣ ମନ୍ଦିର । ମନ୍ଦିର ଗାତ୍ରରେ ବିରାଟ ବୃକ୍ଷ ଉଠି ଭିତରଟାରେ କିପରି ଏକ ଭୟାବହତାର ସୃଷ୍ଟି କରିଛି ।

ମୁଁ ଆହୁରି ଆଗେଇ ଗଲି । ଯେଉଁଠୁ ଭାସି ଆସୁଥିଲା ପୂଜକଙ୍କର ଉଦାତ୍ତ କଣ୍ଠସ୍ୱର ।

ନୀରବରେ ଠିଆହୋଇ ଶୁଣୁଥିଲି ମୁଁ ।

ଏକ ଅସ୍ପଷ୍ଟ କଣ୍ଠସ୍ୱର ମୋ କାନରେ ବାଜିଲା ।

ବୁଲି ଚାହିଁଲି ସେହି ଝିଅଟି । ହାତଠାରି ମୋତେ ଡାକୁଛି ।

ମୁଁ ଆଗେଇ ଗଲି ।

ମୋତେ ସେ କହିଲା, ଆପଣ ଚାଲି ଯାଆନ୍ତୁ । ବାପା ଆପଣଙ୍କ ଉପରେ ଖୁବ୍ ଅସନ୍ତୁଷ୍ଟ ହୋଇଛନ୍ତି ।

କିନ୍ତୁ ମୁଁ ତ ଅସନ୍ତୁଷ୍ଟ ହେଲାଭଳି କୌଣସି କାର୍ଯ୍ୟ କରି ନାହିଁ ।

ଆପଣତ ତାଙ୍କ ପୂଜାରେ ବିଘ୍ନସୃଷ୍ଟି କରିଛନ୍ତି । ସେ ପୁଣି ଯଦି ଆପଣଙ୍କୁ ଦେଖନ୍ତି ମନ୍ଦିର ପ୍ରାଙ୍ଗଣରେ ତା'ହେଲେ ଆଉ ରକ୍ଷା ନାହିଁ । ଆପଣ ବରଂ ବାହାରକୁ ଯାଆନ୍ତୁ । ଅପେକ୍ଷା କରନ୍ତୁ । ବାପାଙ୍କର ପୂଜାପାଠ ଶେଷ ହେଉ । ଚାଲନ୍ତୁ ।

ସେ ମୋତେ ବାହାରକୁ ବାହାରି ଯିବାପାଇଁ ଯେପରି ବାଧକଲା । ମୁଁ ବାହାରି ଆସିଲି । ସେ ମୋ ପଛେ ପଛେ ।

କହିଲା, ବାପା ଯଦି ଆଜି ଆପଣଙ୍କୁ ମନ୍ଦିର ମଧ୍ୟରେ ଦେଖି ଥାଆନ୍ତେ ତା'ହେଲେ ଅବସ୍ଥା ଯେ କ'ଣ ହୋଇ ଥାଆନ୍ତା.....

କାହିଁକି ?

ସେ କାହାରିକୁ ମନ୍ଦିର ମଧ୍ୟକୁ ପ୍ରବେଶ ଅଧିକାର ଦିଅନ୍ତି ନାହିଁ ।

ହୁଁ, ବୁଝିଲି ।

ଆଉ କିଏ ରୁହନ୍ତି ଏଠାରେ ?

ବାପା ଆଉ ମୋ ଛଡ଼ା କେହି ନାହାନ୍ତି ଆମ ସଂସାରରେ ।

ତୁମକୁ ଭଲଲାଗେ ଏହି ଜଙ୍ଗଲ ଭିତରେ ଏପରି ବନ୍ଦୀ ଜୀବନ ଯାପନ କରିବା ପାଇଁ ?

ମନ୍ଦ କ'ଣ ! କୌଣସି ଅସୁବିଧା ତ ହେଉ ନାହିଁ ମୋର ।

ଆଉ କେବେ କେହି ଆସନ୍ତି ଏଠାକୁ ?

କିଏ ଆଉ ଆସିବ ! ସଦାକତ୍ କକା ଆସନ୍ତି ମଝିରେ ମଝିରେ । ଏବେ କେତେଦିନ ହେବ ସେ ବି ଆସୁ ନାହାନ୍ତି ।

କ'ଣ ହେଇଛି ତାଙ୍କର ?

ବାପା କହୁଥିଲେ ସେ ଖୁବ୍ ଅସୁସ୍ଥ । ବୋଧହୁଏ ଭଲହୋଇ ନାହାନ୍ତି ।

ସେ ରୁହନ୍ତି କେଉଁଠି ?

ଓ ସେଇ ଆଡ଼େ । ମହାନଦୀ କୂଳେ । ସଂଗେ ସଂଗେ ଝିଅଟି ଚଞ୍ଚଳ ହୋଇ ଉଠିଲା । ମୋତେ କହିଲା, ଆପଣ ଚାଲି ଯାଆନ୍ତୁ । ବାପାଙ୍କର ପୂଜା ଶେଷ ହୋଇଛି । ସେ କ୍ଷିପ୍ର ଗତିରେ ମନ୍ଦିର ମଧ୍ୟରେ ଅଦୃଶ୍ୟ ହୋଇଗଲା ।

ମୁଁ କିଛି ସମୟ ଠିଆ ହୋଇ ରହିଲି ମନ୍ଦିର ଆଡ଼କୁ ଚାହିଁ ।

ତା'ପରେ ପାଦ ଲେଉଟାଇଲି ଧୀରେ ଧୀରେ । ବ୍ୟର୍ଥତା ମୋ ମନ ପ୍ରାଣରେ ଭରି ଯାଇଥିଲା । ଆଜି ଆଉ ନୁହେଁ । ଫେରିଯିବି ଉଦୟ ପାଖକୁ । ସେ ହୁଏତ ମୋ ପାଇଁ ଦୁଶ୍ଚିନ୍ତାରେ ଦିନ କଟାଉଥିବ ।

ପ୍ରକୃତରେ ଉଦୟ ମୋତେ ଦେଖିବା କ୍ଷଣି ଦୁଇହାତରେ ଯାବୁଡ଼ି ଧରିଲା । କିଛି ସମୟ ତା' ପାଟିରୁ କଥା ବାହାରିଲା ନାହିଁ ।

ତା'ପରେ ସଂକ୍ଷେପରେ ମୁଁ ତା' ଆଗରେ ସମସ୍ତ ଘଟଣା ବିବୃତ କଲି । ସେ ହାତ ଯୋଡ଼ି କାହାକୁ ପ୍ରଣାମ କଲା । ମନେ ମନେ କ'ଣ କହିଲା । ତା'ପରେ ମୋ ମୁଣ୍ଡରେ ହାତ ବୁଲାଇ କହିଲା, ତୋର କପାଳ ତେଜ୍‌ରେ । ତା' ନ ହେଲେ....

ଉଦୟ ସହିତ ମୁଁ କଥାବାର୍ତ୍ତା ହେଉଥିଲି ସତ, ମାତ୍ର, ରାଜାସାହେବଙ୍କୁ ଦେଇଥିବା ପ୍ରତିଶ୍ରୁତି କିପରି ରକ୍ଷା କରିବି ଚିନ୍ତା କରି ପାରୁ ନଥିଲି । ବେଳ ବଢ଼ି ଚାଲିଥିଲା । ବାରଣ୍ଡାକୁ ଯାଇ ରାଜବାଟୀ ଆଡ଼େ ଚାହିଁଲି । ସବୁ ଯେପରି ନିସ୍ତବ୍ଧ ହୋଇ ଗଲାପରି ମନେ ହେଉଥିଲା ।

ଉଦୟ କହିଲା, ତୁ ଆଜି ଫେରିଯା ଭାଇ । ଆଉ ନିଜକୁ ବିପନ୍ନ କରି ନିଶିଗନ୍ଧା

ପଛରେ ଧାଇଁବାର କୌଣସି ଅର୍ଥ ହୁଏ ନାହିଁ। ନରେନ୍ଦ୍ରପୁରର ରାଜାସାହେବଙ୍କର ମୃତ୍ୟୁ ହୋଇଛି ଯେତେବେଳେ ତୁମେ ଆମେ କିବା ଛାର !

ଆଚ୍ଛା ଉଦୟ ! ମୁଁ ହଠାତ୍ ପଚାରିଲି। ଯେଉଁଦିନ ରାତିରେ ନରେନ୍ଦ୍ରପୁରର ରାଜାସାହେବଙ୍କୁ ହତ୍ୟା କରାହେଲା, ସେଦିନ ରାତିରେ କୌଣସି ବିଶେଷ ଘଟଣା ଘଟିଥିବାର ତୁ ଲକ୍ଷ୍ୟ କରିଥିଲୁ କି ?

ନା, ତେବେ ମୁଁ ନିଶିଗନ୍ଧାର ସଂଗୀତ ଶୁଣିଥିଲି, ବନ୍ଧୁକ ଚାଳନାର ଶବ୍ଦ ମଧ୍ୟ ମୋ କାନରେ ବାଜିଥିଲା।

ଆଉ ଆର୍ତ୍ତ ଚିତ୍କାର ?

ନା, ସେତେବେଳେ ମୁଁ କାନରେ ହାତ ଦେଇ ଦେଇଥିଲି।

କେଇଥର ଗୁଳି ଚଳିବାର ଶବ୍ଦ ହୋଇଥିଲା ?

ଦୁଇଥର, ଉଦୟ କହିଲା। ଆଉ ସେ ଦୁଇ ରାଉଣ୍ଡ ଗୁଳି ଏତେ ଶୀଘ୍ର ଚଳି ଥିଲା ଯେ, ଜଣେ ଲୋକ ଗୋଟାକ ପରେ ଆଉ ଗୋଟାଏ ଗୁଳି ଏତେ ଚଞ୍ଚଳ ଫୁଟାଇବା ମୋଟେ ସମ୍ଭବ ନୁହେଁ।

ମୁଁ ଉତ୍ସାହିତ ହୋଇ ଉଦୟକୁ ପଚାରିଲି, ବନ୍ଧୁକଟା ଯଦି ଦୁଇ ନଳିଆ ହୋଇଥାଏ ଏବଂ ଦୁଇଟି କାର୍ତ୍ତୁଜ ବନ୍ଧୁକରେ ଭରା ହୋଇ ରଖା ହୋଇଥାଏ, ତା'ହେଲେ ତ ଗୋଟାକ ପରେ ଗୋଟାଏ ଫାୟାର କରାଯାଇ ପାରେ।

ତଥାପି ସମ୍ଭବ ନୁହେଁ।

ମୋ ଆଖିରେ ଆଶାର ଦୀପ୍ତି ଫୁଟି ଉଠିଲା। ମୁଁ ଚିନ୍ତା କରୁଥିଲି ହୁଏତ ରାଜାସାହେବ ଠିକ୍ କହିଛନ୍ତି, ସେ ହତ୍ୟାକାରୀ ନୁହନ୍ତି, ଆଉ ଜଣେ କେହି ଏହିସବୁ ରହସ୍ୟର ଅନ୍ତରାଳରେ ଲୁଚି ରହିଛି।

କିନ୍ତୁ କିଏ ସେ ? ରାଧିକାମୋହନ ! ହେ ମାଙ୍ଗିନୀ !

ରାଜସାହେବ ହୁଏତ ପୋଲିସ୍ ଇନିସ୍‌ପେକ୍ଟରଙ୍କ ସହିତ ଚାଲି ଯାଇଛନ୍ତି। ସଦର ଦରଜରେ ଲୋକ ଗହଳୀ ନାହିଁ, କିମ୍ବା ପୋଲିସର ଭିଡ଼ ଦେଖାଯାଉ ନାହିଁ। ଏହି ସମୟରେ ଯାଇ ଘଟଣା ସ୍ଥଳଟା ଥରେ ଦେଖି ଆସିଲେ ହେବ, ଯେଉଁଠି ନରେନ୍ଦ୍ରପୁରର ରାଜାସାହେବ ମୃତ୍ୟୁବରଣ କରିଥିଲେ।

ମୋତେ କିନ୍ତୁ ଉଦୟ ବାଧା ଦେଲା। ଛାଡ଼ିଲା ନାହିଁ ରାଜବାଟୀକୁ ଯିବାପାଇଁ। ମୁଁ ତାକୁ ପଚାରିଲି, ନରେନ୍ଦ୍ରପୁରର ରାଜାସାହେବଙ୍କ ହତ୍ୟାକାଣ୍ଡ ପରେ, ଯେଉଁ ରାତ୍ରି ଦୁଇଟି ଅତିବାହିତ ହୋଇଛି, ସେହି ରାତ୍ରିରେ ଆଉ ନିଶିଗନ୍ଧାର କଣ୍ଠ-ସଂଗୀତ ଶୁଣା ଯାଇଛି ?

ଉଦୟ ଯେପରି ବିସ୍ମିତ ଗର୍ଭରୁ ସ୍ମୃତି ଫଳକ ଗୋଟେଇ ପାଇଲା। କହିଲା, ସତ କଥା ତ ! ଆଉ ତ କାହିଁ ଶୁଣି ନାହିଁ ମୁଁ ନିଶିଗନ୍ଧାର କଣ୍ଠ-ସଂଗୀତ।

ହୁଏତ ରାତ୍ରି ଯେତେବେଳେ ଅଧିକରୁ ଅଧିକ ହୋଇଥିବ, ଆଉ ତୁ ଯେତେବେଳେ ଶୋଇ ଯାଇଥିବୁ, ସେତିକିବେଳେ ସେ ଗାଇଥିବ ତା'ର ବ୍ୟଥା-ସଂଗୀତ । ମୁଁ କହିଲି ।

ଉଦୟ ମୁହଁରେ ଏଥର ଯେପରି ଉତ୍ସାହର ଚିହ୍ନ ଦେଖିଲି, ସେ କହିଲା, ଆରେ ନା । ସେ ଦୁଇ ରାତ୍ରି ନିଦ୍ରା କ'ଣ ଆସିଛି ମୋ ଆଖିକୁ । ଖାଲି ଦୁଶ୍ଚିନ୍ତାରେ ଭାରି ହୋଇ ଉଠିଛି ମନ ।

ତା'ହେଲେ ତ.....ମୁଁ କ'ଣ କହିବାକୁ ଯାଇ ସବୁ ଭୁଲିଗଲି ଯେପରି । ମୋର ମନେପଡୁଥିଲା ରାଜାସାହେବଙ୍କ ବିଷଣ୍ଣ ମୁଖ ମଣ୍ଡଳ । ସେ ହତ୍ୟାକାରୀ ନୁହନ୍ତି । ହତ୍ୟାକରି ନାହାନ୍ତି ନରେନ୍ଦ୍ରପୁରର ରାଜାସାହେବଙ୍କୁ । କିନ୍ତୁ କିଏ ଆଉ ଦୁଃସାହସ କଲା ଏପରି । କାହାର ବା କି ସ୍ୱାର୍ଥ ଥିଲା !

ଉଦୟ କହିଲା, ଫେରିଯା ଭାଇ । ପୈତୃକ ପ୍ରଣଟା ରକ୍ଷା ହୋଇଛି ଯେତେବେଳେ, ଆଉ ଏ ରହସ୍ୟ କୁହେଳୀ ପଛରେ ନ ଧାଇଁବା ହିଁ ଭଲ । ଏହା ଭିତରେ କୌଣସି ବାସ୍ତବ ସୂତ୍ର ନାହିଁ ଯେ ତୁ ଆବିଷ୍କାର କରିବୁ ।

ତା'ହେଲେ ? ତୋ'ର କ'ଣ ଧାରଣା ? ମୁଁ ପଚାରିଲି ।

ମୋର ମନେହୁଏ ସବୁ ଭୌତିକ, ସବୁ ଅଲୌକିକ ।

ମୁଁ ନ ହସି ରହି ପାରିଲି ନାହିଁ ।

ଉଦୟ ରାଗିଗଲା । କହିଲା, ବର୍ଷ ବର୍ଷ ହେବ ଆମେ ଯାହା ଅନୁଭବ କରି ଆସୁଚୁ, ତୁ ଆଜି ସେଗୁଡ଼ା ହସି ଉଡ଼େଇ ଦେଲେ ଚଳିବ !

କିନ୍ତୁ ତୁ ବିଂଶ ଶତାବ୍ଦୀରେ ଜନ୍ମ ହୋଇ ବି, ମନଟା ତୋର କୁସଂସ୍କାରରେ ଭରି ରହିଛି କିପରି ? ଏହିସବୁ ଅଘଟଣ ମୂଳରୁ ନିଶ୍ଚୟ କୌଣସି ଏକ ବିରାଟ ରହସ୍ୟ ଉଦ୍‌ଘାଟିତ ହେବ, ସେତେବେଳେ ତୁ ସ୍ତବ୍ଧ ହୋଇଯିବୁ ।

ନା ଭାଇ, ମୁଁ ତୋ' କଥା ମାନିବାକୁ ରାଜି ନୁହେଁ । ତା'ଛଡ଼ା ନିଶିଗନ୍ଧା ତ ଆଉ କୌଣସି ରକ୍ତ ମାଂସର ଦେହ ଧାରିଣୀ ନୁହେଁ । ଏ କଥା ତୁ ସ୍ୱୀକାର କରିବୁ ନା ନାହିଁ ?

ଯଦି ଅସ୍ୱୀକାର କରେ । କହିଲି ।

ଉଦୟ ହୋ ହୋ ହୋଇ ହସି ଉଠିଲା । କହିଲା, ତା' ହେଲେ ତୋ ମୁଣ୍ଡ ଖରାପ ହୋଇଛି ବୋଲି କହିବି ।

ଆଚ୍ଛା ଉଦୟ ! ମୁଁ ଶାନ୍ତ ସ୍ୱରରେ ପଚାରିଲି ।

କ'ଣ ! ସେ ଉତ୍ତର ଦେଲା ।

ତୁ ବନଦୁର୍ଗାଙ୍କ ମନ୍ଦିର ଦେଖିଚୁ ?

ସେ ମୋ ଆଡ଼େ ପ୍ରଶ୍ନବାଚୀ ନୟନରେ ଚାହିଁ କହିଲା, ବନ ଦୁର୍ଗାଙ୍କ ମନ୍ଦିର, କେଉଁଠି ?

ଅଛି, ଏହି ନନ୍ଦନଗଡ଼ରେ ଏପରି କେତେକ କଥା ଅଛି, ଯାହା ଅନେକ ଜାଣନ୍ତି ନାହିଁ । ନନ୍ଦନଗଡ଼ର ଉତ୍ତର ପାର୍ଶ୍ୱକୁ ପ୍ରାୟ ଅଧ ମାଇଲ ବାଟ ଜଙ୍ଗଲ ଭିତରେ ଅତିକ୍ରମ କରି ଗଲେ, ସେଠାରେ ଗୋଟିଏ ଭଗ୍ନ ମନ୍ଦିର ଦେଖିବୁ । ସେଇ ହେଉଛି ବନ ଦୁର୍ଗାଙ୍କ ମନ୍ଦିର । ନନ୍ଦନଗଡ଼ର ଆଦି ଦେବତା ବନଦୁର୍ଗା ।

କ'ଣ ଅଛି ସେଠାରେ ?

ବୃଦ୍ଧ ପୂଜକ, ଆଉ ତାଙ୍କର ତରୁଣୀ କନ୍ୟା ।

ହୁଏତ ଥିବେ । କିନ୍ତୁ ତାଙ୍କ ସହିତ ଏ ଘଟଣାର ସଂପର୍କ କ'ଣ ?

କିଛି ନାହିଁ ବୋଲି ଭାବୁଛୁ କାହିଁକି ? ମନ୍ଦିରର ପୂଜକଙ୍କ ଠାରୁ ଶୁଣିଲି, ସେ ରାଜା ସାହେବଙ୍କ ଉପରେ ସନ୍ତୁଷ୍ଟ ନୁହନ୍ତି ।

ନ ହେଲେ ବା । ସେ କ'ଣ କରିପାରିବ ରାଜା ସାହେବଙ୍କର ?

ତାଙ୍କର ଯେ ଏକ ତରୁଣୀ, ସୁନ୍ଦରୀ ଆଉ ସୁକଣ୍ଠୀ କନ୍ୟା ଅଛି ଉଦୟ !

ଉଦୟ ଏଥର ନ ହସି ରହି ପାରିଲା ନାହିଁ । କହିଲା, ତୋର ମତିଭ୍ରମ ହୋଇଛି ଦେଖୁଛି । ପୂଜକଙ୍କର ଯଦି ତରୁଣୀ ଆଉ ସୁନ୍ଦରୀ କନ୍ୟା ଥାଏ, ତା'ର ବୟସ କେତେ ହେବ ? ଖୁବ୍ ଯୋର ସତର ଅଠର ! କିନ୍ତୁ ନିଶିଗନ୍ଧାର ଆବିର୍ଭାବ ଯେ ତା' ପୂର୍ବରୁ ।

ହେଲେ ବି, ମୁଁ କହିଲି । ନିଶିଗନ୍ଧା ଭୂମିକାରେ ଅଭିନୟ କରିବାପାଇଁ ନନ୍ଦନଗଡ଼ରେ କ'ଣ ସୁନ୍ଦରୀ କନ୍ୟାର ଅଭାବ ହୋଇଥିବ । ଜଣକ ପରେ ଜଣେ ଯେ ନ ଆସିଥିବେ, ଏପରି ଭାବୁଛୁ କାହିଁକି ?

କେଜାଣି ଭାଇ, ମୁଁ ତ କିଛି ଚିନ୍ତା କରି ପାରୁନାହିଁ । ଜଣକ ପରେ ଜଣେ ଯେ ନିଶିଗନ୍ଧା ଭୂମିକାରେ କାହିଁକି ଅଭିନୟ କରିବେ, କାହାର ବା କ'ଣ ସ୍ୱାର୍ଥ ଅଛି ତହିଁରେ, ମୁଁ ଭାବି ପାରୁନାହିଁ । ଏତେ କଥା ଚିନ୍ତା କରିବାକୁ ମଧ ମୋର ସମୟ ନାହିଁ ।

ମୁଁ ଦେଖିଲି, ରାଜବାଟୀ ଭିତରୁ ଜଣେ ଡାକ୍ତର ବାହାରି ଆସୁଛନ୍ତି, ତାଙ୍କ ପଛେ ପଛେ ରାଧିକାମୋହନ ଏବଂ ଆଉ ଜଣେ ଦୁଇଜଣ ରାଜ କର୍ମଚାରୀ । ତା'ହେଲେ ? ରାଜାସାହେବ କ'ଣ ଏପର୍ଯ୍ୟନ୍ତ ସୁସ୍ଥ ହୋଇ ଉଠି ନାହାନ୍ତି ?

ସଂଗେ ସଂଗେ ମୁଁ ବାହାରିଗଲି ।

ସଦର ଦରଜା ପାର ହୋଇ ଡାକ୍ତର ଗାଡ଼ିରେ ବସି ସାରିଥିଲେ ।

ରାଧିକାମୋହନକୁ ପଚାରିଲି, ରାଜାସାହେବ କ'ଣ ଏପର୍ଯ୍ୟନ୍ତ ସୁସ୍ଥ ହୋଇ ଉଠି ନାହାନ୍ତି ?

ନା ।

ଡାକ୍ତର କ'ଣ କହିଲେ ?

ଅବସ୍ଥା ଖୁବ୍ ଭଲ ନୁହେଁ । ରାଧିକାମୋହନଙ୍କର ଏପରି ସଂକ୍ଷିପ୍ତ ଉତ୍ତର ମୋତେ କାହିଁକି ଭଲ ଲାଗିଲା ନାହିଁ ।

ସେ ଚାଲି ଯାଇଥିଲା ।
ମୁଁ ବି ଫେରି ଆସିଲି ।

ସେଦିନ ରାତ୍ରିରେ ମୁଁ ଜାଗ୍ରତ ପ୍ରହରୀ ପରି ନିଶିଗନ୍ଧାର ପ୍ରତୀକ୍ଷାରେ ବସି ରହିଲି । ରାତ୍ରି କ୍ରମଶଃ ଅଧିକରୁ ଅଧିକ ହେଲା । କିନ୍ତୁ ନନ୍ଦନଗଡ଼ ନୀରବ ନିଶ୍ଚଳ । ଆଜି ଯେପରି ବହୁ ଶତାବ୍ଦୀ ପରେ ନନ୍ଦନଗଡ଼ର ଆଖିରେ ପ୍ରବଳ ନିଦ୍ରା ।

ମୋ ଆଖିରୁ କିନ୍ତୁ ନିଦ୍ରା ଦୂରେଇ ଯାଇଥିଲା ।

ମୁଁ ରାଜପ୍ରାସାଦର ଏକ କକ୍ଷରେ ବସି, ଉଦ୍ୟାନ ଆଡ଼େ ଚାହିଁ ଚିନ୍ତା କରୁଥିଲି କ'ଣ କରିବି ? ଆଜି ରାତ୍ରିରେ ଯଦି ନିଶିଗନ୍ଧାର କଣ୍ଠ ସଂଗୀତ ଶୁଣିବାକୁ ନ ପାଏ, ତା'ହେଲେ କ'ଣ ବୁଝିବାକୁ ହେବ ନରେନ୍ଦ୍ରପୁରର ରାଜାସାହେବଙ୍କ ମୃତ୍ୟୁ ପରେ ପରେ ନିଶିଗନ୍ଧା ଏଠାରୁ ବିଦାୟ ନେଇଛି ?

ନାନା ପ୍ରକାର ଚିନ୍ତା ଓ ଭାବନା ଭିତରେ ମନଟା ମୋର ପୂରି ରହିଥିଲା । ଏଣେ ରାଜାସାହେବଙ୍କର ଆଉ ଚେତା ଫେରି ନାହିଁ । ରାଧିକାମୋହନ ସହିତ ସେଇ ଯେ ଦେଖା ହୋଇଥିଲା, ଆଉ ତା'ର ପତ୍ତା ନାହିଁ । ହେମାଙ୍ଗିନୀ ଗଲା କେଉଁଆଡ଼େ ? ତା'ର ରାଜତ୍ୱ କ'ଣ କେବଳ ଗେଷ୍ଟ ହାଉସ୍‌ରେ ?

ରାଜପ୍ରାସାଦର କେଉଁ ଏକ ଦିଆଲ ଘଡ଼ିରେ ଦୁଇଟା ବାଜିବାର ଶବ୍ଦ ହେଲା । ମନଟା ମୋର ନିରାଶାରେ ଭରିଗଲା । ନା, ଆଉ ନୁହେଁ । ନିଶିଗନ୍ଧା ଆଉ ଆସିବ ନାହିଁ, କେବେ ହୁଏତ ଆସିବ ନାହିଁ ନନ୍ଦନଗଡ଼ର ଏହି ଉଦ୍ୟାନ ଭିତରକୁ । ତା'ର କାର୍ଯ୍ୟ ଶେଷ ହୋଇଛି, ଅଭିଳାଷ ତା'ର ପୂର୍ଣ୍ଣ ହୋଇଛି ।

କିଏ ? ମୁଁ ଯେପରି ଉଦ୍ୟାନ ମଝିରେ କାହାର ଛାୟା ଦେଖିଲି । ଏକ ପାର୍ଶ୍ୱରୁ ଅପର ପାର୍ଶ୍ୱକୁ ଧାଇଁଗଲା ।

ସର୍ବାଙ୍ଗରେ ମୋର ଶିହରଣ ଖେଳିଗଲା ।

ତା'ପରେ ଅଧୀର ଆଗ୍ରହରେ ପ୍ରତୀକ୍ଷା କରି କହିଲି ବହୁକ୍ଷଣ ।

ମହାନଦୀ ବକ୍ଷରେ ଆହୁଲାର ଶବ୍ଦ ଶୁଣାଗଲା । ମନେହେଲା ଯେପରି ଏକ ନୌକା ଭିଡୁଚି ଆସି ନନ୍ଦନଗଡ଼ର ରାଜବାଟୀ ମଧରେ । ମୁଁ ଖାଲି ଆହୁଲାର ଶବ୍ଦ ଶୁଣି ପାରୁଥିଲି, ନୌକା ଆଉ ମାଝି କଥା କେବଳ କଳ୍ପନା କରୁଥିଲି । ଅପେକ୍ଷା କରୁଥିଲି ପରିଣତିକୁ ।

କିଛି ସମୟ ପରେ ଆହୁଲାର ଶବ୍ଦ ବନ୍ଦ ହୋଇଗଲା । ମୋର ମନେହେଲା ହୁଏତ

ନୌକା କୂଳରେ ଭିଡ଼ିଛି ଆରୋହୀ ଓହ୍ଲେଇ ଆସିବ ଅଳ୍ପ ସମୟ ପରେ । ତା'ପରେ ମୁଁ ଦେଖିବି ତାକୁ ଶଶରୀରେ ?

କେତୋଟି ମୁହୂର୍ତ୍ତ ନୀରବରେ କଟିଗଲା ।

ଧୀରେ ଧୀରେ ଶୁଣାଗଲା ଏକ ଅସ୍ପଷ୍ଟ କଣ୍ଠସ୍ୱର ।

ତା'ପରେ ସ୍ପଷ୍ଟ, ମଧୁର । ନିଶିଗନ୍ଧାର କଣ୍ଠ-ସଂଗୀତ । ଯେଉଁଥିପାଇଁ ବସିଥିଲି ମୁଁ ପ୍ରତୀକ୍ଷାରେ ।

କିନ୍ତୁ ନିଶିଗନ୍ଧାର ଅସ୍ତିତ୍ୱ ମୁଁ ଅନୁଭବ କରି ପାରୁ ନଥିଲି । କ୍ରମଶଃ କଣ୍ଠ-ସ୍ୱର ତା'ର କରୁଣରୁ କରୁଣ ହୋଇ ଉଠୁଥିଲା । ମନ ଭିତରେ ମୋର ଜାଗିଥିଲା ଦ୍ୱନ୍ଦ । କ'ଣ କରିବି । ଏଇ ହୁଏତ ମୋର ଏକମାତ୍ର ଆଉ ଶେଷ ସୁଯୋଗ । ହରାଇଲେ ଚଳିବ ନାହିଁ । ମୁଁ ସ୍ପଷ୍ଟ ଶୁଣିଚି ମହାନଦୀ ବକ୍ଷରେ ଆହୂଲାର ଶବ୍ଦ । ନିଶ୍ଚୟ କୌଣସି ନୌକା ଆସି ଲାଗିଚି କୂଳରେ । ସେଇଥିରୁ ଓହ୍ଲେଇଚି ନିଶିଗନ୍ଧା । ଆଉ ବ୍ୟଥା ସଂଗୀତ ଫୁଟି ଉଠିଚି ତା'ରି କଣ୍ଠରୁ !

ମୁଁ ଆଉ ସ୍ଥିର ହୋଇ ବସି ପାରିଲି ନାହିଁ । ହୁଏତ ଆଉ କେଇ ମିନିଟ୍ ପରେ ନିଶିଗନ୍ଧାର କଣ୍ଠ ସଂଗୀତ ଶେଷ ହୋଇଯିବ । ଲେଉଟି ଯିବ ସେ ନୌକାରେ ଚଢ଼ି । ପାଦ ଯୋଡ଼ାକ ମୋର ଚଞ୍ଚଳ ହୋଇ ଉଠିଥିଲା । ମୁଁ ଦ୍ରୁତ ଓହ୍ଲେଇ ଆସୁଥିଲି ତଳକୁ । ତା'ପରେ ଉଦ୍ୟାନ । ଉଦ୍ୟାନ ଶେଷରେ ମହାନଦୀ କୂଳର ଏକ ବୃକ୍ଷ ମୂଳରୁ ଶୁଭୁଛି ନିଶିଗନ୍ଧାର କଣ୍ଠ ।

ମୁଁ ଉଦ୍ୟାନରେ ପାଦ ଦେଲି । ତା'ପରେ କେଇ ପାହୁଣ୍ଡ ଆଗେଇଚି କି ନାହିଁ କଣ୍ଠ-ସଂଗୀତ ବନ୍ଦ ହୋଇଗଲା । ମୁଁ କ୍ଷିପ୍ର ଗତିରେ ଧାଇଁଗଲି ମହାନଦୀ କୂଳ ଯାଏ । କିଏ କାହିଁ ? ନା ଅଛି ନିଶିଗନ୍ଧା, ନା ଅଛି ନୌକା । ମହାନଦୀର ବକ୍ଷ ଶାନ୍ତ, ମଧୁର । ଜ୍ୟୋତ୍ସ୍ନାର ମୃଦୁ ତରଙ୍ଗ ମହାନଦୀ ବକ୍ଷରେ ଛନ୍ଦ ରଚନା କରିଛି ।

ଅଦ୍ଭୁତ, ଅପୂର୍ବ ଏହି ନିଶିଗନ୍ଧା । ତା'ହେଲେ ପ୍ରକୃତରେ ଏହା କ'ଣ ଏକ ଅଲୌକିକ ଘଟଣା ?

ସେଇଠି ଠିଆ ହୋଇ ମୁଁ ଚିନ୍ତା କରୁଥିଲି ।

ନନ୍ଦନଗଡ଼ର ରାଜବାଟୀ ଶୋଇ ପଡ଼ିଥିଲା, ଶୋଇ ପଡ଼ିଥିଲେ ରାଜବାଟୀର ଅସଂଖ୍ୟ ନରନାରୀ । ଅଥବା ଭୟରେ ଆଖି ବୁଜିଥିଲେ ପ୍ରାଣରକ୍ଷା ପାଇଁ ।

ମୋ ମନରେ କିନ୍ତୁ ଏକ ଖିଆଲ ଜାଗିଲା । ଏତିକିବେଳେ ବନ ଦୁର୍ଗା ମନ୍ଦିରକୁ ଯାଇ ପୂଜକ ଆଉ ତାଙ୍କ କନ୍ୟାଙ୍କୁ ଦେଖିଲେ ହୁଅନ୍ତା । କ'ଣ କରୁଛନ୍ତି ସେମାନେ । କିନ୍ତୁ ଏହି ଗଭୀର ରାତ୍ରିରେ ଘନ ଜଙ୍ଗଲ ମଧରେ ଏତେ ବାଟ ଆଗେଇବା କ'ଣ ଉଚିତ୍ ହେବ ? ଅବଶ୍ୟ ଆକାଶରେ ଜହ୍ନ ଥିଲା, ଆଉ ମନ ମଧରେ ଥିଲା ପ୍ରବଳ ଉତ୍ତେଜନା ।

ମୁଁ କୌଣସି ସ୍ଥିର ସିଦ୍ଧାନ୍ତରେ ଉପନୀତ ହେବା ଆଗରୁ ପାଦ ଦୁଇଟା ମୋର ଆଗେଇ ଚାଲିଥିଲା ।

ବନ ଦୁର୍ଗା ମନ୍ଦିରର ପୂଜକଙ୍କ ସମ୍ବନ୍ଧରେ ମୋ ମନରେ ଜାଗି ଉଠିଥିଲା ଯେଉଁ କୌତୁହଳ, ଆଜି ତା'ର ଅବସାନ ହେଉ । ମୁଁ ଚାଲିଥିଲି ।

ଯେତେବେଳେ ଯାଇ ବନ-ଦୁର୍ଗା ମନ୍ଦିର ନିକଟରେ ପହଞ୍ଚିଲି, ସେଠାରେ ବି ସେହି ରାତ୍ରିର ନିର୍ଜନତା । ମନ୍ଦିରର ଦ୍ୱାର ବନ୍ଦ ଥିଲା । ପରୀକ୍ଷା କରି ଦେଖିଲି । ଭିତରୁ ବନ୍ଦ ହୋଇଛି ।

ଠିଆ ହୋଇ ଚିନ୍ତା କଲି କିଛି ସମୟ । ଅନ୍ୟ କୌଣସି ବାଟ ଦେଇ ଭିତରେ ପ୍ରବେଶ କରିହେବ କି ନାହିଁ ।

ଚିନ୍ତାସ୍ରୋତ ମୋର ବ୍ୟାହତ ହେଲା । ଖସ୍ ଖସ୍ କ'ଣ ଗୋଟାଏ ଶବ୍ଦ ଶୁଣି ମୁଁ ବୁଲି ଅନାଇଲି । ଅଳ୍ପ ଦୂରରେ ଗୋଟାଏ କୁକୁର । ଦ୍ରୁତ ଗତିରେ ଛୁଟି ପଳାଇଛି । ସେଇ ମୁହୂର୍ତ୍ତରେ ମୁଁ ତା'ପଛରେ ଛୁଟିଲି । ମୋ ପାଦ ଶବ୍ଦ ଶୁଣି ସେ ଥରେ ମୋ ଆଡ଼େ ବୁଲି ଅନେଇଲା । କିନ୍ତୁ ଆଶ୍ଚର୍ଯ୍ୟ ! କୌଣସି ପ୍ରକାର ପ୍ରତିବାଦ ସୂଚକ ଧ୍ୱନି ନ କରି ସେ ଆହୁରି ଯୋରରେ ଧାଇଁ ପଳାଇବାକୁ ଲାଗିଲା ।

ମୁଁ ମୋ ପାଦର ଗତି ବଢ଼ାଇ ଦେଲି । କୁକୁରଟା ଧାଇଁଥିଲା ସେଇଆଡ଼େ, ଯେଉଁ ଭଗ୍ନପ୍ରାୟ ଗୃହଟିରେ ମୁଁ ଯାଇ ସଦାକଦ୍‌ର ଅନୁସନ୍ଧାନ କରିଥିଲି ।

ମୁଁ ଯାଇ ସେଇ ଘର ପାଖରେ ପହଞ୍ଚିଲି ସତ, କିନ୍ତୁ କୁକୁରଟା ଯେ କଆଡ଼େ ଅଦୃଶ୍ୟ ହୋଇଗଲା, ଆଉ ଦେଖି ପାରିଲି ନାହିଁ । ଘରଟାର ସଦର ଦରଜାରେ ସକାଳ ପରି ତାଲା ଝୁଲୁଥିଲା । ମୁଁ ନିରୁପାୟ ହୋଇ ସେଇଠି ଠିଆ ହୋଇ ରହିଲି । ମୋର ମନେ ହେଲା କୁକୁରଟି ଏହି ଘର ମଧ୍ୟରେ ପ୍ରବେଶ କରିଛି । ହୁଏତ ଏହି ଘର ମଧ୍ୟରେ କୁକୁରର ପ୍ରଭୁ ବାସକରେ । ତା'ନହେଲେ କୁକୁରଟା ଏହା ମଧ୍ୟରେ ପ୍ରବେଶ କରି ଥାଆନ୍ତା କାହିଁକି ?

ମୁଁ କବାଟଟାକୁ ପରୀକ୍ଷା କରିବାକୁ ଯାଇ ଟିକିଏ ଶବ୍ଦ ହେଲା । ଦୁଇଚାରିଟା ଚେମଣିଆ ଫଡ଼୍ ଫାଡ଼୍ ହୋଇ ଉଡ଼ିଗଲେ । ସଙ୍ଗେ ସଙ୍ଗେ ଘର ଭିତରୁ, କୁକୁରଟା ଭୁକି ଉଠିଲା ।

ମୁଁ ନିଶ୍ଚିନ୍ତ ହେଲି ଯେ ଏହି ଘର ମଧ୍ୟକୁ ପ୍ରବେଶ କରିବା ପାଇଁ ନିଶ୍ଚୟ ଅନ୍ୟ ଗୋଟାଏ ପଥ ଅଛି । ଆଉ କୁକୁର ତା'ପ୍ରଭୁ ସହିତ ଭିତରେ ବାସକରୁଛି ।

ଏହିପରି ଚିନ୍ତାକରି ଯେତେବେଳେ ମୁଁ ଗୃହ ମଧ୍ୟରେ ପ୍ରବେଶ ପଥ ଖୋଜି ବାହାର କରିବାକୁ ସ୍ଥିର ନିଶ୍ଚୟ କଲି, ସେତେବେଳେ ଦେଖିଲି ଗୋଟିଏ ଅସ୍ପଷ୍ଟ ନାରୀମୂର୍ତ୍ତି । ସେ ଦୂରରୁ ଧାଇଁ ଧାଇଁ ମୋରି ଆଡ଼େ ଛୁଟିଛି ଆଉ ହାତଠାରି ଡାକୁଛି ।

ମୁଁ ଅବାକ ହୋଇ ଠିଆ ହୋଇଗଲି ।

ସେ ଉର୍ଦ୍ଧ୍ୱ ଶ୍ୱାସରେ ଆସି ମୋ ପାଖରେ ପହଞ୍ଚିଲା ।

ତରୁଣୀ ବନ-ଦୁର୍ଗା ପୂଜକଙ୍କର କନ୍ୟା । ସେ ମୋ ହାତ ଧରି ଟାଣି ଟାଣି ନେଇଗଲା । କମ୍ପିତ କଣ୍ଠରେ କହିଲା, ଆପଣ ସେ ଘର ଭିତରକୁ ଯାଆନ୍ତୁ ନାହିଁ ।

କାହିଁକି ? ମୁଁ ପ୍ରଶ୍ନ କଲି ।

ରାତିରେ ସେ ଘର ଭିତରେ ଯିଏ ପଶେ, ସେ ଆଉ ପ୍ରାଣ ଘେନି ଫେରେ ନାହିଁ।

କାରଣ ?

ତା'ଭିତରେ ଏକ ଭୀଷଣକାୟ କୁକୁର ଥାଏ। ସେ ସଂଗେ ସଂଗେ ଗଳାଟିପି ରକ୍ତ ଶୋଷିନିଏ।

କିନ୍ତୁ ତମେ....

ହଁ ମୁଁ ଜାଣିଛି। ଆପଣ ଯେତେବେଳେ ମନ୍ଦିର ଦୁଆରେ ଠିଆ ହୋଇଥିଲେ ମୁଁ ଲକ୍ଷ୍ୟ କରିଥିଲି। କୁକୁର ପଛରେ ଧାଇଁବାର ଦେଖି ଆପଣଙ୍କୁ ନିଶ୍ଚିନ୍ତ ମୃତ୍ୟୁ ମୁଖରୁ ବଞ୍ଚାଇବା ପାଇଁ ଛୁଟି ଆସିଲି।

ଏତେ ରାତିରେ, ତମେ ନ ଶୋଇ, ବାହାରେ ବୁଲୁଥିଲ କାହିଁକି ?

ହଠାତ୍ ନିଦ ଭାଙ୍ଗି ଯାଇଥିଲା।

ହୁଁ, ମୁଁ ତା'ଆଡ଼େ ସଂଦେହୀ ଦୃଷ୍ଟିରେ ଚାହିଁ ପଚାରିଲି, ତୁମ ନାମ କ'ଣ ?

ଲଳିତା।

ଏ ଘରେ ଆଉ କିଏ ରୁହେ ?

ସଦାକତ୍ କକା।

ଏ କୁକୁର କ'ଣ ସଦାକତ୍‌ର ?

ଲଳିତା ଅତି ସହଜ ଓ ସରଳ ଭାଷାରେ କହିଲା, ସେଇଟା ମଣିଷର ଧର୍ମ୍ମ। ବାପା କହିଛନ୍ତି, ଅକାଳରେ କୌଣସି ପ୍ରାଣୀର ଜୀବନ ନଷ୍ଟ ହେବାର ଦେଖିଲେ ତାକୁ ସାହାଯ୍ୟ କରିବ।

ମୁଁ ଆଉ କୌଣସି ପ୍ରଶ୍ନ ପଚାରି ପାରିଲି ନାହିଁ। କେବଳ ଲଳିତା ମୁହଁକୁ ଅବାକ୍ ହୋଇ ଅନାଇ ରହିଲି।

ସେ ଚାଲି ଯାଉଥିଲା। ଡାକିଲି, ଶୁଣ।

ଲଳିତା ଠିଆ ହେଲା। କହିଲା, କାହିଁ, ତୁମେ ତ ମୋର ପରିଚୟ ପଚାରିଲ ନାହିଁ ?

ଆବଶ୍ୟକ ନାହିଁ। ଆପଣଙ୍କ ପ୍ରାଣ ବଂଚେଇ ପାରିଛି, ସେତିକି ଯଥେଷ୍ଟ।

ଆଚ୍ଛା ଲଳିତା ! ତମେ ଗୀତ ଗାଇପାର ?

ହଁ ।

ଶୁଣାଇବ ଗୋଟିଏ ଗୀତ ।

ସେ ହସିଲା । କହିଲା, ମୁଁ ଗୀତ ଗାଇ କେବଳ ଠାକୁରଙ୍କୁ ଶୁଣାଏ ! ଆପଣ ଯାଆନ୍ତୁ ।

ଲଳିତା ଚାଲି ଯାଉଥିଲା ! ମୁଁ ଆଉ ତାକୁ ପଛରୁ ଡାକି ପାରିଲି ନାହିଁ । ତା'ର ସରଳତାରେ ମୁଁ ମୁଗ୍ଧ ହୋଇ ଯାଇଥିଲି । ମୋର ପରବର୍ତ୍ତୀ କାର୍ଯ୍ୟପନ୍ଥା କିଛି ସ୍ଥିର କରି ପାରୁନଥିଲି । ଏତିକି ନିଶ୍ଚିତ ହେଲି ଯେ ସଦାକତ୍ ଏକ ମଣିଷ ଶିକାରୀ କୁକୁର ସହିତ ଏଇ ଘରେ ବାସ କରେ ।

କିନ୍ତୁ ତାକୁ ଆବିଷ୍କାର କରିବି କିପରି ?

ଲଳିତା ଯାହା କହିଗଲା, ଯଦି ସତ୍ୟ ହୋଇଥାଏ ତେବେ ସେ ଘର ମଧ୍ୟରେ ପ୍ରବେଶ କରିବା ଆଦୌ ନିରାପଦ ନୁହେଁ ।

ବରଂ ଆଜି ରାତିଟା କଟିଯାଉ । କାଲି ସୂର୍ଯ୍ୟୋଦୟ ପରେ ସଦାକତ୍ ସହିତ ଦେଖା କରିବାକୁ ଚେଷ୍ଟା କରିବି ।

ବ୍ୟର୍ଥ ହୋଇ ପାଦ ଫେରାଇଲି ।

ପକେଟରୁ ଗୋଟାଏ ସିଗାରେଟ୍ ବାହାର କରି ତହିଁରେ ଅଗ୍ନି ସଂଯୋଗ କଲି । ବ୍ୟର୍ଥତାର ଏକ କରୁଣ ରାଗିଣୀ ଯେପରି ମୋତେ ବିହ୍ୱଳ କରି ପକାଇଥିଲା । ମୁଁ ଅନ୍ୟମନସ୍କ ଭାବରେ ଫେରୁଥିଲି ।

ଗୋଟିଏ ସିଗାରେଟ୍ ଦେବେ ହଜୁର... । କାହାର କଣ୍ଠ ସ୍ୱରରେ ମୁଁ ଚମକି ପଡିଲି ।

ମୋ ପଛରେ ସଦାକତ୍ । ଆଖିକୁ ବିଶ୍ୱାସ କରି ପାରିଲି ନାହିଁ । ସେ କହିଲା, ମୋତେ ଚିହ୍ନି ପାରୁଛନ୍ତି ହଜୁର !!

ମୁଁ ଉଚ୍ଛ୍ୱସିତ ଆନନ୍ଦରେ କହିଲି, ବାଃ, ତୁମକୁ ମୁଁ ଚିହ୍ନି ପାରିବି ନାହିଁ ସଦାକତ୍ । ତମେ କହିଥିଲ ନା ରାଜାସାହେବଙ୍କ ଠାରୁ ପ୍ରବେଶ ପତ୍ର ଆଣିବାପାଇଁ । ମୁଁ ଆଣିଛି ସଦାକତ୍ । ତୁମକୁ ଖୋଜି ଖୋଜି ଥକି ପଡିଲିଣି, କହି ସଦାକତ୍ ହାତକୁ ସିଗାରେଟ୍ ପକେଟ ଓ ଡିଆସିଲିଟି ବଢ଼େଇ ଦେଲି ।

ସଦାକତ୍ ଅତ୍ୟନ୍ତ ଆଗ୍ରହରେ ଗୋଟିଏ ସିଗାରେଟ୍ ଲଗାଇ ଖୁବ୍ ଜୋରରେ ଦୁଇଟାଣ ଟାଣିଦେଇ ନାକ ଓ ପାଟିବାଟେ ଧୂଆଁ ଛାଡୁ ଛାଡୁ କହିଲା, ଜୀବନରେ ସବୁ ତ୍ୟାଗ କରିପାରିଲି ହଜୁର, କେବଳ ପାରିଲି ନାହିଁ ଏଇ ବସ୍ତୁଟାକୁ । କେହି ଧୂମପାନ କରୁଥିବାର ଦେଖିଲେ ମୁଁ ଆଉ ସ୍ଥିର ରହିପାରେ ନାହିଁ ।

ସଦାକତ୍‌କୁ କହିଲି, ତୁମେ ଏତେ ଦିନଯାଏ ଥିଲ କେଉଁଠି ?

ମୁଁ ଯେତେଥର ଆସିଛି, ତୁମକୁ ତ ଆଉ ଉଦ୍ୟାନରେ ଦେଖି ନାହିଁ ?

ମୁଁ ଖୁବ୍ ଅସୁସ୍ଥ ହୋଇ ପଡିଥିଲି ହଜୁର । ତା'ଛଡା ମୁଁ ଖୁବ୍ ଶୀଘ୍ର ନନ୍ଦନଗଡ଼ ଛାଡ଼ି ଚାଲିଯାଉଛି ।

କାହିଁକି ? ହଠାତ୍ ତୁମର ନନ୍ଦନଗଡ଼ ପ୍ରତି ବିତୃଷ୍ଣା ଜନ୍ମିଲା କାହିଁକି ସଦାକତ୍ !!

ବିତୃଷ୍ଣା ମୋର ବହୁ ବର୍ଷର ହଜୁର୍ । କିନ୍ତୁ ରହିଥିଲି ଗୋଟାଏ ଉଦ୍ଦେଶ୍ୟରେ ।

ଉଦ୍ଦେଶ୍ୟ ତୁମର କ'ଣ ସଫଳ ହୋଇଛି ?

ସଦାକତ୍ କୌଣସି ଉତ୍ତର ଦେଲା ନାହିଁ ।

ମୁଁ କଥା ବୁଲେଇ ପଚାରିଲି, ଜାଣ ତ ରାଜାସାହେବ ତୁମର ଖୁବ୍ ବିପଦରେ ପଡିଛନ୍ତି ?

ଜାଣେ ।

ଏପରି ଅବସ୍ଥାରେ ତୁମର କ'ଣ ତାଙ୍କୁ ସାହାଯ୍ୟ କରିବା ଉଚିତ ନୁହେଁ ?

ସଦାକତ୍ ତାଚ୍ଛଲ୍ୟର ହସ ହସିଲା । କହିଲା ଜଣେ ଉଦ୍ୟାନ ରକ୍ଷକଠାରୁ ରାଜାସାହେବ କି ସାହାଯ୍ୟ ଆଶା କରି ପାରନ୍ତି ?

ମୁଁ ତା'ର ପିଠି ଥାପୁଡେଇ କହିଲି, ତମେ ମୋତେ ଫାଙ୍କି ଦେଇ ପାରିବ ନାହିଁ ସଦାକତ୍ । ତମ ସମ୍ବନ୍ଧରେ ରାଜାସାହେବ ମୋ ଆଗରେ ସବୁ କହିଛନ୍ତି । ତମ ପାଇଁ ହୃଦୟରେ ତାଙ୍କର ଅସୀମ ଦରଦ । ସେ ଯେତେବେଳେ ତମ ଅତୀତ କଥା ମୋ ଆଗରେ କହିବାକୁ ଆରମ୍ଭ କଲେ, ତାଙ୍କ ଆଖିରୁ ପାଣି ନିଗିଡ଼ି ପଡିଲା ।

ଲକ୍ଷ୍ୟ କଲି ସଦାକତ୍‌ର ଆଖି ଦୁଇଟା ଯେପରି ଛଳ ଛଳ ହୋଇ ଆସିଲା । ସେ ମୋ ପାଖକୁ ଲାଗି ଆସି ଶାନ୍ତ କଣ୍ଠରେ ପଚାରିଲା, ରାଜାସାହେବ ମୋ ସମ୍ବନ୍ଧରେ କ'ଣ କହୁଥିଲେ ହଜୁର୍ !!

ସେ ଅନେକ କଥା ସଦାକତ୍ । ତୁମେ କିପରି କେଉଁଠୁ ଆସି ନନ୍ଦନଗଡ଼ରେ ପହଞ୍ଚିଲ । ତା'ଛଡା ନିଶାତ୍‌ର ତମ ପ୍ରତି ଆନ୍ତରିକତା...

ନିଶାତ୍‌ର ନାଁ ଶୁଣିବାକ୍ଷଣି ସଦାକତ୍ ଯେପରି ଉଚ୍ଛ୍ୱସିତ ହୋଇ ଉଠିଲା । ବିବ୍ରତ କଣ୍ଠରେ ପ୍ରଶ୍ନ କଲା, ରାଜାସାହେବ ନିଶାତ୍ ଆଉ ମୋ କଥା କ'ଣ କହୁଥିଲେ ହଜୁର୍ ।

ମୁଁ କହିଲି, ସେ କାହାଣୀ ଏତେ ବିରାଟ ଯେ, ଠିଆହୋଇ ଏଠାରେ କହି ହେବ ନାହିଁ । ତମେ ଚାଲ । ତମ ଘରେ ବସି ମୁଁ ତୁମକୁ ସବୁ ଶୁଣାଇବି ।

ମୋ ଘରକୁ ଯିବେ ହଜୁର୍ ?

କାହିଁକି, ତମର କିଛି ଆପତ୍ତି ଅଛି ?

ନା, ନା, ମୋର କିଛି ଆପତ୍ତି ନାହିଁ । କିନ୍ତୁ ହଜୁର୍ କ'ଣ ମୋର ସେହି ପଚା ଗନ୍ଧ ଘରେ ବସି ପାରିବେ ?

ଖୁବ୍ ପାରିବି ସଦାକତ୍ । ତମେ ଚାଲ । ମୁଁ ଆଜି ତମ ଅଭିଶପ୍ତ ଜୀବନର ଟିକିନିଖି ଘଟଣା ସବୁ ଜାଣିବାକୁ ଚାହେଁ ।

ସଦାକତ୍ ଆଗେ ଆଗେ ଓ ମୁଁ ପଛେ ପଛେ ଚାଲିଲୁ । ସେ ମୋତେ ନେଇଗଲା, ସେଇ ଘର ପାଖକୁ, ଯେଉଁଠୁ ମୁଁ ଦୁଇଥର ଫେରି ଆସିଥିଲି ।

ସଦାକତ୍‌ର ପାଦ ଦୁଇଟା ଚଂଚଳ ହୋଇ ଉଠିଥିଲା । ସିଗାରେଟ୍ ପରେ ସିଗାରେଟ୍ ଲଗାଇ, ଚାରି ପାଞ୍ଚ ଟାଣରେ ଶେଷ କରି ଦେଉଥିଲା । ମନ ମଧ୍ୟରେ ମୋର ଉତ୍ତେଜନା ବଢ଼ି ଚାଲିଥିଲା । ହୁଏତ ଆଜିର ସୂର୍ଯ୍ୟୋଦୟ ପୂର୍ବରୁ ନନ୍ଦନଗଡ଼ର ରହସ୍ୟମୟ ପରିବେଶର ଯବନିକା ମୁଁ ଟାଣି ପାରିବି ।

ସଦାକତ୍ ମହାନଦୀ କୂଳରେ ଠିଆହୋଇ କହିଲା, ପାଣି ଭିତରେ ପଶିବାକୁ ହେବ । ଆନନ୍ଦ ଭବନର ସଦର ଦରଜା ବହୁ ଦିନରୁ ବନ୍ଦ ହୋଇ ଯାଇଛି ।

ସଦାକତ୍ ସହିତ ମୁଁ ପାଣିରେ ପଶିଲି । ଲତାପତ୍ର ଆଡେଇ ସେ ମୋତେ ସେହି ଘର ଭିତରକୁ ନେଇଗଲା । ଅନ୍ଧକାରର ଗଭୀରତା ମୋ ପ୍ରାଣରେ କିପରି ଏକ ଶିହରଣ ସୃଷ୍ଟି କରୁଥିଲା । ମୁଁ ଡରି ଡରି ଆଗକୁ ପାଦ ବଢ଼ାଉଥିଲି ।

ଭୟ କରିବେ ନାହିଁ ହଜୁର୍, ବହୁ ସମୟ ପରେ ମୁଁ ସଦାକତ୍‌ର କଣ୍ଠସ୍ୱର ଶୁଣିଲି ଏବଂ ପର ମୁହୂର୍ତ୍ତରେ ଦପ୍ କରି ମୋଞ୍ଚାଏ ଆଲୁଅ ଜଳି ଉଠିଲା ।

ମୁଁ ଛଟ୍‌କରି ଚମକି ପଡିଲି । ଗୋଟାଏ ଏକନଳୀ ବନ୍ଧୁକ ମୋରି ଆଡକୁ ମୁହଁ କରି ହଲୁଚି । ଠିକ୍ ତାରି ପାଖକୁ ଏକ ବିରାଟକାୟ କଳା କୁକୁର ଠିଆହୋଇ ଜିଭ ଲହ ଲହ କରୁଛି ।

ସଦାକତ୍ ପୁଣି କହିଲା, ଭୟ କରନ୍ତୁ ନାହିଁ ହଜୁର । ଟାଇଗର କିଛି କରିବ ନାହିଁ । ସେଇଟା ମୋର ଖୁବ୍ ବିଶ୍ୱାସୀ । ଆଉ ଏ ବନ୍ଧୁକଟା ! ରାଜାସାହେବଙ୍କର ପରିତ୍ୟକ୍ତ । ବହୁତ ଦିନରୁ ଏଠାରେ ପଡିଛି ।

ମୁଁ କିନ୍ତୁ ଦେଖୁଥିଲି ଘର ଭିତରର ଅନ୍ୟାନ୍ୟ ବସ୍ତୁ ଗୁଡିକୁ । ଯେଉଁଥିରେ ଆଖି ପଡୁଛି ସବୁ ଗୁଡିକ ଜୀର୍ଣ୍ଣ ଶୀର୍ଣ୍ଣ । ଗୋଟାଏ ତାନ୍‌ପୁରା, ତାର ଗୁଡାକ ଛିଡ଼ି ଯାଇଛି, ବୁଢ଼ିଆଣୀ ବସା କରିଛି ସେଥିରେ । ଡୁବିତବଲା ହଳେ ଥୁଆ ହୋଇଛି, ତବଲାଟା ଫୁଟା । କାନ୍ଥରେ ଝୁଲୁଛି ବିରାଟ ବିରାଟ ତୈଳଚିତ୍ର, କିନ୍ତୁ ସବୁ ଗୁଡ଼ିକ ମଳିନ, ବିବର୍ଣ୍ଣ । ଚଟାଣରେ ବିଛା ହୋଇଛି ବହୁ ମୂଲ୍ୟବାନ୍ କାର୍ପେଟ, ଧୂଳି ଜମି ଯାଇଛି ଇଞ୍ଚିଏ ବହଳରେ ।

ସଦାକତ୍ ମୋ ଆଖି ସହିତ ଆଖି ମିଳେଇ କହିଲା, ଏଇଟା ନନ୍ଦନଗଡ଼ର ଆନନ୍ଦ ଭବନ । ଏଇ ଘରେ ନୃତ୍ୟ ଗୀତର ଆସର ଜମୁଥିଲା । କିନ୍ତୁ ବହୁ ବର୍ଷ ହେବ ଏଇ ଘରଟା

ପରିତ୍ୟକ୍ତ ହୋଇ ପଡିଛି । ଜଂଗଲ ଗ୍ରାସ କଲାଣି ଆନନ୍ଦ ଭବନକୁ । ଆଉ କିଛିଦିନ ପରେ ଏଇଟା କେବଳ ଜନ୍ତୁ ଜାନୁଆରଙ୍କର ବାସସ୍ଥଳୀ ହୋଇ ପଡିବ ।

ନିଶାତ୍ ତେବେ କ'ଣ ଏଇ ଘରେ ରହୁଥିଲା ? ହଠାତ୍ ମୁଁ ପଚାରି ବସିଲି ।

ସେ ଏଠାରେ ରହୁ ନଥିଲା ହଜୁର । ରାଜାସାହେବ ତାକୁ ଅନ୍ଦର ମହଲରେ ସ୍ଥାନ ଦେଇଥିଲେ, କିନ୍ତୁ ଯେଉଁଦିନ ନୃତ୍ୟ ଗୀତର ଆସର ଜମୁଥିଲା, ସେଦିନ ନିଶା ଆସୁଥିଲା ଏଇ ଘରକୁ । କଣ୍ଠ ସଂଗୀତରେ ତା'ର ଚେଇଁ ଉଠୁଥିଲା ବନ-ଭୂଇଁ ।

ଆଉ ତବଲା ଲହରରେ ?... ମୁଁ କହିଦେଇ ନୀରବ ରହିଗଲି ।

ସଦାକତ୍‌ର ଆଖି ଦୁଇଟା ଛଳଛଳ ହୋଇ ଆସିଲା । ଶୀର୍ଣ୍ଣ ହାତର ଆଙ୍ଗୁଳି ଗୁଡାକ ତା'ର କମ୍ପି ଉଠିଲେ । ଅବଶ ସ୍ୱରରେ ସେ କହିଲା, ସବୁ ଯାଇଛି ହଜୁର । ନିଶାତ୍ ସବୁ ହରଣ କରି ନେଇଛି । ବଞ୍ଚି ରହିଛି କେବଳ ଗୋଟାଏ ଅଶାନ୍ତ ଆତ୍ମା ।

ସଦାକତ୍ ପର ମୁହୂର୍ତ୍ତରେ ଆଉ ଗୋଟାଏ ଘରୁ ଚେଆର ଖଣ୍ଡେ ଟାଣି ଆଣି କହିଲା, ବସନ୍ତୁ ହଜୁର । ଏଥର କୁହନ୍ତୁ ରାଜାସାହେବଙ୍କ କଥା । ସେ ମୋ ସମ୍ବନ୍ଧରେ କ'ଣ କହୁଥିଲେ ।

ମଖମଲ ଗଦି ଯୁକ୍ତ ଚେଆରଟା ଉପରେ ଧୂଳି ଜମି ଯାଇଥିଲା । ମୁଁ ବସି ପଡିଲି ବିନା ଆପତ୍ତିରେ । ସଦାକତ୍ ବସିଲା ତଳେ, କାର୍ପେଟ ଉପରେ ।

କୁକୁରଟା ଆସି ସଦାକତ୍‌କୁ ଚାଟି ପକାଇଲା । ସଦାକତ୍ ଇଙ୍ଗିତରେ କ'ଣ କହିଲା ତାକୁ । ଶୋଇ ପଡିଲା ସେ ତା'ରି ପାଖରେ ।

ମୁଁ କହିଲି, ରାଜାସାହେବ ତୁମର ଖୁବ୍ ପ୍ରଶଂସା କରୁଥିଲେ, କହୁଥିଲେ, ତମ ଭଳି ତବଲିଚ୍ ଭାରତବର୍ଷରେ ସେ ଆଉ ଦ୍ୱିତୀୟ ଦେଖି ନାହାନ୍ତି । ଏବଂ ସେ କହୁଥିଲେ, ନିଶାତ୍‌କୁ ତମେ କେତେ ଭଲ ପାଉଥିଲ, କେତେ ଶ୍ରଦ୍ଧା କରୁଥିଲ । ଶେଷ ପର୍ଯ୍ୟନ୍ତ ନିଶାତ୍ କିପରି ସମସ୍ତଙ୍କୁ ପ୍ରତ୍ୟାଖ୍ୟାନ କରି ଚାଲିଗଲା । ସଂକ୍ଷେପରେ ସଦାକତ୍ ଆଗରେ ମୁଁ ସବୁ କହିଗଲି ।

କିନ୍ତୁ ରାଜାସାହେବଙ୍କର ଅବଶୋଷ କେଉଁଠି ଜାଣ ସଦାକତ୍ ? ତାଙ୍କର ଅବଶୋଷ ରହିଗଲା ସେ ନିଶାତ୍‌ର ହତ୍ୟାକାରୀକୁ ଉପଯୁକ୍ତ ଶାସ୍ତି ଦେଇ ପାରିଲେ ନାହିଁ ।

ସଂଗେ ସଂଗେ ସଦାକତ୍‌ର ଆଖି ଯୋଡ଼ିକ ଉଜ୍ଜ୍ୱଳ ହୋଇ ଉଠିଲା, ସେ ଉଚ୍ଛ୍ୱସିତ ଆନନ୍ଦରେ କହିଲା, ମୁଁ କିନ୍ତୁ ଛାଡ଼ି ନାହିଁ ହଜୁର । ନିଶାତ୍‌ର ହତ୍ୟାକାରୀକୁ ଛାଡ଼ି ନାହିଁ, ନା ଛାଡ଼ି ନାହିଁ ।

ମୁଁ ଉତ୍ସାହିତ ହେଲା ପରି କହିଲି, ରାଜାସାହେବ ଜାଣିଛନ୍ତି ସେ କଥା ? ଜଣାଇଛ ତାଙ୍କୁ ?

ସଦାକତ୍‌ର କଣ୍ଠସ୍ୱର କମ୍ପି ଉଠିଲା । ସେ କହିଲା, ରାଜାସାହେବଙ୍କୁ ମୁଁ ଭକ୍ତି କରେ ସତ, କିନ୍ତୁ ଶ୍ରଦ୍ଧା କରିପାରିଲି ନାହିଁ ଆଜିଯାଏ । ତାଙ୍କରି ପାଇଁ ମୋର ଆଜି ଏ ପରିଣତି ।

କାହିଁକି ସଦାକତ୍ । ସେ କ'ଣ ତୁମ ସହିତ ଦୁର୍ବ୍ୟବହାର କରୁଥିଲେ ? ମୁଁ ଦରଦୀ କଣ୍ଠରେ ପ୍ରଶ୍ନ କଲି ।

ନା ନା ହଜୁର । ମୁଁ ସେପରି ଦୋଷରେ ଦୋଷୀ କରିବି ନାହିଁ ରାଜାସାହେବଙ୍କୁ, କିନ୍ତୁ ମୋର ତାଙ୍କ ବିରୁଦ୍ଧରେ ଏକମାତ୍ର ଅଭିଯୋଗ ସେ କାହିଁକି ଓହ୍ଲେଇ ଗଲେ ଏତେ ତଳକୁ । ନିଶାତ୍ ଆଉ ସଦାକତ୍‌ର ସମାଜ ଏବଂ ରାଜାସାହେବଙ୍କ ସାମାଜିକ ଜୀବନ ଭିତରେ ଆକାଶ ପାତାଳର ତଫାତ୍ । ଯାହା ସମ୍ଭବ ନୁହେଁ ତାହା କ'ଣ ଜୋର୍ ଜବରଦସ୍ତ କରାଯାଇପାରେ ? ମଣିଷର ଦମ୍ଭ ଆଉ ଅହମିକାତ ସବୁ ନୁହେଁ, ସେଥିପାଇଁ ଉପରେ ଜଣେ ବିଚାରକ ବସିଛି ହଜୁର୍ । ତାକୁ ଫାଙ୍କିଦେଇ ହେବ ନାହିଁ ।

ହେଲା ନାହିଁ ହଜୁର୍ । ରାଜାସାହେବ କ'ଣ ପାରିଲେ ? ନିଶାତ୍‌କୁ ସେ ରାଣୀ କରି ପାରିଲେ ? ଅବଶ୍ୟ ରାଜାସାହେବଙ୍କର ନିଶାତ୍ ପାଇଁ ପ୍ରାଣରେ ଯଥେଷ୍ଟ ସ୍ନେହ ଥିଲା, ଦରଦ ଥିଲା । ଯାହା ସେ ଆଜି ସୁଦ୍ଧା ଭୁଲି ପାରି ନାହାନ୍ତି । କିନ୍ତୁ ନିଶାତ୍‌କୁ ସେ ଯଦି ଆକାଶ କୁସୁମ ଚୟନର ସ୍ୱପ୍ନ ଦେଖେଇ ନ ଥାନ୍ତେ, ତା' ଜୀବନ କାହିଁକି ଅକାଳରେ ନଷ୍ଟ ହୋଇ ଥାଆନ୍ତା । ମୋ ତୁବିତବଲା କାହିଁକି ଅଦିନରେ ଫୁଟିଯାଇ ଥାଆନ୍ତା !

ସଦାକତ୍‌ର ଦୀର୍ଘଶ୍ୱାସ ସହିତ ତା' ହୃଦୟର ବ୍ୟଥା ମୁଁ ଅନୁଭବ କଲି । କହିଲି, ତମେ ସେହିକଥା ବୁଝେଇଥିଲ ନିଶାତ୍‌କୁ ?

ପାରି ନଥିଲି ହଜୁର । ସେତେବେଳେ ନିଶାତ୍‌ର ମନରେ ମୁଁ ବ୍ୟଥାର ଗାର କାଟି ପାରିନଥିଲି । ସରୋଜାବାଈ ଯେତେବେଳେ ମୋତେ ତା' ଘରକୁ ଆଣିଥିଲା, ମୁଁ କେବଳ ଆସିଥିଲି ନିଶାତ୍‌ର ପ୍ରଲୋଭନରେ । ତାକୁ ମୁଁ ପ୍ରାଣ ଦେଇ ଭଲ ପାଇଥିଲି । କିନ୍ତୁ କେବେ ବ୍ୟକ୍ତ କରି ପାରି ନଥିଲି ମୋର ମନ କଥା । ଆମ ମଝିରେ ଲୁହାର ପ୍ରାଚୀର ହୋଇ ଛିଡ଼ା ହୋଇଥିଲେ ରାଜାସାହେବ । ମୁଁ କିନ୍ତୁ କୌଣସି ବାଧା ଦେଇ ନଥିଲି । ନିଶାତ୍ ମନରେ ବି ବେଦନା ଜଗେଇ ନ ଥିଲି । ଶେଷରେ ମୁଁ ସ୍ଥିର କରିଥିଲି, ଯାହାହେଉ ପଛେ, ନିଶାତ୍‌ର ସଂଗେ ସଂଗେ ମୁଁ ରହିବି । ତା' ସୁଖ ଦୁଃଖରେ ସମଭାଗୀ ହେବି । ସେତିକି ମୋ ପକ୍ଷରେ ଯଥେଷ୍ଟ ।

ରାଜା ସାହେବ ମୋତେ ସେ ସୁଯୋଗ ଦେଇଥିଲେ । ସେ ଦୃଷ୍ଟିରୁ ମୁଁ ତାଙ୍କ ପାଖରେ ଋଣୀ ।

ନିଶାତ୍ ସ୍ୱପ୍ନ ଦେଖୁଥିଲା, ସେ ରାଜରାଣୀ ହେବ । ଦାସୀ ପରିବାରୀ ଘେରି ରହିବେ ତା' ଚାରି ପାଖରେ । ପାଦ ତା'ର ମାଟିରେ ଲାଗିବ ନାହିଁ । ସେହି ସ୍ୱପ୍ନ ଭିତରେ ମୋତେ ସେ ଭୁଲି ଯାଇଥିଲା, ପୋଛି ଦେଇଥିଲା ହୃଦୟରୁ ।

ମୁଁ କିନ୍ତୁ ଭୁଲନ୍ତି କିପରି । ବ୍ୟଥତାର ଏକ ବେଦନା ବହନ କରି ମୁଁ ବଞ୍ଚି ରହିଥିଲି ।

ଦିନ ପରେ ଦିନ ଗଡ଼ି ଚାଲିଲା ।

ନିଶାତ୍ ନନ୍ଦନଗଡ଼ର ଏକ ଆକର୍ଷଣୀୟ ବସ୍ତୁ ହୋଇ ଉଠିଲା ।

ଯିଏ ଆସିଲା ସଂଗୀତ ଆସରକୁ ତା' ଆଖି ଲାଖି ରହିଲା । ନିଶାତ୍ ଉପରେ । ମୁଁ କିନ୍ତୁ ସେଗୁଡା ମୋତେ ସହ୍ୟ କରିପାରୁ ନଥିଲି । ବେଳେବେଳେ ସେଇଆଡ଼େ ଲକ୍ଷ୍ୟ କରି ହାତ ମୋର ତବଲା ଉପରେ କମ୍ପି ଉଠୁଥିଲା ।।

ଆସିଲେ ନରେନ୍ଦ୍ର ପୁରର ରାଜାସାହେବ ।

ନିଶାତ୍‌କୁ ଦେଖିଲେ । ନୟନ ମନ ତାଙ୍କର ପୂରି ଉଠିଲା ।

କିନ୍ତୁ କେଜାଣି କାହିଁକି ଈର୍ଷାରେ କି ଅହଙ୍କାରରେ ମନ ତାଙ୍କର ବିଦ୍ରୋହୀ ହୋଇଉଠିଲା। ନନ୍ଦନଗଡ଼ ରାଜାସାହେବଙ୍କ ଉପରେ । ସେ ରାଜାସାହେବଙ୍କର ବିବାହର ଆୟୋଜନ କଲେ । ଠିକ୍‌କଲେ ତାଙ୍କରି ଜଣେ ସମ୍ପର୍କୀୟାଙ୍କ ସହିତ ।

ରାଜାସାହେବ କିନ୍ତୁ ରାଜି ହେଲେ ନାହିଁ ।

ସଫା ସଫା ମନା କରିଦେଲେ ମୁହଁ ଉପରେ ।

ନରେନ୍ଦ୍ରପୁରର ରାଜାସାହେବଙ୍କ ମନରେ ଆଘାତ ଲାଗିଲା । ତାଙ୍କର କ୍ରୁର ଦୃଷ୍ଟି ପଡିଲା ନିଶାତ୍ ଉପରେ ।

ନିଶାତ୍ ରାଜମହଲରେ ଦାସଦାସୀଙ୍କ ଗହଣରେ ଥିଲେ ମଧ୍ୟ ମୋର ଖବର ଅନ୍ତର ବୁଝୁଥିଲା । ବେଳେବେଳେ ଆସୁଥିଲା ମୋ ପାଖକୁ । ନିରୋଳାରେ ବସି ଆମେ ଗପ କରୁଥିଲୁ ।

ଦିନେ ରାଜମହଲରେ ଏକ ସଂଗୀତ ଆସର ବସିଲା ।

ସେଦିନ ଆସର ଖୁବ୍ ଜମି ଉଠିଥିଲା । ବିଭିନ୍ନ ସ୍ଥାନରୁ ନିମନ୍ତ୍ରିତ ବହୁ ରାଜ ଅତିଥି ଆସିଥିଲେ । ଆଉ ସେହି ସଂଗୀତ ଆସରରେ ଉପସ୍ଥିତ ଥିଲେ ନରେନ୍ଦ୍ରପୁରର ରାଜାସାହେବ । ଆସର ଶେଷ ହେଉ ହେଉ ରାତି ଅନେକ ହୋଇ ଯାଇଥିଲା । ନିଶା ଅପେକ୍ଷା ମୋତେ ସେଦିନ ଉଚ୍ଛ୍ୱସିତ ପ୍ରଶଂସା କରିଥିଲେ ଶ୍ରୋତୃ ମଣ୍ଡଳୀ । ନିଶାତ୍ ବି ମୁଗ୍ଧ ହୋଇ ଯାଇଥିଲା ।

ସଂଗୀତ ଆସର ପରେ ମୁଁ ମୋ ବାସସ୍ଥଳୀକୁ ଫେରି ଯାଉଥିଲି । ନିଶାତ୍ ଆସିଥିଲା ମୋ ସଂଗେ ସଂଗେ ମୋତେ ଆଗେଇ ଦେବାପାଇଁ । ଉଦ୍ୟାନ ମଧ୍ୟ ସ୍ଥଳରେ ସେ ମୋ ହାତରେ ଗୋଟିଏ ଫୁଲର ତୋଡ଼ା ଦେଇ ମୋତେ ଅଭିନନ୍ଦନ ଜଣାଇଲା । ପ୍ରକୃତରେ ମୁଁ ସେଦିନ ଆତ୍ମହରା ହୋଇ ପଡିଥିଲି । ନିଶାତ୍ ମୁହଁକୁ ଚାହିଁ ରହିଥିଲି ଅନେକକ୍ଷଣ ।

ସେ ମୋତେ କହିଥିଲା, ରାତି ଅନେକ ହେଲାଣି ଯାଅ ।

ମୁଁ ପ୍ରକୃତିସ୍ଥ ହୋଇଥିଲି ଏବଂ ଧୀରେ ଧୀରେ ଆଗେଇଥିଲି ଭାବନାର ଜାଲ ବୁଣି ବୁଣି ।

କେଇ ପାହୁଣ୍ଡ ଯାଇଛି ମାତ୍ର ।

ହଠାତ୍ ଶୁଣିଲି ଗୁଳି ଚାଳନାର ଶବ୍ଦ ।

ତା'ପରେ ପରେ ଏକ ଆର୍ତ୍ତ ଚିତ୍କାର ।

ବୁଲି ପଡିଲି । ଦେଖିଲି ଜଣେ କେହି ଉଦ୍ୟାନ ଭିତରର ଲତା ପତ୍ରର ଗହଳି ଥରାଇ ଧାଇଁ ପଳାଉଛି । ମୁଁ ଛୁଟିଗଲି ତା' ପଛେ ପଛେ । ମହାନଦୀ କୂଳରେ ଯାଇ ଦେଖିଲି, ନରେନ୍ଦ୍ରପୁରର ରାଜାସାହେବଙ୍କ ମଟର ଲଞ୍ଚଟା ଛାଡ଼ି ଯାଉଛି ।

ଫେରି ଆସିଲି ଉଦ୍ୟାନ ମଝିକୁ ।

ନନ୍ଦନଗଡ଼ର ରାଜାସାହେବ ଛୁଟି ଆସିଛନ୍ତି । ନିଶାତ୍ ମୃତ୍ୟୁ ଯନ୍ତ୍ରଣାରେ କାତର ହୋଇ ରକ୍ତାକ୍ତ ଦେହରେ ଉଦ୍ୟାନ ମଝିରେ ଗଡୁଛି । ମୁଁ ହିତାହିତ ଜ୍ଞାନ ଭୁଲିଗଲି । ନିଶାତ୍‌କୁ ଟେକି ନେଲି କୋଳ ଉପରକୁ । ତା' ମୁହଁରୁ କେବଳ ଯନ୍ତ୍ରଣା କାତର ଧ୍ୱନି ଶୁଣା ଯାଉଥିଲା । ଆଉ ସେ କିଛି କହି ପାରିଲା ନାହିଁ । ଚିରଦିନ ପାଇଁ ନିଶାତ୍‌ର ମୁହଁ ବନ୍ଦ ହୋଇଗଲା ।

ସଦାକତ୍ ନୀରବରେ ବସି ଟାଇଗରର ପିଠି ଆଉଁଶିବାରେ ଲାଗିଲେ ।

ମୁଁ କହିଲି, ତା'ପରେ କ'ଣ ହେଲା ସଦାକତ୍ ? ତମେ କ'ଣ ନିଶାତ୍‌ର ହତ୍ୟାକାରୀକୁ ଚିହ୍ନି ପାରିଥିଲ ?

ପାରିଥିଲି ହଜୁର, କିନ୍ତୁ କରିବାର କିଛି ଉପାୟ ନଥିଲା ।

ତୁମର ରାଜାସାହେବଙ୍କ ଆଗରେ ହତ୍ୟାକାରୀର ପରିଚୟ ଦେଇଥିଲ ?

ନା, ଦେଇ ନଥିଲି ।

କାହିଁକି ?

ଜାଣିଥିଲି କିଛି ହୋଇ ନଥାନ୍ତା । ସେଇଥିପାଇଁ ରାଜାସାହେବଙ୍କୁ କହିଲି ନାହିଁ ।

ରାଜାସାହେବ କ'ଣ ଆନ୍ତରିକତା ସହକାରେ ହତ୍ୟାକାରୀର ସନ୍ଧାନ କରିଥିଲେ ?

ହଁ, ସେ ଖୁବ୍ ଚେଷ୍ଟା କରିଥିଲେ । କିନ୍ତୁ ପାରିଲେ ନାହିଁ । କେହି ତାଙ୍କୁ ହତ୍ୟାକାରୀର ସନ୍ଧାନ ଦେଇପାରିଲା ନାହିଁ । ମୋତେ ସେ ବାରମ୍ବାର ଡାକି ପଠାଉଥିଲେ, ପ୍ରଶ୍ନ କରୁଥିଲେ ନାନା ପ୍ରକାରର । ଏତେ ରାତିରେ ନିଶାତ୍ କାହିଁକି ଯାଇଥିଲା ଉଦ୍ୟାନକୁ, ମୁଁ କାହିଁକି ସେତେବେଳେ ଉଦ୍ୟାନରେ ଥିଲି, ଏହିପରି ନାନା କଥା । ଏସବୁ ପରେ ବି ମୁଁ ହତ୍ୟାକାରୀର ପରିଚୟ ଦେଇ ନଥିଲି ।

ନିଶ୍ଚୟ ତୁମ ମନରେ କୌଣସି ଉଦ୍ଦେଶ୍ୟ ଥିଲା ।

ମୁଁ ନିଶାତ୍‌ର ଦେହ ଛୁଇଁ ଶପଥ କରିଥିଲି, ହତ୍ୟାକାରୀ ଠାରୁ ନିଜ ହାତରେ ପ୍ରତିଶୋଧ ନେବି । ନିଶାତ୍‌ର ସବୁ ସୁଖ ସ୍ୱପ୍ନ ଯିଏ ଅକାଳରେ ମଉଳେଇ ଦେଇଛି, ତା'ର ଉପଯୁକ୍ତ ଶାସ୍ତି ମୁଁ ତାକୁ ନିଜେ ଦେବି ।

ହଁ, ସେଉଠୁ କ'ଣ ହେଲା ?

ମୋତେ ପ୍ରତୀକ୍ଷା କରିବାକୁ ହେଲା, ଦୀର୍ଘ ପ୍ରତୀକ୍ଷା । ଜାଣି ନଥିଲି ନିଶାତ୍‌ର ହତ୍ୟାକାରୀଠାରୁ ପ୍ରତିଶୋଧ ନେବା ପାଇଁ ମୋତେ ଏହିପରି ମୋର ସମସ୍ତ ଜୀବନଟାକୁ ତୁଚ୍ଛ କରି ପଡି ରହିବାକୁ ହେବ ।

ମୁଁ ପଡି ରହିଲି ମଧ୍ୟ । ଆଉ...

ଆଉ କ'ଣ କୁହ ସଦାକତ୍ । ଅଟକି ଯାଅନାହିଁ । ମୁଁ ତୁମଠାରୁ ସବୁକଥା ଟିକିନିଖି କରି ଜାଣିବାକୁ ଚାହେଁ ।

ଆଉ ମନଟା ମୋର ବିଦ୍ରୋହୀ ହୋଇ ଉଠିଥିଲା ରାଜାସାହେବଙ୍କ ଉପରକୁ । ସେ ଯେପରି ମୋର ସମସ୍ତ ଆଶା ଆକାଂକ୍ଷାକୁ ତାସ୍‌ଘର ପରି ଏକ ଫୁତ୍‌କାରରେ ଉଡାଇ ଦେଇଛନ୍ତି । ମୁଁ ମଧ୍ୟ ତାଙ୍କ ଆଖିରୁ ନିଦ୍ରା ଟୋଳିନେବି, ହୃଦୟରୁ ଶାନ୍ତି ଅପହରଣ କରିନେବି । ତାଙ୍କ ପ୍ରାଣଟାକୁ ଉହଳ ବିକଳ କରି, ତେବେ ଯାଇଁ ନିଶ୍ଚିନ୍ତ ହେବି । ଏହି ଶପଥ ନେଲି ମନେ ମନେ ।

ସେଥିରେ ତମେ କୃତକାର୍ଯ୍ୟ ହେଲ ସଦାକତ୍ ?

ସଂପୂର୍ଣ୍ଣ ରୂପେ କୃତକାର୍ଯ୍ୟ ହୋଇଛି ହଜୁର । ରାଜାଙ୍କ ଆଖିରୁ ନିଦ୍ରା ମୁଁ ହରଣ କରି ନେଇଛି, ଅଶାନ୍ତି ନିଆଁରେ ତାଙ୍କୁ ଅହରହ ଜଳେଇ ଆସିଛି, ସେ ଉନ୍ମାନଦଙ୍କ ପରି କାନ୍ଧରେ ବନ୍ଧୁକ ପକେଇ ରାତି ରାତି ଘୁରି ବୁଲିଛନ୍ତି ନିଶିଗନ୍ଧାର ସନ୍ଧାନରେ । ମୁଁ ଦୂରରୁ ଲକ୍ଷ୍ୟକରି ହସିଛି ପ୍ରାଣ ଖୋଲି ।

କିନ୍ତୁ ତମର ଏହି ସଫଳତା ପରେ ତମେ କ'ଣ ଶାନ୍ତି ପାଇଛ ସଦାକତ୍ ?

ନା ଶାନ୍ତି ମୁଁ ପାଇ ନାହିଁ, ପାଆନ୍ତି କିପରି ? ଯାହାକୁ ମୁଁ ପ୍ରାଣ ଦେଇ ଭଲ ପାଉଥିଲି, ଯାହା ପଛରେ ପଡି ରହିଥିଲା ମୋର ସମସ୍ତ ଧ୍ୟାନ ଧାରଣା, ସେ ଯେତେବେଳେ ମୋତେ ଅବଜ୍ଞା କରି ଚାଲିଗଲା ମୁଁ ଶାନ୍ତି ପାଇ ଥାଆନ୍ତି କିପରି ? ବରଂ ମୋ ମନଟା ଭିତରେ ପ୍ରତିଶୋଧର ଦାବାଗ୍ନି ସେ ଜଳେଇ ଦେଇ ଚାଲିଗଲା । ମୁଁ ସେଇଥିରେ ଅହରହ ଜଳିଲି ।

ବୁଝିଲି ସଦାକତ୍, ଆମେ କିନ୍ତୁ ଏବେ ଅସଲ କଥା ଠାରୁ ବହୁ ଦୂରକୁ ଚାଲି ଆସିଛନ୍ତି । ମୁଁ ଯେ ତମର ସାହାଯ୍ୟ ଲୋଡ଼ିବାକୁ ଆସିଛି । ରାଜାସାହେବ ମୋତେ ତୁମ ପାଖକୁ ପଠାଇଛନ୍ତି । ତାଙ୍କର ଏହି ଦୁର୍ଦ୍ଦିନରେ ତମେ କ'ଣ ତାଙ୍କୁ ସାହାଯ୍ୟ କରିବ ନାହିଁ ?

ସଦାକତ୍ ସ୍ଥିର ନୟନରେ କିଛି ସମୟ ମୋ ମୁହଁକୁ ଅନାଇ ରହି କହିଲା, ହଜୁର ମୋତେ କ'ଣ କରିବାକୁ କହୁଛନ୍ତି ?

ମୁଁ ଚାହେଁ ନରେନ୍ଦ୍ରପୁରର ଅସଲ ହତ୍ୟାକାରୀ ସନ୍ଧାନ ।

ତଦ୍ୱାରା ରାଜାସାହେବଙ୍କର କି ଉପକାର ହେବ ?

ସେ ମୁକ୍ତି ପାଇବେ ।

ମୁକ୍ତି ତାଙ୍କର ଆବଶ୍ୟକ ନାହିଁ ହଜୁର । ବରଂ ସେ ଜେଲ୍ ଭିତରେ ଆରାମରେ ରହିବେ । ମୁକ୍ତିର ପଥ ଯେ ତାଙ୍କୁ ଆହୁରି ପାଗଳ କରି ଛାଡ଼ିବ ।

ତମେ ତା'ହେଲେ ରାଜାସାହେବଙ୍କର ମୁକ୍ତି ଚାହ ନାହିଁ ?

ମୋତେ ଭୁଲ୍ ବୁଝନ୍ତୁ ନାହିଁ ହଜୁର । ରାଜାସାହେବଙ୍କର ମୁଁ ମଂଗଳ ଚାହେଁ ।

କିଛି ସମୟ ନୀରବରେ ବସି ରହି ସଦାକତ୍ ମୁହଁକୁ ଲକ୍ଷ୍ୟ କଲି । ଅପରିବର୍ତ୍ତନୀୟ ମୁଖମଣ୍ଡଳରେ ତା'ର ଦୃଢ଼ତାର ଇଙ୍ଗିତ । କହିଲି, ଆଉ ଗୋଟାଏ କଥା ମୁଁ ଜାଣିବାକୁ ଚାହେଁ ତୁମଠାରୁ ।

କେଉଁ କଥା ?

ପ୍ରତିଦିନ ରାତିରେ ନନ୍ଦନଗଡ଼ର ଉଦ୍ୟାନକୁ ନିଶିଗନ୍ଧା ଆସେ, ଗୀତଗାଏ । କରୁଣତାରେ ଭରିଦିଏ ଚତୁର୍ଦ୍ଦିଗ । ତୁମେ ନିଶ୍ଚୟ ଶୁଣିଥିବ ସେ ବ୍ୟଥା ସଂଗୀତ ।

ଶୁଣିଛି ।

କ'ଣ ତା'ର ମୂଳ ଭିତ୍ତି ?

ହଜୁରଙ୍କୁ କି ଉତ୍ତର ମୁଁ ଦେବି । ନିଶାତ୍‌ର ଅକାଳ ମୃତ୍ୟୁରେ ଆତ୍ମା ତା'ର ମୁକ୍ତି ପାଇପାରି ନାହିଁ । ନନ୍ଦନଗଡ଼ର ରାଜମହଲରୁ ସେ ଲୋଭ ତୁଟେଇ ପାରିନାହିଁ । ସେଇଥିପାଇଁ ପ୍ରତି ରାତିରେ ପ୍ରେତାତ୍ମା ତା'ର ଆସେ । ଗୀତ ଗାଇ ଗାଇ ଘୁରି ବୁଲେ ଉଦ୍ୟାନ ଚାରି ପାଖରେ । ଫେରିଯାଏ ।

କିନ୍ତୁ ସଦାକତ୍ । ମୋର କାହିଁକି ବିଶ୍ୱାସ ହେଉ ନାହିଁ । ଏହା ମୂଳରେ ନିଶ୍ଚୟ କୌଣସି ରହସ୍ୟର ଇଙ୍ଗିତ ଅଛି ।

ଆପଣଙ୍କ ପରି ସେଇ ରହସ୍ୟର ସନ୍ଧାନ କରିବାକୁ ବହୁ ଲୋକ ଆସିଛନ୍ତି ହଜୁର । କିନ୍ତୁ କେହି ପାରି ନାହାନ୍ତି । ବରଂ ସେହି ରହସ୍ୟ ପଛରେ ଧାଇଁ ମୃତ୍ୟୁ ବରଣ କରିଛନ୍ତି କେଇଜଣ ।

ଏଇ ନିଶିଗନ୍ଧା ସମ୍ବନ୍ଧରେ ତମର ମତ କ'ଣ ସଦାକତ୍ ?

ମୋର କୌଣସି ମତ ନାହିଁ ହଜୁର । ଏହା ଦିନ ଅଧକର କଥା ନୁହେଁ, ନିଶାତ ମୃତ୍ୟୁର ଛଅମାସ କି ଆଠମାସ ପରେ ନିଶିଗନ୍ଧାର ଏହି ଉତ୍ପାତ ଆରମ୍ଭ ହୋଇଛି । ପ୍ରଥମ

ଯେଉଁଦିନ ନନ୍ଦନଗଡ଼ର ରାଜଉଦ୍ୟାନ ନିଶାତ୍‌ର କଣ୍ଠ ସଂଗୀତରେ ପୂରି ଉଠିଲା, ସେଦିନ ରାଜାସାହେବ ଛୁଟି ଆସିଥିଲେ ଉଦ୍ୟାନକୁ । ଦାସ ଦାସୀ, ପରିଜନବୃନ୍ଦ ଆସି ଜମା ହୋଇ ଯାଇଥିଲେ । କିନ୍ତୁ ହତାଶ ହୋଇ ଫେରିଥିଲେ ସମସ୍ତେ । କାହିଁ କିଏ, କେଉଁଠୁ ଭାସି ଆସୁଛି ଏ କଣ୍ଠ ସଂଗୀତ । ଏ ଯେ ଅବିକଳ ନିଶାତ୍‌ର ସ୍ୱର ।

ରାଜାସାହେବ ପାଗଳଙ୍କ ପରି ଘୂରିଥିଲେ ସେଦିନ ସମଗ୍ର ରାତ୍ରି । ଉଦ୍ୟାନର ପ୍ରତିଟି ଲତାପତ୍ର ଆଡେଇ ସେ ଖୋଜିଥିଲେ ନିଶାତ୍‌କୁ । ରାତି ପାହିଲା, ସୂର୍ଯ୍ୟୋଦୟ ହେଲା, ତଥାପି ସେ ଲେଉଟି ନ ଥିଲେ ରାଜନଅରକୁ । ତାଙ୍କ ମନରେ ଧାରଣା ହୋଇଥିଲା, ନିଶାତ୍ ମରି ନାହିଁ । ସେ ଫେରି ଆସିଛି, ହଁ ସେ ପୁନରାୟ ଫେରି ଆସିଛି ନନ୍ଦନଗଡ଼କୁ ।

ତମେ ସେତେବେଳେ ଶୁଣିଥିଲି ସେ ସଂଗୀତ ? ମୁଁ ପଚାରିଲି ।

ନନ୍ଦନଗଡ଼ ରାଜବାଟୀର, ସମସ୍ତେ ଶୁଣିଲେ ହଜୁର, ମୁଁ ନ ଶୁଣନ୍ତି କିପରି ?

ତମର କ'ଣ ଧାରଣା ହେଲା ?

ଭୟରେ ସେଇଦିନ ଠାରୁ ମୁଁ କବାଟ କିଳି ଶୋଉଥିଲି ।

କାହିଁକି ?

ମୁଁ ନିଶାତ୍‌କୁ ସବୁଠାରୁ ବେଶୀ ଭଲ ପାଉଥିଲି । ମୋ ମନର ଧାରଣା ହେଉଥିଲା, ତା'ର ପ୍ରେତାତ୍ମା ହୁଏତ ମୋ ପାଖକୁ ଆସି ମୋତେ ହଇରାଣ କରିବ ।

କିନ୍ତୁ ସଦାକତ୍ । ମୋର ମନେ ହେଉଛି, ତମେ କିନ୍ତୁ ଏଇଠି ସତ୍ୟ ଗୋପନ କରୁଛ ।

ହଜୁର ବିଶ୍ୱାସ କରନ୍ତୁ ମୋତେ । ସାମାନ୍ୟ ଜଣେ ତବଲିଚ୍ ମୁଁ । ପ୍ରେତତତ୍ତ୍ୱ ସମ୍ବନ୍ଧରେ ମୋର କି ଧାରଣା ଅଛି ହଜୁର ।

ମୁଁ ତୁମ ଠାରୁ ପ୍ରେତତତ୍ତ୍ୱ ସମ୍ବନ୍ଧରେ କୌଣସି ତଥ୍ୟ ଜାଣିବାକୁ ଚାହୁଁନାହିଁ ମୋତେଖାଲି କୁହ, ନିଶାତ୍‌ର ଭୂମିକାରେ ଆଜିଯାଏ କିଏ ଅଭିନୟ କରୁଥିଲା ଏବଂ ତାର ଅନ୍ତର୍ନିହିତ ଉଦ୍ଦେଶ୍ୟ କ'ଣ ଥିଲା ।

ସଦାକତ୍ ଟିକିଏ ଇତସ୍ତତଃ କରି କହିଲା, ମୋତେ ଯଦି ବିଶ୍ୱାସ ନ କରନ୍ତି ହଜୁର, ମୋର ଆଉ ଉପାୟ କ'ଣ ଅଛି ?

ତୁମକୁ ମୁଁ ବିଶ୍ୱାସ କରିପାରେ ସଦାକତ୍, କିନ୍ତୁ ପ୍ରେତକୁ ବିଶ୍ୱାସ କରି ପାରିବି ନାହିଁ । ନିଶିଗନ୍ଧାର ଆବିର୍ଭାବର ମୂଳ ସୂତ୍ର ଯେ ନିଶ୍ଚୟ କିଛି ଅଛି, ତାହା ମୁଁ ଆବିଷ୍କାର କରି ଛାଡ଼ିବି ।

ସଦାକତ୍ ଟିକିଏ ହସିବାକୁ ଚେଷ୍ଟା କରି କହିଲା, ଆପଣ ବିଦ୍ୱାନ ଲୋକ, ବୁଦ୍ଧିମାନ ଲୋକ, ଚେଷ୍ଟା କଲେ ହୁଏତ ପାରିବେ । କିନ୍ତୁ ଇତି ପୂର୍ବରୁ ଯେଉଁମାନେ ଆସିଛନ୍ତି, ସମସ୍ତେ ବ୍ୟର୍ଥ ହୋଇଛନ୍ତି । କେହି ନିଶିଗନ୍ଧାର ଅସ୍ତିତ୍ୱ ଆବିଷ୍କାର କରିପାରି ନାହାନ୍ତି ।

ଆଚ୍ଛା ସଦାକତ୍, ଏଠାରେ ଯେଉଁ ବନଦୂର୍ଗାଙ୍କର ମନ୍ଦିର ଅଛି, ସେ ମନ୍ଦିରର ପୂଜକ ସମ୍ବନ୍ଧରେ ତମର ଧାରଣା କ'ଣ ?

ସେ ଅତି ଉତ୍ତମ ଲୋକ ହଜୁର। ତାଙ୍କ ଭଳି ଲୋକ ପୃଥିବୀରେ କମ୍ ଜନ୍ମିଛନ୍ତି। କିପରି ?

ସେ ଦୟାଳୁ, ନ୍ୟାୟବାନ ଆଉ ଧାର୍ମିକ। ତାଙ୍କରି ପାଇଁ ତ ମୋର ଏ ଜୀବନଟା ବଞ୍ଚି ରହିଛି।

କିପରି ?

ମୁଁ ଯେଉଁ ଶକ୍ତ ବେମାରରେ ପଡିଥିଲି ହଜୁର, ସେ ନଥିଲେ ମୁଁ ବି ଆଜି ନଥାନ୍ତି।

ନିଶିଗନ୍ଧା ସମ୍ବନ୍ଧରେ ତାଙ୍କର ଧାରଣା କ'ଣ ?

କିଛି ନୁହେଁ। ସେ ଏ ସବୁ ବାଜେ କଥାରେ ମୁଣ୍ଡ ଖେଳାନ୍ତି ନାହିଁ। ବନଦୁର୍ଗା ଆଉ ସେ, ସେ ଆଉ ବନଦୁର୍ଗା। ତା'ଛଡା ଅନ୍ୟ କିଛି ସେ ବୁଝନ୍ତି ନାହିଁ।

ତାଙ୍କ କନ୍ୟା ଲଳିତା ?

ଆହା, ଦୟାର ଅବତାର ସେ ହଜୁର। ପିତାର ଉପଯୁକ୍ତ କନ୍ୟା। କାହାରି ଦୁଃଖ ସେ ସହିପାରେ ନାହିଁ। କାହାର ବିପଦ ପଡିଲେ ନିଜକୁ ସେ ବିପନ୍ନ କରି ସାହାଯ୍ୟ କରିବାରେ ଚେଷ୍ଟା କରେ।

ମୁଁ ସଦାକତ୍‌ର କଥା ଶୁଣି ନିରାଶ ହୋଇ ପଡୁଥିଲି। ମୋର ସମସ୍ତ ଆଶା ଭରସା ଧୀରେ ଧୀରେ ଲୋପ ପାଉଥିଲା। ମନେ ହେଉଥିଲା ରାଜାସାହେବଙ୍କ ପାଖରେ ହୁଏତ ମୁଁ କଥା ରକ୍ଷା କରି ପାରିବି ନାହିଁ।

ସଦାକତ୍ ନୀରବରେ ବସି ଟାଇଗର୍‌କୁ ଆଉଁସୁଥିଲା।

ଆଚ୍ଛା ସଦାକତ୍। ମୁଁ ପୁଣି ପଚାରିଲି ! ତୁମେ ରାଧିକାମୋହନ ରାଜଗୁରୁଙ୍କୁ ଚିହ୍ନିଚ ?

ସଦାକତ୍ ଅଳ୍ପ ସମୟ ନୀରବ ରହି କହିଲା, ଚିହ୍ନିଚି ହଜୁର। ସଦାକତ୍‌ର ଏହି ରାଜ୍ୟରେ ତିରିଶ ବର୍ଷରୁ ଅଧିକ ହୋଇ ଗଲାଣି।

ରାଧିକାମୋହନ ସମ୍ବନ୍ଧରେ ତମର ଧାରଣା କ'ଣ ?

ରାଜାସାହେବଙ୍କର ସେ ଖୁବ୍ ବିଶ୍ୱସ୍ତ ଲୋକ। ଏତିକି ମୁଁ ଜାଣେ। ବିଶେଷ କିଛି କହି ପାରିବି ନାହିଁ।

ଆଉ ହେମାଙ୍ଗିନୀ, ହେମାଙ୍ଗିନୀକୁ ଚିହ୍ନିଚ ?

ଏଥର ସଦାକତ୍ ଉତ୍ସାହିତ ହୋଇ କହିଲା, ଆପଣଙ୍କ ସହିତ ତା'ର ଭେଟ ହୋଇଥିଲା ହଜୁର ? ଅନେକେ ହେମାଙ୍ଗିନୀକୁ ନିଶିଗନ୍ଧା ବୋଲି ସନ୍ଦେହ କରିଥିଲେ, ପ୍ରଥମେ ପ୍ରଥମେ ମୁଁ ବି ସେଇଆ ଭାବିଥିଲି।

କାହିଁକି ଏପରି ଭାବିବାର କାରଣ ?

ହେମାଙ୍ଗିନୀର ଟିକିଏ ମୁଣ୍ଡ ଦୋଷ ଅଛି, ଆଉ ସେଇଟା ବିଶେଷ କରି ରାତିରେ ବାହାରେ। ଆପଣ ତା' ପଛରେ ଛୁଟିଥିଲେ ବୋଧହୁଏ !!

ମୁଁ ସଦାକତ୍ ମୁହଁକୁ ଅବିଶ୍ୱାସ୍ୟ ଦୃଷ୍ଟିରେ ଚାହିଁ ରହିଥିଲି।

ସଦାକତ୍ କହିଲା, ଆପଣ ଏକା କାହିଁକି, ନନ୍ଦନଗଡ଼ର ଗେଷ୍ଟ୍ ହାଉସ୍‌ରେ ଯେତେଲୋକ ରହିଛନ୍ତି ସମସ୍ତେ ଅଳ୍ପେ ବହୁତେ ସାତକୋଷିଆ ଜଂଗଲରେ ହେମାଙ୍ଗିନୀ ପଛରେ ଛୁଟିଛନ୍ତି, ଆଉ ବନ୍ଦୀ ହୋଇଛନ୍ତି ବନ୍ଦୀ ଘରେ।

ବନ୍ଦୀ ଘରେ ମାନେ ?

ସେ ଘରଟା ରାଜାଙ୍କ ଶାସନ ଅମଳରେ ଥିଲା ବନ୍ଦୀ ଘର। ଦୋଷୀମାନଙ୍କୁ ସେଇ ଘରେ ବନ୍ଦ କରି ଶାସ୍ତି ଦିଆ ହେଉଥିଲା। କାଳକ୍ରମେ ରାଜାଙ୍କ ରାଜତ୍ୱ ଗଲା ଦିନଠାରୁ ସେଇଟା ଖାଲି ପଡିଛି । ଭାଙ୍ଗି ରୁଜି ନଷ୍ଟ ହୋଇଗଲାଣି। ଏଇକ୍ଷଣା ସେଇଟା ହେମାଙ୍ଗିନୀର ପାଗଳାମୀ ପାଇଁ ପ୍ରଶସ୍ତ ଜାଗା ହୋଇଛି।

କିନ୍ତୁ...ମୁଁ ସଦାକତ୍‌ର କଥା ବିଶ୍ୱାସ କରିପାରୁ ନଥିଲି।

ସେ ମୋ ମନ କଥା ବୁଝିପାରି କହିଲା, ମୁଁ ସତ କହୁଛି ହଜୁର। ହେମାଙ୍ଗିନୀ ପାଲରେ ଆପଣ ଯଦି ପଡ଼ି ଥାଆନ୍ତେ, ତେବେ ସେଇ ବନ୍ଦୀ ଘର ଆପଣ ବି ଦେଖି ଥାଆନ୍ତେ। ରାଧିକା ମୋହନ ହେମାଙ୍ଗିନୀକୁ ଖୁବ୍ ଭଲ ପାଆନ୍ତି। ହେମାଙ୍ଗିନୀକୁ ସେ ଭଲ କରିବା ପାଇଁ ଚେଷ୍ଟା କରୁଛନ୍ତି। ତାଙ୍କୁ କେଉଁ ଡାକ୍ତର କହିଛି ଯେ, ହେମାଙ୍ଗିନୀର ଇଚ୍ଛା ପୂରଣ ପାଇଁ ଯଦି ସମସ୍ତ ବ୍ୟବସ୍ଥା କରି ଦିଆଯାଏ, ତେବେ ସେ ଧୀରେ ଧୀରେ ଆରୋଗ୍ୟ ହୋଇ ଉଠିବ।

ସେଇଥିପାଇଁ କ'ଣ ନନ୍ଦନଗଡ଼ର ବନ୍ଦୀଶାଳାଟା ଆଉ ଥରେ ପୁନରୁଦ୍ଧାର କରା ହୋଇଛି ? ମୁଁ କହିଲି।

ଆପଣ କ'ଣ ସେଠାକୁ ଯାଇଥିଲେ ହଜୁର ? ସଦାକତ୍ ପଚାରିଲା।

ମୁଁ କୌଣସି ଉତ୍ତର ଦେବା ପୂର୍ବରୁ ଟାଇଗର୍‌ଟା ଉଠି ପଡି ଭୁକି ଭୁକି ଏତେ ଜୋରରେ ବାହାରି ଗଲା ଯେ, ସଦାକତ୍ ତା' ପଛ ପଛେ ଧାଇଁବାକୁ ଲାଗିଲା।

ମୁଁ ଉଦ୍‌ବିଗ୍ନ ହୋଇ ପଡିଲି।

କିଏ ତେବେ ? କାହାକୁ ଦେଖିଲା ଟାଇଗର ?

ମୁଁ ନନ୍ଦନଗଡ଼ର ଆନନ୍ଦ ଭବନ ଭିତରେ ବସି, ଚାରିଆଡର ନଷ୍ଟ ଐଶ୍ୱର୍ଯ୍ୟ ଆଡ଼େ ଚାହିଁ ଚିନ୍ତା କରୁଥିଲି, ମଣିଷ ପରିଣତିର ଗତିରୋଧ କରିପାରେ ନାହିଁ। ରାଜାସାହେବ ପାରି ନାହାନ୍ତି, ସଦାକତ୍ ବି ପାରି ନାହିଁ।

ଟାଇଗରର କାନ ଦୁଇଟା ଟାଣି ଟାଣି ସଦାକତ୍ ପୁଣି ଘରେ ପ୍ରବେଶ କଲା । ମୁଁ ଅଧୈର୍ଯ୍ୟ ହୋଇ ପଡିଥିଲି । ମୋର ମନେ ହେଉଥିଲା ସଦାକତ୍ ନନ୍ଦନଗଡ଼ ରହସ୍ୟର ସବୁ କଥା ଜାଣି ମଧ ମୋତେ କିଛି କହୁନାହିଁ । ମନେ ମନେ ମୁଁ ସଦାକତ୍ ଉପରେ ଖୁବ୍ ରାଗି ଯାଇଥିଲି ।

ଶେଷ ପର୍ଯ୍ୟନ୍ତ ଉଠି ଠିଆହେଲି । କହିଲି, ମୁଁ ଆଜି ଯାଉଛି ସଦାକତ୍ । ରାତ୍ରି ପ୍ରାୟ ଶେଷ ହୋଇ ଆସିଲାଣି । ବହୁ ଆଶା ପୋଷଣ କରି ଆସିଥିଲି ତୁମ ପାଖକୁ । ତୁମେ କିନ୍ତୁ ମୋତେ ନିରାଶକଲ ।

ସଦାକତ୍ ଟିକିଏ ହସିବାକୁ ଚେଷ୍ଟା କରି କହିଲା, ଆପଣ ଯଦି ମୋତେ ଭୁଲ୍ ବୁଝନ୍ତି, ତେବେ ମୁଁ ନାଚାର ହଜୁର । ଜୀବନଟା ତ କଟିଗଲା ଭୁଲ୍ ବୁଝାମଣା ଭିତରେ, ଆଉ ଆଜି...

ତା'ହେଲେ ମୁଁ ଆସୁଛି ସଦାକତ୍ । ନରେନ୍ଦ୍ରପୁରର ରାଜାସାହେବଙ୍କ ହତ୍ୟାକାରୀକୁ ପୋଲିସ୍ ହାତରେ ଅର୍ପଣ କରିବା ମୋର ପ୍ରଥମ କର୍ତ୍ତବ୍ୟ । ମୁଁ ରାଜାସାହେବଙ୍କୁ କଥା ଦେଇଛି ଯେତେବେଳେ ପାଳନ କରିବାକୁ ହିଁ ହେବ ।

ସଦାକତ୍ କିଛି କହିଲା ନାହିଁ ।

ବନ୍ଧୁକଟା ଉଠାଇ ନେଇ ମୁଁ ପରୀକ୍ଷା କରିବାକୁ ଯାଉଛି, ସଦାକତ୍ କହିଲା, ଭଲ ଅଛି ଆଜ୍ଞା, ରାଜାସାହେବ ସିନା ଫିଙ୍ଗି ଦେଇଥିଲେ, କିନ୍ତୁ ଏତେ ବି ତା ଭିତରେ କାର୍ତ୍ତୁଜ ଭରି ଦେଲେ, ସେ ବିଶ୍ୱାସୀ ବନ୍ଧୁ ପରି ସହଯୋଗ କରିବ ।

ମୁଁ ଲକ୍ଷ୍ୟ କରିଥିଲି, ବନ୍ଧୁକଟା ମୋ ହାତରେ ଦେଖି ଟାଇଗର ମୋତେ ଏଇ ଲୟରେ ଅନାଇ ରହିଥିଲା । ହୁଏତ ଆଦେଶ ପାଇଲେ ମୋ ଉପରକୁ ସେ ଡେଇଁ ପଡିବ ।

ବନ୍ଧୁକଟି ପୁଣି ତଳେ ଥୋଉ ଥୋଉ କହିଲି, ତା'ହେଲେ ଏଇ ବନ୍ଧୁକଟି ନରେନ୍ଦ୍ରପୁରର ରାଜାସାହେବଙ୍କୁ ଉପଯୁକ୍ତ ଶାସ୍ତି ଦେଇଛି !

ସଦାକତ୍ ଅବିଚଳିତ କଣ୍ଠରେ କହିଲା, ଆପଣଙ୍କ ଅନୁମାନ ମିଥ୍ୟା ନୁହେଁ ହଜୁର ! ଆଜି ଆଉ ଆପଣଙ୍କ ନିକଟରେ ସେ ଇତିହାସ ଗୋପନ ରଖି ଲାଭ ନାହିଁ । ପ୍ରତିଶୋଧ ମୁଁ ନେଇଛି ହଜୁର ! ସେଥିପାଇଁ ଶାସ୍ତି ପାଇବା ପାଇଁ ପ୍ରସ୍ତୁତ ଅଛି ମୁଁ ।

ସେଦିନ ରାତିରେ, ଯେତେବେଳେ ନିଶିଗନ୍ଧାର ବ୍ୟଥା ସଂଗୀତ ରାଜଉଦ୍ୟାନର ପରିବେଶକୁ କରୁଣ କରି ତୋଳିଲା, ସେତେବେଳେ କ'ଣ ନରେନ୍ଦ୍ରପୁରର ରାଜାସାହେବ ଉଦ୍ୟାନକୁ ଉଠି ଆସିଥିଲେ ? ମୁଁ ସଦାକତ୍‌କୁ ପ୍ରଶ୍ନ କଲି ।

ଦୀର୍ଘ ତିରିଶ ବର୍ଷର ପ୍ରତୀକ୍ଷା ପରେ ଜୀବନରେତ ଏଇ ପ୍ରଥମ ସୁଯୋଗ ପାଇଲି ହଜୁର । ସେଇଟାକୁ ଆଉ ଛାଡ଼ି ପାରି ଥାଆନ୍ତି କିପରି ?

ତା'ହେଲେ ତୁମର ମତ ଯେ ନରେନ୍ଦ୍ରପୁରର ରାଜାସାହେବ ନିଶାତ୍‌କୁ ହତ୍ୟା କରିଥିଲେ, ଦୀର୍ଘ ତିରିଶ ବର୍ଷ ପରେ ତୁମେ ତା'ର ପ୍ରତିଶୋଧ ନେଲ ?

ହଜୁର୍ ।

ମୁଁ ଆଉଥରେ ଚେଆର ଉପରେ ବସିପଡିଲି । କହିଲି, ନରେନ୍ଦ୍ରପୁରର ରାଜାସାହେବଙ୍କୁ ହତ୍ୟା କରି ତୁମେ କ'ଣ ଠିକ୍ କରିଛ ସଦାକତ୍ ?

ଠିକ୍ କି ଭୁଲ୍ କରିଛି କହି ପାରିବି ନାହିଁ ଆଜ୍ଞା । କିନ୍ତୁ ଏତିକିରେ ମୁଁ ସନ୍ତୁଷ୍ଟ ଯେ ମୋ ସାଧନା ସିଦ୍ଧି ଲାଭ କରିଛି । କେତେ ବର୍ଷର ପ୍ରତୀକ୍ଷା, ଆଉ କେତେ ସହସ୍ର ରଜନୀର ଅନିଦ୍ରା ପରେ, ଗତ ଦୁଇଟି ରାତି ମୁଁ ନିଶ୍ଚିନ୍ତରେ ଆଖି ବୁଜି ପାରିଛି । ସେଦିନ ରାତିର ଘଟଣା କ'ଣ ମୁଁ ଭୁଲି ପାରୁଛି ହଜୁର, ନିଶାତ୍ ମୋ ହାତକୁ ଫୁଲ ତୋଡ଼ାଟି ବଢ଼ାଇ ଦେଇ କହିଥିଲା, ତମ ସାଧନାର ସାର୍ଥକତା ଦେଖିଲେ ମୋ ମନ ଗର୍ବରେ ଫୁଲିଉଠେ । ତମେ ଆଜି ମୋତେ ଜୟ କରିଚ ସଦାକତ୍, ଜୟ କରିଚ ମୋ ଅନ୍ତର ମନକୁ ।

ମୁଁ ନୀରବରେ ଠିଆ ହୋଇ ଚାହିଁଥିଲି ନିଶାତ୍ ମୁହଁକୁ । ସବୁ ଭୁଲି ଯାଇଥିଲି ସେଦିନ ।

ତା'ପରେ ସେ ଧୀରେ ଧୀରେ କହିଲା, ରାତି ଅନେକ ହେଲାଣି, ତମେ ଏଥର ଫେରି ଯାଅ । ତମକୁ ମୋର ଅନେକ କଥା କହିବାର ଅଛି । କିନ୍ତୁ ଆଜି ନୁହେଁ । କାଲି ସକାଳୁ ମୁଁ ନିଜେ ଯିବି ତମ ପାଖକୁ । ମୁଁ ଭାବୁଛି ନନ୍ଦନଗଡ଼ ଛାଡ଼ି ଆମେ ଚାଲିଯିବା ।

ନିଶାତ୍ ! ମୁଁ ତା' ହାତ ଦୁଇଟାକୁ ଚାପି ଧରିଥିଲି ।

ସେ ତା'ହାତ ଦୁଇଟିକୁ ମୁକ୍ତ କରି କହିଥିଲା, ଆଜି ତୁମେ ଆଉ ଡେରି କର ନାହିଁ । ଯାଅ ।

ମୁଁ ତା' ଆଦେଶ ପାଳନ କରିଥିଲି । ମନରେ ସ୍ୱପ୍ନର ପିରାମିଡ ଗଢ଼ି ଆଗେଇ ଯାଉଥିଲି । କେଇ ପାହୁଣ୍ଡ ମାତ୍ର । ତା' ପରେ ନିଶାତ୍‌ର ଆର୍ତ୍ତ ଚିତ୍କାର । ବୁଲି ପଡି ଦେଖିଲି, ନରେନ୍ଦ୍ରପୁରର ରାଜାସାହେବ ଛୁଟି ପଳାଉଛନ୍ତି । ମହାନଦୀ କୂଳରେ ପହଞ୍ଚିବା ମାତ୍ରେ ତାଙ୍କ ମଟର ଲଞ୍ଚ ଛାଡ଼ି ଦେଇଥିଲା ।

ସଦାକତ୍ ନୀରବ ରହିଲା ।

ଗୋଟିଏ ଦୀର୍ଘଶ୍ୱାସ ବାହାରି ଆସିଲା ତା' ନାକରୁ । କହିଲା, ଦୀର୍ଘ ତିରିଶଟି ବର୍ଷ ହଜୁର । କମ୍ କଥା ! ଆପଣ ପାରି ଥାଆନ୍ତେ ? କେବଳ ନରେନ୍ଦ୍ରପୁରର ରାଜାସାହେବଙ୍କ ପାଇଁ ମୁଁ ପ୍ରତୀକ୍ଷା କରିଥିଲି । ସୁଯୋଗ ଆଉ ଆସୁ ନ ଥିଲା ।

ହୁଁ, ମୁଁ ଗମ୍ଭୀର ହୋଇ କହିଲି । କିନ୍ତୁ ଏ କ୍ଷେତ୍ରରେ ମୋର କର୍ତ୍ତବ୍ୟ କ'ଣ ? ହତ୍ୟାକାରୀ ଧରା ପଡିଛି । ମୁହଁରେ ତା'ର ସ୍ୱୀକୃତି । ହୁଏତ ରାଜାସାହେବଙ୍କୁ ଦେଇଥିବା

ପ୍ରତିଶ୍ରୁତି ମୁଁ ରକ୍ଷା କରି ପାରିବି । କିନ୍ତୁ ସଦାକତ୍, ବିଚରା ସଦାକତ୍ ! ଗୋଟାଏ ଝିଅ ପାଇଁ ଜୀବନଟାକୁ ତା'ର ବରବାଦ୍ କରିଦେଲା । ଆଉ ଏଇ ଶେଷ ବୟସରେ ତାକୁ ନେଇ ଜେଲ୍‌ରେ ଭରିବା କ'ଣ ଉଚିତ ହେବ !

ମୋ ଚିନ୍ତାସ୍ରୋତ ଛିନ୍ନ କଲା ହଠାତ୍ ମହାନଦୀର ଆହୁଲା ଶବ୍ଦ । ଧୀରେ ଧୀରେ ଯେପରି ପାଖେଇ ଆସୁଥିଲା ନୌକାଟାଏ । ଚାହିଁ ଦେଖିଲି ମୋ ଆଗରେ ସଦାକତ୍ ନାହିଁ ।

ସଦାକତ୍, ସଦାକତ୍ !! ମୁଁ ଚିତ୍କାର କରି ଉଠିଲି । ତେବେ କ'ଣ ସଦାକତ୍ ମୋତେ ଫାଙ୍କିଦେଇ ଚାଲିଗଲା ।

କିନ୍ତୁ ପର ମୁହୂର୍ତ୍ତରେ, ଏଁ...କାନକୁ ମୁଁ ବିଶ୍ୱାସ କରିପାରିଲି ନାହିଁ । ନିଶିଗନ୍ଧାର କଣ୍ଠ ସଂଗୀତ । ବିଚଳିତ ହୋଇ ପଡ଼ିଲି ମୁଁ, ମନେ ହେଲା ଯେପରି ପାଖ ଘରଟାରେ ବସି ଗାଉଛି ନିଶିଗନ୍ଧା । ସେଇ ବ୍ୟଥାର ରାଗିଣୀ, ଯାହା ନନ୍ଦନଗଡ଼ର ଅଭିଶାପ ହୋଇ ରହି ଯାଇଛି ଶେଷ ପର୍ଯ୍ୟନ୍ତ ।

ମୁଁ ଛୁଟିଗଲି ପାଖ ଘରକୁ । ଅନ୍ଧକାର ଭିତରୁ କେବଳ ଶୁଣୁଥିଲି ନିଶିଗନ୍ଧାର କଣ୍ଠ ସଂଗୀତ । ଆଉ ମନେ ହେଉଥିଲି କିଏ ଯେପରି ଫୁଲି ଫୁଲି କାନ୍ଦୁଛି ।

ସଦାକତ୍ ଗଲା କେଉଁଆଡ଼େ ?

ମନଟା ମୋର ଚଂଚଳ ହୋଇ ଉଠିଲା । ନିଶିଗନ୍ଧାର ସ୍ୱରୂପ ଦେଖିବା ପାଇଁ ମୁଁ ଅସ୍ଥିର ହୋଇ ପଡ଼ିଲି । କିନ୍ତୁ ଅନ୍ଧକାରର ଗଭୀରତା ଭେଦ କରିବା....

ହଠାତ୍ ସେ ଘରେ ଆଲୋକ ଜଳି ଉଠିଲା । ଘରଟାରେ ଗୋଟିଏ ରେକର୍ଡ ପ୍ଲେୟାର ମୋ ସାମ୍ନାରେ, ଆଉ ବିକ୍ଷିପ୍ତ ହୋଇ ପଡ଼ିଛି ବହୁ ରେକର୍ଡ । ସଦାକତ୍ ବସିଛି ସେଇ ରେକର୍ଡ ପ୍ଲେୟାର ପାଖରେ । ବିଶ୍ୱସ୍ତ ଆଜ୍ଞାବହ ପରି କୁକୁରଟା ବସି ରହିଛି ପ୍ରଭୁର ଆଦେଶ ପ୍ରତୀକ୍ଷାରେ ।

ସଦାକତ୍ ମୋତେ ଦେଖି ଶାନ୍ତ ସ୍ୱରରେ କହିଲା, ଦେଖିଲେ ନିଶିଗନ୍ଧାକୁ ।

ମୁଁ ଅବାକ୍ ହୋଇ ଯାଇଥିଲି । ସଦାକତ୍ ଯେ ନିଶାତ୍‌ର କଣ୍ଠ ସଂଗୀତର ରେକର୍ଡ ସଂଗ୍ରହ କରି, ତିରିଶ ବର୍ଷ ହେବ ଏଇ ରେକର୍ଡ ପ୍ଲେୟାର ସାହାଯ୍ୟରେ ବଜାଇ ଚାଲିଛି ଆଉ ଆତଙ୍କ ସୃଷ୍ଟି କରି ଚାଲିଛି ନନ୍ଦନଗଡ଼ରେ ଏ କଥା ମୁଁ ଆଖି ଆଗରେ ସବୁ ଦେଖି ମଧ୍ୟ ବିଶ୍ୱାସ କରି ପାରୁ ନଥିଲି ।

ମୋର ଏପରି ତନ୍ମୟ ଭାବ ଦେଖି ସଦାକତ୍ କହିଲା, ଏଇ ଶୁଣୁଛନ୍ତି ନିଶାତ୍‌ର କଣ୍ଠ-ସଂଗୀତ । କିନ୍ତୁ ନିଶାତ୍‌ର ପ୍ରେତାତ୍ମାକୁ ଦେଖିଛନ୍ତି ? ଯିଏ ଏହି କଣ୍ଠ ସଂଗୀତ ବହନ କରି ଯାଏ ରାଜ ଉଦ୍ୟାନକୁ, ରାଜାସାହେବଙ୍କ ଆଖିରୁ ନିଦ୍ରା ଅପହରଣ କରିବା ପାଇଁ । ସେ ମୋର ଏଇ ବିଶ୍ୱସ୍ତ ଟାଇଗର । ଏହା ପୂର୍ବରୁ ମୋତେ ସାହାଯ୍ୟ କରିଥିଲା ଟାଇଗର ମା' ।

ମୁଁ ବିସ୍ଫାରିତ ନୟନରେ କୁକୁରଟା ଆଡ଼େ ଅନାଇ ରହିଲି ।

ସଦାକତ୍ ହସି ହସି କହିଲା, ଆପଣଙ୍କର ବିଶ୍ୱାସ ହେଉ ନାହିଁ ହଜୁର ? ତା' ହେଲେ ଦେଖନ୍ତୁ ସଦାକତ୍ ରେକର୍ଡ ପ୍ଲେୟାରର ସୁଇଚ୍ ବନ୍ଦ କରି, ଟାଇଗର ବେକରେ ଗୋଟିଏ ଫିତା ବାନ୍ଧିଲା, ସେଇ ଫିତା ସହିତ ସଂଯୋଗ କରା ହୋଇଥିଲା ଗୋଟିଏ ଛୋଟ ମାଇକ୍ ।

ସଦାକତ୍ ପୁଣି ରେକର୍ଡ ପ୍ଲେୟାର ଚଳେଇ ଦେବା ମାତ୍ରେ ଟାଇଗର ବେକରେ ବନ୍ଧା ହୋଇଥିବା ମାଇକ୍‌ଟିରୁ ନିଶିଗନ୍ଧାର କଣ୍ଠସଂଗୀତ ଫୁଟି ଉଠିଲା । ଆଉ ଟାଇଗର ଧୀରେ ଧୀରେ ଆଗେଇଗଲା ଆଗକୁ । କେବଳ ସରୁ ତାର ଖଣ୍ଡେ ଟାଣି ଟାଣି ନେଉଥିଲା ଟାଇଗର ।

ଦେଖିଲେ ହଜୁର ! କହି ସଦାକତ୍ ପୁଣି ରେକର୍ଡ ପ୍ଲେୟାରଟିକୁ ବନ୍ଦ କଲା । ନିଶାତ୍‌ର ବହୁ ରେକର୍ଡ ମୁଁ ସଂଗ୍ରହ କରି ରଖିଥିଲି ଆଜ୍ଞା, ଆହୁରି ପାଞ୍ଚବର୍ଷ ଚଳେଇ ନେଇ ପାରି ଥାଆନ୍ତି । କିନ୍ତୁ ଏଇ ଟାଇଗର ଆଉ ତା' ମା' ମୋତେ ଯେଉଁପରି ଭାବରେ ସାହାଯ୍ୟ କରିଛନ୍ତି, ସେମାନଙ୍କୁ ମୁଁ ଜୀବନରେ ଭୁଲି ପାରିବି ନାହିଁ ।

ମୋ ମହୁଁରୁ କଥା ଶେଷ ହୋଇ ଯାଇଥିଲା । ମୁଁ ସଦାକତ୍‌ର ପ୍ରତିଶୋଧ କୌଶଳ ବିଷୟ ଚିନ୍ତା କରୁଥିଲି । ଗୋଟାଏ ଲୋକ ତା'ର ସମଗ୍ର ଜୀବନଟା ବରବାଦ୍ କରି ଦେଇଛି, ଖାଲି ଗୋଟାଏ ସ୍ୱପ୍ନ ପଛରେ ।

ନିଶିଗନ୍ଧାକୁ ଦେଖିଲେ ହଜୁର ! ମୋର ଶେଷ ଇଚ୍ଛା ଥିଲା, ଯେତେବେଳେ ସାଧନା ସିଦ୍ଧିଲାଭ କରିବ, ସେତେବେଳେ ମୁଁ ନିଶିଗନ୍ଧାର ଆବିର୍ଭାବ କାହାଣୀ ଜଣେଇ ଯିବି ନନ୍ଦନଗଡ଼ରେ । ହଜୁର ମୋତେ ସାହାଯ୍ୟ କରିଛନ୍ତି । ଆଜି ମୋର ସମସ୍ତ ଆଶା ପୂର୍ଣ୍ଣ ହୋଇଛି । ଏବେ ମୋତେ ପୋଲିସ ହାତରେ ଅର୍ପଣ କରି ଦେଇ ପାରନ୍ତି । ରାଜାସାହେବଙ୍କ ମୁକ୍ତି ପାଇଁ ମୋତେ ବ୍ୟବହାର କରି ପାରନ୍ତି ।

ସଦାକତ୍ ପ୍ରତି ମୋ ହୃଦୟରେ କିପରି ଏକ ଦୁର୍ବଳତା ଜାତ ହୋଇଥିଲା । ସଦାକତ୍ ସାମାନ୍ୟ ଜଣେ ତବଲିଚ୍ ହୋଇପାରେ, କିନ୍ତୁ ନିଶାତ୍ ପାଇଁ ତା'ର ସାଧନା...

ହଠାତ୍ ଟାଇଗରଟା ଭୋ ଭୋ କରି ଚିତ୍କାର କରି ଉଠିଲା । ସଦାକତ୍ କ'ଣ ବୁଝିଲା କେଜାଣି, କହିଲା - ସକାଳ ହୋଇ ଗଲାଣି ହଜୁର, ବାହାରେ ହୁଏତ...

ଆନନ୍ଦ ଭବନର ସଦର ଦରଜାରେ କିଏ କଡ଼ା ଖଡ଼ ଖଡ଼ ଆରମ୍ଭ କରିଦେଲା । ପରେ ପରେ ପାଟି ଶୁଭିଲା, ଭିତରେ କିଏ ଅଛ ଜବାବ ଦିଅ ।

ଟାଇଗର ଆହୁରି ଯୋରରେ ଚିତ୍କାର ଆରମ୍ଭ କରି ଦେଲା । ବାହାରି ଯିବା ପାଇଁ ଛଟପଟ ହେଉଥିଲା, ସଦାକତ୍ ତା' କାନ ଦୁଇଟାକୁ ଦୁଇ ହାତରେ ଧରି ଅଟକାଇଥିଲା ।

ମୁଁ ପଚାରିଲି, ବାହାରେ ଆଉ କିଏ ହୋଇପାରେ ସଦାକତ୍ ।

ସେ ଶୁଷ୍କ ହସି କହିଲା, ପୋଲିସ୍ ନିଶ୍ଚୟ ।

ପୋଲିସ୍ ! ମୁଁ ଟିକିଏ ଚଂଚଳ ହୋଇ ଉଠିଲି, କହିଲି, ତା'ହେଲେ ତୁମେ...

ନା, ହଜୁର ଆଜି ତ ଆଉ ମୋର କୌଣସି କାର୍ଯ୍ୟ ଅସଂପୂର୍ଣ୍ଣ ନାହିଁ, ଶେଷ ଅବସ୍ଥାରେ ରାଜାସାହେବଙ୍କୁ ଯଦି ସାହାଯ୍ୟ କରିପାରେ, ତେବେ ହୁଏତ ସାନ୍ତ୍ୱନା ପାଇବି ଟିକିଏ ।

କିନ୍ତୁ ପୋଲିସ୍ ଜାଣିଲା କିପରି ?

ଆମେ ଯେ ଏଇକ୍ଷିଣା ରେକର୍ଡ ବଜାଉ ଥିଲେ । ସଦାକତ୍ କହିଲା ।

ତେଣେ ଦରଜାରେ ଆଘାତ ପରେ ଆଘାତ ବଢ଼ି ଚାଲିଥିଲା । ମୁଁ ସଦାକତ୍‌ର ନିଶ୍ଚଳ ମୂର୍ତ୍ତି ଆଡ଼େ ଚାହିଁ କିଛି ସ୍ଥିର କରି ପାରୁ ନଥିଲି । ଧୀରେ ରେକର୍ଡ ପ୍ଲେୟାରଟିର ସୁଇଚ୍ ଟିପି ଦେଲି । ସଦାକତ୍‌ର ହାତ ଧରି କହିଲି, ତମେ ଆସ ମୋ ସହିତ ।

ଆଗରେ ମୁଁ, ମୋ ପଛରେ ସଦାକତ୍ ଏବଂ ତା' ପଛରେ ଟାଇଗର । ଆମେ ଯେଉଁବାଟେ ଆନନ୍ଦ ଭବନ ଭିତରେ ପ୍ରବେଶ କରିଥିଲୁ, ସେଇ ମହାନଦୀ ବାଟେ ବାହାରକୁ ବାହାରି ଆସିଲୁ । ବାହାରେ ପ୍ରଭାତର ଆଲୋକ । ସଦାକତ୍ ହାତଯୋଡ଼ି ନମସ୍କାର କଲା ।

ମୁଁ କହିଲି, ଏଠାରେ ପୋଲିସ୍ ହାତରେ ବନ୍ଦୀ ହେବା ଅପେକ୍ଷା ତୁମେ ଚାଲ ସଦାକତ୍ ନିଜେ ଯାଇ ରାଜାସାହେବଙ୍କ ନିକଟରେ ଆତ୍ମ ସମର୍ପଣ କରିବ । ତାଙ୍କୁ କହିବ ନରେନ୍ଦ୍ରପୁରର ରାଜାସାହେବଙ୍କୁ ତୁମେ କାହିଁକି ହତ୍ୟା କରିଛ, ଇତ୍ୟାଦି, ଇତ୍ୟାଦି ।

ସଦାକତ୍ କହିଲା, ମୋର ଆଜି କେଉଁଥିରେ ଆପତ୍ତି ନାହିଁ ହଜୁର ।

ମୁଁ ଆଗରେ ଓ ସଦାକତ୍ ମୋ ପଛରେ । ଆମେ ରାଜବାଟୀ ଆଡ଼େ ଆଗେଇ ଚାଲିଥିଲୁ ।



